# ମହାଭାରତ

## ଶାନ୍ତିପର୍ବ

(ଅଧ୍ୟାୟ ୧ ରୁ ୧୭୩ ପର୍ଯ୍ୟନ୍ତ)




ଗୋବନ୍ଦଚନ୍ଦ୍ର ମହାପାତ୍ର

# ମହାଭାରତ

## ଶାନ୍ତିପର୍ବ

(ଅଧ୍ୟାୟ ୧ ରୁ ୧୬୩ ପର୍ଯ୍ୟନ୍ତ)




ଗୋବିନ୍ଦଚନ୍ଦ୍ର ମହାପାତ୍ର

# ଶାନ୍ତିପର୍ବ-ବିଷୟ ସୂଚୀ

| ଅଧ୍ୟାୟ | ବିଷୟ | ପୃଷ୍ଠା |
|---|---|---|
| ୫୨ । | ଭୀଷ୍ମଙ୍କ ଅସାମର୍ଥ୍ୟ ପ୍ରକଟନ ଓ ବରପ୍ରାପ୍ତି | ୧୯୪ |
| ୫୩ । | ଶ୍ରୀକୃଷ୍ଣଙ୍କ ପ୍ରାତଃକୃତ୍ୟ ଓ ଯୁଧିଷ୍ଠିରଙ୍କ କୁରୁକ୍ଷେତ୍ର ପ୍ରସ୍ଥାନ | ୧୯୮ |
| ୫୪ । | ଶ୍ରୀକୃଷ୍ଣ ଓ ଭୀଷ୍ମଙ୍କ କଥୋପକଥନ | ୨୦୦ |
| ୫୫ । | ଭୀଷ୍ମଙ୍କ ଯୁଧିଷ୍ଠିରାଶ୍ୱାସନ | ୨୦୪ |
| ୫୬ । | ଭୀଷ୍ମଙ୍କ ରାଜଧର୍ମ ବର୍ଣ୍ଣନ | ୨୦୬ |
| ୫୭ । | ରାଜାଙ୍କ ଧର୍ମାନୁକୂଳ ଓ ନୀତିପୂର୍ଣ୍ଣ ବ୍ୟବହାର ବର୍ଣ୍ଣନ | ୨୧୩ |
| ୫୮ । | ଯୁଧିଷ୍ଠିରାଦିଙ୍କ ସ୍ୱସ୍ଥାନ ଗମନ ବର୍ଣ୍ଣନ | ୨୧୮ |
| ୫୯ । | ବ୍ରହ୍ମାଙ୍କ ନୀତିଶାସ୍ତ୍ର ଓ ପୃଥୁ ଚରିତ ବର୍ଣ୍ଣନ | ୨୨୧ |
| ୬୦ । | ବର୍ଣ୍ଣ-ଧର୍ମ ବର୍ଣ୍ଣନ | ୨୩୨(ଛ) |
| ୬୧ । | ଆଶ୍ରମ-ଧର୍ମ ବର୍ଣ୍ଣନ | ୨୩୨(ଜ) |
| ୬୨ । | ବ୍ରାହ୍ମଣ ଧର୍ମ ଓ କର୍ତ୍ତବ୍ୟପାଳନର ମହତ୍ତ୍ୱ | ୨୩୨(ଞ) |
| ୬୩ । | ବର୍ଣ୍ଣାଶ୍ରମ ଧର୍ମ ବର୍ଣ୍ଣନ | ୨୩୨(ଠ) |
| ୬୪ । | ଇନ୍ଦ୍ର ରୂପଧାରୀ ବିଷ୍ଣୁ ଓ ମାନ୍ଧାତା ସମ୍ବାଦ | ୨୩୨(ଣ) |
| ୬୫ । | ,, ,, ,, ,, ,, ,, | ୨୩୨(ଧ) |
| ୬୬ । | ରାଜଧର୍ମ-ପାଳନଦ୍ୱାରା ଆଶ୍ରମ-ଧର୍ମଫଳପ୍ରାପ୍ତି କଥନ | ୨୩୩ |
| ୬୭ । | ରାଷ୍ଟ୍ର-ରକ୍ଷା ଓ ଉନ୍ନତି ପାଇଁ ରାଜାଙ୍କ ଆବଶ୍ୟକତା | ୨୩୬ |
| ୬୮ । | ବସୁମନା ଓ ବୃହସ୍ପତି ସମ୍ବାଦ | ୨୪୦ |
| ୬୯ । | ରାଜାଙ୍କ ପ୍ରଧାନ ପ୍ରଧାନ କର୍ତ୍ତବ୍ୟ ବର୍ଣ୍ଣନ | ୨୪୬ |
| ୭୦ । | ରାଜାଙ୍କ ୩୬ ଗୁଣର ବର୍ଣ୍ଣନ | ୨୫୫ |
| ୭୧ । | ପ୍ରଜାପାଳନ ରାଜାଙ୍କ ମହାନ୍ ଧର୍ମ | ୨୫୬ |
| ୭୨ । | ରାଜାଙ୍କ ପାଇଁ ପୁରୋହିତର ଆବଶ୍ୟକତା | ୨୬୦ |
| ୭୩ । | ରାଜା ପୁରୁରବାଙ୍କ ଉପାଖ୍ୟାନ | ୨୬୨ |
| ୭୪ । | ମୁଚୁକୁନ୍ଦ ଉପାଖ୍ୟାନ | ୨୬୭ |
| ୭୫ । | ଭୀଷ୍ମଙ୍କ ପୁନଃ ରାଜ୍ୟ ମହିମା କଥନ | ୨୬୯ |
| ୭୬ । | ଉତ୍ତମ ଓ ଅଧମ ବ୍ରାହ୍ମଣଙ୍କ ପ୍ରତି ରାଜାଙ୍କ ବ୍ୟବହାର | ୨୭୨ |
| ୭୭ । | କେକୟରାଜ ଓ ରାକ୍ଷସ ଉପାଖ୍ୟାନ | ୨୭୪ |
| ୭୮ । | ଆପଦ୍ ଧର୍ମ | ୨୭୬ |
| ୭୯ । | ଋତ୍ୱିକ୍ ଲକ୍ଷଣ, ଯଜ୍ଞ ଓ ଦକ୍ଷିଣାର ମହତ୍ତ୍ୱ, ତପ-ପ୍ରଶଂସା | ୨୮୧ |

# ମହାଭାରତ

## ଶାନ୍ତିପର୍ବ

### ପ୍ରଥମ ଅଧ୍ୟାୟ

ନାରାୟଣ ନରୋତ୍ତମ, ନର ଓ ସରସ୍ୱତୀ ଦେବୀଙ୍କୁ ନମସ୍କାର କରି ଜୟନାମକ ଗ୍ରନ୍ଥ କୀର୍ତ୍ତନ କରିବା । ବୈଶମ୍ପାୟନ ବୋଇଲେ—ଏହି ପ୍ରକାରେ ପଞ୍ଚପାଣ୍ଡବ, ମହାମତି ବିଦୁର, ରାଜା ଧୃତରାଷ୍ଟ୍ର ଓ ସମସ୍ତ କୌରବ-ସ୍ତ୍ରୀମାନେ ନିଜ ନିଜ ସୁହୃଦ୍‌ମାନଙ୍କର ଶୁଦ୍ଧି କ୍ରିୟା ସମ୍ପାଦନ କଲେ ।୧।

ମହାତ୍ମା ପାଣ୍ଡବମାନେ ସେମାନଙ୍କର ଶୁଦ୍ଧି ସମ୍ପାଦନନିମିତ୍ତ ଏକମାସକାଳ ପୁରର ବହିର୍ଭାଗରେ ବାସ କଲେ । ଏହି ସମୟରେ ବହୁସଂଖ୍ୟକ ବେଦବେତ୍ତା, ବୁଦ୍ଧିମନ୍ତ, ସ୍ନାତକ ଓ ଗୃହସ୍ଥ ବ୍ରାହ୍ମଣମାନେ ଓ ବେଦବ୍ୟାସ, ନାରଦ ମହର୍ଷି, ଦେବଲ, ଦେବସ୍ଥାନ ଓ କଣ୍ୱ ପ୍ରଭୃତି ସିଦ୍ଧ ମହର୍ଷିମାନେ ଶିଷ୍ୟବୃନ୍ଦ ସହିତ ସମବେତ ହୋଇ କୁରୁସତ୍ତମ ଯୁଧିଷ୍ଠିରଙ୍କ ସମୀପରେ ଉପସ୍ଥିତ ହେଲେ । ସେହି ମହାତ୍ମା ମହର୍ଷିମାନେ ଯୁଧିଷ୍ଠିରଙ୍କ ନିକଟକୁ ଯାଇ ତାହାଙ୍କଦ୍ୱାରା ଯଥାବିଧି ପୂଜିତ ହେଲେ ଓ ତତ୍ସମୟୋଚିତ ପୂଜାକୁ ଗ୍ରହଣ କରି ମହାର୍ହ ଆସନମାନଙ୍କରେ ଉପବେଶନ କଲେ । ତଦନନ୍ତର ପବିତ୍ର ଭାଗୀରଥୀତୀରରେ ଶୋକାକୁଳଚିତ୍ତ ରାଜା ଯୁଧିଷ୍ଠିରଙ୍କୁ ସେହି ଶତସହସ୍ର ବିପ୍ରମାନେ ଯଥାବିଧି ପରିବେଷ୍ଟନ କରି ତାହାଙ୍କୁ ଆଶ୍ୱାସନ ଦେଲେ ।୮।

ସେ ସମୟରେ ନାରଦ, ବ୍ୟାସଦେବପ୍ରଭୃତି ମୁନିଗଣଙ୍କ ସହିତ ଧର୍ମପୁତ୍ର ଯୁଧିଷ୍ଠିରଙ୍କୁ ସମାଦରପୂର୍ବକ କହିଲେ—ହେ ଯୁଧିଷ୍ଠିର ! ଆପଣ ନିଜର ବାହୁବଳଦ୍ୱାରା ଓ ମାଧବଙ୍କ ଅନୁଗ୍ରହରୁ ଧର୍ମାନୁସାରେ ଏହି ସମୁଦାୟ ପୃଥିବୀକୁ ଜୟ କରି ଅଛନ୍ତି । ୧୦ । ହେ ପାଣ୍ଡବ ! ଆପଣ ଭାଗ୍ୟବଳରୁ ଏହି ଲୋକ-ଭୟଙ୍କର ସଂଗ୍ରାମରୁ ମୁକ୍ତିଲାଭ କରିଅଛନ୍ତି । ବର୍ତ୍ତମାନ ଏହି କ୍ଷତ୍ରୀଧର୍ମରେ ରତ ଥାଇ ସନ୍ତୁଷ୍ଟ ଅଛନ୍ତି ତ ? ୧୧। ହେ ନୃପ ! ଶତ୍ରୁବିହୀନ ହୋଇ ସୁହୃଦ୍‌ବର୍ଗଙ୍କର ପ୍ରୀତି ଉତ୍ପାଦନ କରୁଅଛନ୍ତିତ ? ଏହି ରାଜଶ୍ରୀକୁ ପ୍ରାପ୍ତ ହୋଇ ଶୋକରୁ ମୁକ୍ତ ହୋଇ ଅଛନ୍ତିତ ? ୧୨ ।

ଯୁଧିଷ୍ଠିର ବୋଇଲେ,—ଆମ୍ଭେ କୃଷ୍ଣଙ୍କର ବାହୁବଳକୁ ଆଶ୍ରୟ କରି ବ୍ରାହ୍ମଣମାନଙ୍କ ପ୍ରସାଦ ଓ ଭୀମାର୍ଜ୍ଜୁନଙ୍କର ବଳଦ୍ୱାରା ସମସ୍ତ ପୃଥିବୀକୁ ଜୟ କରିଅଛୁଁ । ୧୩ ।

ଆମ୍ଭେ ରାଜ୍ୟଲୋଭ କରି ଅତିଶୟ ଜ୍ଞାତିକ୍ଷୟ କରିଥିବାରୁ ଆମ୍ଭ ହୃଦୟରେ ସର୍ବଦା ମହତ୍ ଦୁଃଖ ବର୍ତ୍ତମାନ ଅଛି । ୧୪ । ହେ ଭଗବନ୍ ! ଅଭିମନ୍ୟୁ, ଓ ଦ୍ରୌପଦୀଙ୍କର ପ୍ରିୟପୁତ୍ରମାନେ ନିହତ ହୋଇଥିବାରୁ ଆମ୍ଭର ଜୟ, ପରାଜୟ ପ୍ରାୟ ବୋଧ ହେଉଅଛି । ୧୫ । ମଧୁସୂଦନ ହରି କୃଷ୍ଣ ଏଠାରୁ ପ୍ରତ୍ୟାଗମନ କଲେ ତାଙ୍କୁ ଆମ୍ଭର ବଧୂ ଦ୍ୱାରକାବାସିନୀ ସୁଭଦ୍ରା କ'ଣ କହିବେ ? ୧୬ । ଆମ୍ଭର ହିତାକାଙ୍କ୍ଷିଣୀ ଦୁଃଖାର୍ତ୍ତା ଦ୍ରୌପଦୀ ପୁତ୍ର ଓ ବନ୍ଧୁବାନ୍ଧବବିହୀନା ହୋଇ ଆମ୍ଭଙ୍କୁ ଅତିଶୟ ବ୍ୟଥିତ କରୁଅଛନ୍ତି । ୧୭ ।

ହେ ଭଗବନ୍ ନାରଦ ! ଅଧିକରେ ଜନନୀ କୁନ୍ତୀ ଗୋଟିଏ ଗୁପ୍ତ ବିଷୟକୁ ଗୋପନ କରି ଆମ୍ଭଙ୍କୁ ଅତ୍ୟନ୍ତ ଦୁଃଖିତ କରିଅଛନ୍ତି । ସେହି ଗୁପ୍ତ ବିଷୟକୁ ଆମ୍ଭେ କହୁଅଛୁଁ । ଶ୍ରବଣ କରନ୍ତୁ । ୧୮ ।

ଯେ ଇହଲୋକରେ ଅୟୁତ ନାଗ ସଦୃଶ ବଳଶାଳୀ ଅଟନ୍ତି, ଯେ ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କର ଆଶ୍ରୟ ଥିଲେ, ଯେ ଯୁଦ୍ଧରେ ଅପ୍ରତିରଥ ଅଟନ୍ତି, ଯାହାଙ୍କର ଗତି ସିଂହକ୍ରୀଡ଼ା ସଦୃଶ ଓ ଯେ ପ୍ରତ୍ୟେକ ସମରରେ ଆମ୍ଭମାନଙ୍କ ପ୍ରତି ବାଣ ବର୍ଷଣ କରନ୍ତି, ସେହି ଦୟାଶୀଳ, କୃତୀ, ଦାତା ମାନୀ, ଅମର୍ଷୀ, ଧୀମାନ୍, ଶୀଘ୍ରାସ୍ତ୍ର, ଯତବ୍ରତ, ନିତ୍ୟସତ୍ୟବାଦୀ, ଚିତ୍ରଯୋଧୀ, ତୀକ୍ଷ୍ଣ ଓ ଅଦ୍ଭୁତପରାକ୍ରମଶାଳୀ କର୍ଣ୍ଣ କୁନ୍ତୀଙ୍କର ଗୂଢ଼ୋତ୍ପନ୍ନ ପୁତ୍ର ଓ ଆମ୍ଭମାନଙ୍କର ଭ୍ରାତା ଅଟନ୍ତି । ୨୦ ।

ମାତା କୁନ୍ତୀ ଉଦକକ୍ରିୟା କରୁଥିବା ସମୟରେ କର୍ଣ୍ଣଙ୍କୁ ସୂର୍ଯ୍ୟଙ୍କର ପୁତ୍ର ବୋଲି କହିଅଛନ୍ତି । ପୂର୍ବକାଳରେ ଜନନୀ ଏହି ସର୍ବଗୁଣୋପେତ ପୁତ୍ର କର୍ଣ୍ଣଙ୍କୁ ମଞ୍ଜୁଷାମଧ୍ୟରେ ସଂସ୍ଥାପନ କରି ଗଙ୍ଗା-ସ୍ରୋତରେ ନିକ୍ଷେପ କରି ଦେଇଥିଲେ । ଏହି କର୍ଣ୍ଣଙ୍କୁ ଲୋକମାନେ ରାଧା-ଗର୍ଭସମ୍ଭୂତ ସୂତପୁତ୍ର ବୋଲି କହନ୍ତି; କିନ୍ତୁ ପ୍ରକୃତରେ ଏ କୁନ୍ତୀଙ୍କର ଜ୍ୟେଷ୍ଠପୁତ୍ର ଅଟନ୍ତି ଓ ଆମ୍ଭମାନଙ୍କର ସହୋଦର ହୁଅନ୍ତି । ଆମ୍ଭେ ଏହି ଗୂଢ଼ ବିଷୟକୁ ନ ଜାଣି କେବଳ ରାଜ୍ୟଲୋଭବଶତଃ ଆମ୍ଭର ଭ୍ରାତାଙ୍କୁ ନିପାତିତ କରିଅଛୁଁ । ୨୭ ।

ଅଗ୍ନି ତୂଳରାଶିକୁ ଦହନ କଲା ପ୍ରାୟ ଭ୍ରାତୃବିୟୋଗଜନିତ ଶୋକାନଳ ଆମ୍ଭର ଦେହକୁ ଦଗ୍ଧ କରୁଅଛି । କି ଶ୍ୱେତବାହନ ଅର୍ଜ୍ଜୁନ କି ଭୀମ, କି ନକୁଳ, କି ସହଦେବ, କି ଆମ୍ଭେ କେହି ସୁଦ୍ଧା ତାହାଙ୍କୁ ଭ୍ରାତା ବୋଲି ଜାଣି ନ ଥିଲୁଁ; କିନ୍ତୁ ସେହି ସୁବ୍ରତ କର୍ଣ୍ଣ ସ୍ୱୟଂ ଆମ୍ଭମାନଙ୍କୁ ଜାଣିଥିଲେ । ଆମ୍ଭେମାନେ ଶୁଣିଅଛୁଁ ଯେ ଜନନୀ କୁନ୍ତୀ ଆମ୍ଭମାନଙ୍କର ଶାନ୍ତିଲାଭାର୍ଥ କର୍ଣ୍ଣଙ୍କ ନିକଟକୁ ଯାଇ କହିଥିଲେ—ବତ୍ସ ! ତୁମ୍ଭେ ଆମ୍ଭର ପୁତ୍ର ଅଟ । ତୁମ୍ଭେ ଆମ୍ଭର ଅଭୀଷ୍ଟ ସାଧନ କର; କିନ୍ତୁ ମହାତ୍ମା କର୍ଣ୍ଣ ମାତାଙ୍କର ଏହି ଦୃଢ଼ ଇଚ୍ଛାକୁ ପୂରଣ ନ କରି କହିଥିଲେ ଯେ "ସେ ଯୁଦ୍ଧ ସମୟରେ ଦୁର୍ଯ୍ୟୋଧନଙ୍କୁ ପରିତ୍ୟାଗ କରି ପାରିବେ ନାହିଁ" । ୨୮ ।

ଯଦି ତୁମ୍ଭର ମତ ଅନୁସାରେ ଯୁଧିଷ୍ଠିରଙ୍କ ସହିତ ସନ୍ଧି କରିବି ତେବେ ମୋତେ ସମସ୍ତେ ଅନାର୍ଯ୍ୟ, ନୃଶଂସ ଓ କୃତଘ୍ନ ବୋଲି ଜ୍ଞାନ କରିବେ । ୨୯ । ବର୍ତ୍ତମାନ ଯଦି ମୁଁ ସନ୍ଧିସ୍ଥାପନ କରିବି ତାହାହେଲେ ଲୋକେ ମୋତେ ଅର୍ଜ୍ଜୁନଙ୍କ ହେତୁରୁ ଭୀରୁ ବୋଲି ମଣିବେ । ଅତଏବ ମୁଁ ଅର୍ଜ୍ଜୁନ ଓ କେଶବଙ୍କୁ ପରାଜିତ କରି, ପଶ୍ଚାତ୍ ଯୁଧିଷ୍ଠିରଙ୍କ ସହିତ ସନ୍ଧିବନ୍ଧନ କରିବି ଏହି କଥା କହିଥିଲେ । ଏହି କଥା ଶୁଣି କୁନ୍ତୀ ସେହି ପୃଥୁଳବକ୍ଷ କର୍ଣ୍ଣଙ୍କୁ ପୁନର୍ବାର କହିଲେ । ୩୧ ।

ବତ୍ସ କର୍ଣ୍ଣ ! ତୁମ୍ଭେ ତେବେ ଆମ୍ଭର ଅନ୍ୟ ଚାରି ପୁତ୍ରଙ୍କୁ ଅଭୟ ପ୍ରଦାନ କରି କେବଳ ଅର୍ଜ୍ଜୁନଙ୍କ ସହିତ ଯୁଦ୍ଧ କର ? ଧୀମାନ୍ କର୍ଣ୍ଣ, ମାତାଙ୍କର ଏହି କଥା ଶୁଣି ଓ କୁନ୍ତୀମାତାଙ୍କୁ କମ୍ପିତା ହେଉଥିବାର ଦେଖି ତାଙ୍କୁ କୃତାଞ୍ଜଳିପୁଟରେ କହିଲେ—ଜନନି ! ଅମ୍ଭେ ତୁମ୍ଭର

ଅନ୍ୟ ଗୃହପୁତ୍ରଙ୍କୁ ବିନଷ୍ଟ କରିବୁ ନାହିଁ । ତୁମ୍ଭର ପାଞ୍ଚଗୋଟି ପୁତ୍ର ନିଶ୍ଚୟ ଜୀବିତ ରହିବେ । ୩୩ ।

ହେବ ତ ଆମ୍ଭେ ଅର୍ଜ୍ଜୁନଙ୍କଦ୍ୱାରା ହତ ହେବୁଁ ନଚେତ୍ ଅର୍ଜ୍ଜୁନ ଅମ୍ଭଦ୍ୱାରା ନିହତ ହେବେ ।" ଅନନ୍ତର ପୁତ୍ରଲୋଭବତୀ ମାତା କୁନ୍ତୀ କର୍ଣ୍ଣଙ୍କୁ ପୁନର୍ବାର କହିଲେ—'ବତ୍ସ ତୁମ୍ଭେ ଯେଉଁସବୁ ଭ୍ରାତୃଗଣଙ୍କର ମଙ୍ଗଳ କାମନା କରୁଅଛ ସେମାନଙ୍କର ମଙ୍ଗଳାଚରଣ କର ।" କୁନ୍ତୀ ଏହି କଥା କହି କର୍ଣ୍ଣଙ୍କୁ ପରିତ୍ୟାଗପୂର୍ବକ ଗୃହକୁ ପ୍ରତ୍ୟାଗମନ କଲେ । ୩୪ ।

ହେ ବିପ୍ରେ ! ବର୍ତ୍ତମାନ ସେହି ମହାବୀର ଭ୍ରାତା କର୍ଣ୍ଣ ଅର୍ଜ୍ଜୁନଙ୍କଦ୍ୱାରା ନିହତ ହୋଇଅଛନ୍ତି । ମାତା କୁନ୍ତୀ ଏପର୍ଯ୍ୟନ୍ତ ଏହି ଗୂଢ଼ ବିଷୟକୁ ପ୍ରକାଶ କରି ନ ଥିଲେ । ହେ ପ୍ରଭୁ ଦ୍ୱିଜସତ୍ତମ ! ଏତେଦିନ ପରେ ଆମ୍ଭେ ମାତାଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶ୍ରବଣ କରି କର୍ଣ୍ଣଙ୍କୁ ନିଜର ଜ୍ୟେଷ୍ଠ ସହୋଦର ବୋଲି ଜାଣିଲୁଁ । ଆମ୍ଭେ ଭ୍ରାତୃଘାତୀ ହେବାରୁ ଆମ୍ଭର ହୃଦୟ ବିଦୀର୍ଣ୍ଣ ହେଉଅଛି । ୩୮ ।

ଯଦି କର୍ଣ୍ଣ ଓ ଅର୍ଜ୍ଜୁନ ଆମ୍ଭର ସହାୟ ଥାନ୍ତେ, ତେବେ ଆମ୍ଭେ ବାସବଙ୍କୁ ସୁଦ୍ଧା ପରାଜୟ କରି ପାରିଥାନ୍ତୁ । ଯେତେବେଳେ ଦୁରାତ୍ମା ଧୃତରାଷ୍ଟ୍ରପୁତ୍ରମାନେ ଆମ୍ଭମାନଙ୍କୁ କୌରବସଭାରେ କ୍ଲେଶ ପ୍ରଦାନ କଲେ ସେତେବେଳେ ଅମ୍ଭର ସହସା କ୍ରୋଧ ଜାତ ହୋଇଥିଲା; କିନ୍ତୁ କର୍ଣ୍ଣଙ୍କୁ ଦର୍ଶନ କରି ଅମ୍ଭର କ୍ରୋଧ ଶାନ୍ତ ହୋଇଗଲା । ଯେତେବେଳେ ଦ୍ୟୂତକ୍ରୀଡ଼ା ସମୟରେ କର୍ଣ୍ଣ ଦୁର୍ଯ୍ୟୋଧନଙ୍କର ହିତକାମନା କରି ଆମ୍ଭପ୍ରତି ରୁକ୍ଷ ଓ କଟୁବାକ୍ୟ କରିଥିଲେ, ସେତେବେଳେ ତାହା ଶୁଣି ଆମ୍ଭେ କର୍ଣ୍ଣଙ୍କର ପାଦଦ୍ୱୟକୁ ଦର୍ଶନ କରିବାରୁ ଅମ୍ଭର କ୍ରୋଧ ବିନଷ୍ଟ ହୋଇଥିଲା । ୪୦ ।

କର୍ଣ୍ଣଙ୍କର ପାଦଦ୍ୱୟ କୁନ୍ତୀଙ୍କର ଚରଣଯୁଗଳ ସଦୃଶ ଥିଲା । ଆମ୍ଭେ ଏହି ସାଦୃଶ୍ୟର କାରଣକୁ ଅନ୍ୱେଷଣ କରି ଏପର୍ଯ୍ୟନ୍ତ ସୁଦ୍ଧା କୌଣସି ଉପାୟରେ ଏହାର ତତ୍ତ୍ୱ ଜାଣି ପାରି ନ ଥିଲୁଁ । କର୍ଣ୍ଣ ଯୁଦ୍ଧ କରୁଥିବା ସମୟରେ କି ନିମିତ୍ତ ପୃଥିବୀ ତାହାଙ୍କର ରଥଚକ୍ରକୁ ଗ୍ରାସ କରିଥିଲେ ? ୪୩ ।

ଆମ୍ଭର ଭ୍ରାତା, କର୍ଣ୍ଣ କି ନିମିତ୍ତ ବା ଶାପଗ୍ରସ୍ତ ହୋଇଥିଲେ ? ତାହା ଆପଣ ଆମ୍ଭ ଆଗେ କୀର୍ତ୍ତନ କରନ୍ତୁ । ହେ ଭଗବନ୍ ! ଆପଣ ସର୍ବବିତ୍ ଅଟନ୍ତି ଓ ଏହି ସଂସାରରେ କାର୍ଯ୍ୟ-କାରଣପ୍ରଭୃତି ସମସ୍ତ ଆପଣଙ୍କ ବିଦିତ ଅଛି । ଅତଏବ ଆମ୍ଭେ ଆପଣଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ୪୪ ।



## ଦ୍ୱିତୀୟ ଅଧ୍ୟାୟ

ବୈଶମ୍ପାୟନ କହିଲେ—ବକ୍ତୃବର ମୁନି ନାରଦ ଯୁଧିଷ୍ଠିରଙ୍କକର୍ତ୍ତୃକ ଏହିପରି କଥିତ ହୋଇ କର୍ଣ୍ଣଙ୍କର ଶାପବିଷୟକୁ କହିଲେ ।୧।

ନାରଦ କହିଲେ—ହେ ମହାବାହୁ ଭାରତ ! ଆପଣ ଯାହା କହିଲେ ତାହା ଯଥାର୍ଥ ଅଟେ । ଯୁଦ୍ଧରେ କର୍ଣ୍ଣ ଓ ଅର୍ଜ୍ଜୁନଙ୍କର କିଛିମାତ୍ର ଅସାଧ୍ୟ ନ ଥିଲା ।୨।

ହେ ଅନଘ ! କର୍ଣ୍ଣଙ୍କର ପୂର୍ବବୃତ୍ତାନ୍ତ ଯାହାକି ଦେବତାମାନଙ୍କର ସୁଦ୍ଧା ଗୋପନୀୟ ତାହା ଆମ୍ଭେ କହୁଅଛୁଁ, ଶ୍ରବଣ କରନ୍ତୁ ।୩।

ହେ ବିଭୋ ! କ୍ଷତ୍ରିୟମାନେ ପରସ୍ପର ସଂଗ୍ରାମଦ୍ୱାରା ପ୍ରାଣତ୍ୟାଗ କରି ଓ ଶସ୍ତ୍ରପୂତ ହୋଇ କି ପ୍ରକାରେ ସ୍ୱର୍ଗ ଗମନ କରିବେ, ତାହା ବିଧାନ କରିବାନିମିତ୍ତ କର୍ଣ୍ଣ ଅବିବାହିତା କୁନ୍ତୀଙ୍କ ଗର୍ଭରେ ଦୈବପ୍ରଭାବରୁ ଜନ୍ମଗ୍ରହଣ କରିଥିଲେ ।୪।

ସେ ବାଲ୍ୟକାଳରେ ତେଜଯୁକ୍ତ ହୋଇ ସୂତପୁତ୍ରତ୍ୱ ପ୍ରାପ୍ତ ହୋଇଥିଲେ ଓ ଦ୍ରୋଣଙ୍କଠାରୁ ଧନୁର୍ବେଦ ଶିକ୍ଷା କରିଥିଲେ ।୫।

ହେ ରାଜେନ୍ଦ୍ର ! ଭୀମସେନ ଓ ଅର୍ଜ୍ଜୁନଙ୍କର ପରାକ୍ରମ, ତୁମ୍ଭର ବୁଦ୍ଧି, ନକୁଳ ଓ ସହଦେବଙ୍କର ବିନୟ, ବାସୁଦେବଙ୍କ ସହିତ ଅର୍ଜ୍ଜୁନଙ୍କର ସଖ୍ୟଭାବ ଓ ତୁମ୍ଭମାନଙ୍କଠାରେ ପ୍ରଜାମାନଙ୍କର ଅନୁରାଗ, ଏହି ସବୁ ବିଷୟ ଚିନ୍ତା କରି, କର୍ଣ୍ଣ ସର୍ବଦା ମନେ ମନେ ସନ୍ତପ୍ତ ଥାଆନ୍ତି । ।

ଏହି ସବୁ କାରଣରୁ ସେ ବାଲ୍ୟକାଳରୁ ରାଜା ଦୁର୍ଯ୍ୟୋଧନଙ୍କ ସହିତ ସୌହାର୍ଦ୍ଦ ସ୍ଥାପନ କରିଥିଲେ । ତୁମ୍ଭେମାନେ ମଧ୍ୟ ସର୍ବଦା ଦୈବବଶତଃ ଓ ସ୍ୱଭାବତଃ କର୍ଣ୍ଣଙ୍କ ପ୍ରତି ଦ୍ୱେଷ କରୁଥିଲ ।୮। ଅର୍ଜ୍ଜୁନଙ୍କୁ

ଧନୁର୍ବେଦରେ ସମସ୍ତଙ୍କ ଅପେକ୍ଷା ଉତ୍କୃଷ୍ଟ ହେବାର ଦେଖି, କର୍ଣ୍ଣ ଏକଦା ଦ୍ରୋଣଙ୍କୁ ନିର୍ଜନରେ କହିଥିଲେ ।୯।

"ଆମ୍ଭେ ବ୍ରହ୍ମାସ୍ତ୍ରକୁ ଓ ତାହାର ପ୍ରସାରଣ ବିଧି ଓ ଉପସଂହାରକୁ ଜାଣିବାର ଇଚ୍ଛା କରୁଅଛୁଁ । ଆମ୍ଭର ଅର୍ଜୁନଙ୍କ ସହିତ ଯୁଦ୍ଧ କରିବାର ଇଚ୍ଛା ହେଉଅଛି ।୧୧। ଆପଣଙ୍କ ପୁତ୍ରଙ୍କଠାରେ ଯେପରି ସ୍ନେହ, ଶିଷ୍ୟଙ୍କଠାରେ ମଧ୍ୟ ସେହିପରି ସ୍ନେହ, ଏଥିରେ ସନ୍ଦେହ ନାହିଁ । ଅତଏବ ଆପଣଙ୍କ ପ୍ରସାଦରୁ ଯେପରି ପଣ୍ଡିତମାନେ ଆମ୍ଭଙ୍କୁ ଅକୃତାସ୍ତ୍ର ବୋଲି ନ କହିବେ ତାହା ଆପଣ ବିଧାନ କରନ୍ତୁ ।" କର୍ଣ୍ଣ ଦ୍ରୋଣଙ୍କୁ ଏହିପରି କହିବାରୁ ଅର୍ଜୁନଙ୍କର ସାପେକ୍ଷ ଦ୍ରୋଣ, କର୍ଣ୍ଣଙ୍କର ଦୌରାତ୍ମ୍ୟକୁ ଅବଗତ ହୋଇ କହିଲେ—ହେ କର୍ଣ୍ଣ ! ବ୍ରହ୍ମାସ୍ତ୍ରକୁ ସଚ୍ଚରିତ୍ରବାନ୍ ବ୍ରାହ୍ମଣ ଜାଣିପାରେ, କିମ୍ବା ତପସ୍ୱୀ କ୍ଷତ୍ରିୟ ଜ୍ଞାତ ହୋଇପାରେ ।୧୩।

ଦ୍ରୋଣ ଏହା କହିବାରୁ କର୍ଣ୍ଣ ତାହାଙ୍କୁ ଯଥୋଚିତ ପୂଜା ଓ ସତ୍କାର କରି ସହସା ମହେନ୍ଦ୍ର ପର୍ବତସ୍ଥ ପରଶୁରାମଙ୍କ ନିକଟକୁ ଗମନ କଲେ ।୧୪। ସେ ପରଶୁରାମଙ୍କ ନିକଟରେ ଉପସ୍ଥିତ ହୋଇ ତାହାଙ୍କୁ ମସ୍ତକ ଅବନତ କରି ପ୍ରଣାମ କଲେ ଓ ଗୌରବପ୍ରକାଶପୂର୍ବକ ନିଜକୁ ଭୃଗୁକୁଳୋଦ୍ଭବ ବ୍ରାହ୍ମଣ ବୋଲି ପରିଚୟ ଦେଲେ ।୧୫।

ପରଶୁରାମ କର୍ଣ୍ଣଙ୍କୁ ସ୍ୱାଗତ ପ୍ରଶ୍ନ ଓ ଗୋତ୍ରାଦି ସମସ୍ତ ଜିଜ୍ଞାସା କଲେ ଓ ତାହାଙ୍କ ପ୍ରତି ଅତ୍ୟନ୍ତ ପ୍ରୀତ ହୋଇ ତାହାଙ୍କୁ ଶିଷ୍ୟରୂପରେ ଗ୍ରହଣ କଲେ ।୧୬। ତହୁଁ କର୍ଣ୍ଣ ସ୍ୱର୍ଗତୁଲ୍ୟ ମହେନ୍ଦ୍ର ପର୍ବତରେ ବାସ କଲେ ଓ ସେଠାରେ ତାଙ୍କର ଗନ୍ଧର୍ବ, ରାକ୍ଷସ, ଯକ୍ଷ ଓ ଦେବତାମାନଙ୍କ ସହିତ ସମାଗମ ହେଲା ।୧୭। ସେ ସେଠାରେ ଭୃଗୁଶ୍ରେଷ୍ଠ ପରଶୁରାମଙ୍କଠାରୁ ଅସ୍ତ୍ରଶିକ୍ଷା କଲେ ଓ ଦେବ, ଦାନବ ଓ ରାକ୍ଷସମାନଙ୍କର ଅତିଶୟ ପ୍ରୀତିପାତ୍ର ହେଲେ ।୧୮।

ଏକଦା ସୂର୍ଯ୍ୟପୁତ୍ର କର୍ଣ୍ଣ ଏକାକୀ ଖଡ୍ଗ ଓ ଶରାସନ ଧାରଣ କରି ଆଶ୍ରମନିକଟବର୍ତ୍ତୀ ସମୁଦ୍ରତୀରରେ ବିଚରଣ କରୁଥିଲେ ।୧୯।

ସେ ଯଦୃଚ୍ଛାକ୍ରମେ ଶର ନିକ୍ଷେପ କରୁଁ କରୁଁ ଗୋଟିଏ ଅଗ୍ନିହୋତ୍ରୀ ବ୍ରହ୍ମବାଦୀ ବ୍ରାହ୍ମଣର ହୋମଧେନୁକୁ ଅଜ୍ଞାତସ୍ୱଭାବରେ ନିହତ କଲେ ।୨୦। ତତ୍ପରେ ସେ ସେହି ଅଜ୍ଞାତକୃତ ଦୋଷକୁ ବ୍ରାହ୍ମଣଙ୍କଠାରେ ନିବେଦନ କଲେ ଓ ତାହାଙ୍କର ପ୍ରସାଦ ପ୍ରାର୍ଥନା କଲେ ।୨ ।

ସେ ପୁନଃ ପୁନଃ କହିଲେ—ହେ ଭଗବନ୍ ! ଆମ୍ଭେ ମୋହ-ବଶରୁ ଆପଣଙ୍କ ଧେନୁକୁ ହତ କରିଅଛୁଁ । ଅତଏବ ଆପଣ ପ୍ରସନ୍ନ ହୋଇ ଆମ୍ଭର ଦୋଷ ମାର୍ଜନା କରନ୍ତୁ ।୨୨।

ତତ୍ପରେ ସେହି ବିପ୍ର କର୍ଣ୍ଣଙ୍କୁ ଭର୍ତ୍ସନା କରି କ୍ରୁଦ୍ଧଚିତ୍ତରେ ତାହାଙ୍କୁ କହିଲେ—ହେ ଦୁରାତ୍ମନ ! ତୁ ଅମ୍ଭର ବଧ୍ୟ ଅଟୁ । ତୁ ତୋର କାର୍ଯ୍ୟର ଫଳ ଅବଶ୍ୟ ପାଅ ।୨୩।

ତୁ ଯାହାଙ୍କୁ ସର୍ବଦା ସ୍ପର୍ଦ୍ଧା କରୁ ଓ ଯାହାଙ୍କୁ ପରାଜୟ କରିବା-ନିମିତ୍ତ ବିଶେଷ ଚେଷ୍ଟା କରୁଅଛୁ, ତାହାଙ୍କ ସହିତ ଯୁଦ୍ଧ କରିବା-ସମୟରେ ତୋର ରଥଚକ୍ରକୁ ଭୂମି ଗ୍ରାସ କରିବ ।୨୪।

ରେ ନରାଧମ ! ତୋର ରଥଚକ୍ର ପୃଥିବୀ ଗ୍ରାସ କଲାପରେ ଶତ୍ରୁମାନେ ତୋତେ ଆକ୍ରମଣ କରି ନିହତ କରିବେ ।୨୫।

ରେ ମୂଢ଼ ! ତୁ ଯେପରି ପ୍ରମତ୍ତ ହୋଇ ଆମ୍ଭର ଧେନୁକୁ ନିହତ କରିଅଛୁ, ସେହିପରି ଶତ୍ରୁମାନେ ପ୍ରମତ୍ତ ହୋଇ ତୋର ଶିରଚ୍ଛେଦନ କରିବେ ।୨୬।

ତହୁଁ କର୍ଣ୍ଣ ବ୍ରାହ୍ମଣଙ୍କଠାରୁ ଶାପ ପ୍ରାପ୍ତ ହୋଇ ଦ୍ୱିଜସତ୍ତମଙ୍କୁ ଗୋ, ଧନ ଓ ରତ୍ନଦାନଦ୍ୱାରା ପ୍ରସନ୍ନ କରିବାକୁ ବିଶେଷ ଚେଷ୍ଟା କଲେ । ତଦନନ୍ତର ବ୍ରାହ୍ମଣ କହିଲେ—ଆମ୍ଭର ବଚନ କୌଣସି ଲୋକରେ ସୁଦ୍ଧା ମିଥ୍ୟା ହେବାର ନୁହେଁ । ତୁମ୍ଭେ ଏଠାରୁ ପ୍ରସ୍ଥାନ କର ବା ଏଠାରେ ଅବସ୍ଥାନ କର କିମ୍ବା ତୁମ୍ଭର ଯେଉଁ କାର୍ଯ୍ୟ କରିବାର ଇଚ୍ଛା ହୁଏ ତାହା କର ।୨୮।

ବ୍ରାହ୍ମଣ ଏହିପରି କହନ୍ତେ କର୍ଣ୍ଣ ଦୁଃଖିତମନରେ ଅଧୋମୁଖ ହୋଇ ଶାପ ବଚନକୁ ଚିନ୍ତା କରି କରି ପରଶୁରାମଙ୍କ ନିକଟକୁ ଗମନ କଲେ ।୨୯।

---

# ତୃତୀୟ ଅଧ୍ୟାୟ

ନାରଦ କହିଲେ—ଅନନ୍ତର ଭୃଗୁଶ୍ରେଷ୍ଠ ପରଶୁରାମ କର୍ଣ୍ଣଙ୍କର ବାହୁବଳ, ପ୍ରଣୟ, ଦମଗୁଣ, ଓ ଶୁଶ୍ରୂଷା ହେତୁରୁ ତାହାଙ୍କ ପ୍ରତି ଅତ୍ୟନ୍ତ ସନ୍ତୁଷ୍ଟ ହେଲେ ।୧।

ତପସ୍ୱୀ ପରଶୁରାମ ଏକାଗ୍ରଚିତ୍ତ ହୋଇ ବ୍ରହ୍ମାସ୍ତ୍ର ଓ ତାହାର ଉପସଂହାର ଓ ଦେବତାରାଧନା ସମସ୍ତ ମନ୍ତ୍ରାଦି ବିଧିପୂର୍ବକ ତପସ୍ୱୀ କର୍ଣ୍ଣଙ୍କୁ ଶିକ୍ଷା କରାଇଲେ ।୨।

ଅନନ୍ତର ପ୍ରବଳ ପରାକ୍ରାନ୍ତ କର୍ଣ୍ଣ ବ୍ରହ୍ମାସ୍ତ୍ରକୁ ବିଦିତ ହୋଇ ଓ ଧନୁର୍ବେଦଶିକ୍ଷାରେ ଯତ୍ନ କରି ପରମସୁଖରେ ଭୃଗୁଙ୍କର ଶ୍ରମରହିତ ଆଶ୍ରମରେ ବାସ କଲେ ।୩।

ତତ୍ପରେ ଏକଦା ଧୀମାନ୍ ଗୁରୁ ପରଶୁରାମ ଉପବାସରେ କର୍ଷିତ ହୋଇ ଆଶ୍ରମନିକଟରେ କର୍ଣ୍ଣଙ୍କ ସହିତ ଭ୍ରମଣ କରୁ କରୁ ନିତାନ୍ତ ବିଶ୍ରାନ୍ତ ହୋଇ ପଡ଼ିଲେ । ତହୁଁ ସେ କର୍ଣ୍ଣଙ୍କ କୋଡ଼ରେ ମସ୍ତକ ସ୍ଥାପନ କରି ବିଶ୍ୱସ୍ତଚିତ୍ତରେ ଶୟନ କଲେ ।୪।

ଏମନ୍ତ ସମୟରେ ଗୋଟିଏ ମେଦ, ମାଂସ, ଶ୍ଳେଷ୍ମ ଓ ଶୋଣିତ-ଭୋଜୀ ଦାରୁଣ କୀଟ କର୍ଣ୍ଣଙ୍କ ନିକଟରେ ସମୁପସ୍ଥିତ ହେଲା ।୫।

ସେହି ରକ୍ତଲୋଲୁପ କୀଟ କର୍ଣ୍ଣଙ୍କର ଊରୁଦେଶକୁ ପ୍ରାପ୍ତ ହୋଇ ତାହାକୁ ଭେଦ କଲା । କର୍ଣ୍ଣ, ଗୁରୁଙ୍କର ନିଦ୍ରାଭଙ୍ଗ ହେବା ଭୟରେ ସେହି କୀଟକୁ ବିନଷ୍ଟ କରି ପାରିଲେ ନାହିଁ କିମ୍ବା ତାହାକୁ ଦୂରକୁ ନିକ୍ଷେପ କରି ପାରିଲେ ନାହିଁ ।୬।

ହେ ଭରତ ! ସୂର୍ଯ୍ୟପୁତ୍ର କର୍ଣ୍ଣଙ୍କୁ ସେହି କୃମି ଦଂଶନ କଲେ ସୁଦ୍ଧା ସେ ଗୁରୁଙ୍କର ନିଦ୍ରାଭଙ୍ଗ ହେବାର ଆଶଙ୍କା କରି, ସେହି କୀଟକୁ ଉପେକ୍ଷା କଲେ ।୭।

କର୍ଣ୍ଣ ସେହି କୀଟଦଂଶନଜନିତ ଅସହ୍ୟ ବେଦନାକୁ ସହ୍ୟ କରି ଓ ଧୈର୍ଯ୍ୟାବଲମ୍ବନପୂର୍ବକ ଭୃଗୁଦେବଙ୍କୁ ଅକମ୍ପିତ ଦେହରେ ଧାରଣ କଲେ ।୮।

ଯେତେବେଳେ କର୍ଣ୍ଣଙ୍କର ଊରୁରୁ ରକ୍ତ ବହିର୍ଗତ ହୋଇ ପରଶୁରାମଙ୍କ ଦେହକୁ ସ୍ପର୍ଶ କଲା, ସେତେବେଳେ ସେହି ତେଜସ୍ୱୀ ପରଶୁରାମ ତାହା ଜାଣି ଯାଇ ସନ୍ତ୍ରସ୍ତଚିତ୍ତରେ କର୍ଣ୍ଣଙ୍କୁ କହିଲେ ।୧୦।

ଅହୋ ! ଆମ୍ଭେ ଅଶୁଚି ହେଲୁଁ । ତୁମ୍ଭେ କି କାର୍ଯ୍ୟ କଲ । ଭୟ ପରିତ୍ୟାଗପୂର୍ବକ ଯଥାର୍ଥ ଘଟଣା ଆମ୍ଭଠାରେ କହ ।୧୧।

ତତ୍କାଳରେ କର୍ଣ୍ଣ ଗୁରୁଙ୍କ ନିକଟରେ (ସ୍ୱକୀୟ) ଦେହକୁ କୃମି ଭକ୍ଷଣ କରିଥିବା ବିଷୟ ବର୍ଣ୍ଣନା କଲେ । ପରଶୁରାମ ସେହି କୃମିକୁ ଶୂକର ସଦୃଶ ଦର୍ଶନ କଲେ ।୧୨। ସେହି କୃମିର ଅଷ୍ଟପାଦ ଓ ଦନ୍ତ ତୀକ୍ଷ୍ଣ ଅଟେ ଏବଂ ତାହାର ସର୍ବାଙ୍ଗ ସୂଚୀସଦୃଶ ଲୋମଜାଲରେ ସଂବୃତ । ସେହି କୀଟ ଅଳର୍କନାମରେ ପ୍ରସିଦ୍ଧ ଅଟେ । ୧୩ ।

ପରଶୁରାମ ସେହି କୃମି ପ୍ରତି ଦୃଷ୍ଟି (ନିକ୍ଷେପ) କରିବାମାତ୍ରେ ସେହି କୀଟ ରକ୍ତ ମଧ୍ୟରେ ପ୍ରାଣତ୍ୟାଗ କଲା । ତାହା ଅଦ୍ଭୁତପ୍ରାୟ ହେଲା ।୧୪।

ଅନନ୍ତର ଗୋଟିଏ କୃଷ୍ଣାଙ୍ଗ ଭୟଙ୍କର କାମରୂପୀ ଲୋହିତଗ୍ରୀବ ରାକ୍ଷସ ପୂର୍ଣ୍ଣମାନସ ଓ ବଦ୍ଧାଞ୍ଜଳି (ହୋଇ) ପରଶୁରାମଙ୍କୁ କହିଲା । ହେ ଭୃଗୁଶାର୍ଦ୍ଦୂଳ । ଆପଣଙ୍କର ମଙ୍ଗଳ ହେଉ । ଆମ୍ଭେ ଯେଉଁଠାରୁ ଆସିଥିଲୁ ସେହି ସ୍ଥାନକୁ ଯାଉଅଛୁଁ । ୧୫ ।

ହେ ମୁନିସତ୍ତମ ! ଆପଣ ମୋର ପ୍ରିୟକାର୍ଯ୍ୟ ସମ୍ପାଦନ କରି ଅଛନ୍ତି । ଆପଣଙ୍କର ମଙ୍ଗଳ ହେଉ । ଆମ୍ଭେ ଆପଣଙ୍କୁ ନମସ୍କାର କରୁଅଛୁଁ । ଆମ୍ଭଙ୍କୁ ଆପଣ ନରକରୁ ମୁକ୍ତ କରିଅଛନ୍ତି । ୧୬ ।

ସେହି କୀଟ ଏହିପରି କହିବାରୁ ମହାବାହୁ ପ୍ରତାପବାନ୍ ଜାମଦଗ୍ନ୍ୟ ତାହାଙ୍କୁ କହିଲେ ? ତୁମ୍ଭେ କିଏ ? ତୁମ୍ଭେ କି ନିମିତ୍ତ ନରକଗାମୀ ହୋଇଥିଲ । ୧୮ ।

ରାକ୍ଷସ କହିଲା, "ହେ ଭଗବନ୍ ! ଆମ୍ଭେ ସତ୍ୟଯୁଗରେ ଦଂଶ ନାମକ ଜଣେ ମହାସୁର ଥିଲୁଁ । ପୂର୍ବକାଳରେ ଆପଣଙ୍କର ପ୍ରପିତାମହ ଭୃଗୁ ଓ ଆମ୍ଭେ ସମବୟସ୍କ ଥିଲୁଁ । ୧୯ ।

ଆମ୍ଭେ ମହର୍ଷି ଭୃଗୁଙ୍କର ପ୍ରିୟତମା ଭାର୍ଯ୍ୟାଙ୍କୁ ବଳପୂର୍ବକ ହରଣ କରିବାରୁ ସେ ଆମ୍ଭଙ୍କୁ 'ପୃଥିବୀରେ କୃମି ହୋଇ ଜନ୍ମ ହେବୁ' ବୋଲି ଶାପ ଦେଇଥିଲେ । ୨୦ ।

ଆପଣଙ୍କର ପୂର୍ବ ପିତାମହ ଭୃଗୁ କ୍ରୋଧାନ୍ୱିତ ହୋଇ ଆମ୍ଭଙ୍କୁ କହିଥିଲେ ଯେ ଆମ୍ଭେ ମୂତ୍ର-ଶ୍ଳେଷ୍ମଭୋଜୀ କୀଟ ହୋଇ ନରକରେ ପତିତ ହେବୁଁ । ୨୧ ।

ସେହି ମହର୍ଷି ଅଭିଶାପ ଦେଲାପରେ ଆମ୍ଭେ ତାହାଙ୍କୁ କ୍ଷମା-ପ୍ରାର୍ଥନା କରିଥିଲୁଁ; କିନ୍ତୁ ଭୃଗୁ କହିଲେ ଆମ୍ଭର ବଂଶରେ ପରଶୁରାମ ଜନ୍ମ ହେଲେ ତାଙ୍କଠାରୁ ତୋ ମୁକ୍ତି ଲାଭ ହେବ । ୨୨ ।

ସେହିହେତୁ ଆମ୍ଭେ ଏହି ଦୁର୍ଗତିକୁ ପ୍ରାପ୍ତ ହୋଇଅଛୁଁ । ବର୍ତ୍ତମାନ ଆପଣଙ୍କପରି ସାଧୁବ୍ୟକ୍ତିଙ୍କ ସମାଗମ ହେତୁରୁ ପାପଯୋନିରୁ ମୁକ୍ତ ହେଲୁଁ । ୨୩ ।

ମହାସୁର ଏକଥା କହି ପରଶୁରାମଙ୍କୁ ନମସ୍କାରପୂର୍ବକ ପ୍ରସ୍ଥାନ କଲା ଓ ପରଶୁରାମ କ୍ରୋଧପରିତନ୍ତ୍ର ହୋଇ କର୍ଣ୍ଣଙ୍କୁ କହିଲେ । ୨୪ ।

ରେ ମୂଢ଼! କୀଟଦଂଶନଜନିତ ଯେଉଁ କଷ୍ଟକୁ ସହ୍ୟ କରିଅଛ ତାହା ବ୍ରାହ୍ମଣ କଦାପି ସହି ପାରନ୍ତା ନାହିଁ । ଆମ୍ଭେ କ୍ଷତ୍ରିୟମାନଙ୍କ ସଦୃଶ ଧୈର୍ଯ୍ୟଗୁଣକୁ ତୁମ୍ଭଠାରେ ଦେଖୁଅଛୁଁ । ଅତଏବ ତୁମ୍ଭେ ଅବିଳମ୍ବରେ ସତ୍ୟ କଥା କହ । ୨୫ ।

କର୍ଣ୍ଣ ତେତେବେଳେ ପରଶୁରାମଙ୍କଠାରୁ ଅଭିଶପ୍ତ ହେବାର ଶଙ୍କା କରି ତାହାଙ୍କୁ ପ୍ରସନ୍ନ କରିବା ଇଚ୍ଛାରେ କହିଲେ—ହେ ଭାର୍ଗବ! ଆମ୍ଭେ ବ୍ରାହ୍ମଣ ଓ କ୍ଷତ୍ରିୟ ଉଭୟଙ୍କର ଔରସରେ ଜାତ ହୋଇଅଛୁଁ । ଅର୍ଥାତ୍ ଆମ୍ଭେ ସୂତ ଅଟୁଁ । ୨୬ ।

ଲୋକମାନେ ଆମ୍ଭଙ୍କୁ ରାଧାପୁତ୍ର କର୍ଣ୍ଣ ବୋଲି କହନ୍ତି । ଆପଣ ଆମ୍ଭପ୍ରତି ପ୍ରସନ୍ନ ହୁଅନ୍ତୁ । ଅସ୍ତ୍ର ଲୋଭରେ ଆମ୍ଭେ ଆପଣଙ୍କର ଶିଷ୍ୟ ହୋଇଅଛୁଁ । ୨୭ ।

ବେଦବିଦ୍ୟାପ୍ରଦ ପ୍ରଭୁ ଗୁରୁ ପିତାଙ୍କ ସମାନ ଅଟନ୍ତି । ଏହି ହେତୁରୁ ଆମ୍ଭେ ଭୃଗୁ-ଗୋତ୍ରସମ୍ଭୂତ ବୋଲି ଆପଣଙ୍କଠାରେ ପରିଚୟ ଦେଇଥିଲୁଁ । ୨୮ ।

ଏହା କହି କର୍ଣ୍ଣ କାତରଚିତ୍ତରେ ଓ କମ୍ପିତ କଳେବରରେ କୃତାଞ୍ଜଳି ହୋଇ ଭୂତଳରେ ପତିତ ହେଲେ । ତାହା ଦେଖି ଭୃଗୁଶ୍ରେଷ୍ଠ ପରଶୁରାମ ହାସ୍ୟପୂର୍ବକ ହୃଷ୍ଟଚିତ୍ତରେ କହିଲେ । ୨୯ ।

ରେ ମୂଢ଼ ! ତୁମ୍ଭେ ଅସ୍ତ୍ରଲୋଭରେ ଆମ୍ଭ ନିକଟରେ ମିଥ୍ୟାକଥା କହିଅଛ । ଅତଏବ ଏହି ବ୍ରହ୍ମାସ୍ତ୍ର ତୁମ୍ଭର ମରଣସମୟରେ ତୁମ୍ଭ ସଦୃଶ ଶତ୍ରୁ ସଙ୍ଗତରେ ପ୍ରତିଭା ପ୍ରକାଶ କରିବ ନାହିଁ । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ସମୟରେ କାର୍ଯ୍ୟକର ହେବ । ବ୍ରହ୍ମାସ୍ତ୍ର କଦାପି ଅବ୍ରାହ୍ମଣଠାରେ ମରଣାବଧି ରହିବ ନାହିଁ । ୩୧ ।

ବର୍ତ୍ତମାନ ତୁମ୍ଭେ ଏହି ସ୍ଥାନରୁ ପ୍ରସ୍ଥାନ କର । ଏଠାରେ ମିଥ୍ୟାବାଦୀ ଲୋକମାନଙ୍କର ରହିବାର ସ୍ଥାନ ନାହିଁ । ଆହୁରି ମଧ୍ୟ କୌଣସି କ୍ଷତ୍ରିୟ ତୁମ୍ଭ ସହିତ ଯୁଦ୍ଧ କରିପାରିବେ ନାହିଁ । ୩୨ ।

ପରଶୁରାମଙ୍କଦ୍ୱାରା ଏହିପରି କଥିତ ହୋଇ କର୍ଣ୍ଣ ଭାର୍ଗବଙ୍କୁ ଅଭିବାଦନାଦି କଲେ ଓ ତତ୍ପରେ ଦୁର୍ଯ୍ୟୋଧନଙ୍କ ନିକଟକୁ ଆଗମନ କରି ତାହାଙ୍କୁ କହିଲେ ଯେ ମୁଁ ସମସ୍ତ ଅସ୍ତ୍ରଶସ୍ତ୍ରରେ ପାରଦର୍ଶିତା ଲାଭ କରିଅଛି । ୩୩ ।

---

## ଚତୁର୍ଥ ଅଧ୍ୟାୟ

ନାରଦ କହିଲେ—ହେ ଭରତର୍ଷଭ ! ଏହି ପ୍ରକାରେ କର୍ଣ୍ଣ ଭାର୍ଗବନନ୍ଦନଙ୍କଠାରୁ ଅସ୍ତ୍ର ଲାଭ କରି, ଦୁର୍ଯ୍ୟୋଧନଙ୍କ ସହିତ ଅହ୍ଲାଦ ମନରେ କାଳ ଯାପନ କଲେ । ୧ ।

ଅନନ୍ତର ଏକଦା ଶତସଂଖ୍ୟକ ରାଜାମାନେ କଳିଙ୍ଗଦେଶର ରାଜା ଚିତ୍ରାଙ୍ଗଦଙ୍କର ରାଜପୁରନାମକ ଗଡ଼କୁ କନ୍ୟାଲାଭାର୍ଥ ସ୍ୱୟମ୍ବର-ସଭାକୁ ଗମନ କଲେ । ୩ ।

ଦୁର୍ଯ୍ୟୋଧନ ମଧ୍ୟ ରାଜାମାନଙ୍କର ଯିବା କଥା ଶୁଣି ସ୍ୱୟଂ ସୁବର୍ଣ୍ଣମଣ୍ଡିତ ରଥରେ ଆରୋହଣପୂର୍ବକ କର୍ଣ୍ଣଙ୍କ ସହିତ ପ୍ରସ୍ଥାନ କଲେ । ୪ ।

ହେ ନୃପଶ୍ରେଷ୍ଠ ! ତଦନନ୍ତର ସେହି ମହୋତ୍ସବରେ ଯୋଗଦାନ କରିବାନିମିତ୍ତ ଓ କନ୍ୟାଲାଭାର୍ଥ ରାଜାମାନେ ସ୍ୱୟମ୍ବର ସଭାକୁ ଆଗମନ କଲେ । ୫ ।

ମହାରାଜ ଶିଶୁପାଳ, ଜରାସନ୍ଧ, ଭୀଷ୍ମକ, ବକ୍ର, କପୋତରୋମା, ନୀଳ, ଦୃଢ଼ବିକ୍ରମ, ରୁକ୍ମୀ, ସ୍ତ୍ରୀରାଜାଧିପତି ସୃଗାଳ, ଅଶୋକ, ଶତଧନ୍ୱା, ଭୋଜ ଓ ବୀରନାମକ ରାଜାମାନେ ଓ ଅନ୍ୟାନ୍ୟ ଦକ୍ଷିଣ, ପଶ୍ଚିମ ଓ ଉତ୍ତର ଦେଶର କାଞ୍ଚନାଙ୍ଗଦଧାରୀ, ସବର୍ଣ୍ଣବର୍ଣ୍ଣ, ବ୍ୟାଘ୍ର ସଦୃଶ ବଳଶାଳୀ ମ୍ଳେଚ୍ଛାଧିପତି ପ୍ରମୁଖ ଅସଂଖ୍ୟ ରାଜାମାନେ ସେହି ସଭାକୁ ଆଗମନ କରିଥିଲେ । ୯ ।

ତଦନନ୍ତର ସେହି ସବୁ ରାଜାମାନେ ଉପବିଷ୍ଟ ହୁଅନ୍ତେ ରାଜକନ୍ୟା ଧାତ୍ରୀ ଓ ବର୍ଷବରମାନଙ୍କ ସହିତ ସଭାମଧ୍ୟରେ ପ୍ରବିଷ୍ଟ ହେଲେ । ୧୦ ।

ତତ୍ପରେ ସେହି ବରବର୍ଣ୍ଣିନୀ କନ୍ୟା ରାଜାମାନଙ୍କର ନାମ ଶ୍ରବଣ କରି ସେମାନଙ୍କ କ୍ରମରେ ଅତିକ୍ରମ କଲେ ଓ ଧୃତରାଷ୍ଟ୍ର-ପୁତ୍ର ଦୁର୍ଯ୍ୟୋଧନଙ୍କୁ ମଧ୍ୟ ଅତିକ୍ରମ କରିଗଲେ । ୧୧ ।

କିନ୍ତୁ କୌରବରାଜ ଦୁର୍ଯ୍ୟୋଧନ ସେହି ଲଙ୍ଘନକୁ ସହି ନ ପାରି ଅନ୍ୟାନ୍ୟ ରାଜାମାନଙ୍କୁ ଅସମ୍ମାନ-ପ୍ରଦର୍ଶନପୂର୍ବକ ଉକ୍ତ କନ୍ୟାଙ୍କୁ ପ୍ରତିଷେଧ ଅର୍ଥାତ୍ ନିବାରଣ କଲେ । ୧୨ ।

ଅନନ୍ତର ସେ ଭୀଷ୍ମ ଓ ଦ୍ରୋଣଙ୍କର ସାହାଯ୍ୟରେ ବୀର୍ଯ୍ୟମଦମତ୍ତ ହୋଇ କନ୍ୟାଙ୍କୁ ରଥରେ ଆରୋହଣପୂର୍ବକ ଗମନ କଲେ । ୧୩ ।

ଶସ୍ତ୍ରଧାରୀ ପ୍ରବର ଗୋଧାଙ୍ଗୁଳିତ୍ରବାନ୍ ରଥୀ କର୍ଣ୍ଣ ଖଡ଼୍‌ଗଧାରଣପୂର୍ବକ ଦୁର୍ଯ୍ୟୋଧନଙ୍କର ଅନୁଗମନ କଲେ । ୧୪ ।

ଏହିପ୍ରକାରେ ଦୁର୍ଯ୍ୟୋଧନ କନ୍ୟା ହରଣ କରିବାରୁ ରାଜାମାନେ ଯୁଦ୍ଧେଚ୍ଛୁ ହୋଇ ଓ ବର୍ମ୍ମ ଧାରଣପୂର୍ବକ ରଥ ଯୋଜନା କରି ତୁମୁଳ ସଂଗ୍ରାମ କରିବାରେ ପ୍ରବୃତ୍ତ ହେଲେ । ୧୫ ।

ମେଘ ପର୍ବତ ଉପରେ ବାରିବର୍ଷଣ କଲା ପ୍ରାୟ, ସେହି ରାଜାମାନେ କ୍ରୋଧାକ୍ରାନ୍ତ ହୋଇ କର୍ଣ୍ଣ ଓ ଦୁର୍ଯ୍ୟୋଧନଙ୍କ ଉପରେ ଶରବର୍ଷଣ କଲେ । ୧୬ ।

ପର କର୍ଣ୍ଣ ଏକା ଏକ ଶରଦ୍ୱାରା ସେହି ସବୁ ଆକ୍ରମଣକାରୀ ମାନଙ୍କର ଧନୁ ଓ ଶରାସନକୁ ଛେଦନ କରି, ଭୂତଳରେ ନିପାତିତ କଲେ । ୧୭ ।

ତଦନନ୍ତର କର୍ଣ୍ଣଙ୍କର ହସ୍ତଲାଘବ ପ୍ରଭାବରେ ସେହି ସବୁ ରାଜାମାନଙ୍କ ମଧ୍ୟରୁ କେତେକ, ଧନୁ ଓ ସାରଥିବିହୀନ ହେଲେ ଓ କେତେକ ଉଦ୍ୟତକାର୍ମୁକ ହୋଇ ରଥ, ଶକ୍ତି, ବାଣ ଓ ଗଦାମାନଙ୍କୁ ବହନ କଲେ । ଏହିପ୍ରକାରେ ପ୍ରହାରିଶ୍ରେଷ୍ଠ କର୍ଣ୍ଣ ବହୁସଂଖ୍ୟକ ରାଜାମାନଙ୍କୁ ଆକୁଳିତ ଓ ପରାଜିତ କଲେ । ୧୯ ।

ଉକ୍ତ ରାଜାମାନେ ପରାଜିତ ହୋଇ ଭଗ୍ନାନ୍ତଃକରଣରେ ଯାଅ ଯାଅ ବୋଲି କହିଲେ ଓ ସ୍ୱୟଂ ଅଶ୍ୱସଞ୍ଚାଳନପୂର୍ବକ କମ୍ପିତ କଳେବରରେ ରଣସ୍ଥଳକୁ ପରିତ୍ୟାଗ କଲେ । ୨୦ ।

ଦୁର୍ଯ୍ୟୋଧନ ମଧ୍ୟ କର୍ଣ୍ଣଙ୍କଦ୍ୱାରା ରକ୍ଷିତ ହୋଇ କନ୍ୟାଗ୍ରହଣପୂର୍ବକ ହୃଷ୍ଟଚିତ୍ତରେ ହସ୍ତିନାନଗରକୁ ଗମନ କଲେ । ୨୧ ।

---

## ପଞ୍ଚମ ଅଧ୍ୟାୟ

ନାରଦ କହିଲେ—ତତ୍ପରେ ମଗଧଦେଶାଧିପତି ଜରାସନ୍ଧ କର୍ଣ୍ଣଙ୍କର ବ୍ୟକ୍ତୀକୃତ ବଳବୀର୍ଯ୍ୟବିଷୟ ଶ୍ରବଣ କରି ତାହାଙ୍କୁ ଦ୍ୱୈରଥ ଯୁଦ୍ଧରେ ଆହ୍ୱାନ କଲେ । ୧ ।

ସେହି ଦିବ୍ୟାସ୍ତ୍ରବିଶାରଦ ବୀର ଦୁହେଁ ଯୁଦ୍ଧରେ ପ୍ରବୃତ୍ତ ହେଲେ । ପରିଶେଷରେ ସେମାନେ ନାନାପ୍ରକାର ପ୍ରହାରଦ୍ୱାରା ଓ ପରସ୍ପର ପ୍ରତି ଶରବର୍ଷଣଦ୍ୱାରା କ୍ଷୀଣବାଣ, ଧନୁର୍ବିହୀନ ଓ ଭଗ୍ନଖଡ୍ଗ ହୋଇ ଭୂତଳରେ ପତିତ ହେଲେ । ତତ୍ପରେ ସେହି ବଳବାନ୍ ବୀର ଦୁହେଁ ବାହୁଦ୍ୱାରା ଯୁଦ୍ଧ କରିବାକୁ ଆରମ୍ଭ କଲେ । ୩ ।

ସେହି ବାହୁକଣ୍ଟକ ଯୁଦ୍ଧରେ କର୍ଣ୍ଣ ଜରାସନ୍ଧଙ୍କର ଦେହସ୍ଥିତ ଜରାରାକ୍ଷସୀ ସଂଯୋଜିତ ସନ୍ଧିକ ଭେଦ କଲେ । ୪ ।

ତେତେବେଳେ ଜରାସନ୍ଧ ସ୍ୱକୀୟ ଶରୀରର ବିକାରକୁ ଦର୍ଶନ କରି, କର୍ଣ୍ଣଙ୍କ ପ୍ରତି ବୈରଭାବ ପରିତ୍ୟାଗପୂର୍ବକ ତାହାଙ୍କୁ କହିଲେ "ହେ କର୍ଣ୍ଣ ! ଆମ୍ଭେ ତୁମ୍ଭପ୍ରତି ସନ୍ତୁଷ୍ଟ ହୋଇଅଛୁଁ । ୫ ।

ଅନନ୍ତର ସେ କର୍ଣ୍ଣଙ୍କ ପ୍ରତି ପ୍ରସନ୍ନ ହୋଇ ତାହାଙ୍କୁ ମାଲିନୀ ନଗରକୁ ପ୍ରଦାନ କଲେ । ହେ ରାଜନ୍! ସେହିକାଳରେ କର୍ଣ୍ଣ ଅଙ୍ଗଦେଶର ରାଜା ଥିଲେ । ୭ ।

ସେ ଦୁର୍ଯ୍ୟୋଧନଙ୍କର ଆଦେଶାନୁସାରେ ଚମ୍ପାନଗରୀକୁ ମଧ୍ୟ ଶାସନ କରୁଥିଲେ । ଏ କଥା ଆପଣଙ୍କର ମଧ୍ୟ ଅବିଦିତ ନାହିଁ । ୮ ।

ଏହିପ୍ରକାରେ କର୍ଣ୍ଣ ସ୍ୱୀୟବଳଦ୍ୱାରା ପୃଥିବୀରେ ଖ୍ୟାତି ଲାଭ କଲେ । ଦିନେ ଇନ୍ଦ୍ରଦେବ ଆପଣଙ୍କର ହିତସାଧନ କରିବାନିମିତ୍ତ କର୍ଣ୍ଣଙ୍କଠାରେ ତାହାଙ୍କର ବର୍ମ ଓ କୁଣ୍ଡଳଦ୍ୱୟକୁ ଭିକ୍ଷା ମାଗିବାରୁ କର୍ଣ୍ଣ ଦେବମାୟାଦ୍ୱାରା ବିମୋହିତ ହୋଇ ତାହାଙ୍କର ଦିବ୍ୟ ସହଜକବଚ ଓ ପରମାର୍ଚ୍ଚିତ କୁଣ୍ଡଳଦ୍ୱୟକୁ ଇନ୍ଦ୍ରଙ୍କୁ ପ୍ରଦାନ କରିଥିଲେ । ୯ ।

ମହାବୀର କର୍ଣ୍ଣ ସହଜକବଚ ଓ କୁଣ୍ଡଳଯୁଗଳବିହୀନ ହେବାରୁ ତାହାଙ୍କୁ ଅର୍ଜ୍ଜୁନ ବାସୁଦେବଙ୍କ ସାକ୍ଷାତରେ ନିହତ କରିଅଛନ୍ତି । ୧୦ ।

ବ୍ରାହ୍ମଣ ଓ ମହାତ୍ମା ପରଶୁରାମଙ୍କ ଶାପହେତୁରୁ, କୁନ୍ତୀଙ୍କୁ ବରଦାନ କରିବାରୁ, ଇନ୍ଦ୍ର ଦେବମାୟା ପ୍ରକାଶ କରିବାରୁ, ରଥାତିରଥ ସଂଖ୍ୟା ହେବା ସମୟରେ ଭୀଷ୍ମ କର୍ଣ୍ଣଙ୍କୁ ଅର୍ଦ୍ଧରଥ ବୋଲି କହିବାରୁ, ଶଲ୍ୟ କର୍ଣ୍ଣଙ୍କର ତେଜୋନାଶ କରିବାରୁ, ବାସୁଦେବ ମାନ୍ତ ଉଦ୍ଭାବନ କରିବାରୁ ଓ ଅର୍ଜ୍ଜୁନ, ରୁଦ୍ର, ଇନ୍ଦ୍ର, ଯମ, ବରୁଣ, କୁବେର, ଦ୍ରୋଣ ଓ ମହାତ୍ମା କୃପ ଏମାନଙ୍କଠାରୁ ଦିବ୍ୟ ଅସ୍ତ୍ର ସବୁ ପ୍ରାପ୍ତ ହେବାରୁ, ସୂର୍ଯ୍ୟସମ ପ୍ରଭା-ସମ୍ପନ୍ନ ବୈଭବସମ୍ପନ୍ନ କର୍ଣ୍ଣ ଗାଣ୍ଡୀବଧନ୍ୱା ଅର୍ଜ୍ଜୁନଙ୍କଦ୍ୱାରା ଯୁଦ୍ଧରେ ନିହତ ହେଲେ । ୧୪ ।

ଆପଣଙ୍କର ଭ୍ରାତା ନରୋତ୍ତମ କର୍ଣ୍ଣ ଏହିପ୍ରକାରେ ଅଭିଶପ୍ତ ହୋଇ ଓ ବହୁବ୍ୟକ୍ତିଙ୍କଦ୍ୱାରା ବଞ୍ଚିତ ହୋଇ, ନିଧନ ପ୍ରାପ୍ତ ହେଲେ । ଅତଏବ ତାଙ୍କ ସକାଶେ ଆପଣଙ୍କର ଶୋକ କରିବା ଉଚିତ ନୁହେଁ । ୧୫।



## ଷଷ୍ଠ ଅଧ୍ୟାୟ

ବୈଶମ୍ପାୟନ କହିଲେ—ଦେବର୍ଷି ନାରଦ ଏହି ସବୁ କଥା କହି ତୂଷ୍ଣୀଂଭାବ ଧାରଣ କରିବାରୁ, ରଜା ଯୁଧିଷ୍ଠିର ଶୋକାଭିଭୂତ ହୋଇ ଭ୍ରାତୃବଧଜନିତ ଦୋଷକୁ ଚିନ୍ତା କଲେ । ୧ ।

ନମ୍ରବକ୍ତ୍ର ଦୀନଚିତ୍ତ, ଶୋକାକୁଳ, ଆତୁର, ଅଶ୍ରୁପୂର୍ଣ୍ଣଲୋଚନ, ନରବର ଯୁଧିଷ୍ଠିରଙ୍କ ସର୍ପପ୍ରାୟ ନିଃଶ୍ୱାସ ପରିତ୍ୟାଗ କରୁଥିବାର ଦେଖି ଦୁଃଖୋପହତଚେତନା ଶୋକପୂର୍ଣ୍ଣା କୁନ୍ତୀ ତାହାଙ୍କୁ ମଧୁର ଭାଷାରେ ଅର୍ଥଯୁକ୍ତ ବଚନକୁ କହିଲେ । ୩ ।

ହେ ମହାବାହୁ ଯୁଧିଷ୍ଠିର ! ତୁମ୍ଭର କର୍ଣ୍ଣଙ୍କ ନିମିତ୍ତ ଶୋକ କରିବା ଉଚିତ ନୁହେଁ । ତୁମ୍ଭେ ଆମ୍ଭର କଥା ମାନି ଶୋକ ପରିତ୍ୟାଗ କର । ୪ ।

ହେ ଧର୍ମରାଜ ! ପୂର୍ବେ ଆମ୍ଭେ ଓ କର୍ଣ୍ଣଙ୍କର ପିତା ଭାସ୍କର ତୁମ୍ଭଙ୍କ; କର୍ଣ୍ଣ ତୁମ୍ଭର ଭ୍ରାତା ବୋଲି ବିଜ୍ଞାପିତ କରିବା ନିମିତ୍ତ ଯତ୍ନ କରିଥିଲୁଁ । ୫ ।

ହିତାକାଙ୍କ୍ଷୀ ସୁହୃଦ ହିତକାମନା କରି ଯେପରି କଥା କହେ, ଦିବାକର ଆମ୍ଭ ସାକ୍ଷାତରେ କର୍ଣ୍ଣଙ୍କର ସ୍ୱପ୍ନଶେଷରେ ତାହାଙ୍କୁ ସେହିପରି ହିତକର ବାକ୍ୟ କହିଥିଲେ । ୬ ।

କିନ୍ତୁ ଆମ୍ଭେ କିଂବା ମର୍ତ୍ତ୍ୟଦେବ କେହି ସୁଦ୍ଧା ସ୍ନେହବଚନଦ୍ୱାରା ଏହାଙ୍କୁ ତୁମ୍ଭ ସହିତ ମିଳିତ କରାଇବାକୁ କିମ୍ବା ଶାନ୍ତିଲାଭ କରାଇବାକୁ ସମର୍ଥ ହେଲୁନାହିଁ । ୭ ।

ତଦନନ୍ତର କର୍ଣ୍ଣ ମୃତ୍ୟୁଗ୍ରସ୍ତ ହୋଇ ଶତ୍ରୁମାନଙ୍କୁ ଉଦ୍ଧାର କରିବାରେ ରତ ହେଲେ । ସେ ତୁମ୍ଭମାନଙ୍କ ପ୍ରତିକୂଳରେ ଆଚରଣ କରିବାରୁ ଆମ୍ଭେ ତାଙ୍କ ପ୍ରତି ଉପେକ୍ଷା ପ୍ରଦର୍ଶନ କଲୁଁ । ୮ ।

ମାତା କୁନ୍ତୀ ଏହି କଥା କହନ୍ତେ ଧର୍ମାତ୍ମା ଶୋକାକୁଳଚିତ୍ତ ଯୁଧିଷ୍ଠିର ବାଷ୍ପାକୁଳିତଲୋଚନ ହୋଇ କହିଲେ—ହେ ମାତଃ ! ଆପଣ କର୍ଣ୍ଣଙ୍କର ମନ୍ତ୍ର ବୃତ୍ତାନ୍ତକୁ ଗୋପନ କରି ରଖିବାରୁ ଆମ୍ଭେ ବର୍ତ୍ତମାନ ଅତ୍ୟନ୍ତ ପୀଡ଼ିତ ହେଲୁଁ । ୧୦ ।

ଏହା କହି ମହାତେଜା ଯୁଧିଷ୍ଠିର ଶାପ ଦେଲେ ଯେ ସର୍ବଲୋକ-ସ୍ଥିତ ସ୍ତ୍ରୀମାନେ କୌଣସି ବିଷୟକୁ ଗୋପନ କରି ରଖି ପାରିବେ ନାହିଁ । ଏହି ଅଭିଶାପ ଦେଇ ଦୁଃଖଯୁକ୍ତ ରାଜା ଯୁଧିଷ୍ଠିର ତାହାଙ୍କର ପୁତ୍ର-ପୌତ୍ରମାନଙ୍କୁ ଓ ସୁହୃଦ୍‌ବର୍ଗଙ୍କୁ ସ୍ମରଣପୂର୍ବକ ଉଦ୍‌ବିଗ୍ନମନା ହେଲେ । ତତ୍ପରେ ପୁଣ୍ୟାତ୍ମା ରାଜା ଯୁଧିଷ୍ଠିର ସନ୍ତାପପୀଡ଼ିତ ହୋଇ ସଧୂମ ଅଗ୍ନିପ୍ରାୟ ନିର୍ବେଦ ପ୍ରାପ୍ତ ହେଲେ, ଅର୍ଥାତ୍ ତାହାଙ୍କର ରାଜ୍ୟାଦି ବିଷୟରେ ବିରାଗ ଜନ୍ମିଲା । ୧୩ ।

---

## ସପ୍ତମ ଅଧ୍ୟାୟ

ବୈଶମ୍ପାୟନ କୋଇଲେ—ତଦନନ୍ତର ଧର୍ମାତ୍ମା ଶୋକାକୁଳଚିତ୍ତ ରାଜା ଯୁଧିଷ୍ଠିର ମହାରଥୀ କର୍ଣ୍ଣଙ୍କୁ ସ୍ମରଣ କରି ଦୁଃଖିତମନରେ ଶୋକ କଲେ । ୧ ।

ସେ ଦୁଃଖ-ଶୋକରେ ଆବିଷ୍ଟ ହୋଇ ପୁନଃ ପୁନଃ ନିଃଶ୍ୱାସ ପରିତ୍ୟାଗପୂର୍ବକ ଅର୍ଜ୍ଜୁନଙ୍କ ପ୍ରତି ଦୃଷ୍ଟିପାତ କରି କହିଲେ । ୨ ।

ଯୁଧିଷ୍ଠିର କହିଲେ—ଯଦି ଆମ୍ଭେମାନେ ବୃଷ୍ଣ୍ୟନ୍ଧକ ନଗରକୁ ଯାଇ ସେଠାରେ ଭିକ୍ଷାବୃତ୍ତି ଅବଲମ୍ବନ କରିବୁଁ, ତେବେ ଆମ୍ଭମାନଙ୍କର ଭ୍ରାତୃବଧଜନିତ ଦୁର୍ଗତି ଆଉ ରହିବ ନାହିଁ । ୩ ।

ଆମ୍ଭେମାନେ କୌରବମାନଙ୍କୁ ନିହତ କରି, ପୁରୁଷାର୍ଥ ଲାଭ କରିନାହୁଁ; କିନ୍ତୁ ଆମ୍ଭର ଶତ୍ରୁ କୌରବମାନେ ସ୍ୱର୍ଗ-ସମ୍ପତ୍ତି ଲାଭ କରି-ଅଛନ୍ତି । ଆମ୍ଭେମାନେ ନିଜକୁ ନିଜେ ନିହତ କରି ଅର୍ଥାତ୍ କୌରବମାନଙ୍କୁ ନିହତ କରି କେଉଁ ଧର୍ମ ଫଳକୁ ପ୍ରାପ୍ତ ହେଲୁଁ । କୌରବମାନଙ୍କୁ ନିହତ କରିବାଦ୍ୱାରା ଆମ୍ଭେମାନେ ନିଜ ଧର୍ମକୁ ବଧ କରିଅଛୁଁ । ୪ ।

କ୍ଷତ୍ରିୟଧର୍ମର, ବଳ, ପୌରୁଷ ଓ ଅମର୍ଷ ଅର୍ଥାତ୍ ଅସହିଷ୍ଣୁ-ତାକୁ ଧିକ୍! ଏହି ସବୁ ଗୁଣ ଥିବାରୁ ଆମ୍ଭେମାନେ ବର୍ତ୍ତମାନ ବିପଦାପନ୍ନ ହୋଇଅଛୁଁ । ୫ ।

କ୍ଷମା, ଇନ୍ଦ୍ରିୟସଂଯମନ, ଶୌଚ, ବୈରାଗ୍ୟ, ଅମାତ୍ସର୍ଯ୍ୟ, ଅହିଂସା ଓ ସତ୍ୟବଚନ ପ୍ରଭୃତି ଗୁଣମାନ ସର୍ବାପେକ୍ଷା ଶ୍ରେଷ୍ଠ ଅଟନ୍ତି । ବନଚରମାନଙ୍କଠାରେ ଏହି ସବୁଗୁଣ ସର୍ବଦା ବିଦ୍ୟମାନ ଥାଏ । ୬ ।

ଆମ୍ଭେମାନେ ରାଜ୍ୟ ଭୋଗକରିବା ନିମିତ୍ତ ଲୋଭ, ମୋହ, ଦମ୍ଭ ଓ ଅଭିମାନର ବଶୀଭୂତ ହୋଇ ଈଦୃଶ ଦୁରବସ୍ଥାକୁ ପ୍ରାପ୍ତ ହୋଇଅଛୁଁ ।୭।

ସେହି ତ୍ରୈଲୋକ୍ୟର ରାଜତ୍ୱ ଦେଇ ସୁଦ୍ଧା ଆମ୍ଭମାନଙ୍କୁ ସନ୍ତୁଷ୍ଟ କରିପାରିବ ନାହିଁ । କାରଣ ଆମ୍ଭେମାନେ ଆମ୍ଭମାନଙ୍କର ପୃଥିବୀରାଜତ୍ୱା-କାଂକ୍ଷୀ ବାନ୍ଧବମାନଙ୍କୁ ନିହତ ହୋଇଥିବାର ଦେଖି ଅତ୍ୟନ୍ତ ଦୁଃଖିତ ହୋଇଅଛୁଁ । ୮ ।

ଆମ୍ଭେମାନେ ରାଜ୍ୟଲାଭ ନିମିତ୍ତ ଅବଧ୍ୟ ଭୂପାଳମାନଙ୍କୁ ନିହତ କରି ବର୍ତ୍ତମାନ ଅର୍ଥବିହୀନ ହୋଇ ଜୀବନଧାରଣ କରୁଅଛୁଁ । ୯ ।

ଆମ୍ଭେମାନେ ଆମିଷଲୋଭୀ କୁକ୍କୁର ପରି ହୋଇ ରାଜ୍ୟରୂପ ଅଶୁଭ ଆମିଷକୁ ଇଷ୍ଟ ମଣିଥିଲୁଁ; କିନ୍ତୁ ବର୍ତ୍ତମାନ ତାହାର ବିବର୍ଜନ ଆମ୍ଭମାନଙ୍କ ପକ୍ଷରେ ଇଷ୍ଟ ହେଉଅଛି । ୧୦ ।

ସମସ୍ତ ପୃଥିବୀ, ସୁବର୍ଣ୍ଣରାଶି, ସମୁଦାୟ ଅଶ୍ୱ ଓ ଗୋଧନ ବରଂ ଆମ୍ଭମାନଙ୍କର ପରିତ୍ୟାଜ୍ୟ ଅଟେ, କିନ୍ତୁ ଯେଉଁ ବାନ୍ଧବମାନେ ନିହତ ହେଲେ ସେମାନେ ଆମ୍ଭମାନଙ୍କର ପରିତ୍ୟାଜ୍ୟ ନୁହନ୍ତି । ୧୧ ।

ସେମାନେ କାମ, କ୍ରୋଧ ଓ ହର୍ଷଯୁକ୍ତ ହୋଇ ମୃତ୍ୟୁଯାନରେ ଆରୋହଣପୂର୍ବକ ଯମାଳୟରେ ପ୍ରସ୍ଥାନ କରି ଅଛନ୍ତି । ୧୨ ।

ତପସ୍ୟା, ବ୍ରହ୍ମଚର୍ଯ୍ୟ, ସତ୍ୟ ଓ କ୍ଷମାଗୁଣ ପ୍ରଭୃତି ଅବଲମ୍ବନ କରି ପିତା କଲ୍ୟାଣଯୁକ୍ତ ପୁତ୍ର ଲାଭ କରିବାକୁ ଅଭିଳାଷ କରନ୍ତି । ୧୩ ।

ଉପବାସ, ବ୍ରତ, ଉତ୍ସବପାଳନ, ଯଜ୍ଞ ଓ ମଙ୍ଗଳାନୁଷ୍ଠାନ କରି ମାତା ପୁତ୍ରକୁ ଦଶମାସ ଗର୍ଭରେ ଧରନ୍ତି ଓ ସେହି ଦୀନା ମାତା ଗର୍ଭଧାରଣ-ରୂପକ କଷ୍ଟର ଉତ୍ତମ ଫଳ ଲାଭ କରିବା ଆଶାରେ ମନେ ମନେ ଚିନ୍ତା କରନ୍ତି ଯେ ଆମ୍ଭର ପୁତ୍ର ଯଦି ନିରାପଦରେ ଭୂମିଷ୍ଠ ହୋଇ ବହୁଦିନ ଜୀବିତ ଥାଏ ଓ ବଳଶାଳୀ ହୋଇ ଲୋକଙ୍କଦ୍ୱାରା ସମାଦୃତ ହୁଏ; ତେବେ ସେ ଆମ୍ଭମାନଙ୍କୁ ଇହଲୋକ ଓ ପରଲୋକରେ ସୁଖୀ କରିପାରିବ; କିନ୍ତୁ ଆମ୍ଭର ଏହି ବନ୍ଧୁବାନ୍ଧବମାନେ ନିହତ ହେବାରୁ ସେମାନଙ୍କ ଜନନୀ-ମାନଙ୍କର ମନୋରଥ ନିଷ୍ଫଳ ହେଲା । ୧୪ ।

ଏହି କାମିନୀମାନଙ୍କର ପରିଷ୍କୃତ କୁଣ୍ଡଳଧାରୀ ଯୁବା ପୁତ୍ରମାନେ ରାଜ୍ୟଭୋଗକୁ ଉପଭୋଗ ନ କରି କିମ୍ବା ଦେବତା ଓ ପିତୃଋଣରୁ ମୁକ୍ତ ନ ହୋଇ ଯମାଳୟକୁ ଗମନ କରିଅଛନ୍ତି । ୧୮ ।

ଏହିସବୁ ବୀରମାନଙ୍କର ବଳ ଓ କାନ୍ତିକ ଦେଖି ଏମାନଙ୍କର ମାତା ଓ ପିତାଙ୍କ ମନରେ ନାନାପ୍ରକାର ଉନ୍ନତିର ଆଶା ଜାତ ହୋଇ ଥିଲା; କିନ୍ତୁ ଏମନ୍ତ ସମୟରେ ଏମାନେ ନିହତ ହେଲେ । ୧୯ ।

ଏହିସବୁ ବୀରମାନେ କାମ ଓ କ୍ରୋଧଯୁକ୍ତ ହେବାରୁ ଓ ଏମାନଙ୍କଠାରେ କ୍ରୋଧ ଓ ହର୍ଷ ଅପରିମିତଭାବରେ ବିଦ୍ୟମାନ ଥିବାରୁ ଏମାନେ କଦାପି କେଉଁଠାରେ ଜୟଲାଭଜନିତ ସୁଖଫଳକୁ ଭୋଗ କରି ପାରିବେ ନାହିଁ । ୨୦ ।

ପାଞ୍ଚାଳ ଓ କୌରବମାନେ ପରସ୍ପର ନିହତ ହୋଇ ଅଛନ୍ତି; କିନ୍ତୁ ଏମାନେ ସ୍ୱର୍ଗଲାଭ କରି ପାରି ନାହାନ୍ତି । ଏମାନେ ଯଦ୍ୟପି ଯୁଦ୍ଧ ନ କରିଥାନ୍ତେ ତେବେ ନିଜର ଉତ୍କୃଷ୍ଟ କର୍ମଦ୍ୱାରା ଉତ୍କୃଷ୍ଟ ଲୋକମାନଙ୍କରେ ବାସ କରିଥାନ୍ତେ । ଏମାନଙ୍କର ଅପତ୍ୟମାନ ମଧ୍ୟ ଏମାନଙ୍କୁ ଉତ୍କୃଷ୍ଟ ଲୋକ ମାନଙ୍କରେ ଥିବାର ଦେଖନ୍ତେ । ୨୧ ।

ଆମ୍ଭେମାନେ ଏହିସବୁ ବୀରମାନଙ୍କର ବିନାଶର କାରଣ ଅଟୁଁ । କିନ୍ତୁ ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କଠାରେ ମଧ୍ୟ ଏହି ଦୋଷକୁ ସମ୍ପୂର୍ଣ୍ଣଭାବରେ ଆରୋପିତ କରିହେବ । ୨୨ ।

ଦୁର୍ଯ୍ୟୋଧନ ସର୍ବଦା ଶଠ, ଦ୍ୱେଷୀ ଓ ମାୟାବୀ ଥିଲା । ସେହି ଦୁର୍ବିନୀତ ଅକାରଣରେ ଆମ୍ଭମାନଙ୍କର ଅପକାର କରେ । ୨୩ ।

ପରିଶେଷରେ ଆମ୍ଭେମାନେ ଅଭୀଷ୍ଟଲାଭ କରି ପାରିଲୁ ନାହିଁ କିମ୍ବା ସେମାନେ ମଧ୍ୟ ଆମ୍ଭମାନଙ୍କୁ ପରାଜିତ ନ କରି ସେମାନଙ୍କର ମନୋରଥ ପୂର୍ଣ୍ଣ କରି ପାରିଲେ ନାହିଁ । ଅପିଚ ସେମାନେ ପୃଥିବୀ କିମ୍ବା ଅସଂଖ୍ୟ ରତ୍ନକୁ ଭୋଗ କରି ପାରିଲେ ନାହିଁ । ନାରୀମାନଙ୍କ ସହିତ ବିହାର କରିବାକୁ ସମର୍ଥ ହେଲେ ନାହିଁ । ଗୀତ ବାଦ୍ୟାଦି ଶ୍ରବଣ କରି ପାରିଲେ ନାହିଁ । ଅର୍ଥାଗମର ଚେଷ୍ଟା କରି ପାରିଲେ ନାହିଁ; କିମ୍ବା ମନ୍ତ୍ରୀ, ସୁହୃଦ, ଓ ପଣ୍ଡିତମାନଙ୍କର ବାକ୍ୟକୁ ଶ୍ରବଣ କଲେ ନାହିଁ । ୨୪ ।

ସେମାନେ ଆମ୍ଭମାନଙ୍କ ପ୍ରତି ଦ୍ୱେଷକରି ସୁଖ ଭୋଗ କରିବାକୁ ସମର୍ଥ ହୋଇ ନ ଥିଲେ । ସୁବଳ ପୁତ୍ର ଶକୁନି ଆମ୍ଭମାନଙ୍କର ଶ୍ରୀବୃଦ୍ଧି

ହେବା କଥା ଧୃତରାଷ୍ଟ୍ରଙ୍କଠାରେ ଜଣାଇଥିଲେ; କିନ୍ତୁ ସେ ଅସ୍ମମାନଙ୍କର ସମୃଦ୍ଧିକି ଦର୍ଶନ କରି ଅତ୍ୟନ୍ତ କୃଶ, ବିବର୍ଣ୍ଣ ଓ ପାଣ୍ଡୁର ବର୍ଣ୍ଣ ହୋଇଥିଲେ । ରାଜା ଧୃତରାଷ୍ଟ୍ର ଦୁର୍ଯ୍ୟୋଧନର ଦୁର୍ମତିକୁ ଜାଣି ସୁଦ୍ଧା ପୁତ୍ର ସ୍ନେହବଶତଃ ଭୀଷ୍ମ ଓ ମହାମତି ବିଦୁରଙ୍କର ବାକ୍ୟରେ ଅନାଦର ପ୍ରଦର୍ଶନପୂର୍ବକ ଦୁର୍ଯ୍ୟୋଧନର ମହାଭିପ୍ରାୟକୁ ଅନୁମୋଦନ କରିଥିଲେ । ଅଶୁଚି, ଲୋଭୀ ଓ ସ୍ୱେଚ୍ଛାଚାରୀ ପୁତ୍ର ଦୁର୍ଯ୍ୟୋଧନକୁ ବଶୀଭୂତ ନ କରି ଧୃତରାଷ୍ଟ୍ରଙ୍କର ଯେପରି ସର୍ବନାଶ ହୋଇଅଛି, ଆସ୍ମର ମଧ୍ୟ ସେହିପରି ସର୍ବନାଶ ହୋଇଅଛି । ପାପବୁଦ୍ଧି ଦୁର୍ଯ୍ୟୋଧନ ସର୍ବଦା ଆସ୍ମମାନଙ୍କ ପ୍ରତି ଦ୍ୱେଷ କରି ସହୋଦରମାନଙ୍କର ବିନାଶ ସାଧନ କରିଅଛି ଓ ବୃଦ୍ଧ ଜନକ ଜନନୀଙ୍କୁ ଶୋକାଗ୍ନିରେ ନିକ୍ଷେପ କରି ନିଜର ପ୍ରଦୀପ୍ତ ଯଶକୁ ବିନଷ୍ଟ କରିଅଛି । ୩୦ ।

ଦୁର୍ଯ୍ୟୋଧନ ଯବ ଲୟସ୍ମୁ ହୋଇ କୃଷ୍ଣଙ୍କୁ ଯେପରି ବାକ୍ୟ କହି-ଥିଲେ, ସତ୍କୁଳ ସମ୍ଭୂତ ଆଉ କେଉଁ ବ୍ୟକ୍ତି ସୁହୃଜ୍ଜନ ପ୍ରତି ସେହିପରି ବାକ୍ୟ ପ୍ରୟୋଗ କରିବ ? ୩୧ ।

ଆମ୍ଭେମାନେ ବର୍ତ୍ତମାନ ଦିବାକରଙ୍କ ସଦୃଶ ସ୍ୱକୀୟ ତେଜଦ୍ୱାରା ଦଶଦିଗକୁ ଦଗ୍ଧ କରି ଚିରକାଳ ସକାଶେ ନିଜର ଦୋଷରେ ବିନଷ୍ଟ ହେଲୁଁ । ଆସ୍ମମାନଙ୍କର ଶତ୍ରୁ ଦୁର୍ମତି ଦୁର୍ଯ୍ୟୋଧନ ସମ୍ପ୍ରତି ନିହତ ହୋଇ ଅଛି । ଦୁର୍ଯ୍ୟୋଧନ ହେତୁରୁ ଏହି କୁରୁକୁଳ ନିପାତିତ ହେଲା । ୩୩ ।

ଆମ୍ଭେମାନେ ମଧ୍ୟ ଅବଧ୍ୟ ବ୍ୟକ୍ତିମାନଙ୍କୁ ବଧ କରି ଲୋକରେ ନିନ୍ଦନୀୟ ହେଲୁଁ । ଧୃତରାଷ୍ଟ୍ର ଏହି କୁଳନାଶକ ଦୁର୍ମତି ପାପାତ୍ମା ଦୁର୍ଯ୍ୟୋଧନକୁ ପ୍ରଥମେ ରାଜ୍ୟର ଅଧୀଶ୍ୱର କରି ବର୍ତ୍ତମାନ ଶୋକ କରୁ ଅଛନ୍ତି । ଧୃତରାଷ୍ଟ୍ର ପାପାଚରଣ କରିବାରୁ ତାହାଙ୍କର ସମସ୍ତ ଶୂରବୃନ୍ଦ ନିହତ ହୋଇଅଛନ୍ତି ଓ ତାହାଙ୍କର ସମସ୍ତ ରାଜ୍ୟ ସମ୍ପତ୍ତି ମଧ୍ୟ ଅନ୍ତରିତ ହୋଇଅଛି । ୩୫ ।

ବର୍ତ୍ତମାନ ଆମ୍ଭେମାନେ ଶତ୍ରୁଗଣଙ୍କୁ ନିପାତିତ କରି କ୍ରୋଧଶୂନ୍ୟ ହୋଇଅଛୁଁ; କିନ୍ତୁ ଆସ୍ମମାନଙ୍କୁ ଶୋକ ଅତ୍ୟନ୍ତ ବ୍ୟାକୁଳିତ କରୁଅଛି । ହେ ଧନଞ୍ଜୟ ! ଆମ୍ଭେମାନେ ଯେଉଁ ପାପାଚରଣ କରିଅଛୁଁ ତାହା ମଙ୍ଗଳ କାର୍ଯ୍ୟର ଅନୁଷ୍ଠାନଦ୍ୱାରା ପ୍ରଚ୍ଛର, ଅନୁତାପ, ଦାନ, ତପସ୍ୟା ଓ ନିବୃତ୍ତି

ହାର ଏବଂ ତୀର୍ଥଗମନ, ଜପ ଓ ଶ୍ରୁତି ସ୍ମୃତି ପ୍ରଭୃତିର ଅଧ୍ୟୟନଦ୍ୱାରା ବାନପ୍ରସ୍ଥ ହୁଏ । ୩୭ ।

ଶ୍ରୁତିରେ କଥିତ ଅଛି ଯେ "ତ୍ୟାଗଶୀଳ ଲୋକ ପୁନଶ୍ଚ ପାପ କାର୍ଯ୍ୟ କରେ ନାହିଁ । ତ୍ୟାଗଶୀଳ ଲୋକ ଜନ୍ମମରଣଜନିତ ଦୁଃଖକୁ ଭୋଗ କରେ ନାହିଁ ।" ୩୮ ।

ତତ୍ପରେ ସେ ମୋକ୍ଷ ପଥକୁ ପ୍ରାପ୍ତ ହୋଇ ନିଶ୍ଚିତ ବୁଦ୍ଧିରେ ବ୍ରହ୍ମକୁ ଲାଭ କରେ ଓ ଧ୍ୟାନନିଷ୍ଠ ଜ୍ଞାନଦ୍ୱାରା ବ୍ରହ୍ମକୁ ପ୍ରାପ୍ତ ହୋଇ ନିର୍ଦ୍ୱନ୍ଦ୍ୱ ପୁରୁଷ ହୋଇଯାଏ । ୩୯ ।

ହେ ପରନ୍ତପ ! ଅତଏବ ଆମ୍ଭେ ତୁମ୍ଭ ସମସ୍ତଙ୍କୁ ଆମନ୍ତ୍ରଣ କରି ବନକୁ ଗମନ କରିବୁଁ । ହେ ଅରିସୂଦନ ! ଶ୍ରୁତିରେ ଏହା କଥିତ ଅଛି ଏବଂ ଏହା ମଧ୍ୟ ପ୍ରତ୍ୟକ୍ଷ ଦେଖୁଅଛୁଁ ଯେ ଗୃହସ୍ଥ ଧର୍ମକୁ ଆଶ୍ରୟ କଲେ ଆମ୍ଭେ କେବେହେଁ ଧର୍ମକୁ ଲାଭ କରିବାରେ ସମର୍ଥ ହେବୁନାହିଁ । ଆମ୍ଭେ ଏହି ରାଜ୍ୟ ଗ୍ରହଣ କରିବାର ଇଚ୍ଛାକରି ସମସ୍ତ ପାପକୁ ସୃଷ୍ଟି କରିଅଛୁଁ । ୪୧ ।

ଆମ୍ଭେ ଗୃହସ୍ଥ ଧର୍ମ, ସମସ୍ତ ରାଜ୍ୟ ଓ ସମସ୍ତ ସୁଖକୁ ତ୍ୟାଗକରି ପୁନର୍ଜନ୍ମରୁ ରକ୍ଷା ପାଇବୁଁ ଅର୍ଥାତ୍ ମୋକ୍ଷଲାଭ କରିବୁ । ୪୨ ।

ଆମ୍ଭେ ଶୋକ ଶୂନ୍ୟ ଓ ମମତା ରହିତ ହୋଇ କୌଣସି ବନକୁ ଗମନ କରିବୁଁ । ତୁମ୍ଭେମାନେ ଏହି ମଙ୍ଗଳଦାୟକ ଅକଣ୍ଟକ ରାଜ୍ୟକୁ ଶାସନ କର । ୪୩ ।

ହେ କୁରୁସତ୍ତମ ! ଆମ୍ଭର ରାଜ୍ୟ ଭୋଗରେ ପ୍ରୟୋଜନ ନାହିଁ । ଧର୍ମରାଜ ଯୁଧିଷ୍ଠିର ଏହି କଥା କହି ମୌନଭାବ ଅବଲମ୍ବନ କରନ୍ତେ ତାହାଙ୍କର କନିଷ୍ଠ ଭ୍ରାତା ଅର୍ଜ୍ଜୁନ ପ୍ରତ୍ୟୁତ୍ତର କଲେ । ୪୪ ।

---

## ଅଷ୍ଟମ ଅଧ୍ୟାୟ ।

ବୈଶମ୍ପାୟନ କହିଲେ—ଅନନ୍ତର ଦୃଢ଼ବାଦ ପରାକ୍ରମ ମହାତେଜସ୍ୱୀ ମହାବଳ ଅର୍ଜ୍ଜୁନ ନିଜକୁ କ୍ରୋଧାକ୍ରାନ୍ତ ହୋଇଥିବା ପରି ଦେଖାଇ ଓ ସୃକ୍କଣୀଲେହନପୂର୍ବକ ଗର୍ବ ପ୍ରକାଶ କରି ପ୍ରମତ୍ତ ଅକ୍ଷମୀ ପୁରୁଷ ନ୍ୟାୟ, ଯୁଧିଷ୍ଠିରଙ୍କୁ ନ୍ୟାୟଯୁକ୍ତ ବାକ୍ୟ କହିଲେ । ୨ ।

ଅର୍ଜୁନ କହିଲେ, "ଅହୋ ! କି ଦୁଃଖ ! କି କଷ୍ଟ ! କି ସୁନ୍ଦର ମୂଢ଼ତା ! ଆପଣ ଅଲୌକିକ କାର୍ଯ୍ୟ ସମ୍ପାଦନ କରି ଯେଉଁ ରାଜ୍ୟଶ୍ରୀକୁ ପ୍ରାପ୍ତ ହୋଇ ଅଛନ୍ତି ତାହାକୁ ପରିତ୍ୟାଗ କରିବେ । ୩ ।

ଆପଣ ଶତ୍ରୁମାନଙ୍କୁ ସଂହାର କରି ସ୍ୱକୀୟ ଧର୍ମ ଅନୁସାରେ ଏହି ରାଜ୍ୟ ସମ୍ପତ୍ତିକୁ ଲାଭ କରିଅଛନ୍ତି; କିନ୍ତୁ ବୁଦ୍ଧି ଲଘବ ହେତୁରୁ ଏହି ସମ୍ପତ୍ତିକି ପରିତ୍ୟାଗ କରିବାକୁ କହୁଛନ୍ତି ? କ୍ଲୀବ ଏବଂ ଦୀର୍ଘସୂତ୍ରୀ ମନୁଷ୍ୟର କଦାପି ରାଜ୍ୟଲାଭ ହୁଏନାହିଁ । ଆପଣ କି ନିମିତ୍ତ କ୍ରୋଧ-ମୂର୍ଚ୍ଛିତ ହୋଇ ଭୂପତିମାନଙ୍କୁ ନିହତ କଲେ । ୫ ।

ଯେଉଁ ବ୍ୟକ୍ତି ହତଭାଗ୍ୟ ଓ ଦରିଦ୍ର ଅଟେ, ଯେ କୌଣସି କାର୍ଯ୍ୟ-ଦ୍ୱାରା ସୁଦ୍ଧା ଲୋକମାନଙ୍କଠାରେ ବିଖ୍ୟାତ ହୋଇପାରେ ନାହିଁ । ଯାହାର ପୁତ୍ର କନ୍ୟା ପଶୁପ୍ରଭୃତି କିଛି ନାହାନ୍ତି, ଯେ ଅର୍ଥ ଲାଭ କରିବାକୁ ଇଚ୍ଛା କରେ ନାହିଁ, ଯେଉଁ ବ୍ୟକ୍ତି ଭିକ୍ଷାବୃତ୍ତିକୁ ଅବଲମ୍ବନ କରେ । ୬ ।

ହେ ରାଜନ୍ ! ଆପଣ ରାଜ୍ୟ ସମ୍ପତ୍ତିକୁ ତ୍ୟାଗ କରି ଯଦି ଭିକ୍ଷା-ବୃତ୍ତି ଅବଲମ୍ବନପୂର୍ବକ ଜୀବନଧାରଣ କରନ୍ତି, ତାହାହେଲେ ଲୋକେ ଆପଣଙ୍କୁ କ'ଣ କହିବେ ? । ୭ ।

ଆପଣ କି ନିମିତ୍ତ ପ୍ରାକୃତ ଲୋକ ସଦୃଶ ସମସ୍ତ ଅର୍ଥକୁ ପରିତ୍ୟାଗ କରି ହତଭାଗ୍ୟ ଓ ଦରିଦ୍ର ଲୋକପ୍ରାପ୍ୟ ଭିକ୍ଷାବୃତ୍ତି ଅବଲମ୍ବନ କରିବେ । ୮ ।

ଆପଣ ଏହି ରାଜକୁଳରେ ଜାତ ହୋଇ ଓ ସମସ୍ତ ବସୁନ୍ଧରାକୁ ଜୟ କରି ସମସ୍ତ ଧର୍ମ ଓ ଅର୍ଥକୁ ପରିତ୍ୟାଗପୂର୍ବକ ବନକୁ ଗମନ କରୁଅଛନ୍ତି । ଅତଏବ ଏହା ମୂଢ଼ତାର କାର୍ଯ୍ୟ ଅଟେ । ୯ ।

ଆପଣ ଯଦି ଏହି ଯଜ୍ଞାନୁଷ୍ଠାନାଦି କର୍ମକୁ ରକ୍ଷା ନ କରନ୍ତି, ତେବେ ଅସାଧୁ ବ୍ୟକ୍ତିମାନେ ତାହାକୁ ନଷ୍ଟ କରିବେ । ଅତଏବ ଆପଣ ଏତଦ୍ଦ୍ୱାରା ପାପଭାଗୀ ହେବେ । ୧୦ ।

ରାଜା ନହୁଷ ନିର୍ଦ୍ଧନାବସ୍ଥାରେ ସ୍ୱୟଂ ନୃଶଂସତା କାର୍ଯ୍ୟକରି ନିର୍ଦ୍ଧନତାକୁ ଧିକ୍କାରପୂର୍ବକ କହିଯାଇ ଅଛନ୍ତି ଯେ ଅକିଞ୍ଚନତା କେବଳ ମୁନିମାନଙ୍କର ଗ୍ରହଣୀୟ ଅଟେ । ୧୧ ।

ଆଗାମୀ କାଲି ପାଇଁ ସୁଦ୍ଧା ସଞ୍ଚୟ ନ କରିବା, ଅର୍ଥାତ୍ ଅସଞ୍ଚୟ ବୃତ୍ତିକି ଅବଲମ୍ବନ କରିବା ଯେ କେବଳ ଋଷିମାନଙ୍କର ଧର୍ମ

ତାହା ମଧ୍ୟ ଆପଣଙ୍କୁ ବିଦିତ ଅଛି । ଅତଏବ ଯାହାକୁ ପଣ୍ଡିତମାନେ ରାଜଧର୍ମ ବୋଲି କହନ୍ତି, ତାହା କେବଳ ଧନଦ୍ୱାରା ପ୍ରବର୍ତ୍ତିତ ହୋଇ-ଥାଏ । ୧୨ ।

ହେ ରାଜନ୍ ! ଯେ ଯାହାର ଧନକୁ ହରଣ କରିଥାଏ ସେ ତାହାର ଧର୍ମକୁ ମଧ୍ୟ ଗ୍ରହଣ କରିନଏ । ଅତଏବ ଧନ ଅପହୃତ ହେଲେ ଆମ୍ଭେମାନେ କାହାକୁ କ୍ଷମା କରିପାରୁଁ କି ? ଅର୍ଥାତ୍ କାହାକୁ ସୁଦ୍ଧା କ୍ଷମା କରୁ ନାହୁଁ । ୧୩ ।

ଇହଲୋକରେ ଦରିଦ୍ରକୁ ମନୁଷ୍ୟମାନେ ଅଭିଶପ୍ତ ବୋଲି ଜ୍ଞାନ କରନ୍ତି । ଆମ୍ଭମାନଙ୍କର ନିକଟରେ ଥିବା ଦରିଦ୍ରଲୋକମାନଙ୍କୁ ମିଥ୍ୟା ଅପବାଦରେ ଦୂଷିତ ହେବାର ଦେଖୁଁଅଛୁଁ । ଅତଏବ ଆପଣଙ୍କର ଦାରିଦ୍ର୍ୟକୁ ପ୍ରଶଂସା କରିବା ଉଚିତ ନୁହେଁ । ୧୪ ।

ପତିତ ଏବଂ ନିର୍ଦ୍ଧନ ବ୍ୟକ୍ତିମାନଙ୍କୁ ଶୋକ କରିବାକୁ ହୁଏ । ମୃତ ଓ ନିର୍ଦ୍ଧନ ବ୍ୟକ୍ତିଙ୍କ ମଧ୍ୟରେ କୌଣସି ବୈଶିଷ୍ଟ୍ୟ ଅଛି ବୋଲି ବୋଧ ହେଉ ନାହିଁ ।୧୫।

ଯେପରି ନଦୀସବୁ ପର୍ବତରୁ ନିର୍ଗତ ହୋଇ କ୍ରମଶଃ ବିସ୍ତାର ଅବସ୍ଥାକୁ ପ୍ରାପ୍ତ ହୁଅନ୍ତି, ସେହିପରି କ୍ରିୟାସବୁ ପ୍ରବୃଦ୍ଧ ଧନରାଶିରୁ କ୍ରମଶଃ ପ୍ରବର୍ତ୍ତିତ ହୁଅନ୍ତି ।୧୬।

ହେ ମହାରାଜ ! ଅର୍ଥରୁ ଧର୍ମ୍ମ, କାମ ଓ ସ୍ୱର୍ଗ ଲାଭ ହୁଏ । ଅର୍ଥ ବିନା ଲୋକର ପ୍ରାଣଯାତ୍ରା ସୁଦ୍ଧା ନିର୍ବାହ ହୋଇପାରେ ନାହିଁ ।୧୭।

ଗ୍ରୀଷ୍ମ କାଳରେ ଯେପରି କୁତ୍ସିତ ନଦୀସବୁ ଶୁଷ୍କ ହୋଇ ଯାଏ, ଇହଲୋକରେ ସେହିପରି ଅର୍ଥବିହୀନ ଓ ଅଳ୍ପ-ବୁଦ୍ଧି ଲୋକମାନଙ୍କର କାର୍ଯ୍ୟସବୁ ବିଚ୍ଛିନ୍ନ ହୋଇଯାଏ ।୧୮।

ଯାହାର ଅର୍ଥ ଅଛି, ତାହାର ମିତ୍ର ଓ ବାନ୍ଧବମାନେ ଅଛନ୍ତି, ଯାହାଙ୍କର ଅର୍ଥ ଅଛି, ସେ ଲୋକରେ ପୁରୁଷ ବୋଲି ଗଣ୍ୟ ହୁଅନ୍ତି ଓ ଯେ ଅର୍ଥବାନ୍ ସେହି କେବଳ ପଣ୍ଡିତ ଅଟନ୍ତି ।୧୯।

ନିର୍ଦ୍ଧନ ଲୋକ ଯଦି କୌଣସି ବିଷୟରେ ଅଭିଳାଷୀ ହୋଇ ତାହାର ମନୋରଥ ପୂର୍ଣ୍ଣ କରିବାକୁ ଇଚ୍ଛୁକ ହୁଏ, ତେବେ ତାହାର ମନୋରଥ କଦାପି ସିଦ୍ଧ ହୁଏନାହିଁ । ପରନ୍ତୁ ଗୋଟିଏ ମହାଗଜଦ୍ୱାରା

ଯେଉଁ ପରି ଆଜ ଗୋଟିଏ ମହାଗଜକୁ ଆବଦ୍ଧ କରାଯାଏ, ସେହିପରି ଅର୍ଥଦ୍ୱାରା କେବଳ ସମସ୍ତ ଅଭିଲଷିତ ପ୍ରୟୋଜନ ସିଦ୍ଧ ହୁଏ ।୨୦।

ହେ ନରାଧିପ ! ଧର୍ମ, ଶାସ୍ତ୍ରଜ୍ଞାନ, ଧୃତି, ହର୍ଷ, କାମନା, କ୍ରୋଧ ଓ ମତ୍ତତା ଏହି ସମସ୍ତ ଅର୍ଥରୁ ଜାତ ହୁଅନ୍ତି ।୨୧।

ହେ ପୁରୁଷୋତ୍ତମ ! ଧନରୁ ଲୋକର କୁଳଗୌରବ ଓ ଧର୍ମ ବର୍ଦ୍ଧିତ ହୁଏ । ନିର୍ଦ୍ଧନ ବ୍ୟକ୍ତି ଇହଲୋକ କିମ୍ବା ପରଲୋକରେ ସୁଖଲାଭ କରେ ନାହିଁ ।୨୨।

ଶୈଳରୁ ଯେପରି ନଦୀ ଉତ୍ପନ୍ନ ହୁଏ, ଧନରୁ ସେହିପରି ଧର୍ମ ଉତ୍ପନ୍ନ ହୁଏ, ନିର୍ଦ୍ଧନ ବ୍ୟକ୍ତି କଦାପି ଧର୍ମ କାର୍ଯ୍ୟକୁ ଯଥାବିଧିରେ ଅନୁଷ୍ଠାନ କରିବାକୁ ସମର୍ଥ ହୁଏ ନାହିଁ ।୨୩।

ହେ ରାଜନ୍ ! ମନୁଷ୍ୟର ଶରୀର କୃଶ ହେଲେ, ସୁଦ୍ଧା ତାହାଙ୍କୁ କୃଶ ବୋଲି କୁହାଯାଏ । ଯାହାର ଅଶ୍ୱ ଓ ଗୋ ପ୍ରଭୃତି ପଶୁ କିମ୍ବା ଭୃତ୍ୟମାନେ ଅଳ୍ପ ଥାନ୍ତି ଏବଂ ଅତିଥିସମୂହ ଯାହାଙ୍କ ଆଶ୍ରମରେ କ୍ୱଚିତ୍ ଉପସ୍ଥିତ ହୁଅନ୍ତି, ତାହାଙ୍କୁ କେବଳ କୃଶ ବୋଲିଯାଏ ।୨୪।

ହେ ମହାରାଜ ! ଆପଣ ନ୍ୟାୟାନୁସାରେ ଦେବାସୁରମାନଙ୍କ ବିଷୟକୁ ବିଚାର କରି ଦେଖିବା ହେଉନ୍ତୁ । ଦେବତାମାନେ ଜ୍ଞାତି ବଧ ନିମିତ୍ତ ଅନ୍ୟ ସମୀଚୀନ ଅଭିଲାଷ କରନ୍ତି ନାହିଁ ।୨୫।

ଯଦି ପରସ୍ୱର ଅପହରଣ କରିବା ଉଚିତ ନୁହେଁ ବୋଲି ଆପଣଙ୍କର ଅଭିମତ ହୁଏ ତାହାହେଲେ ରାଜାମାନେ କି ପ୍ରକାରେ ଧର୍ମାନୁଷ୍ଠାନ କରିବେ ? କବିମାନେ ମଧ୍ୟ ବେଦରେ ନିଶ୍ଚୟ କରି ଯାଇ ଅଛନ୍ତି ଯେ ପ୍ରତିଦିନ ସାମାଦି ବେଦତ୍ରୟର ଅଧ୍ୟୟନ, ଜ୍ଞାନୋପାର୍ଜନ ଓ ସର୍ବଥା ଯତ୍ନ ସହକାରେ ଧନୋପାର୍ଜନାଦି ଏବଂ ଯଜ୍ଞାଦିର ଆହରଣ ମଧ୍ୟ କର୍ତ୍ତବ୍ୟ ଅଟେ ।୨୬।

ଦେବତାମାନେ ବିଦ୍ରୋହିତାଦ୍ୱାରା ସମସ୍ତ ସ୍ୱର୍ଗ ଲୋକକୁ ପ୍ରାପ୍ତ ହୋଇ ଅଛନ୍ତି । ଯେ ସ୍ଥଳେ ଦେବତାମାନେ ସୁଦ୍ଧା ଜ୍ଞାତି ବିଦ୍ରୋହ କରିବାକୁ ଆକାଙ୍କ୍ଷା କରୁଅଛନ୍ତି ସେ ସ୍ଥଳେ ଜ୍ଞାତି ବିଦ୍ରୋହିତା ବ୍ୟତୀତ କେଉଁ ବସ୍ତୁକୁ ପ୍ରାପ୍ତ ହୋଇ ପାରିବ ? ।୨୮।

ଅତଏବ ଦେବତାମାନେ ସୁଦ୍ଧା ଏହିପରି ବ୍ୟବହାର କରୁଅଛନ୍ତି ଏବଂ ବେଦରେ ମଧ୍ୟ ଏହିପରି ଶାଶ୍ୱତ ବିଧି ଉକ୍ତ ଅଛି ଯେ ରାଜାମାନେ

ଅନ୍ୟାନ୍ୟ ଲୋକଙ୍କଠାରୁ ଯେଉଁସବୁ ଧନ ଅହରଣ କରନ୍ତି ତଦ୍ଦ୍ୱାରା ସେମାନଙ୍କର ଶ୍ରେୟୋଲାଭ ହୁଏ । କାରଣ ଅଧ୍ୟୟନ ଅଧ୍ୟାପନ ଯଜନ ଓ ଯାଜନ ପ୍ରଭୃତି ସମସ୍ତ କାର୍ଯ୍ୟ ଅର୍ଥଦ୍ୱାରା ସମ୍ପନ୍ନ ହୁଏ । ଏଥିରେ ଯଦି ଆପଣ ଦୋଷ ବିବେଚନା କରନ୍ତି, ତାହାହେଲେ କେଉଁଠାରେ ସୁଦ୍ଧା ଲୋକର ଅନିଷ୍ଟ ନ ହୋଇ ଯେ ଅର୍ଥ ସଂଗୃହୀତ ହେବ ଏପରି ଦେଖାଯାଏ ନାହିଁ । ଅତଏବ ରାଜାମାନେ ଏହିପ୍ରକାରେ ପୃଥିବୀକୁ ଜୟ କରିଥାନ୍ତି ଓ ପୁତ୍ରମାନେ ଯେପରି ପିତୃଧନକୁ ନିଜର ବୋଲି ମନେ କରନ୍ତି, ସେହିପରି ରାଜର୍ଷିମାନେ ମଧ୍ୟ ଜୟଲବ୍ଧ ବସ୍ତୁକୁ ନିଜର ବୋଲି ସ୍ୱୀକାର କରନ୍ତି ।୩୨।

ଅପିଚ ସ୍ୱର୍ଗୀୟ ରାଜର୍ଷିଗଣ ରାଜଧର୍ମ ବିଷୟରେ ଏହିପରି କୀର୍ତ୍ତନ କରନ୍ତି । ଯେପରି ପୂର୍ଣ୍ଣ ସାଗରରୁ ପ୍ରଭୂତ ଜଳରାଶି ନିଃସୃତ ହୋଇ ଦଶ ଦିଗକୁ ପରିବ୍ୟାପ୍ତ କରେ, ସେହିପରି ଧନ ମଧ୍ୟ ରାଜକୁଳରୁ ନିର୍ଗତ ହୋଇ ପୃଥିବୀର ପାଳନ କାର୍ଯ୍ୟକୁ ସମ୍ପାଦନ କରେ । ଏହି ପୃଥିବୀ ପୂର୍ବରେ ଦିଲୀପ, ନୃଗ, ନହୁଷ, ଅମ୍ବରୀଷ ଓ ମାନ୍ଧାତା ପ୍ରଭୃତି ନରପତିମାନଙ୍କର ଅଧିକାରରେ ଥିଲା କିନ୍ତୁ ବର୍ତ୍ତମାନ ଏହା ଆପଣଙ୍କର ହସ୍ତଗତ ହୋଇଅଛି । ସୁତରାଂ ଏହି ଦ୍ରବ୍ୟମୟ ସର୍ବ ଦକ୍ଷିଣାଯୁକ୍ତ ଯଜ୍ଞ ମଧ୍ୟ ଆପଣଙ୍କର କରଗତ ହୋଇଅଛି ।୩୩।

ଯଦି ଆପଣ ଏହି ଦ୍ରବ୍ୟସବୁ ପ୍ରାପ୍ତ ହୋଇ ସୁଦ୍ଧା ଯଜ୍ଞାଦିର ଅନୁଷ୍ଠାନ ନ କରନ୍ତି ତାହାହେଲେ ଆପଣଙ୍କୁ ଏହି ରାଜ୍ୟର ପାପ ଭାର ବହନ କରିବାକୁ ହେବ । ରାଜା ଯେଉଁସବୁ ପ୍ରଜାମାନଙ୍କଠାରୁ ଅର୍ଥ ଗ୍ରହଣ କରି ଦକ୍ଷିଣାଯୁକ୍ତ ଅଶ୍ୱମେଧ ଯଜ୍ଞକୁ ସମ୍ପାଦନ କରନ୍ତି, ଯଜ୍ଞ ଶେଷରେ ସେହିସବୁ ପ୍ରଜାମାନେ ଅବଭୃଥ ସ୍ନାନରେ ପବିତ୍ର ହୁଅନ୍ତି । ବିଶ୍ୱରୂପ ସ୍ୱୟଂ ମହାଦେବ ସୁଦ୍ଧା ସର୍ବମେଧ ମହା ଯଜ୍ଞରେ ସମସ୍ତ ପ୍ରାଣିମାନଙ୍କୁ ଓ ଯଜ୍ଞଶେଷରେ ସ୍ୱକୀୟ ଶରୀରକୁ ହବନ କରିଥିଲେ ।୩୪।

ହେ ରାଜନ ! ଯେଉଁ ଯଜ୍ଞରେ ଯଜମାନ ସ୍ୱୟଂ ପତ୍ନୀ ସହିତ ଦୀକ୍ଷିତ ହୁଅନ୍ତି ଓ ଯହିଁରେ ଗୋଟିଏ ପଶୁ, ତିନିବେଦ ଓ ଋତ୍ୱିକଗଣ ତିନିଗୋଟି ଏପରି ଦଶଜଣ ଅବସ୍ଥାନ କରନ୍ତି, ସେହି ଦାଶରଥନାମକ ମହାନ୍ ଯଜ୍ଞୀୟ ପଥଟି ନିତ୍ୟ ଅଟେ । ତାହାର ଫଳ ଅବିନଶ୍ୱର ବୋଲି ଶ୍ରୁତି

ଅଛୁ । ଅତଏବ ଆପଣ ଈଦୃଶ ପଥକୁ ପରିତ୍ୟାଗ କରି କୁପଥରେ ଗମନ କରନ୍ତୁ ନାହିଁ ।୩୭।

---

## ନବମ ଅଧ୍ୟାୟ

ଯୁଧିଷ୍ଠିର କହିଲେ—ହେ ଅର୍ଜ୍ଜୁନ ! ତୁମ୍ଭେ ମୁହୂର୍ତ୍ତକାଳ ସକାଶେ ମନ ଓ ଶ୍ରୋତ୍ରକୁ ଅନ୍ତରାତ୍ମାରେ ନିବେଶିତ କରି ଏକାଗ୍ର ଚିତ୍ତ ହୁଅ । ତାହାହେଲେ ଆମ୍ଭର ବାକ୍ୟ ଶ୍ରବଣ କଲେ ତହିଁରେ ଅଭିରୁଚି ହେବ ।୧।

ବର୍ତ୍ତମାନ ଆମ୍ଭେ ଗ୍ରାମ୍ୟ ସୁଖକୁ ପରିତ୍ୟାଗପୂର୍ବକ ସାଧୁମାନଙ୍କର ଗନ୍ତବ୍ୟ ପଥରେ ଗମନ କରିବା ଅଭିଳାଷ କରୁଅଛୁଁ । ଅତଏବ ତୁମ୍ଭ ଅନୁରୋଧରେ ଆମ୍ଭେ ବିଷୟ ପଥକୁ ଗମନ କରିବୁ ନାହିଁ ।୨।

ପରନ୍ତୁ ଆମ୍ଭେ ଏକାକୀ ଗମନ କଲେ ଆମ୍ଭର କେଉଁ ପଥ ଶ୍ରେୟ ? ଯଦି ତୁମ୍ଭେ ଏପରି ପ୍ରଶ୍ନ କର କିମ୍ବା ତୁମ୍ଭର ଯଦି ପ୍ରଶ୍ନ କରିବାର ଇଚ୍ଛା ନ ଥାଏ, ତଥାପି ଆମ୍ଭେ ସ୍ୱୟଂ କହୁଅଛୁଁ ଶ୍ରବଣ କର ।୩।

ଆମ୍ଭେ ଗ୍ରାମ୍ୟ ବ୍ୟବହାର ସୁଖ ସବୁକୁ ପରିତ୍ୟାଗପୂର୍ବକ ଅରଣ୍ୟ ବାସୀ ଓ ଫଳମୂଳାହାରୀ ହେବୁଁ ଏବଂ ସୁମହତ ତପସ୍ୟାନୁଷ୍ଠାନ କରି ମୃଗମାନଙ୍କ ସହିତ ବିଚରଣ କରିବୁଁ ।୪।

ଆମ୍ଭେ ଅରଣ୍ୟରେ ଥାଇ ଯଥା ସମୟରେ ହୋମାଦି କାର୍ଯ୍ୟ ସମ୍ପାଦନ କରିବୁଁ । ପ୍ରାତଃ ଓ ସାୟଂକାଳରେ ସ୍ନାନ କରିବୁଁ । ଚର୍ମ ଚୀର ଓ ଜଟାଧାରଣପୂର୍ବକ ପରିମିତ ଭୋଜନ କରି ଶରୀରକୁ କୃଶ କରିବୁଁ ଏବଂ ଶୀତ, ବାତ, ଆତପ, କ୍ଷୁଧା ଓ ପିପାସାଦିଜନିତ କ୍ଳେଶମାନଙ୍କୁ ସହ୍ୟକରି ବିଧିଦୃଷ୍ଟ ଓ ତପସ୍ୟାଦ୍ୱାରା ଶରୀରକୁ ଶୋଷିତ କରିବୁଁ ।୫।

ଅରଣ୍ୟସ୍ଥ ପ୍ରହୃଷ୍ଟ ମୃଗ, ପକ୍ଷିମାନଙ୍କର ଶ୍ରୁତି ମନୋହର ଉଚ୍ଚଧ୍ୱନିକୁ ନିତ୍ୟ ଶ୍ରବଣ କରି, ପୁଷ୍ପିତ ବୃକ୍ଷମାନଙ୍କର ମନୋରମ ପୁଷ୍ପ ଗନ୍ଧକୁ ଆଘ୍ରାଣ କରି ଓ ସ୍ୱାଧ୍ୟାୟ ନିରତ ବାନପ୍ରସ୍ଥାଶ୍ରମସ୍ଥ ନାନା ବେଶଧାରୀ ରମଣୀୟ ବନବାସୀମାନଙ୍କୁ ଦର୍ଶନ କରି ବନରେ ଅବସ୍ଥାନ କରିବୁଁ । ଆମ୍ଭେ ଅନ୍ୟ କାହାର ଅନିଷ୍ଟାଚରଣ କରିବୁ ନାହିଁ; ଅତଏବ ଗ୍ରାମବାସିମାନଙ୍କ ସହିତ ଆମ୍ଭର କି ସମ୍ବନ୍ଧ ରହିବ ? ।୬।

ଆମ୍ଭେ ସେଠାରେ ଏକାନ୍ତ ଶୀଳବୃତ୍ତିକୁ ଅବଲମ୍ବନ କରି ପକ୍ୱ ଓ ଅପକ୍ୱ ଫଳଦ୍ୱାରା ଏବଂ ନିର୍ଝରବାରି ଓ ସ୍ତୋତ୍ରାଦିଦ୍ୱାରା ଦେବ ଓ ପିତୃଗଣଙ୍କର ତୃପ୍ତି ସାଧନ କରିବୁଁ ।୧୦।

ଆମ୍ଭେ ଏହି ପ୍ରକାର ଆରଣ୍ୟକ ଶାସ୍ତ୍ର ବିହିତ କଠୋର ବ୍ରତକୁ ଆଶ୍ରୟ କରି ଦେହାବସାନର କାଳକୁ ପ୍ରତୀକ୍ଷା କରିଥିବୁଁ ।୧୧।

ଅଥବା ମୁଣ୍ଡିତ ମସ୍ତକ ହୋଇ ପ୍ରତିଦିନ ଗୋଟିଏ ଗୋଟିଏ ବନସ୍ପତିଙ୍କ ନିକଟରୁ ଫଳ ଭିକ୍ଷାପୂର୍ବକ ଶରୀର ଯାତ୍ରା ନିର୍ବାହ କରିବୁଁ ।୧୨।

ଅପିଚ ନିରାଶ୍ରୟ ଓ ଭସ୍ମାଚ୍ଛାଦିତ ହୋଇ ଗୃହ ଶୂନ୍ୟ ହେବୁଁ । ଅର୍ଥାତ୍ ଇତସ୍ତତଃ ପର୍ଯ୍ୟଟନ କରିବୁଁ କିମ୍ବା ସମସ୍ତ ପ୍ରିୟ ଓ ଅପ୍ରିୟ ବସ୍ତୁକୁ ପରିତ୍ୟାଗ କରି ବୃକ୍ଷ ମୂଳରେ ଅବସ୍ଥାନ କରିବୁଁ ।୧୩।

ଆମ୍ଭେ ମଧ୍ୟ ସମସ୍ତ ପରିଗ୍ରହ ଶୂନ୍ୟ ଓ ନିର୍ଦ୍ଵନ୍ଦ୍ୱ ହୋଇ ମମତା ଓ ବାସନା ବିବର୍ଜ୍ଜିତ ହେବୁଁ ଏବଂ ଶୋକ କିମ୍ବା ହର୍ଷର ବଶବର୍ତ୍ତୀ ନ ହୋଇ ସ୍ତୁତି ଓ ନିନ୍ଦାକୁ ସମାନ ଜ୍ଞାନ କରିବୁଁ ।୧୪।

ଆମ୍ଭେ କଦାପି କାହାରି ସହିତ ବାକ୍ୟାଳାପ କରିବୁ ନାହିଁ ଓ ବାହ୍ୟରେ ଅନ୍ଧ, ଜଡ଼ ବା ବଧିର ପ୍ରାୟ ହୋଇ ବିଶୁଦ୍ଧ ଚିତ୍ତରେ କେବଳ ଆତ୍ମୋପାସନା କରିବୁଁ ।୧୫।

ଆମ୍ଭେ ଜରାୟୁଜାଦି ଚତୁର୍ବିଧ ପ୍ରାଣୀମାନଙ୍କ ମଧ୍ୟରୁ କାହାରି ପ୍ରତି ହିଂସା କରିବୁ ନାହିଁ । କି ଧାର୍ମିକ କି, ଇନ୍ଦ୍ରିୟପରାୟଣ ସମସ୍ତଙ୍କ ପ୍ରତି ସମଦୃଷ୍ଟି କରିବୁଁ ।୧୬।

ଆମ୍ଭେ କାହାରି ପ୍ରତି ଅବଜ୍ଞା ପ୍ରଦର୍ଶନ କିମ୍ବା ଭ୍ରୂକୁଟୀପାତ କରିବୁଁ ନାହିଁ । ସର୍ବଦା ପ୍ରସନ୍ନ ଭାବରେ ଥାଇ ଇନ୍ଦ୍ରିୟ ସଂଯମନ କରିବୁଁ ।୧୭।

ଗମନ କାଳରେ କୌଣସି ଦିଗ ବା ଦେଶ ପ୍ରତି ଲକ୍ଷ୍ୟ କରିବୁଁ ନାହିଁ । ପଶ୍ଚାତଦିଗକୁ ଦୃଷ୍ଟିପାତ କରିବୁଁ ନାହିଁ କିମ୍ବା ପଥ ବିଷୟରୁ କାହାକୁ ସୁଦ୍ଧା ପ୍ରଶ୍ନ କରିବୁ ନାହିଁ । ଆମ୍ଭେ କେବଳ ସ୍ଥୂଳ ଓ ସୂକ୍ଷ୍ମ ଶରୀରରେ ଅଭିମାନ ବର୍ଜିତ ଓ ନିରପେକ୍ଷ ହୋଇ ସମାହିତ ଚିତ୍ତରେ ଓ ସରଳାନ୍ତଃକରଣରେ ଇଚ୍ଛାନୁଯାୟୀ ଭ୍ରମଣ କରିବୁଁ ।୧୮।

ସ୍ୱଭାବ ଜୀବର ଆଗେ ଆଗେ ଗମନ କରେ; ସୁତରାଂ ଆହାରାଦି ବ୍ୟାପାର ସ୍ୱାଭାବିକ ସଂସ୍କାରରୁ ନିର୍ବାହିତ ହେବ; କିନ୍ତୁ ଆମ୍ଭେ ଜ୍ଞାନର

ବିରୁଦ୍ଧ ଧର୍ମୀ ଅର୍ଥାତ୍ ପରସ୍ପର ବିରୁଦ୍ଧ ସେହିସବୁ ସୁଖଦୁଃଖାଦି ଦ୍ୱନ୍ଦ୍ୱ ପଦାର୍ଥକୁ ଚିନ୍ତା କରିବୁ ନାହିଁ ।୨୦।

ପ୍ରଥମ ଗୃହରେ ଯଦି ପବିତ୍ର ଭୋଜନ ଦ୍ରବ୍ୟ କିଛିମାତ୍ର ନ ମିଳେ ତାହାହେଲେ ଅନ୍ୟ ଗୃହକୁ ଯିବୁଁ । ସେଠାରେ ଯଦି ପୁଣି ନ ମିଳେ ତେବେ ସପ୍ତଗୃହ ପର୍ଯ୍ୟନ୍ତ ପର୍ଯ୍ୟଟନପୂର୍ବକ ଉଦରପୂର୍ତ୍ତି କରିବୁଁ ।୨୧।

ଯେତେବେଳେ ଗ୍ରାମର ସମସ୍ତ ଲୋକେ ଉଲୂଖଳ ମୁଷଳାଦିର କାର୍ଯ୍ୟ ସମାଧାନ କରିବେ, ତେତେବେଳେ ଅଗ୍ନିସବୁ ନିର୍ବାପିତ ହୋଇ ରନ୍ଧନଶାଳା ଧୂମଶୂନ୍ୟ ହେବ ଓ ଗୃହସ୍ଥସବୁ ଭୋଜନାଦି ବ୍ୟାପାର ସମାପ୍ତ କରିବେ ଏବଂ ଯେତେବେଳେ ଅତିଥି ଓ ଭିକ୍ଷୁକମାନଙ୍କର ସୁଦ୍ଧା ଗମନାଗମନ ହେଉ ନ ଥିବ ତେତେବେଳେ ଆମ୍ଭେ ଦୁଇ ତିନି କିମ୍ବା ପାଞ୍ଚୋଟି ଗୃହରେ ପର୍ଯ୍ୟଟନପୂର୍ବକ ଭିକ୍ଷା କରିବୁଁ ଓ ସମସ୍ତ ସ୍ପୃହାପାଶରୁ ବିମୁକ୍ତ ହୋଇ ଏହି ପୃଥିବୀରେ ବିଚରଣ କରିବୁଁ ।୨୩।

ଲାଭ ହେଉ କିମ୍ବା ଅଲାଭ ହେଉ ଉଭୟରେ ସମାନ ଜ୍ଞାନ କରି ସୁମହତ ତପଶ୍ଚର୍ଯ୍ୟାରେ ରତ ଥିବୁଁ । ଜୀବିତାର୍ଥୀ କିମ୍ବା ମୁମୂର୍ଷୁ ସଦୃଶ ବ୍ୟବହାର କରିବୁଁ ନାହିଁ ।୨୪।

ଆମ୍ଭେ ଜୀବନ ଏବଂ ମରଣରେ ସମାନ ଜ୍ଞାନ କରିବୁଁ । କେଉଁଥିରେ ସୁଦ୍ଧା ହର୍ଷ କିମ୍ବା ବିଦ୍ୱେଷ କରିବୁଁ ନାହିଁ । ଯଦି କୌଣସି ବ୍ୟକ୍ତି କୁଠାରଦ୍ୱାରା ଅମ୍ଭର ଗୋଟିଏ ବାହୁକୁ ଛେଦନ କରେ ଓ ଅପର ଏକ ବ୍ୟକ୍ତି ଚନ୍ଦନଦ୍ୱାରା ଅନ୍ୟବାହୁକୁ ଲେପିତ କରେ ତେବେ ଆମ୍ଭେ ଉକ୍ତ ଦୁଇ ବ୍ୟକ୍ତିଙ୍କ ମଧ୍ୟରୁ କାହାର ସୁଦ୍ଧା ମଙ୍ଗଳ କିମ୍ବା ଅମଙ୍ଗଳ ଚିନ୍ତା କରିବୁ ନାହିଁ ।୨୫।

ମନୁଷ୍ୟମାନେ ନିଜର ଅଭ୍ୟୁଦୟ ନିମିତ୍ତ ଯେଉଁସବୁ କାର୍ଯ୍ୟ କରନ୍ତି, ଆମ୍ଭେ ତତ୍ସମସ୍ତ ପରିତ୍ୟାଗପୂର୍ବକ ଏକ ଶରୀର ନିର୍ବାହୋପଯୋଗୀ କର୍ମରେ ଅବସ୍ଥିତ ଥାଇ କାଳଯାପନ କରିବୁଁ ।୨୬।

ଆମ୍ଭେ ସର୍ବଦା ସମସ୍ତ କର୍ମରେ ଅନାସକ୍ତ ଥାଇ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରିବାରେ ଯତ୍ନପର ହେବୁଁ ଓ ସର୍ବତୋଭାବରେ ସଂକଳ୍ପ ପରିତ୍ୟାଗପୂର୍ବକ ଆତ୍ମା କଳୁଷକୁ ଦୂରୀକୃତ କରିବୁଁ ।୨୭।

ଆମ୍ଭେ ସଂସାର-ପାଶକୁ ଛେଦନ କରି ସର୍ବପ୍ରକାର ସଙ୍ଗରୁ ବିମୁକ୍ତ ହେବୁଁ ଏବଂ ବାୟୁ ସଦୃଶ ସ୍ୱତନ୍ତ୍ର ଭାବରେ ବିଚରଣ କରିବୁଁ ।୨୮।

ଆମ୍ଭେ ଅଜ୍ଞାନ-ଜନିତ ବାସନାର ବଶୀଭୂତ ହୋଇ ସୁମନ୍ଦିତ ପାପାଚରଣ କରୁଅଛୁଁ । ଅତଏବ ଏହି ପ୍ରକାରେ ଆସକ୍ତି ଶୂନ୍ୟ ହେଲେ ଅଖଣ୍ଡ ଆନନ୍ଦକୁ ଲାଭ କରି ପାରିବୁଁ ।୨୯।

କୌଣସି କୌଣସି ମୂଢ଼ ବ୍ୟକ୍ତି ବହୁବିଧ ଶୁଭାଶୁଭ କାର୍ଯ୍ୟକରି ନାନାକାର୍ଯ୍ୟ କାରଣ ସଂଶ୍ଳିଷ୍ଟ ସ୍ତ୍ରୀପୁତ୍ରାଦି ସ୍ୱଜନବର୍ଗଙ୍କୁ ସ୍ନେହପୂର୍ବକ ପ୍ରତିପାଳନ କରନ୍ତି ଓ ପରେ ଆୟୁଃ ଶେଷରେ ଏହି କ୍ଷୀଣ ପ୍ରାଣ କଳେବରକୁ ପରିତ୍ୟାଗ କରି ଲୋକାନ୍ତରେ ଅନୁଷ୍ଠିତ ପାପ କର୍ମାଦିର ଫଳଭାଗୀ ହୁଅନ୍ତି; କାରଣ ଯେ କର୍ତ୍ତା ସେ ନିଜର କର୍ମଫଳକୁ ଭୋଗ କରେ ।୩୧।

ପ୍ରାଣିମାନେ ଏହିପରି କର୍ମସୂତ୍ରରେ ଆବଦ୍ଧ ହୋଇ ଓ ରଥଚକ୍ରବତ୍ ନିରନ୍ତର ଭ୍ରାମ୍ୟମାଣ ହୋଇ ସଂସାର-ଚକ୍ରକୁ ଆଗମନପୂର୍ବକ ଦେହଧାରଣ କରନ୍ତି ।୩୨।

ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧି ପ୍ରଭୃତି ନାନା ପ୍ରକାର ବେଦନା-ସଙ୍କୁଳ ଓ ସର୍ବଦା ଅସ୍ୱାସ୍ଥ୍ୟକର ଏହି ଅପାର ସଂସାରକୁ ଯେ ପରିତ୍ୟାଗ କରିପାରନ୍ତି, ତାହାଙ୍କର କେବଳ ନିରବଚ୍ଛିନ୍ନ ସୁଖ ଲାଭ ହୁଏ ।୩୩।

ଯେଉଁ ସ୍ଥଳେ ଦେବତାମାନେ ସ୍ୱର୍ଗରୁ ଭ୍ରଷ୍ଟ ହେଉ ଅଛନ୍ତି ଓ ମହର୍ଷିଗଣ ମଧ୍ୟ ନିଜ ନିଜ ସ୍ଥାନରୁ ଭ୍ରଷ୍ଟ ହେଉଅଛନ୍ତି, ସେ ସ୍ଥଳେ ଏହି ସବୁ କାରଣ ତତ୍ତ୍ୱକୁ ଜାଣି କେଉଁ ବ୍ୟକ୍ତି ଏହି ଅନିତ୍ୟ ସ୍ୱର୍ଗାଦି ଲୋକମାନଙ୍କରେ ଜନ୍ମ ଗ୍ରହଣ କରିବାର ଇଚ୍ଛା କରିବ ? ।୩୪।

ସମୟ କ୍ରମରେ ଅତି ସାମାନ୍ୟ ରାଜାମାନେ ମଧ୍ୟ କପଟତା ପ୍ରଭୃତି ବିବିଧ ଉପାୟ ପ୍ରୟୋଗ କରି କୌଣସି କାରଣରୁ ମହାରାଜାଙ୍କୁ ସୁଦ୍ଧା ନିହତ କରନ୍ତି ।୩୫।

ଯାହାହେଉ; ବହୁକାଳ ଉତ୍ତାରେ ଆମ୍ଭର ଏହି ଜ୍ଞାନାମୃତ ଉତ୍ପନ୍ନ ହେଉଅଛି; ଏହି ଜ୍ଞାନକୁ ଅବଲମ୍ବନ କରି ଆମ୍ଭେ ବର୍ତ୍ତମାନ ସେହି ଅକ୍ଷୟ, ଅବ୍ୟୟ ଓ ଶାଶ୍ୱତ ସ୍ଥାନକୁ ପ୍ରାର୍ଥନା କରୁଅଛୁଁ ।୩୬।

ଆମ୍ଭେ ଈଦୃଶ ଜ୍ଞାନକୁ ନିରନ୍ତର ହୃଦୟରେ ଧାରଣ କରି ଓ ନିର୍ଭୟ ପଥରେ ଆରୂଢ଼ ହୋଇ ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧି ପ୍ରଭୃତି ବିବିଧ ବେଦନାଯୁକ୍ତ ଏହି ଦେହର ଅବସାନ କରିବୁଁ ।୩୭।

---

## ଦଶମ ଅଧ୍ୟାୟ

ଭୀମସେନ କହିଲେ, ହେ ମହାରାଜ ! ଯେପରି ଅର୍ଥ ଜ୍ଞାନଶୂନ୍ୟ ବେଦ ପାଠକ ବ୍ରାହ୍ମଣର ବୁଦ୍ଧି ନିତ୍ୟ ବେଦପାଠଦ୍ୱାରା ମନ୍ଦ ହୁଏ, ସେହିପରି ଆପଣଙ୍କର ବୁଦ୍ଧି ମଧ୍ୟ କଳୁଷିତ ହେବାରୁ ତତ୍ତ୍ୱଦର୍ଶିନୀ ହେଉନାହିଁ । ୧ ।

ହେ ଭରତର୍ଷଭ ! ରାଜଧର୍ମରେ ଦୋଷାରୋପ କରି ଯଦି ଅଳସଭାବକୁ ଅବଲମ୍ବନ କରିବାର ଇଚ୍ଛାଥିଲା ତାହାହେଲେ ଧୃତରାଷ୍ଟ୍ର ପୁତ୍ରମାନଙ୍କର ବିନାଶ ସାଧନ କରିବାଦ୍ୱାରା ଆପଣଙ୍କର କି ଫଳ ହେଲା ? । ୨ ।

କ୍ଷମା, ଅନୁକମ୍ପା, କରୁଣା ଓ ଅନୃଶଂସତା ପ୍ରଭୃତି ଗୁଣସବୁ କି ଆପଣଙ୍କ ବ୍ୟତୀତ ଅନ୍ୟାନ୍ୟ କ୍ଷତ୍ରିୟ ଧର୍ମାବଲମ୍ବୀ ରାଜାମାନଙ୍କଠାରେ ନାହିଁ ? । ୩ ।

ଆମ୍ଭେମାନେ ଯଦି ଆପଣଙ୍କର ଈଦୃଶ ଅଭିପ୍ରାୟକୁ ପୂର୍ବରୁ ଜାଣିପାରି ଥା'ନ୍ତୁ ତାହାହେଲେ କଦାପି ଶସ୍ତ୍ର ଗ୍ରହଣ କରି ନ ଥାନ୍ତୁ କିମ୍ବା କାହାକୁ ମୁଦ୍ଧା ବଧ କରି ନ ଥାନ୍ତୁ । । ୪ ।

ତନୁତ୍ୟାଗ କାଳ ପର୍ଯ୍ୟନ୍ତ ଆମ୍ଭେମାନେ ଭିକ୍ଷାବୃତ୍ତିକି ଅବଲମ୍ବନ କରିଥାନ୍ତୁ, ଏପରି ହୋଇଥିଲେ ଆଉ ରାଜାମାନଙ୍କ ମଧ୍ୟରେ ଏପରି ଭୟଙ୍କର ଯୁଦ୍ଧ ହୋଇ ନ ଥାନ୍ତା । ୫ ।

ହେ ରାଜନ୍ ! ଜ୍ଞାନିମାନେ ସ୍ଥାବର-ଜଙ୍ଗମ-ସମନ୍ୱିତା ଏହି ପୃଥିବୀକୁ କେବଳ ବଳଶାଳୀ ପୁରୁଷଙ୍କର ଭୋଗ୍ୟା ଓ ପାଳନୀୟା ବୋଲି ଜାଣନ୍ତି । ୬ ।

କ୍ଷତ୍ରିୟ ଧର୍ମାଭିଜ୍ଞ ପଣ୍ଡିତମାନଙ୍କର ଏହିପରି ଅଭିମତ ଯେ, ଉକ୍ତ ବଳଶାଳୀ ପୁରୁଷର ରାଜ୍ୟ ଗ୍ରହଣ ସମୟରେ ଯଦି କେହି ଶତ୍ରୁତାଚରଣ କରନ୍ତି ତା'ହେଲେ ତତ୍‌କ୍ଷଣାତ୍ ସେମାନଙ୍କୁ ବିନଷ୍ଟ କରିବା କର୍ତ୍ତବ୍ୟ । ୭ ।

ହେ ଧର୍ମରାଜ ! ଆମ୍ଭମାନଙ୍କର ଶତ୍ରୁ କୌରବମାନେ ମଧ୍ୟ ସେହି ଦୋଷରେ ଦୂଷିତ ହୋଇ ଆମ୍ଭମାନଙ୍କ କର୍ତ୍ତୃକ ନିହତ ହୋଇ ଅଛନ୍ତି ।

ଅତଏବ ଆପଣ ବର୍ତ୍ତମାନ ଶତ୍ରୁବିହୀନ ହୋଇ ଧର୍ମାନୁସାରେ ଏହି ପୃଥିବୀକୁ ଭୋଗ କରନ୍ତୁ । ୮ ।

ଯେପରି କୌଣସି ପୁରୁଷ କୂପ ଖନନପୂର୍ବକ ତହିଁରେ ଜଳପ୍ରାପ୍ତ ନ ହୋଇ କେବଳ ପଙ୍କଲିପ୍ତ କଳେବରରେ ପ୍ରତିନିବୃତ୍ତ ହୁଏ, ଯେପରି ମହାବୃକ୍ଷରେ ଆରୂଢ଼ ହୋଇ ମଧୁ ଆହରଣପୂର୍ବକ ଆହରଣ କର୍ତ୍ତା ଉକ୍ତ ମଧୁକୁ ଆସ୍ୱାଦନ ନ କରି ନିହତ ହୁଏ, ଯେପରି କୌଣସି ବ୍ୟକ୍ତି ଆଶାରେ ଆଶାପୂର୍ଣ୍ଣ ହୋଇ ମହାପଥରେ ଗମନପୂର୍ବକ ପରିଶେଷରେ ନିରାଶ ହୋଇ ପ୍ରତି ନିବୃତ୍ତ ହୁଏ, ଯେପରି କୌଣସି ବୀର ପୁରୁଷ ସମସ୍ତ ଶତ୍ରୁଗଣଙ୍କୁ ବିନଷ୍ଟ କରି ସୁଦ୍ଧା ପଶ୍ଚାତ୍ ଆତ୍ମହତ୍ୟା କରିବାକୁ ପ୍ରବୃତ୍ତ ହୁଏ, ଯେପରି କ୍ଷୁଧିତ ବ୍ୟକ୍ତି ଅନ୍ନ ଲାଭକରି ସୁଦ୍ଧା ଭୋଜନ କରିବାକୁ ସମର୍ଥ ନ ହୁଏ, ଆଉ ଯେପରି କାମୀ ପୁରୁଷ ଯଦୃଚ୍ଛାଗତ କାମିନୀକି ଲାଭ କରି ସୁଦ୍ଧା ତାହାକୁ ଉପଭୋଗ କରି ନ ପାରେ ସେହିପରି ଆପଣ ବନଗମନ ନିମିତ୍ତ ଉଦ୍ୟତ ହେବାରୁ ଆମ୍ଭମାନଙ୍କର ଶତ୍ରୁବିନାଶାଦି କାର୍ଯ୍ୟସବୁ ନିରର୍ଥକ ହେଉଅଛି । ୧୩ ।

ହେ ଭାରତ ! ଆପଣ ନିର୍ବୋଧ ହେଲେ ଯେତେବେଳେ ଅମ୍ଭେମାନେ ଆପଣଙ୍କୁ ଜ୍ୟେଷ୍ଠ ବୋଲି ମାନ୍ୟକରି ଆପଣଙ୍କର ଅନୁବର୍ତ୍ତୀ ହୋଇଅଛୁଁ, ତେତେବେଳେ ଅମ୍ଭେମାନେ ନିଶ୍ଚୟ ନିନ୍ଦନୀୟ ଅଟୁଁ । ୧୪ ।

ଆମ୍ଭେମାନେ ସମସ୍ତେ ବାହୁବଳଶାଳୀ, କୃତବିଦ୍ୟ ଓ ବିବେଚକ ଅଟୁଁ । କିନ୍ତୁ ଅକ୍ଷମ ପୁରୁଷ ପ୍ରାୟ ଆମ୍ଭେମାନେ ଆପଣଙ୍କପରି କ୍ଳୀବଜନର ଅଧୀନରେ ଅବସ୍ଥାନ କରୁଅଛୁଁ । ୧୫ ।

ହେ ରାଜନ ! ଅମ୍ଭର ବାକ୍ୟ ଯୁକ୍ତିସଙ୍ଗତ କି ନା ବିଚାର କରି ଦେଖନ୍ତୁ । ଆମ୍ଭେମାନେ ଅନାଥ ଲୋକମାନଙ୍କର ରକ୍ଷକ ହୋଇ ସୁଦ୍ଧା ଯଦି ଅର୍ଥରୁ ଭ୍ରଷ୍ଟ ହେଉ ତାହାହେଲେ ଲୋକେ ଅମ୍ଭମାନଙ୍କୁ ପ୍ରୟୋଜନସିଦ୍ଧି ବିଷୟରେ ଅଯୋଗ୍ୟ ବୋଲି ବିବେଚନା କରିବେ ନାହିଁ କି ? । ୧୬ ।

ରାଜାମାନେ ଜରାଗ୍ରସ୍ତ ହେଲେ କିମ୍ବା ଶତ୍ରୁବୃନ୍ଦ କର୍ତ୍ତୃକ ପରାଜିତ ହେଲେ ଅର୍ଥାତ୍ ଆପଦ ସମୟରେ ସନ୍ୟାସ ଧର୍ମ ଗ୍ରହଣ କରି ପାରନ୍ତି, ଏହିପରି ବିଧି ଅଛି । ୧୭ ।

ଅତଏବ ସୂକ୍ଷ୍ମଦର୍ଶୀ ପଣ୍ଡିତମାନେ ଅପର ସମୟରେ କ୍ଷତ୍ରିୟ-ମାନଙ୍କର ସନ୍ୟାସ ଧର୍ମାବଲମ୍ବନ ଅଧିକ ପ୍ରଶଂସା କରନ୍ତି ନାହିଁ ବରଂ ତଦ୍ଦ୍ୱାରା ଧର୍ମହାନି ହୁଏ ବୋଲି କୀର୍ତ୍ତନ କରି ଅଛନ୍ତି । ୧୮ ।

ଅପିଚ ଯେଉଁମାନେ କ୍ଷତ୍ରିୟମାନଙ୍କଠାରୁ ଉତ୍ପନ୍ନ ହୋଇଅଛନ୍ତି ଏବଂ ସେହି କ୍ଷତ୍ରିୟ ଧର୍ମନିଷ୍ଠ ଅଟନ୍ତି ମଧ୍ୟ ଉକ୍ତ ହିଂସା ଧର୍ମଦ୍ୱାରା ଜୀବିକା ନିର୍ବାହ କରନ୍ତି ସେମାନେ ବା କି ପ୍ରକାରେ ସେହି ଦୈବ ନିର୍ଦ୍ଦିଷ୍ଟ ଧର୍ମକୁ ନିନ୍ଦା କରିପାରିବେ ? ଅତଏବ ଦୈବ ନିର୍ଦ୍ଦିଷ୍ଟ ଧର୍ମ ନିନ୍ଦନୀୟ ନୁହେଁ । ୧୯ ।

କ୍ଷତ୍ରିୟମାନଙ୍କର ମଧ୍ୟ ସନ୍ୟାସ ଧର୍ମରେ ଅଧିକାର ଅଛି ବୋଲି ବେଦରେ ଉଲ୍ଲିଖିତ ହୋଇଅଛି, ତାହା ପ୍ରକୃତ ନୋହିଲେହେଁ ଋକ୍, ସାମ ଓ ଯଜୁ ଏହି ତ୍ରୟୀ ବିଦ୍ୟାରେ ଅନଭିଜ୍ଞ ଯେଉଁ ନିର୍ଦ୍ଧନ ନାସ୍ତିକଗଣ ସେମାନେ ବେଦୋକ୍ତ ସନ୍ୟାସ ଧର୍ମର ପ୍ରଶଂସା ପର ବାକ୍ୟକୁ ସତ୍ୟ ସଦୃଶ ପ୍ରତୀୟମାନ କରି ମତ ପ୍ରକାଶ କରିଅଛନ୍ତି । ୨୦ ।

କ୍ଷତ୍ରିୟମାନେ ମସ୍ତକମଣ୍ଡନ ରୂପ କପଟ ସନ୍ୟାସ ଧର୍ମକୁ ଅବଲମ୍ବନ କରି ଯତ୍ନଦ୍ୱାରା ଦେହକୁ ନିଶ୍ଚେଷ୍ଟଭାବରେ ରକ୍ଷା କଲେ ତାହା ସେମାନଙ୍କର ବିନାଶର କାରଣ ହୁଏ କିନ୍ତୁ ଜୀବନର କାରଣ ହୁଏନାହିଁ । ୨୧ ।

ପରନ୍ତୁ ଅସମର୍ଥ ପୁରୁଷମାନେ ଅର୍ଥାତ୍ ଯେଉଁମାନେ ଦେବ, ଋଷି, ଅତିଥି, ପିତୃ, ପୁତ୍ର ଓ ପୌତ୍ର ପ୍ରଭୃତିଙ୍କୁ ପାଳନ କରିବାରେ ଅସମର୍ଥ ଅଟନ୍ତି । ସେମାନେ କେବଳ ଅରଣ୍ୟ ପ୍ରଦେଶରେ ଏକାକୀ ଅବସ୍ଥାନ କରି ସୁଖୀ ହୋଇ ପାରନ୍ତି । ୨୨ ।

ଯେପରି ମୃଗ, ବରାହ ଓ ପକ୍ଷିମାନେ ଅରଣ୍ୟବାସୀ ହୋଇ ମଧ୍ୟ ସ୍ୱର୍ଗର ଅଧିକାରୀ ନୁହଁନ୍ତି । ତଦ୍ରୂପ ପୁଣ୍ୟ କର୍ମାନୁଷ୍ଠାନ ବିମୁଖ କ୍ଷତ୍ରିୟମାନେ ମଧ୍ୟ ଅରଣ୍ୟଜ ଧର୍ମଦ୍ୱାରା କୌଣସି ଉପାୟରେ ସ୍ୱର୍ଗାଧିକାରୀ ହୋଇପାରିବେ ନାହିଁ । ୨୩ ।

ହେ ରାଜନ୍ ! ଯଦି କେବଳ ସନ୍ୟାସ ଧର୍ମଦ୍ୱାରା ସିଦ୍ଧିଲାଭ ହୁଅନ୍ତା ତେବେ ପର୍ବତ ଓ ବୃକ୍ଷମାନେ ଅତିଶୀଘ୍ର ସିଦ୍ଧିଲାଭ କରନ୍ତେ । ୨୪ ।

ପୃଥିବୀରେ ଏହି ପର୍ବତ ଓ ବୃକ୍ଷ ପ୍ରଭୃତି ପ୍ରକୃତ ସନ୍ନ୍ୟାସୀ ଓ ବ୍ରହ୍ମଚାରୀ ସଦୃଶ ଦୃଷ୍ଟ ହୁଅନ୍ତି, କାରଣ ଏମାନଙ୍କର ପରିଗ୍ରହ କିମ୍ବା କୌଣସି ପ୍ରକାର ଉପଦ୍ରବ ସୁଦ୍ଧା ନାହିଁ । ୨୫ ।

ପୁରୁଷ ନିଜର ଅଦୃଷ୍ଟ ବ୍ୟତୀତ ପରର ଭାଗ୍ୟ ଅନୁସାରେ କଦାପି ଫଳଭାଗୀ ହୁଏନାହିଁ । ଅତଏବ କର୍ମ କରିବା ଅବଶ୍ୟ କର୍ତ୍ତବ୍ୟ । କର୍ମହୀନ ବ୍ୟକ୍ତି ସିଦ୍ଧି ଲାଭ କରିପାରେ ନାହିଁ । ୨୬ ।

ନିଜର ଉଦରକୁ ଭରଣ କଲେ ଯଦି ସିଦ୍ଧି ଲାଭ ହୁଅନ୍ତା ତା'ହେଲେ ନିଜର ଉଦର ବ୍ୟତୀତ ଅନ୍ୟ କିଛି ଭରଣୀୟ ନାହିଁ । ଏପରି ଯେଉଁ ମତ୍ସ୍ୟାଦି ଜଳଜନ୍ତୁମାନେ ସୃଷ୍ଟ ହୋଇ ଅଛନ୍ତି ସେମାନେ ମଧ୍ୟ ସନ୍ନ୍ୟାସ ଧର୍ମଜନିତ ମୁକ୍ତି ଫଳକୁ ଲାଭକରି ପାରନ୍ତେ । ୨୭ ।

ଆପଣ ବିଶେଷଭାବରେ ନିରୀକ୍ଷଣ କରି ଦେଖନ୍ତୁ ଯେ ଜଗତର ସମସ୍ତ ପ୍ରାଣୀ ନିଜ ନିଜ କର୍ମଦ୍ୱାରା ବ୍ୟାପୃତ ହୋଇଅଛନ୍ତି, ଅତଏବ କର୍ମ କରିବା ଅବଶ୍ୟ କର୍ତ୍ତବ୍ୟ; କର୍ମହୀନ ବ୍ୟକ୍ତିର କଦାପି ସିଦ୍ଧିଲାଭ ହୁଏନାହିଁ । ୨୮ ।

---

## ଏକାଦଶ ଅଧ୍ୟାୟ

ଅର୍ଜୁନ କହିଲେ—ହେ ମହାରାଜ ! ଏହି ବିଷୟରେ ତାପସ-ଗଣଙ୍କ ସହିତ ଦେବରାଜ ଇନ୍ଦ୍ରଙ୍କର କଥୋପକଥନ ଉପଲକ୍ଷରେ ଗୋଟିଏ ପୁରାତନ ଇତିହାସ କଥିତ ଅଛି । ତାହା କହୁଅଛି ଶ୍ରବଣ କରନ୍ତୁ । ୧ ।

ପୂର୍ବକାଳରେ କେତେଗୁଡ଼ିଏ ସତ୍କୁଳଜାତ ଅଜାତ ଶ୍ମଶ୍ରୁ ନିର୍ବୋଧ ଦ୍ୱିଜ କୁମାର ପରିବ୍ରାଜକ ଧର୍ମ ଗ୍ରହଣ କରି ଗୃହ ପରିତ୍ୟାଗପୂର୍ବକ ଅରଣ୍ୟକୁ ଗମନ କଲେ । ୨ ।

ସେମାନେ ସମସ୍ତେ ଧନବାନ ହେଲେ ସୁଦ୍ଧା ସନ୍ନ୍ୟାସ ଧର୍ମକୁ ଉତ୍କୃଷ୍ଟ ଧର୍ମବୋଲି ବୋଧକରି ପିତା ଓ ଭ୍ରାତା ପ୍ରଭୃତି ବନ୍ଧୁବର୍ଗଙ୍କୁ ପରିତ୍ୟାଗ କଲେ ଓ ବ୍ରହ୍ମଚର୍ଯ୍ୟାବଲମ୍ବନପୂର୍ବକ ପର୍ଯ୍ୟଟନ କରୁଁ କରୁଁ ଇନ୍ଦ୍ର ସେମାନଙ୍କ ପ୍ରତି କୃପା କଲେ । ୩ ।

ଭଗବାନ ଇନ୍ଦ୍ର ସ୍ୱର୍ଣ୍ଣମୟ ପକ୍ଷିରୂପ ଧାରଣ କରି ସେମାନଙ୍କୁ କହିଲେ ଯେ, ଇହ ସଂସାରରେ ଯେଉଁମାନେ ଯଜ୍ଞାବଶିଷ୍ଟ ଭୋଜୀ ଅଟନ୍ତି,

ସେମାନେ ପୁଣି ବ୍ରତୀ ମନୁଷ୍ୟମାନଙ୍କର ଅତି ଦୁଷ୍କର କର୍ମ ସମ୍ପାଦନ କରନ୍ତି । ୪ ।

ଯଜ୍ଞାବଶିଷ୍ଟ ଭୋଜନ ପବିତ୍ର କର୍ମ ଅଟେ । ସୁତରାଂ ଈଦୃଶ କର୍ମକାରୀ ଲୋକମାନଙ୍କର ଜୀବନ ପ୍ରଶସ୍ତ ହୋଇଥାଏ ଏବଂ ଈଦୃଶ ଧର୍ମ-ପରାୟଣ ଲୋକମାନେ ସିଦ୍ଧମନୋରଥ ହୋଇ ପରମ ଗତିକୁ ଲାଭ କରନ୍ତି । ତାପସଗଣ କହିଲେ; ଅହୋ ! ଏହି ପକ୍ଷୀ ଯଜ୍ଞାବଶିଷ୍ଟ ଭୋଜୀ-ମାନଙ୍କର ପ୍ରଶଂସା କରୁଅଛି । ଆମ୍ଭେମାନେ ତ ଯଜ୍ଞଶେଷାନ୍ନକୁ ଭୋଜନ କରୁଁ ଅତଏବ ସେ ନିଶ୍ଚୟ ଆମ୍ଭମାନଙ୍କ ଭବିଷ୍ୟ ବିଜ୍ଞାପନ କରୁଅଛି ।୬।

ପକ୍ଷୀ କହିଲା—ହେ ତାପସଗଣ ! ଆମ୍ଭେ ତୁମ୍ଭମାନଙ୍କର ପ୍ରଶଂସା କରୁ ନାହୁଁ । ତୁମ୍ଭେମାନେ ଯଜ୍ଞାବଶିଷ୍ଟ ଭୋଜୀ ନୁହଁ । ତୁମ୍ଭେମାନେ ମନ୍ଦ ବୁଦ୍ଧି, ଉଚ୍ଛିଷ୍ଟ ଭୋଜୀ ମଳିନ ସତ୍ତ୍ୱ ଓ ପାପାତ୍ମା ଅଟ । ୭ ।

ତାପସଗଣ କହିଲେ—ହେ ବିହଙ୍ଗମ ! ଆମ୍ଭେମାନେ ଏହାକୁ କେବଳ ପରମ ଶ୍ରେୟଃପଥ ବୋଲି ମନେ କରି ଏହାର ଉପାସନ କରୁଅଛୁଁ । ବର୍ତ୍ତମାନ ଯାହା ଆମ୍ଭମାନଙ୍କ ପକ୍ଷରେ ଶ୍ରେୟ ଅଟେ, ତୁମ୍ଭେ ଆମ୍ଭମାନଙ୍କୁ ତାହା ଉପଦେଶ କର । ତୁମ୍ଭର ବାକ୍ୟରେ ଆମ୍ଭମାନଙ୍କର ଅତିଶୟ ଶ୍ରଦ୍ଧା ଜନ୍ମୁଅଛି । ୮ ।

ପକ୍ଷୀ କହିଲା—ଦେଖ, ବକ୍ତା ଓ ଶ୍ରୋତାର ଅନ୍ତଃକରଣ ଭିନ୍ନ ଭିନ୍ନ ଅଂଶରେ ବିଭକ୍ତ ହୋଇଥାଏ । ଅତଏବ ଯଦି ଆମ୍ଭ ବାକ୍ୟରେ ଆଶଙ୍କା ନ କର ତାହେଲେ ଆମ୍ଭେ ଯଥାର୍ଥ ହିତକର ବାକ୍ୟକୁ କହିବୁଁ । ୯ ।

ଋଷିମାନେ କହିଲେ—ହେ ଧର୍ମାତ୍ମନ ଆର୍ଯ୍ୟ ! ଆମ୍ଭେମାନେ ତୁମ୍ଭର ବାକ୍ୟକୁ ଶ୍ରବଣ କରିବୁଁ । ଏହି ଜଗତର ସମସ୍ତ ପଥ ତୁମ୍ଭଙ୍କୁ ବିଦିତ ଅଛି । ଅତଏବ ଆମ୍ଭେମାନେ ତୁମ୍ଭର ନିୟୋଗାନୁସାରେ ଅବସ୍ଥାନ କରୁଅଛୁଁ । ବର୍ତ୍ତମାନ ତୁମ୍ଭେ ଆମ୍ଭମାନଙ୍କୁ ଉପଦେଶ ପ୍ରଦାନ କର । ୧୦ ।

ପକ୍ଷୀ କହିଲା—ଚତୁଷ୍ପାଦ ଜନ୍ତୁମଧ୍ୟରେ ଗୋ ଶ୍ରେଷ୍ଠ, ଧାତୁଦ୍ରବ୍ୟ ମଧ୍ୟରେ କାଞ୍ଚନ ଶ୍ରେଷ୍ଠ, ଶବ୍ଦ ମଧ୍ୟରେ ମନ୍ତ୍ର ଶ୍ରେଷ୍ଠ ଓ ଦ୍ୱିପଦବୃନ୍ଦ ମଧ୍ୟରେ ବ୍ରାହ୍ମଣ ଶ୍ରେଷ୍ଠ ଅଟନ୍ତି । ୧୧ ।

ଉକ୍ତ ବେଦୋକ୍ତ ମନ୍ତ୍ର ବ୍ରାହ୍ମଣର ଜନ୍ମାବଧିଠାରୁ ଜୀବନର ଚରମ କାଳ ପର୍ଯ୍ୟନ୍ତ ଜାତକର୍ମାଦି ସମସ୍ତ ସଂସ୍କାରକୁ ବିଧାନ କରେ । ୧୨ ।

ଏହି ବୈଦିକ କର୍ମସବୁ ଉତ୍କୃଷ୍ଟ ଯଜ୍ଞସ୍ୱରୂପ ଏବଂ ସ୍ୱର୍ଗର ପଥ-ସ୍ୱରୂପ । ଯେବେ ଏହା ସ୍ୱୀକାର ନ କର ତେବେ କି ନିମିତ୍ତ ମୋର ସମକ୍ଷରେ ମନ୍ତ୍ର ପ୍ରକାଶିତ ସ୍ୱର୍ଗ ପ୍ରାପକ କର୍ମମାନ ପୂର୍ବ ପୁରୁଷମାନେ କରନ୍ତେ । ୧୩ ।

ଏ ବିଷୟରେ ଆମ୍ଭେ ଅନେକ ପ୍ରତ୍ୟକ୍ଷ ମଧ୍ୟ କରିଅଛୁଁ । ଅତଏବ ଇହଲୋକରେ ଯେଉଁ ବ୍ୟକ୍ତି ଦୃଢ଼ ବିଶ୍ୱାସ ସହିତ ଏହି ଆତ୍ମାକୁ ଯାଦୃଶ ଦେବସ୍ୱରୂପ ଜ୍ଞାନ କରି ଭଜନ କରେ, ସେହି ବ୍ୟକ୍ତି ତାଦୃଶ ଭାବରେ ସିଦ୍ଧି ଲାଭ କରେ । ଏହି ଜଗତରେ ଜୀବର ତିନପ୍ରକାର ସିଦ୍ଧି ଲାଭ ହୋଇଥାଏ । ପ୍ରଥମ ମୁକ୍ତି କର୍ମା ସିଦ୍ଧି; ଯଥା ମାଘ ମାସଠାରୁ ଆଷାଢ଼ ମାସ ପର୍ଯ୍ୟନ୍ତ ଏହି ଷଣ୍ମାସାତ୍ମକ ଉତ୍ତରାୟଣ କାଳରେ ମୃତ୍ୟୁ ହେଲେ ଶୁକ୍ଳ ଅର୍ଥାତ୍ ଅଶୋକ ପଥଦ୍ୱାରା ଆଦିତ୍ୟଲୋକର ପ୍ରାପ୍ତି ହୁଏ, ଇହଲୋକରେ ଯେଉଁ ମୁକ୍ତି ହୁଏ ତାହାକୁ କ୍ରମ ମୁକ୍ତି ବୋଲି କହନ୍ତି । ଦ୍ୱିତୀୟ ମୁକ୍ତି ଯଥା; ଶ୍ରାବଣମାସଠାରୁ ପୌଷ ପର୍ଯ୍ୟନ୍ତ ଏହି ଷଣ୍ମାସାତ୍ମକ ଦକ୍ଷିଣାୟନ କାଳରେ କୃଷ୍ଣ ଅର୍ଥାତ୍ ଅନ୍ଧକାର ପଥଦ୍ୱାରା ଚନ୍ଦ୍ରଲୋକର ପ୍ରାପ୍ତି ହୁଏ । ଏପରି ଭାବରେ ଯେଉଁ ବ୍ୟକ୍ତି ମୁକ୍ତ ହୁଏ ତାହାର ପୁନରାବୃତ୍ତି ହୋଇଥାଏ । ତୃତୀୟ ପ୍ରକାର ମୁକ୍ତି ଯଥାଃ—ଅବିମୁକ୍ତ ଉପାସକମାନଙ୍କର ଅନ୍ତିମ ସମୟରେ ରୁଦ୍ର ଦେବ ସ୍ୱୟଂ ଆଗମନ କରି ସେମାନଙ୍କୁ ତାରକ ବ୍ରହ୍ମମନ୍ତ୍ର ଉପଦେଶ ଦିଅନ୍ତି, ତଦ୍ଦ୍ୱାରା ସେମାନେ ବ୍ରହ୍ମଲୋକକୁ ପ୍ରାପ୍ତ ହୁଅନ୍ତି । ଏହି ପ୍ରକାର ମୁକ୍ତିକୁ ଅନାବୃତ୍ତି ମୁକ୍ତି ବୋଲି କହନ୍ତି । ୧୪ ।

କିନ୍ତୁ ପ୍ରାଣିମାନେ ଏହି ତିନି ପ୍ରକାର ସିଦ୍ଧିକୁ କେବଳ କର୍ମଦ୍ୱାରା କାମନା କରନ୍ତି । ଏହି ଗୃହସ୍ଥାଶ୍ରମ ଅତ୍ୟନ୍ତ ପବିତ୍ର ସିଦ୍ଧ କ୍ଷେତ୍ର ଅଟେ ଓ ମହାନ୍ ଅଟେ । ୧୫ ।

ଯେଉଁମାନେ ସମସ୍ତ କର୍ମର ନିନ୍ଦାକରି କୁପଥରେ ଗମନ କରନ୍ତି ଅର୍ଥାତ୍ ସନ୍ୟାସ ଧର୍ମକୁ ଗ୍ରହଣ କରନ୍ତି, ସେହି ମୂଢ଼ ବ୍ୟକ୍ତିମାନେ ଅର୍ଥ-ଭ୍ରଷ୍ଟହୋଇ ପାପଲିପ୍ତ ହୁଅନ୍ତି । ୧୬ ।

ଅପିଚ ସେମାନେ ଦେବଲୋକ, ପିତୃଲୋକ ଓ ବ୍ରହ୍ମପ୍ରାପ୍ତି ରୂପ ଏହି ଶାଶ୍ୱତ ତ୍ରିବିଧ ସିଦ୍ଧିକୁ ପରିତ୍ୟାଗପୂର୍ବକ ମୂଢ଼ ସଦୃଶ ଇହଲୋକରେ ଜୀବିତ ଥାଇ ପରିଶେଷରେ କୀଟାଦି ଯୋନିକୁ ପ୍ରାପ୍ତ ହୁଅନ୍ତି । ୧୭ ।

ମନ୍ତ୍ରରେ ଏହିପରି ବିଧି ଅଛି ଯେ ଯଜମାନ ଦ୍ରବ୍ୟ ଦାନାଦି ରୂପ ଯଜ୍ଞକଲେ ତାହାର ପୁତ୍ର, ପଶୁ ଓ ସ୍ୱର୍ଗାଦି ସୁଖ ଲାଭହୁଏ । ଅତଏବ ଯେପରି ବିଧିଅଛି ତାଦୃଶ ବିଧି ଅନୁସାରେ ଅବସ୍ଥାନ କରିବା କାର୍ଯ୍ୟକୁ ପରମ ତପସ୍ୟା ବୋଲି ତପସ୍ୱୀମାନେ କହନ୍ତି । ସୁତରାଂ ଏହିପରି ଯଜ୍ଞ ଦାନାଦିରୂପ ତପସ୍ୟାଚରଣ କରିବା ତୁମ୍ଭମାନଙ୍କର କର୍ତ୍ତବ୍ୟ । ୧୮ ।

ନିର୍ବିଘ୍ନରେ ଦେବାର୍ଚ୍ଚନା, ବେଦାଧ୍ୟୟନ, ପିତୃତର୍ପଣ ଓ ଗୁରୁ ପରିଚର୍ଯ୍ୟାକୁ ଋଷିମାନେ ଦୁଷ୍କର ତପସ୍ୟା ବୋଲି କୀର୍ତ୍ତନ କରନ୍ତି । ୧୯ ।

ଦେବତାମାନେ ଈଦୃଶ ଦୁଷ୍କର କର୍ମ ସମ୍ପାଦନ କରି ପରମ ଐଶ୍ୱର୍ଯ୍ୟକୁ ପ୍ରାପ୍ତ ହୋଇଅଛନ୍ତି ! ଏହି ନିମିତ୍ତ ଆମ୍ଭେ ସେହି ସୁକଠିନ ଗାର୍ହସ୍ଥ୍ୟ ଧର୍ମର ଭାରକୁ ବହନ କରିବା ସକାଶେ ତୁମ୍ଭମାନଙ୍କୁ ଉପଦେଶ ଦେଉଅଛୁଁ । ୨୦ ।

ଏହି ବେଦୋକ୍ତ କର୍ମ ପ୍ରଧାନ ତପସ୍ୟା ଅଟେ ଓ ପ୍ରଜା ଉତ୍ପତ୍ତିର ମୂଳ କାରଣ ଅଟେ, ଏଥିରେ ସନ୍ଦେହ ନାହିଁ । ଯେହେତୁ ବେଦରେ ଗୃହସ୍ଥାଶ୍ରମ କେବଳ ସର୍ବ ପ୍ରକାର ଆଶ୍ରମର ମୂଳ ବୋଲି ପ୍ରତିପାଦିତ ହୋଇଅଛି । ୨୧ ।

କାମକ୍ରୋଧଶୂନ୍ୟ ମାତ୍ସର୍ଯ୍ୟବିହୀନ ବ୍ରାହ୍ମଣମାନେ ଏହିପରି ଧର୍ମାନୁଷ୍ଠାନକୁ ତପସ୍ୟା ବୋଲି ସ୍ୱୀକାର କରନ୍ତି । ଅପିଚ ବ୍ରହ୍ମଚର୍ଯ୍ୟାଦି ବ୍ରତକୁ ଲୋକେ ମଧ୍ୟମ ତପସ୍ୟା ବୋଲି କହନ୍ତି । ୨୨ ।

ଯେଉଁମାନେ ଦିବସରେ ଓ ରାତ୍ରିରେ କୁଟୁମ୍ବମାନଙ୍କୁ ଯଥାବିଧିରେ ଅନ୍ନପ୍ରଦାନ କରି ଭୋଜନ କରନ୍ତି ସେହି ବିଘସାଶୀ ବ୍ୟକ୍ତିମାନେ ଅପର ଲୋକଙ୍କର ଦୁଷ୍ପ୍ରାପ୍ୟ ସ୍ଥାନକୁ ଗମନ କରନ୍ତି । ୨୩ ।

ଯେଉଁମାନେ ଦେବତା, ପିତୃ ଅତିଥି ଓ ସ୍ୱଜନବର୍ଗଙ୍କୁ ଅନ୍ନ ପ୍ରଦାନପୂର୍ବକ ଅବଶିଷ୍ଟାନ୍ନକୁ ଭୋଜନ କରନ୍ତି ସେହିମାନଙ୍କୁ ପଣ୍ଡିତମାନେ ବିଘସାଶୀ ବୋଲି କହନ୍ତି । ୨୪ ।

ଅତଏବ ଯେଉଁମାନେ ଇହଲୋକରେ ସତ୍ୟବାଦୀ ଓ କ୍ଲେଶସହ ବ୍ରତାଚରଣଶୀଳ ହୋଇ ସ୍ୱଧର୍ମକୁ ଆଶ୍ରୟପୂର୍ବକ ନିଜେ ସଂଶୟ ରହିତ ହୁଅନ୍ତି ଓ ଅପର ଲୋକମାନଙ୍କୁ ଉପଦେଶ ପ୍ରଦାନ କରନ୍ତି, ସେହି ନିର୍ମତ୍ସର ଦୁଷ୍କର କର୍ମକାରୀ ବ୍ୟକ୍ତିମାନେ ଦେହାନ୍ତରେ ଇନ୍ଦ୍ରଙ୍କର

ସାଲୋକ୍ୟକୁ ପ୍ରାପ୍ତ ହୋଇ ବହୁ ସମ୍ବତ୍ସର ପର୍ଯ୍ୟନ୍ତ ସ୍ୱର୍ଗବାସ କରନ୍ତି । ୨୫-୨୬ ।

ଅର୍ଜୁନ କହିଲେ—ହେ ମହାରାଜ ! ତଦନନ୍ତର ସେହି ତାପସମାନେ ପକ୍ଷୀରୂପୀ ଦେବରାଜଙ୍କର ଧର୍ମାର୍ଥଯୁକ୍ତ ହିତକର ବାକ୍ୟକୁ ଶ୍ରବଣ କରି ସନ୍ନ୍ୟାସ ଧର୍ମାବଲମ୍ବନକୁ ନିଷ୍ଫଳ ବୋଲି ବୋଧ କଲେ ଏବଂ ତାହାକୁ ପରିତ୍ୟାଗପୂର୍ବକ ଗାର୍ହସ୍ଥ୍ୟଧର୍ମକୁ ଅବଲମ୍ବନ କଲେ । ୨୭ ।

ଅତଏବ ହେ ଧର୍ମଜ୍ଞ ! ଆପଣ ମଧ୍ୟ ଆପଣଙ୍କର ଚିରାଭ୍ୟସ୍ତ ଧୈର୍ଯ୍ୟକୁ ଅବଲମ୍ବନ କରି ଏହି ନିଷ୍କଣ୍ଟକ ପୃଥିବୀକୁ ଶାସନ କରନ୍ତୁ । ୨୮ ।

---

## ଅଧ୍ୟାୟ-୧୨

ବୈଶମ୍ପାୟନ ବୋଇଲେ—ହେ ଜନମେଜୟ ! ତଦନନ୍ତର ଧାର୍ମିକ ଶ୍ରେଷ୍ଠ, ମିତଭାଷୀ, ସ୍ୱର୍ଣ୍ଣବଦନ, ବିଶାଳ ବକ୍ଷ, ମହାବାହୁ, ବୁଦ୍ଧିଯୁକ୍ତ ଅରିନ୍ଦମ, ନକୁଳ ଅର୍ଜୁନଙ୍କର ବାକ୍ୟ ଶ୍ରବଣ କଲାପରେ ଧର୍ମରାଜଙ୍କ ପ୍ରତି ଦୃଷ୍ଟିପାତପୂର୍ବକ ତାହାଙ୍କର ଚିତ୍ତକୁ ପରିବର୍ତ୍ତିତ କରିବା ଅଭିପ୍ରାୟରେ କହିଲେ ।୨ ।

ହେ ମହାରାଜ ! ବିଶାଖ ଯୂପ ନାମକ କୌଣସି କ୍ଷେତ୍ର ବିଶେଷରେ ଦେବତାମାନେ ମଧ୍ୟ ବହ୍ନିସ୍ଥାପନ କରିବା ନିମିତ୍ତ ସ୍ଥଣ୍ଡିଳ ନିର୍ମାଣ କରିଥିଲେ । ତାହା ଅଦ୍ୟାପି ଦୃଷ୍ଟିଗୋଚର ହେଉଅଛି । ଅତଏବ ଆପଣ ଜାଣନ୍ତୁ ଯେ କର୍ମଫଳଦାତା ଦେବଗଣଙ୍କ ମଧ୍ୟ ହୋଇଥାଏ ।୩।

ଅପିଚ ଯେଉଁମାନେ ଦୃଷ୍ଟାନ୍ତଦ୍ୱାରା ନାସ୍ତିକମାନଙ୍କର ମଧ୍ୟ ଅନ୍ନପ୍ରଦାନ କରନ୍ତି, ସେହି ପିତୃଲୋକଗଣ ବିଧିକ ସମାଲୋଚନା କରି କର୍ମାନୁଷ୍ଠାନ କରନ୍ତି ।୪।

ଯେଉଁମାନେ ବେଦୋକ୍ତ କର୍ମର ପରିତ୍ୟାଗୀ ଅଟନ୍ତି, ସେମାନଙ୍କୁ ନିଶ୍ଚୟ ନାସ୍ତିକ ବୋଲି ଜ୍ଞାନ କରନ୍ତି । କିନ୍ତୁ ବ୍ରାହ୍ମଣ ବେଦୋକ୍ତ ବିଧିକୁ ପରିତ୍ୟାଗ କରି କଦାପି କୌଣସି କର୍ମରେ ସୁଦ୍ଧା ଅବସ୍ଥାନ କରିପାରନ୍ତି ନାହିଁ ।୫।

ବେଦ ନିଷ୍ଣାତ ପଣ୍ଡିତମାନେ କହନ୍ତି ଯେ ଗୃହସ୍ଥାଶ୍ରମ ସର୍ବ-ପ୍ରକାର ଆଶ୍ରମ ଅପେକ୍ଷା ଉତ୍କୃଷ୍ଟ ଅଟେ । ଗୃହସ୍ଥାଶ୍ରମାନୁଷ୍ଠାୟୀ ମନୁଷ୍ୟମାନେ ଦେବକର୍ମଦ୍ୱାରା ବ୍ରହ୍ମଲୋକକୁ ପ୍ରାପ୍ତ ହୁଅନ୍ତି ।୭।

ହେ ମହାରାଜ ! ଅବଧାନ କରନ୍ତୁ, ଯେଉଁମାନେ ଉତ୍କୃଷ୍ଟ ଯଜ୍ଞକୁ ଅବଲମ୍ବନ କରି ବେଦଜ୍ଞ ବ୍ରାହ୍ମଣମାନଙ୍କୁ ଧର୍ମୋପାର୍ଜ୍ଜିତ ଧନାଦିକୁ ପ୍ରଦାନ କରନ୍ତି ଏବଂ ଅହଂକାର ଓ ମମତ୍ୱ ବୁଦ୍ଧି ଅଭିମାନକୁ ତ୍ୟାଗ କରନ୍ତି ସେମାନଙ୍କୁ କେବଳ ପଣ୍ଡିତମାନେ ସାତ୍ତ୍ୱିକ ତ୍ୟାଗୀ ବୋଲି କୀର୍ତ୍ତନ କରନ୍ତି ।୮।

ହେ ପ୍ରଭୋ ! ଯେଉଁ ବ୍ୟକ୍ତି ସୁଖଭୋଗ୍ୟ ଗୃହସ୍ଥାଶ୍ରମକୁ ପରିତ୍ୟାଗ କରି ବନକୁ ପ୍ରସ୍ଥାନ କରେ ଅଥବା ଅନଶନାଦିଦ୍ୱାରା ଶରୀର ତ୍ୟାଗ କରେ, ସେହି ବ୍ୟକ୍ତି ତାମସ ତ୍ୟାଗୀ ବୋଲି ପ୍ରସିଦ୍ଧ ଅଟେ ।୯।

ହେ ପାର୍ଥ ! ଯେ ଗୃହ ପରିତ୍ୟାଗ କରି ମୌନାବଲମ୍ବନପୂର୍ବକ ବୃକ୍ଷମୂଳାଶ୍ରୟୀ ହୁଅନ୍ତି ଓ ସର୍ବଦା ଯୋଗାଭ୍ୟାସରେ ରତ ହୁଅନ୍ତି ଏବଂ କୌଣସି ପ୍ରକାର କାମନା ନ କରି କେବଳ ଶରୀର ନିର୍ବାହାର୍ଥ ଭିକ୍ଷାବୃତ୍ତି-ଦ୍ୱାରା ପର୍ଯ୍ୟଟନ କରନ୍ତି ସେ ଭିକ୍ଷୁକ ସନ୍ନ୍ୟାସୀ ଅଟନ୍ତି ।୧୦।

ଅପିଚ ଯେଉଁ ବ୍ରାହ୍ମଣ କ୍ରୋଧ, ହର୍ଷ ଓ ପିଶୁନତାକୁ ପରିତ୍ୟାଗ କରି ବେଦାଧ୍ୟୟନରେ ରତ ଥାନ୍ତି ସେହି କେବଳ ଭିକ୍ଷୁକ ସନ୍ନ୍ୟାସୀ ବୋଲି ଉକ୍ତ ହୁଅନ୍ତି ।୧୧।

ମନୀଷିମାନେ କହନ୍ତି ଯେ ସମସ୍ତ ଆଶ୍ରମକୁ ତୁଳନା କଲେ ଏକ ପକ୍ଷରେ ଆଶ୍ରମ ତ୍ରୟ ଆଉ ଏକ ପକ୍ଷରେ ଗୃହସ୍ଥାଶ୍ରମ, କାରଣ ଗୃହସ୍ଥାଶ୍ରମ ବ୍ରହ୍ମଚର୍ଯ୍ୟାଦି ଆଶ୍ରମ ତ୍ରୟର ଆଶ୍ରୟ ।୧୨।

ଲୋକତତ୍ତ୍ୱଜ୍ଞ ମହର୍ଷିଗଣ ତୁଳନାଦ୍ୱାରା ସର୍ବପ୍ରକାର ଆଶ୍ରମର ତାରତମ୍ୟକୁ ସମାଲୋଚନା କରି ଦେଖିଲେ ଯେ ଗୃହସ୍ଥାଶ୍ରମରେ ସ୍ୱର୍ଗ ଓ କାମ ଉଭୟ ଲବ୍ଧ ହୁଏ । ତେଣୁ ଏହି ଗୃହସ୍ଥାଶ୍ରମ ସେମାନଙ୍କର ଗତି ଓ ଅବଲମ୍ବନ ହେଲା ।୧୩।

ହେ ଭରତର୍ଷଭ ! ଯେପରି ସମ୍ପ୍ରଦାୟଗଣ ଗୃହତ୍ୟାଗକରି ଅରଣ୍ୟକୁ ଗମନ କରନ୍ତି, ସେପରି ନ କରି ଯେ ଫଳାସକ୍ତିକୁ ପରିତ୍ୟାଗପୂର୍ବକ କର୍ତ୍ତବ୍ୟ କର୍ମର ଅନୁଷ୍ଠାନ କରନ୍ତି, ସେହି ମହାନ୍ ଓ ପ୍ରକୃତ ସନ୍ନ୍ୟାସୀ ଅଟନ୍ତି ।୧୪।

ଯେଉଁ ବ୍ୟକ୍ତି ସନ୍ନ୍ୟାସର ଚିହ୍ନଧାରଣ କରି ମନେ ମନେ କାମ୍ୟ ବସ୍ତୁମାନଙ୍କୁ ଚିନ୍ତା କରନ୍ତି, ମୃତ୍ୟୁରାଜ ମୃତ୍ୟୁପାଶଦ୍ୱାରା ସେହି ବ୍ୟକ୍ତିର କଣ୍ଠଦେଶକୁ ବନ୍ଧନ କରନ୍ତି ।୧୫।

ହେ ମହାରାଜ ! ଅଭିମାନକୃତ ଯେଉଁ କର୍ମ ତାହା ଫଳଦାୟକ ନୁହେଁ, ଅର୍ଥାତ ମୁକ୍ତିପ୍ରଦ ନୁହେଁ; କିନ୍ତୁ ଆସକ୍ତି ଶୂନ୍ୟ ଯେଉଁ ଧର୍ମ ତାହା ମହାଫଳପ୍ରଦ ଅଟେ, କାରଣ ତାହା ହିଁ ମୁକ୍ତିର ହେତୁ ।୧୬।

ଶମ, ଦମ, ଧୈର୍ଯ୍ୟ, ସତ୍ୟ, ଶୌଚ, ଅକୌଟିଲ୍ୟ ଯଜ୍ଞ ଧୃତି ଓ ଧର୍ମ ଏହି ସମସ୍ତ ଆମ୍ଭର ଋଷି ପ୍ରଣୀତ ବିଧି ବୋଲି କୀର୍ତ୍ତିତ ହୋଇଅଛି ।୧୭।

ଗୃହସ୍ଥାଶ୍ରମରେ ଦେବ, ପିତୃ ଓ ଅତିଥିମାନଙ୍କ ନିମିତ୍ତ ଯଜ୍ଞାଦିର ପ୍ରଶସ୍ତ ଆଚରଣ ହୁଏ; ଏଥିରେ ନିଶ୍ଚୟ ତ୍ରିବର୍ଗ ସାଧନ ହୁଏ ।୧୮।

ଅତଏବ ଏହି ଅପ୍ରତିସିଦ୍ଧ କାର୍ଯ୍ୟରେ ଅବସ୍ଥିତ ଯେଉଁ ନିଷ୍ଠାବାନ୍ ସନ୍ନ୍ୟାସୀ ତାହାଙ୍କର ଇହଲୋକ ବା ପରଲୋକ କେଉଁଠାରେ ହିଁ ଉଚ୍ଛେଦ ହୁଏ ନାହିଁ ।୧୯।

ହେ ରାଜନ୍ ! ନିଷ୍ପାପ ଧର୍ମାତ୍ମା ପ୍ରଜାପତି "ବିବିଧ ଯଜ୍ଞଦ୍ୱାରା ଆମ୍ଭର ଅର୍ଚ୍ଚନା ଅବଶ୍ୟ କରିବେ" ଏହି ଅଭିପ୍ରାୟରେ ପ୍ରଜା ସୃଷ୍ଟି କରିଅଛନ୍ତି ।୨୦।

ବୃକ୍ଷଲତା ଔଷଧି ଓ ମେଧ୍ୟ ପଶୁସବୁ ଯଜ୍ଞ ନିମିତ୍ତ ସୃଷ୍ଟ ହୋଇଅଛି ଏବଂ ଆଜ୍ୟସବୁ ମଧ୍ୟ ଯଜ୍ଞର ପ୍ରୟୋଜନୀୟ ଅଟନ୍ତି ।୨୧।

ଯଜ୍ଞ କର୍ମ ଗୃହସ୍ଥାଶ୍ରମିଙ୍କ ପକ୍ଷରେ ବିଶେଷ ଜ୍ଞାନ ଦୀପକ ଅଟେ । ଅତଏବ ଏହି ଦୁର୍ଲଭ ଗାର୍ହସ୍ଥ୍ୟାଶ୍ରମ ଧର୍ମର ଅନୁଷ୍ଠାନ ଅତୀବ ଦୁଷ୍କର ଅଟେ ।୨୨।

ସେହି ଦୁର୍ଲ୍ଲଭ ଗାର୍ହସ୍ଥ୍ୟାଶ୍ରମକୁ ଲାଭ କରି ଏବଂ ପଶୁ ଓ ଧନଧାନ୍ୟ ସମନ୍ୱିତ ହୋଇ ସୁଦ୍ଧା ଯେଉଁ ଗୃହସ୍ଥମାନେ ଯଜ୍ଞାନୁଷ୍ଠାନ ନ କରନ୍ତି, ସେମାନେ ଚିରକାଳ ପାପ ଭୋଗ କରନ୍ତି ।୨୩।

ହେ ମହାରାଜ ! ଋଷିମାନଙ୍କ ମଧ୍ୟରେ କେହି କେହି ବେଦାଧ୍ୟୟନ କରନ୍ତି କେହି କେହି ଅବା ଜ୍ଞାନ ସମାଲୋଚନା କରନ୍ତି କିମ୍ବା କେହି କେହି ମନେ ମନେ ଶାସ୍ତ୍ରାଲୋଚନା ମହାଯଜ୍ଞର ଅନୁଷ୍ଠାନ କରନ୍ତି ।୨୪।

ଏହିପରି ସମାହିତ ଚିତ୍ତ ବ୍ରହ୍ମସ୍ୱରୂପ ବ୍ରାହ୍ମଣମାନଙ୍କର ସଂସର୍ଗକୁ ଦେବଗଣ ସୁଦ୍ଧା ଅଭିଳାଷ କରନ୍ତି ।୨୫।

ହେ ରାଜନ୍ ! ଆପଣ ଶତ୍ରୁ ଜୟ କରି ବହୁବିଧ ଯଜ୍ଞ ସମ୍ପନ୍ନ କଲେ; କିନ୍ତୁ ସେହି ଯଜ୍ଞକୁ ଶେଷରେ ବ୍ୟର୍ଥ ନ କରି ଆରଣ୍ୟକ ଧର୍ମକୁ ଗ୍ରହଣ କରିବାର ଇଚ୍ଛା କରୁଅଛନ୍ତି । ଏତଦ୍ଦ୍ୱାରା ଆପଣଙ୍କର କେବଳ ନାସ୍ତିକତା ପ୍ରକାଶ ପାଉଅଛି ।୨୬।

ରାଜାମାନେ ଗୃହସ୍ଥାଶ୍ରମରେ ଥାଇ ସର୍ବମେଧ, ଅଶ୍ୱମେଧ ଓ ରାଜସୂୟାଦି ଯଜ୍ଞରେ ଧନ ତ୍ୟାଗ କରନ୍ତି । ତଦ୍ଭିନ୍ନ ଅନ୍ୟ ପ୍ରକାର ତ୍ୟାଗ କରନ୍ତି ନାହିଁ । ଅର୍ଥାତ୍ ସେମାନେ ସନ୍ନ୍ୟାସ ଧର୍ମକୁ ଗ୍ରହଣ କରିବାର ଆମ୍ଭେ ଦେଖୁଁ ନାହୁଁ ।୨୭।

ହେ ମହୀପାଳ ! ଯେପରି ଦେବରାଜ ଇନ୍ଦ୍ର ବହୁବିଧ ଯଜ୍ଞ କରିଥିଲେ, ସେହିପରି ଆପଣ ମଧ୍ୟ ଯେଉଁ ସବୁ ଯଜ୍ଞକୁ ବ୍ରାହ୍ମଣମାନେ ପ୍ରଶଂସା କରନ୍ତି ସେହିସବୁ ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ କରନ୍ତୁ ।୨୮।

ରାଜାଙ୍କର ଅନବଧାନତା ଦୋଷରେ ଯଦି ଦସ୍ୟୁମାନେ ପ୍ରଜାବୃନ୍ଦଙ୍କର ଧନାପହରଣ କରନ୍ତି କିମ୍ବା ରାଜା ଯଦି ପ୍ରଜାମାନଙ୍କର ରକ୍ଷଣାବେକ୍ଷଣ ନ କରନ୍ତି ତାହାହେଲେ ସେହି ରାଜାଙ୍କୁ ସାକ୍ଷାତ୍ କଳି ବୋଲି କହନ୍ତି ।୨୯।

ହେ ବିଶାମ୍ପତେ ! ଆମ୍ଭେମାନେ ରାଜପୁତ୍ର ହୋଇ ସୁଦ୍ଧା ଯଦି ଅଶ୍ୱ, ହସ୍ତୀ, ଗୋ, ଅଳଙ୍କୃତା-ଦାସୀ, ଜନପଦ, ଗ୍ରାମ, କ୍ଷେତ୍ର ଓ ଗୃହସବୁ ବ୍ରାହ୍ମଣମାନଙ୍କୁ ପ୍ରଦାନ ନ କରୁଁ ତାହାହେଲେ ଆପଣଙ୍କ ଦେଶରେ ଆମ୍ଭେମାନେ ମଧ୍ୟ ମାତ୍ସର୍ଯ୍ୟାବିଷ୍ଟ ଚିତ୍ତ ହୋଇ କଳିସ୍ୱରୂପ ହେବୁଁ ।୩୧।

ଯେଉଁମାନେ ଦାନ ଏବଂ ପ୍ରଜାର ରକ୍ଷଣାବେକ୍ଷଣ ନ କରନ୍ତି, ସେହି ପାପାତ୍ମା ରାଜାମାନେ ପରଲୋକରେ କେବଳ ଦୁଃଖଭୋଗ କରନ୍ତି । କଦାଚ ସୁଖଲାଭରେ ସମର୍ଥ ହୁଅନ୍ତି ନାହିଁ ।୩୨।

ହେ ପ୍ରଭୋ ! ଆପଣ ଯଦି ତୀର୍ଥରେ ସ୍ନାନ, ପିତୃଲୋକଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧାଦି ଓ ଦେବୋଦ୍ଦେଶରେ ଯଜ୍ଞାନୁଷ୍ଠାନ ନ କରନ୍ତି ତାହାହେଲେ ଯେପରି ପ୍ରଚଣ୍ଡ ବାୟୁଚାଳିତ ମେଘ ଛିନ୍ନଭିନ୍ନ ହୋଇ ବିଲୀନ ହୁଏ, ସେହିପରି ଆପଣ ପରିଶେଷରେ ଉଭୟ ଲୋକରୁ ପରିଭ୍ରଷ୍ଟ ହେବେ ।୩୨।

ଯେଉଁ ବ୍ୟକ୍ତି ଅନ୍ତରସ୍ଥ ଅଭିମାନାଦିରୁ ଏବଂ ବାହ୍ୟ ବସ୍ତୁମାନଙ୍କରୁ ମନର ଆସକ୍ତିକୁ ତ୍ୟାଗ କରିପାରନ୍ତି, ସେ ପ୍ରକୃତ ସନ୍ନ୍ୟାସୀ ଅଟନ୍ତି, ଯେ ଗୃହତ୍ୟାଗ କରି ଅରଣ୍ୟକୁ ଗମନ କରନ୍ତି ସେ ସନ୍ନ୍ୟାସୀ ନୁହଁନ୍ତି ।୩୫।

ହେ ମହାରାଜ ! ଅପ୍ରତିହିତ ଓ ବୈଧ କାର୍ଯ୍ୟରେ ଅବସ୍ଥିତ ବ୍ରାହ୍ମଣମାନଙ୍କର ଇହଲୋକ କିମ୍ବା ପରଲୋକ କେଉଁଠାରେ ସୁଦ୍ଧା ବିନାଶ ନାହିଁ ।୩୬।

ପର୍ବତିନ ସାଧୁ ରାଜାମାନଙ୍କଦ୍ୱାରା ଆଚରିତ ସ୍ୱଧର୍ମରେ ନିରତ ଥାଇ ଆପଣ ଦେବରାଜ ଇନ୍ଦ୍ର ଦୈତ୍ୟସେନାକୁ ସଂହାର କଲାପ୍ରାୟ ସମୃଦ୍ଧଶାଳୀ ଅମିତ୍ର କୌରବମାନଙ୍କୁ ବଳପୂର୍ବକ ନିହତ କରି ଯେ ପ୍ରକାର ଶୋକ କରୁଅଛନ୍ତି ତଦ୍ରୂପ ଶୋକ କେଉଁ ବ୍ୟକ୍ତି କରେ ? ।୩୭।

ହେ ନରେନ୍ଦ୍ର ! ଆପଣଙ୍କର ଆଉ ଶୋକ କରିବା ଉଚିତ ନୁହେଁ । ଆପଣ କ୍ଷତ୍ରିୟ ଧର୍ମାନୁସାରେ ସ୍ୱକୀୟ ପରାକ୍ରମ ପ୍ରଭାବରେ ପୃଥିବୀକୁ ଜୟ କରିଅଛନ୍ତି, ବର୍ତ୍ତମାନ ଯଜ୍ଞୋପଲକ୍ଷରେ ମନ୍ତ୍ରବିତ ବ୍ରାହ୍ମଣମାନଙ୍କୁ ଅର୍ଥ ପ୍ରଦାନ କରନ୍ତୁ । ତାହାହେଲେ ଚରମ କାଳରେ ନିଶ୍ଚୟ ସ୍ୱର୍ଗଲାଭ କରିବେ ।

---

## ଅଧ୍ୟାୟ-୧୩

ସହଦେବ କହିଲେ—ହେ ମହାରାଜ ! କେବଳ ବାହ୍ୟଦ୍ରବ୍ୟ ସବୁକୁ ପରିତ୍ୟାଗ କଲେ ସିଦ୍ଧିଲାଭ ହୁଏ ନାହିଁ । ବରଂ ଆନ୍ତରିକ ଆସକ୍ତିକୁ ପରିତ୍ୟାଗ କଲେ ସିଦ୍ଧିଲାଭ ସମ୍ଭବ ହୋଇପାରେ । ୧ ।

ଅନ୍ତରରେ ବିଷୟାସକ୍ତ ଅଥଚ ବାହ୍ୟଦ୍ରବ୍ୟ ପରିତ୍ୟାଗୀ ଯେଉଁ ପୁରୁଷ ତାହାଙ୍କର ଯେପରି ଧର୍ମ ଓ ସୁଖଲାଭ ହେବାର ସମ୍ଭାବନା, ସେହିପରି ସୁଖ ଆମ୍ଭମାନଙ୍କ ଶତ୍ରୁବୃନ୍ଦର ହେଉ । ୨ ।

ପରନ୍ତୁ ଆନ୍ତରିକ ଅଭିମାନାଦି ପରିତ୍ୟାଗପୂର୍ବକ ଯଥା ନିୟମରେ ପୃଥିବୀ ଶାସନକାରୀ ରାଜାମାନଙ୍କର ଯେପରି ଧର୍ମ ଓ ସୁଖଲାଭ ସମ୍ଭବ, ସେହିପରି ସୁଖଲାଭ ଆମ୍ଭମାନଙ୍କର ସୁହୃଦ୍‌ବର୍ଗଙ୍କର ହେଉ । ୩ ।

'ମମ' ଏହି ଦୁଇଗୋଟି ଅକ୍ଷର ମୃତ୍ୟୁ ଅଟେ । ଆଉ 'ନ ମମ' ଏହି ତିନୋଟି ଅକ୍ଷରକୁ ଅର୍ଥାତ ନମ୍ମମକୁ ଶାଶ୍ୱତ ବ୍ରହ୍ମ ବୋଲି ଜାଣିବ । ୪ ।

ବ୍ରହ୍ମ ଏବଂ ମୃତ୍ୟୁ ଅର୍ଥାତ୍ ଜ୍ଞାନ ଏବଂ ଅଜ୍ଞାନ ଏହି ଦୁହେଁ ନିଶ୍ଚୟ ପ୍ରାଣିମାନଙ୍କ ଶରୀରରେ ଅଲକ୍ଷିତ ଭାବରେ ଅଧିଷ୍ଠିତ ଥାଇଁ ପରସ୍ପର ପ୍ରତିଦ୍ୱନ୍ଦୀ ହୁଅନ୍ତି । ୫ ।

ହେ ଭାରତ ! ଯଦି ଜୀବ ସର୍ବଦା ଅବିନଶ୍ୱର ତା ହେଲେ ଶରୀର ନଷ୍ଟ କରିବାଦ୍ୱାରା କପରି ପ୍ରାଣୀ ହିଂସା ହୋଇପାରେ । ୬ ।

ଯଦି ଶରୀରର ଉତ୍ପତ୍ତି ସମ୍ପା ନାଶ ହୁଏ ତାହାହେଲେ ବେଦ ବିହିତ ସମସ୍ତ କ୍ରିୟା କଳାପ ବୃଥା ହୋଇଯିବ । ୭ ।

ଅତଏବ ଜୀବର ଉତ୍ପତ୍ତି ନାଶାଦି ବିଷୟରେ ସନ୍ଦେହ ପରିତ୍ୟାଗ କରି ପୂର୍ବତନ ସାଧୁପୁରୁଷମାନଙ୍କଦ୍ୱାରା ନିର୍ଦ୍ଦିଷ୍ଟ ପଥକୁ ଅବଲମ୍ବନ କରିବା ବିଜ୍ଞ ବ୍ୟକ୍ତିଙ୍କର କର୍ତ୍ତବ୍ୟ । ୮ ।

ଏହି ସ୍ଥାବର ଜଙ୍ଗମ ସମନ୍ୱିତ ସମସ୍ତ ପୃଥିବୀକୁ ଲାଭ କରିସୁଦ୍ଧା ଏହାକୁ ଯେଉଁ ରାଜା ଉପଭୋଗ କରି ପାରନ୍ତି ନାହିଁ ତାହାଙ୍କର ଜୀବନ ନିଷ୍ଫଳ ମାତ୍ର । ୯ ।

ହେ ରାଜନ୍ ! ଯେଉଁ ବ୍ୟକ୍ତି ଅରଣ୍ୟରେ ବାସ କରି ଜୀବନ ଧାରଣ କରନ୍ତି ଅଥଚ ତାଙ୍କର ଅନ୍ତରରେ ବିଷୟ ମମତା ଥାଏ, ସେହି ବ୍ୟକ୍ତି ନିଶ୍ଚୟ ଚରମ କାଳରେ କୃତାନ୍ତଙ୍କ ମୁଖରେ ପତିତ ହୁଅନ୍ତି । ୧୦ ।

ହେ ଭରତ ! ଏହି ଆତ୍ମା ପ୍ରାଣିମାନଙ୍କର ଅନ୍ତର ଓ ବାହ୍ୟରେ ପ୍ରତ୍ୟଗାତ୍ମ ରୂପରେ ଅବସ୍ଥାନ କରି ଅଛନ୍ତି । ଏହା ଆପଣ ଅବଧାରଣ କରନ୍ତୁ । ଯେଉଁମାନେ ଆତ୍ମାକୁ ଏହିପରି ଭାବରେ ଜାଣି ପାରନ୍ତି, ସେମାନେ ମହାଭୟରୁ ମୁକ୍ତ ହୁଅନ୍ତି । ୧୧ ।

ଆପଣ ଆମ୍ଭମାନଙ୍କର ପିତା, ମାତା, ଭ୍ରାତା ଓ ଗୁରୁ ଅଟନ୍ତି । ଅତଏବ ଆମ୍ଭେ ଦୁଃଖାର୍ତ୍ତ ହୋଇ ଯେଉଁସବୁ ପ୍ରଳାପୋକ୍ତି କଲୁ ସେଥି-ସକାଶେ ଆମ୍ଭଙ୍କୁ କ୍ଷମା କରନ୍ତୁ । ୧୨ ।

ହେ ଭରତସତ୍ତମ ପୃଥିବୀପାଳ ! ଆମ୍ଭେ ଯାହା କହିଲୁଁ ତାହା ନ୍ୟାଯ୍ୟ ହେଉ ବା ଅନ୍ୟାଯ୍ୟ ହେଉ, କେବଳ ଆପଣଙ୍କ ପ୍ରତି ଭକ୍ତିଥିବାରୁ ଏହିପରି କହିଅଛୁଁ । ୧୩ ।

---

# ଅଧ୍ୟାୟ-୧୪

ବୈଶମ୍ପାୟନ କହିଲେ—ହେ ରାଜେନ୍ଦ୍ର, ଜନମେଜୟ ! ଅର୍ଜୁନାଦି ଭ୍ରାତାମାନେ ବେଦ ନିଶ୍ଚୟ ବାକ୍ୟଦ୍ୱାରା ତାଦୃଶ ଭାବରେ ଧର୍ମରାଜ ଯୁଧିଷ୍ଠିରଙ୍କୁ ପ୍ରବୋଧିତ କଲେ ସୁଦ୍ଧା ଯେତେବେଳେ ସେ କୌଣସି ଉତ୍ତର ଦେଲେନାହିଁ ମହାଭିଜନସମ୍ପନ୍ନା ଆୟତଲୋଚନା ଯୋଷିତମାନଙ୍କର ଅଗ୍ରଗଣ୍ୟା ଶ୍ରୀମତୀ ଦ୍ରୌପଦୀ କିଛିମାନ କହିବାର ଉପକ୍ରମ କଲେ । ୨ ।

ସେହି ଧର୍ମଜ୍ଞା ଧର୍ମଦର୍ଶିନୀ ବିପୁଳ ଶ୍ରୋଣୀ ପାଞ୍ଚାଳୀ ସର୍ବଦା ମାନିନୀ ଥିଲେ । ସେଥି ନିମିତ୍ତ ରାଜା ଯୁଧିଷ୍ଠିର ତାହାଙ୍କୁ ସର୍ବଦା ସମ୍ମାନିତ କରନ୍ତି ବୋଲି ତାହାଙ୍କଠାରେ ସେ ବିଶେଷ ଅଭିମାନ ପ୍ରକାଶ କରନ୍ତି । ଅନନ୍ତର ଦ୍ରୌପଦୀ, ହସ୍ତିଗଣ ମଧ୍ୟବର୍ତ୍ତୀ ଯୂଥପତିଙ୍କ ସଦୃଶ ସିଂହ ଓ ଶାର୍ଦ୍ଦୂଳ ସଦୃଶ ଭ୍ରାତୃଗଣଙ୍କ ମଧ୍ୟରେ ସମାସୀନ ରାଜଚୂଡ଼ାମଣି ଭର୍ତ୍ତା ଯୁଧିଷ୍ଠିରଙ୍କୁ ଦର୍ଶନ କରି ତାହାଙ୍କୁ ମନୋହର ଓ ସାନ୍ତ୍ୱନ ବାକ୍ୟଦ୍ୱାରା ସମ୍ବୋଧନପୂର୍ବକ କହିଲେ । ୫ ।

ଦ୍ରୌପଦୀ କହିଲେ—ହେ ମହାରାଜ ! ଆପଣଙ୍କର ଭ୍ରାତାମାନେ ଶୁଷ୍କକଣ୍ଠ ଚାତକ ସଦୃଶ ପୁନଃ ପୁନଃ ଚିତ୍କାର କରୁ ଅଛନ୍ତି । ତଥାପି ଆପଣ ଏମାନଙ୍କର ଅଭିନନ୍ଦନ କରୁ ନାହାନ୍ତି । ୬ ।

ଅତେ ଦୁଃଖଭାଗୀ ମତ୍ତମାତଙ୍ଗ ସଦୃଶ ଏହି ଭାତୃଗଣ ଆପଣଙ୍କୁ ଉପଯୁକ୍ତ ବାକ୍ୟଦ୍ୱାରା ଆନନ୍ଦିତ କରନ୍ତୁ । ୭ ।

ହେ ରାଜନ୍ ! ପୂର୍ବେ ଦ୍ୱୈତ ବନରେ ଏହି ଭ୍ରାତାମାନେ ଶୀତ, ବାତ ଓ ଆତପାଦିରେ ଅତିଶୟ କ୍ଲିଷ୍ଟ ହୋଇଥିବା ସମୟରେ ଆପଣ କହିଥିଲେ "ହେ ସମର ବିଜୟୀ ଭ୍ରାତାମାନେ ! ଆମ୍ଭେମାନେ ସମସ୍ତେ ମିଳିତ ହୋଇ ଦୁର୍ଯ୍ୟୋଧନଙ୍କୁ ନିହତ କରି ସର୍ବାଭିଳାଷ ପ୍ରଦାୟିନୀ ଏହି ମେଦିନୀକୁ ଉପଭୋଗ କରିବୁଁ ଏବଂ ଯେତେବେଳେ ତୁମ୍ଭେମାନେ ଶତ୍ରୁମାନଙ୍କର ରଥମାନଙ୍କୁ ରଥବିହୀନ କରି ଓ ମାତଙ୍ଗମାନଙ୍କୁ ନିହତ କରି ସେହିସବୁ ରଥ ଓ ଅଶ୍ୱାରୋହୀ ପ୍ରଭୃତି ଚତୁରଙ୍ଗିଣୀ ସେନାର ବିଚ୍ଛିନ୍ନ ଶରୀରଦ୍ୱାରା ଧରାତଳକୁ ସମାଚ୍ଛାଦିତ କରିବ ଓ ବହୁଳ ଦକ୍ଷିଣ ଯୁକ୍ତ ସମୃଦ୍ଧିଶାଳୀ ବିବିଧ ଯଜ୍ଞମାନଙ୍କର ଅନୁଷ୍ଠାନ କରିବ, ତେତେବେଳେ ତୁମ୍ଭମାନଙ୍କର ବନବାସଜନିତ ଦୁଃଖସବୁ ସୁଖରେ ପରିଣତ ହେବ । ୧୧ ।

"ହେ ଧାର୍ମିକପ୍ରବର ? ଆପଣ ତତ୍କାଳରେ ଈଦୃଶ ଆଶ୍ୱାସପ୍ରଦ ବାକ୍ୟ କହି ବର୍ତ୍ତମାନ କ ନିମିତ୍ତ ଅମ୍ଭମାନଙ୍କର ମନକୁ ଉନ୍ମୋତ୍ସାହ କରୁ ଅଛନ୍ତି ? । ୧୨ ।

କ୍ଲୀବ ବ୍ୟକ୍ତି କଦାପି ପୃଥିବୀ କିମ୍ବା ଐଶ୍ୱର୍ଯ୍ୟ ଭୋଗରେ ଅଧିକାରୀ ହୁଅନ୍ତି ନାହିଁ । ମତ୍ସ୍ୟ ଯେପରି ପଙ୍କରେ ରହି ପାରନ୍ତି ନାହିଁ; ସେହିପରି କ୍ଲୀବମାନଙ୍କ ଗୃହରେ ସୁସ୍ୱାଦି ରହି ପାରନ୍ତି ନାହିଁ । ୧୩ ।

ରାଜା ଦଣ୍ଡହୀନ ହେଲେ ପ୍ରତିବନ୍ଦିତ ହୁଅନ୍ତି ନାହିଁ କିମ୍ବା ପୃଥିବୀକୁ ଭୋଗ କରି ପାରନ୍ତି ନାହିଁ । ଆହୁରି ମଧ୍ୟ ଦଣ୍ଡହୀନ ରାଜାଙ୍କର ପ୍ରଜାମାନେ କଦାଚ ସୁଖଲାଭ କରନ୍ତି ନାହିଁ । ୧୪ ।

ହେ ରାଜସତ୍ତମ ! ସର୍ବପ୍ରାଣୀମାନଙ୍କ ପ୍ରତି ମିତ୍ରଭାବ ପ୍ରକାଶ କରିବା, ଦାନ, ଅଧ୍ୟୟନ ଓ ତପସ୍ୟାଚରଣ କରିବା ବ୍ରାହ୍ମଣମାନଙ୍କର ଧର୍ମ; କ୍ଷତ୍ରିୟମାନଙ୍କର ନୁହେଁ । ୧୫ ।

ଅସାଧୁମାନଙ୍କର ଦମନ, ସାଧୁମାନଙ୍କର ପାଳନ ଏବଂ ଯୁଦ୍ଧରେ ଅପରାଙ୍ମୁଖତା ରାଜାମାନଙ୍କର ପରମ ଧର୍ମ ଅଟେ । ୧୬ ।

ଯାହାଙ୍କଠାରେ କ୍ଷମା, କ୍ରୋଧ, ଦାନ, ଆଦାନ, ଭୟ, ଅଭୟ, ନିଗ୍ରହ ଓ ଅନୁଗ୍ରହ ବର୍ତ୍ତମାନ ଅଛି ତାହାଙ୍କୁ କେବଳ ଧର୍ମଜ୍ଞ ବୋଲାଯାଏ । ୧୭ ।

ହେ ମହାରାଜ ! ଆପଣ ଦାନ ଅଧ୍ୟୟନ, ସାନ୍ତ୍ୱନାବାକ୍ୟ, ଯଜ୍ଞ ବା ଯାଚଜ୍ଞାଦ୍ୱାରା ପୃଥିବୀ ଲାଭ କରି ନାହାନ୍ତି । ୧୮ ।

ଦ୍ରୋଣ, କର୍ଣ୍ଣ, ଅଶ୍ୱତ୍ଥାମା ଓ କୃପାଚାର୍ଯ୍ୟ ରକ୍ଷିତ ବିପକ୍ଷମାନଙ୍କର ସମୁଦ୍ୟତ ହସ୍ତୀ, ଅଶ୍ୱ ଓ ରଥସଙ୍କୁଳ ରଣବିଶାରଦ ତ୍ରିରଙ୍ଗିଣୀ ସେନାଙ୍କୁ ନିହତ କରି ଆପଣ ଏହି ବସୁନ୍ଧରାକୁ ପ୍ରାପ୍ତ ହୋଇ ଅଛନ୍ତି । ଅତଏବ ଏହାକୁ ଭୋଗ କରନ୍ତୁ । ୧୯ ।

ହେ ପୁରୁଷ ଶ୍ରେଷ୍ଠ ! ପୂର୍ବେ ରାଜସୂୟ ଯଜ୍ଞ ସମୟରେ ଆପଣ ନାନା ଜନପଦ ସମନ୍ୱିତ ଏହି ଜମ୍ବୁଦ୍ୱୀପକୁ ମହାମେରୁର ପଶ୍ଚିମ ଦିଗସ୍ଥିତ ଜମ୍ବୁଦ୍ୱୀପ ସଦୃଶ କ୍ରୌଞ୍ଚଦ୍ୱୀପକୁ, ମହାମେରୁର ପୂର୍ବଦିଗସ୍ଥିତ କ୍ରୌଞ୍ଚଦ୍ୱୀପ ସଦୃଶ ଶାକ ଦ୍ୱୀପକୁ, ମହାମେରୁର ଉତ୍ତର ଦିଗସ୍ଥିତ ଭଦ୍ରାଶ୍ୱ ଦ୍ୱୀପକୁ ଓ ଏତଦ୍ଭିନ୍ନ ସାଗର ପର୍ଯ୍ୟନ୍ତ ନାନା ଜନପଦ ବିଭୂଷିତ ଅନ୍ତର୍ଦ୍ୱୀପମାନଙ୍କୁ ମଧ୍ୟ ଦଣ୍ଡଦ୍ୱାରା ଶାସନ କରି ଅଛନ୍ତି । ୨୦ ।

ହେ ମହାରାଜ ! ଆପଣ ଏହିସବୁ ଅସୀମ କାର୍ଯ୍ୟ ସମ୍ପାଦନ କରି ବ୍ରାହ୍ମଣବୃନ୍ଦକର୍ତ୍ତୃକ ସମ୍ମାନିତ ହୋଇ ମଧ୍ୟ ପ୍ରସନ୍ନଚିତ୍ତ ହୋଇ ନାହାନ୍ତି । ୨୬ ।

ହେ ଭରତ ! ଆପଣ ମତ୍ତ ମାତଙ୍ଗ ଓ ବୃଷଭ ସଦୃଶ ବଳଶାଳୀ ଭ୍ରାତୃଗଣଙ୍କ ପ୍ରତି ଦୃଷ୍ଟିପାତପୂର୍ବକ ସେମାନଙ୍କୁ ଅଭିନନ୍ଦନ କରନ୍ତୁ । ୨୭ ।

ଆପଣମାନେ ଅମର ସଦୃଶ ଶତ୍ରୁଦମନ କ୍ଷମ ଓ ଶତ୍ରୁମାନଙ୍କର ପରିତାପ ସହିଷ୍ଣୁ ଅଟନ୍ତି । ମୋ ବିବେଚନାରେ ଆମ୍ଭମାନଙ୍କ ମଧ୍ୟରେ ଜଣେମାତ୍ର ସ୍ୱାମୀ ହେଲେ ପରମ ସୁଖର କାରଣ ହେବ । ୨୮ ।

ଯେତେବେଳେ ଶରୀର ପରିଚାଳକ ଇନ୍ଦ୍ରିୟମାନଙ୍କ ପ୍ରାୟ ଆପଣ-ମାନେ ପାଞ୍ଚଜଣ ସ୍ୱାମୀ ହୋଇ ଅଛନ୍ତି ସେତେବେଳେ ଆମ୍ଭର ଯେ କେତେଦୂର ସୌଭାଗ୍ୟ ତାହା ଆଉ କ'ଣ କହିବି ? ୨୯ ।

ହେ ମହାରାଜ ! ଆମ୍ଭର ଶ୍ୱଶ୍ରୂ ସର୍ବଜ୍ଞାନସମ୍ପନ୍ନା ସର୍ବଦର୍ଶିନୀ କୁନ୍ତୀଦେବୀ କଦାପି ମିଥ୍ୟା କଥା କହି ନାହାନ୍ତି । ସେ କହିଥିଲେ "ହେ ପାଞ୍ଚାଳି ! ମହା ପରାକ୍ରମଶାଳୀ ଯୁଧିଷ୍ଠିର ସମୟରେ ସହସ୍ର ସହସ୍ର ରାଜାମାନଙ୍କୁ ନିହତ କରି ତୁମ୍ଭର ସୁଖବିଧାନ କରିବେ ।" କିନ୍ତୁ ଆପଣଙ୍କର ସହସା ଏପରି ମୋହ ଉପସ୍ଥିତ ହେବାରୁ ବୋଧ ହେଉଅଛି ଯେ ତାହାଙ୍କର ସେହିସବୁ କଥା ମିଥ୍ୟା ହୋଇଯିବ । ୩୧ ।

ଯେଉଁମାନଙ୍କର ଜ୍ୟେଷ୍ଠ ଉନ୍ମତ୍ତ ହୁଅନ୍ତି, ଅନୁଜମାନେ ସମସ୍ତେ ଜ୍ୟେଷ୍ଠଙ୍କର ଅନୁଗାମୀ ହୁଅନ୍ତି । ଆପଣଙ୍କର ଏହି ଉନ୍ମତ୍ତତା ହେତୁରୁ ସମସ୍ତ ଭ୍ରାତାମାନେ ଆପଣଙ୍କ ପରି ଉନ୍ମତ୍ତ ହେଉ ଅଛନ୍ତି । ୩୨ ।

ଯଦି ଏମାନେ ଉନ୍ମତ୍ତ ନ ହୁଅନ୍ତି, ତା'ହେଲେ ନାସ୍ତିକମାନଙ୍କ ସହିତ ଆପଣଙ୍କୁ ବନ୍ଧନ କରି ଏମାନେ ନିଜେ ପୃଥିବୀର ଶାସନ ଭାରକୁ ଗ୍ରହଣ କରନ୍ତେ । ୩୩ ।

ଯେଉଁ ପୁରୁଷ ବିମୂଢ଼ ହୋଇ ଆପଣଙ୍କ ପରି ଆଚରଣ କରନ୍ତି ସେ କଦାପି ଶ୍ରେୟୋଲାଭ କରି ପାରନ୍ତି ନାହିଁ । ଯେଉଁ ବ୍ୟକ୍ତି ଏହିପରି ଉନ୍ମାଦ ପଥବର୍ତ୍ତୀ ହୁଅନ୍ତି, ତାହାଙ୍କୁ ଧୂପ ଅଞ୍ଜନ, ନସ୍ୟ ଓ ରକ୍ଷାବନ୍ଧନ ପ୍ରଭୃତି ଉପାୟଦ୍ୱାରା ଚିକିତ୍ସା କରିବା କର୍ତ୍ତବ୍ୟ । ହେ ଭରତସତ୍ତମ ! ସ୍ତ୍ରୀବୃନ୍ଦଙ୍କ ମଧ୍ୟରେ ଆମ୍ଭେ ଅତି ଅଧମା । ୩୪ ।

କାରଣ ଆମ୍ଭେ ପୁତ୍ରବତ୍ସଳା ହୋଇସୁଦ୍ଧା ଅଦ୍ୟାପି ଜୟବତୀଶା କରୁଅଛୁଁ । ଏହି ଭ୍ରାତୃଗଣ ଏବଂ ଆମ୍ଭେ ସମସ୍ତେ ଯତ୍ନ କରୁଅଛୁଁ । ଅତଏବ ଆପଣଙ୍କର ଆମ୍ଭମାନଙ୍କ ବାକ୍ୟକୁ ବୃଥା କରିବା କର୍ତ୍ତବ୍ୟ ହେଉ-ନାହିଁ । ୩୭ ।

ଆପଣ ଏହି ସମଗ୍ର ପୃଥିବୀକୁ ପରିତ୍ୟାଗ କରି ଅରଣ୍ୟକୁ ଗମନ କରିବାର ଇଚ୍ଛା କରିବାରୁ ସ୍ୱୟଂ ବିପଦକୁ ଆହ୍ୱାନ କରୁଅଛନ୍ତି । ଯେପରି ପୂର୍ବେ ସମସ୍ତ ରାଜାମାନଙ୍କର ମାନନୀୟ ରାଜଶ୍ରେଷ୍ଠ ମାନ୍ଧାତା ଓ ଅମ୍ବରୀଷ ଥିଲେ, ସେହିପରି ଆପଣ ବର୍ତ୍ତମାନ ବିରାଜମାନ ହୋଇ ଅଛନ୍ତି । ଅତଏବ ଧର୍ମାନୁସାରେ ପ୍ରଜାପାଳନପୂର୍ବକ ବନ, ପର୍ବତ ଓ ବହୁଳ ଦ୍ୱୀପ ସମନ୍ୱିତ ଏହି ବସୁନ୍ଧରାକୁ ଶାସନ କରନ୍ତୁ । ବିବିଧ ପ୍ରକାର ଯଜ୍ଞାନୁଷ୍ଠାନ କରନ୍ତୁ, ଶତ୍ରୁମାନଙ୍କ ସହିତ ଯୁଦ୍ଧ କରନ୍ତୁ ଏବଂ ବ୍ରାହ୍ମଣମାନଙ୍କୁ ଧନ ଓ ବସ୍ତ୍ର ପ୍ରଭୃତି ନାନାପ୍ରକାର ଭୋଗ୍ୟବସ୍ତୁକୁ ପ୍ରଦାନ କରନ୍ତୁ । ଆଜି ବିମନା ହେଉନ୍ତୁ ନାହିଁ । ୩୯ ।

## ଅଧ୍ୟାୟ-୧୫

ବୈଶମ୍ପାୟନ କହିଲେ—ହେ ଜନମେଜୟ ! ଅର୍ଜୁନ ଯାଜ୍ଞସେନୀଙ୍କର ବାକ୍ୟ ଶ୍ରବଣ କରି ଜ୍ୟେଷ୍ଠଭ୍ରାତା ଅଚ୍ୟୁତ ମହାବାହୁ ଯୁଧିଷ୍ଠିରଙ୍କୁ ସମ୍ମାନପୂର୍ବକ ପୁନର୍ବାର କହିଲେ । ୧ ।

ଅର୍ଜୁନ କହିଲେ—ଦଣ୍ଡ କେବଳ ପ୍ରଜାମାନଙ୍କର ଶାସନ ଓ ପାଳନ କରେ ଏବଂ ଦଣ୍ଡ ସମସ୍ତଙ୍କର ନିଦ୍ରାବସ୍ଥାରେ ସୁଦ୍ଧା ଜାଗରିତ ହୁଏ, ଏହି ନିମିତ୍ତ ପଣ୍ଡିତମାନେ ଦଣ୍ଡକୁ ଧର୍ମବୋଲି ଜାଣନ୍ତି । ୨ ।

ହେ ଜନାଧିପ ! ଦଣ୍ଡ ସିନା ଧର୍ମ, ଅର୍ଥ ଓ କାମକୁ ରକ୍ଷାକରେ, ଏହି ନିମିତ୍ତ ଦଣ୍ଡକୁ ତ୍ରିବର୍ଗ ବୋଲି କହନ୍ତି । ୩ ।

ପ୍ରଜାମାନଙ୍କର ଧନ ଧାନ୍ୟ, ଯାହାକିଛି ବସ୍ତୁ ସମସ୍ତ ଦଣ୍ଡଦ୍ୱାରା ରକ୍ଷିତ ହୁଏ । ଅତଏବ ଆପଣ ମଧ୍ୟ ଏହିପରି ଅବଧାରଣ କରି ଲୋକରକ୍ଷା ସ୍ୱରୂପ ଦଣ୍ଡକୁ ଗ୍ରହଣ କରନ୍ତୁ ଏବଂ ଲୌକିକ ଭାବ ପ୍ରତି ଦୃଷ୍ଟିପାତ କରନ୍ତୁ । ୪ ।

ଏହି ପୃଥିବୀରେ କେତେଗୁଡ଼ିଏ ପାପାତ୍ମା ଲୋକ କେବଳ ରାଜଦଣ୍ଡ ଭୟରେ ପାପାଚରଣ କରନ୍ତି ନାହିଁ । କେହି କେହି ଯମଦଣ୍ଡ ଭୟରେ କେହି ଅବା ପରଲୋକ ଭୟରେ, କେହି ଅବା ପରସ୍ପର ଭୟରେ ପାପାଚରଣ କରିପାରନ୍ତି ନାହିଁ । ଲୋକ ବ୍ୟବହାର ସିଦ୍ଧି ଏହିପରି । ଏହିସବୁ ଲୋକେ ଦଣ୍ଡ ଭୟରେ ନିଜ ନିଜ କାର୍ଯ୍ୟରେ ବ୍ୟବସ୍ଥିତ ଅଛନ୍ତି ।୬।

ଏହି ପୃଥିବୀରେ ଏହିପରି ଅନେକ ଲୋକ ଅଛନ୍ତି ଯେଉଁମାନେ କେବଳ ଦଣ୍ଡ ଭୟରେ ପରସ୍ପରକୁ ଭକ୍ଷଣ କରନ୍ତି ନାହିଁ । ଦଣ୍ଡ ଯଦି ପ୍ରଜାମାନଙ୍କୁ ରକ୍ଷା ନ କରନ୍ତା ତାହାହେଲେ ସମସ୍ତ ଲୋକେ ଅନ୍ଧକାର ରୂପ ନରକରେ ନିମଗ୍ନ ହୁଅନ୍ତେ । ୭ ।

ଅଦାନ୍ତଙ୍କୁ ଦମନ କରେ ଏବଂ ଅଶିଷ୍ଟଙ୍କୁ ଦଣ୍ଡ କରେ ବୋଲି ପଣ୍ଡିତମାନେ ଏହାର ନାମ ଦଣ୍ଡ ଦେଇଅଛନ୍ତି । ୮ ।

ବ୍ରାହ୍ମଣ ଜାତି କୌଣସି ଅପରାଧ କଲେ କେବଳ ବାକ୍ୟଦ୍ୱାରା ସେମାନଙ୍କର ଦଣ୍ଡ କରିବା କର୍ତ୍ତବ୍ୟ ଅପରାଧୀ କ୍ଷତ୍ରିୟର ଭୋଜନ ମାତ୍ର ପ୍ରଦାନ କରିବ, ଅର୍ଥାତ ତନ୍ମାତ୍ର ବେତନ ପ୍ରଦାନ ରୂପ ଦଣ୍ଡକୁ ବିଧାନ କରିବ, ବୈଶ୍ୟର ଅର୍ଥଦାନ ରୂପ ଦଣ୍ଡ କରିବ, ଅର୍ଥାତ୍ ସେମାନଙ୍କୁ ଅର୍ଥଦଣ୍ଡ କରିବ ଏବଂ ଶୂଦ୍ର ଜାତିର ଅନ୍ୟ ଦଣ୍ଡ ନ କରି କେବଳ ସେମାନଙ୍କଦ୍ୱାରା ସେବା କାର୍ଯ୍ୟ କରାଇ ନେବ । ୯ ।

ହେ ବିଶାମ୍ପତେ ! ପ୍ରଜାମାନଙ୍କର ଅର୍ଥ ରକ୍ଷା ସତର୍କତା ନିମିତ୍ତ ଲୋକରେ ଦଣ୍ଡ ନିୟମ ସଂସ୍ଥାପିତ ହୋଇଅଛି । ୧୦ ।

ଯେଉଁ ସ୍ଥଳରେ ଦଣ୍ଡ ନେତା ଅର୍ଥାତ୍ ରାଜା ସମ୍ୟକ୍ ପ୍ରକାରେ ବିଚାରବାନ୍ ହୁଅନ୍ତି ଏବଂ ଶ୍ୟାମ ମୂର୍ତ୍ତି ଲୋହିତ ନେତ୍ର ଦଣ୍ଡ ସୁନ୍ଦର ରୂପରେ ଉଦ୍ୟତ ଥାଏ, ସେହି ସ୍ଥଳରେ ପ୍ରଜା କଦାପି ମୋହିତ ହୁଅନ୍ତି ନାହିଁ । ୧୧ ।

କି ବ୍ରହ୍ମଚାରୀ କି ଗୃହସ୍ଥ, କି ବାନପ୍ରସ୍ଥ, କି ଭିକ୍ଷୁକ, ସବପ୍ରକାର ଆଶ୍ରମୀମାନେ କେବଳ ଦଣ୍ଡଭୟ ହେତୁ ନିୟମିତ ପଥରେ ଅବସ୍ଥିତ ରହିଅଛନ୍ତି ୧୨।

ହେ ରାଜନ୍ ! ଦଣ୍ଡଭୟ ନ ଥିଲେ କୌଣସି ପୁରୁଷ ଯଜ୍ଞାନୁଷ୍ଠାନ କିମ୍ବା ଦାନାଦି କରିବାକୁ ଇଚ୍ଛା କରନ୍ତେ ନାହିଁ । ଭୟହୀନ ହେଲେ କୌଣସି ବ୍ୟକ୍ତି ସୁଦ୍ଧା ନିୟମରେ ରହିବାକୁ ଇଚ୍ଛା କରନ୍ତି ନାହିଁ ।୧୩।

ମତ୍ସ୍ୟଘାତୀ ଯେପରି ମତ୍ସ୍ୟ ହିଂସା ନ କଲେ ଜୀବିକା ନିର୍ବାହ କରି-ପାରେନାହିଁ, ରାଜା ସେହିପରି ଶତ୍ରୁମାନଙ୍କର ମର୍ମଚ୍ଛେଦ ଓ ଦୁଷ୍କର କାର୍ଯ୍ୟ ସମ୍ପାଦନ ନ କଲେ ମହତୀ ଶ୍ରୀଲାଭ କରିବାକୁ ସମର୍ଥ ହୁଅନ୍ତି ନାହିଁ । ଦେଖନ୍ତୁ, ଇନ୍ଦ୍ର ବୃତ୍ରାସୁରକୁ ସଂହାର କରି ମହେନ୍ଦ୍ର ନାମକୁ ପ୍ରାପ୍ତ ହୋଇଅଛନ୍ତି ।୧୫।

ଦେବଗଣଙ୍କ ମଧ୍ୟରେ ଯେଉଁମାନେ ଶତ୍ରୁହନ୍ତା ଅଟନ୍ତି, ଲୋକେ ସେମାନଙ୍କୁ କେବଳ ଅତ୍ୟନ୍ତ ଭକ୍ତିପୂର୍ବକ ଅର୍ଚ୍ଚନା କରନ୍ତି । ରୁଦ୍ର, ସ୍କନ୍ଦ, ଅଗ୍ନି, ବରୁଣ, ଯମ, କାଳ, ମୃତ୍ୟୁ, ବାୟୁ, କୁବେର, ରବି, ବସୁ, ମରୁତ, ବିଶ୍ୱଦେବ ଓ ସାଧ୍ୟଗଣ ଏମାନେ ସମସ୍ତେ ହନ୍ତା ଅଟନ୍ତି । ମନୁଷ୍ୟମାନେ ଏହିସବୁ ଦେବଗଣଙ୍କ ପ୍ରତାପରେ ପ୍ରଣତ ହୋଇ ଏମାନଙ୍କୁ ନମସ୍କାର କରନ୍ତି । ବ୍ରହ୍ମା ଧାତା ବା ପୂଷାଙ୍କୁ କେହି ହୁଏ କଦାପି ପ୍ରଣାମ କରନ୍ତି ନାହିଁ ।୧୮।

କେବଳ କୌଣସି କୌଣସି ପ୍ରଶସ୍ତ ମନୁଷ୍ୟମାନେ ଯେଉଁମାନେ କି ସମସ୍ତ କର୍ମରେ ଏବଂ ସର୍ବପ୍ରାଣିଙ୍କଠାରେ ସମଭାବାପନ୍ନ ଅଟନ୍ତି । ସେମାନେ କେବଳ ଦାନ୍ତ ଓ ଶମ ପରାୟଣ ଦେବଗଣଙ୍କର ଅର୍ଚ୍ଚନା କରନ୍ତି ।୧୯।

ଏ ସଂସାର ମଧ୍ୟରେ ଏପରି କୌଣସି ପ୍ରାଣୀଙ୍କୁ ଦେଖୁ ନାହୁଁ, ଯେ କି ହିଂସା ବୃତ୍ତିଦ୍ୱାରା ଜୀବିକାନିର୍ବାହ କରେ ନାହିଁ । କାରଣ ଦୁର୍ବଳ ପ୍ରାଣୀଦ୍ୱାରା ବଳବତ୍ତର ପ୍ରାଣୀମାନେ ଜୀବିକାନିର୍ବାହ କରନ୍ତି ।୨୦।

ହେ ରାଜନ୍ ! ନକୁଳ ମୂଷିକକୁ, ବିଡ଼ାଳ ନକୁଳକୁ, କୁକ୍କୁର ବିଡ଼ାଳକୁ ଏବଂ ଚିତା ବ୍ୟାଘ୍ର କୁକ୍କୁରକୁ ଭୋଜନ କରନ୍ତି ।୨୧।

ପୁଣି ଦେଖନ୍ତୁ, କାଳପୁରୁଷ ସମୟରେ ଉପସ୍ଥିତ ହୋଇ ଏମାନଙ୍କୁ ସମସ୍ତଙ୍କୁ ଭକ୍ଷଣ କରନ୍ତି । ଏହି ସ୍ଥାବର ଓ ଜଙ୍ଗମମୟ ଜଗତରେ ଯାହା କିଛି ପଦାର୍ଥ ଅଛି ଓ ସମସ୍ତ ପ୍ରାଣୀମାନଙ୍କର ଭକ୍ଷ୍ୟ ବୋଲି ବିଧାତାଙ୍କ କର୍ତ୍ତୃକ କଳ୍ପିତ ହୋଇଅଛି; ଏହି ନିମିତ୍ତ ବିଦ୍ୱାନ ବ୍ୟକ୍ତି ଏପରି ବିଷୟରେ ବିମୋହିତ ହୁଅନ୍ତି ନାହିଁ । ହେ ରାଜେନ୍ଦ୍ର ! ଆପଣ ଯେଉଁ କୁଳରେ ଜନ୍ମଗ୍ରହଣ କରିଅଛନ୍ତି, ସେହି କୁଳର ଆଚରିତ କାର୍ଯ୍ୟରେ ପ୍ରବୃତ୍ତ ହେବା ଆପଣଙ୍କର କର୍ତ୍ତବ୍ୟ ।୨୩।

ମୂଢ଼ମତି କ୍ଷତ୍ରିୟମାନେ କ୍ରୋଧ ଓ ହର୍ଷକୁ ବିସର୍ଜନ ଦେଇ ବାନପ୍ରସ୍ଥ ଧର୍ମକୁ ଗ୍ରହଣ କରନ୍ତି । କିନ୍ତୁ ତାପସଗଣ ମଧ୍ୟ ହିଂସା ନ କରି କଦାଚ ଦେହଯାତ୍ରା ନିର୍ବାହ କରିବାରେ ସମର୍ଥ ହୁଅନ୍ତି ନାହିଁ ।୨୪।

ଭୂତଳରେ, ଜଳରେ ଏବଂ ଫଳ ସମୂହ ମଧ୍ୟରେ ବହୁ ସଂଖ୍ୟକ କ୍ଷୁଦ୍ରପ୍ରାଣୀ ନିବଷ୍ଟ ଅଛନ୍ତି । ତାପସଗଣ ପ୍ରାଣଧାରଣ ନିମିତ୍ତ ପାନ ଭୋଜନାଦିରେ ପ୍ରବୃତ୍ତ ହୋଇ ଫଳ ଜଳାଦି ସହିତ ଏହିସବୁ ପ୍ରାଣିମାନଙ୍କର ହିଂସା କରନ୍ତି ।୨୫।

ପୃଥିବୀରେ ଏତେ ସୂକ୍ଷ୍ମ ପ୍ରାଣୀ ଅଛନ୍ତି ଯେ, କେବଳ ଅନୁମାନ ଭିନ୍ନ ଅନ୍ୟ କୌଣସି ଉପାୟରେ ସୁଦ୍ଧା ସେମାନଙ୍କର ଅସ୍ତିତ୍ୱ ସ୍ଥିର ହେବ ନାହିଁ । ସେମାନେ ଏତେ ସୂକ୍ଷ୍ମ ଯେ ଚକ୍ଷୁର ପକ୍ଷ୍ମାଘାତରେ ସୁଦ୍ଧା ବିନଷ୍ଟ ହୋଇଯାନ୍ତି ।୨୬।

କୌଣସି କୌଣସି ବ୍ୟକ୍ତି କ୍ରୋଧ ଓ ମାତ୍ସର୍ଯ୍ୟ ପରିତ୍ୟାଗପୂର୍ବକ ମୁନିଙ୍କ ଧର୍ମକୁ ଅବଲମ୍ବନ କରି ଗ୍ରାମରୁ ନିର୍ଗତ ହୋଇ ଅରଣ୍ୟକୁ ଗମନ କରନ୍ତି; କିନ୍ତୁ ସେହି ବନରେ ସୁଦ୍ଧା ଉକ୍ତ ମୂଢ଼ ବ୍ୟକ୍ତିମାନଙ୍କୁ ଗୃହସ୍ଥାଶ୍ରମୀ ହେବାର ଦେଖାଯାଏ ।୨୭।

ଅନେକ ଲୋକେ ଗୃହସ୍ଥାଶ୍ରମରେ ଥାଇ ସୁଦ୍ଧା ଭୂମିଖନନ, ଔଷଧି ଛେଦନ ଏବଂ ଉଦ୍ଭିଦ ଓ ଅଣ୍ଡଜ ପ୍ରଭୃତି ଚତୁର୍ବିଧ ପ୍ରାଣୀମାନଙ୍କର ହିଂସା କରି ଯଜ୍ଞାନୁଷ୍ଠାନପୂର୍ବକ ସ୍ୱର୍ଗଲାଭ କରନ୍ତି ।୨। ।

ଅତଏବ ହେ କୌନ୍ତେୟ ! ଦଣ୍ଡନୀତି ପ୍ରୟୋଗ କରିପାରିଲେ ସମସ୍ତ ପ୍ରାଣିଙ୍କର କାର୍ଯ୍ୟସିଦ୍ଧି ହୋଇପାରେ ଏଥିରେ ସନ୍ଦେହ ନାହିଁ ।୨୯।

ଏହି ଜୀବଲୋକରେ ଦଣ୍ଡ ନ ଥିଲେ ସମସ୍ତ ପ୍ରଜାମାନେ ନଷ୍ଟ ହୋଇଯାନ୍ତେ; ଅଧିକ ବଳଶାଳୀ ପ୍ରାଣିମାନେ ସେମାନଙ୍କ ଅପେକ୍ଷା ଦୁର୍ବଳ ପ୍ରାଣିମାନଙ୍କୁ, ସଳିଳସ୍ଥିତ ମତ୍ସ୍ୟମାନଙ୍କପ୍ରାୟ ଭକ୍ଷଣ କରନ୍ତେ ।୩୦।

ପୂର୍ବେ ବ୍ରହ୍ମା ମଧ୍ୟ ଏହି ସତ୍ୟକଥା କହିଯାଇଅଛନ୍ତି ଯେ ସମ୍ୟକ ବିଧିର ପ୍ରଣୀତ ଦଣ୍ଡ ପ୍ରଜାମାନଙ୍କୁ ରକ୍ଷା କରେ । ପ୍ରଶାନ୍ତ ଅଗ୍ନି ସୁଦ୍ଧା ଦଣ୍ଡ ଭୟରେ ଭୀତ ହୋଇ ଫୁତ୍କାର କଲାକ୍ଷଣି ପୁନର୍ବାର ପ୍ରଜ୍ଜ୍ୱଳିତ ହୁଏ ।୩୧।

ଯଦି ସାଧୁ ଓ ଅସାଧୁ ଲୋକ ବିଭାଗକାରୀ ଦଣ୍ଡ ଏହି ସଂସାର ମଧ୍ୟରେ ନ ଥାନ୍ତା, ତାହାହେଲେ ଏହି ସମସ୍ତ ଜୀବଲୋକ ଗାଢ଼ାନ୍ଧକାରରେ

ପ୍ରବୃତ୍ତ ହେଲ ନ୍ୟାୟ ହୋଇଥାନ୍ତେ, କିଛି ମୁଧା ଜାଣି ପାରନ୍ତେ ନାହିଁ ।୩୨।

ଯେଉଁମାନେ ନିୟମୋଲ୍ଲଂଘନକାରୀ, ବେଦନିନ୍ଦକ ଓ ନାସ୍ତିକ ଅଟନ୍ତି, ସେମାନେ ମଧ୍ୟ ଦଣ୍ଡଦ୍ୱାରା ନିପୀଡ଼ିତ ହୋଇ ଅବଲମ୍ବରେ ନିୟମର ବଶୀଭୂତ ହୁଅନ୍ତି ।୩୩।

ସମସ୍ତ ପ୍ରାଣୀ ଦଣ୍ଡଦ୍ୱାରା ନତ ହୋଇଥାନ୍ତି, କାରଣ ଏହି ଜଗତରେ ନିଷ୍ପାପ ଲୋକ ଦୁର୍ଲ୍ଲଭ ଅଟନ୍ତି, ଅତଏବ ପ୍ରାୟ ସମସ୍ତ ଲୋକେ ଦଣ୍ଡଭୟରେ ଭୀତ ହୋଇ ନିୟମିତ ପଥରେ ବିଚରଣ କରନ୍ତି । ବ୍ରାହ୍ମଣାଦି ଚତୁର୍ବର୍ଣ୍ଣ ପ୍ରଜାଙ୍କର ସୁଖ, ଧର୍ମ ଓ ଅର୍ଥରକ୍ଷା ନିମିତ୍ତ ଏବଂ ସେମାନଙ୍କୁ ମାତପଥାବଲମ୍ବୀ କରିବା ସକାଶେ ବିଧାତା ଦଣ୍ଡକୁ ସୃଷ୍ଟି କରିଅଛନ୍ତି ।୩୪।

ଯଦି ଦଣ୍ଡଭୟ ନଥାନ୍ତା, ତାହାହେଲେ ଦୁଷ୍ଟପକ୍ଷୀ ଓ ଶ୍ୱାପଦଗଣ ସର୍ବଦା ଯଜ୍ଞୀୟ ହବି, ପଶୁ ଓ ମନୁଷ୍ୟମାନଙ୍କୁ ଭକ୍ଷଣ କରନ୍ତେ ।୩୫।

ଦଣ୍ଡ ଯଦି ପ୍ରଜା ରକ୍ଷା ନ କରନ୍ତା, ତାହାହେଲେ ବେଦାଧ୍ୟୟନ ଦୁଗ୍ଧବତୀ ଧେନୁର ଦୋହନ ଓ କନ୍ୟାମାନଙ୍କର ଉଦ୍ୱାହ ପ୍ରଭୃତି କିଛିମାତ୍ର ହୋଇପାରନ୍ତା ନାହିଁ ।୩୬।

ଲୋକରକ୍ଷାକାରୀ ଦଣ୍ଡ ନ ଥିଲେ, ସମସ୍ତ କ୍ରିୟାର ଉଚ୍ଛେଦ ହୁଅନ୍ତା ଓ ନିୟମସବୁ ବିଶୃଙ୍ଖଳ ହୋଇଯାନ୍ତା ଏବଂ ପ୍ରଜାମାନେ କେଉଁ ବସ୍ତୁ ଆମ୍ଭର ତାହା ସ୍ପଷ୍ଟରୂପରେ ଜାଣି ପାରନ୍ତେ ନାହିଁ । ୩ ।

ଯଦି ଦଣ୍ଡ ଲୋକରକ୍ଷା ନ କରନ୍ତା, ତାହାହେଲେ କୌଣସି ବ୍ୟକ୍ତି ମୁଧା ଅକୁତୋଭୟ ହୋଇ ବିଧିବତ୍ ଦକ୍ଷିଣାଯୁକ୍ତ ସାମ୍ବତ୍ସରିକ ଯଜ୍ଞାନୁଷ୍ଠାନ କରନ୍ତେ ନାହିଁ । ୩୯ ।

ଅପିଚ ବ୍ରହ୍ମଚର୍ଯ୍ୟ ଓ ଗୃହସ୍ଥାଶ୍ରମୀମାନେ କେହିମୁଧା ବିଧି ଅନୁସାରେ ନିଜନିଜ ଆଶ୍ରମ ନିର୍ଦ୍ଦିଷ୍ଟ କାର୍ଯ୍ୟର ଅନୁଷ୍ଠାନ କରନ୍ତେ ନାହିଁ । ମଧ୍ୟ କୌଣସି ବ୍ୟକ୍ତି ମୁଧା ବିଦ୍ୟାଲାଭ କରିବାରେ ସମର୍ଥ ହୁଅନ୍ତେ ନାହିଁ । ୪୦ ।

ଦଣ୍ଡ ଭୟ ନଥିଲେ, ଉଷ୍ଟ୍ର ବଳୀବର୍ଦ୍ଦ, ଅଶ୍ୱ, ଅଶ୍ୱତର ଓ ଗର୍ଦ୍ଦଭାଦି ପଶୁମାନେ ଯାନାଦିରେ ନିୟୋଜିତ ହୋଇ କଦାପି ତାହା ବହନ କରନ୍ତେ ନାହିଁ । ୪୧ ।

ଯଦି ଦଣ୍ଡ ନ ଥାନ୍ତା ତାହାହେଲେ ଭୃତ୍ୟଗଣ କିମ୍ବା ବାଳକମାନେ କଦାପି ଆଦେଶ ପାଳନ କରନ୍ତେ ନାହିଁ । ୪୨ ।

ସମସ୍ତ ପ୍ରାଣୀ ଦଣ୍ଡଭୟ ହେତୁ ଯଥା ନିୟମରେ ଅବସ୍ଥିତ ରହି ଅଛନ୍ତି । ଏହି ନିମିତ୍ତ ପଣ୍ଡିତମାନେ ଦଣ୍ଡକୁ ସମସ୍ତଙ୍କର ମୂଳ ବୋଲି ଜାଣନ୍ତି । ଦଣ୍ଡ ମନୁଷ୍ୟମାନଙ୍କର ସ୍ୱର୍ଗପ୍ରଦ ଅଟେ । ସମସ୍ତ ଲୋକମାନେ କେବଳ ଦଣ୍ଡରେ ପ୍ରତିଷ୍ଠିତ ରହିଅଛନ୍ତି । ୪୩ ।

ଯେଉଁ ସ୍ଥଳରେ ଶତ୍ରୁବିନାଶକାରୀ ଦଣ୍ଡବିଧାନ ଅନୁସାରେ ପ୍ରଣୀତ ହୁଏ, ସେହି ସ୍ଥଳରେ କୌଣସି ପ୍ରକାର ପାପକର୍ମ କପଟତା ବା ବଞ୍ଚନା ଦୃଷ୍ଟହୁଏ ନାହିଁ । ୪୪ ।

ଯଦି ଦଣ୍ଡ ଉଦ୍ୟତ ହୋଇ ରକ୍ଷା ନ କରନ୍ତା, ତାହାହେଲେ କାକମାନେ ପୁରୋଡାଶକୁ ଭକ୍ଷଣ କରନ୍ତେ ଏବଂ କୁକୁରମାନେ ହବିଷ୍ୟ ଘୃତକୁ ଅବଲେହନ କରନ୍ତେ । ୪୫ ।

ଧର୍ମତଃ ହେଉ କିମ୍ବା ଅଧର୍ମତଃ ହେଉ ଏହି ରାଜ୍ୟ ଆମ୍ଭମାନଙ୍କର ଲବ୍ଧ ହୋଇଅଛି । ଆପଣ ଶୋକାଦି ପରିତ୍ୟାଗ କରି ଏହି ରାଜ୍ୟକୁ ଭୋଗ କରନ୍ତୁ ଏବଂ ଯଜ୍ଞାଦିର ଅନୁଷ୍ଠାନ କରନ୍ତୁ । ୪୬ ।

ଶ୍ରୀମନ୍ତ ପୁରୁଷମାନେ ପ୍ରିୟ କଳତ୍ର ଓ ପୁତ୍ରାଦିମାନଙ୍କର ସହିତ ବାସକରି ପବିତ୍ର ବସ୍ତ୍ରକୁ ପରିଧାନପୂର୍ବକ ଏବଂ ଉତ୍କୃଷ୍ଟ ଅନ୍ନ ଭୋଜନ ପୂର୍ବକ ସୁଖରେ ଧର୍ମାଚରଣ କରନ୍ତି । ୪୭ ।

ଏହି ସଂସାର ମଧ୍ୟରେ ଯାହା କିଛି କାର୍ଯ୍ୟ ଅଛି ତତ୍ସମସ୍ତ ଅର୍ଥାଧୀନ ଅଟେ ଏବଂ ଅର୍ଥ ମଧ୍ୟ ଦଣ୍ଡର ଆୟତ୍ତରେ ଅଛି । ବର୍ତ୍ତମାନ ବିଚାର କରି ଦେଖନ୍ତୁ ଦଣ୍ଡର କେତେଦୂର ଗୌରବ । ୪୮ ।

କେବଳ ଲୋକଯାତ୍ରା ନିର୍ବାହାର୍ଥ ଧର୍ମ ବ୍ୟବସ୍ଥିତ ହୋଇଅଛି । କୌଣସି ଦୁର୍ବଳ ପ୍ରାଣୀ ପ୍ରବଳ ପ୍ରାଣୀକର୍ତ୍ତୃକ ଆକ୍ରାନ୍ତ ହେଲେ, ସେହି ଦୁର୍ବଳ ପ୍ରାଣୀକି ପରିତ୍ରାଣ କରିବା ନିମିତ୍ତ ଯଦି ପ୍ରବଳ ପ୍ରାଣୀକୁ ବିନାଶ କରାଯାଏ, ତଦ୍ୱାରା ଯେଉଁ ସାତ୍ତ୍ୱିକ ହିଂସା ହୁଏ, ତାହା ଅହିଂସା ଅପେକ୍ଷା ଅଧିକତର ଧର୍ମୋପାର୍ଜନ କରେ । ୪୯ ।

ଇହଲୋକରେ କୌଣସି କାର୍ଯ୍ୟ ସୁଦ୍ଧା ସମ୍ପୂର୍ଣ୍ଣଭାବରେ ଦୋଷହୀନ କିମ୍ବା ଦୋଷଯୁକ୍ତ ନାହିଁ । ସମସ୍ତ କାର୍ଯ୍ୟରେ ଆଂଶିକ ଦୋଷ ଏବଂ ଗୁଣ ଦୃଷ୍ଟ ହୋଇଥାଏ । ୫୦ ।

ବହୁସଂଖ୍ୟକ ଲୋକ ପଶୁମାନଙ୍କଦ୍ୱାରା ଭାରବହନ କରାଇ ନିଅନ୍ତି; ମଧ୍ୟ ସେମାନଙ୍କର ବୃଷଣ ଛେଦନ ଏବଂ ନାସିକା ଭେଦ କରି ସେମାନଙ୍କୁ ବନ୍ଧନ ଓ ପ୍ରହାର କରନ୍ତି । ୬୧ ।

ହେ ମହାରାଜ ! ଏହି ଅନିତ୍ୟ ଲୋକ ବ୍ୟବହାର ଏହିପରି ପର୍ଯ୍ୟାକୁଳିତ ଅର୍ଥାତ୍ ଦଣ୍ଡଭାବରେ ସମସ୍ତ କାର୍ଯ୍ୟ ନିର୍ବାହ ହୋଇଥାଏ । ଅତଏବ ଆପଣ ଏହିପରି ବ୍ୟବହାରଦ୍ୱାରା ପୁରାତନ ଧର୍ମାଚରଣ କରନ୍ତୁ । ୬୨ ।

ହେ କୌନ୍ତେୟ ! ଯଜ୍ଞାନୁଷ୍ଠାନ, ଦାନ, ପ୍ରଜାପାଳନ, ଶତ୍ରୁମାନଙ୍କର ବିନାଶ ଓ ମିତ୍ରମାନଙ୍କର ପାଳନ କରି ସମ୍ୟକ ପ୍ରକାରରେ ଧର୍ମରକ୍ଷା କରନ୍ତୁ । ୬୩ ।

ହେ ପାର୍ଥିବ ! ଶତ୍ରୁ ବିନାଶ କାଳରେ ଆପଣଙ୍କର ଯେପରି କିଞ୍ଚିନ୍ମାତ୍ର ଗ୍ଲାନିଭାବ ଉପସ୍ଥିତ ନ ହୁଏ, ତାହା ବାଞ୍ଛନୀୟ, କାରଣ ବିଧି ଅନୁସାରେ ଶତ୍ରୁ ସଂହାର କଲେ, ତାଦୃଶ କର୍ତ୍ତା ପାପରେ ଲିପ୍ତ ହୁଏନାହିଁ । ୬୪ ।

ଯଦି ବ୍ରାହ୍ମଣ ସୁଦ୍ଧା ଶସ୍ତ୍ରହସ୍ତ ହୋଇ ହନନେଚ୍ଛାରେ ସମାଗତ ହୁଏ, ତେବେ ଶସ୍ତ୍ର ଗ୍ରହଣପୂର୍ବକ ତାହାକୁ ବିନାଶ କଲେ ବ୍ରହ୍ମହତ୍ୟା ପାପରେ ଲିପ୍ତ ହେବାକୁ ହୁଏନାହିଁ । କାରଣ ସେହି ସମାଗତ ଆତତାୟୀ ପୁରୁଷର କ୍ରୋଧ ହିଁ ହନ୍ତାରେ କ୍ରୋଧୋଦ୍ରେକର ମୂଳ କାରଣ ଅଟେ । ୬୫ ।

ବିଶେଷତଃ ଯେ କି ସର୍ବଭୂତର ଅନ୍ତରାତ୍ମା ଅଟନ୍ତି, ସେ ଯେ ଅବଧ୍ୟ ଏଥିରେ ସଂଶୟ ନାହିଁ । ଯଦି ଆତ୍ମା ଅବଧ୍ୟ ହେଲେ ତେବେ କିଏ କାହାର ବା ବଧ ହୋଇପାରେ । ୬୬ ।

ମନୁଷ୍ୟମାନେ ଯେପରି ପୁନଃ ପୁନଃ ଗୃହରୁ ଗୃହାନ୍ତରକୁ ପ୍ରବେଶ କରନ୍ତି, ସେହିପରି ଜୀବ ମଧ୍ୟ ପୁନଃ ପୁନଃ ଶରୀରରୁ ଶରୀରାନ୍ତରକୁ ପ୍ରାପ୍ତ ହୁଏ । ୬୭ ।

ଦେହୀମାନଙ୍କର ପୁରାତନ ଦେହ ପରିତ୍ୟାଗପୂର୍ବକ ନୂତନ ଦେହ ଧାରଣକୁ ତତ୍ତ୍ୱଦର୍ଶୀ ପଣ୍ଡିତମାନେ ମୃତ୍ୟୁବୋଲି କୀର୍ତ୍ତନ କରନ୍ତି । ୬୮ ।



# ଅଧ୍ୟାୟ-୧୭

ବୈଶମ୍ପାୟନ ବୋଇଲେ—ଅର୍ଜ୍ଜୁନଙ୍କର ବାକ୍ୟ ଶ୍ରବଣ କରି ଉତ୍ତରରେ ଅମର୍ଷ ପରାୟଣ ତେଜସ୍ୱୀ ଭୀମସେନ ଧୈର୍ଯ୍ୟାବଲମ୍ବନପୂର୍ବକ ଜ୍ୟେଷ୍ଠଭ୍ରାତା ଯୁଧିଷ୍ଠିରଙ୍କୁ କହିଲେ । ୧ ।

ହେ ରାଜନ୍ ! ଆପଣ କୌଣସି ବିଷୟରେ ଅନଭିଜ୍ଞ ନୁହଁନ୍ତି । ସମସ୍ତ ଧର୍ମ ଆପଣଙ୍କୁ ବିଦିତ ଅଛି । ଆମ୍ଭେମାନେ ସର୍ବଦା ଆପଣଙ୍କ ଚରିତ୍ର ଶିକ୍ଷା କରିବାକୁ ଇଚ୍ଛାକରୁଁ ; କିନ୍ତୁ କୌଣସି ପ୍ରକାରରେ ସମର୍ଥ ହେଉନାହୁଁ । ୨ ।

ହେ ଜନାଧିପ ! ଆପଣଙ୍କୁ କିଛି କହିବି ନାହିଁ, କହିବି ନାହିଁ ବୋଲି ମନେ କରୁଥିଲି; କିନ୍ତୁ ଅତୀବ ଦୁଃଖୀ ହେବାରୁ ସମସ୍ତ ବିଫଳ ହେଉଅଛି, ଏବଂ ଆମ୍ଭେମାନେ ମଧ୍ୟ କାତର ଓ ଦୁର୍ବଳ ହେଉଅଛୁଁ । ୪ ।

ଆପଣ ସର୍ବଶାସ୍ତ୍ର ବିଶାରଦ ନରପତି ହୋଇ ମୂର୍ଖତା କି ନିମିତ୍ତ ଦୀନଭାବାପନ୍ନ କାପୁରୁଷ ପ୍ରାୟ ମୋହିତ ହେଉଅଛନ୍ତି । ୫ ।

ହେ ପ୍ରଭୋ ! ଲୋକଙ୍କର ସଦ୍‌ଗତି ଓ ଅସଦ୍‌ଗତି ବିଷୟ ଆପଣଙ୍କୁ ବିଦିତ ଅଛି ଏବଂ ଭବିଷ୍ୟତ ଓ ବର୍ତ୍ତମାନାଦି କାଳର ଗତି କି ମଧ୍ୟ ଆପଣ ଜାଣନ୍ତି । ୬ ।

ହେ ମହାରାଜ ! ଏହି ରାଜ୍ୟ ବିଷୟରେ ଆମ୍ଭେ ଆପଣଙ୍କୁ ହେତୁ ନିର୍ଦ୍ଦେଶପୂର୍ବକ କିଛି କହୁଅଛୁଁ । ଆପଣ ଏକାଗ୍ରଚିତ୍ତ ହୋଇ ଶ୍ରବଣ କରନ୍ତୁ । ୭ ।

ଏହି ଜୀବଲୋକରେ ଶାରୀରିକ ଓ ମାନସିକ ଏହି ଦୁଇ ପ୍ରକାର ପୀଡ଼ାର ଉତ୍ପତ୍ତି ହୁଏ । ଶାରୀରିକ ଭିନ୍ନ ମାନସିକ କିମ୍ବା ମାନସିକ ଭିନ୍ନ ଶାରୀରିକ ପୀଡ଼ାର ଉପଲବ୍ଧି ହୋଇପାରେ ନାହିଁ । ୮ ।

ଶରୀରର ଅସ୍ୱାସ୍ଥ୍ୟନିମିତ୍ତ ମାନସିକ ପୀଡ଼ାର ଉତ୍ପତ୍ତି ହୁଏ ଏବଂ ମାନସିକ ପୀଡ଼ା ଉପସ୍ଥିତ ହେଲେ ଶରୀର ଅସୁସ୍ଥ ହୁଏ । ଏଥିରେ ସନ୍ଦେହ ନାହିଁ । ୯ ।

ଯେଉଁ ବ୍ୟକ୍ତି ଅତୀତ ହୋଇଥିବା ଶାରୀରିକ କିମ୍ବା ମାନସିକ ଦୁଃଖକୁ ସ୍ମରଣ କରି ଅନୁତପ୍ତ ହୁଏ, ସେ କେବଳ ଦୁଃଖଦ୍ୱାରା ଆଉ

ଗୋଟିଏ ଦୁଃଖକୁ ଆକର୍ଷଣ କରି ପରେ ଦୁଇଗୋଟି ଅନର୍ଥକୁ ପ୍ରାପ୍ତ ହୁଏ । ୧୦ ।

କଫ, ପିତ୍ତ ଓ ବାୟୁ ଏହି ତିନୋଟି ଶରୀରର ଗୁଣ ଏହି ଗୁଣତ୍ରୟର ସାମ୍ୟାବସ୍ଥାକୁ ସ୍ୱସ୍ଥଲକ୍ଷଣ ବୋଲି କୁହାଯାଏ । ୧୧ ।

ଏହି ଗୁଣତ୍ରୟର ଅନ୍ୟତରର ଆଧିକ୍ୟ ହେଲେ ତାହାକୁ ପ୍ରତିକାର କରିବା ନିମିତ୍ତ ଉପଦେଶ ଅଛି । ଉଷ୍ଣ ଦ୍ରବ୍ୟଦ୍ୱାରା କଫ ନିବାରିତ ହୁଏ ଏବଂ ଶୈତ୍ୟ ଦ୍ରବ୍ୟଦ୍ୱାରା ଉଷ୍ଣତା ନିବାରିତ ହୁଏ । ୧୨ ।

ଶରୀର ପରି ମନର ମଧ୍ୟ ସତ୍ତ୍ୱ, ରଜ ଓ ତମ ନାମକ ତିନୋଟି ଗୁଣ ଅଛି । ଏହି ଗୁଣତ୍ରୟର ସାମ୍ୟାବସ୍ଥାକୁ ମାନସିକ ସ୍ୱସ୍ଥଲକ୍ଷଣ ବୋଲି କୁହାଯାଏ । ୧୩ ।

ଏହି ସତ୍ତ୍ୱାଦି ଗୁଣତ୍ରୟର ଏକତର ଉତ୍ତେଜିତ ହେଲେ ପ୍ରତିକାରର ଆବଶ୍ୟକ ହୁଏ । ହର୍ଷଦ୍ୱାରା ଶୋକର ନିବୃତ୍ତି ହୁଏ ଏବଂ ଶୋକଦ୍ୱାରା ହର୍ଷର ନିବୃତ୍ତି ହୁଏ । ୧୪ ।

କୌଣସି କୌଣସି ବ୍ୟକ୍ତି ସୁଖରେ ଅବସ୍ଥାନ କରି ଦୁଃଖର ସ୍ମରଣ କରିବାକୁ ଇଚ୍ଛା କରନ୍ତି ଏବଂ କେହି ଅବା ଦୁଃଖରେ ଅବସ୍ଥିତ ଥାଇ ସୁଖର ସ୍ମରଣ କରିବାକୁ ଇଚ୍ଛାକରନ୍ତି । ୧୫ ।

କିନ୍ତୁ ଆପଣ ତ କଦାପି ସୁଖ କିମ୍ବା ଦୁଃଖରେ ଆସକ୍ତ ହୋଇ ନାହାନ୍ତି, ସୁତରାଂ ଦୁଃଖର ସମୟରେ ସୁଖର ସ୍ମରଣ କରିବା କିମ୍ବା ସୁଖୋପସ୍ଥିତ ସମୟରେ ଦୁଃଖର ସ୍ମରଣ କରିବା ଆପଣଙ୍କର କର୍ତ୍ତବ୍ୟ ନୁହେ । ୧୬ ।

ହେ କୌନ୍ତେୟ ! ଅଦୃଷ୍ଟ କେବଳ ବଳବତ୍ତର ଅଟେ । ଅଥବା ଯଦ୍ଦ୍ୱାରା ଆପଣ କ୍ଲିଷ୍ଟ ହେଉଅଛନ୍ତି, ଆପଣଙ୍କର ସ୍ୱଭାବ ଯଦି ତଦ୍ରୂପ ହୁଏ, ତେବେ ପୂର୍ବେ ଯେ ଶତ୍ରୁମାନେ ଆମ୍ଭମାନଙ୍କ ସମକ୍ଷରେ ଏକବସ୍ତ୍ରା ରଜସ୍ୱଳା ଦ୍ରୌପଦୀଙ୍କୁ ସଭାମଧ୍ୟକୁ ଆଣିତ କରିଥିଲେ ସେ ବିଷୟ ଆପଣ ସ୍ମରଣ କରୁନାହାନ୍ତି କାହିଁକି ?

ଅପିଚ ଆମ୍ଭେମାନେ ଯେ ନଗରରୁ ବହିଷ୍କୃତ ହୋଇ ଅଜିନ ପରିଧାନପୂର୍ବକ ମହାରଣ୍ୟରେ ବାସ କରିଥିଲୁଁ ଏବଂ ସେଠାରେ ଯେ ଜଟାସୁର ଓ ଚିତ୍ରସେନ ଗନ୍ଧର୍ବମାନଙ୍କ ସହିତ ଯୁଦ୍ଧ କରିଥିଲୁଁ, ଆଜ

ସିନ୍ଧୁରାଜ ଜୟଦ୍ରଥ ଯେ ଦ୍ରୌପଦୀଙ୍କୁ ହରଣ କରିଥିଲେ, ଅସ୍ମମାନଙ୍କର ଅଜ୍ଞାତବାସ ବିଷୟ ଏବଂ ରାଜପୁତ୍ରୀ ଦ୍ରୌପଦୀଙ୍କ ପ୍ରତି କୀଚକର ଯେଉଁ ପଦାଘାତାଦି ନାନାପ୍ରକାର ଉପଦ୍ରବ ହୋଇଥିଲା, ତାହାସବୁ ଆପଣତ କି ନିମିତ୍ତ ବିସ୍ମୃତ ହେଉଅଛନ୍ତି ? ।୨୧।

ହେ ଅରିନ୍ଦମ ! ପୂର୍ବେ ଭୀଷ୍ମ ଦ୍ରୋଣଙ୍କ ସହିତ ଆପଣଙ୍କର ଯେପରି ସଂଗ୍ରାମ ହୋଇଥିଲା, ବର୍ତ୍ତମାନ କେବଳ ଏକମନା ହୋଇ ଆପଣଙ୍କର ତାଦୃଶ ଯୁଦ୍ଧ କରିବାର ସମୟ ଉପସ୍ଥିତ ହୋଇଅଛି ।୨୨।

ଏହି ଯୁଦ୍ଧରେ ଶରନିଚୟ କିମ୍ବା ବନ୍ଧୁବାନ୍ଧବଙ୍କର ପ୍ରୟୋଜନ ହୁଏନାହିଁ, ଏକମାତ୍ର ବୁଦ୍ଧିକ ସହାୟ କରି ଯୁଦ୍ଧ କରିବାକୁ ହେବ ।୨୩।

ଯଦି ଆପଣ ବୁଦ୍ଧିକ ପରାଜିତ ନ କରି ପ୍ରାଣକୁ ପରିତ୍ୟାଗ କରନ୍ତି, ତାହାହେଲେ ଆପଣ ଦେହାନ୍ତରକୁ ଆଶ୍ରୟ କରି ସୁଦ୍ଧା ଶତ୍ରୁମାନଙ୍କ ସହିତ ଯୁଦ୍ଧ କରିବେ-ଅର୍ଥାତ୍ ଜନ୍ମାନ୍ତରରେ ସୁଦ୍ଧା ଆପଣଙ୍କର ଯୁଦ୍ଧ କାର୍ଯ୍ୟ ଅନିବାର୍ଯ୍ୟ ବୋଲି ଜାଣନ୍ତୁ ।୨୪।

ଅତଏବ ହେ ଭରତର୍ଷଭ ! ବନଗମନାଦି ରୂପ ପ୍ରକଟୀଭୂତ ଭାବକୁ ପରିତ୍ୟାଗ କରି ଆପଣ ଆନ୍ତର ସମାଲୋଚନା ରୂପ କର୍ମଦ୍ୱାରା ଅବ୍ୟକ୍ତରୂପ ମାନସ ଯୁଦ୍ଧରୁ ଉତ୍ତୀର୍ଣ୍ଣ ହେବା ନିମିତ୍ତ ଯତ୍ନପର ହୁଅନ୍ତୁ ।୨୫।

ମନକୁ ପରାଜିତ କରି ନ ପାରିଲେ ବାନପ୍ରସ୍ଥାଦି କୌଣସି ଆଶ୍ରମରେ ସୁଦ୍ଧା ଆପଣଙ୍କର ସୁଖ ଲାଭ ହେବନାହିଁ ଏବଂ ଏହି ମନକୁ ଜୟ କରିପାରିଲେ ଆପଣ କୃତାର୍ଥ ହେବେ ।୨୬।

ଆପଣ ପ୍ରାଣିମାନଙ୍କର ଈଦୃଶ ଗତାଗତିକ ବୁଦ୍ଧିଦ୍ୱାରା ନିଶ୍ଚୟ କରି ପିତୃପିତାମହ ଚରିତ ବ୍ୟବହାରାନୁସାରେ ଯଥାବିଧି ରାଜ୍ୟଶାସନ କରନ୍ତୁ ।୨୭।

ଭାଗ୍ୟବଶତଃ ପାପାତ୍ମା ଦୁର୍ଯ୍ୟୋଧନ ଅନୁଚରବର୍ଗଙ୍କ ସହିତ ଯୁଦ୍ଧରେ ନିହତ ହୋଇ ଅଛନ୍ତି ଏବଂ ଭାଗ୍ୟକ୍ରମରେ ଦ୍ରୌପଦୀଙ୍କର କେଶକଲାପ ସଂଯତ ହୋଇଅଛି ଓ ଆପଣ ମଧ୍ୟ ନିଜର ପଦକୁ ପ୍ରାପ୍ତ ହୋଇ ଅଛନ୍ତି ।୨୮।

ହେ ରାଜନ୍ ! ବୀର୍ଯ୍ୟବାନ୍ ବାସୁଦେବ ଏବଂ ଆମ୍ଭେମାନେ ସମସ୍ତେ ଆପଣଙ୍କର ଆଦେଶ ପାଳନ କରିବାନିମିତ୍ତ ପ୍ରସ୍ତୁତ ଅଛୁ । ଆପଣ ବର୍ତ୍ତମାନ ଦକ୍ଷିଣାଯୁକ୍ତ ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ କରନ୍ତୁ ।୨୯।

---

## ଅଧ୍ୟାୟ-୧୭

ଯୁଧିଷ୍ଠିର କହିଲେ—ହେ ଭୀମ ! ଅସନ୍ତୋଷ, ପ୍ରମାଦ, ମଦ ବିଷୟାନୁରାଗ, ଅପ୍ରଶାନ୍ତତା, ବଳ, ମୋହ ଅଭିମାନ ଓ ଉଦ୍‌ବେଗାଦି ପାପରେ ଅଭିଭୂତ ହୋଇ ତୁମ୍ଭେ ରାଜ୍ୟାକାଙ୍‌କ୍ଷା କରୁଅଛ, ଅତଏବ ବାସନା ପରିତ୍ୟାଗପୂର୍ବକ ସୁଖ ଦୁଃଖରୁ ବିମୁକ୍ତ ଓ ପ୍ରଶାନ୍ତ ହୋଇ ସୁଖୀ ହୁଅ ।୨।

ଯେ ଏକଛତ୍ର ନରପତି ହୋଇ ଏହି ସମଗ୍ର ବସୁନ୍ଧରାକୁ ଶାସନ କରନ୍ତି ତାଙ୍କର ମଧ୍ୟ ଗୋଟିଏ ବ୍ୟତୀତ ଦୁଇ ଗୋଟି ଉଦର ନାହିଁ, ଅତଏବ ତୁମ୍ଭେ କି ନିମିତ୍ତ ଏହି ରାଜ୍ୟ ବିଷୟରେ ପ୍ରଶଂସା କରୁଅଛ ? ।୩।

ହେ ଭରତର୍ଷଭ ! ଏହି ଦୁଷ୍ପୂରଣୀୟ ଆଶା ଦିନକରେ କିମ୍ବା କତିପୟ ମାସରେ ପୂର୍ଣ୍ଣହେବା କଥା ଦୂରରେ ଥାଉ, ଜୀବନର ଚରମ ସୀମା ପର୍ଯ୍ୟନ୍ତ ଯତ୍ନ କଲେ ସୁଦ୍ଧା କେହି ଏହାକୁ ପୂର୍ଣ୍ଣ କରିପାରିବେ ନାହିଁ ।୪।

ଅଗ୍ନି ଯେପରି କାଷ୍ଠକୁ ପ୍ରାପ୍ତ ହେଲେ ପ୍ରଜ୍ୱଳିତ ହୁଏ, କିନ୍ତୁ କାଷ୍ଠାଭାବରେ ପ୍ରଶାନ୍ତ ହୋଇଯାଏ, ସେହିପରି ତୁମ୍ଭେ ମଧ୍ୟ ଅଳ୍ପାହାରଦ୍ୱାରା ଜଠରାଗ୍ନିକୁ ଉପଶମିତ କର ।୫।

ଏହି ପୃଥିବୀରେ ନିର୍ବୋଧ ବ୍ୟକ୍ତି କେବଳ ଆତ୍ମୋଦର ନିମିତ୍ତ ବହୁତର ଆହାର ଦ୍ରବ୍ୟାଦିର ସଂଗ୍ରହ କରନ୍ତି, ଅତଏବ ତୁମ୍ଭେ ଅଗ୍ରେ ଏହି ଉଦରକୁ ବଶୀଭୂତ କର, ତାହାହେଲେ ଏହି ସମସ୍ତ ପୃଥିବୀ ତୁମ୍ଭଦ୍ୱାରା ଜିତ ବୋଲି ବୁଝାଯିବ । ଅନନ୍ତର ତୁମ୍ଭେ ପ୍ରକୃତ ଶ୍ରେୟୋଲାଭରେ ସମର୍ଥ ହେବ ।୬।

ମନୁଷ୍ୟମାନଙ୍କର ଇଚ୍ଛାନୁଯାୟୀ ଭୋଗ୍ୟ ବିଷୟକୁ ଓ ଐଶ୍ୱର୍ଯ୍ୟକୁ ତୁମ୍ଭେ ପ୍ରଶଂସା କରୁଅଛ, କିନ୍ତୁ ଭୋଗ ବାସନା ପରିତ୍ୟାଗପୂର୍ବକ

ଯେଉଁମାନେ ତପସ୍ୟାଦ୍ୱାରା କୃଶକାୟ ହୁଅନ୍ତି, ସେମାନେ କେବଳ ଉତ୍କୃଷ୍ଟ ଲୋକକୁ ଗମନ କରନ୍ତି ।୮।

ଧର୍ମ ଓ ଅଧର୍ମାତ୍ମକ ଯେଉଁ ରାଜ୍ୟଲାଭ ଏବଂ ରାଜ୍ୟ ରକ୍ଷଣ ତାହା ତୁମ୍ଭର ହୃଦୟକୁ ଆଶ୍ରୟ କରିଅଛି । ତୁମ୍ଭେ ଏହି ମହାଭାରରୁ ମୁକ୍ତ ହୋଇ ତ୍ୟାଗ ଅର୍ଥାତ୍ ସନ୍ନ୍ୟାସ ଧର୍ମର ଆଶ୍ରୟ କର । ବ୍ୟାଘ୍ର ଯେପରି ଗୋଟିଏ ଉଦର ନିମିତ୍ତ ବହୁତର ଭୋଜନ ଦ୍ରବ୍ୟକୁ ସଞ୍ଚୟ କରେ ଏବଂ ଅପରାପର ଦୁଷ୍ଟ ପଶୁମାନେ ବ୍ୟାଘ୍ର ହୃତ ଭୋଜନ ଦ୍ରବ୍ୟଦ୍ୱାରା ନିଜ ନିଜ ଜୀବିକାନିର୍ବାହ କରନ୍ତି, ସେହିପରି ରାଜାମାନେ ମଧ୍ୟ ଗୋଟିଏ ମାତ୍ର ଉଦରନିମିତ୍ତ ପ୍ରଭୂତ ଅର୍ଥ ସଞ୍ଚୟ କରନ୍ତି, ଆଉ ଧୂର୍ତ୍ତମାନେ ରାଜାଙ୍କୁ ଅବଲମ୍ବନ କରି ନିଜ ନିଜ ଜୀବିକାନିର୍ବାହ କରନ୍ତି ।୯।

ଅପିଚ ତୁମ୍ଭେ ରାଜାମାନଙ୍କ ପକ୍ଷରେ ବିଷୟାସକ୍ତି ତ୍ୟାଗରୂପ ଅନ୍ତଃ ସନ୍ନ୍ୟାସର କଥା କହୁଅଛ, କିନ୍ତୁ ସେଥିରେ ସେମାନେ କଦାପି ସନ୍ତୋଷ ଲାଭକରି ପାରନ୍ତି ନାହିଁ । ତୁମ୍ଭେ ବିଷୟ କଳୁଷିତ ବୁଦ୍ଧିକି ପରିତ୍ୟାଗ କରି ସ୍ୱୟଂ ଏହା ବିବେଚନା କରି ଦେଖ ।୧୦।

ଯେଉଁମାନେ ପତ୍ରାହାରୀ ଅଟନ୍ତି, ଯେଉଁମାନେ ପାଷାଣ, ଦନ୍ତ କିମ୍ବା ଉଲୂଖଳ ଦ୍ୱାରା ଧାନ୍ୟାଦିର ତୁଷାବଘାତପୂର୍ବକ ଜୀବିକାନିର୍ବାହ କରନ୍ତି ଏବଂ ଯେଉଁମାନେ ଜଳ ଓ ବାୟୁଦ୍ୱାରା ଶରୀର ରକ୍ଷା କରନ୍ତି, ସେହିସବୁ ତପସ୍ୱୀମାନେ କେବଳ ନରକ ଯନ୍ତ୍ରଣାରୁ ଉତ୍ତୀର୍ଣ୍ଣ ହୋଇ ପାରନ୍ତି ।୧୧।

ଏହି ପୃଥିବୀ ମଧ୍ୟରେ କାଞ୍ଚନ ଓ ପ୍ରସ୍ତର ଖଣ୍ଡକୁ ଯେ ତୁଲ୍ୟ ଜ୍ଞାନ କରନ୍ତି ସେହିପରି ନିର୍ଲୋଭ ପୁରୁଷ ଏବଂ ଅଖିଳ ଭୂମଣ୍ଡଳ ଶାସନକାରୀ ନରପତି, ଏ ଦୁହିଁଙ୍କ ମଧ୍ୟରୁ ବିଷୟାନୁରାଗ ଶୂନ୍ୟ ପୁରୁଷକୁ କେବଳ ମୁକ୍ତ ବୋଲି ଜାଣିବ, ନରପତି କଦାଚ ମୁକ୍ତ ହେବେ ନାହିଁ ।୧୨।

ଅତଏବ ଯେ ଇହଲୋକ ଓ ପରଲୋକ ମଧ୍ୟରେ ଅବ୍ୟୟ ଓ ଅଶୋକର ଆବାସ ଭୂମି ଅଟନ୍ତି, ତୁମ୍ଭେ ତାହାଙ୍କୁ ଆଶ୍ରୟ କରି ସମସ୍ତ କାର୍ଯ୍ୟରେ ସଙ୍କଳ୍ପ ଶୂନ୍ୟ, ଆଶା ରହିତ ଓ ମମତାତ୍ୟାଗୀ ହୁଅ ।୧୩।

ଯେଉଁମାନେ ସମସ୍ତ ବିଷୟକୁ ପରିତ୍ୟାଗ କରିଅଛନ୍ତି, ସେମାନେ ଅନ୍ୟନିମିତ୍ତ ଶୋକ କରନ୍ତି ନାହିଁ । ତୁମ୍ଭେ ବିଷୟାସକ୍ତ ଅଟ । ଅତଏବ ବିଷୟନିମିତ୍ତ ଶୋକ କରୁଅଛ । ସମସ୍ତ ବିଷୟକୁ ପରିତ୍ୟାଗ କର ।

ତାହାହେଲେ ମିଥ୍ୟା ବାଦରୁ, ଅର୍ଥାତ୍ ବାହାରରେ ବିଷୟ ଭୋଗ କରି ଅନ୍ତରରେ ଯେ ସନ୍ନ୍ୟାସରୂପ ଅଭିମାନ ଅଛି, ତହିଁରୁ ମୁକ୍ତ ହୋଇ ପାରିବ ।୧୪।

ଏହି ଜଗତରେ ଜୀବର ପରଲୋକଗମନ ବିଷୟରେ ଦେବଯାନ ଓ ପିତୃଯାନ ନାମକ ଦୁଇଗୋଟି ପଥ ଅଛି, ତନ୍ମଧ୍ୟରେ ଯାଜ୍ଞିକମାନେ ପିତୃଯାନଦ୍ୱାରା ଗମନ କରନ୍ତି ଏବଂ ଅଭିମାନ ଶୂନ୍ୟ ବ୍ୟକ୍ତିମାନେ ଦେବ-ଯାନଦ୍ୱାରା ଗମନ କରନ୍ତି । ୧୫ ।

ମହର୍ଷିଗଣ ସ୍ୱାଧ୍ୟାୟ ଓ ତପୋଽନୁଷ୍ଠାନପୂର୍ବକ ଚରମ କାଳରେ କଳେବର ପରିତ୍ୟାଗ କରି ମୃତ୍ୟୁର ଅଧିକାରରୁ ଉତ୍ତୀର୍ଣ୍ଣ ହୁଅନ୍ତି । ୧୬ ।

ଏହି ସଂସାରରେ ଭୋଗ୍ୟ ବିଷୟ କର୍ମ ବୋଲି ଉକ୍ତ ହୋଇଅଛି ଯେ ଏହି ପାପାତ୍ମକ ଭୋଗ୍ୟ ବିଷୟ ରୂପ କର୍ମରୁ ବିମୁକ୍ତ ହୋଇ ପାରନ୍ତି; ସେ ପରମପଦକୁ ଲାଭ କରନ୍ତି । ୧୭ ।

ପୂର୍ବେ ଶୋକ ମୋହ ବିନିର୍ମୁକ୍ତ ତତ୍ତ୍ୱଦର୍ଶୀ ରାଜା ଜନକ ଯେପରି କହିଥିଲେ ଅଦ୍ୟାପି ଲୋକରେ ଯେଉଁ ଗାଥା ଗୀତ ହୁଏ ତାହା କହୁଅଛି ଶ୍ରବଣ କର । ୧୮ ।

ସେ କହିଥିଲେ "ଆହୋ ! ଆମ୍ଭେ ଅନନ୍ତ ଐଶ୍ୱର୍ଯ୍ୟର ଅଧୀଶ୍ୱର ଅଟୁଁ; ଅଥଚ ଆମ୍ଭର କିଛିମାତ୍ର ନାହିଁ । ଏହି ମିଥିଳା ନଗରୀ ଭସ୍ମୀଭୂତ ହେଲେ ଆମ୍ଭର କିଛି ମାତ୍ର ଦଗଧ ହେବ ନାହିଁ । ୧୯ ।

ଅତଏବ ହେ ଧୀମ ! ଯେଉଁପରି ପର୍ବତାରୂଢ଼ ବ୍ୟକ୍ତି ସମସ୍ତ ନିମ୍ନସ୍ଥ ବ୍ୟକ୍ତିମାନଙ୍କୁ ସୁଦର୍ଶନ କରିବାରେ ସମର୍ଥ ଅଟନ୍ତି, ସେହିପରି ଯେ ଜ୍ଞାନରୂପ ପ୍ରାସାଦୋପରି ଆରୋହଣ କରିଅଛନ୍ତି ସେ ଅଜ୍ଞ ଲୋକମାନଙ୍କୁ ଶୋକର ଅବିଷୟୀଭୂତ ବିଷୟନିମିତ୍ତ ଶୋକ କରିବାର ଦେଖନ୍ତି; କିନ୍ତୁ ମନ୍ଦବୁଦ୍ଧି ଲୋକେ ତାହା ଦେଖି ପାରନ୍ତି ନାହିଁ । ଯଦ୍ୱାରା ଦୃଷ୍ଟ ବିଷୟର ବୋଧ ଅର୍ଥାତ୍ ନିଶ୍ଚୟ କରାଯାଏ, ତାହାକୁ ବୁଦ୍ଧି ବୋଲି କୁହାଯାଏ । ସେହି ବୋଧ ଚକ୍ଷୁଦ୍ୱାରା ଯେ ଅଜ୍ଞାତ ବିଷୟକୁ ଜାଣି ପାରନ୍ତି ଏବଂ ଦର୍ଶନ କଲାମାତ୍ରକେ ତଦ୍‌ବିଷୟରେ କର୍ତ୍ତବ୍ୟାକର୍ତ୍ତବ୍ୟ ନିଶ୍ଚୟ କରି ପାରନ୍ତି, ତାହାଙ୍କୁ କେବଳ ଚକ୍ଷୁଷ୍ମାନ ଓ ବୁଦ୍ଧିମାନ ବୋଲାଯାଏ । ୨୧ ।

ସମାହିତ ଚିତ୍ତ ବ୍ରହ୍ମଜ୍ଞାନ ସମ୍ପନ୍ନ ବିଦ୍ୱାନମାନଙ୍କର ବାକ୍ୟକୁ ଯେ ହୃଦୟଙ୍ଗମ କରିପାରନ୍ତି ସେ ସର୍ବତ୍ର ଅଧିକ ସମ୍ମାନଲାଭ କରନ୍ତି । ୨୨ ।

ଯେତେବେଳେ ଭିନ୍ନଭିନ୍ନ ରୂପରେ ପ୍ରକାଶମାନ ଆକାଶାଦି ଭୂତଗଣ ଏକାତ୍ମାରେ ଅବସ୍ଥିତ ହେବାର ଦେଖାଯାଏ, ସେତେବେଳେ ସମ୍ପୂର୍ଣ୍ଣରୂପରେ ବ୍ରହ୍ମ ସାକ୍ଷାତ୍ ହୋଇ ଅଛନ୍ତି ବୋଲି ଜାଣିବ । ୨୩ ।

ତତ୍ତ୍ୱଜ୍ଞ ପୁରୁଷମାନେ ତାଦୃଶ ପରମ ଗତିକି ଲାଭ କରି ପାରନ୍ତି; କିନ୍ତୁ ଅଳ୍ପଜ୍ଞ ଓ ତପସ୍ୟା ବା ଜ୍ଞାନହୀନ ବ୍ୟକ୍ତି କଦାପି ତାହା ଲାଭ କରି ପାରନ୍ତି ନାହିଁ । କାରଣ ଜ୍ଞାନକୁ ସମସ୍ତଙ୍କର ମୂଳ ବୋଲି ଜାଣିବ । ୨୪ ।

---

## ଅଧ୍ୟାୟ-୧୮

ବୈଶମ୍ପାୟନ ବୋଇଲେ—ଧର୍ମରାଜ ଯୁଧିଷ୍ଠିର ଏହିପରି କହି ମୌନାବଲମ୍ବ କଲାରୁ ଅର୍ଜ୍ଜୁନ ତାହାଙ୍କର ତାଦୃଶ ବାକ୍ୟ ଶଲ୍ୟରେ ନିପୀଡ଼ିତ ଓ ଶୋକ ଦୁଃଖରେ ଅତ୍ୟନ୍ତ ସନ୍ତପ୍ତ ହୋଇ ପୁନର୍ବାର ତାହାଙ୍କୁ କହିଲେ । ୧ ।

ଅର୍ଜ୍ଜୁନ ବୋଇଲେ—ହେ ଭାରତ ! ବିଦେହ ରାଜ ଜନକଙ୍କର ନିଜ ଭାର୍ଯ୍ୟାଙ୍କ ସହିତ ଯେପରି କଥୋପକଥନ ହୋଇଥିଲା ଅଦ୍ୟାପି ସେହି ପୁରାବୃତ୍ତ ଇତିହାସକୁ ଲୋକେ କୀର୍ତ୍ତନ କରନ୍ତି । ୨ ।

ନରପତି ଜନକ ରାଜ୍ୟ ପରିତ୍ୟାଗପୂର୍ବକ ସନ୍ନ୍ୟାସଧର୍ମ ଗ୍ରହଣରେ କୃତ ସଙ୍କଳ୍ପ ହୁଅନ୍ତେ ଦୁଃଖିତ ରାଜମହିଷୀ ତାହାଙ୍କୁ ଯାହା କହିଥିଲେ, ତାହା କହୁଅଛି ଶ୍ରବଣ କରନ୍ତୁ । ୩ ।

ବିବିଧ ରତ୍ନ, ପୁତ୍ର କଳତ୍ର ଓ ସ୍ୱର୍ଗପଥରୂପ ଯଜ୍ଞାନୁଷ୍ଠାନକୁ ପରିତ୍ୟାଗପୂର୍ବକ ବିଦେହ ରାଜ ସର୍ବଥା ନିର୍ଭୟ, ନିର୍ମମ, ନିରାହ ଓ ନିରାକାଂକ୍ଷା ହୋଇ ଭୃଷ୍ଟଯବ ମୁଷ୍ଟିଦ୍ୱାରା ଜୀବିକା ନିର୍ବାହାର୍ଥ ମସ୍ତକ ମୁଣ୍ଡନ ରୂପ ସନ୍ନ୍ୟାସଧର୍ମକୁ ଆଶ୍ରୟ କରୁଅଛନ୍ତି । ଏହା ଦେଖି ତାହାଙ୍କର ମନସ୍ୱିନୀ ପ୍ରିୟ ଭାର୍ଯ୍ୟା ରୋଷାବିଷ୍ଟା ହୋଇ ନିର୍ଜ୍ଜନରେ ସ୍ୱାମୀଙ୍କ ସମୀପକୁ ଗମନପୂର୍ବକ ଏତାଦୃଶ ହେତୁଯୁକ୍ତ ବାକ୍ୟକୁ କହିଲେ—ହେ ମହାରାଜ ! ଆପଣ ଧନଧାନ୍ୟ ସମନ୍ୱିତ ନିଜର ରାଜ୍ୟକୁ ପରିତ୍ୟାଗ କରି କି ନିମିତ୍ତ କାପାଳୀ ବୃତ୍ତିକୁ ଅବଲମ୍ବନ କରୁଅଛନ୍ତି ? ଭୃଷ୍ଟଯବ

ମୁଷ୍ଟିଦ୍ୱାରା ଜୀବନାନିର୍ବାହ କରିବା ଆପଣଙ୍କ ପକ୍ଷରେ ଶ୍ରେୟସ୍କର ନୁହେଁ । ୭ ।

ହେ ରାଜନ୍ ! ଆପଣ ସୁମହତ ରାଜ୍ୟକୁ ପରିତ୍ୟାଗ କରି ମୁଷ୍ଟି ପରିମିତ ଯବ ଚୂର୍ଣ୍ଣର ପ୍ରତ୍ୟାଶୀ ହେବାରୁ ଆପଣଙ୍କର "ସମସ୍ତ ପରିତ୍ୟାଗ କଲି" ବୋଲି ଯେଉଁ ପ୍ରତିଜ୍ଞା ତାହା ଅନ୍ୟଥା ହେଉଅଛି, ଆପଣଙ୍କର ସମସ୍ତ ଚେଷ୍ଟା ମଧ୍ୟ ଏତଦ୍ୱାରା ବିଫଳ ହେଉଅଛି । ୮ ।

ପୁନଶ୍ଚ ଦେଖନ୍ତୁ, ଏହି ମୁଷ୍ଟିମାତ୍ର ଭୃଷ୍ଟ ଯବଦ୍ୱାରା ଆପଣ କଦାପି ଦେବ ପିତୃ ଓ ଅତିଥିମାନଙ୍କୁ ସନ୍ତୁଷ୍ଟ କରିପାରିବେ ନାହିଁ । ଏଣୁକରି ଆପଣଙ୍କର ସମସ୍ତ ପରିଶ୍ରମ ବିଫଳ ହୋଇଯିବ । ୯ ।

ହେ ପାର୍ଥିବ ! ଆପଣ କ୍ରିୟାବିହୀନ ହୋଇ ଏବଂ ଦେବତା, ଅତିଥି, ପିତୃଗଣ ଓ ସମସ୍ତଙ୍କ କର୍ତ୍ତୃକ ପରିତ୍ୟକ୍ତ ହୋଇ ସନ୍ନ୍ୟାସ ଧର୍ମକୁ ଗ୍ରହଣ କରୁଅଛନ୍ତି । ୧୦ ।

ଅହୋ ! ଆପଣ ପୂର୍ବେ ତ୍ରିବେଦାଭିଜ୍ଞ ସହସ୍ର ସହସ୍ର ବ୍ରାହ୍ମଣ ଓ ସମସ୍ତ ଲୋକଙ୍କର ଭରଣ କର୍ତ୍ତା ହୋଇ ବର୍ତ୍ତମାନ ସ୍ୱୟଂ ସେମାନଙ୍କର ଆଶ୍ରୟରେ ଉଦର ଭରଣର ଇଚ୍ଛା କରୁଅଛନ୍ତି । ୧୧ ।

ଆପଣ ପ୍ରଦୀପ୍ତ ରାଜ୍ୟଶ୍ରୀକୁ ପରିତ୍ୟାଗ କରି ବର୍ତ୍ତମାନ କୁକୁର ସଦୃଶ ପରାନ୍ନ ପ୍ରତ୍ୟାଶାରେ ଇତସ୍ତତଃ ଦୃଷ୍ଟିପାତ କରୁଅଛନ୍ତି ! ଆପଣ ଏହିପରି ପ୍ରନଷ୍ଟ ହେବାରୁ ଅଦ୍ୟ ଆପଣଙ୍କର ଜନନୀ ଅପୁତ୍ରା ପ୍ରାୟ ପ୍ରତୀୟମାନ ହେଉଅଛନ୍ତି ଏବଂ ଆପଣଙ୍କର ପତ୍ନୀ କୋଶଳ ରାଜନନ୍ଦିନୀ ବିଧବା ନ୍ୟାୟ ଦୃଷ୍ଟ ହେଉଅଛନ୍ତି । ୧୨ ।

ଅପିଚ ଏହିସବୁ ଦରିଦ୍ର କ୍ଷତ୍ରିୟମାନେ କର୍ମ ଓ ଫଳାର୍ଥୀ ହୋଇ ଆପଣଙ୍କର ପ୍ରସାଦ ପ୍ରାପ୍ତି ଲାଳସାରେ ଉପାସନା କରୁଅଛନ୍ତି । ୧୩ ।

ଯେତେବେଳେ ମୋକ୍ଷପଥ ନିତାନ୍ତ ସଂଶୟିତ ଓ ଦେହିଗଣ ସର୍ବତୋଭାବରେ କର୍ମ—ପରତନ୍ତ୍ର, ତେତେବେଳେ ଆପଣ ଏହିସବୁ ଅନୁଗତ ଲୋକଙ୍କର ଆଶାକୁ ବିଫଳ କରି କେଉଁ ଲୋକକୁ ଗମନ କରିବେ ? ୧୪ ।

ଆପଣ ଯେତେବେଳେ ଧର୍ମପତ୍ନୀଙ୍କୁ ପରିତ୍ୟାଗ କରି ଜୀବନ ଧାରଣ କରିବାକୁ ଇଚ୍ଛା କରୁଅଛନ୍ତି, ତେତେବେଳେ ଆପଣ ଯେ ନିତାନ୍ତ

ଯାତାମ୍ୱା', ଏଥିରେ ସନ୍ଦେହ ନାହିଁ । ଆପଣଙ୍କର ନା ଇହଲୋକ ନା ପରଲୋକ କେଉଁଠାରେ ସୁଖ ମଙ୍ଗଳ ନାହିଁ । ୧୫ ।

ଆପଣ କି ନିମିତ୍ତ ଦିବ୍ୟ ଗନ୍ଧ ଦ୍ରବ୍ୟ, ମାଲ୍ୟ ଦାମ, ବିବିଧ ବସ୍ତ୍ର ଓ ଅଳଙ୍କାର ସବୁକୁ ପରିତ୍ୟାଗପୂର୍ବକ ନିସ୍ପୃହନ୍ୟ ହୋଇ ସନ୍ନ୍ୟାସ ଧର୍ମକୁ ଗ୍ରହଣ କରୁଅଛନ୍ତି ? ୧୬ ।

କି ଆଶ୍ଚର୍ଯ୍ୟ ! ଆପଣ ସର୍ବପ୍ରାଣୀଙ୍କର ମନୋରମ ପବିତ୍ର ଜଳାଶୟ ସ୍ୱରୂପ ଏକ ବିଶାଳ ବନସ୍ପତି ପ୍ରାୟ ସମସ୍ତଙ୍କର ଆଶ୍ରୟ ସ୍ୱରୂପ ହୋଇ ବର୍ତ୍ତମାନ ଅପର ବ୍ୟକ୍ତିଙ୍କର ଉପାସନା କରୁଅଛନ୍ତି । ୧୭ ।

ଆପଣଙ୍କ କଥା ଦୂରରେ ଥାଉ, ପୁରୁଷକାର ପରିତ୍ୟାଗପୂର୍ବକ ନିଶ୍ଚେଷ୍ଟଭାବରେ ଅବସ୍ଥାନ କଲେ ହସ୍ତୀକୁ ସୁଦ୍ଧା କୃମି ଓ ମାଂସାଶୀ ଜନ୍ତୁମାନେ ଭକ୍ଷଣ କରିବାକୁ ସମର୍ଥ ହୁଅନ୍ତି । ୧୮ ।

ଯେଉଁ ଆଶ୍ରମରେ ପ୍ରବିଷ୍ଟ ହେଲେ ତ୍ରିଦଣ୍ଡ, କମଣ୍ଡଳୁ ଓ ଉତ୍ତମ ବସ୍ତ୍ରମାନଙ୍କ ପରିତ୍ୟାଗ କରି କଷାୟ କୌପୀନ ଗ୍ରହଣ କରିବାକୁ ହୁଏ ଏବଂ ଯହିଁରେ ପ୍ରବିଷ୍ଟ ହେଲେ ସମସ୍ତ ପରିତ୍ୟାଗପୂର୍ବକ କେବଳ ଭୃଷ୍ଟ ଯବ ମୁଷ୍ଟି ପ୍ରତି ଆସକ୍ତ ହେବାକୁ ହୁଏ, ସେହି ଆଶ୍ରମରେ ଆପଣଙ୍କର କି ନିମିତ୍ତ ପ୍ରବୃତ୍ତି ହେଉଅଛି ? ୧୯ ।

ଯଦି କହନ୍ତି ଯେ ଭୃଷ୍ଟ ଯବମୁଷ୍ଟି ଏବଂ ରାଜ୍ୟାଦି ଏହିସବୁକୁ ଆପଣ ସମାନ ଜ୍ଞାନ କରନ୍ତି, ତେବେ ଆପଣ କି ନିମିତ୍ତ ରାଜ୍ୟାଦିକୁ ତ୍ୟାଗ କରି ଭୃଷ୍ଟଯବମୁଷ୍ଟିରେ ଆସକ୍ତ ହେଉଅଛନ୍ତି ? ୨୦ ।

ଯଦି ଆପଣଙ୍କର ଏହାହିଁ ପ୍ରୟୋଜନୀୟ ହୋଇଥାଏ, ତାହାହେଲେ ସର୍ବତ୍ୟାଗୀ ହେଲି ବୋଲି ଯେଉଁ ପ୍ରତିଜ୍ଞା କରିଅଛନ୍ତି, ତାହା ବ୍ୟର୍ଥ ହେଉଅଛି । ଅପିଚ ଆପଣ ଯଦି ଶୁଦ୍ଧ ସନ୍ନ୍ୟାସରେ ଅବସ୍ଥିତ ହୋଇଥାନ୍ତି ତାହାହେଲେ ଆମ୍ଭେ ଆପଣଙ୍କର କିଏ ? ଆଉ ଆପଣ ବା ଆମ୍ଭର କିଏ ? ଅର୍ଥାତ୍ ବିଶୁଦ୍ଧ ସନ୍ନ୍ୟାସର ପରସ୍ପର ସମ୍ବନ୍ଧ କିପରି ଘଟିପାରେ ? ଏପରି ହେଲେ ଆପଣଙ୍କ ମୋ'ଠାରେ ଅନୁଗ୍ରହ ନାହିଁ । ଯଦି ଅନୁଗ୍ରହ କରିବା କର୍ତ୍ତବ୍ୟ, ତେବେ ଆପଣ ଅନୁଗ୍ରହ କରି ଏହି ପୃଥିବୀକୁ ଶାସନ କରନ୍ତୁ । ଯେଉଁମାନେ ସୁଖାର୍ଥୀ ଅଟନ୍ତି ଅଥଚ ନିର୍ଦ୍ଧନ, ସୁଦରିଦ୍ର ଏବଂ ସମସ୍ତ ବନ୍ଧୁ ବାନ୍ଧବଙ୍କ କର୍ତ୍ତୃକ ପରିତ୍ୟକ୍ତ ହୋଇ ସନ୍ନ୍ୟାସଧର୍ମକୁ ଗ୍ରହଣ କରନ୍ତି,

ସେମାନଙ୍କର ଧୂର୍ତ୍ତ କମଣ୍ଡଳୁ ଶାସ୍ତ୍ରମାନ ବର୍ଣ୍ଣନ କରି ଯେଉଁ ବ୍ୟକ୍ତି ଚତୁର୍ଥ ଧର୍ମରେ ପ୍ରବୃତ୍ତ ହୁଅନ୍ତି, ଅର୍ଥାତ୍ ପ୍ରାସାଦ, ଉତ୍ତମ ଶଯ୍ୟା, ଯାନ, ଉତ୍ତମ ବସ୍ତ୍ର ଓ ଅଳଙ୍କାରାଦି ଉପଭୋଗ କରି ଦଣ୍ଡ କମଣ୍ଡଳୁ ଗ୍ରହଣ କରନ୍ତି ସେମାନଙ୍କର ସେହି ତ୍ୟାଗ କେବଳ ବିଡ଼ମ୍ବନା ମାତ୍ର ।୨୩।

ଯେଉଁ ବ୍ୟକ୍ତି ନିପୂତ ପ୍ରତିଗ୍ରହ କରନ୍ତି ଏବଂ ଯେ ସର୍ବଦା ଦାନ କରନ୍ତି ଏହି ଉଭୟଙ୍କ ମଧ୍ୟରେ କେଉଁ ବ୍ୟକ୍ତି ଶ୍ରେଷ୍ଠ ଏବଂ ଏମାନଙ୍କର ପରସ୍ପର କେତେଦୂର ତାରତମ୍ୟ ଅଛି ? ତାହା ବିବେଚନା କଲେ ଜାଣିପାରିବେ ।୨୪।

ପରନ୍ତୁ ଦାମ୍ଭିକ ଓ ନିପୂତ ଯାଚକମାନଙ୍କୁ ଧନ ଦାନ କଲେ, ଦାବାଗ୍ନିରେ ଆହୁତି ପ୍ରଦାନ କଲା ପ୍ରାୟ ସେହି ଦାନ ନିଷ୍ଫଳ ହୁଏ ।୨୫।

ହେ ରାଜନ୍ ! ଅଗ୍ନି ଯେପରି କୌଣସି ବସ୍ତୁକୁ ଦଗ୍ଧ ନ କରି ଉପଶମିତ ହୁଏ ନାହିଁ, ସେହିପରି ଯାଚକ ବ୍ରାହ୍ମଣ ମଧ୍ୟ ବାଞ୍ଛିତ ପ୍ରାପ୍ତ ନ ହେଲେ ନିବୃତ୍ତ ହୁଏ ନାହିଁ ।୨୬।

ଦାତାଙ୍କର ଅନ୍ନ ହିଁ ସାଧୁମାନଙ୍କର ଜୀବନ ସ୍ୱରୂପ ଅଟେ । କାହିଁକି ସନ୍ନ୍ୟାସୀମାନଙ୍କର ସ୍ୱୟଂ ପାକ କରି ଭୋଜନ କରିବା ବିଧି ନୁହେଁ, ଅତଏବ ରାଜା ଦାତା ନ ହେଲେ ମୋକ୍ଷାର୍ଥୀମାନେ କିପରି ଜୀବନ ଧାରଣ କରିବେ ?୨୭।

ଏହି ପୃଥିବୀରେ ଯେଉଁମାନଙ୍କ ଗୃହରେ ଅନ୍ନ ଅଛି ସେମାନେ ଗୃହସ୍ଥ ଅଟନ୍ତି । ଭିକ୍ଷୁକମାନେ ଏହିସବୁ ଗୃହସ୍ଥମାନଙ୍କୁ ଅବଲମ୍ବନ କରି ଜୀବନ ଯାତ୍ରା ନିର୍ବାହ କରନ୍ତି । ପ୍ରାଣିମାନେ ଅନ୍ନଦ୍ୱାରା ଜୀବନ ଧାରଣ କରନ୍ତି, ସୁତରାଂ ଅନ୍ନଦାତା ପ୍ରାଣଦାତାଙ୍କ ସ୍ୱରୂପ ଅଟନ୍ତି ।୨୮।

ଗୃହସ୍ଥାଶ୍ରମରୁ ବହିର୍ଗତ ହୋଇ ଜିତେନ୍ଦ୍ରିୟ ସନ୍ନ୍ୟାସୀମାନେ ଗୃହସ୍ଥମାନଙ୍କର ଆଶ୍ରୟରେ ଶରୀର ଯାତ୍ରା ନିର୍ବାହପୂର୍ବକ ପ୍ରତିଷ୍ଠା ଓ ଯୋଗ-ଫଳାଦିକୁ ଲାଭ କରନ୍ତି ।୨୯।

ଯେଉଁ ବ୍ୟକ୍ତି ସମସ୍ତ ପରିତ୍ୟାଗ, ମସ୍ତକ ମୁଣ୍ଡନ ଓ ଯାଚଞ୍ଚା କରେ ତାହାଙ୍କୁ ସନ୍ନ୍ୟାସୀ କୁହାଯିବ ନାହିଁ; କିନ୍ତୁ ଯେ ସରଳ ଭାବରେ ସମସ୍ତ ବିଷୟ ସୁଖକୁ ପରିତ୍ୟାଗ କରିବାରେ ସମର୍ଥ ହୁଅନ୍ତି ତାହାଙ୍କୁ କେବଳ ସନ୍ନ୍ୟାସୀ ବୋଲି ଜାଣିବ ।୩୦।

ହେ ମହୀପତେ ! ଯେଉଁ ବ୍ୟକ୍ତି ଅନ୍ତରରେ ସମସ୍ତ ବିଷୟରେ ଆସକ୍ତି ଶୂନ୍ୟ ହୋଇ ବାହ୍ୟରେ ଆସକ୍ତ ପୁରୁଷ ପ୍ରାୟ ବ୍ୟବହାର କରନ୍ତି ଓ ଶତ୍ରୁ ଏବଂ ମିତ୍ରଙ୍କଠାରେ ସମାନ ଜ୍ଞାନ କରନ୍ତି ସେ କେବଳ ସମସ୍ତ ବନ୍ଧନରୁ ମୁକ୍ତ ହୁଅନ୍ତି ଏବଂ ତାଦୃଶ ନିଃସଙ୍ଗ ପୁରୁଷ ମୁକ୍ତିଲାଭ କରନ୍ତି ।୩୧।

ମୂର୍ଖମାନେ ବହୁବିଧ ଆଶା ପାଶରେ ବଦ୍ଧ ହୋଇ ଶିଷ୍ୟ ଓ ମଠ ପ୍ରଭୃତି ବିଷୟର ପ୍ରାପ୍ତି ଲାଳସାରେ କାଷାୟ ବାସ ପରିଧାନ କରନ୍ତି ଏବଂ ମସ୍ତକ ମୁଣ୍ଡନ ରୂପ ପ୍ରବ୍ରଜ୍ୟାଶ୍ରମକୁ ଗ୍ରହଣ କରନ୍ତି ।୩୨।

ପରନ୍ତୁ ଯେଉଁମାନେ ବୈଦ୍ୟା, ବାର୍ତ୍ତାଶାସ୍ତ୍ର ଓ ପୁତ୍ରକଳତ୍ରାଦି ପରିତ୍ୟାଗପୂର୍ବକ ଗୃହସ୍ଥାଶ୍ରମରୁ ନିର୍ଗତ ହୋଇ ତ୍ରିଦଣ୍ଡ ଏବଂ କାଷାୟ ବସ୍ତ୍ରାଦି ଧାରଣ କରନ୍ତି ସେମାନେ ନିତାନ୍ତ ଦୁର୍ବୋଧ ।୩୩।

ସନ୍ନ୍ୟାସ ଧର୍ମ ପବିତ୍ର ହେଲେ ସୁଦ୍ଧା ସନ୍ନ୍ୟାସ ବେଶଧାରୀ ମୁଣ୍ଡିତ ମସ୍ତକ ବିମୂଢ଼ମାନଙ୍କର କାଷାୟ ବସ୍ତ୍ର ଧାରଣ କେବଳ ଜୀବିକା ନିର୍ବାହାର୍ଥ, ଅତଏବ ଆମ୍ଭ ବିବେଚନାରେ ଏହି ଜୀବିକାନିର୍ବାହ କେବଳ ଏମାନଙ୍କର ପୁରୁଷାର୍ଥ ।୩୪।

ହେ ମହାରାଜ ! କଷାୟ ବସ୍ତ୍ର ଅଜିନ ଓ କୌପୀନଧାରୀ ଏବଂ ନଗ୍ନ ମୁଣ୍ଡିତ ମସ୍ତକ ଓ ଜଟାଧାରୀ ପ୍ରଭୃତି ସାଧୁ ସନ୍ନ୍ୟାସୀମାନଙ୍କୁ ପ୍ରତିପାଳନପୂର୍ବକ ଆପଣ ଜିତେନ୍ଦ୍ରିୟ ହୋଇ ଇହଲୋକ ଓ ପରଲୋକକୁ ଜୟ କରିବା ନିମିତ୍ତ ପ୍ରବୃତ୍ତ ହୁଅନ୍ତୁ ।୩୫।

ଯେ ମୋକ୍ଷାର୍ଥୀ ହୋଇ ଅଗ୍ନ୍ୟାଧାନ କରନ୍ତି, ପଶୁ ଓ ଦକ୍ଷିଣା ସମନ୍ୱିତ ଯଜ୍ଞାନୁଷ୍ଠାନ କରନ୍ତି ଏବଂ ପ୍ରତିଦିନ ଦାନ କରନ୍ତି ତାହାଙ୍କ ଅପେକ୍ଷା ଅଧିକ ଧାର୍ମିକ କିଏ ? ବିଦେହ ରାଜମହର୍ଷି ଏହା କହି ତୁଷ୍ଣୀଭାବ ଅବଲମ୍ବନ କଲେ ।୩୬।

ଅର୍ଜୁନ କହିଲେ—ହେ ଧର୍ମରାଜ ! ବିଦେହରାଜ ଜନକ ଏହି ପୃଥିବୀ ମଧ୍ୟରେ ତତ୍ତ୍ୱଜ୍ଞ ବୋଲି ବିଖ୍ୟାତ ଥିଲେ; କିନ୍ତୁ ସେ ମଧ୍ୟ କର୍ତ୍ତବ୍ୟ ନିର୍ଣ୍ଣୟରେ ମୋହପ୍ରାପ୍ତ ହୋଇଥିଲେ, ଅତଏବ ଆପଣ ମୋହ ପରିତ୍ୟାଗ କରନ୍ତୁ ।୩୭।

ଯଦି ଆମ୍ଭେମାନେ କାମ, କ୍ରୋଧ ଓ ନୃଶଂସତାକୁ ପରିତ୍ୟାଗ-ପୂର୍ବକ ଦାନ, ପ୍ରଜାପାଳନ ଏବଂ ଗୁରୁ ଓ ବୃଦ୍ଧଗଣଙ୍କର ସେବା

କରିବାରେ ନିରତ ରହିବୁଁ ତାହାହେଲେ ଆମ୍ଭେମାନେ ଅବଶ୍ୟ ଅଭିଳଷିତ ଲୋକସମୂହକୁ ଗମନ କରିବୁଁ । ଦାନପରାୟଣ ଗୃହସ୍ଥମାନେ ସର୍ବଦା ଏହିପରି ଧର୍ମାନୁଷ୍ଠାନ କରନ୍ତି ।୩୯।

ଅପିଚ ଦେବତା ଓ ଅତିଥି ପ୍ରଭୃତି ସମସ୍ତ ପ୍ରାଣିମାନଙ୍କର ତୃପ୍ତି-ସାଧନ କଲେ ଏବଂ ବ୍ରହ୍ମନିଷ୍ଠ ଓ ସତ୍ୟବାଦୀ ହେଲେ ଆମ୍ଭେ ଅବଶ୍ୟ ଅଭିଳଷିତ ଲୋକକୁ ପ୍ରାପ୍ତ ହେବୁଁ ।୪୦।

---

## ଅଧ୍ୟାୟ--୧୯

ଯୁଧିଷ୍ଠିର କହିଲେ—ହେ ଅର୍ଜ୍ଜୁନ ! ଲୌକିକ ଧର୍ମଶାସ୍ତ୍ର ଏବଂ ବ୍ରହ୍ମପ୍ରତିପାଦକ ଜ୍ଞାନଶାସ୍ତ୍ର ଏହି ଉଭୟ ଶାସ୍ତ୍ରକୁ ଆମ୍ଭେ ଅବଗତ ଅଛୁଁ । ବେଦରେ କର୍ମର ଅନୁଷ୍ଠାନ ଓ କର୍ମତ୍ୟାଗ ଉଭୟ ବିଷୟର ବିଧି ଅଛି । ୧ ।

ଅତଏବ ଶାସ୍ତ୍ରସବୁ ଅତିଶୟ ଜଟିଳ କିନ୍ତୁ ଯୁକ୍ତିଦ୍ୱାରା ଆଲୋଚିତ ହୋଇ ଏହି ଶାସ୍ତ୍ରମାନଙ୍କର ଯାଦୃଶ ସାର ନିର୍ଣ୍ଣିତ ହୋଇଅଛି, ତାହା ଆମ୍ଭେ ଯଥାବିଧି ଜାଣିଅଛୁଁ । ୨ ।

ତୁମ୍ଭେ କେବଳ ବୀର ବ୍ରତାବଲମ୍ବୀ ଅସ୍ତ୍ରାଭିଜ୍ଞ, ଶାସ୍ତ୍ରାର୍ଥବୋଧ ରେ ତୁମ୍ଭର କିଛିମାତ୍ର ସାମର୍ଥ୍ୟ ନାହିଁ । ୩ ।

ତୁମ୍ଭେ ଯଦି ଧର୍ମର ବିଶେଷ ଆଲୋଚନା କରିଥାନ୍ତ ଏବଂ ଶାସ୍ତ୍ରାର୍ଥରେ ସୂକ୍ଷ୍ମଦର୍ଶୀ ଓ ତତ୍ତ୍ୱ ନିଶ୍ଚୟରେ ନିପୁଣ ହୁଅନ୍ତ ତାହାହେଲେ କଦାପି ଆମ୍ଭପ୍ରତି ଏପରି ବାକ୍ୟ ପ୍ରୟୋଗ କରନ୍ତ ନାହିଁ । ପରନ୍ତୁ ଭ୍ରାତୃ ସୌହାର୍ଦ ହେତୁରୁ ତୁମ୍ଭେ ଅମ୍ଭଙ୍କୁ ଯାହା କହିଲ, ତାହା ତୁମ୍ଭର ଉପଯୁକ୍ତ ହୋଇଅଛି ଏବଂ ଆମ୍ଭେ ମଧ୍ୟ ତୁମ୍ଭ ପ୍ରତି ସାତିଶୟ ପ୍ରୀତ ହୋଇଅଛୁଁ । ୪ ।

ତ୍ରିଲୋକ ମଧ୍ୟରେ ଯୁଦ୍ଧ ଧର୍ମ କ କାର୍ଯ୍ୟ ନୈପୁଣ୍ୟ ବିଷୟରେ କୌଣସି ବ୍ୟକ୍ତି ସୁଦ୍ଧା ତୁମ୍ଭସଦୃଶ ନାହାନ୍ତି । ୬ ।

ସୁତରାଂ ହେ ଧନଞ୍ଜୟ ! ଉକ୍ତ ବିଷୟରେ ଅପର ବ୍ୟକ୍ତିର ଦୁଷ୍ପ୍ରବେଶ୍ୟ ଅତି ସୂକ୍ଷ୍ମତର ବାକ୍ୟ ପ୍ରୟୋଗ କରିବା ତୁମ୍ଭର ଉଚିତ ।

କିନ୍ତୁ ମୋକ୍ଷ ଧର୍ମ ବିଷୟରେ ଆତ୍ମ ବୁଦ୍ଧି ପ୍ରଭୃତି ଶଙ୍କା କରିବା ତୁମ୍ଭର କର୍ତ୍ତବ୍ୟ ନୁହେଁ । ୭ ।

ଯେ ହେତୁ ତୁମ୍ଭେ କଦାପି ଜ୍ଞାନ ବୃଦ୍ଧମାନଙ୍କର ସେବା କରିନାହଁ, କେବଳ ଯୁଦ୍ଧ ବିଦ୍ୟାର ଅନୁଶୀଳନ କରିଅଛ । ଯେଉଁମାନେ ସଂକ୍ଷେପ ଓ ବିସ୍ତାର ରୂପରେ ତତ୍ତ୍ୱ ନିର୍ଣ୍ଣୟ କରିଅଛନ୍ତି ସେମାନଙ୍କର କୃତମୀମାଂସାକୁ ମଧ୍ୟ ତୁମ୍ଭେ ଜାଣ ନାହିଁ । ୮ ।

ତତ୍ତ୍ୱଜ୍ଞ ପଣ୍ଡିତମାନେ ଏହିପରି ନିଶ୍ଚୟ କରିଅଛନ୍ତି ଯେ ତପସ୍ୟା ସନ୍ନ୍ୟାସ ଓ ବ୍ରହ୍ମଜ୍ଞାନ ଏହି ତିନୋଟି ଉତ୍ତରୋତ୍ତର ଶ୍ରେଷ୍ଠ ଅଟନ୍ତି ଅର୍ଥାତ୍ ତପସ୍ୟା ଅପେକ୍ଷା ସନ୍ନ୍ୟାସ ଶ୍ରେଷ୍ଠ ଏବଂ ସନ୍ନ୍ୟାସ ଅପେକ୍ଷା ବ୍ରହ୍ମଜ୍ଞାନ ଶ୍ରେଷ୍ଠ । ୯ ।

ହେ ଅର୍ଜ୍ଜୁନ ! ତୁମ୍ଭେ ଯେ "ଧନ ଅପେକ୍ଷା କିଛି ଶ୍ରେଷ୍ଠ ନାହିଁ" ବୋଲି ମନେ କରୁଅଛ, ତାହା ତୁମ୍ଭର ଭ୍ରାନ୍ତି ମାତ୍ର । ବର୍ତ୍ତମାନ ତୁମ୍ଭପରେ ଆଉ ଧନ ଯେପରି ପ୍ରଧାନରୂପରେ ପ୍ରତିଭାତ ନ ହୁଏ, ତାଦୃଶ ଭାବରେ ଆମ୍ଭେ ତୁମ୍ଭର ଭ୍ରାନ୍ତିକୁ ଅପନୟନ କରିବୁ । ୧୦ ।

ତତଃ ସ୍ୱାଧ୍ୟାୟଶୀଳ ଋଷିମାନେ କେବଳ ଇହଲୋକରେ ଧାର୍ମିକ ରୂପରେ ଦୃଷ୍ଟ ହୁଅନ୍ତି ଏବଂ ଏହି ଋଷିମାନେ ଉକ୍ତ ତପଃ ପ୍ରଭାବରୁ ସନାତନ ଲୋକକୁ ଗମନ କରନ୍ତି । ୧୧ ।

ଅପିଚ ଅନେକାନେକ ଧୀର ସ୍ୱଭାବ ଅଜ ତଣସ୍ ବାନପ୍ରସ୍ଥମାନେ ମଧ୍ୟ ତପସ୍ୟା ଓ ସ୍ୱାଧ୍ୟାୟ ପ୍ରଭାବରୁ ସ୍ୱର୍ଗକୁ ଗମନ କରିଅଛନ୍ତି । ୧୨ ।

ସାଧୁମାନେ ବିଷୟ ବାସନାରୁ ବିରତ ହୋଇ ଅଜ୍ଞାନଜନିତ ତମୋଭବକୁ ପରିତ୍ୟାଗପୂର୍ବକ ଉତ୍ତର ପଥଦ୍ୱାରା ଅର୍ଥାତ ଆଲୋକ ପଥ ଦ୍ୱାରା ସନ୍ନ୍ୟାସୀମାନଙ୍କର ଗନ୍ତବ୍ୟ ବ୍ରହ୍ମ ଲୋକକୁ ଗମନ କରନ୍ତି । ଆଉ ଯେଉଁମାନେ ବାରମ୍ବାର ଜନ୍ମ ମରଣ ଯନ୍ତ୍ରଣାକୁ ଭୋଗ କରନ୍ତି, ସେହି କର୍ମ ପରାୟଣ ମନୁଷ୍ୟମାନେ ଦକ୍ଷିଣ ପଥଦ୍ୱାରା ଅର୍ଥାତ ଅନ୍ଧକାର ପଥଦ୍ୱାରା ଚନ୍ଦ୍ରଲୋକ ବୋଲି ବିଖ୍ୟାତ ପିତୃଲୋକକୁ ଗମନ କରନ୍ତି ।୧୩।

ମୋକ୍ଷାର୍ଥୀମାନେ ଯେଉଁ ଗତିକୁ ଲଭ କରନ୍ତି, ତାହା ନିର୍ଦ୍ଦେଶ କରିବା ଅସାଧ୍ୟ, ଅତଏବ ଏହାର ପ୍ରାପ୍ତି ନିମିତ୍ତ ଯୋଗ କେବଳ ଉତ୍କୃଷ୍ଟ ଉପାୟ; କିନ୍ତୁ ଏଥିରେ ଅନଧିକାର ଥିବାରୁ ତୁମ୍ଭର ଏହାକୁ ବୋଧଗମ୍ୟ କରିବା ସହଜ ନୁହେଁ । ୧୪ ।

ଅନେକ ପଣ୍ଡିତମାନେ ସାରାସାର ଦର୍ଶନେଚ୍ଛାରେ ଶାସ୍ତ୍ର ସମୂହର ଅନୁସାରୀ ହୋଇ "ସାର ଏଥିରେ ଅଛି ? ନା ଏଥିରେ ଅଛି ? ଏହିପରି ବିତର୍କ କରି କାଳହରଣ କରନ୍ତି, କିନ୍ତୁ ଯେପରି କଦଳୀ ବୃକ୍ଷକୁ ବିପାଟିତ କଲେ କୌଣସି ସାର ଦୃଷ୍ଟ ହୁଏ ନାହିଁ, ସେହିପରି ଉକ୍ତ ପଣ୍ଡିତମାନେ ବେଦ ଓ ଆରଣ୍ୟକ ପ୍ରଭୃତି ବିବିଧ ଶାସ୍ତ୍ରକୁ ଆଲୋଡ଼ନ କରି ସୁଦ୍ଧା କଥଞ୍ଚିତ ସାର ଦର୍ଶନରେ ସମର୍ଥ ହୁଅନ୍ତି ନାହିଁ । ୧୭ ।

ଯେ ଚକ୍ଷୁର ଅଗୋଚର ଓ ବାକ୍ୟଦ୍ୱାରା ଅନିର୍ଦ୍ଦେଶ୍ୟ, ଯେ ଅତୀବ ସୂକ୍ଷ୍ମ ଏବଂ ଅବିଦ୍ୟାଶୂନ୍ୟରେ ସମସ୍ତ ପ୍ରାଣିଙ୍କଠାରେ ଅବସ୍ଥାନ କରିଅଛନ୍ତି, ଯେ ପଞ୍ଚଭୌତିକ ଦେହ ମଧ୍ୟରେ ଶୁଦ୍ଧ ଚିନ୍ମୟରେ ଅବସ୍ଥାନ କରିଅଛନ୍ତି, ସେହି ଦ୍ୱୈତବର୍ଜିତ ଆତ୍ମାକୁ ଏହି ମୂଢ଼ମାନେ ଇଚ୍ଛା ଦ୍ୱେଷାଦିଯୁକ୍ତ ବୋଲି ନିର୍ଦ୍ଦେଶ କରନ୍ତି । ୧୯ ।

ଯେଉଁମାନେ ଅବିଦ୍ୟାଜନିତ ସମସ୍ତ କର୍ମଜାଲକୁ ପରିତ୍ୟାଗ ପୂର୍ବକ ବିଷୟ ତୃଷ୍ଣାକୁ ନିଗୃହୀତ କରି ମନକୁ ସେହି ମଙ୍ଗଳମୟଙ୍କର ସମୀପସ୍ଥ କରନ୍ତି; ସେମାନେ ନିରବଲମ୍ବନ ହୋଇ ସୁଖୀ ହୁଅନ୍ତି । ୨୦ ।

ହେ ଅର୍ଜ୍ଜୁନ, ସାଧୁଜନ ସମାଚରିତ ଏପରି ସୂକ୍ଷ୍ମଗମ୍ୟ, ଅର୍ଥାତ୍ ଜ୍ଞାନ ପ୍ରାପ୍ୟ ମୋକ୍ଷ ପଥ ଥାଉଁ ଥାଉଁ ତୁମ୍ଭେ କି ନିମିତ୍ତ ଅନର୍ଥଜାଲ ପରିବୃତ ବୃଥା ଅର୍ଥର ପ୍ରଶଂସା କରୁଅଛ । ୨୧ ।

ହେ ଭାରତ । ଜ୍ଞାନୀମାନଙ୍କ କଥା ଦୂରେ ଥାଉ, ଦାନ ଓ ଯଜ୍ଞାଦି କ୍ରିୟାକଳାପ ନିରତ ଅର୍ଥାତ କର୍ମକାଣ୍ଡାଭିଜ୍ଞ ପଣ୍ଡିତମାନେ ମଧ୍ୟ ଅର୍ଥକୁ ଅନର୍ଥ ରୂପରେ ଦେଖନ୍ତି ଅର୍ଥାତ ଅର୍ଥର ପ୍ରଶଂସା କରନ୍ତି ନାହିଁ । ୨୨ ।

ପରନ୍ତୁ କେତେଗୁଡ଼ିଏ ମୂଢ଼ଲୋକ, ହେତୁ ଅର୍ଥାତ ତର୍କାଦି ଶାସ୍ତ୍ରରେ ପଣ୍ଡିତ ହୋଇ ସୁଦ୍ଧା ପୂର୍ବଜନ୍ମର ଦୁଷ୍କୃତରକୁ ସଂସ୍କାରବଶତଃ ଆତ୍ମା ନାହିଁ ବୋଲି ବିବାଦ କରନ୍ତି । ଅତଏବ ମୋକ୍ଷ ବିଷୟକ ଏହି ସାର ସିଦ୍ଧାନ୍ତକୁ ସେମାନଙ୍କର ହୃଦୟଙ୍ଗମ କରାଇବା ଅସାଧ୍ୟ ଅଟେ । ୨୩ ।

ଦୁଷ୍ଟ ମନୁଷ୍ୟମାନେ ବହୁଳ ଶାସ୍ତ୍ରାଧ୍ୟୟନ କରି ବାଚାଳତା ବଶତଃ ଜନ ସମାଜରେ ଆପଣଙ୍କୁ ବକ୍ତୃତା ପଟୁ ବୋଲି ଜଣାଇ ମୋକ୍ଷ ଧର୍ମକୁ ନିନ୍ଦାକରି ପୃଥିବୀରେ ବିଚରଣ କରନ୍ତି । ୨୪ ।

ହେ ଅର୍ଜ୍ଜୁନ ! ଆମ୍ଭେ ଯେଉଁ ଶାସ୍ତ୍ରାର୍ଥକୁ ବୋଧ କରି ନ ପାରିବୁ ତାହାକୁ ଅପର ଅଜ୍ଞ ଲୋକେ କି ବୁଝି ପାରିବେ ? କିନ୍ତୁ ମୂର୍ଖମାନେ ଯେପରି ଶାସ୍ତ୍ରର ସ୍ୱଷ୍ଟତତ୍ତ୍ୱକୁ ବୋଧ କରି ପାରନ୍ତି ନାହିଁ, ସେହିପରି ଶାସ୍ତ୍ରର ମର୍ମଜ୍ଞ ପ୍ରାଜ୍ଞ ମହାତ୍ମା ସାଧୁମାନଙ୍କୁ ମଧ୍ୟ ଜାଣି ପାରନ୍ତି ନାହିଁ । ୨୫ ।

ହେ କୌନ୍ତେୟ ! ତତ୍ତ୍ୱବିତ ପଣ୍ଡିତମାନେ ତପସ୍ୟା ଓ ଜ୍ଞାନ ଦ୍ୱାରା ମହତ୍ତ୍ୱକୁ ଲାଭ କରନ୍ତି ଏବଂ ସନ୍ନ୍ୟାସ ଧର୍ମ ଦ୍ୱାରା ସର୍ବଦା ସୁଖ ଲାଭ କରନ୍ତି । ୨୬ ।

---

## ଅଧ୍ୟାୟ ୨୦

ବୈଶମ୍ପାୟନ ବୋଇଲେ—ହେ ରାଜନ୍ ଜନମେଜୟ ! ଯୁଧିଷ୍ଠିରଙ୍କ ବାକ୍ୟାବସାନରେ ବାକ୍‌ପଟୁ ମହାତପା ଦେବସ୍ଥାନ ଋଷି ଧର୍ମରାଜ ଯୁଧିଷ୍ଠିରଙ୍କୁ ଏହିପରି ଯୁକ୍ତିଯୁକ୍ତ ବାକ୍ୟ କହିଲେ । ୧ ।

ଦେବସ୍ଥାନ ବୋଇଲେ—ଅର୍ଜ୍ଜୁନ ଯେ ଧନ ଅପେକ୍ଷା କିଛି ଶ୍ରେଷ୍ଠ ନାହିଁ ବୋଲି ଉକ୍ତି କରି ଅଛନ୍ତି । ତଦ୍‌ବିଷୟରେ ଆମ୍ଭେ ଆପଣଙ୍କୁ ବିସ୍ତାର ରୂପରେ କହୁଅଛୁଁ, ଆପଣ ଏକାଗ୍ରଚିତ୍ତ ହୋଇ ଶ୍ରବଣ କରନ୍ତୁ । ୨ ।

ହେ ରାଜନ୍ ! ହେ ଅଜାତଶତ୍ରୋ ! ଆପଣ ଧର୍ମାନୁସାରେ ପୃଥିବୀକୁ ଜୟ କରି ଅଛନ୍ତି । ବର୍ତ୍ତମାନ ଏହି ହସ୍ତଗତ ରାଜ୍ୟକୁ ନିଷ୍ପ୍ରୟୋଜନରେ ପରିତ୍ୟାଗ କରିବା ଆପଣଙ୍କର ଉଚିତ ହେଉନାହିଁ । ୩ ।

ହେ ପାର୍ଥିବ ! ବେଦରେ ଚାରିଗୋଟି ଆଶ୍ରମ ବିହିତ ଅଛି । କ୍ରମାନ୍ୱୟରେ ଏତନ୍ମଧ୍ୟରୁ ଗୋଟିକୁ ପରିତ୍ୟାଗ କରି ଆଉ ଗୋଟିକୁ ଅବଲମ୍ବନ କରିବା ବିଧେୟ; ଅତଏବ ଆପଣ ବର୍ତ୍ତମାନ ଭୂରି ଦକ୍ଷିଣା ଯୁକ୍ତ ଯଜ୍ଞକୁ ଅନୁଷ୍ଠାନ କରନ୍ତୁ । ୪ ।

ଅତଏବ ତପସ୍ୱିମାନଙ୍କୁ ମଧ୍ୟ ଆପଣ କର୍ମନିଷ୍ଠ ବୋଲି ଜାଣିବେ । ହେ କୌନ୍ତେୟ ! ବୈଖାନସ ଋଷିମାନେ କହନ୍ତି ଯେ "ଅର୍ଥସାଧ୍ୟ ଯଜ୍ଞାନୁଷ୍ଠାନ ନିମିତ୍ତ ଅର୍ଥ ଚେଷ୍ଟା କରିବା ଅପେକ୍ଷା ଯଜ୍ଞ ନ କରିବା ଶ୍ରେୟସ୍କର ।" କିନ୍ତୁ ଆମ୍ଭ ବିବେଚନାରେ ସେମାନଙ୍କର ଉକ୍ତ ଧର୍ମକୁ

ଗ୍ରହଣ କଲେ ଭୂମିଷ୍ଠ ଦୋଷ ସମୁତ୍ପନ୍ନ ହୁଏ । କାରଣ ବିଧିଥିବା ହେତୁରୁ ଯଜ୍ଞନିମିତ୍ତ ସମସ୍ତ ଦ୍ରବ୍ୟର ସଞ୍ଚୟ କରିବା ଉଚିତ । ମୂଢ଼ ଲୋକେ କଳୁଷିତ ବୁଦ୍ଧି ବଶତଃ ଆତ୍ମ ସଦୃଶ ପ୍ରିୟ ଅର୍ଥକୁ ଉପଯୁକ୍ତ କାର୍ଯ୍ୟରେ ବ୍ୟୟ ନ କରି ଅଯୋଗ୍ୟ କର୍ମରେ ସମର୍ପଣପୂର୍ବକ ନିଜକୁ ଆତ୍ମହତ୍ୟା ପାପରେ ଦୂଷିତ କରନ୍ତି । ପରନ୍ତୁ ଯୋଗ୍ୟାଯୋଗ୍ୟ କର୍ମକୁ ପରୀକ୍ଷା କରି ବିଶୁଦ୍ଧ ଧର୍ମୋପାର୍ଜନ କରିବା ମଧ୍ୟ ସହଜ ବ୍ୟାପାର ନୁହେଁ । ୯ ।

ବିଧାତା ଯଜ୍ଞନିମିତ୍ତ ଅର୍ଥ ସମୂହର ସୃଷ୍ଟି କରିଅଛନ୍ତି ଏବଂ ପୁରୁଷକୁ ମଧ୍ୟ ସେହି ଅର୍ଥର ରକ୍ଷା ଓ ଯଜ୍ଞାନୁଷ୍ଠାନ ଉଦ୍ଦେଶ୍ୟରେ ସୃଷ୍ଟି କରି ଅଛନ୍ତି । ଅତଏବ ସମସ୍ତ ଧନକୁ ଯଜ୍ଞରେ ସମର୍ପଣ କଲେ ସମସ୍ତ କାମନା ପୂର୍ଣ୍ଣ ହୁଏ । ୧୦ ।

ଭୂରିତେଜା ଇନ୍ଦ୍ର ବିବିଧ ମୂଲ୍ୟବାନ୍ ଦ୍ରବ୍ୟାଦି ଦ୍ୱାରା ଯଜ୍ଞାନୁଷ୍ଠାନ କରି ସମସ୍ତ ଦେବଗଣଙ୍କୁ ଅତିକ୍ରମପୂର୍ବକ ଇନ୍ଦ୍ରତ୍ୱକୁ ଲାଭ କରିଅଛନ୍ତି ଓ ସ୍ୱର୍ଗ ରାଜ୍ୟରେ ବିରାଜିତ ହେଉଅଛନ୍ତି । ଅତଏବ ସମସ୍ତ ଅର୍ଥକୁ ଯଜ୍ଞରେ ସମର୍ପଣ କରିବା କର୍ତ୍ତବ୍ୟ । ୧୧ ।

ଅପିଚ ଦ୍ୟୁତିମାନ୍ କୃତ୍ତିବାସ-ମହାତ୍ମା-ମହାଦେବ ସର୍ବମେଧ ଯଜ୍ଞରେ ନିଜକୁ ଆହୁତି ପ୍ରଦାନ କରି ସମସ୍ତ ଦେବଗଣଙ୍କ ଉପରେ ଆଧିପତ୍ୟ ଓ ବିଶ୍ୱାତିରିକ୍ତ ପ୍ରଭାବକୁ ଲାଭ କରିଅଛନ୍ତି ଓ ଏହି ବିଶ୍ୱ ମଧ୍ୟରେ ବିରାଜିତ ହେଉଅଛନ୍ତି । ୧୨ ।

ଅବିକ୍ଷିତ ପୁତ୍ର ମରୁତରାଜ ସମୃଦ୍ଧି ସମ୍ପନ୍ନ ଯଜ୍ଞ ପ୍ରଭାବରୁ ଦେବରାଜଙ୍କୁ ସୁଦ୍ଧା ଜୟ କରିଥିଲେ । ତାହାଙ୍କ ଯଜ୍ଞରେ ପାତ୍ରସବୁ କାଞ୍ଚନମୟ ଥିଲା ଓ ତହିଁରେ ଲକ୍ଷ୍ମୀ ସ୍ୱୟଂ ମୂର୍ତ୍ତିମତୀ ହୋଇ ଅଧିଷ୍ଠିତା ହୋଇଥିଲେ । ୧୩ ।

ଆପଣ ଶୁଣିଥିବେ ପାର୍ଥିବେନ୍ଦ୍ର ହରିଶ୍ଚନ୍ଦ୍ର ଯଜ୍ଞାନୁଷ୍ଠାନ କରି କରି ପୁଣ୍ୟଭାଗୀ ଓ ଶୋକରହିତ ହୋଇଥିଲେ । ସେ ମନୁଷ୍ୟ ହୋଇସୁଦ୍ଧା ଐଶ୍ୱର୍ଯ୍ୟରେ ଦେବରାଜଙ୍କ ଅପେକ୍ଷା ଅତିଶୟିତ ହୋଇଥିଲେ, ଅତଏବ ସମସ୍ତ ଅର୍ଥକୁ ଯଜ୍ଞରେ ସମର୍ପଣ କଲେ ସମସ୍ତ କାର୍ଯ୍ୟ ସିଦ୍ଧ ହୋଇପାରେ । ୧୪ ।

---

## ଅଧ୍ୟାୟ ୨୧

ଦେବସ୍ଥାନ ବୋଇଲେ—ହେ ଧର୍ମରାଜ ! ଏ ବିଷୟରେ ଇନ୍ଦ୍ର ବୃହସ୍ପତି ସମ୍ବାଦ ସମ୍ବଳିତ ଗୋଟିଏ ପୁରାତନ ସମ୍ବାଦ କଥିତ ଅଛି, ଶ୍ରବଣ କରନ୍ତୁ । ଏକଦା ବୃହସ୍ପତି ଦେବରାଜ ଇନ୍ଦ୍ରଙ୍କ କର୍ତ୍ତୃକ ଜିଜ୍ଞାସିତ ହୋଇ କହିଲେ ଯେ ସନ୍ତୋଷ କେବଳ ଉତ୍କୃଷ୍ଟ ସ୍ୱର୍ଗ ଅଟେ । ସନ୍ତୋଷ ହିଁ ପରମ ସୁଖ, ସନ୍ତୋଷ ଅପେକ୍ଷା ଆଉ କିଛି ଅଧିକ ସୁଖ ନାହିଁ । ୨ ।

କୂର୍ମ ଯେପରି ନିଜର ଅବୟବମାନଙ୍କୁ ସଙ୍କୋଚିତ କରି ସ୍ୱୟଂ ଅନ୍ତର୍ହିତ ରହେ, ସେହିପରି ଯାହାଙ୍କର ସମସ୍ତ ବାସନା ବିଲୀନ ହୋଇଯାଏ, ତାହାଙ୍କର ଅନ୍ତଃକରଣରେ ଶୀଘ୍ର ଆତ୍ମଜ୍ୟୋତି ପ୍ରକାଶ ପାଏ । ୩ ।

ଯେତେବେଳେ ସାଧକ କାମ ଓ ଦ୍ୱେଷାଦିକୁ ପରାଜିତ କରନ୍ତି, ସେତେବେଳେ ସେମାନେ କୌଣସି ପ୍ରାଣୀଠାରୁ ଭୟ କରନ୍ତି ନାହିଁ କିମ୍ବା ସେମାନଙ୍କୁ କେହି ଭୟ କରନ୍ତି ନାହିଁ, ସେତେବେଳେ ସେ ଆତ୍ମସାକ୍ଷାତ୍କାରକୁ ଲାଭ କରନ୍ତି । ୪ ।

ଯେତେବେଳେ ସେ କାର୍ଯ୍ୟ ବା ମନଦ୍ୱାରା କୌଣସି ପ୍ରାଣୀର ବିଦ୍ରୋହାଚରଣ କରନ୍ତି ନାହିଁ କିମ୍ବା କାହାରିକୁ ଯାଚ୍ଞା କରନ୍ତି ନାହିଁ, ସେତେବେଳେ ତାହାଙ୍କର ବ୍ରହ୍ମପ୍ରାପ୍ତି ହୋଇଅଛି ବୋଲି ଜାଣିବ । ୫ ।

ହେ କୌନ୍ତେୟ ! ଏହି ପ୍ରକାରେ ଯେଉଁ ବ୍ୟକ୍ତି ଯେପରି ଧର୍ମାଚରଣ କରେ ସେ ସେହିପରି ଫଳ ଭୋଗୀ ହୁଏ; ଅତଏବ ଆପଣ ଏହା ବିବେଚନା କରି କର୍ତ୍ତବ୍ୟ କାର୍ଯ୍ୟରେ ପ୍ରବୃତ୍ତ ହେଉନ୍ତୁ । ଏହି ପୃଥିବୀ ମଧ୍ୟରେ ନିଜ ନିଜ ରୁଚି ଅନୁସାରେ, କେହି ପ୍ରୀତିର, କେହି ଯତ୍ନର, କେହି ବା ଏତଦୁଭୟର, କେହି ଯଜ୍ଞର, କେହି ସନ୍ନ୍ୟାସର, କେହି ଦାନର, କେହି ଅବା ପ୍ରତିଗ୍ରହର ପ୍ରଶଂସା କରନ୍ତି । ୮ ।

କୌଣସି କୌଣସି ବ୍ୟକ୍ତି ସମସ୍ତ ପରିତ୍ୟାଗପୂର୍ବକ ତୁଷ୍ଣୀଭାବରେ ଧ୍ୟାନାବଲମ୍ବନ କରି ଅବସ୍ଥାନ କରନ୍ତି, କେହି ବା ଶତ୍ରୁକୁଳକୁ ଛିନ୍ନ-ଭିନ୍ନ କରି ରାଜ୍ୟଗ୍ରହଣପୂର୍ବକ ପ୍ରଜା ପାଳନକୁ ପ୍ରଶଂସା କରନ୍ତି; କେହି ଅବା ନିର୍ଜନରେ ଅବସ୍ଥାନ କରିବାକୁ ଇଚ୍ଛା କରନ୍ତି; କିନ୍ତୁ ଏହିସବୁ ସମାଲୋଚନା କରି ପଣ୍ଡିତମାନେ ଏହିପରି ନିଶ୍ଚୟ କରି ଅଛନ୍ତି ଯେ

ପ୍ରାଣିମାତ୍ରର ଅନିଷ୍ଟ ନ କରି ଯେଉଁ ଧର୍ମ ଉପାର୍ଜ୍ଜିତ ହୁଏ, ତାହା ସାଧୁ ସମ୍ମତ । ସ୍ୱାୟମ୍ଭୁବ ମନୁ ମଧ୍ୟ ଅଦ୍ରୋହ, ସତ୍ୟବାକ୍ୟ ପ୍ରୟୋଗ, ସଂବିଭାଗ, ଦୟା, ଇନ୍ଦ୍ରିୟଦମନ, ନିଜ ଦାରରେ ପୁତ୍ରୋତ୍ପାଦନ, ମୃଦୁତା, ଲଜ୍ଜା ଓ ଅଚାପଲ୍ୟ ପ୍ରଭୃତିକୁ ଉତ୍କୃଷ୍ଟ ଧର୍ମ ବୋଲି କୀର୍ତ୍ତନ କରିଅଛନ୍ତି । ୧୬ ।

ଅତଏବ ହେ କୌନ୍ତେୟ ! ଆପଣ ମଧ୍ୟ ଯତ୍ନ ସହକାରେ ଏତାଦୃଶ ଧର୍ମକୁ ପାଳନ କରନ୍ତୁ । ଯେଉଁ ରାଜସତ୍ତମଙ୍କ ଜିତେନ୍ଦ୍ରିୟ ରାଜା ରାଜକାର୍ଯ୍ୟ ଧର୍ମ ଶାସ୍ତ୍ରର ତାତ୍ପର୍ଯ୍ୟକୁ ବିଶେଷରୂପରେ ଗ୍ରହଣ କରି ରାଜ୍ୟରେ ଅବସ୍ଥାନପୂର୍ବକ ପ୍ରିୟ ଓ ଅପ୍ରିୟ ବସ୍ତୁରେ ତୁଲ୍ୟ ଜ୍ଞାନ କରନ୍ତି, ଯଜ୍ଞାବଶିଷ୍ଟକୁ ଭୋଜନ କରନ୍ତି, ଅସାଧୁମାନଙ୍କ ପ୍ରତି ଦଣ୍ଡ ପ୍ରୟୋଗ କରନ୍ତି, ସାଧୁମାନଙ୍କ ପ୍ରତି ଅନୁଗ୍ରହ ପ୍ରକାଶ କରନ୍ତି, ପ୍ରଜାମାନଙ୍କୁ ଧର୍ମପଥରେ ସଂସ୍ଥାପନା କରନ୍ତି, ନିଜେ ମଧ୍ୟ ସ୍ୱଧର୍ମରେ ଅବସ୍ଥାନ କରନ୍ତି ଏବଂ ପରିଶେଷରେ ପୁତ୍ର ପ୍ରତି ରାଜ୍ୟଭାର ସମର୍ପଣ କରନ୍ତି ଓ ଅରଣ୍ୟକୁ ଗମନପୂର୍ବକ ନିରଳସ ହୋଇ ଶ୍ରୁତି ସମ୍ମତ କର୍ମର ଅନୁଷ୍ଠାନ କରନ୍ତି, ତାହାଙ୍କ ଇହଲୋକ ଓ ପରଲୋକରେ ଶୁଭଫଳ ଉଦୟ ହୁଏ । ଆଜି ଆପଣ ଯେଉଁ ନିର୍ବାଣ ମୁକ୍ତିକଥା କହୁ ଅଛନ୍ତି, ତାହା ଆମ୍ଭ ବିବେଚନାରେ ସୁଦୁଷ୍ପ୍ରାପ୍ୟ ଓ ବହୁବିଘ୍ନ ସଙ୍କୁଳ ଅଟେ । ୧୭ ।

ଆମ୍ଭେ ରାଜଧର୍ମ ବିଷୟ କୀର୍ତ୍ତନ କଲୁଁ, ସତ୍ୟ ଓ ଦାନ ପରାୟଣ ରାଜାମାନେ ଉଲ୍ଲିଖିତ ଧର୍ମକୁ ଆଶ୍ରୟପୂର୍ବକ କାମ, କ୍ରୋଧ ଓ ନୃଶଂସତା ବର୍ଜ୍ଜନ କରି ଗୋବ୍ରାହ୍ମଣମାନଙ୍କର ରକ୍ଷାର୍ଥ ଅସ୍ତ୍ରଧାରଣ କରନ୍ତି ଏବଂ ପ୍ରଜାପାଳନରେ ନିରତ ଥାଇ ଉତ୍କୃଷ୍ଟ ଧର୍ମୋପାର୍ଜ୍ଜନପୂର୍ବକ ଚରମ-କାଳରେ ପରମଗତିକୁ ଲାଭ କରନ୍ତି । ୧୯ ।

ହେ ପରନ୍ତପ ! ଏହି ପ୍ରକାରେ ରୁଦ୍ର, ବସୁ, ଆଦିତ୍ୟ, ସାଧ୍ୟ ଓ ଓ ରାଜର୍ଷିମାନେ ଅପ୍ରମତ୍ତଭାବରେ ଉତ୍କୃଷ୍ଟ ରାଜଧର୍ମକୁ ଆଶ୍ରୟ କରି ପୁଣ୍ୟକର୍ମଦ୍ୱାରା ସ୍ୱର୍ଗଲୋକକୁ ପ୍ରାପ୍ତ ହୋଇ ଅଛନ୍ତି ।

ଦେବସ୍ଥାନଙ୍କ ବାକ୍ୟରେ ଏକବିଂଶ ଅଧ୍ୟାୟ ସମାପ୍ତ । ୨୦ ।

---

# ଅଧ୍ୟାୟ ୨୨

ବୈଶମ୍ପାୟନ ବୋଇଲେ—ଦେବସ୍ଥାନ ଋଷିଙ୍କ ବାକ୍ୟାବସାନରେ ଅର୍ଜ୍ଜୁନ ପୁନର୍ବାର ସେହି ବିଷର୍ଣ୍ଣମନା ଜ୍ୟେଷ୍ଠ ଭ୍ରାତା ଅଚ୍ୟୁତ ଯୁଧିଷ୍ଠିରଙ୍କୁ କହିଲେ—ହେ ଧର୍ମଜ୍ଞ ! ଆପଣ କ୍ଷତ୍ରିୟ ଧର୍ମ ଅନୁସାରେ ଶତ୍ରୁମାନଙ୍କୁ ପରାଜିତ କରି ସୁଦୁର୍ଲଭ ରାଜ୍ୟକୁ ଲାଭକରି ଅଛନ୍ତି, ଅତଏବ କି ନିମିତ୍ତ ଏପରି ବାରମ୍ବାର ସନ୍ତାପିତ ହେଉ ଅଛନ୍ତି ? ।୨।

ହେ ମହାରାଜ ! ବହୁତର ଯଜ୍ଞାନୁଷ୍ଠାନ ଅପେକ୍ଷା କ୍ଷତ୍ରିୟମାନଙ୍କର ସଂଗ୍ରାମ ମୃତ୍ୟୁ କେବଳ ଉତ୍କୃଷ୍ଟ ଅଟେ । ଏହା କ୍ଷତ୍ରିୟମାନଙ୍କର ଧର୍ମ୍ମ ବୋଲି ବିହିତ ଅଛି ।୩।

ବ୍ରାହ୍ମଣମାନଙ୍କର ତପସ୍ୟା ଓ ସନ୍ନ୍ୟାସ ଏବଂ କ୍ଷତ୍ରିୟମାନଙ୍କର ସଂଗ୍ରାମ ମୃତ୍ୟୁ ଏହାହିଁ ପାରଲୌକିକ ଧର୍ମ୍ମ ।୪।

କ୍ଷତ୍ରିୟମାନେ କାଳପ୍ରାପ୍ତ ହେଲେ ତାଙ୍କ ପକ୍ଷରେ ସମର କ୍ଷେତ୍ରକୁ ଆସି ଶସ୍ତ୍ରଦ୍ୱାରା ମୃତ୍ୟୁଲାଭ କରିବା ଧର୍ମ୍ମ ଅଟେ । କାରଣ କ୍ଷତ୍ରିୟ ଧର୍ମ୍ମ ଶସ୍ତ୍ରମୂଳକ ଓ ଅତିଶୟ ଉଗ୍ରତର ।୫।

ହେ ରାଜନ୍ ! କ୍ଷତ୍ରିୟମାନେ ବ୍ରହ୍ମରୁ ସମୁଦ୍ଭବ ହୋଇ ଅଛନ୍ତି, ଅତଏବ ବ୍ରାହ୍ମଣ ମଧ୍ୟ ଯଦି ଏହି କ୍ଷତ୍ରିୟ ଧର୍ମ୍ମାବଲମ୍ବୀ ହୁଅନ୍ତି, ତେବେ ତାହାଙ୍କର ଜୀବନ ପ୍ରଶସ୍ତ ହୁଏ । ହେ ମନୁଜେଶ୍ୱର ! କ୍ଷତ୍ରିୟର ସନ୍ନ୍ୟାସ, ସମାଧି, ତପସ୍ୟା ଓ ଅନ୍ୟଠାରୁ ଯାଚଜ୍ଞାଦ୍ୱାରା ଜୀବିକା ନିର୍ବାହ କରିବା ବିଧି ନୁହେ ।୬।

ହେ ଭରତର୍ଷଭ ! ଆପଣ ରାଜା, ମନୀଷୀ, ନିପୁଣ, ଧର୍ମ୍ମାତ୍ମା ଓ ସର୍ବ ଧର୍ମ୍ମଜ୍ଞ ଅଟନ୍ତି ଏବଂ ପର ଓ ଅପର ଉଭୟ ବସ୍ତୁକୁ ଅବଗତ ଅଛନ୍ତି ।୮।

ବିଶେଷତଃ କ୍ଷତ୍ରିୟମାନଙ୍କର ହୃଦୟ ବଜ୍ର ସଦୃଶ ଅଟେ, ଅତଏବ ଆପଣ ସନ୍ତାପଜନକ ଶୋକକୁ ପରିତ୍ୟାଗ କରି କର୍ମ୍ମାନୁଷ୍ଠାନ ନିମିତ୍ତ ବଦ୍ଧପରିକର ହେଉନ୍ତୁ ।୯।

ଆପଣ କ୍ଷତ୍ରିୟ ଧର୍ମ ଅନୁସାରେ ଅସଂଖ୍ୟ କୁଳକୁ ନିର୍ମୂଳ କରି ଏହି ନିଷ୍କଣ୍ଟକ ରାଜ୍ୟକୁ ପ୍ରାପ୍ତ ହୋଇ ଅଛନ୍ତି । ବର୍ତ୍ତମାନ ଇନ୍ଦ୍ରିୟ ସବୁକୁ ବଶୀଭୂତ କରି ଯଜ୍ଞ ଓ ଦାନ ପରାୟଣ ହେଉନ୍ତୁ ।୧୦।

ଦେବରାଜ ଇନ୍ଦ୍ର ବ୍ରାହ୍ମଣ ହୋଇ ସୁଦ୍ଧା କେବଳ କାର୍ଯ୍ୟବଶତଃ କ୍ଷତ୍ରିୟ ଧର୍ମାବଲମ୍ବୀ ହୋଇଥିଲେ । ସେ ପାପବୃତ୍ତି ଜ୍ଞାତିଗଣଙ୍କୁ ଯୁଦ୍ଧରେ ଦଶାଧିକ ଅଷ୍ଟଶତବାର ପରାଜିତ କରିଥିଲେ ।୧୧।

ହେ ବିଶାମ୍ପତେ ! ତାହାଙ୍କର ସେହି କର୍ମ ଜଗତରେ ପୂଜ୍ୟ ଓ ପ୍ରଶଂସନୀୟ ବୋଲି ଗଣ୍ୟ ହୋଇଅଛି ଏବଂ ଉକ୍ତ କ୍ଷତ୍ରିୟ ଧର୍ମ ପ୍ରଭାବରୁ ସେ ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ରତ୍ୱକୁ ଲାଭ କରିଅଛନ୍ତି ବୋଲି ଆମ୍ଭେମାନେ ଶୁଣିଅଛୁଁ ।୧୨।

ଯେପରି ଦେବରାଜ ଇନ୍ଦ୍ର ଚିରକାଳ ସକାଶେ ନିଷ୍କଣ୍ଟକ ହୋଇ ଯଜ୍ଞାନୁଷ୍ଠାନ କରିଥିଲେ, ସେହିପରି ଆପଣ ମଧ୍ୟ ବର୍ତ୍ତମାନ ନିଷ୍କଣ୍ଟକ ହୋଇ ବହୁଳ ଦକ୍ଷିଣା ସମନ୍ୱିତ ଯଜ୍ଞାନୁଷ୍ଠାନ କରନ୍ତୁ ।୧୩।

ହେ କ୍ଷତ୍ରିୟର୍ଷଭ ! ଆପଣ ଅତୀତ ବିଷୟନିମିତ୍ତ କିଛିମାତ୍ର ଶୋକ କରନ୍ତୁ ନାହିଁ, କୌରବମାନେ କ୍ଷତ୍ରିୟଧର୍ମ ଅନୁସାରେ କଳେବର ପରିତ୍ୟାଗପୂର୍ବକ ଶସ୍ତ୍ରପୂତ ହୋଇ ପରମ ଗତିକୁ ଲାଭ କରି ଅଛନ୍ତି ।୧୪।

ହେ ଭରତର୍ଷଭ ! ଯାହା ଘଟିବାର ତାହା ଘଟିଥାଏ; ଅଦୃଷ୍ଟକୁ ଅତିକ୍ରମ କରିବା କାହାରି ସାମର୍ଥ୍ୟ ନାହିଁ ।୧୫।

---

## ଅଧ୍ୟାୟ ୨୩

ବୈଶମ୍ପାୟନ କହିଲେ—ଜନମେଜୟ ! ଅର୍ଜ୍ଜୁନଙ୍କ କର୍ତ୍ତୃକ ଏହିପରି ପ୍ରବୋଧିତ ହୋଇସୁଦ୍ଧା କୁରୁନନ୍ଦନ ଯୁଧିଷ୍ଠିର କୌଣସି ଉତ୍ତର କଲେ ନାହିଁ । ତହୁଁ, ମହର୍ଷି ଦ୍ୱୈପାୟନ କହିଲେ ।୧।

ବ୍ୟାସ କହିଲେ—ହେ ସୌମ୍ୟ ଯୁଧିଷ୍ଠିର ! ଅର୍ଜ୍ଜୁନଙ୍କ ବାକ୍ୟକୁ ପ୍ରକୃତ ବୋଲି ଜାଣିବ; ଶାସ୍ତ୍ରରେ ଗୃହସ୍ଥଧର୍ମ ଉତ୍କୃଷ୍ଟ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି ।୨।

ଅତଏବ ହେ ଧର୍ମଜ୍ଞ ! ବର୍ତ୍ତମାନ ଗୃହସ୍ଥାଶ୍ରମକୁ ପରିତ୍ୟାଗ କରି ଅରଣ୍ୟକୁ ଗମନ କରିବା ତୁମ୍ଭର କର୍ତ୍ତବ୍ୟ ନୁହେଁ । ଶାସ୍ତ୍ର ବିଧି ଅନୁସାରେ ସ୍ୱଧର୍ମରେ ଅର୍ଥାତ୍ ଗୃହସ୍ଥାଶ୍ରମରେ ପ୍ରବୃତ୍ତ ହୁଅ ।୩।

ହେ ମହୀପତେ ! ଦେବ, ପିତୃ, ଅତିଥି ଓ ଭୃତ୍ୟବର୍ଗ ସମସ୍ତେ ଗୃହସ୍ଥର ଆଶ୍ରୟରେ ଜୀବକାନିର୍ବାହ କରନ୍ତି । ଅତଏବ ସେମାନଙ୍କୁ ପାଳନ କରିବା ଉଚିତ ।୭।

ପଶୁ, ପକ୍ଷୀ ପ୍ରଭୃତି ସମସ୍ତ ପ୍ରାଣିଗଣ ଗୃହସ୍ଥଙ୍କୁ ଅବଲମ୍ବନ କରି ପ୍ରାଣଧାରଣ କରନ୍ତି, ଅତଏବ ଗୃହସ୍ଥାଶ୍ରମୀ ସର୍ବାପେକ୍ଷା ଶ୍ରେଷ୍ଠ ଅଟନ୍ତି ।୫।

ହେ ମହାରାଜ ! ଚାରି ପ୍ରକାର ଆଶ୍ରମ ଅପେକ୍ଷା ଗୃହସ୍ଥାଶ୍ରମର ଅନୁଷ୍ଠାନ ଅତୀବ ଦୁଷ୍କର । ବର୍ତ୍ତମାନ ତୁମ୍ଭେ ଅଜିତାତ୍ମା ପୁରୁଷର ଦୁଷ୍କର ଗୃହସ୍ଥାଶ୍ରମକୁ ଅନୁଷ୍ଠାନ କର ।୬।

ସମଗ୍ର ବେଦଶାସ୍ତ୍ରରେ ତୁମ୍ଭର ଅଭିଜ୍ଞତା ଅଛି ଏବଂ ସୁମହତ ଓ ତପୋନୁଷ୍ଠାନ ମଧ୍ୟ ତୁମ୍ଭେ କରିଅଛ । ବର୍ତ୍ତମାନ ଧୂରନ୍ଧର ପୁରୁଷ ସଦୃଶ ପିତୃ ପୈତାମହିକ ରାଜ୍ୟଭାରକୁ ବହନ କରିବା ତୁମ୍ଭର କର୍ତ୍ତବ୍ୟ ।୭।

ହେ ମହାରାଜ ! ସାଧନୁସାରେ ତପସ୍ୟା, ଯଜ୍ଞ, କ୍ଷମା, ଅନାସକ୍ତି, ଭିକ୍ଷା ବୃତ୍ତି, ଇନ୍ଦ୍ରିୟ ସଂଯମ, ଧ୍ୟାନ, ଏକାନ୍ତ ନମ୍ରତା ଓ ବ୍ରହ୍ମଜ୍ଞାନ ସାଧନ ପ୍ରଭୃତି କାର୍ଯ୍ୟ କରିବା ବ୍ରାହ୍ମଣଙ୍କ ପକ୍ଷରେ ସିଦ୍ଧିକାରକ ଅଟେ ଆଉ କ୍ଷତ୍ରିୟମାନଙ୍କର ଯାହା କର୍ତ୍ତବ୍ୟ, ତାହା କହୁଅଛି, ସେ ବିଷୟ ତୁମ୍ଭର ମଧ୍ୟ ଅବିଦିତ ନାହିଁ ।୯।

ହେ ବିଶାମ୍ପତେ ! ବିଦ୍ୟୋପାର୍ଜନ, ଯଜ୍ଞାନୁଷ୍ଠାନ, ଅପୂତ ଧର୍ମବୃତ୍ତି, ଛତ୍ର ଅସନ୍ତୋଷ, ରାଜଦଣ୍ଡଧାରଣ, ଉଗ୍ରତା, ପ୍ରଜାପାଳନ, ବେଦ ଜ୍ଞାନ, ସମଗ୍ର ତପୋନୁଷ୍ଠାନ, ସଚ୍ଚରିତ୍ରତା, ଧନୋପାର୍ଜନ ଏବଂ ସେହି ଉପାର୍ଜିତ ଧନକୁ ଉପଯୁକ୍ତ ପାତ୍ରରେ ସମର୍ପଣ, ଏହିସବୁ କ୍ଷତ୍ରିୟମାନଙ୍କର କର୍ତ୍ତବ୍ୟ କର୍ମ ବୋଲି କଥିତ ହୋଇଅଛି । ଯେଉଁମାନେ ଏହିସବୁ କାର୍ଯ୍ୟର ସମ୍ୟକ ଅନୁଷ୍ଠାନ କରନ୍ତି, ସେମାନେ ଏହାର ପୂର୍ଣ୍ଣ ପ୍ରଭାବରୁ ଇହଲୋକ ଓ ପରଲୋକରେ ସିଦ୍ଧିଲାଭ କରନ୍ତି । ଏହା ଆମ୍ଭେ ଶ୍ରବଣ କରିଅଛୁ ।୧୨।

ପରନ୍ତୁ ଏହିସବୁ କର୍ମ ମଧ୍ୟରେ କ୍ଷତ୍ରିୟମାନଙ୍କର ଦଣ୍ଡଧାରଣ କେବଳ ପ୍ରଧାନ କର୍ମ ବୋଲି କୀର୍ତ୍ତିତ ହୋଇଅଛି । କାରଣ ହେ କୌନ୍ତେୟ ! କ୍ଷତ୍ରିୟଙ୍କଠାରେ ସର୍ବଦା ବଳ ବିଦ୍ୟମାନ ଏବଂ ବଳହିଁ ଦଣ୍ଡ ବୋଲି ଉକ୍ତ ହୁଏ ।୧୩।

ହେ ରାଜନ୍ ! ଏହି ସମସ୍ତ କର୍ମ କ୍ଷତ୍ରିୟମାନଙ୍କର ସମ୍ୟକ ସିଦ୍ଧିପ୍ରଦ ଅଟେ । ଏ ବିଷୟରେ ବୃହସ୍ପତି ମଧ୍ୟ ଏପରି କହି ଅଛନ୍ତି ଯେ ସର୍ପ ଯେପରି ମୂଷିକକୁ ଭକ୍ଷଣ କରେ, ସେହିପରି ଶମ ପରାୟଣ ନରପତିଙ୍କୁ ଓ ସଂସାରାସକ୍ତ ବ୍ରାହ୍ମଣଙ୍କୁ ପୃଥିବୀ ଗ୍ରାସ କରନ୍ତି ।୧୫।

ଏପରି ଶୁଣା ଅଛି ହେ ରାଜର୍ଷି ସୁଦ୍ୟୁମ୍ନ ପ୍ରଚେତାପୁତ୍ର ଦକ୍ଷଙ୍କ ପ୍ରାୟ, ଦଣ୍ଡଧାରଣ ପ୍ରଭାବରୁ ପରମ ସିଦ୍ଧିକୁ ଲାଭ କରିଥିଲେ ।୧୬।

ଯୁଧିଷ୍ଠିର କହିଲେ—ହେ ଭଗବନ୍ ! ବସୁଧାପତି ସୁଦ୍ୟୁମ୍ନ କେଉଁ କର୍ମ ଫଳଦ୍ୱାରା ପରମ ସିଦ୍ଧିକୁ ପ୍ରାପ୍ତ ହୋଇଥିଲେ ? ତାହା ଆମ୍ଭେ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ ।୧୭।

ବ୍ୟାସ କହିଲେ—ଏ ବିଷୟରେ ଗୋଟିଏ ପୁରାତନ ଇତିହାସ କଥିତ ଅଛି ଶ୍ରବଣ କର । ଶଙ୍ଖ ଓ ଲିଖିତ ନାମରେ ଅତି ତୀବ୍ର ବ୍ରତଧାରୀ ଦୁଇଗୋଟି ଭ୍ରାତା ଥିଲେ ।୧୮।

ବାହୁଦା ନଦୀ ତୀରରେ ଏହି ଦୁଇ ଭ୍ରାତାଙ୍କର ନିତ୍ୟ ଫଳପୁଷ୍ପ ସମନ୍ୱିତ ତରୁରାଜି-ପରିଶୋଭିତ ପୃଥକ ପୃଥକ ଦୁଇଗୋଟି ରମଣୀୟ ଆଶ୍ରମ ଥିଲା ।୧୯।

ଅନନ୍ତର ଏକଦା ଲିଖିତ ଋଷି ଯଦୃଚ୍ଛା କ୍ରମେ ଶଙ୍ଖ ଋଷିଙ୍କର ଆଶ୍ରମକୁ ସମାଗତ ହେଲେ । ସେହି ସମୟରେ ମହର୍ଷି ଶଙ୍ଖ ନିଜର ଆଶ୍ରମରୁ ସ୍ଥାନାନ୍ତରକୁ ଗମନ କରିଥିଲେ ।୨୦।

ତେତେବେଳେ ଲିଖିତ ଋଷି ଜ୍ୟେଷ୍ଠଭ୍ରାତା ଶଙ୍ଖ ଋଷିଙ୍କର ଆଶ୍ରମରେ ପ୍ରବିଷ୍ଟ ହୋଇ ପକ୍ୱ ଫଳସବୁ ପାତିତ କଲେ ଏବଂ ତାହା ଗ୍ରହଣ ପୂର୍ବକ ବିଶ୍ରବ୍ଧଚିତ୍ତରେ ଭୋଜନ କଲେ । ଏହି ଅବସରରେ ମହର୍ଷି ଶଙ୍ଖ ସ୍ୱୀୟ ଆଶ୍ରମରେ ଉପସ୍ଥିତ ହେଲେ ଏବଂ ଭ୍ରାତା ଲିଖିତଙ୍କୁ ଫଳ ଭକ୍ଷଣ କରିବାର ଦେଖି ପ୍ରଶ୍ନ କଲେ—ତୁମ୍ଭେ କି ନିମିତ୍ତ ଏହିସବୁ ଫଳ ଭକ୍ଷଣ କରୁଅଛ ? ଏହି ଫଳସବୁ କେଉଁଠାରୁ ପାଇଲ ?୨୩।

ତହୁଁ କନିଷ୍ଠ ଲିଖିତ ଜ୍ୟେଷ୍ଠ ଭ୍ରାତାଙ୍କର ସମୀପସ୍ଥ ହୋଇ ତାହାଙ୍କୁ ଅଭିବାଦନ କରି ହାସ୍ୟପୂର୍ବକ କହିଲେ—ଆମ୍ଭେ ଆପଣଙ୍କର ଏହି ଆଶ୍ରମରୁ ଫଳସବୁ ଗ୍ରହଣ କରିଅଛୁଁ ।୨୪।

ତାହାଙ୍କର ଏଦୃଶ ବାକ୍ୟ ଶ୍ରବଣ କରି ମହର୍ଷି ଶଙ୍ଖ ଅତିଶୟ କ୍ରୋଧ ପରତନ୍ତ୍ର ହୋଇ କହିଲେ—ହେ ଭ୍ରାତ ! ଆମ୍ଭର ଅନୁପସ୍ଥିତି ଓ

ବିନା ଅନୁମତିରେ ତୁମ୍ଭେ ସ୍ୱେଚ୍ଛାସ୍ୱରୀ ହୋଇ ଫଳ ଗ୍ରହଣ କରିବାରୁ ତୁମ୍ଭର ଚୌର୍ଯ୍ୟାଚରଣ ହୋଇଅଛି ।୨୫।

ଅତଏବ ତୁମ୍ଭେ ବର୍ତ୍ତମାନ ରାଜ ସମୀପକୁ ଗମନ କର ଏବଂ ତାହାଙ୍କଠାରେ ଅଦତ୍ତ ଗ୍ରହଣରୂପ ସ୍ୱକୀୟ ଦୁଷ୍କର୍ମକୁ ବ୍ୟକ୍ତ କରି କହିବ —ହେ ପାର୍ଥିବ ସତ୍ତମ ନରାଧିପ ! ଆପଣ ଆମ୍ଭଙ୍କୁ ଚୌର ବୋଲି ଅବଧାରଣ କରନ୍ତୁ ଏବଂ ରାଜଧର୍ମକୁ ପାଳନ କରି ଆମ୍ଭପ୍ରତି ଚୌରୋଚିତ ଦଣ୍ଡକୁ ସତ୍ୱର ପ୍ରୟୋଗ କରନ୍ତୁ ।୨୭।

ଅନନ୍ତର ସଂଶିତବ୍ରତ ଭଗବାନ ଲିଖିତ ଜ୍ୟେଷ୍ଠ ଭ୍ରାତାଙ୍କର ତାଦୃଶ ଆଦେଶାନୁସାରେ ରାଜା ସୁଦ୍ୟୁମ୍ନଙ୍କ ନିକଟକୁ ଗମନ କଲେ ।୨୮।

ଜନେଶ୍ୱର ସୁଦ୍ୟୁମ୍ନ ଦ୍ୱାରପାଳଙ୍କ ମୁଖରୁ ଧର୍ମଜ୍ଞ ଶ୍ରେଷ୍ଠ ଲିଖିତ ଋଷିଙ୍କର ଆଗମନ ବାର୍ତ୍ତା ଶ୍ରବଣ କରି ଅମାତ୍ୟଗଣଙ୍କ ସହିତ ତାହାଙ୍କ ନିକଟକୁ ପଦବ୍ରଜରେ ଗମନ କଲେ ଏବଂ କହିଲେ ହେ ଭଗବନ୍ ! ଆପଣ କି ଅଭିପ୍ରାୟରେ ଆଗମନ କରିଅଛନ୍ତି ତାହା କହନ୍ତୁ ଏବଂ ଆପଣଙ୍କର ଅଭିପ୍ରାୟ ସଫଳ ହୋଇଅଛି ବୋଲି ଜାଣନ୍ତୁ ।୩୦।

ନରପତି ସୁଦ୍ୟୁମ୍ନଙ୍କ କର୍ତ୍ତୃକ ଏହିପରି କଥିତ ହୋଇ ବିପ୍ରର୍ଷି ଲିଖିତ କହିଲେ—ହେ ମହାରାଜ ! ଆପଣ "କରିବି" ବୋଲି ପ୍ରତିଜ୍ଞା କରନ୍ତୁ, ତତ୍ପରେ ଆମ୍ଭଠାରୁ ଶ୍ରବଣ କରି ପ୍ରତିପାଳନ କରିବେ ।୩୧।

ହେ ମନୁଜର୍ଷଭ ! ଆମ୍ଭେ ଜ୍ୟେଷ୍ଠ ଭ୍ରାତାଙ୍କର ବିନା ଅନୁମତିରେ ତାହାଙ୍କର ଆଶ୍ରମରୁ ଫଳଗ୍ରହଣପୂର୍ବକ ଭକ୍ଷଣ କରିଅଛୁଁ, ଅତଏବ ଆପଣ ଅବିଳମ୍ବରେ ଆମ୍ଭପ୍ରତି ଦଣ୍ଡପ୍ରୟୋଗ କରନ୍ତୁ ।୩୨।

ସୁଦ୍ୟୁମ୍ନ କହିଲେ—ହେ ବ୍ରାହ୍ମଣ ଶ୍ରେଷ୍ଠ ! ଆପଣଙ୍କର ଯଦି 'ରାଜଦଣ୍ଡ ପ୍ରୟୋଗ କଲେ ପାପର ଶାନ୍ତି ହୁଏ' ବୋଲି ସ୍ଥିରଜ୍ଞାନ ଥାଏ, ତା'ହେଲେ ରାଜା କ୍ଷମା କଲେ ମଧ୍ୟ ଉକ୍ତ ପାପର ଶାନ୍ତି ହୁଏ ବୋଲି ଜାଣନ୍ତୁ ।୩୩।

ଆପଣ ମହାବ୍ରତଧାରୀ ବ୍ରାହ୍ମଣ ଅଟନ୍ତି, ଆମ୍ଭେ ଆପଣଙ୍କର ଅପରାଧ କ୍ଷମା କରିବାରୁ ଆପଣ ନିଷ୍ପାପ ହେଲେ । ବର୍ତ୍ତମାନ ଆପଣଙ୍କର ଅନ୍ୟ କେଉଁ ଅଭିଳାଷ ଅଛି, ତାହା ବ୍ୟକ୍ତ କରନ୍ତୁ । ଆମ୍ଭେ ଆପଣଙ୍କର ସମସ୍ତ କାମନା ପୂରଣ କରିବୁଁ ।୩୪।

ବ୍ୟାସ କହିଲେ—ହେ ଧର୍ମରାଜ ! ମହାତ୍ମା ପୃଥିବୀପତି ସୁଦ୍ୟୁମ୍ନ ଏହିପରି କ୍ଷମା ଦେଇ ମହର୍ଷି ଲିଖିତଙ୍କୁ ସମ୍ମାନିତ କଲେ ହେଁ ଲିଖିତ ଋଷି ତାହାଙ୍କଠାରୁ ଦଣ୍ଡ ବ୍ୟତୀତ ଅନ୍ୟ କିଛି ପ୍ରାର୍ଥନା କଲେ ନାହିଁ ।୩୫।

ତହୁଁ ରାଜା ଦଣ୍ଡଧାରଣପୂର୍ବକ ମହାତ୍ମା ଲିଖିତଙ୍କର ଦୁଇ କରକୁ ଛେଦନ କଲେ । ଲିଖିତ ଋଷି ତାଦୃଶ ବିକଳାଙ୍ଗ ହୋଇ ଜ୍ୟେଷ୍ଠଭ୍ରାତା ଶଙ୍ଖଙ୍କ ନିକଟକୁ ପ୍ରତ୍ୟାଗମନପୂର୍ବକ ତାହାଙ୍କୁ କହିଲେ— ଦୁର୍ମତି ଯେ ଆମ୍ଭେ ରାଜାଙ୍କଠାରୁ ଯଥୋଚିତ ଦଣ୍ଡପ୍ରାପ୍ତ ହୋଇଅଛୁଁ, ଆପଣ ଆମ୍ଭଙ୍କୁ ବର୍ତ୍ତମାନ କ୍ଷମା ପ୍ରଦାନ କରନ୍ତୁ ।୩୭।

ଶଙ୍ଖ କହିଲେ—ଆମ୍ଭେ ତୁମ୍ଭପ୍ରତି କୁପିତ ହୋଇନାହୁଁ ଏବଂ ତୁମ୍ଭେ ମଧ୍ୟ ଆମ୍ଭର କୌଣସି ଅନିଷ୍ଟ କରିନାହଁ । ତୁମ୍ଭେ ଧର୍ମଭ୍ରଷ୍ଟ ହୋଇଥିଲ, ଏହି ହେତୁରୁ ଆମ୍ଭେ ତୁମ୍ଭଙ୍କୁ ତହିଁରୁ ମୁକ୍ତ କଲୁଁ ।୩୮।

ବର୍ତ୍ତମାନ ଅବିଳମ୍ବରେ ବାହୁଦା ନଦୀକୁ ଗମନପୂର୍ବକ ଦେବ, ଋଷି ଓ ପିତୃଗଣଙ୍କର ତର୍ପଣ କର; କଦାପି ଅଧର୍ମରେ ମନ ଦିଅନାହିଁ । ତତ୍କାଳରେ ଲିଖିତ ଋଷି ଜ୍ୟେଷ୍ଠଭ୍ରାତା ଶଙ୍ଖଙ୍କର ବାକ୍ୟ ଶ୍ରବଣ କରି ବାହୁଦା ନଦୀକୁ ଗମନ କଲେ ସେହି ନଦୀରେ ସ୍ନାନ କାର୍ଯ୍ୟ ସମାପନ କରି ତର୍ପଣ କରିବାର ଉପକ୍ରମ କରନ୍ତେ, ସହସା ତାହାଙ୍କର ଅମ୍ବୁଜ ସଦୃଶ ଦୁଇଗୋଟି କର ପ୍ରାଦୁର୍ଭୂତ ହେଲା । ତହୁଁ ସେ ଅତିଶୟ ବିସ୍ମିତ ହୋଇ ଜ୍ୟେଷ୍ଠ ଭ୍ରାତାଙ୍କ ନିକଟକୁ ଆସିଲେ ଓ ନବୋତ୍ପନ୍ନ କରଦ୍ୱୟ ତାହାଙ୍କୁ ଦେଖାଇଲେ ।୪୦।

ଅନନ୍ତର ମହର୍ଷି ଶଙ୍ଖ ତାହାଙ୍କର କରଦ୍ୱୟକୁ ଅବଲୋକନ କରି କହିଲେ ହେ ଲିଖିତ ! ଆମ୍ଭର ତପଃ ପ୍ରଭାବରୁ ତୁମ୍ଭେ ପୁନର୍ବାର କରଦ୍ୱୟକୁ ପ୍ରାପ୍ତ ହୋଇଅଛ । ଏହା ଆଶ୍ଚର୍ଯ୍ୟର ବିଷୟ ନୁହେଁ, କାରଣ ଦୈବ ଏହାର ବିଧାନକର୍ତ୍ତା ଅଟନ୍ତି ।୪୧।

ତଦନନ୍ତର ଲିଖିତ କହିଲେ—ହେ ମହାଦ୍ୟୁତେ ! ଆପଣଙ୍କର ଈଦୃଶ ତପଃ ପ୍ରଭାବ ଥାଉଁ ଥାଉଁ ଆପଣ କି ନିମିତ୍ତ ଆମ୍ଭଙ୍କୁ ପୂର୍ବରୁ ପାପରୁ ମୁକ୍ତ କଲେ ନାହିଁ ?୪୩।

ଶଙ୍ଖ କହିଲେ—ହେ ଭ୍ରାତଃ, ତଦ୍ବିଷୟରେ ଆମ୍ଭର ଅଧିକାର ଥିଲେ ଆମ୍ଭେ ତାହା କରିଥାନ୍ତ, କିନ୍ତୁ ଆମ୍ଭେ ତ ତୁମ୍ଭର ରାଜା ନୋହୁଁ

ଯେ ଦଣ୍ଡପ୍ରୟୋଗପୂର୍ବକ ତୁମ୍ଭଙ୍କୁ ପାପରୁ ମୁକ୍ତ କରିବୁଁ । ଅତଏବ ତୁମ୍ଭଙ୍କୁ ରାଜାଙ୍କଠାକୁ ପ୍ରେରଣ କରିଥିଲୁଁ । ତୁମ୍ଭ ପ୍ରତି ଦଣ୍ଡବିଧାନ କରି ନରପତି ସୁଦ୍ୟୁମ୍ନ ମଧ୍ୟ ତୁମ୍ଭ ସହିତ ଦଣ୍ଡିତ ହୋଇ ଅନନ୍ତ ଏବଂ ତୁମ୍ଭେ ଦୁହେଁ ପିତୃଗଣଙ୍କ ସହିତ ମୁକ୍ତ ହୋଇଅଛ ।୪୪।

ବ୍ୟାସ କହିଲେ—ହେ ପାଣ୍ଡବଶ୍ରେଷ୍ଠ ! ଆମ୍ଭେ ଯାହା କହିଲୁଁ, ଏତାଦୃଶ କର୍ମଦ୍ୱାରା ସେହି ରାଜା ସୁଦ୍ୟୁମ୍ନ ପ୍ରଜାପତି ଦକ୍ଷଙ୍କ ପ୍ରାୟ ଇହଲୋକରେ ମହତ୍ତ୍ୱକୁ ପ୍ରାପ୍ତ ହୋଇଥିଲେ ଏବଂ ପରଲୋକରେ ମଧ୍ୟ ପରମ ସିଦ୍ଧିକି ଲାଭ କରି ଅଛନ୍ତି ।୪୫।

ହେ ଧର୍ମଜ୍ଞ ସତ୍ତମ ମହାରାଜ ! ଏହି ପ୍ରଜାପାଳନ କେବଳ କ୍ଷତ୍ରିୟର ଧର୍ମ ଅଟେ । ଏତଦ୍‌ବ୍ୟତୀତ ଅନ୍ୟମାର୍ଗକୁ କୁପଥ ବୋଲି ଜାଣିବ । ଅନୁଜ ଅର୍ଜ୍ଜୁନର ହିତକର ବାକ୍ୟକୁ ରକ୍ଷାକର, ଆଉ ଶୋକ କର ନାହିଁ । ପ୍ରଜାପାଳନାର୍ଥେ ରାଜଦଣ୍ଡ ଧାରଣକରିବା କ୍ଷତ୍ରିୟର ଧର୍ମ ଅଟେ, ମସ୍ତକମୁଣ୍ଡନ ରାଜଧର୍ମ ନୁହେଁ ।୪୬।

———

## ଅଧ୍ୟାୟ—୨୪

ବୈଶମ୍ପାୟନ କହିଲେ—ଅନନ୍ତର ମହର୍ଷି କୃଷ୍ଣ ଦ୍ୱୈପାୟନ ଅଜାତ ଶତ୍ରୁ ଯୁଧିଷ୍ଠିରଙ୍କୁ ପୁନର୍ବାର କହିଲେ—ହେ ବତ୍ସ ଯୁଧିଷ୍ଠିର ! ଅରଣ୍ୟ ବାସ କାଳଠାରୁ ତୁମ୍ଭର ଏହି ମହାରଥ ମନସ୍ୱୀ ଭ୍ରାତାମାନଙ୍କର ଯେଉଁସବୁ ମନୋରଥ ଅଛି, ତାହା ବର୍ତ୍ତମାନ ତୁମ୍ଭର ସଫଳ କରିବା କର୍ତ୍ତବ୍ୟ । ଅତଏବ ହେ ପାର୍ଥ ! ତୁମ୍ଭେ ନହୁଷାତ୍ମଜ ଯଯାତିଙ୍କ ପ୍ରାୟ ପୃଥିବୀ ପାଳନ କର ।୩।

ପୂର୍ବେ ତୁମ୍ଭେମାନେ ତପସ୍ୟାରତ ହୋଇ ଅରଣ୍ୟରେ ବାସ କରି କେବଳ ଦୁଃଖଭୋଗ କରିଅଛ, ବର୍ତ୍ତମାନ ସେହି ଦୁଃଖର ଅବସାନ ହୋଇଅଛି । ଅତଏବ କିଛୁଦିନ ସୁଖ ଭୋଗକର ।୪।

ହେ ଭରତ ! ତୁମ୍ଭେ ବର୍ତ୍ତମାନ ଭ୍ରାତୃଗଣଙ୍କ ସହିତ କିୟତ୍‌କାଳ ନିମିତ୍ତ ଧର୍ମ, ଅର୍ଥ, କାମର ସେବାକର, ପରେ ବନକୁ ଗମନ କରିବ ।୫।

ଅଗ୍ରେ ଦେବ, ପିତୃ ଓ ପ୍ରାର୍ଥିମାନଙ୍କର ଋଣକୁ ପରିଶୋଧ କରି, ପଶ୍ଚାତ୍ ବାନପ୍ରସ୍ଥ ପ୍ରଭୃତି ଆଶ୍ରମ ଧର୍ମରେ ପ୍ରବୃତ୍ତ ହେବ ।୬।

ହେ କୁରୁନନ୍ଦନ ! ସର୍ବମେଧ ଓ ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ କର, ତାହାହେଲେ ପରିଶେଷରେ ପରମ ଗତିକି ପ୍ରାପ୍ତ ହେବ ।୭।

ତୁମ୍ଭର ଏହି ଭ୍ରାତୃଗଣଙ୍କୁ ବହୁ ଦକ୍ଷିଣାଯୁକ୍ତ ଯଜ୍ଞରେ ଦୀକ୍ଷିତ କର, ତାହାହେଲେ ଇହଲୋକରେ ମଧ୍ୟ ଅପରିସୀମ କୀର୍ତ୍ତିକି ଲାଭ କରି ପାରିବ ।୮।

ହେ ପୁରୁଷ ଶ୍ରେଷ୍ଠ ! ଯେଉଁ କାର୍ଯ୍ୟ କଲେ ତୁମ୍ଭେ କଦାପି ଧର୍ମରୁ ବିଚ୍ୟୁତ ହେବ ନାହିଁ, ତଦ୍ୱିଷୟକ ବାକ୍ୟ କହୁଅଛୁଁ ଶ୍ରବଣ କର ।୯।

ଯେଉଁମାନେ ପରସ୍ୱାପହାରୀ ଦସ୍ୟୁଙ୍କ ସଦୃଶ ମନୁଷ୍ୟ ଅଟନ୍ତି, ସେମାନେ ମଧ୍ୟ ନରପତିମାନଙ୍କୁ ଯୁଦ୍ଧାଦି କାର୍ଯ୍ୟରେ ନିଯୁକ୍ତ କରିବାର ବ୍ୟବସ୍ଥା ପ୍ରଦାନ କରନ୍ତି ।୧୦।

ଯେଉଁ ରାଜା ଶାସ୍ତ୍ରଜନିତ ବୁଦ୍ଧିକି ଅବଲମ୍ବନପୂର୍ବକ ଦେଶ କାଳକୁ ପ୍ରତୀକ୍ଷା କରି ଦସ୍ୟୁମାନଙ୍କୁ ସୁଦ୍ଧା କ୍ଷମା ଦିଅନ୍ତି, ସେହି ରାଜା କଦାପି ପାପରେ ଲିପ୍ତ ହୁଅନ୍ତି ନାହିଁ ।୧୧।

ଯେଉଁ ରାଜା ରାଜସ୍ୱ ଷଡ଼୍‌ଭାଗକୁ ଗ୍ରହଣ କରି ସୁଦ୍ଧା ଯଥାବିଧି ରାଜ୍ୟରକ୍ଷା ନ କରନ୍ତି । ସେ ପ୍ରଜାମାନଙ୍କ ପାପର ଚତୁର୍ଥାଂଶକୁ ଗ୍ରହଣ କରନ୍ତି ।୧୨।

ନରପତି ଶାସ୍ତ୍ରୋଲ୍ଲଂଘନପୂର୍ବକ ଆଚରଣ କଲେ ଧର୍ମଭ୍ରଷ୍ଟ ହୁଅନ୍ତି ଏବଂ ଶାସ୍ତ୍ରାନୁଯାୟୀ କାର୍ଯ୍ୟ କଲେ ନିର୍ଭୟରେ କାଳ ହରଣ କରି ପାରନ୍ତି ।୧୩।

ଯେଉଁ ରାଜା ଶାସ୍ତ୍ରଜନିତ ବୁଦ୍ଧିକି ଅବଲମ୍ବନ କରି କାମ ଓ କ୍ରୋଧକୁ ପରିତ୍ୟାଗପୂର୍ବକ ପିତା ସଦୃଶ ନିରପେକ୍ଷଭାବରେ ପ୍ରଜାପାଳନ କରନ୍ତି ସେ କଦାଚ ପାପରେ ଲିପ୍ତ ହୁଅନ୍ତି ନାହିଁ ।୧୪।

ନରପତି ଯଦି ଉପସ୍ଥିତ କାର୍ଯ୍ୟ ସମ୍ପନ୍ନରେ ଦୈବକର୍ତ୍ତୃକ ପ୍ରତିହତ ହୋଇ କୌଣସି କାର୍ଯ୍ୟ କରି ପାରନ୍ତି ନାହିଁ, ତାହାହେଲେ ସେହି ରାଜାଙ୍କୁ କାର୍ଯ୍ୟାତିକ୍ରମକାରୀ ବୋଲି ନିର୍ଦ୍ଦେଶ କରାଯାଇ ପାରେ ନାହିଁ ।୧୫। .

ବଳ ବା ବୁଦ୍ଧି କୌଶଳଦ୍ୱାରା ଶତ୍ରୁମାନଙ୍କୁ ନିଗୃହୀତ କରିବା କର୍ତ୍ତବ୍ୟ, ରାଷ୍ଟ୍ର ମଧ୍ୟରେ ପାପର ସଞ୍ଚାରକୁ ବାଧାଦେବା କର୍ତ୍ତବ୍ୟ, ସର୍ବଦା ଯଦ୍ୱାରା ପୁଣ୍ୟ ସ୍ରୋତ ପ୍ରବାହିତ ହୁଏ, ତଦ୍ୱିଷୟରେ ଯତ୍ନଶୀଳ ହେବା ଉଚିତ ।୧୬।

ହେ ଯୁଧିଷ୍ଠିର ! ବୀର ପୁରୁଷ, ସତ୍କର୍ମଶାଳୀ ସାଧୁ ବିଦ୍ୱାନ ପୁରୁଷ, ବୈଦିକ କର୍ମକାଣ୍ଡାଭିଜ୍ଞ ବ୍ରାହ୍ମଣ ଓ ଧନୀ ବୈଶ୍ୟ ଏମାନଙ୍କୁ ବିଶେଷ ଯତ୍ନପୂର୍ବକ ପାଳନକରିବା କର୍ତ୍ତବ୍ୟ ।୧୭।

ବ୍ୟବହାର ବା ଧର୍ମକାର୍ଯ୍ୟରେ ବହୁଦର୍ଶୀ ବ୍ୟକ୍ତିଙ୍କୁ ନିଯୁକ୍ତ କରିବା ଉଚିତ, କିନ୍ତୁ ଗୁଣଯୁକ୍ତ ଓ ବିଚକ୍ଷଣ ହେଲେହେଁ ଏକମାତ୍ର ବ୍ୟକ୍ତି ପ୍ରତି ସମ୍ପୂର୍ଣ୍ଣ ବିଶ୍ୱାସ କରି କାର୍ଯ୍ୟ କରିବା କର୍ତ୍ତବ୍ୟ ନୁହେଁ ।୧୮।

ଯେଉଁ ରାଜା ଅସୂୟା ପରବଶ, ଗର୍ବିତ, ଅଭିମାନୀ ଓ ଦୁର୍ବିନୀତ ହୋଇ ଧର୍ମାନୁସାରେ ପ୍ରଜାପାଳନ କରନ୍ତି ନାହିଁ ସେ ଘୋରତର ପାପରେ ଲିପ୍ତ ହୁଅନ୍ତି ଏବଂ ଲୋକସମାଜରେ ଦୁର୍ଦ୍ଦାନ୍ତ ବୋଲି କଥିତ ହୁଅନ୍ତି ।୧୯।

ହେ ନୃପ ! ଯେଉଁ ସ୍ଥଳରେ ପ୍ରଜାମାନେ ଯଥୋଚିତଭାବରେ ରକ୍ଷିତ ନ ହୋଇ ଦୈବ ପ୍ରତିକୂଳତାବଶତଃ ଅର୍ଥାତ୍ ଅନାବୃଷ୍ଟି ପ୍ରଭୃତି ବିବିଧ ଉପଦ୍ରବଦ୍ୱାରା ଅବସନ୍ନ ହୁଅନ୍ତି ଓ ତସ୍କରମାନଙ୍କ କର୍ତ୍ତୃକ ପ୍ରପୀଡ଼ିତ ହୁଅନ୍ତି, ସେହି ସ୍ଥଳରେ ଅନିଷ୍ଟଜନିତ ପାପ ସମସ୍ତ ରାଜାଙ୍କୁ ସ୍ପର୍ଶକରେ ।୨୦।

ହେ ଯୁଧିଷ୍ଠିର ! ସୁମନ୍ତ୍ରଣା ସୁନୀତି ଅବଲମ୍ବନପୂର୍ବକ ସର୍ବତୋଭାବରେ ବିଚାର କରି ପୁରୁଷକାର ସହିତ କାର୍ଯ୍ୟ କଲେ କଦାପି ଅଧର୍ମର ସଞ୍ଚାର ହୁଏନାହିଁ ।୨୧।

ଅନୁଷ୍ଠିତ କର୍ମ ସିଦ୍ଧ ହୋଇପାରେ । ଦୈବ ପ୍ରତିକୂଳତା ବଶତଃ ତାହା ଅସିଦ୍ଧ ମଧ୍ୟ ହୋଇପାରେ; କିନ୍ତୁ ପୁରୁଷକାରର ତ୍ରୁଟି ନ ହେଲେ ନରପତିଙ୍କୁ ପାପଗ୍ରସ୍ତ ହେବାକୁ ହୁଏନାହିଁ ।୨୨।

ହେ ମହାରାଜ ! ପୂର୍ବେ ଅକ୍ଲିଷ୍ଟ କର୍ମାଶୂର ରାଜର୍ଷି ହୟଗ୍ରୀବ ଯେପରି ସଂଗ୍ରାମସ୍ଥଳରେ ବହୁସଂଖ୍ୟକ ଶତ୍ରୁ ସଂହାର କରି ପରିଶେଷରେ ଅସହାୟ ହୋଇ ପ୍ରାଣତ୍ୟାଗ କରିଥିଲେ, ତାହା ଆମ୍ଭେ ତୁମ୍ଭଠାରେ ବର୍ଣ୍ଣନ କରୁଅଛୁଁ, ଶ୍ରବଣ କର ।୨୩।

ନରପତ ହୟଗ୍ରୀବ ଭୂର ଭୂର ସତ୍କାର୍ଯ୍ୟ କର ପରେ ପରେ ଯୁଦ୍ଧରେ ଜୀବନ ଉପସର୍ଜନପୂର୍ବକ ଉତ୍ତମ କୀର୍ତ୍ତିଲଭ କର ଅଛନ୍ତ ଓ ଚରକାଳନମିତ୍ତ ସ୍ୱର୍ଗଲୋକରେ ସୁଖାନୁଭବ କରୁଅଛନ୍ତ । ତାହାଙ୍କର କୃତକର୍ମ ସବୁ ଅବଗତ ହେଲେ ପ୍ରଜାପାଳନ ଓ ଶତ୍ରୁ ନଗ୍ରହର ଉତ୍କୃଷ୍ଟ ଉପାୟ ଜଣାଯାଏ ।୨୫।

ସତ୍କର୍ମ ପ୍ରଭାବରୁ ସିଦ୍ଧମନୋରଥ ହୟଗ୍ରୀବ କାଳକ୍ରମରେ ଦସ୍ୟୁଗଣକର୍ତ୍ତୃକ ଆକ୍ରାନ୍ତ ହୋଇ ଶସ୍ତ୍ରଗ୍ରହଣପୂର୍ବକ ଘୋରତର ଯୁଦ୍ଧ କରଥିଲେ ଏବଂ ଦସ୍ୟୁମାନଙ୍କର ଶସ୍ତ୍ର ପ୍ରହାର ଦ୍ୱାରା କ୍ଷତ ବକ୍ଷତ ହୋଇ କଳେବର ପରତ୍ୟାଗପୂର୍ବକ ସ୍ୱର୍ଗବାସ ଜନତ ସୁଖାନୁଭବ କରୁଅଛନ୍ତ ।୨୬।

ରାଜସିଂହ ତପସ୍ୱୀ ହୟଗ୍ରୀବ ସେହି ଯୁଦ୍ଧରୂପ ଯଜ୍ଞାଗ୍ନିରେ ବହୁସଂଖ୍ୟକ ଶତ୍ରୁମାନଙ୍କୁ ଆହୁତ ପ୍ରଦାନପୂର୍ବକ ପରଶେଷରେ ନଜର ପ୍ରାଣକୁ ତହିଁରେ ଆହୁତ ଦେଇ ଯଜ୍ଞ ସମାପ୍ତ କରଥିଲେ । ସେ ବର୍ତ୍ତମାନ ଦେବଲୋକରେ ସୁଖଭୋଗ କରୁଅଛନ୍ତ । ତାହାଙ୍କର ସେହି ଯଜ୍ଞରେ କାର୍ମ୍ମୁକ ଯୂପସ୍ୱରୂପ ଥିଲା, ଶରସବୁ ସ୍ରୁକସ୍ୱରୂପ, ଖଡ୍‌ଗସବୁ ସ୍ରୁବ ସ୍ୱରୂପ, ଦେହ କ୍ଷରତ ରୁଧର ରାଶି ହବମାୟୁ ଘୃତ ସ୍ୱରୂପ, ରଥ ବେଦୀ ସ୍ୱରୂପ, ଯୁଦ୍ଧ ମୂଳକ କ୍ରୋଧ, ଅଗ୍ନିସ୍ୱରୂପ ଏବଂ ଅଶ୍ୱ ଚତୁଷ୍ଟୟ ସେହି ଯଜ୍ଞରେ ଋତ୍ୱିକ୍ ହୋତ୍ର ସ୍ୱରୂପ ହୋଇଥିଲା ।୨୮।

ସେହି ଯଜ୍ଞଶୀଳ ମହାତ୍ମା ମନସ୍ୱୀ ହୟଗ୍ରୀବ ନୀତ ଓ ବୁଦ୍ଧି କୌଶଳ ଦ୍ୱାରା ରାଜ୍ୟପାଳନପୂର୍ବକ ସମସ୍ତଲୋକରେ କୀର୍ତ୍ତି ସଂସ୍ଥାପନ କର କଳେବର ପରତ୍ୟାଗ କରଥିଲେ । ସେ ବର୍ତ୍ତମାନ ଦେବଲୋକରେ ସୁଖାନୁଭବ କରୁଅଛନ୍ତ । ୨୯।

ସେହି ଧର୍ମ୍ମଶୀଳ ମହାତ୍ମା ହୟଗ୍ରୀବ ଯୋଗ ପ୍ରଭାବଦ୍ୱାରା ଦୈବୀ ଓ ମାନୁଷୀ ସିଦ୍ଧିକୁ ଲାଭକର ଦଣ୍ଡନୀତ ଅବଲମ୍ବନପୂର୍ବକ ପୃଥିବୀକୁ ପାଳନ କରଥିଲେ । ସେ ବର୍ତ୍ତମାନ ଦେବଲୋକରେ ସୁଖାନୁଭବ କରୁଅଛନ୍ତ ।୩୦।

ବଦାନ୍ୟ ତ୍ୟାଗୀ ରାଜା ହୟଗ୍ରୀବ ଯଥାବଧି ସମସ୍ତ ବେଦ ଓ ଶାସ୍ତ୍ରସବୁ ଅଧ୍ୟୟନ କର ଚତୁର୍ବର୍ଣ୍ଣ୍ୟ ପ୍ରଜାମାନଙ୍କୁ ସ୍ୱଧର୍ମ୍ମରେ ସଂସ୍ଥାପନ

କରି ଏବଂ ଶ୍ରଦ୍ଧା ଓ କୃତଜ୍ଞତାସହକାରେ କର୍ମାନୁଷ୍ଠାନ କରି ଜ୍ଞାନପ୍ରଭାବଦ୍ୱାରା ମେଧାବୀ ଓ ତତ୍ତ୍ୱଜ୍ଞ ପୁରୁଷମାନଙ୍କର ଗନ୍ତବ୍ୟ ଲୋକକୁ ଗମନପୂର୍ବକ ନିତ୍ୟ ସୁଖାନୁଭବ କରୁଅଛନ୍ତି ।୩୨।

ତାହାଙ୍କର ରାଜ୍ୟଥିବା ସମୟରେ ସେ ବହୁବାର ସଂଗ୍ରାମରେ ଜୟଲାଭ, ଯଜ୍ଞରେ ସୋମରସ ପାନ, ଉତ୍ତମ ବ୍ରାହ୍ମଣମାନଙ୍କର ତୃପ୍ତିସାଧନ ଏବଂ ଯୁକ୍ତ ବଳଦ୍ୱାରା ଦଣ୍ଡଧାରଣ କରି ପ୍ରଜାପାଳନ କରିଥିଲେ, ବର୍ତ୍ତମାନ ସେ ଦେବଲୋକରେ ସୁଖାନୁଭବ କରୁଅଛନ୍ତି ।୩୩।

ବିଦ୍ୱାନ ମନୁଷ୍ୟମାନେ ଅଦ୍ୟାପି ଯାହାଙ୍କର ଶ୍ଳାଘମୀୟ ଚରିତର ଭୂୟସୀ ପ୍ରଶଂସା କରନ୍ତି, ସେହି ମହାତ୍ମା ମହୀପାଳ ନିଜର କୀର୍ତ୍ତି ଓ ପୁଣ୍ୟ ପ୍ରଭାବଦ୍ୱାରା ସିଦ୍ଧିଲାଭ କରି ଓ ସ୍ୱର୍ଗରାଜ୍ୟକୁ ଜୟକରି ତତ୍ପରେ ବୀରଲୋକରେ ସୁଖାନୁଭବ କରୁଅଛନ୍ତି ।୩୪।

---

## ଅଧ୍ୟାୟ-୨୫

ବୈଶମ୍ପାୟନ କହିଲେ—କୁନ୍ତୀପୁତ୍ର ଯୁଧିଷ୍ଠିର ଅର୍ଜୁନକୁ କୁପିତ ହେବାର ଅବଲୋକନ କରି ଏବଂ ଦ୍ୱୈପାୟନ ଋଷିଙ୍କର ବାକ୍ୟକୁ ଶ୍ରବଣ କରି ମହର୍ଷି ଦ୍ୱୈପାୟନଙ୍କୁ ସମ୍ବୋଧନପୂର୍ବକ କହିଲେ ।୧।

ଯୁଧିଷ୍ଠିର କହିଲେ—ହେ ମୁନେ ! ଆମ୍ଭର ଚିତ୍ତ ବର୍ତ୍ତମାନ ଅତ୍ୟନ୍ତ ଶୋକରେ ଜଡ଼ୀଭୂତ ହୋଇଅଛି । ଅତଏବ ଏହି ସମଗ୍ର ପୃଥିବୀ ରାଜ୍ୟ ଓ ବିବିଧ ଭୋଗ୍ୟ ବସ୍ତୁଦ୍ୱାରା ଆମ୍ଭର ତୃପ୍ତି ହେଉନାହିଁ । ବୀରପତିବିହୀନ ଓ ପୁତ୍ରବିହୀନ ରମଣୀମାନଙ୍କର ବିଳାପ ଶ୍ରବଣ କରି ଆମ୍ଭେ କୌଣସି ଉପାୟରେ ସୁଦ୍ଧା ଚିତ୍ତରେ ଶାନ୍ତିଲାଭ କରିପାରୁ ନାହୁଁ ।୩।

ଯୁଧିଷ୍ଠିରଙ୍କର ଏହିପରି ବାକ୍ୟ ଶ୍ରବଣ କରି ଯୋଗଜ୍ଞ ଶ୍ରେଷ୍ଠ ଧର୍ମଜ୍ଞାନସମ୍ପନ୍ନ ବେଦପାରଗ ମହାପ୍ରାଜ୍ଞ ବ୍ୟାସଦେବ ତାହାଙ୍କୁ କହିଲେ ।୪।

ବ୍ୟାସ କହିଲେ—କୌଣସି କୌଣସି ବ୍ୟକ୍ତି କର୍ମ ବା ଯଜ୍ଞାନୁଷ୍ଠାନଦ୍ୱାରା କିଛି ଲାଭ କରିପାରେ ନାହିଁ ଏବଂ କୌଣସି ବ୍ୟକ୍ତି କାହାକୁ ସୁଦ୍ଧା ଦାନ କରିପାରେ ନାହିଁ । ବିଧାତା କାଳ ପର୍ଯ୍ୟାୟରେ

ଲୋକର ପ୍ରାପ୍ତି ବିଷୟର ବିଧାନ କରିଅଛନ୍ତି । ସେହି ବିଧିନିର୍ଦ୍ଦିଷ୍ଟ ସମୟାନୁସାରେ ମନୁଷ୍ୟ ସମସ୍ତ ବସ୍ତୁକୁ ଲାଭ କରେ ।୫।

ଅସମୟରେ କେହି ବିଦ୍ୟା ବା ବୁଦ୍ଧି ପ୍ରଭାବଦ୍ୱାରା ଅର୍ଥଲାଭ କରିବାକୁ ସମର୍ଥ ହୁଅନ୍ତି ନାହିଁ, ପୁନଶ୍ଚ ମୂର୍ଖ ମଧ୍ୟ ଅର୍ଥଲାଭରେ ସମର୍ଥ ହୁଏ, ଅତଏବ ସମସ୍ତ କାର୍ଯ୍ୟ କାଳାଧୀନ ବୋଲି ଜାଣିବ ।୬।

ଲୋକର ଦୁଃଖ ସମୟରେ, ବିଜ୍ଞାନ କି ମନ୍ତ୍ର କି ଔଷଧ ସବୁ ଉତ୍ତମ ଫଳ ପ୍ରଦାନ କରନ୍ତି ନାହିଁ । ପୁନଶ୍ଚ ଅଭ୍ୟୁଦୟ କାଳରେ ଏହି ସବୁ ମନ୍ତ୍ର ପ୍ରଭୃତିକୁ ପ୍ରୟୋଗ କଲେ ଏମାନେ କ୍ରମରେ ତେଜସ୍ମାନ୍ ହୋଇ ସିଦ୍ଧିପ୍ରଦ ହୁଅନ୍ତି ।୭।

କାଳ ସହିତ ବାୟୁ ପ୍ରଚଣ୍ଡବେଗରେ ପ୍ରବାହିତ ହୁଏ, ଜଳଧର ସବୁ ସଳିଳ ଭାରବନତ ହୁଏ, ସରୋବର ପଦ୍ମ ଓ ନୀଳପଦ୍ମ ସମାକୀର୍ଣ୍ଣ ହୁଏ ଏବଂ ବୃକ୍ଷସବୁ ପୁଷ୍ପ ନିଚୟରେ ସୁଶୋଭିତ ହୁଏ ।୮।

କାଳ ପର୍ଯ୍ୟାୟରେ ଚନ୍ଦ୍ରବିମ୍ବ ଷୋଡ଼ଶ କଳାରେ ପୂର୍ଣ୍ଣ ହୁଏ, କେତେବେଳେ ଅବା ବିମଳ ଜ୍ୟୋତ୍ସ୍ନାରେ ବିଭୂଷିତ ହୁଏ । କାଳର ମହାକାରିତାକୁ ପ୍ରାପ୍ତ ନ ହେଲେ ବୃକ୍ଷସବୁ ଫଳପୁଷ୍ପ ପ୍ରସବରେ ସମର୍ଥ ହୁଅନ୍ତି ନାହିଁ, ଏହି ନଦୀସବୁ ମଧ୍ୟ ବେଗରେ ପ୍ରବାହିତ ହୁଅନ୍ତି ନାହିଁ ।୯।

ହସ୍ତୀ ଓ ମୃଗ ପ୍ରଭୃତି ପଶୁ, ପନ୍ନଗ ଓ ବିହଙ୍ଗମମାନେ ଅସମୟରେ କଦାପି ସଂଯୋଗାଦି ସକାଶେ ମତ୍ତ ହୁଅନ୍ତି ନାହିଁ, ସ୍ତ୍ରୀମାନେ ମଧ୍ୟ ଅସମୟରେ ଗର୍ଭବତୀ ହୁଅନ୍ତି ନାହିଁ କିମ୍ବା ଶିଶିର, ବସନ୍ତ ଓ ଗ୍ରୀଷ୍ମ ଋତୁମାନେ ମଧ୍ୟ ଅସମୟରେ ପ୍ରାଦୁର୍ଭୂତ ହୁଅନ୍ତି ନାହିଁ ।୧୦।

ଜୀବର ଜନ୍ମ-ମୃତ୍ୟୁ ବାଳକମାନଙ୍କର ପ୍ରଥମ ଦାନ୍ତ ନିଷ୍ପତ୍ତି, ଯୌବନାଗମ, ସମାରୋପିତ ବୀଜର ଅଙ୍କୁରୋଦ୍‌ଗମ, ମହତିମାଳୀ ସୂର୍ଯ୍ୟଙ୍କର ଉଦୟ ଓ ଅସ୍ତାଚଳ ଗମନ, ଶୀତ ରଶ୍ମି ଚନ୍ଦ୍ରମା ଓ ମହୋର୍ମିମାଳୀ ସାଗରର ହ୍ରାସ ବୃଦ୍ଧି ଏ ସବୁ କାଳପ୍ରାପ୍ତ ନ ହେଲେ କଦାପି ହୁଏ ନାହିଁ ।୧୨।

ହେ ଯୁଧିଷ୍ଠିର ! ନରପତି ସେନଜିତ ଦୁଃଖାର୍ତ୍ତ ହୋଇ ଯାହା କହିଥିଲେ, ଲୋକମାନେ ଅଦ୍ୟାପି ସେହି ପୁରାତନ ଇତିହାସକୁ କୀର୍ତ୍ତନ କରନ୍ତି, ଆମ୍ଭେ ତାହା କହୁଅଛୁଁ, ଶ୍ରବଣ କର ।୧୩।

ଏହି ଦୁଃସହକାଳର ଗତି ମରଣ ଧର୍ମ ସମସ୍ତ ଜୀବକୁ ସ୍ପର୍ଶକରେ, ପୃଥିବୀର ସମସ୍ତ ବସ୍ତୁ କାଳପକ୍ୱ ହୋଇ ପ୍ରନଷ୍ଟ ହୁଅନ୍ତି ।୧୫।

ହେ ରାଜନ ! କୌଣସି ଏକ ବ୍ୟକ୍ତି ଅପର ଏକ ବ୍ୟକ୍ତିକୁ ନିହତ କରେ, ପୁନର୍ବାର କାଳକ୍ରମରେ ସେ ମଧ୍ୟ ଅର୍ଥାତ୍ ହନ୍ତା ମଧ୍ୟ ଅନ୍ୟ କର୍ତ୍ତୃକ ନିହତ ହୁଏ । ପରନ୍ତୁ ଏହା କେବଳ ବ୍ୟାବହାରିକ କଥା ମାତ୍ର । ପ୍ରକୃତରେ କେହି କାହାକୁ ନିହତ କରେ ନାହିଁ କିମ୍ବା କେହି କାହା ଦ୍ୱାରା ନିହତ ହୁଏନାହିଁ ।୧୬।

କେହି କେହି ଏପରି ମନେ କରନ୍ତି ଯେ "ଅମୁକ ବ୍ୟକ୍ତି ଅମୁକକୁ ବିନଷ୍ଟ କଲା" ପର ଅପର ବୁଦ୍ଧିମାନ ବ୍ୟକ୍ତି ଏହିପରି ମନେ କରନ୍ତି ଯେ ଏହି ଜଗତରେ କେହି କାହାର ହନ୍ତା ନୁହେଁ, କିନ୍ତୁ ସ୍ୱଭାବ ପ୍ରାଣିମାନଙ୍କ ଜନ୍ମମୃତ୍ୟୁର କାରଣ ଅଟେ ।୧୭।

ମୂଢ଼ ଲୋକମାନେ ଧନକ୍ଷୟ, ବା ପିତା କିମ୍ବା ମାତା କିମ୍ବା ପୁତ୍ର କନ୍ୟାଦିମାନଙ୍କର ମୃତ୍ୟୁ ହେଲେ "ଅହୋ କି ଦୁଃଖ" ହାୟ କି କଷ୍ଟ ! ଏପରି ଅନୁଧ୍ୟାନ କରନ୍ତି ଏବଂ ପୂର୍ବ ଦୁଃଖକୁ କେବଳ ପୁଷ୍ଟି କରନ୍ତି, ଅତଏବ ତୁମ୍ଭେ କି ନିମିତ୍ତ ମରଣ ଧର୍ମଶୀଳ କୌରବ ଓ ପାଞ୍ଚାଳ ପ୍ରଭୃତି ଯୁଦ୍ଧମୃତ ବ୍ୟକ୍ତିମାନଙ୍କ ସକାଶେ ଅନୁତାପ କରୁଅଛ ? ବିବେଚନା କରି ଦେଖ, ଭୟ କିମ୍ବା ଦୁଃଖକୁ ଯେତେ ଆଲୋଚନା କରିବ, ତାହାର ସେତେ ପରିମାଣରେ ଉତ୍ତରୋତ୍ତର ବୃଦ୍ଧି ହେବ ।୧୮।

ଏହି ଶରୀର କିମ୍ବା ପୃଥିବୀର ସମସ୍ତ ବସ୍ତୁ ମଧ୍ୟରୁ ଆମ୍ଭର କିଛି ନୁହେଁ ଅଥବା ଏ ସବୁ ଆମ୍ଭର ଯେପରି, ଅନ୍ୟର ମଧ୍ୟ ସେହିପରି । ପଣ୍ଡିତମାନେ ଜ୍ଞାନଦ୍ୱାରା ଏହିପରି ଆଲୋଚନା କରି କୌଣସି ବସ୍ତୁରେ ମୁଗ୍ଧ ମୋହିତ ହୁଅନ୍ତି ନାହିଁ ।୧୯।

ଏହି ପୃଥିବୀରେ ମୂଢ଼ମାନେ ପ୍ରତିଦିନ ସହସ୍ର ସହସ୍ର ଶୋକ ଓ ସହସ୍ର ସହସ୍ର ହର୍ଷାଦି ବିଷୟରେ ବିମୋହିତ ହୁଅନ୍ତି; କିନ୍ତୁ ପଣ୍ଡିତମାନେ ଏଥିରେ ମୋହିତ ହୁଅନ୍ତି ନାହିଁ ।୨୦।

ଏହିସବୁ ହର୍ଷାଦି ବିଷୟ କାଳକ୍ରମରେ କେତେବେଳେ ପ୍ରିୟ ଏବଂ କେତେବେଳେ ଅବା ଅପ୍ରିୟରୂପରେ ପ୍ରତିଭାତ ହୁଏ, ଏହିସବୁ ବିଷୟ ସୁଖ ଓ ଦୁଃଖରୂପରେ ପରିଣତ ହୋଇ କାଳର ଗତି ଅନୁସାରେ ସମସ୍ତ ଜୀବଲୋକ ମଧ୍ୟରେ ପରିବର୍ତ୍ତିତ ହେଉଅଛି ।୨୧।

ମୂଢ଼ ଲୋକର ଆଶା ଭଙ୍ଗ ହେଲେ ଦୁଃଖ ହୁଏ ଏବଂ ଅଭିଲଷିତ ବସ୍ତୁର ପ୍ରାପ୍ତି ହେଲେ ସୁଖୋଦୟ ହୁଏ । ପ୍ରକୃତରେ ଏହି ସଂସାର କେବଳ ଦୁଃଖର ଆକାର ଅଟେ । ଏଥିରେ ପ୍ରକୃତ ସୁଖ କିଛି ନାହିଁ, ଏହି ନିମିତ୍ତ ପ୍ରାୟ ଦୁଃଖର ଉପଲବ୍ଧି ହୋଇଥାଏ ।୨୨।

ସଂସାରାସକ୍ତ ଜୀବର ଦୁଃଖାନ୍ତରେ ସୁଖ ହୁଏ ଏବଂ ସୁଖାନ୍ତରେ ଦୁଃଖର ଉପସ୍ଥିତି ହୁଏ । ଏହି ଜୀବମାନଙ୍କର ସର୍ବଦା ସୁଖ କିମ୍ବା ସର୍ବଦା ଦୁଃଖ ହୁଏ ନାହିଁ ।୨୩।

ଏହି ପ୍ରକାରେ କେତେବେଳେ ଦୁଃଖାବସାନରେ ସୁଖ ହୁଏ ଏବଂ ସୁଖାବସାନରେ ଦୁଃଖ ହୁଏ । ଅତଏବ ଯେ ଶାଶ୍ୱତ ସୁଖର ଅଭିଳାଷୀ ହେବେ, ତାହାଙ୍କର ଏହି ଅନିତ୍ୟ ସୁଖ ଓ ଦୁଃଖକୁ ପରିତ୍ୟାଗ କରିବା କର୍ତ୍ତବ୍ୟ ।୨୪।

ଯେଉଁ କାରଣରୁ ଦୁଃଖଜନକ ଶୋକ ଓ ସନ୍ତାପ ପ୍ରଭୃତି ନାନା ପ୍ରକାର କ୍ଲେଶ ଉପସ୍ଥିତ ହୁଏ, ତାହାର ଏକାଙ୍ଗକୁ ସୁଦ୍ଧା ଅନ୍ତଃକରଣରେ ସ୍ଥାନଦେବା ଉଚିତ ନୁହେଁ ।୨୫।

ସୁଖ ବା ଦୁଃଖ ପ୍ରିୟ କିମ୍ବା ଅପ୍ରିୟ, ଯେତେବେଳେ ଯାହା ଉପସ୍ଥିତ ହେବ, ଅନଭିଭୂତ ଚିତ୍ତରେ ତାହାକୁ ଭୋଗକରିବା ଉଚିତ ।୨୬।

ସ୍ତ୍ରୀ ଓ ପୁତ୍ରପ୍ରଭୃତି ସ୍ୱଜନମାନଙ୍କପ୍ରତି କିଞ୍ଚିନ୍ମାତ୍ର ପ୍ରିୟ କାର୍ଯ୍ୟ କରିବାରେ ତ୍ରୁଟି ହେଲେ ଜାଣିପାରିବ ଯେ କିଏ କି ନିମିତ୍ତ କାହାର ଆତ୍ମୀୟ କିମ୍ବା କିଏ କିପରି କାହାର ଅତ୍ମୀୟ ଅଟେ ।୨୭।

ଏହି ପୃଥିବୀରେ ଯେଉଁମାନେ ନିତାନ୍ତ ମୂଢ଼ ଏବଂ ଯେଉଁମାନେ ପରମାତ୍ମଜ୍ଞାନକୁ ଲାଭ କରିଅଛନ୍ତି, ସେହି ଉଭୟ ସମ୍ପ୍ରଦାୟର ଲୋକମାନେ ସୁଖରେ କାଳହରଣ କରନ୍ତି; କିନ୍ତୁ ମଧ୍ୟବର୍ତ୍ତୀ ଅର୍ଥାତ୍ ଅର୍ଦ୍ଧ-ପ୍ରବୁଦ୍ଧ ବ୍ୟକ୍ତିମାନେ ନାନା କ୍ଲେଶରେ କ୍ଲିଷ୍ଟ ହୁଅନ୍ତି ।୨୮।

ହେ ଯୁଧିଷ୍ଠିର ! ଧର୍ମ, ସୁଖ ଓ ଦୁଃଖର କାରଣଜ୍ଞ ପରାପର-ବେତ୍ତା ମହାପ୍ରାଜ୍ଞ ନରପତି ସେନଜିତ ଏହିପରି କହିଥିଲେ ଯେ ଯେଉଁ ବ୍ୟକ୍ତି ସର୍ବଦା ପରଦୁଃଖରେ ଦୁଃଖୀ ହୁଅନ୍ତି, ସେ କଦାପି ସୁଖ ଲାଭରେ ସମର୍ଥ ହୁଅନ୍ତି ନାହିଁ । ଦୁଃଖର କ୍ଷୟ ନାହିଁ । କାଳର ଗତି ଅନୁସାରେ ସୁଖ, ଦୁଃଖ, ସମ୍ପଦ, ବିପଦ, ଲାଭ, ଅଲାଭ, ଜନ୍ମ ଓ ମୃତ୍ୟୁ ଏତତ୍ସମସ୍ତ

ଜୀବମାନଙ୍କର ଘଟିଥାଏ, ଅତଏବ ପଣ୍ଡିତ ବ୍ୟକ୍ତି ଏମାନଙ୍କରେ ହୃଷ୍ଟ କିମ୍ବା ଦୁଃଖିତ ହୁଅନ୍ତି ନାହିଁ ।୩୧।

ପଣ୍ଡିତମାନେ ରାଜାମାନଙ୍କର ସମର ଦୀକ୍ଷାକୁ ଯଜ୍ଞବୋଲି କହନ୍ତି । ଯୋଗଶାସ୍ତ୍ରର ଆଲୋଚନାକୁ ଯୋଗ ବୋଲି କହନ୍ତି । ଯଜ୍ଞରେ ଧନଦାନକୁ ସନ୍ନ୍ୟାସ ବୋଲି କୀର୍ତ୍ତନ କରନ୍ତି, ଅର୍ଥାତ୍ ଏହିସବୁ କାର୍ଯ୍ୟ-ଦ୍ୱାରା ସେମାନଙ୍କର ପବିତ୍ରତା ଲବ୍ଧହୁଏ ବୋଲି ଜାଣିବ ।୩୨।

ଯେ ମହାତ୍ମା ଦକ୍ଷଶୀଳ ନରପତି ବୁଦ୍ଧିପୂର୍ବକ ରାଜ୍ୟରକ୍ଷା, ସମସ୍ତ ଲୋକଙ୍କପ୍ରତି ସମଦୃଷ୍ଟି ସଂଗ୍ରାମରେ ଜୟଲାଭ, ଯଜ୍ଞରେ ସୋମରସ ପାନ, ଯୁକ୍ତି ଅନୁସାରେ ଦଣ୍ଡ ପ୍ରୟୋଗ, ଯଥାବିଧି ବେଦ ଓ ଶାସ୍ତ୍ରାଧ୍ୟୟନ, ଚତୁର୍ବର୍ଣ୍ଣ ପ୍ରଜାମାନଙ୍କୁ ସ୍ୱଧର୍ମରେ ସଂସ୍ଥାପନ ଓ ସେମାନଙ୍କର ସୁଖ-ସମୃଦ୍ଧିର ଉନ୍ନତିସାଧନ କରି ପରିଶେଷରେ ଯୁଦ୍ଧରେ ଦେହତ୍ୟାଗ କରନ୍ତି ସେ ନିଷ୍ପାପ ଦେବଲୋକଙ୍କ ସହିତ ପରମ ସୁଖରେ ସ୍ୱର୍ଗଭୋଗ କରନ୍ତି ।୩୫।

ଯେଉଁ ରାଜା ପରଲୋକକୁ ଗମନ କଲେ, ପୌର ଓ ଜନପଦବାସୀ ପ୍ରଜା ଓ ଅମାତ୍ୟବର୍ଗ ତାହାଙ୍କର ପ୍ରଶଂସା କରନ୍ତି, ସେହି ରାଜାଙ୍କୁ ରାଜସତ୍ତମ ବୋଲି ଜାଣିବ ।୩୬।

---

## ଅଧ୍ୟାୟ-୨୬

ବୈଶମ୍ପାୟନ କହିଲେ—ତତ୍କାଳରେ ଉଦାରଧୀ ନରପତି ଯୁଧିଷ୍ଠିର ଧନଞ୍ଜୟଙ୍କୁ ଏହିପରି ଯୁକ୍ତିଯୁକ୍ତ ବାକ୍ୟ କହିଲେ—ହେ ଅର୍ଜ୍ଜୁନ, ତୁମ୍ଭେ ଯେ ଧନ ଅପେକ୍ଷା ଆଉ କିଛି ଶ୍ରେଷ୍ଠ ନାହିଁ ଏବଂ ନିର୍ଦ୍ଧନ ଲୋକର ସ୍ୱର୍ଗସୁଖ କିମ୍ବା ଅର୍ଥଲାଭ ହୁଏନାହିଁ ବୋଲି ମନେ କରୁଅଛ ତାହା ତୁମ୍ଭର ଭ୍ରାନ୍ତି ମାତ୍ର । ଏହି ପୃଥିବୀରେ ଅନେକ ମୁନି ତପଃ ପ୍ରଭାବରୁ ସନାତନ ଲୋକକୁ ଗମନ କରିଅଛନ୍ତି ଏବଂ ଅନେକଙ୍କୁ କେବଳ ସ୍ୱାଧ୍ୟାୟରୂପରେ ଯଜ୍ଞଦ୍ୱାରା ସିଦ୍ଧିଲାଭ କରିବାର ମଧ୍ୟ ଦେଖାଯାଇ ଅଛି ।୩।

(ଚତୁର୍ଥ ଶ୍ଳୋକ ପତିତ ହୋଇଛି) ଚତୁର୍ଥ ଶ୍ଳୋକ—ଯେଉଁମାନେ ଅଧ୍ୟୟନ ସମ୍ପ୍ରଦାୟର ଅବିଚ୍ଛେଦରୂପ ସମୟକୁ ଅବଲମ୍ବନ କରି ଅର୍ଥାତ୍

ବ୍ରହ୍ମସ୍ବର୍ଗ ହୋଇ ଧର୍ମ ପାଳନ କରନ୍ତି ସେମାନଙ୍କୁ ଧର୍ମଜ୍ଞ ଦେବତାମାନେ ବ୍ରାହ୍ମଣ ବୋଲି କହନ୍ତି । ହେ ଧନଞ୍ଜୟ ! ତୁମ୍ଭେ ସ୍ବାଧ୍ୟାୟନିଷ୍ଠ ଓ ଜ୍ଞାନନିଷ୍ଠ ଋଷିମାନଙ୍କୁ ପ୍ରକୃତ ଧାର୍ମିକ ବୋଲି ଜାଣିବ ଏବଂ ଜ୍ଞାନନିଷ୍ଠ ବ୍ୟକ୍ତିମାନଙ୍କର ଉପଦେଶାନୁସାରେ ସମସ୍ତ କାର୍ଯ୍ୟଅନୁଷ୍ଠାନ କରିବା କର୍ତ୍ତବ୍ୟ । ବୈଖାନସମାନଙ୍କର ବିଷୟ ମଧ୍ୟ ଆମ୍ଭେମାନେ ଜାଣୁ ଯେ ଅଜ, ପୃଶ୍ନି, ସିକତ, ଅରୁଣ ଓ କେତୁ ପ୍ରଭୃତି ବାନପ୍ରସ୍ଥ ଋଷିମାନେ କେବଳ ସ୍ବାଧ୍ୟାୟ ପ୍ରଭାବରେ ସ୍ବର୍ଗକୁ ଗମନ କରିଅଛନ୍ତି ।୭।

ଆଉ ଯେଉଁମାନେ ବେଦୋକ୍ତ, ଯଜ୍ଞ, ଦାନ, ଅଧ୍ୟୟନ, ଓ ଦୁଷ୍କର ଇନ୍ଦ୍ରିୟ ନିଗ୍ରହାଦି କାର୍ଯ୍ୟର ଅନୁଷ୍ଠାନରେ ନିରତ ଥାଆନ୍ତି, ସେମାନେ ସୂର୍ଯ୍ୟଙ୍କର ଦକ୍ଷିଣ ପଥକୁ ଆଶ୍ରୟ କରି ସ୍ବର୍ଗକୁ ଗମନ କରନ୍ତି । କର୍ମପରାୟଣ ମନୁଷ୍ୟମାନଙ୍କର ଯେ ଏହିପରି ଗତି ନିର୍ଦ୍ଦିଷ୍ଟ ଅଛି ତାହା ଆମ୍ଭେ ତୁମ୍ଭଙ୍କୁ ପୂର୍ବରୁ କହିଅଛୁଁ ।୯।

ଆଉ ଯାହାକୁ ଉତ୍ତର ପଥ ବୋଲି ଅବଗତ ଅଛ ତାହାକୁ ଅବଲମ୍ବନପୂର୍ବକ ଯୋଗୀମାନେ ନିୟମାଦି ଯୋଗପ୍ରଭାବଦ୍ୱାରା ସେହି ଜ୍ୟୋତିର୍ମୟ ସନାତନ ଲୋକକୁ ଗମନ କରନ୍ତି । ଏହି ହେତୁରୁ ପୂର୍ବାଚାର୍ଯ୍ୟମାନେ ଉତ୍ତର ପଥର ପ୍ରଶଂସା କରନ୍ତି । ସନ୍ତୋଷ କେବଳ ଉତ୍କୃଷ୍ଟ ସ୍ବର୍ଗ ଓ ପରମ ସୁଖ ।୧୧।

ସନ୍ତୋଷ ଅପେକ୍ଷା ଅନ୍ୟ କିଛି ଶ୍ରେଷ୍ଠ ନାହିଁ । କ୍ରୋଧ ଓ ହର୍ଷ-ବିହୀନ ଯୋଗୀଙ୍କର ସନ୍ତୋଷ କେବଳ ପରମ ପ୍ରତିଷ୍ଠା ଓ ଉତ୍ତମ ସିଦ୍ଧି-ସ୍ବରୂପ ।୧୨।

ଏ ବିଷୟରେ ରାଜର୍ଷି ଯଯାତିଙ୍କ କଥିତ ଗୋଟିଏ ପୁରାତନ ଇତିହାସ ଅଛି ଶ୍ରବଣ କର । ଯାହାକୁ ଶ୍ରବଣ କଲେ ସମସ୍ତ ବାସନା, କୂର୍ମାଙ୍ଗପ୍ରାୟ, ଅନ୍ତର ମଧ୍ୟରେ ବିଲୀନ ହୋଇଯାଏ ।୧୩।

ଯେତେବେଳେ ଯୋଗୀପୁରୁଷ ଏହି ଜଗତର ଅନ୍ୟ କୌଣସି ଜୀବଠାରୁ ଭୟ କରନ୍ତି ନାହିଁ କିମ୍ବା ସେହି ଯୋଗୀପୁରୁଷଙ୍କଠାରୁ ମଧ୍ୟ କୌଣସି ବ୍ୟକ୍ତି ଭୟ କରନ୍ତି ନାହିଁ ଏବଂ ଯେତେବେଳେ ଉକ୍ତ ଯୋଗୀ-ପୁରୁଷ କୌଣସି ବସ୍ତୁରେ ସୁଦ୍ଧା ଇଚ୍ଛା ବା ଦ୍ୱେଷଭାବ ପ୍ରକାଶ କରନ୍ତି ନାହିଁ, ତେତେବେଳେ ସେହି ପୁରୁଷଙ୍କର ବ୍ରହ୍ମପ୍ରାପ୍ତି ହୁଏ । ୪।

ଅପିଚ ଯେତେବେଳେ ଯେ ବାକ୍ୟ ମନ କିମ୍ବା କାର୍ଯ୍ୟଦ୍ୱାରା ପ୍ରାଣିମାନଙ୍କର ଅନିଷ୍ଟ ଚିନ୍ତାରେ ପ୍ରବୃତ୍ତ ନ ହୁଅନ୍ତି, ତେତେବେଳେ ସେ ନିଷ୍କ୍ରିୟ ବ୍ରହ୍ମସ୍ୱରୂପକୁ ଲାଭ କରନ୍ତି ।୧୫।

ଯାହାଙ୍କର ଅଭିମାନ ଏବଂ ମୋହ ତିରୋହିତ ହୋଇଅଛି, ସେହି ବନ୍ଧୁ ସଂବର୍ଜିତ ଆତ୍ମଜ୍ଞାନସମ୍ପନ୍ନ ସାଧୁଙ୍କର ନିର୍ବାଣ ମୁକ୍ତିଲାଭ ହୁଏ ।୧୬।

ହେ ଧନଞ୍ଜୟ ! ଆଉ ଗୋଟିଏ କଥା କହୁଅଛି, ସଯତଚିତ୍ତ ହୋଇ ଶ୍ରବଣ କର । ଏହି ଜଗତରେ କେହି ଧର୍ମ କେହି ଧନ କିମ୍ବା କେହି ସଦାଚାରର ଆକାଙ୍କ୍ଷା କରନ୍ତି; କିନ୍ତୁ ଧନ ଯାଚଜ୍ଞା କରି ଧର୍ମୋପାର୍ଜ୍ଜନରେ ଚେଷ୍ଟା କରିବା ଅପେକ୍ଷା, ଉକ୍ତ ଧର୍ମର ଅନୁଷ୍ଠାନ ନ କରିବା ଶ୍ରେୟସ୍କର । କାରଣ ଅର୍ଥରୁ ନାନା ପ୍ରକାର ଦୋଷ ସମୁତ୍ପନ୍ନ ହୁଏ, ସୁତରାଂ ତନ୍ମୂଳକ ଯଜ୍ଞାନୁଷ୍ଠାନାଦି ଧର୍ମ ମଧ୍ୟ ଭୂୟିଷ୍ଠ ଦୋଷଯୁକ୍ତ ଅଟେ ।୧୮।

ଏ ବିଷୟରେ ଆମ୍ଭେମାନେ ମଧ୍ୟ ପରୀକ୍ଷା କରି ଦେଖିଅଛୁ; ତୁମ୍ଭର ମଧ୍ୟ ଏହାକୁ ପରୀକ୍ଷା କରିବା କର୍ତ୍ତବ୍ୟ । ଯେଉଁମାନେ ଅର୍ଥକାଙ୍କ୍ଷୀ ସେମାନଙ୍କ ପକ୍ଷରେ ପରିତ୍ୟାଜ୍ୟ ବିଷୟକୁ ସୁଦ୍ଧା ପରିତ୍ୟାଗ କରିବା ଦୁଷ୍କର ହୁଏ ।୧୯।

ଆଉ ଯେଉଁମାନେ ଧନସମ୍ପନ୍ନ ବ୍ୟକ୍ତି, ସେମାନଙ୍କଦ୍ୱାରା ମଧ୍ୟ ସତ୍କର୍ମ ଅନୁଷ୍ଠିତ ହେବା ଦୁର୍ଲ୍ଲଭ ଅଟେ । କାରଣ ପରର ଅନିଷ୍ଟାଚରଣ ବ୍ୟତୀତ କଦାପି ଅର୍ଥୋପାର୍ଜ୍ଜନ ହୁଏ ନାହିଁ ଏବଂ ତାହା ପ୍ରାପ୍ତ ହେଲେ ମଧ୍ୟ ଚୌରାଦିଜନିତ ନାନା ପ୍ରକାର ଭୟ ହେବାର ସମ୍ଭାବନା ।୨୦।

ଅପିଚ ଦୁରାଚାର ଦସ୍ୟୁମାନେ ସ୍ନେହ ଓ ଭୟକୁ ପରିତ୍ୟାଗପୂର୍ବକ ଅଳ୍ପମାତ୍ର ଅର୍ଥନିମିତ୍ତ ଲୋକଙ୍କ ପ୍ରତି ବହୁବିଧ ଅତ୍ୟାଚାର କରନ୍ତି; କିନ୍ତୁ ତଦ୍ଦ୍ୱାରା ଯେ ସେମାନଙ୍କୁ ବ୍ରହ୍ମହତ୍ୟାଦି ପାପରେ ଲିପ୍ତ ହେବାକୁ ହୁଏ, ତାହା ସେମାନେ ଜାଣି ପାରନ୍ତି ।୨୧।

ଅର୍ଥାସକ୍ତ ପୁରୁଷମାନଙ୍କର ଏହି ଅର୍ଥ ଏତେ ପ୍ରିୟ ଯେ ସେମାନେ ଦୁର୍ଲ୍ଲଭ ଧନକୁ ପ୍ରାପ୍ତ ହୋଇ ଏବଂ ସ୍ୱକୀୟ ଭୃତ୍ୟବର୍ଗଙ୍କୁ ସେମାନଙ୍କର ପ୍ରାପ୍ୟ ପ୍ରଦାନ କରି ସୁଦ୍ଧା ଦସ୍ୟୁଗଣକର୍ତ୍ତୃକ ଅପହୃତ ହେଲେ ଲୋକେ ଯେପରି ସନ୍ତାପିତ ହୁଅନ୍ତି, ତଦ୍ରୂପ ସନ୍ତାପିତ ହୁଅନ୍ତି ପୁନର୍ବାର ଅର୍ଥ ନ

ଦେଲେଁ ସୁଦ୍ଧା ଭକ୍ତ ଭୃତ୍ୟବର୍ଗ ତାଦୃଶ ପ୍ରଭୁଙ୍କୁ ନିନ୍ଦା କରନ୍ତି । ଅଧନ ବ୍ୟକ୍ତିକୁ କେହି କିଛି କହି ପାରନ୍ତି ନାହିଁ । ମୁକ୍ତ ପୁରୁଷ ଯଦୃଚ୍ଛା ଲାଭଦ୍ୱାରା ଶରୀରଯାତ୍ରା ନିର୍ବାହ କରି ସର୍ବପ୍ରକାରେ ସୁଖୀ ହୁଅନ୍ତି; କିନ୍ତୁ ଧନଦ୍ୱାରା କେହି ସୁଖ ଲାଭ କରି ପାରନ୍ତି ନାହିଁ ।୨୩।

ପୁରାବିତ ପଣ୍ଡିତମାନେ ଯଜ୍ଞ ବିଷୟକୁ ମଧ୍ୟ ଯେପରି ସର୍ବତ୍ରାଦରେ କୀର୍ତ୍ତନ କରନ୍ତି, ତାହା କହୁଅଛୁଁ ଶ୍ରବଣ କର । ବିଧାତା ଯଜ୍ଞନିମିତ୍ତ ଅର୍ଥସବୁ ସୃଷ୍ଟି କରିଅଛନ୍ତି ଏବଂ ସେହି ଯଜ୍ଞର ଅନୁଷ୍ଠାନନିମିତ୍ତ ଏବଂ ତାହାକୁ ରକ୍ଷା କରିବା ସକାଶେ ପୁରୁଷ ସୃଷ୍ଟ ହୋଇ ଅଛନ୍ତି । ଅତଏବ ସମସ୍ତ ଧନକୁ ଯଜ୍ଞରେ ସମର୍ପଣ କରିବା କର୍ତ୍ତବ୍ୟ । ଅଭିଳାଷ ପୂରଣାର୍ଥ ଧନବ୍ୟୟ କରିବା ବିହିତ ନୁହେଁ ।୨୫।

ହେ କୌନ୍ତେୟ ! ବିଧାତା ମନୁଷ୍ୟମାନଙ୍କୁ ଯଜ୍ଞରେ ବ୍ୟୟ କରିବାନିମିତ୍ତ ଅର୍ଥପ୍ରଦାନ କରିଅଛନ୍ତି । ଅତଏବ, ହେ ଧନବତାମ୍ବର ! ତୁମ୍ଭର ଏହା ଜାଣିବା ଉଚିତ ।୨୬

ଏହିନିମିତ୍ତ ଜ୍ଞାନୀ ପୁରୁଷମାନେ ନିଶ୍ଚୟବୋଧ କରି ଅଛନ୍ତି ଯେ ଏହି ଜଗତରେ ଧନ କାହାର ନୁହେଁ, ଧନଦ୍ୱାରା ଶ୍ରଦ୍ଧାବାନ ହୋଇ ଯଜ୍ଞ ଓ ଦାନ କରିବା କର୍ତ୍ତବ୍ୟ ।୨୭।

ପଣ୍ଡିତମାନେ ଉପାର୍ଜ୍ଜିତ ଧନକୁ ଦାନ କରିବାନିମିତ୍ତ ଉପଦେଶ ଦେଇ ଅଛନ୍ତି । ଭୋଗ ବିଳାସ କିମ୍ବା ଅପବ୍ୟୟ କରିବାନିମିତ୍ତ ଉପଦେଶ ଦେଇ ନାହାନ୍ତି । ଦାନାଦି ସତ୍କାର୍ଯ୍ୟ ବର୍ତ୍ତମାନ ଥାଉଁ ଥାଉଁ ଅର୍ଥ ସଞ୍ଚୟ କରିବା ଉଚିତ ନୁହେଁ ।୨୮।

ପରନ୍ତୁ ଯେଉଁସବୁ ଅଳ୍ପମତି ମନୁଷ୍ୟ ଧର୍ମଭ୍ରଷ୍ଟ ବ୍ୟକ୍ତିମାନଙ୍କୁ ଧନ ଦାନ କରନ୍ତି, ସେମାନେ ପରଲୋକରେ ଶତବର୍ଷକାଳ ସର୍ବଦା ପୁରୀଷ ଭୋଗ କରନ୍ତି ।୨୯।

ଅପାତ୍ରରେ ଦାନ କରିବା କିମ୍ବା ସତ୍ପାତ୍ରରେ ଦାନ ନ କରିବା କେବଳ ଯୋଗ୍ୟାଯୋଗ୍ୟର ଅପରିଜ୍ଞାନ ହେତୁରୁ ଘଟିଥାଏ, ଅତଏବ ଦାନ ଧର୍ମକୁ ଲାଭ କରିବା ମଧ୍ୟ ଦୁଷ୍କର ।୩୦ ।

ଧନପ୍ରାପ୍ତ ହେଲେ ସୁଦ୍ଧା ତାହାକୁ ଅପାତ୍ରରେ ଦାନ କରିବା ଏବଂ ସତ୍ପାତ୍ରରେ ଦାନ ନ କରିବା, ଏହି ଦୁଇଟି କାର୍ଯ୍ୟକୁ ମହା ବ୍ୟତିକ୍ରମ ବୋଲି ଜାଣିବ ।୩୧।

---

## ଅଧ୍ୟାୟ--୨୭

ଯୁଧିଷ୍ଠିର କହିଲେ—ଅଭିମନ୍ୟୁ, ଯୁଧିଷ୍ଠିରଙ୍କର ପଞ୍ଚପୁତ୍ର, ମହାରଥ ଦ୍ରୁପଦ ବିରାଟ, ଧୃଷ୍ଟଦ୍ୟୁମ୍ନ, ଧର୍ମଜ୍ଞ ବସୁସେନ, ନରପତି ଧୃଷ୍ଟକେତୁ, ଏବଂ ଅନ୍ୟାନ୍ୟ ନାନାଦେଶୀୟ ନରେନ୍ଦ୍ରମାନେ ଯୁଦ୍ଧରେ ନିହତ ହେବାରୁ ଆମ୍ଭେ ଅତିଶୟ ଶୋକାତୁର ହୋଇଅଛୁଁ । ଆମ୍ଭେ ରାଜ୍ୟ ଲୋଭରେ ସମସ୍ତ ଜ୍ଞାତି ବର୍ଗଙ୍କର ବିନାଶ କରିଅଛୁଁ । ଅତଏବ ଆମ୍ଭଙ୍କୁ ଶୋକ ପରିତ୍ୟାଗ କରୁନାହିଁ । ୩ ।

ଯେ କ୍ରୋଡ଼ରେ ଲାଳନପାଳନପୂର୍ବକ ଆମ୍ଭର ଏହି ଶରୀରକୁ ପରିବର୍ଦ୍ଧିତ କରିଥିଲେ, ଆମ୍ଭେ ରାଜ୍ୟ ଲୋଭରେ ସେହି ପିତାମହ ଭୀଷ୍ମଦେବଙ୍କୁ ଯୁଦ୍ଧରେ ନିପାତ କଲୁଁ । ୪ ।

ପ୍ରଦୀପ୍ତ ଶରଜାଲ ସମାକୀର୍ଣ୍ଣ ଜୀର୍ଣ୍ଣ ସିଂହ ପ୍ରାୟ, ଉନ୍ନତ କଳେବର ନରସିଂହ ପିତାମହ ଯେତେବେଳେ ଶିଖଣ୍ଡୀଙ୍କ କର୍ତ୍ତୃକ ଆକ୍ରାନ୍ତ ହେଲେ ଏବଂ ଅର୍ଜ୍ଜୁନର ବଜ୍ରତୁଲ୍ୟ ଶର ପ୍ରଭାବଦ୍ୱାରା ବିଚଳିତ ହୋଇ ବିଘୂର୍ଣ୍ଣିତ ହେଲେ, ସେତେବେଳେ ତାହାଙ୍କର ତାଦୃଶ ଅବସ୍ଥା ଦେଖି ଆମ୍ଭର ଅନ୍ତଃକରଣ ଏ ପର୍ଯ୍ୟନ୍ତ ସୁଦ୍ଧା ଅତିଶୟ ବ୍ୟଥିତ ହେଉଅଛି । ୬ ।

ବିପକ୍ଷ ରଥପୀଡ଼କ ପିତାମହ ଯେତେବେଳେ ରଥ ମଧ୍ୟରେ ଅତିଶୟ ଅବସନ୍ନ ହୋଇ, ଘୂର୍ଣ୍ଣମାନ ଶୈଳସଦୃଶ ପୂର୍ବଦିଗକୁ ମୁଖକରି ପତିତ ହେଲେ, ସେତେବେଳେ ଆମ୍ଭେ ଜ୍ଞାନଶୂନ୍ୟ ହୋଇଥିଲୁଁ । ୭ ।

ଯେ ଧନୁର୍ବାଣ ଧାରଣପୂର୍ବକ ମହାଯୁଦ୍ଧରେ ଭୃଗୁକୁଳ-ନନ୍ଦନ ରାମଙ୍କ ସହିତ ବହୁଦିବସ କୁରୁକ୍ଷେତ୍ରରେ ଯୁଦ୍ଧ କରିଥିଲେ । ବାରାଣସୀ ରାଜଧାନୀରେ କନ୍ୟା ନିମିତ୍ତ ଯେ ଏକାକୀ ସମାଗତ ହୋଇ ସମଗ୍ର କ୍ଷତ୍ରିୟ କୁଳକୁ ଯୁଦ୍ଧାର୍ଥ ଆହ୍ୱାନ କରିଥିଲେ, ଯାହାଙ୍କର ଅସ୍ତ୍ର ପ୍ରତାପାନଳରେ ରାଜଚକ୍ରବର୍ତ୍ତୀ ଦୁରାସଦ ଉଗ୍ରାୟୁଧ କ୍ଷଣମାତ୍ରରେ ଦଗ୍ଧ ହୋଇଥିଲା, ଆମ୍ଭେ ସେହି ଭୀଷ୍ମଦେବଙ୍କୁ ଯୁଦ୍ଧରେ ନିପାତିତ କଲୁଁ । ୧୦ ।

ସାକ୍ଷାତ ମୃତ୍ୟୁ ସ୍ୱରୂପ ଜାଣି ସୁଦ୍ଧା ଯେ ପାଞ୍ଚାଳ ନନ୍ଦନ ଶିଖଣ୍ଡୀଙ୍କୁ ବିନଷ୍ଟ କଲେ ନାହିଁ, ସେହି ମହାତ୍ମା ପିତାମହଙ୍କୁ ଅର୍ଜ୍ଜୁନ ବିନଷ୍ଟ କଲା । ୧୧ ।

ହେ ମୁନିସତ୍ତମ ! ଯେତେବେଳେ ପିତାମହଙ୍କ ରୁଧିରାକ୍ତ କଳେବର ହୋଇ ଭୂତଳରେ ପତିତ ହୋଇଥିବାର ଦେଖିଲୁ, ସେତେବେଳକୁ ଆମ୍ଭେ ଉତ୍କଟ ଶୋକରେ ଆକ୍ରାନ୍ତ ହୋଇଅଛୁଁ । ୧୨ ।

ଯେ ବାଲ୍ୟକାଳରୁ ଆମ୍ଭମାନଙ୍କୁ ଲାଳନପାଳନପୂର୍ବକ ପରିବର୍ଦ୍ଧିତ କରିଥିଲେ, ଆମ୍ଭେ ଅଚିରସ୍ଥାୟୀ ରାଜ୍ୟନିମିତ୍ତ ଲୁବ୍ଧ ହୋଇ ତାହାଙ୍କୁ ନିପାତିତ କଲୁଁ । ଅତଏବ ଆମ୍ଭେ ଯେ ଅତ୍ୟନ୍ତ ମୂଢ଼ ଓ ପାପୀ, ତହିଁରେ ଆଉ ସନ୍ଦେହ କ'ଣ ? ୧୩ ।

ଅଚିର ସମସ୍ତ ରାଜବର୍ଗପୂଜିତ-ରଣାଙ୍ଗନସ୍ଥିତ-ମହାଧନୁର୍ଦ୍ଧର ଦ୍ରୋଣାଚାର୍ଯ୍ୟଙ୍କ ସମ୍ମୁଖକୁ ଗମନ କରି "ଆପଣଙ୍କର ପୁତ୍ର ହତ ହୋଇ ଅଛି" ବୋଲି ଯେଉଁ ମିଥ୍ୟାଭାଷଣ କରିଥିଲୁ, ସେହି ମିଥ୍ୟାଜନିତ ପାପ ଆମ୍ଭର ସମସ୍ତ ଶରୀରକୁ ଦଗ୍ଧ କରୁଅଛି । ଗୁରୁ ଦ୍ରୋଣାଚାର୍ଯ୍ୟ ଯେତେବେଳେ ଆମ୍ଭଙ୍କୁ ପ୍ରଶ୍ନ କଲେ, ହେ ରାଜନ୍ ! ଆମ୍ଭର ପୁତ୍ର ଜୀବିତ ଅଛନ୍ତି କି ନାହିଁ, ସତ୍ୟ କହନ୍ତୁ ।" ଏପରି ପ୍ରଶ୍ନ କଲେ, ସେତେବେଳେ ଆମ୍ଭେ ନିଶ୍ଚୟ ସତ୍ୟ କହିବୁଁ ବୋଲି ସେ ଆମ୍ଭଙ୍କୁ ଏହିପରି ପ୍ରଶ୍ନ କରିଥିଲେ; କିନ୍ତୁ ପାତକୀ ଯେ ଆମ୍ଭେ, ରାଜ୍ୟ ଲୋଭର ବଶୀଭୂତ ହୋଇ ତତ୍କ୍ଷଣାତ୍ ସତ୍ୟ କଞ୍ଚୁକକୁ ଉନ୍ମୋଚନପୂର୍ବକ ଅସ୍ପଷ୍ଟାକ୍ଷରରେ କୁଞ୍ଜର ଶବ୍ଦକୁ ଉଚ୍ଚାରଣ କରିଥିଲୁଁ ଏବଂ ସ୍ପଷ୍ଟସ୍ୱରରେ ଅଶ୍ୱତ୍ଥାମା ହତ ହୋଇଅଛନ୍ତି ବୋଲି ଉକ୍ତି କରି ଗୁରୁଙ୍କ ସହିତ ମିଥ୍ୟା ବ୍ୟବହାର କରିଅଛୁଁ । ଆମ୍ଭେ ଯେପରି ଦୁଷ୍କର କର୍ମ କରିଅଛୁ, ତନ୍ନିମିତ୍ତ କେଉଁଲୋକକୁ ଯେ ଗମନ କରିବୁଁ, ତାହା କହି ପାରୁନାହୁଁ । ୧୮ ।

ପୁନଶ୍ଚ ସମରରେ ଅପରାଙ୍ମୁଖ-ଉଗ୍ର ପରାକ୍ରମ-ଜ୍ୟେଷ୍ଠଭ୍ରାତା କର୍ଣ୍ଣଙ୍କୁ ନିପାତିତ କଲୁଁ । ଅତଏବ ଆମ୍ଭ ଅପେକ୍ଷା ଆଉ ଅଧିକ ପାପୀ କିଏ ଅଛି ? ଆମ୍ଭେ ଏଡ଼େ ଲୁବ୍ଧ ସ୍ୱଭାବ ଯେ ଜୟ ଲାଳସାରେ ଗିରିଗୁହଜାତ ସିଂହ ଶିଶୁସଦୃଶ କୁମାର ଅଭିମନ୍ୟୁଙ୍କୁ ଦ୍ରୋଣ ରଚିତ ବ୍ୟୂହ ମଧ୍ୟରେ ପ୍ରବେଶ ହେବାନିମିତ୍ତ ଅନୁମତି ଦେଇଥିଲୁଁ । ଭ୍ରୂଣ ହତ୍ୟାକାରୀ ପାପୀସଦୃଶ ଆମ୍ଭେ ତଦବଧି ପୁଣ୍ଡରୀକାକ୍ଷ କୃଷ୍ଣ ଓ ଅର୍ଜ୍ଜୁନଙ୍କ ମୁଖପ୍ରତି ନିରୀକ୍ଷଣ କରି ପାରୁ ନାହୁଁ । ପଞ୍ଚ ପର୍ବତବିହୀନା ପୃଥିବୀ ପ୍ରାୟ, ପଞ୍ଚ ପୁତ୍ରବିହୀନା ଦୁଃଖାର୍ତ୍ତା ଦ୍ରୌପଦୀ ଦେବୀଙ୍କୁ ନିରୀକ୍ଷଣ କରିୟୁଡ଼ା ଆମ୍ଭେ ଶୋକରେ ଅଧୀର ହୋଇଅଛୁଁ । ଆମ୍ଭେ ପୃଥିବୀର ସମ୍ପ

ଋଷିପୁତ୍ରକ ଓ ଗୁରୁଜନଙ୍କର ବିନାଶସାଧନ କରି ଅତିଶୟ ଅପରାଧୀ ହୋଇଅଛୁଁ, ଅତଏବ ଅମ୍ଭେ ଏହି ସ୍ଥଳରେ ପ୍ରାୟୋପବେଶନପୂର୍ବକ ଶରୀରଶୋଷଣ କରିବୁଁ । ୨୮ ।

ତାହାହେଲେ ଆମ୍ଭଙ୍କୁ ଅନ୍ୟ କୌଣସି ଜାତିରେ ଜନ୍ମଗ୍ରହଣ କରିବାକୁ ହେବନାହିଁ । ଆଜଠାରୁ ଆମ୍ଭେ ପାନଭୋଜନାଦି ସମସ୍ତ ଭୋଗ୍ୟ ବସ୍ତୁକୁ ପରିତ୍ୟାଗପୂର୍ବକ ଏହି ସ୍ଥଳରେ ଅବସ୍ଥିତ ଥାଇ ପ୍ରିୟ ପ୍ରାଣକୁ ଶୋଷିତ କରିବୁଁ । ହେ ତପୋଧନ ! ଆମ୍ଭେ ଆପଣଙ୍କୁ ବିନୟପୂର୍ବକ କହୁଅଛୁ, ଆପଣ ଆମ୍ଭର କଳେବର ପରିତ୍ୟାଗନିମିତ୍ତ ଅନୁମତି ପ୍ରଦାନ କରି ଅଭିଳଷିତ ସ୍ଥାନକୁ ଗମନ କରନ୍ତୁ । ବୈଶମ୍ପାୟନ କହିଲେ-ଧର୍ମରାଜ ଯୁଧିଷ୍ଠିର ବନ୍ଧୁ ବିୟୋଗଜନିତ ଶୋକରେ ଅତ୍ୟନ୍ତ ବିହ୍ୱଳ ହୋଇ ଏହିପରି ବିଳାପ କରୁଥିବା ସମୟରେ ମୁନିସତ୍ତମ ବ୍ୟାସଦେବ କହିଲେ—ତୁମ୍ଭେ ପ୍ରାୟୋପବେଶନଦ୍ୱାରା ପ୍ରାଣତ୍ୟାଗ କରନାହିଁ ।୨୯।

ବ୍ୟାସ କହିଲେ, ହେ ମହାରାଜ ! ତୁମ୍ଭର ଏପରି ନିତାନ୍ତ ଶୋକାର୍ତ୍ତ ହେବା ଉଚିତ ହେଉନାହିଁ । ଆମ୍ଭେ ପୁନର୍ବାର ତୁମ୍ଭଙ୍କୁ ଉପଦେଶ ଦେଉଅଛୁଁ, ଶ୍ରବଣ କର । ଯେପରି ଜଳର ବୁଦ୍‌ବୁଦ୍ ଉତ୍ଥିତ ହୋଇ କିୟତ୍‌କ୍ଷଣ ପରେ ବିଲୀନ ହୋଇଯାଏ, ସେହିପରି ପ୍ରତ୍ୟେକ ପ୍ରାଣୀର ପ୍ରଥମେ ସଂଯୋଗ ହୁଏ ଏବଂ ଶେଷରେ ବିୟୋଗ ହୁଏ ।୩୦।

ସଞ୍ଚିତ ବସ୍ତୁର ଶେଷରେ କ୍ଷୟ, ଉନ୍ନତିର ଶେଷରେ ପତନ ଜୀବନର ଶେଷରେ ମରଣ ଏବଂ ସୁଖର ଶେଷରେ ଦୁଃଖ ଏହିପରି ଜଗତର ସମସ୍ତ ବସ୍ତୁର ପ୍ରଥମେ ସଂଯୋଗ ହୁଏ ଏବଂ ଶେଷରେ ବିୟୋଗ ଘଟେ; କିନ୍ତୁ ଆଳସ୍ୟରେ ଦୁଃଖ ହୁଏ ଏବଂ ଦକ୍ଷତାରେ ସୁଖୋଦୟ ହୁଏ । ଐଶ୍ୱର୍ଯ୍ୟ, ଶ୍ରୀ, ଲଜ୍ଜା, ଧୃତି ଓ କୀର୍ତ୍ତି ପ୍ରଭୃତି ଗୁଣସବୁ ନିପୁଣ ବ୍ୟକ୍ତି ଭିନ୍ନ ଆଳସ୍ୟପରାୟଣ ବ୍ୟକ୍ତିଙ୍କଠାରେ ଅବସ୍ଥାନ କରନ୍ତି ନାହିଁ । ୩୧ ।

ସୁହୃଦଗଣ ସୁଖପ୍ରଦାନରେ ଏବଂ ଶତ୍ରୁଗଣ ଦୁଃଖପ୍ରଦାନରେ ସମର୍ଥ ହୁଅନ୍ତି ନାହିଁ । ଏହିପରି ପ୍ରଜ୍ଞାଦ୍ୱାରା ଅର୍ଥଲାଭ ହୋଇପାରେ ନାହିଁ ଏବଂ ଧନଦ୍ୱାରା ସୁଖଲାଭ ହୋଇପାରେ ନାହିଁ । ୩୩ ।

ହେ କୌନ୍ତେୟ ! ବିଧାତା ତୁମ୍ଭଙ୍କୁ କର୍ମ କରିବାନିମିତ୍ତ ସୃଷ୍ଟି କରିଅଛନ୍ତି; କର୍ମତ୍ୟାଗରେ ତୁମ୍ଭର ଅଧିକାର ନାହିଁ, ଅତଏବ କର୍ମାନୁଷ୍ଠାନରେ ପ୍ରବୃତ୍ତ ହୁଅ, ତାହାହେଲେ ସିଦ୍ଧିଲାଭ ହେବ ।୩୪।

---

# ଅଧ୍ୟାୟ — ୨୮

ବୈଶମ୍ପାୟନ କହିଲେ—ପାଣ୍ଡବ ଜ୍ୟେଷ୍ଠ ଯୁଧିଷ୍ଠିର ଜ୍ଞାତି ବିୟୋଗଜନିତ ଶୋକରେ ସନ୍ତପ୍ତ ହୋଇ ପ୍ରାଣପରିତ୍ୟାଗରେ ଅଭିଳାଷୀ ହୁଅନ୍ତେ ମୁନିସତ୍ତମ ବ୍ୟାସଦେବ ତାହାଙ୍କର ଶୋକାପନୟନରେ ପ୍ରବୃତ୍ତ ହୋଇ କହିଲେ । ୧ ।

ବ୍ୟାସ କହିଲେ ହେ ଯୁଧିଷ୍ଠିର ! ଅଶ୍ମଗୀତନାମକ ଗୋଟିଏ ପୁରାତନ ଇତିହାସ କଥିତ ଅଛି, ତାହା କହୁଅଛୁଁ ଶ୍ରବଣ କର । ୨ ।

ଏକଦା ବିଦେହରାଜ ଜନକ ଶୋକଦୁଃଖରେ ନିତାନ୍ତ ଅଭିଭୂତ ହୋଇ ଅଶ୍ମନାମରେ ଗୋଟିଏ ମହାପ୍ରାଜ୍ଞ ବ୍ରାହ୍ମଣକୁ ସଂଶୟ ନିରସନାର୍ଥ ପ୍ରଶ୍ନ କଲେ । ୩ ।

ଜନକ କହିଲେ—ଜ୍ଞାତିବୃଦ୍ଧି, ଧନବୃଦ୍ଧି ଓ ସେମାନଙ୍କର ବିନାଶ ସମୟରେ କଲ୍ୟାଣାକାଙ୍କ୍ଷୀ ପୁରୁଷର କିପରି ବ୍ୟବହାର କରିବା କର୍ତ୍ତବ୍ୟ ? ୪ ।

ଅଶ୍ମା କହିଲେ—ମନୁଷ୍ୟ ଜନ୍ମଗ୍ରହଣ କରିବାମାତ୍ରେ ସୁଖ ଦୁଃଖ ତାହାର ଅନୁବର୍ତ୍ତୀ ହୁଅନ୍ତି । ସୁଖ ଓ ଦୁଃଖ ଉଭୟର ସମ୍ଭବ ଥିଲେ ସୁଦ୍ଧା ତନ୍ମଧ୍ୟରୁ ଯେତେବେଳେ ଯାହା ଉପସ୍ଥିତ ହୁଏ, ସେତେବେଳେ ତାହା ବାୟୁ ମେଘମଣ୍ଡଳକୁ ବିସ୍ତୃତ କଲାପ୍ରାୟ, ମନୁଷ୍ୟର ଚୈତନ୍ୟକୁ ହରଣ କରେ । ୫ ।

ଅଭ୍ୟୁଦୟ ସମୟରେ ଲୋକେ "ଆମ୍ଭେ ଜଣେ ସାମାନ୍ୟ ମନୁଷ୍ୟ ନୋହୁଁ, ଆମ୍ଭେ ମହତ କୁଳ ଜାତ ଅଟୁଁ । ଯାହା ମନେ କରୁଁ, ତାହା କରିପାରୁଁ ।" ଏହି ତିନି ପ୍ରକାର ଅଭିମାନଗ୍ରସ୍ତ ହୋଇ ଏକାବେଳେକେ ହତାବ୍ଧିତ ବିବେକଶୂନ୍ୟ ହୁଅନ୍ତି । ୬ ।

ସୁତରାଂ ଘୋରତର ବିଷୟାସକ୍ତ ଚିତ୍ତ ହୋଇ ଅପବ୍ୟୟଦ୍ୱାରା ପୈତୃକ ଧନସବୁ ନଷ୍ଟ କରି ନିଃସ୍ୱ ହୋଇ ପଡ଼ନ୍ତି । ସେତେବେଳେ ପରସ୍ୱାପହରଣାଦି କାର୍ଯ୍ୟକୁ ମଧ୍ୟ ସତ୍କାର୍ଯ୍ୟ ବୋଲି ମନେ କରନ୍ତି । ୮ ।

ଅନନ୍ତର ବ୍ୟାଧ ଯେପରି ଶରଦ୍ୱାରା ମୃଗକୁ ବଧ କରେ ସେହିପରି ରାଜାମାନେ ଉକ୍ତ ନିୟମୋଲ୍ଲଙ୍ଘନକାରୀ ପରସ୍ୱାପହାରୀ ଦୁଷ୍ଟାତ୍ମା-ମାନଙ୍କୁ ଦଣ୍ଡ ଦିଅନ୍ତି । ୯ ।

ପରନ୍ତୁ ଯେଉଁମାନେ ଚୌର୍ଯ୍ୟକର୍ମରତ ସେମାନେ ବିଂଶତି କମ୍ବା ତ୍ରିଂଶତ ବର୍ଷ ସମୟରେ ଏହି ଦୁଷ୍କର୍ମାଦରୁ ନଷ୍ଟ ହୁଅନ୍ତି, ଅର୍ଥାତ୍ ସେମାନେ ପ୍ରାପ୍ୟ ଶତବର୍ଷ ପର୍ଯ୍ୟନ୍ତ ଜୀବତ ରହନ୍ତି ନାହିଁ ସଦ୍ୟ କେବଳ ମୃତ ହୁଅନ୍ତି । ୧୦ ।

ଅତଏବ ରାଜା ସମସ୍ତ ପ୍ରାଣିଙ୍କର ଅନ୍ତର୍ବୃତ୍ତିକୁ ଅବଗତ ହେବା ଉଚିତ ଏବଂ ବୁଦ୍ଧି କୌଶଳଦ୍ୱାରା ଦରିଦ୍ରାଦି ଦୁଃଖପୀଡ଼ିତ ପ୍ରଜାମାନଙ୍କର ଦୁଃଖାଦିର ପ୍ରତିକାର କରିବା ଉଚିତ । ଶତ୍ରୁ ବିଭ୍ରମ ଓ ଅନିଷ୍ଟାପାତ ଏହି ଦୁଇଟି ବ୍ୟତୀତ ମାନସିକଦୁଃଖର ଆଉ ତୃତୀୟ କାରଣ ଉତ୍ପନ୍ନ ହୁଏ ନାହିଁ । ଭୋଗ୍ୟାଦିଜନିତ ହେଉ କମ୍ବା ଅନ୍ୟାନ୍ୟ ଯେ କୌଣସି ପ୍ରକାର ଦୁଃଖ ହେଉ, ତତ୍ସମସ୍ତ ଏହି ଦୁଇ କାରଣରୁ ଘଟିଥାଏ । ଏହି ଜଗତରେ କି ମହତ୍, କି କ୍ଷୁଦ୍ର, କି ଦୁର୍ବଳ, କି ବଳବାନ୍ ସମସ୍ତଙ୍କୁ ଜରା ଓ ମୃତ୍ୟୁ ବ୍ୟାଘ୍ରସଦୃଶ ଭକ୍ଷଣ କରନ୍ତି । ୧୪ ।

ଯେ ପରାକ୍ରମ ପ୍ରଭାବରୁ ସସାଗରା-ବସୁନ୍ଧରାକୁ ଜୟ କରିପାରନ୍ତି ସେ ମଧ୍ୟ ଜରା ଓ ମୃତ୍ୟୁକୁ ଅତିକ୍ରମ କରି ପାରନ୍ତି ନାହିଁ । ୧୫ ।

ସୁଖ କମ୍ବା ଦୁଃଖ ଉପସ୍ଥିତ ହେଲେ ଅଭିମାନଶୂନ୍ୟ ହୋଇ ତାହାକୁ ଭୋଗ କରିବା କର୍ତ୍ତବ୍ୟ । କାରଣ ପ୍ରାରବ୍ଧବଶତଃ ଯାହା ଉପସ୍ଥିତ ହୁଏ ତାହା ଅପରିହାର୍ଯ୍ୟ । ହେ ନରାଧିପ ! ପ୍ରାଣିମାନେ ଅଜରାମରତ୍ୱାଦି ବିଡ଼ମ୍ବନମତ୍ତ ଅଭିଳାଷୀ ହୁଅନ୍ତି; କିନ୍ତୁ ତତ୍ପ୍ରବର୍ତ୍ତରେ ଅଭିଳଷିତ ଜରାମରଣାଦି କାହାର ବାଲ୍ୟକାଳରେ, କାହାର ଯୌବନ ସମୟରେ, କାହାର ଅବା ବାର୍ଦ୍ଧକ୍ୟରେ ଉପସ୍ଥିତ ହୁଏ । ଉକ୍ତ ଜରାମରଣରୁ କେହି ସୁଦ୍ଧା ମୁକ୍ତ ହୋଇ ପାରନ୍ତି ନାହିଁ । ପ୍ରାଣିମାନଙ୍କର ଜନ୍ମ-ମୃତ୍ୟୁ ଲାଭ, ଅଲାଭ ପ୍ରିୟ ବସ୍ତୁର ବିୟୋଗ, ଅପ୍ରିୟ ବସ୍ତୁର ସଂଯୋଗ, ସୁଖ, ଦୁଃଖ, ସମ୍ପଦ ଓ ବିପଦ ଏତତ୍ସମସ୍ତ ଅଦୃଷ୍ଟରେ ଅନୁବର୍ତ୍ତୀ ଅଟନ୍ତି । ୧୯ ।

ଅତଏବ ଯେପରି ଗନ୍ଧ, ସ୍ପର୍ଶ, ରୂପ, ଓ ରସ ସ୍ୱଭାବତଃ ପ୍ରାଦୁର୍ଭୂତ ହୋଇ ପରିଣାମରେ ନିବୃତ୍ତ ହୁଅନ୍ତି, ସେହିପରି ଯାନ, ଉତ୍ଥାନ, ପାନ, ଭୋଜନ, ଶୟନ, ଆସନ, ସୁଖ ଓ ଦୁଃଖ ଏମାନେ ମଧ୍ୟ ଅଦୃଷ୍ଟାନୁବର୍ତ୍ତୀ ହୋଇ ପ୍ରାଣିମାନଙ୍କର ଭୋଗନିମିତ୍ତ କାଳକ୍ରମରେ ଉପସ୍ଥିତ ହୋଇ ପରେ ନିବୃତ୍ତ ହୁଅନ୍ତି । ୨୯ ।

ଏହି ସଂସାରରେ ବୈଦ୍ୟମଧ ପୀଡ଼ିତ ହୁଅନ୍ତି, ବଳବାନ୍ ମଧ ଦୁର୍ବଳ ହୁଅନ୍ତି ଏବଂ ଶ୍ରୀମାନ୍ ପୁରୁଷ ମଧ ନିସ୍ୱଃ ହୋଇ ପଡ଼ନ୍ତି । ଅତଏବ କାଳର ଗତିକ ଅତି ବିଚିତ୍ର ବୋଲି ଜାଣିବ । ୨୨ ।

ମହତ ବଂଶରେ ଜନ୍ମ, ବୀର୍ଯ୍ୟ ଆରୋଗ୍ୟ, ରୂପ, ସୌଭାଗ୍ୟ, ଓ ଉପଭୋଗ ଏହିସବୁ ଭବିତବ୍ୟ ଅନୁସାରେ ଲବ୍ଧ ହୁଏ । ୨୩ ।

ଏହି ପୃଥିବୀରେ ଇଚ୍ଛା ନ ଥିଲେ ସୁଦ୍ଧା ଦରିଦ୍ର ଲୋକମାନଙ୍କର ବହୁ ପୁତ୍ର ହୁଅନ୍ତି; କିନ୍ତୁ ସମୃଦ୍ଧିଶାଳୀ ବ୍ୟକ୍ତିମାନେ ପ୍ରାର୍ଥନା କରିସୁଦ୍ଧା ଗୋଟିଏ ମାତ୍ର ପୁତ୍ରପ୍ରାପ୍ତ ହୁଅନ୍ତି ନାହିଁ, ଅତଏବ ଦୈବର ଆଶ୍ଚର୍ଯ୍ୟ କାର୍ଯ୍ୟକୁ ଅବଲୋକନ କର ।୨୪।

ଜ୍ୱରାଦି ବ୍ୟାଧି, ଅଧଃପତନ, ବୁଭୁକ୍ଷା, ଅଗ୍ନି, ଜଳ ଓ ବିଷାଦି ଆପଦ ଯାହାକି ଦେଖାଯାଏ, ତାହା ପ୍ରାଣିମାନଙ୍କର ପ୍ରାରବ୍ଧକୃତ ସୁକୃତ ଓ ଦୁଷ୍କୃତ କର୍ମାନୁସାରେ ଆପତିତ ହୁଏ । ଇହଲୋକରେ କୌଣସି ବ୍ୟକ୍ତି ପାପ ନ କରି ସୁଦ୍ଧା ଦଣ୍ଡିତ ହୁଏ । ପୁଣି କୌଣସି ବ୍ୟକ୍ତି ଘୋରତର ଅତ୍ୟାଚାରୀ ହୋଇ ସୁଦ୍ଧା ଦଣ୍ଡରୁ ନିଷ୍କୃତି ପାଏ ।୨୫।

ଏହି ଥିବୀରେ ଧନବାନ୍ ବ୍ୟକ୍ତିକୁ ଯୌବନାବସ୍ଥାରେ ମୃତ୍ୟୁ ମୁଖରେ ପତିତ ହେବାର ଦେଖାଯାଏ ଏବଂ ଦରିଦ୍ର ବ୍ୟକ୍ତିକୁ ମହା କ୍ଳେଶରେ ଜରାଯୁକ୍ତ ହୋଇ ଶତବର୍ଷାବଧି ଜୀବିତ ଥିବାର ଦେଖାଯାଏ । ଅତଏବ କ୍ଷୁଦ୍ରବଂଶରେ ଜନ୍ମଗ୍ରହଣ କରିସୁଦ୍ଧା ଦୀର୍ଘଜୀବୀ ହୁଅନ୍ତି ଏବଂ ସମୃଦ୍ଧ କୁଳଜାତ ପୁରୁଷ ମଧ ପତଙ୍ଗବତ୍ ପ୍ରନଷ୍ଟ ହୁଅନ୍ତି, ଏହା ପ୍ରତ୍ୟକ୍ଷସିଦ୍ଧ ।୨୬।

ଏହି ସଂସାର ମଧ୍ୟରେ ଶ୍ରୀମାନ୍ ପୁରୁଷ ପ୍ରଭୂତ ଐଶ୍ୱର୍ଯ୍ୟ ଭୋଗରେ ସମର୍ଥ ହୁଅନ୍ତି ନାହିଁ । ଅର୍ଥାତ୍ ଅଳ୍ପାୟୁ ହୁଅନ୍ତି; କିନ୍ତୁ ଦରିଦ୍ର ଲୋକମାନେ ଅତି ନିକୃଷ୍ଟ ବୃତ୍ତିଦ୍ୱାରା ଜୀବିକାନିର୍ବାହ କରି ଦୀର୍ଘଜୀବୀ ହୁଅନ୍ତି । ଦୁରାତ୍ମା ଲୋକ ନିଜର ତୁଷ୍ଟି ସମ୍ପାଦନାର୍ଥ "ଆମ୍ଭେ ଏହା କରୁଅଛୁଁ" ବୋଲି ଯେ କୌଣସି ପାପ କାର୍ଯ୍ୟର ଅନୁଷ୍ଠାନ କରନ୍ତି; କାଳ ପ୍ରେରିତ ହୋଇ ସେହି କାର୍ଯ୍ୟକୁ ପ୍ରିୟ ତୁଲ୍ୟ ବୋଧ କରନ୍ତି । ମୃଗୟା, ଦ୍ୟୂତକ୍ରୀଡ଼ା, ସ୍ତ୍ରୀଲୋକ ପ୍ରତି ଆସକ୍ତି ମଦ୍ୟପାନ ଓ ବୃଥା ଜଳ୍ପନା ଏହି କେତୋଟି ବିଷୟକୁ ପଣ୍ଡିତମାନେ ନିନ୍ଦିତ ବୋଲି ବର୍ଣ୍ଣନ କରନ୍ତି; କିନ୍ତୁ ନାନା ଶାସ୍ତ୍ରଜ୍ଞ

ସୁରୁଷମାନଙ୍କ ମଧ୍ୟ ଏହିସବୁ ଵିଷୟରେ ଆସକ୍ତ ହେବାର ଦେଖାଯାଏ ।୩୧।

ଈପ୍ସିତ କିମ୍ବା ଅନୀପ୍ସିତ ବିଷୟସବୁ କାଳସହକାରେ ପ୍ରାଣିମାନଙ୍କୁ ଆକ୍ରମଣ କରେ । ଏଥିରେ ଅନ୍ୟ କୌଣସି କାରଣ ଜଣାଯାଏ ନାହିଁ ।୩୨।

ବାୟୁ, ଆକାଶ, ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ, ଦିବା, ରାତ୍ରି ଜ୍ୟୋତି ପଦାର୍ଥ, ନଦୀ ଓ ଶୈଳ ସମୂହ ଏମାନଙ୍କୁ କିଏ ସୃଷ୍ଟି କରିଅଛି ଏବଂ ଏମାନଙ୍କୁ କିଏ ଅବା ଧାରଣ କରେ, ଅର୍ଥାତ୍ କାଳ ଏମାନଙ୍କର ଆଧାର ଏବଂ ତତ୍‌କର୍ତ୍ତୃକ ଏମାନେ ସୃଷ୍ଟ ହୋଇଥାନ୍ତି ।୩୩।

ହେ ନରଶ୍ରେଷ୍ଠ ! ଏହି ପ୍ରକାରେ ଶୀତ, ଉଷ୍ଣ, ବର୍ଷା ଏବଂ ମନୁଷ୍ୟମାନଙ୍କର ସୁଖଦୁଃଖକାଳର ଗତି ଅନୁସାରେ ପରିବର୍ତ୍ତିତ ହୁଏ, ।୩୪।

ମନୁଷ୍ୟ ଯେତେବେଳେ ଜରା କିମ୍ବା ମୃତ୍ୟୁଦ୍ୱାରା ଆକ୍ରାନ୍ତ ହୁଏ, ସେତେବେଳେ କି ଔଷଧ, କି ମନ୍ତ୍ର, କି ହୋମ, କି ଜପ, କେହି ସୁଦ୍ଧା ତାହାକୁ ପରିତ୍ରାଣ କରିପାରନ୍ତି ନାହିଁ । ଯେପରି ମହାସାଗରରେ ଦୁଇଖଣ୍ଡ କାଷ୍ଠ ଏକତ୍ର ସଂଯୁକ୍ତ ହୁଏ, ପୁନଶ୍ଚ ସମୟାନୁସାରେ ପରସ୍ପର ବିଚ୍ଛିନ୍ନ ହୁଏ, ସେହିପରି କାଳସହକାରେ ପ୍ରାଣିମାନଙ୍କର ମଧ୍ୟ ଏକତ୍ର ସମାଗମ ହୁଏ ଓ ପରସ୍ପର ବିଚ୍ଛେଦ ହୁଏ ।୩୫।

ଯେଉଁସବୁ ପୁରୁଷ ଉତ୍ତମ ସ୍ତ୍ରୀଗଣଙ୍କ ସହିତ ଗୀତ ବାଦ୍ୟଜନିତ ସୁଖାନୁଭବ କରନ୍ତି, ଏବଂ ଯେଉଁମାନେ ପରାନ୍ନଜୀବୀ ଅନାଥ ଅଟନ୍ତି, କାଳ ସେହି ଉଭୟବିଧ ଲୋକଙ୍କ ପ୍ରତି ତୁଲ୍ୟ ବ୍ୟବହାର କରନ୍ତି, ଅର୍ଥାତ ସେମାନଙ୍କ ମଧ୍ୟରୁ କେହି ସୁଦ୍ଧା ମୃତ୍ୟୁମୁଖରୁ ଉତ୍ତୀର୍ଣ୍ଣ ହୋଇ ପାରନ୍ତି ନାହିଁ ।୩୬।

ଏହି ସଂସାରରେ ମାତା, ପିତା, ସ୍ତ୍ରୀ ଓ ପୁତ୍ର ପ୍ରଭୃତି ଶତ ଶତ, ସହସ୍ର ସହସ୍ର ପ୍ରକାର ସମ୍ବନ୍ଧ ଅନୁଭୂତ ହୁଏ; କିନ୍ତୁ ସେମାନେ କାହାର ମାତା, ପିତା ଏବଂ ଆମ୍ଭେମାନେ ବା କାହାର ଆତ୍ମୀୟ ! ।୩୭।

କେହି ସୁଦ୍ଧା ଏହି ଅମ୍ଭଙ୍କର ଆତ୍ମୀୟ ହୋଇ ପାରେ ନାହିଁ ଏବଂ ଏହି ଆତ୍ମାମଧ୍ୟ କାହାର ଆତ୍ମୀୟ ହୁଅନ୍ତି ନାହିଁ । ପଥିକମାନେ ଯେପରି

ପଥମଧ୍ୟକୁ ଆସି କିୟତ୍କାଳନିମିତ୍ତ ପାନ୍ଥନିବାସରେ ସଙ୍ଗତ ହୋଇ ପରେ ସେ ଯାହାର ଗନ୍ତବ୍ୟସ୍ଥାନକୁ ଗମନ କରନ୍ତି । ଏହି ସଂସାରରେ ସ୍ତ୍ରୀ, ବନ୍ଧୁ, ଓ ସୁହୃଜ୍ଜନମାନଙ୍କର ସଙ୍ଗତି ମଧ୍ୟ ତଦ୍ରୂପ ।୩୯।

ଆମ୍ଭେ କିଏ, କେଉଁଠାରେ ଅଛୁଁ, କେଉଁଠାକୁ ବା ଗମନ କରିବୁଁ କିପରି ବା ଏହି ସଂସାର ମଧ୍ୟରେ ଅବସ୍ଥିତ ହୋଇ ଅଛୁଁ ଏବଂ କି ନିମିତ୍ତ ବା ଅନୁତାପ କରୁଅଛୁଁ" ବିବେକୀ ବ୍ୟକ୍ତିଙ୍କର ଏହିପରି ଭାବରେ ଚିତ୍ତକୁ ସଂସ୍ଥାପିତ କରିବା କର୍ତ୍ତବ୍ୟ ।୪୦।

ଚକ୍ରବତ୍ ନିୟତ ପରିବର୍ତ୍ତନଶୀଳ ଏହି ସଂସାର ମଧ୍ୟରେ ପ୍ରିୟଜନଙ୍କର ସହବାସ ଅନିତ୍ୟ ଅଟେ । ଯେପରି ପାନ୍ଥନିବାସରେ ପଥିକମାନେ ଆସି କିୟତ୍କାଳନିମିତ୍ତ ଏକତ୍ର ହୁଅନ୍ତି, ପିତା, ମାତା, ଭ୍ରାତା, ଓ ସଖାମାନଙ୍କର ସମାଗମ ମଧ୍ୟ ସେହିପରି ।୪୧।

ଜ୍ଞାନାଭିଳାଷୀ ପୁରୁଷଙ୍କର ଶାସ୍ତ୍ରାନୁସାରେ ପରମାର୍ଥ ବିଷୟକୁ ଶ୍ରଦ୍ଧା କରିବା କର୍ତ୍ତବ୍ୟ । ପଣ୍ଡିତମାନେ ଅଦୃଷ୍ଟପୂର୍ବ ପରଲୋକକୁ ମଧ୍ୟ ପ୍ରତ୍ୟକ୍ଷ ସଦୃଶ ଅବଗତ ଅଛନ୍ତି । ବିଦ୍ୱାନ ବ୍ୟକ୍ତିଙ୍କର ମଧ୍ୟ ପିତୃ ଓ ଦେବକାର୍ଯ୍ୟର ଅର୍ଚ୍ଚନାଦ୍ୱାରା ଧର୍ମାନୁଷ୍ଠାନପୂର୍ବକ ବିହିତାନୁଯାୟୀ ତ୍ରିବର୍ଗର ସେବା କରିବା ଉଚିତ ।୪୩।

ଜରା ଓ ମୃତ୍ୟୁରୂପ ଗ୍ରାହ ସମାକୁଳ ଅତୀବ ଗମ୍ଭୀର । ଏହି କାଳରୂପ ସାଗରରେ ଯେ ପୃଥିବୀ ନିମଗ୍ନ ହେଉଅଛି, ତାହା କେହି ଜାଣିପାରୁ ନାହାନ୍ତି ।୪୦।

ଅନେକ ବେଦ୍ୟ ଆୟୁର୍ବେଦ ଅଧ୍ୟୟନ କରିସୁଦ୍ଧା ସପରିବାରରେ ବ୍ୟାଧିଦ୍ୱାରା ଅଭିଭୂତ ହେବାର ଦେଖାଯାନ୍ତି । ଯେପରି ମହୋଦଧି ବେଳାଭୂମିକୁ ଅତିକ୍ରମ କରିବାରେ ସମର୍ଥ ହୁଏ ନାହିଁ, ସେହିପରି ଉକ୍ତ ବୈଦ୍ୟମାନେ ମଧ୍ୟ ନାନାପ୍ରକାର ଘୃତ ଓ କଷାୟ ଔଷଧସବୁ ସେବନ କରିସୁଦ୍ଧା କୌଣସି ଉପାୟରେ ମୃତ୍ୟୁକୁ ଅତିବର୍ତ୍ତନ କରିପାରନ୍ତି ନାହିଁ ।୪୬।

ହସ୍ତିମାନେ ଯେପରି ପର୍ବତରେ ବାସକରି ସୁଦ୍ଧା ମତ୍ତତାବଶତଃ ସମୟ ସମୟରେ ଦନ୍ତଦ୍ୱାରା ପର୍ବତକୁ ଭଗ୍ନ କରିଥାନ୍ତି, ସେହିପରି ରସାୟନବିତ୍ ପଣ୍ଡିତମାନେ ଶରୀରରକ୍ଷାର୍ଥ ଉତ୍ତମରୂପେ

ରସାୟନମାନଙ୍କ ପ୍ରୟୋଗ କରିସୁଦ୍ଧା ଜରାଜନିତ ଆକ୍ରାନ୍ତ ହେବାର ଦେଖାଯାନ୍ତି ।୪୭।

ଏହି ପ୍ରକାରରେ କି ଦାତା, କି ଯଜ୍ଞଶୀଳ, କି ବେଦାଭ୍ୟାସରତ, କି ତପସ୍ୟାନ୍ୱିତ ପୁରୁଷ କେହି ସୁଦ୍ଧା ଜରା ମୃତ୍ୟୁକୁ ଅତିକ୍ରମ କରି ପାରନ୍ତି ନାହିଁ ।୪ ।

ସଞ୍ଜାତ ପ୍ରାଣିମାନଙ୍କ ସମ୍ବନ୍ଧରେ ବତ୍ସର, ମାସ, ପକ୍ଷ, ବା ଦିବା କି ରାତ୍ରି ଯାହା ଅତୀତ ହୁଏ, ତାହା ଆଉ ପ୍ରତ୍ୟାବର୍ତ୍ତିତ ହୁଏ ନାହିଁ । ଅତଏବ ଅନିତ୍ୟ ଶରୀରବିଶିଷ୍ଟ ମନୁଷ୍ୟ କାଳଦ୍ରୁତ୍ତ ହେଲେ ଇଚ୍ଛା ନ ଥିଲେ ସୁଦ୍ଧା ଅବଶ୍ୟ ସର୍ବପ୍ରାଣିଙ୍କର ଗନ୍ତବ୍ୟ ସେହି ଚିର ନିଶ୍ଚିତ ମହାପଥରେ ଗମନ କରନ୍ତି ।୫୦।

ଚରମକାଳରେ ଦେହ ଜୀବର ବିଶ୍ଳେଷିତ ହେଉ କିମ୍ବା ଜୀବ ଦେହରୁ ଅନ୍ତର୍ହିତ ହେଉ, ପ୍ରକୃତରେ ସ୍ତ୍ରୀ ବା ଅନ୍ୟାନ୍ୟ ବନ୍ଧୁବର୍ଗ ସହିତ ଯେଉଁ ସଙ୍ଗତି ତାହା କେବଳ ପାନ୍ଥ ନିବାସସ୍ଥିତ ପଥିକମାନଙ୍କ ପ୍ରାପ୍ତି ଜାଣିବ ।୫୧।

ଏହି ଜଗତରେ କେହି ସୁଦ୍ଧା କଦାପି ଚିର ସହବାସଲାଭ କରି ପାରେ ନାହିଁ । ଯେତେବେଳେ ନିଜର ଶରୀର ସହିତ ଜୀବର ଚିର ସହବାସ ହେବାର ସମ୍ଭାବନା ନାହିଁ, ସେତେବେଳେ ଅପର କାହାରି ସହିତ ଚିରବାସ ହେବାର ସମ୍ଭାବନା ନାହିଁ । ହେ ନିଷ୍ପାପ ମହାରାଜ ! ବର୍ତ୍ତମାନ ତୁମ୍ଭର ପିତା କିମ୍ବା ପିତାମହ ପ୍ରଭୃତି କେଉଁଠାରେ ଅଛନ୍ତି ? ବର୍ତ୍ତମାନ ସେମାନେ ମଧ୍ୟ ତୁମ୍ଭଙ୍କୁ ଦେଖୁ ନାହାନ୍ତି ଏବଂ ତୁମ୍ଭେ ମଧ୍ୟ ସେମାନଙ୍କୁ ଦେଖି ପାରୁନାହଁ ।୫୩।

ହେ ରାଜନ୍ ! କୌଣସି ମନୁଷ୍ୟ ସ୍ୱର୍ଗ କିମ୍ବା ନରକକୁ ଦେଖିପାରେ ନାହିଁ, କିନ୍ତୁ ପଣ୍ଡିତମାନଙ୍କର ଆଗମ କେବଳ ଚକ୍ଷୁ ଅଟେ, ଅତଏବ ତୁମ୍ଭେ ତଦନୁସାରେ ସଂସାର-ଯାତ୍ରା ନିର୍ବାହ କର ।୫୪।

ଏହି ସଂସାରରେ ଜନ୍ମଗ୍ରହଣପୂର୍ବକ ଋଷି, ପିତୃ ଓ ଦେବ ଋଣ ପରିଶୋଧନନିମିତ୍ତ ଅସୂୟା ଶୂନ୍ୟ ହୋଇ ପ୍ରଥମତଃ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବ, ପରେ ଦାର ପରିଗ୍ରହ କରି ସନ୍ତାନୋତ୍ପାଦନ କରିବ, ତଦନନ୍ତର ଯଜ୍ଞାଦିର ଅନୁଷ୍ଠାନ କରିବ ।୫୫।

• ଏହି ପ୍ରକାରେ ପ୍ରଜ୍ଞା ଚକ୍ଷୁ ପୁରୁଷ ହୃଦୟସ୍ଥ ସମସ୍ତ ଶୋକାଦିକୁ ପରିହାରପୂର୍ବକ ସମାହିତରେ ବ୍ରହ୍ମଚର୍ଯ୍ୟାବଲମ୍ବନ, ପୁତ୍ରୋତ୍ପାଦନ ଓ ଯଜ୍ଞାନୁଷ୍ଠାନ କରି ଐହିକ ଓ ପାରତ୍ରିକ କାର୍ଯ୍ୟକୁ ସାଧନ କରିବେ ।୫୬।

ଯେ ଐହିକ ଓ ପାରତ୍ରିକର କାର୍ଯ୍ୟ ସମାନରୂପେ ସାଧନ କରିପାରନ୍ତି ଏବଂ ଇଚ୍ଛାନୁଯାୟୀ କରାଦ ସଂଗ୍ରହ କରନ୍ତି, ସେହି ଧର୍ମ୍ମ ପ୍ରବର୍ତ୍ତକ ନରପତିଙ୍କର ଚରାଚରାଦି ସମସ୍ତ ଲୋକରେ ଯଶବର୍ଦ୍ଧିତ ହୁଏ ।୫୭।

ବିଶୁଦ୍ଧ-ବୁଦ୍ଧି ବିଦେହରାଜ ଏହିପରି ହେତୁପୂର୍ଣ୍ଣ ସମଗ୍ର ଉପଦେଶ ବାକ୍ୟକୁ ଅବଗତ ହୋଇ ଶାନ୍ତ-ଶୋକ ହେଲେ ଏବଂ ଅଶ୍ମଋଷିଙ୍କୁ ଆମନ୍ତ୍ରଣପୂର୍ବକ ସ୍ୱଗୃହ ପ୍ରତିଗମନ କଲେ ।୫୮।

ହେ ଅଚ୍ୟୁତ ଯୁଧିଷ୍ଠିର ! ତୁମ୍ଭେ ଇନ୍ଦ୍ରଙ୍କ ସଦୃଶ ପରାକ୍ରମୀ ଅଟ, ଅତଏବ ଶୋକ ପରିତ୍ୟାଗପୂର୍ବକ ହର୍ଷାନ୍ୱିତ ହୁଅ । ତୁମ୍ଭେ କ୍ଷତ୍ରିୟ ଧର୍ମ୍ମାନୁସାରେ ଏହି ପୃଥିବୀକୁ ଜୟ କରିଅଛ । ବର୍ତ୍ତମାନ ଏହାକୁ ଉପଭୋଗ କର । ଅସ୍ମର ବାକ୍ୟରେ ଅନାସ୍ଥା ପ୍ରଦର୍ଶନ କରନାହିଁ ।୫୯।

---

## ଅଧ୍ୟାୟ-୨୯

ବୈଶମ୍ପାୟନ କହିଲେ—ରାଜେନ୍ଦ୍ର ଧର୍ମପୁତ୍ର ଯୁଧିଷ୍ଠିର ବେଦବ୍ୟାସଙ୍କର ଉପଦେଶ ବାକ୍ୟକୁ ଶ୍ରବଣ କରି ସୁଦ୍ଧା ଯେତେବେଳେ କୌଣସି ଉତ୍ତର ଦେଲେ ନାହିଁ, ତେତେବେଳେ ପାଣ୍ଡୁପୁତ୍ର ଗୁଡ଼ାକେଶ ଅର୍ଜ୍ଜୁନ ହୃଷୀକେଶଙ୍କୁ ସମ୍ବୋଧନପୂର୍ବକ କହିଲେ ।୧।

ଅର୍ଜ୍ଜୁନ କହିଲେ—ହେ ମାଧବ ! ଧର୍ମ୍ମନନ୍ଦନ ଶତ୍ରୁତାପନ ମହାରାଜ ଯୁଧିଷ୍ଠିର ଜ୍ଞାତିବିନାଶ ଶୋକରେ ଅତ୍ୟନ୍ତ ସନ୍ତପ୍ତଚିତ୍ତ ହୋଇ ଅଛନ୍ତି । ଅତଏବ ଆପଣ ଏହି ଶୋକାର୍ଣ୍ଣବ ନିମଗ୍ନ ନରପତିଙ୍କୁ ପ୍ରବୋଧିତ କରନ୍ତୁ ।୨।

ହେ ଜନାର୍ଦ୍ଦନ ! ଅସ୍ମମାନଙ୍କର କାହାର ବାକ୍ୟରେ ସୁଦ୍ଧା ଏହାଙ୍କର ଦୃଢ଼ତର ପ୍ରଶାନ୍ତି ହେଉନାହିଁ । ଅତଏବ ଆପଣ ବର୍ତ୍ତମାନ ଏହାଙ୍କର ଶୋକାପନୟନାର୍ଥ ପ୍ରବୃତ୍ତ ହେଉନ୍ତୁ ।୩।

ବୈଶମ୍ପାୟନ କହିଲେ—ମହାତ୍ମା ବିଜୟୀ ଗୋବିନ୍ଦଙ୍କୁ ଏହିପରି କହନ୍ତେ ପୁଣ୍ଡରୀକାକ୍ଷ ଅଚ୍ୟୁତ ଧର୍ମରାଜଙ୍କୁ ପ୍ରବୋଧିତ କରିବାରେ ପ୍ରବୃତ୍ତ ହେଲେ । କେଶବ ବାଲ୍ୟକାଳରୁ ଅର୍ଜୁନଙ୍କ ଅପେକ୍ଷା ଧର୍ମରାଜଙ୍କର ସମଧିକ ପ୍ରିୟ ଥିଲେ । ସୁତରାଂ କେଶବଙ୍କର ବାକ୍ୟ ଧର୍ମରାଜଙ୍କର ଅନତିକ୍ରମଣୀୟ ଥିଲା ।୫।

କୃଷ୍ଣ ଯୁଧିଷ୍ଠିରଙ୍କର ଚନ୍ଦନଭୂଷିତ ଶୈଳସ୍ତମ୍ଭସଦୃଶ ହସ୍ତ ଧାରଣପୂର୍ବକ ବାକ୍ୟଦ୍ୱାରା ଚିତ୍ତବିନୋଦନ କରି କହିବାକୁ ଆରମ୍ଭ କଲେ ।୬।

ସୂର୍ଯ୍ୟୋଦୟରେ ପଦ୍ମକୋଷ ଯେପରି ବିସ୍ପଷ୍ଟରୂପରେ ବିକଶିତ ହୁଏ, ବାକ୍ୟବିନ୍ୟାସ କାଳରେ କେଶବଙ୍କର ସୁନ୍ଦର ଦଶନପଂକ୍ତି ଓ ସୁରୁଚିରଲୋଚନ-ଶୋଭିତ ବଦନମଣ୍ଡଳ ମଧ୍ୟ ସେହିପରି ଶୋଭା ପ୍ରକାଶ କଲା ।୭।

ବାସୁଦେବ କହିଲେ—ହେ ପୁରୁଷ ଶାର୍ଦ୍ଦୂଳ ମହାରାଜ ! ଯେଉଁମାନେ କୁରୁକ୍ଷେତ୍ର ଯୁଦ୍ଧରେ ନିହତ ହୋଇ ଅଛନ୍ତି, ସେମାନଙ୍କୁ କୌଣସି ଉପାୟରେ ପୁନଃପ୍ରାପ୍ତ ହେବାର ସମ୍ଭାବନା ନାହିଁ । ଅତଏବ ଆପଣ ଏହି ଶରୀର ଶୋଷଣ କରି ଶୋକକୁ ପରିତ୍ୟାଗ କରନ୍ତୁ । ଯେପରି ସ୍ୱପ୍ନଲବ୍ଧ ବସ୍ତୁ ପ୍ରବୁଦ୍ଧ କାଳରେ ଅଦୃଷ୍ଟ ହୋଇଯାଏ, ଏହି ମହାରଣରେ ନିହତ କ୍ଷତ୍ରିୟମାନଙ୍କୁ ମଧ୍ୟ ସେହିପରି ମନେ କରନ୍ତୁ ।୯।

ସେହି ସମରଶୋଭିତ ଶୂରମାନେ ସମସ୍ତେ ଯୁଦ୍ଧକାଳରେ ସମ୍ମୁଖବର୍ତ୍ତୀ ହୋଇଥିଲେ । ସେମାନଙ୍କ ମଧ୍ୟରୁ କେହି ପଳାୟନ ପରି କିମ୍ବା ପୃଷ୍ଠଦେଶରୁ ଆହତ ହୋଇ ନିହତ ହୋଇ ନାହାନ୍ତି ।୧୦।

ସମସ୍ତେ ବିପକ୍ଷ ବୀରମାନଙ୍କ ସହିତ ଯୁଦ୍ଧକରି ଆତ୍ମପ୍ରାଣ ବିସର୍ଜ୍ଜନପୂର୍ବକ ଶସ୍ତ୍ରପୂତ ହୋଇ ସ୍ୱର୍ଗକୁ ଗମନ କରିଅଛନ୍ତି । ଅତଏବ ସେମାନଙ୍କ ନିମିତ୍ତ ଆଉ ଶୋକ କରିବା ଉଚିତ ନୁହେଁ ।୧୧।

ହେ ମହାରାଜ ! କ୍ଷତ୍ରିୟ ଧର୍ମନିରତ ବେଦ ବେଦାଙ୍ଗ ପାରଗ ଶୂରମାନେ କଷ୍ଟସ୍ୱ ବୀରମାନଙ୍କର ପବିତ୍ର ଗତିକୁ ପ୍ରାପ୍ତ ହୁଅନ୍ତି । ଅତଏବ ସେମାନଙ୍କ ନିମିତ୍ତ ଶୋକ କରିବା ଅନୁଚିତ । ଆପଣ ପରଲୋକଗତ ସେହି ମହାନୁଭବ ପୂର୍ବ ନରପତିମାନଙ୍କ ଉପାଖ୍ୟାନକୁ ଶ୍ରବଣ କଲେ ଆଉ ନିଜ ବନ୍ଧୁବର୍ଗଙ୍କ ନିମନ୍ତେ ଶୋକ କରିବେ ନାହିଁ । ଏ ବିଷୟରେ ଦେବର୍ଷି

ନାରଦୋକ୍ତ ଗୋଟିଏ ପୁରାତନ ଇତିହାସ କଥିତ ଅଛି ଶ୍ରବଣ କରନ୍ତୁ । ପୁତ୍ର ଶୋକାର୍ତ୍ତ ସୃଞ୍ଜୟ ରାଜାଙ୍କୁ ନାରଦ ଏହିପରି ଉପଦେଶ ଦେଇଥିଲେ । ହେ ସୃଞ୍ଜୟ, ତୁମ୍ଭେ କିମ୍ବା ଆମ୍ଭେ ଅଥବା ଅପର ଲୋକ ସମସ୍ତେ କେହି ସୁଦ୍ଧା ସୁଖ ଦୁଃଖରୁ ବିମୁକ୍ତ ନୋହୁଁ ଏବଂ ଆମ୍ଭେମାନେ ସମସ୍ତେ ମୃତ୍ୟୁମୁଖରେ ପତିତ ହେବୁଁ । ଅତଏବ ଆଉ ଶୋକ କରିବାର ପ୍ରୟୋଜନ କ'ଣ ! ଆମ୍ଭେ ତୁମ୍ଭଠାରେ ପୂର୍ବକାଳୀନ ନରପତିମାନଙ୍କ ମହାତ୍ମ୍ୟ କୀର୍ତ୍ତନ କରୁଅଛୁଁ ଶ୍ରବଣ କର ।୧୬।

ଅବହିତ ଚିତ୍ତରେ ଏହା ଶ୍ରବଣ କଲେ ହୃଦୟସ୍ଥ ଶୋକକୁ ଦୂର କରି ପାରିବ । ସେହି ମହାନୁଭବ ପୃଥିବୀପତିମାନଙ୍କ ବୃତ୍ତାନ୍ତ ଆମ୍ଭଠାରୁ ବିସ୍ତୀର୍ଣ୍ଣ ଭାବରେ ଶ୍ରବଣ କରି ସନ୍ତାପ ପରିହାରପୂର୍ବକ ଚିତ୍ତକୁ ପ୍ରଶାନ୍ତ କର । ଅଗ୍ରଗଣ୍ୟ ନରପତିମାନଙ୍କର ସୁଶ୍ରାବ୍ୟ ମନୋହର ପବିତ୍ର ଆଖ୍ୟାନ ଶ୍ରବଣ କଲେ କ୍ରୂର ଗ୍ରହମାନଙ୍କର ଶାନ୍ତି ଓ ଆୟୁବୃଦ୍ଧି ହୁଏ । ହେ ସୃଞ୍ଜୟ, ତୁମ୍ଭେ ଶୁଣିଥିବ, ଅବିକ୍ଷିତଙ୍କ ପୁତ୍ର ମରୁତ ନାମରେ ଗୋଟିଏ ନରପତି ଥିଲେ; କିନ୍ତୁ ସେ ମଧ୍ୟ ମୃତ ହୋଇ ଅଛନ୍ତି । ୧୮ ।

ଯେଉଁ ମହାତ୍ମା ମରୁତଙ୍କର ବିଶ୍ୱସୃକ ଅର୍ଥାତ୍ ସର୍ବସ୍ୱ ନାମକ ଯଜ୍ଞରେ ସୁରାଚାର୍ଯ୍ୟ ବୃହସ୍ପତିଙ୍କ ରହିତ ଇନ୍ଦ୍ର ଓ ବରୁଣ ପ୍ରଭୃତି ଦେବଗଣ ସମାଗତ ହୋଇଥିଲେ ଯେ ସ୍ପର୍ଦ୍ଧାପୂର୍ବକ ଦେବରାଜ ପୁରନ୍ଦରଙ୍କୁ ଯୁଦ୍ଧରେ ପରାଜିତ କରିଥିଲେ, ଯଜ୍ଞାନୁଷ୍ଠାନ ସମୟରେ ବିଦ୍ୱାନ ବୃହସ୍ପତି ଇନ୍ଦ୍ରଙ୍କର ପ୍ରିୟ କାମନାରେ ଯେଉଁ ମରୁତଙ୍କୁ 'ଆମ୍ଭେ ତୁମ୍ଭର ଯଜ୍ଞ କରିବୁ ନାହିଁ', ଏହିପରି କହି ପ୍ରତ୍ୟାଖାନ କରନ୍ତେ, ବୃହସ୍ପତିଙ୍କର କନିଷ୍ଠ ସମ୍ବର୍ତ୍ତ ଯାହାଙ୍କର ଯଜ୍ଞାନୁଷ୍ଠାନ କରିଥିଲେ, ଯାହାଙ୍କର ଶାସନ କାଳରେ ପୃଥିବୀ-ରାଜବିଭବୋପଯୁକ୍ତ ଶୋଭନାଳଙ୍କାରରେ ଭୂଷିତ ହୋଇ ହଳକର୍ଷଣ ବ୍ୟତୀତ ଶସ୍ୟ ପ୍ରଦାନ କରୁଥିଲା, ଯେଉଁ ନରପତି ମରୁତଙ୍କ ଯଜ୍ଞରେ ବିଶ୍ୱଦେବ ସଭାସଦ ଥିଲେ, ଯେଉଁ ମହାତ୍ମାଙ୍କର ସାଧ୍ୟଗଣ ପରିବେଷ୍ଟା ଥିଲେ ଏବଂ ମରୁଦ୍‌ଗଣ ଆସି ସୋମରସ ପାନ କରିଥିଲେ, ଯେ ଦକ୍ଷିଣା ପ୍ରଦାନ ବିଷୟରେ ଦେବ, ଗନ୍ଧର୍ବ ଓ ମନୁଷ୍ୟମାନଙ୍କଠାରୁ ଅତିଶୟିତ ହୋଇଥିଲେ, ଯେ ଧର୍ମ, ଜ୍ଞାନ, ବୈରାଗ୍ୟ ଓ ଐଶ୍ୱର୍ଯ୍ୟ ଏହି ଚାରି ପ୍ରକାର ଭଦ୍ରରେ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ଥିଲେ ଏବଂ ତୁମ୍ଭର ପୁତ୍ରମାନଙ୍କ ଅପେକ୍ଷା ମଧ୍ୟ ସମଧିକ ପୁଣ୍ୟବାନ୍ ଥିଲେ । ହେ ସୃଞ୍ଜୟ, ତାଦୃଶ ଗୁଣସମ୍ପନ୍ନ ମହାତ୍ମା

ମରୁତରାଜା ମୃତ ହୋଇ ଅଛନ୍ତି । ଅତଏବ ତୁମ୍ଭର ପୁତ୍ରମାନଙ୍କ ନିମିତ୍ତ ଅନୁତାପ କରିବା ଉଚିତ ନୁହେଁ । ୨୪ ।

ହେ ସୃଞ୍ଜୟ ! ସୁହୋତ୍ର ନାମରେ ଗୋଟିଏ ନରପତି ଥିଲେ, ବୋଧହୁଏ ଶୁଣିଥିବ । ସେ ମଧ୍ୟ ଲୋକାନ୍ତରିତ ହୋଇ ଯାଇ ଅଛନ୍ତି । ଯେଉଁ ସୁହୋତ୍ର ରାଜାଙ୍କ ରାଜ୍ୟରେ ଇନ୍ଦ୍ର ବର୍ଷେ ପର୍ଯ୍ୟନ୍ତ ନିରନ୍ତର ସୁବର୍ଣ୍ଣ ବର୍ଷଣ କରିଥିଲେ, ଯେଉଁ ନରପତିଙ୍କୁ ପତି ଭାବରେ ପ୍ରାପ୍ତ ହୋଇ ପୃଥିବୀ ସତ୍ୟବତୀ ହୋଇ ନାମ ପ୍ରାପ୍ତ ହୋଇ ଥିଲେ, ଯାହାଙ୍କର ରାଜ୍ୟରେ ନଦୀମାନଙ୍କରେ ସୁବର୍ଣ୍ଣମୟ ଜଳଜନ୍ତୁସବୁ ଭାସମାନ ହେଉଥିଲେ, କାରଣ ତତ୍କାଳରେ ଲୋକ ପୂଜିତ ଇନ୍ଦ୍ରଦେବ ପୃଥିବୀସ୍ଥ ସମସ୍ତ ନଦୀମାନଙ୍କରେ ସ୍ୱର୍ଣ୍ଣମୟ କୁମ୍ଭ, କର୍କଟ, ନକ୍ର ଓ ଶିଶୁକମାନଙ୍କୁ ବର୍ଷଣ କରୁଥିଲେ ସେହି ଶତଶତ ସହସ୍ର, ସହସ୍ର ମତ୍ସ୍ୟ ମକର ଓ କଚ୍ଛପ ପ୍ରଭୃତି ହିରଣ୍ମୟ ଜଳଜନ୍ତୁମାନଙ୍କୁ ଦେଖି ସୁହୋତ୍ରରାଜ ସ୍ୱୟଂ ବିସ୍ମୟାପନ୍ନ ହୋଇଥିଲେ । ହେ ରାଜନ୍ ! ତଦନନ୍ତର ନରପତି ସୁହୋତ୍ର କୁରୁଜାଙ୍ଗଲ ଦେଶରେ ଯଜ୍ଞବିସ୍ତାରପୂର୍ବକ ସେହି ଅସୀମ ସୁବର୍ଣ୍ଣରାଶି ବ୍ରାହ୍ମଣମାନଙ୍କୁ ସମର୍ପଣ କରିଥିଲେ । ସେହି ମହାତ୍ମା ସୁହୋତ୍ର ଧର୍ମ, ଜ୍ଞାନ, ବୈରାଗ୍ୟ ଓ ଐଶ୍ୱର୍ଯ୍ୟ ଏହି ଚତୁଃପ୍ରକାର ଭଦ୍ରରେ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ଥିଲେ ଏବଂ ତୁମ୍ଭର ପୁତ୍ରଙ୍କ ଅପେକ୍ଷା ସମଧିକ ପୁଣ୍ୟାତ୍ମା ଥିଲେ; କିନ୍ତୁ ସେ ମଧ୍ୟ ମୃତ୍ୟୁ-ମୁଖରେ ପତିତ ହୋଇ ଅଛନ୍ତି । ଅତଏବ ତୁମ୍ଭେ ସେହି ଅଦାତା ଓ ଅଯାଜ୍ଞିକ ପୁତ୍ରମାନଙ୍କ ନିମିତ୍ତ ଆଉ ଅନୁତାପ କରନାହିଁ । ହେ ସୃଞ୍ଜୟ ! ଅଙ୍ଗରାଜ ବୃହଦ୍ରଥଙ୍କର ନାମ ଶ୍ରବଣ କରିଥିବ, ସେ ମଧ୍ୟ କାଳଗ୍ରସ୍ତ ହୋଇ ଅଛନ୍ତି । ଯେ ବିଷ୍ଣୁପଦ ଗିରିରେ ଯଜ୍ଞରେ ଦୀକ୍ଷିତ ହୋଇ ରତ୍ନାଳଂକୃତା ନିୟୁତ କନ୍ୟା, ନିୟୁତ ଅଶ୍ୱ,ପଦ୍ମଜାଲଲାଞ୍ଛିତ ଦଶ ସହସ୍ର ହସ୍ତୀ;ସହସ୍ର ଧେନୁ ସହିତ ସୁବର୍ଣ୍ଣମାଳା ବିଭୂଷିତ ଏକକୋଟି ବୃଷ ଦକ୍ଷିଣା ପ୍ରଦାନ କରିଥିଲେ,ଯେ ପୂର୍ବେ ଶତ ସଂଖ୍ୟକ ଯଜ୍ଞ କରିଥିଲେ । ଯେଉଁ ଯଜ୍ଞରେ ସୋମରସ ପାନ କରି ଦେବରାଜ ଇନ୍ଦ୍ର ମତ୍ତ ହୋଇଥିଲେ ଏବଂ ଦକ୍ଷିଣାପ୍ରାପ୍ତ ଧନମଦରେ ଦ୍ୱିଜାତିମାନେ ମତ୍ତ ହୋଇଥିଲେ, ଯେ ଦକ୍ଷିଣା ପ୍ରଦାନ ବିଷୟରେ ଦେବ, ଗନ୍ଧର୍ବ, ଓ ମନୁଷ୍ୟ ସମସ୍ତଙ୍କଠାରୁ ଅତିଶୟିତ ହୋଇଥିଲେ, ଯେଉଁ ଯଜ୍ଞରେ ସୋମରସ ପାନ ବିହିତ ଅଛି, ଏପରି ଅଗ୍ନିଷ୍ଟୋମ, ଅତ୍ୟଗ୍ନି-ଷ୍ଟୋମ, ଉକ୍ଥ, ଷୋଡ଼ଶୀ, ବାଜପେୟ, ଅତିରାତ୍ର, ଅପ୍ତୋର୍ଯ୍ୟାମ ଏହି

ସପ୍ତବଧ ସୋମସଂସ୍ଥାନ ନାମକ ଯଜ୍ଞରେ ଅଙ୍ଗରାଜ ବୃହଦ୍ରଥ ଯେପରି ଧନ ଦାନ କରିଥିଲେ, ଏହି ପୃଥିବୀରେ ସେପରି କୌଣସି ପୁରୁଷ ଜନ୍ମଗ୍ରହଣ କରିନାହାନ୍ତି କି କରିବ ନାହିଁ, ଯେ କି ଅଙ୍ଗରାଜଙ୍କସଦୃଶ ଧନଦାନ କରିପାରିବ । ହେ ସୃଞ୍ଜୟ ! ସେହି ଅଙ୍ଗରାଜ ବୃହଦ୍ରଥ ଧର୍ମ, ଜ୍ଞାନ, ବୈରାଗ୍ୟ ଓ ଐଶ୍ୱର୍ଯ୍ୟ ଏହି ଚାରି ବିଷୟରେ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ଥିଲେ ଏବଂ ତୁମ୍ଭର ପୁତ୍ରଙ୍କ ଅପେକ୍ଷା ମଧ୍ୟ ଅଧିକ ପୁଣ୍ୟଶାଳୀ ଥିଲେ; କିନ୍ତୁ ସେ ମଧ୍ୟ କାଳଗ୍ରସ୍ତ ହୋଇ ଅଛନ୍ତି । ଅତଏବ ତୁମ୍ଭେ ଆଉ ପୁତ୍ରଙ୍କ ସକାଶେ ଅନୁତାପ କରନାହିଁ । ହେ ସୃଞ୍ଜୟ ! ଉଶୀନର ପୁତ୍ର ମହାରାଜା ଶିବିଙ୍କ କଥା ମଧ୍ୟ ଶ୍ରବଣ କରିଥିବ । ସେ ମଧ୍ୟ ମୃତ ହୋଇଅଛନ୍ତି । ୩୯ ।

ଯେ ଶରୀର ଆବରଣକାରୀ ଚର୍ମସଦୃଶ ଏହି ସମଗ୍ର ପୃଥିବୀକୁ କବଳିତ କରିଥିଲେ । ଯେଉଁ ଶିବିରାଜା ଗୋଟିଏ ଜୟଶୀଳ ରଥରେ ସମାରୂଢ଼ ହୋଇ ସୁମହତ ରଥ ନିର୍ଘୋଷଦ୍ୱାରା ଚତୁର୍ଦ୍ଦିଗକୁ ନିନାଦିତ କରୁଥିଲେ ଏବଂ ସମସ୍ତ ରାଜାମାନଙ୍କର ପରାଜୟ ସାଧନପୂର୍ବକ ପୃଥିବୀକୁ ଏକଛତ୍ର କରିଥିଲେ, ଯେଉଁ ଶିବିରାଜା ଆରଣ୍ୟକ ସହିତ ଗ୍ରାମ୍ୟପଶୁ, ଗୋ, ଅଶ୍ୱ ପ୍ରଭୃତି ନିଜର ଯେତେ ଥିଲେ ତେତେ ସଂଖ୍ୟକ ଗୋମାନଙ୍କୁ ଅଣାଇ ଯଜ୍ଞୋପକ୍ଷରେ ଦାନ କରିଥିଲେ, ପୂର୍ବ ବା ପରବର୍ତ୍ତୀ ଭୂପାଳମାନଙ୍କ ମଧ୍ୟରେ ଇନ୍ଦ୍ରତୁଲ୍ୟ ପରାକ୍ରମୀ ଯେଉଁ ଉଶୀନର ପୁତ୍ର ଶିବିରାଜାଙ୍କ ବ୍ୟତୀତ ପ୍ରଜାପତି ବ୍ରହ୍ମା ଅନ୍ୟ କାହାକୁ ରାଜ୍ୟ ଭାର ବହନରେ ଉପଯୁକ୍ତ ମନେ କରି ନାହାନ୍ତି, ସେହି ମହାତ୍ମା ଶିବି ନରପତି ଧର୍ମ, ଜ୍ଞାନ, ବୈରାଗ୍ୟ ଓ ଐଶ୍ୱର୍ଯ୍ୟ ଏହି ଚାରି ବିଷୟରେ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ଥିଲେ ଏବଂ ତୁମ୍ଭର ପୁତ୍ରଙ୍କଠାରୁ ସମଧିକ ପୁଣ୍ୟବାନ୍ ଥିଲେ; କିନ୍ତୁ ତାଙ୍କପରି ଗୁଣସମ୍ପନ୍ନ ମହାତ୍ମା ମଧ୍ୟ ମୃତ ହୋଇ ଅଛନ୍ତି । ଅତଏବ ତୁମ୍ଭେ ଆଉ ତୁମ୍ଭର ଅଦାତା ଓ ଅଯାଜ୍ଞିକ ନିଜ ପୁତ୍ରନିମିତ୍ତ ଶୋକ କରନାହିଁ । ୪୪ ।

ହେ ସୃଞ୍ଜୟ, ତୁମ୍ଭେ ବିପୁଳ ବିଭବଶାଳୀ ଶକୁନ୍ତଳା ଗର୍ଭଜାତ ଦୁଷ୍ମନ୍ତ ନନ୍ଦନ ମହାତ୍ମା ଭରତଙ୍କ କଥା ଶ୍ରବଣ କରିଥିବ । ସେ ମଧ୍ୟ ମୃତ ହୋଇଛନ୍ତି ।

ଯେଉଁ ମହାତେଜା ଭରତ ରାଜା ଦେବଗଣଙ୍କର ପ୍ରୀତି କାମନାରେ ଯମୁନାକୂଳରେ ତ୍ରିଂଶତ, ସରସ୍ୱତୀ ତୀରରେ ବିଂଶତି ଏବଂ ଗଙ୍ଗାତୀରରେ ଚତୁର୍ଦ୍ଦଶ ଏହିପରି କ୍ରମାନ୍ୱୟରେ ସହସ୍ର ଅଶ୍ୱମେଧ ଯଜ୍ଞ ଏବଂ

ଏକଶତ ରାଜସୂୟ ଯଜ୍ଞ ଅନୁଷ୍ଠାନ କରିଥିଲେ । ମନୁଷ୍ୟମାନେ ଯେପରି ବାହୁବଳ ଅବଲମ୍ବନପୂର୍ବକ ଶୂନ୍ୟଗମନରେ ସମର୍ଥ ହୁଅନ୍ତି ନାହିଁ, ସେହିପରି ପୃଥିବୀସ୍ଥ କୌଣସି ନରପତି ଭରତରାଜାଙ୍କ କର୍ମର ଅନୁଗାମୀ ହେବାକୁ ସମର୍ଥ ହୋଇ ନାହାନ୍ତି । ଯେଉଁ ମହାତ୍ମା ଭରତରାଜା ଅସଂଖ୍ୟ ଯଜ୍ଞବେଦୀ ବିସ୍ତାରପୂର୍ବକ ତଦୁପଲକ୍ଷରେ ସହସ୍ରାଧିକ ଅର୍ବୁଦ ଅଶ୍ୱ ଓ ପଦ୍ମ ସହସ୍ର ରତ୍ନ କଣ୍ୱ ଋଷିଙ୍କୁ ପ୍ରଦାନ କରିଥିଲେ ସେହି ରାଜା ଧର୍ମ, ଜ୍ଞାନ ବୈରାଗ୍ୟ ଓ ଐଶ୍ୱର୍ଯ୍ୟ ଏହି ଚାରି ବିଷୟରେ ତୁମ୍ଭଠାରୁ ଶ୍ରେଷ୍ଠ ଥିଲେ ଏବଂ ତୁମ୍ଭର ପୁତ୍ରଙ୍କଠାରୁ ଅଧିକତର ପୁଣ୍ୟାତ୍ମା ଥିଲେ । କିନ୍ତୁ ସେ ମଧ୍ୟ କଳେବର ପରିତ୍ୟାଗ କରିଅଛନ୍ତି । ଅତଏବ ତୁମ୍ଭେ ସ୍ୱକୀୟ ପୁତ୍ରନିମିତ୍ତ ଆଉ ଅନୁତାପ କରନାହିଁ । ୫୦ ।

ହେ ସୃଞ୍ଜୟ ! ଦଶରଥ ପୁତ୍ର ରାମଚନ୍ଦ୍ରଙ୍କ କଥା ମଧ୍ୟ ଶ୍ରବଣ କରିଥିବ, ସେ ମଧ୍ୟ ମୃତ ହୋଇ ଅଛନ୍ତି । ଯେ ସର୍ବଦା ପ୍ରଜାଗଣଙ୍କ ପ୍ରତି ଔରସ ପୁତ୍ର ପ୍ରାୟ ଦୟାପ୍ରକାଶ କରୁଥିଲେ, ରାଜ୍ୟ-ଶାସନ ବିଷୟରେ ଯେ ସ୍ୱକୀୟ ପିତା ଦଶରଥଙ୍କସଦୃଶ ଥିଲେ, ଯେଉଁ ଧର୍ମାତ୍ମା ରାମଚନ୍ଦ୍ରଙ୍କ ଶାସନ-କାଳରେ କୌଣସି ସ୍ତ୍ରୀ ବିଧବା କିମ୍ବା କେହି ଅନାଥ ହୋଇ ନଥିଲେ ଏବଂ ପର୍ଜନ୍ୟ ଯଥାକାଳରେ ବୃଷ୍ଟିପ୍ରଦାନପୂର୍ବକ ଶସ୍ୟ ଉତ୍ପାଦନ କରୁଥିଲେ, ସୁତରାଂ ତାହାଙ୍କର ରାଷ୍ଟ୍ର ମଧ୍ୟରେ କଦାପି ଦୁର୍ଭିକ୍ଷ ଉପସ୍ଥିତ ହୋଇ ନଥିଲା; ଯେ ରାଜାଥିବା ସମୟରେ କୌଣସି ପ୍ରଜାର ସୁଦ୍ଧା ଜଳମଜ୍ଜନରେ କିମ୍ବା ଅଗ୍ନିଦାହରେ ମୃତ ହୋଇ ନଥିଲା ଏବଂ ଅନ୍ୟ କୌଣସି ରୋଗର ମଧ୍ୟ ଭୟ ନ ଥିଲା, ଯେଉଁ ରାମଚନ୍ଦ୍ରଙ୍କର ରାଜ୍ୟପାଳନ ସମୟରେ ସମସ୍ତ ଲୋକେ ସହସ୍ରବର୍ଷଜୀବୀ, ସହସ୍ର ପୁତ୍ରବାନ୍ ଏବଂ ନିଜ ନିଜ କାମନା ବିଷୟରେ ସିଦ୍ଧ ମନୋରଥ ହୋଇ ନିରୋଗରେ କାଳ-ଯାପନ କରୁଥିଲେ, ଯାହାଙ୍କର ରାଜ୍ୟମଧ୍ୟରେ ପୁରୁଷ କଥା ଦୂରେ ଥାଉ, ସ୍ତ୍ରୀ ଲୋକମାନେ ସୁଦ୍ଧା ପରସ୍ପର ବିବାଦରେ ପ୍ରବୃତ୍ତ ହେଉ ନଥିଲେ । ଯେଉଁ ରାଜା ରାମଚନ୍ଦ୍ରଙ୍କର ରାଜ୍ୟ-ଶାସନ ସମୟରେ ସମସ୍ତେ ଧର୍ମ ନିରତ, ସଦା ସନ୍ତୁଷ୍ଟ ଚିତ୍ତ, ଅଭିଳାଷ ବିଷୟରେ ପୂର୍ଣ୍ଣ ମନୋରଥ ସତ୍ୟବ୍ରତ, ନିର୍ଭୟ ଏବଂ ସ୍ୱାଧୀନ ଥିଲେ, ବୃକ୍ଷସବୁ ନିୟତ ଫଳ ପୁଷ୍ପରେ ପରିପୂର୍ଣ୍ଣ ଥିଲା ଏବଂ ଧେନୁମାନେ କଳଶ ପରିମିତ ଦୁଗ୍ଧ ପ୍ରଦାନ କରୁଥିଲେ, ଯେଉଁ ମହାତପା ରାମଚନ୍ଦ୍ର ପିତୃ ସତ୍ୟପ୍ରତି ପାଳନାର୍ଥେ

ଚତୁର୍ଦ୍ଦଶ ବର୍ଷ ଅରଣ୍ୟରେ ବାସକରି ପରେ ରାଜ୍ୟ ଗ୍ରହଣ କରିବା ସମୟରେ ଦ୍ୱିଗୁଣ ଦକ୍ଷିଣା ସମନ୍ୱିତ ଦଶଗୋଟି ଅଶ୍ୱମେଧ ଯଜ୍ଞ କରିଥିଲେ, ଯେଉଁ ଲୋହିତ ଲୋଚନ ଶ୍ୟାମଳ ସୁନ୍ଦର ଯୁବା ରାମଚନ୍ଦ୍ର ଯୂଥପତି ମାତଙ୍ଗସଦୃଶ ବଳଶାଳୀ ଥିଲେ, ଯାହାଙ୍କର ବାହୁ ଆଜାନୁ ଲମ୍ବିତ, ମୁଖ-କାନ୍ତି ମନୋହର ଏବଂ ସ୍କନ୍ଧ ଦେଶ ସିଂହ ସ୍କନ୍ଧତୁଲ୍ୟ ଥିଲା, ଯେଉଁ ମହାତ୍ମା ରାମଚନ୍ଦ୍ର ଏକାଦଶ ସହସ୍ର ବର୍ଷ ନିର୍ବିଘ୍ନରେ ଅଯୋଧ୍ୟାଧିପତି ହୋଇ ରାଜ୍ୟ-ଶାସନ କରିଥିଲେ, ସେହି ରାଜା ରାମଚନ୍ଦ୍ର ଧର୍ମ, ଜ୍ଞାନ, ବୈରାଗ୍ୟ ଓ ଐଶ୍ୱର୍ଯ୍ୟ ଏହି ଚାରି ବିଷୟରେ ତୁମ୍ଭ ଅପେକ୍ଷା ଶ୍ରେଷ୍ଠଥିଲେ ଏବଂ ତୁମ୍ଭର ପୁତ୍ରାପେକ୍ଷା ପୁଣ୍ୟଶାଳୀ ଥିଲେ; କିନ୍ତୁ ସେ ମଧ୍ୟ ମୃତ ହୋଇ ଅଛନ୍ତି, ଅତଏବ ତୁମ୍ଭେ ତୁମ୍ଭର ପୁତ୍ରନିମିତ୍ତ ଅନୁତାପ କରନାହିଁ । ୬୯ ।

ହେ ସୃଞ୍ଜୟ ! ଭଗୀରଥ ନାମରେ ଜଣେ ମହାନ୍ ନରପତି ଥିଲେ ଶ୍ରବଣ କରିଥିବ, ସେ ମଧ୍ୟ ମୃତ ହୋଇ ଅଛନ୍ତି । ଯେଉଁ ଭଗୀରଥ ରାଜାଙ୍କର ଯଜ୍ଞରେ ସୋମପାନ କରି ସୁରସତ୍ତମ ଭଗବାନ ପାକ-ଶାସନ ପ୍ରଚଣ୍ଡ ବାରଣସଦୃଶ ମତ୍ତ ହୋଇ ବାହୁ ବୀର୍ଯ୍ୟ ପ୍ରଭାବରେ ଏକ ସହସ୍ର ଅସୁରଙ୍କୁ ପରାଜିତ କରିଥିଲେ; ସେ ଯଜ୍ଞୋପଲକ୍ଷରେ ରତ୍ନାଳଙ୍କାର ଭୂଷିତା ଏକ ସହସ୍ର କନ୍ୟା ପ୍ରଦାନ କରିଥିଲେ । ଏହିସବୁ କନ୍ୟା ପ୍ରତ୍ୟେକେ ଚତୁରଶ୍ୱଯୋଜିତ ଏକ ଏକ ରଥରେ ସମାରୂଢ଼ ଥିଲେ । ପ୍ରତ୍ୟେକ ରଥ ସହିତ ସ୍ୱର୍ଣ୍ଣ ମାଳା ବିଭୂଷିତ ପଦ୍ମଜାଲ ଚିହ୍ନିତ ଏକଶତ ହସ୍ତୀ ନିଯୁକ୍ତ ଥିଲେ ଏବଂ ପ୍ରତ୍ୟେକ ହସ୍ତୀ ସହିତ ଏକ ଏକ ସହସ୍ର ଅଶ୍ୱ ନିଯୁକ୍ତ ଥିଲେ । ପ୍ରତ୍ୟେକ ଅଶ୍ୱ ସହିତ ଏକ ଏକ ସହସ୍ର ଗୋ, ଏକ ଏକ ସହସ୍ର ଅଜ, ଏବଂ ଏକ ଏକ ସହସ୍ର ମେଷ ଥିଲେ । ଯେଉଁ ଯାଜ୍ଞିକ, ଭୂରିଦକ୍ଷିଣ ' ଇକ୍ଷ୍ୱାକୁ କୁଳନନ୍ଦନ ଭଗୀରଥଙ୍କୁ ତ୍ରିଲୋକ ପଥଗା ଗଙ୍ଗା ପିତୃତ୍ୱରେ ସ୍ୱୀକାରପୂର୍ବକ ସମୀପସ୍ଥ ସେହି ମହାତ୍ମାଙ୍କର ଉରୁ ଦେଶରେ ଉପବେଶନ କରିଥିଲେ ବୋଲି "ଉର୍ବଶୀ ଏବଂ ଭାଗୀରଥୀ" ଏହି ଦୁଇ ଆଖ୍ୟାକୁ ଧାରଣ କରିଅଛନ୍ତି, ସେହି ନରପତି ଭଗୀରଥ ଧର୍ମ, ଜ୍ଞାନ, ବୈରାଗ୍ୟ ଓ ଐଶ୍ୱର୍ଯ୍ୟ ଏହି ଚାରି ବିଷୟରେ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ଥିଲେ ଏବଂ ତୁମ୍ଭର ପୁତ୍ର ଅପେକ୍ଷା ସମଧିକ ପୁଣ୍ୟବାନ ଥିଲେ; କିନ୍ତୁ ସେ ମଧ୍ୟ କାଳଗ୍ରାସରେ ପତିତ ହୋଇ ଅଛନ୍ତି, ଅତଏବ ତୁମ୍ଭେ ଆଉ ତୁମ୍ଭର ପୁତ୍ରନିମିତ୍ତ ଅନୁତାପ କରନାହିଁ । ୭୦ ।

ହେ ସୃଞ୍ଜୟ ! ମହାତ୍ମା ଦିଲୀପଙ୍କର ବୃତ୍ତାନ୍ତ ବୋଧହୁଏ, ଶ୍ରବଣ କରିଥିବ, ସେ ମଧ୍ୟ ମୃତ ହୋଇ ଅଛନ୍ତି । ଯାହାଙ୍କର ଭୂରିଭୂରି କର୍ମକୀର୍ତ୍ତି ବିପ୍ର ଦ୍ୱିଜାତଗଣେ କୀର୍ତ୍ତନ କରନ୍ତି, ଯେଉଁ ଦିଲୀପରାଜା ମହାଯଜ୍ଞରେ ସମାହିତ ହୋଇ ଏହି ରତ୍ନପୂର୍ଣ୍ଣା ବସୁନ୍ଧରାକୁ ବ୍ରାହ୍ମଣମାନଙ୍କୁ ପ୍ରଦାନ କରିଥିଲେ, ଯାହାଙ୍କର ପ୍ରତ୍ୟେକ ଯଜ୍ଞରେ ପୁରୋହିତ ଏକ ସହସ୍ର ପରିମାଣରେ ସ୍ୱର୍ଣ୍ଣମୟ ହସ୍ତୀ ଦକ୍ଷିଣା ପ୍ରାପ୍ତ ହୋଇଥିଲେ, ଯାହାଙ୍କର ଶୋଭାନ୍ୱିତ ଯଜ୍ଞୀୟ ସ୍ତମ୍ଭ ମଧ୍ୟ ହିରଣ୍ମୟ ହୋଇଥିଲା ଇନ୍ଦ୍ରପ୍ରମୁଖ ଦେବତାମାନେ ସୁଦ୍ଧା ଯାହାଙ୍କର ଆଦିଷ୍ଟ କାର୍ଯ୍ୟକୁ ସମ୍ପାଦନପୂର୍ବକ ଯାହାଙ୍କୁ ଉପାସନା କରିଥିଲେ ଯେଉଁ ଦିଲୀପ ରାଜାଙ୍କର ବଳୟମଣ୍ଡିତ ହିରଣ୍ମୟ ସ୍ତମ୍ଭ ଉପରେ ଛଅ ସହସ୍ର ଦେବ ଓ ଗନ୍ଧର୍ବ ଏକତ୍ର ହୋଇ ନୃତ୍ୟ କରିଥିଲେ ଏବଂ ସ୍ୱୟଂ ବିଶ୍ୱାବସୁ ମଧ୍ୟ ସ୍ଥଳରେ ବସି ବୀଣାବାଦନ କରିଥିଲେ, ଯେଉଁ ବୀଣା ଶ୍ରବଣରେ ସମସ୍ତ ଶ୍ରୋତୃବର୍ଗ "ସେ ଆମ୍ଭଙ୍କୁ ଲକ୍ଷ୍ୟକରି ବଜାଉ ଅଛନ୍ତି" ଏହିପରି ମନେ କରିଥିଲେ, ପୃଥିବୀସ୍ଥ କୌଣସି ନରପତି ସୁଦ୍ଧା ଯେଉଁ ମହାତ୍ମା ଦିଲୀପଙ୍କର କାର୍ଯ୍ୟକୁ ଅନୁକରଣ କରିବାରେ ସମର୍ଥ ହୋଇ ନାହାନ୍ତି, ଐଶ୍ୱର୍ଯ୍ୟ କଥା କ'ଣ କହିବୁଁ, ଯାହାଙ୍କର ସୁବର୍ଣ୍ଣାଲଙ୍କୃତ ହସ୍ତୀମାନେ ମତ୍ତ ହୋଇ ପଥମଧ୍ୟରେ ଶୟନ କରିଥାନ୍ତି, ଯେଉଁ ଶତଧନ୍ୱା ସତ୍ୟବାଦୀ ମହାତ୍ମା ମହାରାଜ ଦିଲୀପଙ୍କୁ ଯେଉଁ ସବୁ ମନୁଷ୍ୟ ଦର୍ଶନ କରିଥିଲେ ସେମାନେ ମଧ୍ୟ ସ୍ୱର୍ଗଗାମୀ ହୋଇ ଅଛନ୍ତି, ଯାହାଙ୍କର ରାଜ ଭବନରେ କାର୍ମୁକଜ୍ୟା ନିର୍ଘୋଷ, ବେଦଧ୍ୱନି ଏବଂ ଦେହି ଦେହି ଏହି ତିନି ପ୍ରକାର ଶବ୍ଦ କ୍ଷଣମାତ୍ର ବିଶ୍ରାମ ପାଉ ନଥିଲା, ସେହି ମହାତ୍ମା ଦିଲୀପ ଧର୍ମ, ଜ୍ଞାନ, ବୈରାଗ୍ୟ ଓ ଐଶ୍ୱର୍ଯ୍ୟ ଏହି ଚାରି ବିଷୟରେ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ଥିଲେ ଏବଂ ତୁମ୍ଭର ପୁତ୍ର ଅପେକ୍ଷା ସମଧିକ ପୁଣ୍ୟବାନ ଥିଲେ; କିନ୍ତୁ ସେ ମଧ୍ୟ ମୃତ ହୋଇ ଅଛନ୍ତି, ଅତଏବ ତୁମ୍ଭେ ତୁମ୍ଭର ପୁତ୍ରନିମିତ୍ତ ଆଉ ଅନୁତାପ କର ନାହିଁ । ୮୦ ।

ହେ ସୃଞ୍ଜୟ ! ଯୁବାନଶ୍ୱ ପୁତ୍ର ମହାରାଜ ମାନ୍ଧାତାଙ୍କ କଥା ଶ୍ରବଣ କରିଥିବ । ସେ ମଧ୍ୟ ମୃତ ହୋଇଅଛନ୍ତି । ରାଜା ଯୁବାନଶ୍ୱ ସନ୍ତାନୋତ୍ପାଦନକ୍ଷମ ଦଧିମିଶ୍ର ଆଜ୍ୟକୁ ନିଜର ପତ୍ନୀଙ୍କୁ ନ ଦେଇ ଭ୍ରାନ୍ତି ବଶତଃ ସ୍ୱୟଂ ପାନ କରିଥିଲେ । ତଦ୍ଦ୍ୱାରା ତାହାଙ୍କର ଗର୍ଭ ଉପସ୍ଥିତ ହୋଇଥିଲା ଏବଂ ମନ୍ତ୍ରିତ ଆଜ୍ୟ ପ୍ରଭାବରୁ ପିତଗର୍ଭରେ ସେହି ଶିଶୁ

ମାତୃଗର୍ଭହୀନ ପରିବର୍ଦ୍ଧିତ ହୋଇଥିଲା । ପରେ ମରୁତାଦି ଦେବଗଣ ପିତୃଗର୍ଭକୁ ଭେଦକରି ସେହି ବାଳକକୁ ନିଃସାରିତ କରିଥିଲେ । ତଦନନ୍ତର ସେହି ବାଳକ ତ୍ରିଲୋକବିଜୟୀ ଶ୍ରୀମାନ ହୋଇଥିଲେ ।୮୨ ।

ଅଭିନବ ସଞ୍ଜାତ ସେହି ଶିଶୁକୁ ମୃତ ପିତାଙ୍କ କୋଡ଼ରେ ଶୟନ କରିଥିବାର ଦେଖି ଦେବତାମାନେ "ଏହି ବାଳକ କାହାର ଆଶ୍ରୟ ଗ୍ରହଣ କରିବ" ପରସ୍ପର ଏହିପରି କୁହାକୁହି ହେଲେ ।୮୩।

ତତ୍ପରେ ଦେବରାଜ ଇନ୍ଦ୍ର ଏହି ବାଳକ ଆମ୍ଭର ଆଶ୍ରୟ ଗ୍ରହଣ କରିବ "ଏହି କଥା କହି ମହାତ୍ମା କୁମାରଙ୍କୁ ମାନ୍ଧାତା ବୋଲି ନାମ ଦେଲେ ଏବଂ ଶରୀର ପୁଷ୍ଟି ନିମିତ୍ତ ସ୍ୱୀୟ କରାଙ୍ଗୁଳିକ ସେହି ବାଳକର ମୁଖରେ ପ୍ରଦାନ କଲେ । ଅନନ୍ତର ସେହି ଅଙ୍ଗୁଳିରୁ ଦୁଗ୍ଧଧାରା କ୍ଷରିତ ହେଲା । ଇନ୍ଦ୍ରଙ୍କର କରାଙ୍ଗୁଳି କ୍ଷରିତ ଦୁଗ୍ଧ ପାନକରି ସେହି ବାଳକ ଦିନକୁ ଦିନ ଏତେ ବୃଦ୍ଧିପ୍ରାପ୍ତ ହେଲା ଯେ ଦ୍ୱାଦଶ ଦିବସରେ ବର୍ଷୀୟ ଶିଶୁ ପ୍ରାୟ ବୋଧ ହେଉଥିଲେ । ଏହିପରି କ୍ରମଶଃ ଏକଶତ ଦିବସ ଦୁଗ୍ଧ ପାନକରି ଉକ୍ତ ବାଳକ ବୟଃପ୍ରାପ୍ତ ହେଲା ।୮୬।

ତଦନନ୍ତର ସମରରେ ଇନ୍ଦ୍ରଙ୍କତୁଲ୍ୟ ପରାକ୍ରମୀ ଶୂର ଧର୍ମପରାୟଣ ମହାତ୍ମା ମାନ୍ଧାତା, ଅଙ୍ଗାର, ମରୁତ୍ତ, ଅସିତ, ଗୟ, ଅଙ୍ଗରାଜ, ବୃହଦ୍ରଥ ପ୍ରଭୃତି ପ୍ରଧାନ ପ୍ରଧାନ ମହୀପାଳମାନଙ୍କୁ ଯୁଦ୍ଧରେ ପରାଜିତ କରି ଏକାଦିନରେ ସମଗ୍ର ବସୁନ୍ଧରାର ଅଧୀଶ୍ୱର ହୋଇଥିଲେ ।୮୮।

ଯେତେବେଳେ ଅଙ୍ଗ ରାଜାଙ୍କ ସହିତ ମହାରାଜ ମାନ୍ଧାତାଙ୍କର ସଂଗ୍ରାମ ଉପସ୍ଥିତ ହୋଇଥିଲା, ସେତେବେଳେ ତାହାଙ୍କର ଧନୁ ବିସ୍ଫାରଣ ଶବ୍ଦରେ ଦେବଗଣ ଆକାଶ ବିଦୀର୍ଣ୍ଣ ହୋଇଗଲା ବୋଲି ମନେକଲେ ।୮୯।

ତାହାଙ୍କର ପ୍ରତାପ କଥା ଆଉ କ'ଣ କହିବୁଁ । ସୂର୍ଯ୍ୟଙ୍କର ଉଦୟ ସ୍ଥାନଠାରୁ ଅସ୍ତସୀମା ପର୍ଯ୍ୟନ୍ତ ପୃଥିବୀ ଅଦ୍ୟାପି ମାନ୍ଧାତାଙ୍କର କ୍ଷେତ୍ରବୋଲି କୀର୍ତ୍ତିତ ହୋଇଅଛି ।୯୦।

ହେ ନିଶାମତେ ! ମହୀପତି ମାନ୍ଧାତା ଶତ ଅଶ୍ୱମେଧ ଏବଂ ଏକ ଶତ ରାଜସୂୟ ଯଜ୍ଞ ଅନୁଷ୍ଠାନ କରି ବ୍ରାହ୍ମଣମାନଙ୍କୁ ଅପର୍ଯ୍ୟାପ୍ତ ରୋହିତ ମତ୍ସ୍ୟ ପ୍ରଦାନ କରିଥିଲେ ।୯୧।

ଏହାଙ୍କର ସେହି ଯଜ୍ଞୋପଲକ୍ଷରେ ବ୍ରାହ୍ମଣ ବ୍ୟତୀତ ଅପରାପର ଜାତୀୟ ଲୋକେ ମଧ୍ୟ ଏକ ଯୋଜନ ଉଚ୍ଚ ଏବଂ ଦଶ ଯୋଜନାଧିକ ବିସ୍ତୀର୍ଣ୍ଣ ହିରଣ୍ୟରାଶି ବିଭାଗ କରି ନେଇଥିଲେ । ହେ ସୃଞ୍ଜୟ ! ନରପତି ମାନ୍ଧାତା ଧର୍ମ, ଜ୍ଞାନ, ବୈରାଗ୍ୟ ଓ ଐଶ୍ୱର୍ଯ୍ୟ ଏହି ଚାରିପ୍ରକାର ବିଷୟରେ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ଥିଲେ ଏବଂ ତୁମ୍ଭର ପୁତ୍ର ଅପେକ୍ଷା ମଧ୍ୟ ସମଧିକ ପୁଣ୍ୟାତ୍ମା ଥିଲେ; କିନ୍ତୁ ସେ ମଧ୍ୟ କଳେବର ପରିତ୍ୟାଗ କରିଅଛନ୍ତି । ଅତଏବ ତୁମ୍ଭେ ଆଉ ତୁମ୍ଭର ପୁତ୍ରନିମିତ୍ତ ଅନୁତାପ କରନାହିଁ ।୧୩।

ହେ ସୃଞ୍ଜୟ ! ନହୁଷ ପୁତ୍ର ମହାରାଜ ଯଯାତିଙ୍କର ବୃତ୍ତାନ୍ତ ଶ୍ରବଣ କରିଥିବ, ସେ ମଧ୍ୟ ମୃତ୍ୟୁମୁଖରେ ପତିତ ହୋଇଅଛନ୍ତି । ଯେ ବାହୁବଳ-ଦ୍ୱାରା ସସାଗରା ଧରାମଣ୍ଡଳକୁ ଅଧିକାର କରି ଶମ୍ୟାପାତ, ଅର୍ଥାତ୍ କୌଣସି ବଳବାନ ଲୋକଦ୍ୱାରା ବେଗରେ ନିକ୍ଷିପ୍ତ ଗୁରୁଭାର ସ୍ଥୂଳ କାଷ୍ଠଖଣ୍ଡ ଯେତେଦୂରରେ ପତିତ ହୁଏ, ତତ୍ପରିମିତ ଭୂମି ଅନ୍ତରରେ ଯଜ୍ଞବେଦୀ ନିର୍ମାଣ କରିଥିଲେ ଏବଂ ତଦ୍ଦ୍ୱାରା ଭୂଭାଗକୁ ଚିହ୍ନିତ କରି ଉତ୍କୃଷ୍ଟ ଯଜ୍ଞାନୁଷ୍ଠାନ କରୁ କରୁ କ୍ରମଶଃ ପୃଥିବୀ ସୀମାରେ ଅର୍ଥାତ୍ ସାଗର ତୀରରେ ଉପନୀତ ହୋଇଥିଲେ । ଏହି ପ୍ରକାରେ ଏକଶତ ବାଜପେୟ ଓ ତଦତିରିକ୍ତ ଅନ୍ୟାନ୍ୟ ଏକସହସ୍ର ଯଜ୍ଞର ଅନୁଷ୍ଠାନପୂର୍ବକ କାଞ୍ଚନ ନିର୍ମିତ ତିନିଗୋଟି ପର୍ବତ ଦାନକରି ବ୍ରାହ୍ମଣମାନଙ୍କର ତୃପ୍ତିସାଧନ କରିଥିଲେ । ଯେଉଁ ନହୁଷାତ୍ମଜ ଯଯାତି ରାଜା ଯୁଦ୍ଧରେ ବହୁ ସଂଖ୍ୟକ ବ୍ୟୂହିତ ଦୈତ୍ୟ ଓ ଦାନବମାନଙ୍କୁ ନିପାତିତ କରି ସମସ୍ତ ପୃଥିବୀ ପୁତ୍ରଗଣଙ୍କୁ ବିଭାଗପୂର୍ବକ ପ୍ରଦାନ କରିଥିଲେ; କିନ୍ତୁ ପରିଶେଷରେ ଯଦୁ ଓ ଦ୍ରୁହ୍ୟ ପ୍ରଭୃତି ପୁତ୍ରମାନଙ୍କୁ ନିବାରଣ କରି ସର୍ବ କନିଷ୍ଠ ପୁରୁଙ୍କୁ ସ୍ୱରାଜ୍ୟରେ ଅଭିଷିକ୍ତ କରି ସ୍ତ୍ରୀ ସହିତ ଅରଣ୍ୟରେ ପ୍ରବିଷ୍ଟ ହୋଇଥିଲେ, ସେହି ନରପତି ଯଯାତି ଧର୍ମ, ଜ୍ଞାନ, ବୈରାଗ୍ୟ ଏବଂ ଐଶ୍ୱର୍ଯ୍ୟ ଏହି ଚାରି ବିଷୟରେ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ଥିଲେ ଏବଂ ତୁମ୍ଭର ପୁତ୍ରଙ୍କଠାରୁ ସମଧିକ ପୁଣ୍ୟବାନ୍ ଥିଲେ; କିନ୍ତୁ ସେ ମଧ୍ୟ ମୃତ୍ୟୁମୁଖରେ ପତିତ ହୋଇ ଅଛନ୍ତି, ଅତଏବ ତୁମ୍ଭେ ଆଉ ତୁମ୍ଭର ପୁତ୍ରନିମିତ୍ତ ଅନୁତାପ କରନାହିଁ ।୧୪।

ହେ ସୃଞ୍ଜୟ ! ନାଭଗପୁତ୍ର ଅମ୍ବରୀଷ ରାଜାଙ୍କ କଥା ଶ୍ରବଣ କରିଥିବ । ସେ ମଧ୍ୟ ପ୍ରାଣତ୍ୟାଗ କରି ଅଛନ୍ତି । ଯେଉଁ ଲୋକ ପାଳୟିତା-ନୃପସତ୍ତମ ଅମ୍ବରୀଷଙ୍କ ପ୍ରଜାମାନେ ମୂର୍ତ୍ତିମାନ ପୁଣ୍ୟବୋଲି ବରଣ

କରିଥିଲେ, ଯେଉଁ ଅମ୍ବରୀଷ ରାଜା ଯଜ୍ଞକାଳରେ 'ଯେଉଁମାନେ ଅଯୁତ ସଂଖ୍ୟକ ଯଜ୍ଞାନୁଷ୍ଠାନ କରିଅଛନ୍ତି, ତାଦୃଶ ଦଶଲକ୍ଷ ନରପତିଙ୍କୁ ସମାଗତ ବ୍ରାହ୍ମଣମାନଙ୍କର ସେବାନିମିତ୍ତ ନିଯୁକ୍ତ କରିଥିଲେ, ଯେଉଁ ନାଭାଗ ନନ୍ଦନ ନରପତି ଅମ୍ବରୀଷଙ୍କର ଏହିପରି ଅଦ୍ଭୁତ କାର୍ଯ୍ୟମାନ ଦେଖି ଧର୍ମଦର୍ଶୀ ଲୋକେ, କେହି କଦାପି ଏପରି କାର୍ଯ୍ୟ କରି ନାହାନ୍ତି କି ଭବିଷ୍ୟତରେ କେହି ଏପରି କାର୍ଯ୍ୟ କରି ପାରିବ ନାହିଁ, ଏହିପରି କହି ପୁନଃ ପୁନଃ ପ୍ରଶଂସା କରୁଥିଲେ, ଯେଉଁ ରାଜାମାନେ ଯଜ୍ଞ ସମୟରେ ବ୍ରାହ୍ମଣ ସେବାରେ ନିଯୁକ୍ତ ଥିଲେ, ସେହି ଶତ ଶତ ସହସ୍ର ସହସ୍ର ନରପତିମାନେ ଯେଉଁ ମହାରାଜ ଅମ୍ବରୀଷଙ୍କର ମହାତ୍ମ୍ୟ ପ୍ରଭାବରୁ ଅଶ୍ୱମେଧ ଫଳଭାଗୀ ହୋଇ ଉତ୍ତରାୟଣ ପଥଦ୍ୱାରା ହିରଣ୍ୟଗର୍ଭ ଲୋକକୁ ଗମନ କରିଅଛନ୍ତି, ସେହି ରାଜା ଅମ୍ବରୀଷ ଧର୍ମ, ଜ୍ଞାନ, ବୈରାଗ୍ୟ ଓ ଐଶ୍ୱର୍ଯ୍ୟ ଏହି ଚାରି ବିଷୟରେ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ଥିଲେ ଏବଂ ତୁମ୍ଭର ପୁତ୍ର ଅପେକ୍ଷା ସମଧିକ ପୁଣ୍ୟବାନ ଥିଲେ; କିନ୍ତୁ ସେ ମଧ୍ୟ ମୃତ ହୋଇ ଅଛନ୍ତି । ଅତଏବ ତୁମ୍ଭେ ଆଉ ତୁମ୍ଭର ପୁତ୍ରନିମିତ୍ତ ଅନୁତାପ କରନାହିଁ । ହେ ସୃଞ୍ଜୟ ! ଚିତ୍ରରଥ ପୁତ୍ର ମହାରାଜ ଶଶବିନ୍ଦୁଙ୍କ କଥା ଶ୍ରବଣ କରିଥିବ, ସେ ମଧ୍ୟ ମୃତ ହୋଇଅଛନ୍ତି । ମହାତ୍ମା ଶଶବିନ୍ଦୁଙ୍କର ଏକଲକ୍ଷ ଭାର୍ଯ୍ୟା ଥିଲେ ଏବଂ ସେହିସବୁ ସ୍ତ୍ରୀମାନଙ୍କଠାରେ ସେ ଦଶଲକ୍ଷ ସନ୍ତାନ ଉତ୍ପାଦନ କରିଥିଲେ । ତାହାଙ୍କର ସମସ୍ତ ପୁତ୍ରମାନେ ହିରଣ୍ମୟ କବଚଧାରୀ ଓ ମହା ଧନୁର୍ଦ୍ଧର ଥିଲେ ।୧୦୬।

ସେହି ପୁତ୍ରମାନେ ପ୍ରତ୍ୟେକେ ଏକ ଶତ କରି କନ୍ୟା ବିବାହ ହୋଇଥିଲେ । ସେହି ସମସ୍ତ କନ୍ୟାମାନଙ୍କର ପ୍ରତ୍ୟେକଙ୍କରେ ଏକଶତ ହସ୍ତୀ, ପ୍ରତ୍ୟେକ ହସ୍ତୀ ସହିତ ଏକ ଏକ ଶତ ରଥ ଏବଂ ପ୍ରତ୍ୟେକ ରଥରେ ଉତ୍ତମ ଦେଶଜାତ ସୁବର୍ଣ୍ଣମାଳା ବିଭୂଷିତ ଏକ ଶତ ଅଶ୍ୱ ନିଯୋଜିତ ଥିଲେ । ପ୍ରତ୍ୟେକ ଅଶ୍ୱ ସହିତ ଏକ ଶତ ଗାଭୀ ଏବଂ ପ୍ରତ୍ୟେକ ଗାଭୀ ସହିତ ଏକ ଶତ କରି, ଅଜ, ମେଷ ନିଯୁକ୍ତ ଥିଲେ ।୧୦୭।

ଏହିସବୁ ଅପରିସୀମ ଧନ ମହାରାଜ ଶଶବିନ୍ଦୁ ଅଶ୍ୱମେଧନାମକ ମହାଯଜ୍ଞରେ ବ୍ରାହ୍ମଣମାନଙ୍କୁ ପ୍ରଦାନ କରିଥିଲେ । ହେ ସୃଞ୍ଜୟ ! ନରପତି ଶଶବିନ୍ଦୁ ତୁମ୍ଭ ଅପେକ୍ଷା ଧର୍ମ, ଜ୍ଞାନ, ବୈରାଗ୍ୟ ଓ ଐଶ୍ୱର୍ଯ୍ୟ ଏହି ଚାରି

ବଷୟ୍ରରେ ଶ୍ରେଷ୍ଠ ଥିଲେ ଏବଂ ତୁମ୍ଭର ପୁତ୍ର ଅପେକ୍ଷା ସମଧିକ ପୁଣ୍ୟବାନ୍ ଥିଲେ; କିନ୍ତୁ ସେ ମଧ୍ଯ କାଳଗ୍ରାସରେ ପତିତ ହୋଇ ଅଛନ୍ତି । ଅତଏବ ତୁମ୍ଭେ ଆଉ ତୁମ୍ଭର ପୁତ୍ରନିମିତ୍ତ ଅନୁତାପ କରନାହିଁ ।୧୧୦।

ହେ ସୃଞ୍ଜୟ ! ନରପତି ଅମୂର୍ତ୍ତିରୟସଙ୍କ ପୁତ୍ର ଗୟଙ୍କ କଥା ଶ୍ରବଣ କରିଥିବ । ସେ ମଧ୍ଯ ମୃତ ହୋଇ ଅଛନ୍ତି । ସେ ଶତବର୍ଷ କାଳ ନିରତହୁତ ଶେଷାନ୍ନକୁ ଭୋଜନ କରି ପ୍ରାଣଧାରଣ କରିଥିଲେ । ଅଗ୍ନିଦେବ ବର ପ୍ରଦାନୋନ୍ମୁଖ ହୁଅନ୍ତେ ଯେ—"ହେ ହୁତାଶନ ! ଆପଣଙ୍କ ପ୍ରସାଦରୁ ଆମ୍ଭର ଧନ ଅକ୍ଷୟ ହେଉ, ଧର୍ମରେ ଅଚଳା ଶ୍ରଦ୍ଧା ହେଉ ଏବଂ ସତ୍ୟରେ ଯେପରି ଆମ୍ଭର ନିରନ୍ତର ରତି ଥାଉ" । ଏହିପରି ବର ପ୍ରାର୍ଥନା କରୁଥିଲେ ଏବଂ ଆମ୍ଭେମାନେ ଶୁଣିଅଛୁଁ ଯେ ସେହି ପ୍ରାର୍ଥନାରେ ହୁତାଶନ ତାହାଙ୍କର ଅଭିଳଷିତ ବରକୁ ପ୍ରଦାନ କରିଥିଲେ । ସେହି ମହାରାଜ ଗୟ ଏକ ସହସ୍ର ବର୍ଷ ବ୍ୟାପି ଦର୍ଶ, ପୌର୍ଣ୍ଣମାସ, ଚାତୁର୍ମାସ୍ୟ ଓ ଅଶ୍ୱମେଧ ଯଜ୍ଞଦ୍ୱାରା ଦେବଗଣଙ୍କର ଅର୍ଚ୍ଚନାରେ ନିଯୁକ୍ତ ଥିଲେ । ସେ ଏହି ଶତ ସହସ୍ର ବର୍ଷ କାଳ ପ୍ରତ୍ୟେକ ଯଜ୍ଞ ଶେଷରେ ଶତ ସହସ୍ର ଗୋ ଏବଂ ଶତ ସହସ୍ର ଅଶ୍ୱରେ ସ୍ୱୟଂ ଉତ୍ଥାପନପୂର୍ବକ ଦାନ କରିଥିଲେ । ଏହି ପ୍ରକାରେ ସେହି ପୁରୁଷଶ୍ରେଷ୍ଠ ଗୟ ରାଜା ଧନ ଦ୍ୱାରା ବ୍ରାହ୍ମଣମାନଙ୍କର, ସୋମରସଦ୍ୱାରା ଦେବଗଣଙ୍କର ସ୍ୱଧାଦ୍ୱାରା ପିତୃଲୋକଙ୍କର ଓ ଅଭିଳାଷାନୁଯାୟୀ ବସ୍ତୁ ପ୍ରଦାନଦ୍ୱାରା ସ୍ତ୍ରୀମାନଙ୍କର ତୃପ୍ତି ସାଧନ କରିଥିଲେ । ସେ ସେହି କ୍ରତୁଶ୍ରେଷ୍ଠ ଅଶ୍ୱମେଧୋପଲକ୍ଷରେ ଦଶବ୍ୟାମ ବିସ୍ତୀର୍ଣ୍ଣ ଶତହସ୍ତ ଦୀର୍ଘ ସୁବର୍ଣ୍ଣର କୃତ୍ରିମ ପୃଥିବୀ ନିର୍ମାଣ କରି ବ୍ରାହ୍ମଣମାନଙ୍କୁ ଦକ୍ଷିଣା ପ୍ରଦାନ କରିଥିଲେ । ହେ ସୃଞ୍ଜୟ ! ଗଙ୍ଗାରେ ଯେତେ ପରିମାଣରେ ବାଲୁକା ଅଛି ମହୀପତି ଗୟ ତାବତ୍ସଂଖ୍ୟକ ଗୋ ପ୍ରଦାନ କରିଥିଲେ ।୧୧୮।

ସେହି ମହାରାଜ ଗୟ ଧର୍ମ, ଜ୍ଞାନ, ବୈରାଗ୍ୟ ଓ ଐଶ୍ୱର୍ଯ୍ୟ ଏହି ଚାରି ବିଷୟରେ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ଥିଲେ ଏବଂ ତୁମ୍ଭର ପୁତ୍ର ଅପେକ୍ଷା ମଧ୍ଯ ସମଧିକ ପୁଣ୍ୟବାନ୍ ଥିଲେ, କିନ୍ତୁ ସେ ମଧ୍ଯ କାଳଗ୍ରସ୍ତ ହୋଇ ଅଛନ୍ତି । ଅତଏବ ତୁମ୍ଭେ ଆଉ ତୁମ୍ଭର ପୁତ୍ରନିମିତ୍ତ ଅନୁତାପ କରନାହିଁ ୧୧୯।

ହେ ସୃଞ୍ଜୟ ! ନରନାଥ ରନ୍ତିଦେବଙ୍କର କଥା ଶ୍ରବଣ କରିଥିବ, ସେ ମଧ୍ୟ ମୃତ ହୋଇ ଅଛନ୍ତି । ଯେଉଁ ମହାତ୍ମା ରନ୍ତିଦେବ ତପଃ ପ୍ରଭାବରୁ ଇନ୍ଦ୍ରଙ୍କଠାରୁ "ଆମ୍ଭର ଅପର୍ଯ୍ୟାପ୍ତ ଅନ୍ନ ହେଉ, ଆମ୍ଭେ ଯେପରି ପ୍ରତ୍ୟହ ବହୁ ଅତିଥି ଭକ୍ଷଣ କରାଇ ପାରୁଁ, କୌଣସି ସମୟରେ ଆମ୍ଭର ଯେପରି ଶ୍ରଦ୍ଧାରେ ତ୍ରୁଟି ନ ହେଉ ଏବଂ କାହାରିଠାରୁ ଆମ୍ଭଙ୍କୁ ଯେପରି ଯାଚଞ୍ଚା କରିବାକୁ ନ ହୁଏ," ଏହିପରି ବରଲାଭ କରିଥିଲେ । ସେହି ସଂଶିତ ବ୍ରତ ଯଶସ୍ୱୀ ମହାତ୍ମା ରନ୍ତିଦେବଙ୍କର ଯଜ୍ଞକାଳରେ ଗ୍ରାମ୍ୟ ଓ ଆରଣ୍ୟକ ପଶୁମାନେ ସ୍ୱୟଂ ଆସି ଉପସ୍ଥିତ ହୋଇଥିଲେ । ତାହାଙ୍କର ଯଜ୍ଞସ୍ଥଳରେ ନିହତ ପଶୁମାନଙ୍କର ଚର୍ମରାଶିର କ୍ଳେଦ ରସରେ ଗୋଟିଏ ମହାନଦୀ ଉତ୍ପନ୍ନ ହୋଇଥିଲା । ସେହି ମହାନଦୀ ପୃଥିବୀରେ ଚର୍ମଣ୍ୱତୀ ନାମରେ ବିଖ୍ୟାତ ହୋଇଅଛି ।

ରନ୍ତିଦେବ ସଭାସ୍ଥଳରେ ସୁବର୍ଣ୍ଣ ନିଷ୍କ ପ୍ରଦାନ କରିବା ସମୟରେ "ତୁମ୍ଭଙ୍କୁ ଶତ ନିଷ୍କ ପ୍ରଦାନ କରିବୁ, ତୁମ୍ଭଙ୍କୁ ଶତ ନିଷ୍କ ପ୍ରଦାନ କରିବୁ" ଏହିପରି ମନ୍ତ୍ରଦ୍ୱାରା ସଙ୍କଳ୍ପ ବାକ୍ୟ ଉଚ୍ଚାରଣପୂର୍ବକ ପ୍ରଦାନରେ ଉଦ୍ୟତ ହୁଅନ୍ତେ ବ୍ରାହ୍ମଣମାନେ "ଆମ୍ଭେମାନେ ଶତ ନିଷ୍କ ଗ୍ରହଣ କରିବୁ ନାହିଁ, ଆମ୍ଭେମାନେ ଶତ ନିଷ୍କ ଗ୍ରହଣ କରିବୁ ନାହିଁ" ଏହିପରି ଚିତ୍କାର କଲେ । ତହୁଁ ରନ୍ତିଦେବ ସେମାନଙ୍କୁ ପ୍ରତ୍ୟେକଙ୍କୁ ସହସ୍ର ନିଷ୍କ ପ୍ରଦାନପୂର୍ବକ ପରିତୃପ୍ତ କରିଥିଲେ । ସେହି ଧୀମାନ୍ ନରପତିଙ୍କର ପାକଶାଳାରେ କଳଶ କଟାହ, ପାତ୍ର, ସ୍ଥାଳୀ ଓ ପିଠର ଆଦି ଅନେକ ଉପକରଣ ଥିଲା । ଏପରି କୌଣସି ଉପକରଣ ନ ଥିଲା ଯେ କି ସୁବର୍ଣ୍ଣଦ୍ୱାରା ନିର୍ମିତ ହୋଇ ନ ଥିଲା ।

ସଂକୃତି ପୁତ୍ର ରାଜା ରନ୍ତିଦେବଙ୍କ ଗୃହରେ ରାତ୍ରିରେ ଯେଉଁ ଅତିଥିସମୂହ ନିବାସ କରୁଥିଲା । ସେ ସମୟରେ ତାଙ୍କୁ ବିଂଶତି ସହସ୍ର ଏକଶତ ଧେନୁ ଦିଆ ଯାଉଥିଲା । ସେଠାରେ ମଣିମୟକୁଣ୍ଡଳଧାରୀ ପାଚକଗଣ ପ୍ରାର୍ଥନା କରି କହୁଥିଲେ ଯେ—ଆପଣମାନେ ଯଥେଷ୍ଟ ଭୋଜନ କରନ୍ତୁ । ଆଜିର ଭୋଜନ କାଲିଠାରୁ ଉତ୍କୃଷ୍ଟ ହୋଇଛି ।

ସୃଞ୍ଜୟ ! ରନ୍ତିଦେବ ପୂର୍ବୋକ୍ତ ଗୁଣଦ୍ୱାରା ତୁମଠାରୁ ଉତ୍ତମ ଥିଲେ ଓ ତୁମ ପୁତ୍ରଙ୍କଠାରୁ ଅଧିକ ଧର୍ମାତ୍ମା ଥିଲେ । ଯେତେବେଳେ ସେ ମଧ୍ୟ

ପଞ୍ଚତ୍ୱକୁ ପ୍ରାପ୍ତ ହୋଇଗଲେ ସେତେବେଳେ ତୁମ ପୁତ୍ରଙ୍କ କଥା କ'ଣ ? ଏଣୁ ତୁମେ ଶୋକ କରନାହିଁ ।

ସୃଞ୍ଜୟ ! ଇକ୍ଷ୍ୱାକୁବଂଶୀ, ପୁରୁଷ ସିଂହ ଓ ପରାକ୍ରମୀ ସଗର ମଧ୍ୟ ମରିଥିଲେ, ଏପରି ଶୁଣାଯାଏ । ବର୍ଷାଋତୁର ଅନ୍ତରେ ମେଘ ରହିତ ନିର୍ମଳ ଆକାଶରେ ତାରାସମୂହ ଚନ୍ଦ୍ରମାଙ୍କୁ ଅନୁସରଣ କରନ୍ତି । ସେହିପରି ରାଜା ସଗରଙ୍କ ଯୁଦ୍ଧଯାତ୍ରାରେ ତାଙ୍କର ଷାଠିଏ ହଜାର ପୁତ୍ର ଅନୁସରଣ କରୁଥିଲେ ।୩୧।

ପୂର୍ବେ ତାଙ୍କ ପ୍ରତାପଦ୍ୱାରା ସମଗ୍ର ପୃଥ୍ୱୀ ତାଙ୍କର ଅଧୀନ ହୋଇଥିଲା ଓ ସେ ଏକ ସହସ୍ର ଅଶ୍ୱମେଧ କରି ଦେବତାମାନଙ୍କୁ ତୃପ୍ତ କରିଥିଲେ । (ସଗର) ରାଜା କନକସ୍ତମ୍ଭ ଯୁକ୍ତ ସ୍ୱର୍ଣ୍ଣଦ୍ୱାରା ନିର୍ମିତ ଗୃହ ଓ ଶଯ୍ୟାଦି ନିର୍ମାଣ କରାଇ ବ୍ରାହ୍ମଣଙ୍କୁ ଦାନ ଦେଇଥିଲେ ଓ ନାନାବିଧ ଭୋଗସାମଗ୍ରୀ ମଧ୍ୟ ତାଙ୍କୁ ଦାନ ଦେଇଥିଲେ । ଏକ ସମୟରେ କ୍ରୋଧାବିଷ୍ଟ ହୋଇ ସେ ସମୁଦ୍ରାଙ୍କିତ ସମଗ୍ର ପୃଥ୍ୱୀକୁ ଖୋଳେଇ ଥିଲେ । ଏଣୁ ତାଙ୍କ ନାମାନୁସାରେ 'ସାଗର' ଏ ସଂଜ୍ଞା ହେଲା ।୧୩୬।

ସୃଞ୍ଜୟ ! ସେ ଯେତେବେଳେ ମରିଗଲେ ସେତେବେଳେ ତୁମ ପୁତ୍ରଙ୍କ କଥା କ'ଣ ? ଏଣୁ ତୁମେ ତାଙ୍କପାଇଁ ଶୋକ କରନାହିଁ ।

ସୃଞ୍ଜୟ ! ମହର୍ଷିମାନଙ୍କଦ୍ୱାରା ବନରେ ଅଭିଷିକ୍ତ ବେନପୁତ୍ର ପୃଥୁଙ୍କୁ ମଧ୍ୟ ଶରୀରତ୍ୟାଗ କରିବାକୁ ପଡ଼ିଥିଲା, ଏପରି ଆମେ ଶୁଣୁଛୁ । ସର୍ବଲୋକରେ ଧର୍ମମର୍ଯ୍ୟାଦା ସ୍ଥାପନ କରିବେ । ଏହା ଭାବି ଋଷିଗଣ ତାଙ୍କର ନାମ ପୃଥୁ ରଖିଥିଲେ । ସେ ଦୁଃଖରୁ ତ୍ରାଣ କରୁଥିବା ହେତୁ କ୍ଷତ୍ରିୟ ହୋଇଥିଲେ । ତାଙ୍କ ଶାସନକାଳରେ ଅକୃଷ୍ଟପଚ୍ୟ ଧାନ୍ୟ ଉତ୍ପନ୍ନ ହେଉଥିଲା, ପ୍ରତ୍ୟେକ ବୃକ୍ଷରେ ରସ (ମଧୁ) ପୂର୍ଣ୍ଣ ଥିଲା ଓ ଗାଈ ଦ୍ରୋଣ ପରିମିତ ଦୁଗ୍ଧ ଦେଉଥିଲେ । ପ୍ରତ୍ୟେକ ମନୁଷ୍ୟ ନୀରୋଗ ନିର୍ଭୟ ଥିଲେ । ଇଚ୍ଛାନୁସାରେ ଗୃହରେ ଅଥବା କ୍ଷେତ୍ରରେ ବାସ କରୁଥିଲେ । ସେ ଯେତେବେଳେ ସମୁଦ୍ର ଯାତ୍ରା କରୁଥିଲେ ସେତେବେଳେ ସମୁଦ୍ରର ଜଳ ସ୍ଥିର ରହୁଥିଲା । ନଦୀମାନଙ୍କର ବଢ଼ି ଶାନ୍ତ ରହୁଥିଲା ଓ ତାଙ୍କ ପତାକାର ଭଙ୍ଗ କେବେଁ ହେଉ ନ ଥିଲା । ରାଜା ପୃଥୁ ଅଶ୍ୱମେଧ ଯଜ୍ଞରେ ତିନିଶତ ହାତ ଲମ୍ବ ଏକୋଇଶିଟି ସୁବର୍ଣ୍ଣର ପର୍ବତ ବ୍ରାହ୍ମଣଙ୍କୁ ଦାନ କରିଥିଲେ । ସୃଞ୍ଜୟ ! ସେପରି ରାଜା ଯଦି ମରିଗଲେ ତେବେ ତୁମ ପୁତ୍ରଙ୍କ

କଥା' କ'ଣ ? ଏଣୁ ତୁମେ ନିଜର ମୃତ ପୁତ୍ରଙ୍କପାଇଁ ଶୋକ କର ନାହିଁ ।୧୪୪।

ସୃଞ୍ଜୟ ! ତୁମେ ମୌନହୋଇ କ'ଣ ଭାବୁଛ । ରାଜନ ! ମୋ ବଚନକୁ ଶ୍ରବଣ କରୁ ନାହଁ ? ଯେପରି ମରଣାସନ୍ନ ପୁରୁଷ ପ୍ରତି ଅବ୍ୟର୍ଥ ମହୋଷଧି ମଧ୍ୟ ବ୍ୟର୍ଥ ହୁଏ ସେହିପରି କ'ଣ ମୋର ଏ ପ୍ରବଚନା ବ୍ୟର୍ଥ ହେଲା ?୧୪୫।

ସୃଞ୍ଜୟ କହିଲେ—ନାରଦ ! ବିଚିତ୍ରାର୍ଥଯୁକ୍ତ ପୁଣ୍ୟଦାୟକ ଆପଣଙ୍କ ବଚନକୁ ଶୁଣୁଛି । ରାଜର୍ଷିଗଣଙ୍କ ଚରିତ୍ରଯୁକ୍ତ ଆପଣଙ୍କର ବଚନ ଶୋକନାଶକ ।୧୪୬।

ହେ ମହର୍ଷି ନାରଦ ! ଆପଣ ଯାହା କିଛି କହିଛନ୍ତି ତାହା ବ୍ୟର୍ଥ ହୋଇନାହିଁ । ଆପଣଙ୍କ ଦର୍ଶନଲାଭ କରି ମୁଁ ବର୍ତ୍ତମାନ ଶୋକ ରହିତ । ହେ ମୁନେ ! ଅମୃତ ପାନ ସଦୃଶ ଆପଣଙ୍କ ଏହି ପ୍ରବଚନାରେ ତୃପ୍ତ ହେଉନାହିଁ । ହେ ପ୍ରଭୋ ! ଆପଣଙ୍କ ଅମୋଘ ଦର୍ଶନ କଦାପି ନିଷ୍ଫଳ ହୁଏନାହିଁ । ଅତଏବ ଆପଣ ଯଦି ଏହି ପୁତ୍ରଶୋକାନଳ— ସନ୍ତପ୍ତ ଦୀନହୀନଠାରେ ପ୍ରସନ୍ନ ଥାଆନ୍ତି, ତା' ହେଲେ ଆପଣଙ୍କର ଅନୁଗ୍ରହରୁ ଆମ୍ଭ ପୁତ୍ର ପୁନଶ୍ଚ ଜୀବିତ ହୋଇ ପୂର୍ବପରି ଆମ୍ଭ ସହିତ ସମ୍ଭାଷଣାଦି କରୁ ।୧୪୮।

ନାରଦ କହିଲେ ରେ ସୃଞ୍ଜୟ ! ପର୍ବତ ଋଷିଙ୍କ ବର ପ୍ରଭାବରୁ ତୁମ୍ଭେ ଯାହାକୁ ପ୍ରାପ୍ତ ହୋଇଥିଲ, ଅର୍ଥାତ୍ ସୁବର୍ଣ୍ଣ ଷ୍ଠୀବିନାମକ ତୁମ୍ଭର ଯେଉଁ ଗୁଣବାନ୍ ପୁତ୍ର ବର୍ତ୍ତମାନ ବିଗତାସୁ ହୋଇ ଭୂତଳରେ ଶୟନ କରିଅଛି, ଆମ୍ଭେ ତୁମ୍ଭର ସେହି ସୁବର୍ଣ୍ଣପ୍ରଦ ପୁତ୍ରକୁ ପୁନଃଜୀବିତ କରିଅଛୁଁ । ଏହି ପୁତ୍ର ସହସ୍ର ବର୍ଷ ଜୀବିତ ହେବ ।୧୪୯।

---

## ଅଧ୍ୟାୟ-୩୦

ଯୁଧିଷ୍ଠିର ବୋଇଲେ—ହେ କୃଷ୍ଣ ! ସୃଞ୍ଜୟ ରାଜାଙ୍କ ପୁତ୍ର କିପରି କାଞ୍ଚନଷ୍ଠୀବୀ ହେଲେ ଏବଂ ପର୍ବତ ଋଷିଙ୍କ ବରଦତ୍ତ ହୋଇ ସୁଦ୍ଧା ସେ କିଂ ନିମିତ୍ତ ମୃତ୍ୟୁ ମୁଖରେ ପତିତ ହେଲେ ।୧।

ତତ୍କାଳରେ ସମସ୍ତ ମନୁଷ୍ୟ ସହସ୍ର ବର୍ଷଜୀବୀ ଥିଲେ । ସୃଞ୍ଜୟ ପୁତ୍ର ଅପ୍ରାପ୍ତ କୌମାରାବସ୍ଥାରେ କି ନିମିତ୍ତ ମୃତ ହେଲେ ।୨।

ତେବେ ତାହାଙ୍କର ସେହି ପୁତ୍ର କେବଳ ନାମ ମାତ୍ର ସୁବର୍ଣ୍ଣଷ୍ଠୀବୀ ଥିଲେ, ନା ନିଷ୍ଠା ବନରେ ସୁବର୍ଣ୍ଣ ଉତ୍ପତ୍ତି ହୁଏ ବୋଲି ତାହାଙ୍କର ନାମ କାଞ୍ଚନଷ୍ଠୀବୀ ଦିଆ ହୋଇଥିଲା ? ତାହାଙ୍କର ନାମ କି ହେତୁରୁ ସୁବର୍ଣ୍ଣଷ୍ଠୀବୀ ଥିଲା, ତାହା ଜାଣିବାକୁ ଇଚ୍ଛା କରୁଅଛୁଁ ।୩।

ଶ୍ରୀକୃଷ୍ଣ କହିଲେ—ହେ ଜନେଶ୍ୱର ! ଏ ବିଷୟରେ ଯେପରି ଘଟଣା ହୋଇଥିଲା, ତତ୍ସମସ୍ତ ଆମ୍ଭେ ଆପଣଙ୍କଠାରେ ବର୍ଣ୍ଣନ କରୁଅଛୁଁ । ଲୋକସତ୍ତମ ନାରଦ ଓ ପର୍ବତ ଏ ଦୁହେଁ ପ୍ରସିଦ୍ଧ ଋଷି ଥିଲେ । ଏଦୁହିଁଙ୍କ ମଧ୍ୟରୁ ନାରଦ ମାତୁଳ ଅଟନ୍ତି ଏବଂ ପର୍ବତ ଭାଗିନେୟ ଅଟନ୍ତି । ପୂର୍ବେ ଏହି ଦୁଇ ଋଷି ଘୃତ ଓ ଶାଳି ଅନ୍ନ ଭୋଜନାଭିଳାଷରେ ପ୍ରୀତିଯୁକ୍ତ ହୋଇ ଦେବଲୋକରୁ ମନୁଷ୍ୟଲୋକକୁ ଆଗମନ କରିଥିଲେ । ଅନନ୍ତର ସେହିତାପସ ଦ୍ୱୟ ଭୂତଳବିହାରୀ ହୋଇ ମନୁଷ୍ୟର ଭୋଗ୍ୟ ବସ୍ତୁସବୁ ଭୋଗ କରି ପର୍ଯ୍ୟଟନରେ ପ୍ରବୃତ୍ତ ହେଲେ ।୪।

ସେମାନେ ଅତ୍ୟନ୍ତ ପ୍ରୀତିଯୁକ୍ତ ହୋଇ ଏପରି ନିୟମ ସଂସ୍ଥାପନ କଲେ ଯେ ଶୁଭ ହେଉ କିମ୍ବା ଅଶୁଭ ହେଉ ଯାହା ମନରେ ଯେପରିଭାବ ଉଦୟ ହେବ ତାହା ପରସ୍ପର ପ୍ରକୃତ ରୂପରେ ବ୍ୟକ୍ତ କରିବେ; ଯଦି କେହି କାହାର ଅନ୍ୟଥାଚରଣ କରନ୍ତି ତେବେ ସେ ନିଶ୍ଚୟ ଅଭିଶାପ ଭାଗୀ ହେବେ । "ତାହା ହେଉ" ବୋଲି ଉଲ୍ଲିଖିତ ନିୟମରେ ପ୍ରତିଜ୍ଞା-ପୂର୍ବକ ସର୍ବଲୋକପୂଜିତ ସେହି ଦୁଇ ମହର୍ଷି ନରପତି ସୃଞ୍ଜୟଙ୍କ ନିକଟକୁ ସମାଗତ ହୋଇ କହିଲେ—ହେ ମହାରାଜ ! ତୁମ୍ଭର ହିତନିମିତ୍ତ ଆମ୍ଭେ ଦୁହେଁ ଏଠାରେ କିଛିଦିନ ବାସ କରିବୁଁ । ତୁମ୍ଭେ ଆମ୍ଭମାନଙ୍କ ପ୍ରତି ଯଥା ବିହିତ ଅନୁକୂଳ ହୁଅ । ସୃଞ୍ଜୟ ରାଜା ତାହା ଶ୍ରବଣ କରି "ଆଜ୍ଞା

ହେଉ” ବୋଲି କହିଲେ ଏବଂ ସମାଦରପୂର୍ବକ ଉଭୟଙ୍କର ସେବାର୍ଥ ପ୍ରବୃତ୍ତ ହେଲେ ।୧୧।

ଏହି ପ୍ରକାରେ କିୟତ୍‌କାଳ ଗତ ହୁଅନ୍ତେ ଏକଦା ମହୀପତି ସୃଞ୍ଜୟ ପରମ ପ୍ରୀତିସହକାରେ ସେହି ଦୁଇ ମହାତ୍ମା ତପୋଧନଙ୍କୁ କହିଲେ—ହେ ମହାଭାଗ ଦ୍ୱୟ ! ମନୋହର ରୂପସମ୍ପନ୍ନ ପଦ୍ମ କିଞ୍ଜଳ୍କ ସଦୃଶ ପ୍ରଭା ସମନ୍ୱିତା କାମିନୀକୁଳର ଭୂଷଣ ରୂପ-ଶୀଳାଦିଗୁଣାଲଙ୍କୃତା ସୁକୁମାରୀ ନାମରେ ଆମ୍ଭର ଗୋଟିଏ ଅନିନ୍ଦ୍ୟାଙ୍ଗୀ କନ୍ୟା ଆପଣମାନଙ୍କର ପରିଚର୍ଯ୍ୟା କରିବ । ଏଥିରେ ଆପଣମାନେ ମତ ପ୍ରକାଶ କରନ୍ତୁ । ତହୁଁ ମହର୍ଷି ଦୁହେଁ “ଉତ୍ତମ” ଏହି ସମ୍ମତି ପ୍ରକାଶ କରନ୍ତେ ରାଜା ନିଜର କନ୍ୟାକୁ ଏହିପରି ଉପଦେଶ ଦେଲେ “ହେ କନ୍ୟେ, ତୁମ୍ଭେ ପିତା ଏବଂ ଦେବତା ପ୍ରାୟ, ଏହି ଦୁଇ ବ୍ରାହ୍ମଣଙ୍କର ସେବା କରିବ ।” ପିତୃ ନିଦେଶ ଶ୍ରବଣ କରି ସେହି ଧର୍ମନିରତା କନ୍ୟା “ଆଜ୍ଞା ହେଉ” ବୋଲି ପୂଜ୍ୟ ଜ୍ଞାନରେ ମହର୍ଷି ଦ୍ୱୟଙ୍କର ଶୁଶ୍ରୂଷାର୍ଥ ନିଯୁକ୍ତା ହେଲେ । ସେହି କନ୍ୟାର ଅକପଟ ସେବା ଓ ଅପ୍ରତିମ ରୂପଦ୍ୱାରା ଅଳ୍ପକାଳ ମଧ୍ୟରେ ମହାତ୍ମା ଦେବର୍ଷି ନାରଦଙ୍କର ଅନ୍ତଃକରଣରେ ହଠାତ୍ ଅନଙ୍ଗ ଭାବର ଉଦୟ ହୋଇ ଶୁକ୍ଳପକ୍ଷ ଚନ୍ଦ୍ରପ୍ରାୟ କ୍ରମଶଃ ତାହା ପୁଷ୍ଟ ହେଲା; କିନ୍ତୁ ସେହି ଧର୍ମଜ୍ଞ ଲଜ୍ଜାବଶରୁ ନିଜ ଭାଗିନେୟ ମହାତ୍ମା ପର୍ବତ ଋଷିଙ୍କ ନିକଟରେ ମାନସିକ ଭାବକୁ ବ୍ୟକ୍ତ କଲେ ନାହିଁ । ମହର୍ଷି ପର୍ବତ ଇଙ୍ଗିତଦ୍ୱାରା ଏବଂ ସ୍ୱୀୟ ତପଃ ପ୍ରଭାବରୁ ନାରଦଙ୍କୁ କାମାର୍ତ୍ତ ବୋଲି ଜାଣି ପାରିଲେ ଏବଂ ଅତ୍ୟନ୍ତ କ୍ରୁଦ୍ଧ ହୋଇ କହିଲେ—ଆପଣ ସ୍ୱୟଂ ଆମ୍ଭ ସହିତ ନିୟମ କରିଥିଲେ ଯେ ଯାହା ମନରେ ଯେପରି ଭାବର ଉଦୟ ହେବ, ତାହା ଶୁଭ ହେଉ ବା ଅଶୁଭ ହେଉ ତତ୍‌କ୍ଷଣାତ୍ ପରସ୍ପରକୁ ଅକପଟରେ ବ୍ୟକ୍ତ କରିବୁଁ; କିନ୍ତୁ ଆପଣ ସେହି ପ୍ରତିଜ୍ଞାକୁ ମିଥ୍ୟା କଲେ ।୨୧।

ଯେ ହେତୁ ରାଜକୁମାରୀ ସୁକୁମାରୀଙ୍କ ଠାରେ ଆପଣଙ୍କର ଯେଉଁ କାମ ପ୍ରବୃତ୍ତି ହେଉଅଛି ତାହା ଆପଣ ଆମ୍ଭଠାରେ ଏତେଦିନ ହେଲା ପ୍ରକାଶ କରି ନାହାନ୍ତି । ଅତଏବ ଆମ୍ଭେ ଆପଣଙ୍କୁ ଅଭିଶାପ ପ୍ରଦାନ କରିବୁଁ । ଆପଣ ଆମ୍ଭର ଗୁରୁ, ବ୍ରହ୍ମଚର୍ଯ୍ୟନିଷ୍ଠ, ତପସ୍ୱୀ ବ୍ରାହ୍ମଣ ହୋଇ ସୁଦ୍ଧା ଆମ୍ଭ ଦୁହିଁଙ୍କର ପରସ୍ପରକୃତ ନିୟମକୁ ଉଲ୍ଲଙ୍ଘନ କରିଅଛନ୍ତି,

ତନ୍ନିମିତ୍ତ ଆମ୍ଭେ ଆପଣଙ୍କୁ ଯେପରି ଶାପ ପ୍ରଦାନ କରିବୁଁ ତାହା ଶ୍ରବଣ କରନ୍ତୁ ।୨୪।

ରାଜକୁମାରୀ ଆପଣଙ୍କର ଭାର୍ଯ୍ୟା ହେବେ; ଏଥିରେ ସଂଶୟ ନାହିଁ; କିନ୍ତୁ ବିବାହ କାଳଠାରୁ ଆପଣ ସ୍ୱରୂପ ଭ୍ରଷ୍ଟ ହୋଇ ସେହି ବିବାହିତା ସ୍ତ୍ରୀ ଓ ଅନ୍ୟାନ୍ୟ ମନୁଷ୍ୟମାନଙ୍କୁ ବାନର ପ୍ରାୟ ଦେଖାଯିବେ । ଦେବର୍ଷି ନାରଦ ଭାଗିନେୟଙ୍କର ଅସଙ୍ଗତ ଅଭିଶାପ ବାକ୍ୟକୁ ଶ୍ରବଣପୂର୍ବକ ଅତ୍ୟନ୍ତ କ୍ରୁଦ୍ଧ ହୋଇ ତାହାଙ୍କୁ ମଧ୍ୟ ଶାପ ପ୍ରଦାନ କଲେ; କହିଲେ—ଯଦିଚ ତୁମ୍ଭେ ତପସ୍ୟା, ବ୍ରହ୍ମଚର୍ଯ୍ୟ, ସତ୍ୟ ଓ ଦମାଦିଗୁଣସମ୍ପନ୍ନ ହୋଇ ନିତ୍ୟ ଧର୍ମ୍ମରେ ଅବିଚଳିତ ଅଛ, ତଥାପି ତୁମ୍ଭେ ଆମ୍ଭର ଅଭିଶାପ ପ୍ରଭାବରୁ ପୂର୍ବବତ ଆଉ ସ୍ୱର୍ଗକୁ ଗମନ କରି ପାରିବ ନାହିଁ । ଏହି ପ୍ରକାରେ ସେ ଦୁହେଁ କ୍ରୋଧବଶତଃ ଅସହିଷ୍ଣୁ ହୋଇ ପରସ୍ପର ଅଭିଶାପ ପ୍ରଦାନପୂର୍ବକ କ୍ରୁଦ୍ଧ ଗଜପ୍ରାୟ ନିଜ ନିଜ ଅଭିଳଷିତ ସ୍ଥାନକୁ ଗମନ କଲେ । ହେ ଭାରତ ! ମହାମତି ପର୍ବତ ଋଷି ସ୍ୱୀୟ ତେଜ ପ୍ରଭାବରୁ ସମସ୍ତ ମନୁଷ୍ୟଙ୍କ କର୍ତ୍ତୃକ ଯଥାବିହିତ ସତ୍କୃତ ହୋଇ ପୃଥିବୀ ପର୍ଯ୍ୟଟନରେ ପ୍ରବୃତ୍ତ ହେଲେ ଏବଂ ବିପ୍ରବର ନାରଦ ସେହି ସୃଞ୍ଜୟ ରାଜକନ୍ୟା ଅନିନ୍ଦିତା ସୁକୁମାରୀଙ୍କୁ ବିଧି ଅନୁସାରେ ଗ୍ରହଣ କଲେ । ପରନ୍ତୁ ସେହି କନ୍ୟା ପାଣିଗ୍ରହଣ ମନ୍ତ୍ର ପ୍ରୟୋଗ କାଳରୁ ପର୍ବତ ଋଷିଙ୍କ ଶାପ ପ୍ରଭାବ ହେତୁରୁ ନାରଦ ଋଷିଙ୍କୁ ବାନର ମୂର୍ତ୍ତି ସଦୃଶ ଦର୍ଶନ କଲେ । ଧର୍ମଜ୍ଞା ରାଜକୁମାରୀ ସ୍ୱାମୀଙ୍କର ବାନର ମୁଖକୁ ଦେଖି ସୁଦ୍ଧା ତାହାଙ୍କୁ ଅବମାନନା କଲେ ନାହିଁ, ବରଂ ପ୍ରୀତିମତୀ ହୋଇ ସ୍ୱାମୀଙ୍କର ଉପାସନାରେ ପ୍ରବୃତ୍ତ ହେଲେ । ସେ ପତିବାତ୍ସଲ୍ୟ ହେତୁରୁ ଦେବ, ଯକ୍ଷ କିମ୍ବା ମୁନି କିମ୍ବା ଅନ୍ୟ କୌଣସି ପୁରୁଷଙ୍କୁ ସୁଦ୍ଧା କଦାପି ମନରେ ପତିଭାବରେ ଚିନ୍ତା କରି ନ ଥିଲେ । ତଦନନ୍ତର ଏକଦା ଭଗବାନ ପର୍ବତ ଋଷି ସ୍ୱୀୟ ମାତୁଳ ନାରଦଙ୍କୁ ଜନଶୂନ୍ୟ ଅରଣ୍ୟ ମଧ୍ୟରେ ଦେଖିଲେ । ତତ୍‌କାଳରେ ପର୍ବତ ଋଷି ନାରଦଙ୍କୁ ଅଭିବାଦନପୂର୍ବକ କହିଲେ ।୩୫।—ହେ ପ୍ରଭୋ । ଆପଣ ଆମ୍ଭ ପ୍ରତି ପ୍ରସନ୍ନ ହୋଇ ପୁନର୍ବାର ଆମ୍ଭଙ୍କୁ ସ୍ୱର୍ଗଗମନ କରିବାନିମିତ୍ତ ଅନୁମତି ପ୍ରଦାନ କରନ୍ତୁ । ତଦନନ୍ତର ଅଭିଶାପରେ ସ୍ୱୟଂ ଅତ୍ୟନ୍ତ ଦୀନଭାବାପନ୍ନ ଦେବର୍ଷି ନାରଦ, କାତର ଚିତ୍ତ ସ୍ୱକୀୟ ଭାଗିନେୟ ପର୍ବତଙ୍କୁ ଉପାସକ ପ୍ରାୟ କୃତାଞ୍ଜଳି ପୁଟରେ ଉପାସନା କରିବାର ଦେଖି

କହିଲେ—ହେ ବତ୍ସ ! ତୁମ୍ଭେ ଆମ୍ଭଙ୍କୁ ପ୍ରଥମେ "ତୁମ୍ଭେ ବାନର ହେବ" ବୋଲି ଅଭିଶାପ ପ୍ରଦାନ କରିଥିଲ । ୩୭ । ଏହି ହେତୁରୁ ଆମ୍ଭେ ମଧ୍ୟ କ୍ରୋଧଯୁକ୍ତ ହୋଇ ତୁମ୍ଭଙ୍କୁ "ତୁମ୍ଭେ ଆଜ ଅଦ୍ୟାବଧି ସ୍ୱର୍ଗକୁ ଯାଇ ପାରିବ ନାହିଁ ।" ଏପରି ଅଭିଶାପ ଦେଇଥିଲୁଁ । ୩୮ । ତୁମ୍ଭେ ଆମ୍ଭର ପୁତ୍ରସଦୃଶ ଅଛ । ଅତଏବ ଆମ୍ଭପ୍ରତି ଏପରି ବ୍ୟବହାର କରିବା ତୁମ୍ଭର ଉଚିତ ହୋଇନାହିଁ । ଏହି ପ୍ରକାର କଥୋପକଥନ କରି ସେହି ମୁନିଦ୍ୱୟ ପରସ୍ପର ପରସ୍ପରକୁ ଶାପରୁ ମୁକ୍ତ କଲେ ।୩୯।

ତତ୍ପରେ ଦେବର୍ଷି ନାରଦ ସ୍ୱକୀୟ ଦିବ୍ୟ ଶ୍ରୀକୁ ପ୍ରାପ୍ତ ହେଲେ । ରାଜକନ୍ୟା ସୁକୁମାରୀ ନାରଦଙ୍କର ସେହି ଦେବତୁଲ୍ୟ ଶ୍ରୀଯୁକ୍ତ ଶରୀରକୁ ଦର୍ଶନ କରି, ଆଶଙ୍କାରେ ତାହାଙ୍କଠାରୁ ପଳାୟନ କଲେ ।୪୦।

ମହର୍ଷି ପର୍ବତ ସେହି ଅନିନ୍ଦିତା ରାଜକୁମାରୀଙ୍କୁ ପଳାୟନ ପରାୟଣା ଦେଖି କହିଲେ—ହେ ପତିବ୍ରତେ ! ସେ ତୁମ୍ଭର ସେହି ଭର୍ତ୍ତା, ନିଗ୍ରହାନୁଗ୍ରହ ସମର୍ଥ ସଦା ପ୍ରୀତିଯୁକ୍ତ ଧର୍ମ୍ମାତ୍ମା ଦେବର୍ଷି ନାରଦ ଋଷି ଅଟନ୍ତି, ଏଥିରେ ସନ୍ଦେହ ନାହିଁ । ଅତଏବ ତୁମ୍ଭେ ଅବିଶଙ୍କିତ ଚିତ୍ତରେ ଏହାଙ୍କର ଅନୁଗାମିନୀ ହୁଅ ।୪୧।

ମହାତ୍ମା ପର୍ବତ ଋଷି ରାଜକନ୍ୟାଙ୍କଠାରେ ଏହିପରି ବିନୟ ବାକ୍ୟପ୍ରୟୋଗ କରି ପରିଶେଷରେ ନାରଦଙ୍କର ଶାପ ବୃତ୍ତାନ୍ତକୁ ବର୍ଣ୍ଣନ କଲେ । ସୁକୁମାରୀ ତାହାଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶ୍ରବଣ କରି ପ୍ରକୃତିସ୍ଥା ହେଲେ । ଅନନ୍ତର ମହର୍ଷି ପର୍ବତ ସ୍ୱର୍ଗାଭିମୁଖକୁ ଗମନ କଲେ ଏବଂ ନାରଦ ଗୃହାଭିମୁଖରେ ଗମନ କଲେ ।୪୩।

ବାସୁଦେବ କହିଲେ—ହେ ନରୋତ୍ତମ ! ଆମ୍ଭେ ଆପଣଙ୍କଠାରେ ଯେଉଁ ବୃତ୍ତାନ୍ତକୁ ବର୍ଣ୍ଣନ କଲୁଁ, ତତ୍ସମସ୍ତର ପ୍ରତ୍ୟକ୍ଷ କର୍ତ୍ତା ଭଗବାନ ନାରଦ ଋଷି ଉପବିଷ୍ଟ ଅଛନ୍ତି, ଅତଏବ ଆପଣ ପ୍ରଶ୍ନ କଲେ ସେ ସ୍ୱୟଂ ଅବଶିଷ୍ଟ ବୃତ୍ତାନ୍ତକୁ ଆପଣଙ୍କଠାରେ ବର୍ଣ୍ଣନ କରିବେ ।୪୪।

---

## ଅଧ୍ୟାୟ—୩୧

ବୈଶମ୍ପାୟନ କହିଲେ—ତଦନନ୍ତର ପାଣ୍ଡୁ ନନ୍ଦନ ରାଜା ଯୁଧିଷ୍ଠିର ନାରଦଙ୍କୁ କହିଲେ—ହେ ଭଗବନ୍ ! ଆମ୍ଭେ ସୁବର୍ଣ୍ଣଷ୍ଠୀବୀଙ୍କର ଉତ୍ପତ୍ତି ବିବରଣ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ ।

ନାରଦ ଯୁଧିଷ୍ଠିରଙ୍କ କର୍ତ୍ତୃକ ଏହିପରି କଥିତ ହୋଇ ସୁବର୍ଣ୍ଣ-ଷ୍ଠୀବୀଙ୍କର ଉତ୍ପତ୍ତି ପ୍ରଭୃତି ସମସ୍ତ ବିବରଣ ବର୍ଣ୍ଣନ କରିବାରେ ପ୍ରବୃତ୍ତ ହେଲେ ।୨।

ନାରଦ କହିଲେ—ମହାବାହୁ କେଶବ ତୁମ୍ଭଙ୍କୁ ଯାହା କହିଲେ ତତ୍ସମସ୍ତ ସତ୍ୟ ଅଟେ । ଅବଶିଷ୍ଟ ଭାଗକୁ ତୁମ୍ଭର ପ୍ରଶ୍ନ ଅନୁସାରେ, କହୁଅଛୁ, ଶ୍ରବଣ କର । ଏକଦା ଆମ୍ଭେ ଏବଂ ଆମ୍ଭର ଭାଗିନେୟ ମହାମୁନି ପର୍ବତ କିଯ୍ୱତ୍‌କାଳ ବାସ କରିବାନିମିତ୍ତ ବିଜୟି ଶ୍ରେଷ୍ଠ ନରପତି ସୃଞ୍ଜୟଙ୍କ ନିକଟକୁ ଗମନ କରନ୍ତେ ସେ ଯଥାବିହିତ କାର୍ଯ୍ୟଦ୍ୱାରା ଆମ୍ଭ ଦୁହିଁଙ୍କ ସେବାରେ ନିଯୁକ୍ତ ହେଲେ । ଆମ୍ଭେମାନେ ତାହାଙ୍କର ଆଳୟରେ ପାନ ଭୋଜନାଦି ସମସ୍ତ ଅଭିଲଷିତ ଦ୍ରବ୍ୟଦ୍ୱାରା ସମ୍ମାନିତ ହୋଇ ବାସ କଲୁଁ ।୫।

ଏହି ପ୍ରକାରେ ବର୍ଷାକାଳ ଅତୀତ ହୁଅନ୍ତେ ଯେତେବେଳେ ଆମ୍ଭମାନଙ୍କର ଗମନ ସମୟ ଉପସ୍ଥିତ ହେଲା, ତେତେବେଳେ ପର୍ବତ ଋଷି ଆମ୍ଭମାନଙ୍କୁ ସମ୍ବୋଧନ କରି ତତ୍କାଳୋଚିତ କଥାକୁ କହିଲେ— ହେ ବ୍ରହ୍ମନ୍ ! ଆମ୍ଭେମାନେ ଏତେ ଦିନ ହେଲା ଏହି ନରେନ୍ଦ୍ର ଗୃହରେ ପରମ ସୁଖାନୁଭବପୂର୍ବକ ବାସକଲେଁ । ବର୍ତ୍ତମାନ କି ପ୍ରକାର ପ୍ରତ୍ୟୁପକାର କଲେ ଏହାଙ୍କର ମଙ୍ଗଳ ହେବ, ତଦ୍ୱିଷୟରେ ବିବେଚନା କରନ୍ତୁ ।୭।

ଶୁଭ ଦର୍ଶନ ପର୍ବତଙ୍କଠାରୁ ଏହି କଥା ଶୁଣି ଆମ୍ଭେ କହିଲୁଁ "ହେ ଭାଗିନେୟ ! ତୁମ୍ଭେ ସକଳ ବିଷୟରେ ସମର୍ଥ ଅଟ । ଅତଏବ ଏହି କଥା କହିବା ତୁମ୍ଭର ଉପଯୁକ୍ତ ହୋଇଅଛି । ତୁମ୍ଭେ ରାଜାଙ୍କର ଅଭିଳାଷାନୁଯାୟୀ ବର ପ୍ରଦାନ କରି ତାହାଙ୍କୁ ଚରିତାର୍ଥ କର, ଅଥବା ତୁମ୍ଭର ଯଦି ଅଭିମତ ହୁଏ, ତାହାହେଲେ ସେ ଆମ୍ଭ ଉଭୟଙ୍କର ତପଃ ପ୍ରଭାବରୁ ସିଦ୍ଧି ଲାଭ କରନ୍ତୁ ।୧୧।

ତଦନନ୍ତର, ହେ କୁରୁପୁଙ୍ଗବ ! ମହର୍ଷି ପର୍ବତ ଜୟିଶ୍ରେଷ୍ଠ ନରପତି ସୃଞ୍ଜୟଙ୍କୁ ଆହ୍ୱାନ କରି କହିଲେ—ହେ ନୃପ ! ତୁମ୍ଭର ଅକପଟ

ସେବାରେ ଆମ୍ଭେମାନେ ସାତିଶୟ ପ୍ରୀତ ହୋଇଅଛୁଁ । ଅତଏବ ଅନୁମତି କରୁଅଛୁଁ ଯେ ତୁମ୍ଭର ମନରେ ଯେଉଁ ଅଭିଳାଷ ହେଉଅଛି । ତାହାକୁ ବିଶେଷ ସମାଲୋଚନା କରି ଦେଖ । ଏହା କହିବାର ଅଭିପ୍ରାୟ ଏହି ଯେ, ଦେବତାମାନଙ୍କର ହିଂସାରେ ପ୍ରବୃତ୍ତି ନ ହେଲେ ମନୁଷ୍ୟମାନଙ୍କର କଦାଚ କ୍ଷୟ ହୁଏ ନାହିଁ । ଅତଏବ ତୁମ୍ଭେ ନିଜର ମନ ଅନୁଯାୟୀ ବର ପ୍ରାର୍ଥନା କର । ଯେହେତୁ ତୁମ୍ଭେ ଆମ୍ଭମାନଙ୍କ ନିକଟରୁ ବରପ୍ରାପ୍ତ ହେବାର ଉପଯୁକ୍ତ ଅଟ ।୧୨।

ସଞ୍ଜୟ କହିଲେ ! ଯଦି ଆପଣ ଦୁହେଁ ଆମ୍ଭପ୍ରତି ପ୍ରୀତ ହୋଇଥାନ୍ତି ତେବେ ଆମ୍ଭେ ସମସ୍ତ ପ୍ରାପ୍ତ ହୋଇଅଛୁ । ଏହାହିଁ ଆମ୍ଭର ପରମଲାଭ ଓ ମହାଫଳ ଅଟେ । ୧୩ ।

ନରପତି ସୃଞ୍ଜୟ ଏହିପରି କହନ୍ତେ ମହର୍ଷି ପର୍ବତ କହିଲେ—ହେ ରାଜନ୍ ! ଯେଉଁ ସଙ୍କଳ୍ପଟି ବହୁ ଦିନରୁ ତୁମ୍ଭର ଅନ୍ତଃକରଣରେ ବଦ୍ଧମୂଳ ଅଛି ସେହି ଚିର ସଙ୍କଳ୍ପିତ ବରକୁ ଆଜି ଆମ୍ଭମାନଙ୍କଠାରେ ପ୍ରାର୍ଥନା କର । ୧୪ ।

ସୃଞ୍ଜୟ କହିଲେ—ଆମ୍ଭର ଇଚ୍ଛା ଯେ ମହା ସୌଭାଗ୍ୟ ସଂପନ୍ନ, ଆୟୁଷ୍ମାନ, ବୀର୍ଯ୍ୟବାନ୍ ଦୃଢ଼ବ୍ରତ, ବୀର ଏବଂ ଦେବରାଜଙ୍କ ସଦୃଶ ଦ୍ୟୁତି ସମନ୍ୱିତ ଗୋଟିଏ ପୁତ୍ର ହେଉ । ୧୫ ।

ପର୍ବତ କହିଲେ—ହେ ମହାରାଜ ! ତୁମ୍ଭେ ଯାହା କହିଲ ତୁମ୍ଭର ତତ୍ସମସ୍ତ କାମନା ପୂର୍ଣ୍ଣହେବ । ଅଧିକରେ ତୁମ୍ଭର ପୁତ୍ରର ନିଷ୍ଠୀବନରେ ସୁବର୍ଣ୍ଣ ଉତ୍ପନ୍ନ ହେବ । ଏହି ହେତୁରୁ ପୁତ୍ର ସୁବର୍ଣ୍ଣ ଷ୍ଠୀବୀ ନାମରେ ବିଖ୍ୟାତ ହେବ; କିନ୍ତୁ ତୁମ୍ଭେ ମନେ ମନେ ଦେବରାଜଙ୍କର ପରାଭବକୁ ଇଚ୍ଛା କରିଅଛ । ଅତଏବ ତୁମ୍ଭର ପୁତ୍ର ଦୀର୍ଘଜୀବୀ ହେବନାହିଁ । ତୁମ୍ଭେ ତୁମ୍ଭର ଦେବରାଜ ସଦୃଶ ଦ୍ୟୁତିବାନ୍ ପୁତ୍ରକୁ ସର୍ବଦା ଦେବରାଜଙ୍କଠାରୁ ରକ୍ଷା କର । ୧୬ ।

ରାଜା ସୃଞ୍ଜୟ ମହାତ୍ମା ପର୍ବତଙ୍କଠାରୁ ଏହି କଥା ଶ୍ରବଣ କରିକ୍ଷଣି କହିଲେ—ହେ ମୁନେ ! ଇତ୍ୟାଦି ଅନୁଷ୍ଠ ଯେପରି [illegible] ଏବଂ ଆପଣଙ୍କଠାରୁ ତପଃ ପ୍ରଭାବରୁ ଆମ୍ଭର [illegible], ଏହିପରି ସାନୁନୟ ବାକ୍ୟ ପ୍ରୟୋଗଦ୍ୱାରା ତା[illegible] କରିବା ସମୟରେ

ବଜ୍ରବଧ ଯତ୍ନ କରିବାରେ ପ୍ରବୃତ୍ତ ହେଲେ; କିନ୍ତୁ ପର୍ବତ ଋଷି ଇନ୍ଦ୍ରଙ୍କ ଅନୁରୋଧରେ ସୃଞ୍ଜୟ ରାଜାଙ୍କୁ କିଛି ପ୍ରତ୍ୟୁତ୍ତର କଲେ ନାହିଁ । ୧୯ ।

ତେତେବେଳେ ଆମ୍ଭେ ସୃଞ୍ଜୟଙ୍କୁ ଅତ୍ୟନ୍ତ ଦୀନଭାବାପନ୍ନ ଦେଖି କହିଲୁଁ—ମହାରାଜ ! ତୁମ୍ଭେ ବିପଦାପନ୍ନ ହେଲେ ଆମ୍ଭଙ୍କୁ ସ୍ମରଣ କରିବ, ତାହାହେଲେ ତତ୍‌କ୍ଷଣାତ୍ ଆମ୍ଭଙ୍କୁ ଦର୍ଶନ ପାଇବ ଏବଂ ତୁମ୍ଭର ସେହି ପ୍ରିୟପୁତ୍ର ଯମାଳୟଗତ ହେଲେ ସୁଦ୍ଧା ଆମ୍ଭେ ତାହାଙ୍କୁ ଅବିକଳ ତଦ୍ରୂପ ଅବସ୍ଥାରେ ଆନୟନ କରି ଦେବୁଁ । ଅତଏବ ବର୍ତ୍ତମାନ ଶୋକ କର ନାହିଁ । ୨୧ ।

ସୃଞ୍ଜୟ ରାଜାଙ୍କୁ ଏହିକଥା କହି ଭଗିନେୟ ପର୍ବତ ଏବଂ ଆମ୍ଭେ ଯଥାଭିଳଷିତ ସ୍ଥାନକୁ ଗମନ କଲୁଁ, ସୃଞ୍ଜୟ ମଧ୍ୟ ସ୍ୱମନ୍ଦିରରେ ପ୍ରବିଷ୍ଟ ହେଲେ । ୨୨ ।

ଅନନ୍ତର କିଛିଦିନ ଉତ୍ତାରେ ରାଜର୍ଷି ସୃଞ୍ଜୟଙ୍କର ଜଳଦଗ୍ନି ସଦୃଶ ତେଜସ୍ୱୀ ମହାବୀର୍ଯ୍ୟବାନ୍ ଗୋଟିଏ ପୁତ୍ର ଉତ୍ପନ୍ନ ହେଲା ଏବଂ ସେହି କୁମାର ସରୋବରସ୍ଥ ମହୋତ୍ପଳ ପ୍ରାୟ କ୍ରମଶଃ ବର୍ଦ୍ଧିତ ହେଲା । ପରନ୍ତୁ ପର୍ବତ ଋଷିଙ୍କର ବର ପ୍ରଭାବରୁ ସେହି ରାଜକୁମାରର ନିଷ୍ଠୀବନରେ ପ୍ରକୃତ ସୁବର୍ଣ୍ଣ ଉତ୍ପନ୍ନ ହେଲା, ଅତଏବ ତାହାଙ୍କର ନାମ ସୁବର୍ଣ୍ଣ ଷ୍ଠୀବୀ ହେଲା । ୨୪ ।

ହେ କୁରୁସତ୍ତମ ଯୁଧିଷ୍ଠିର ! ଏତଦନନ୍ତର ଏହି ଲୋକ ବିସ୍ମୟ କର ସମ୍ବାଦ ସର୍ବତ୍ର ପ୍ରଚରିତ ହେଲା ଏବଂ ଦେବରାଜ ଇନ୍ଦ୍ର ମଧ୍ୟ ମହର୍ଷି ପର୍ବତଙ୍କର ବର ପ୍ରଭାବରୁ ସୃଞ୍ଜୟ ରାଜାଙ୍କର ଅଦ୍ଭୁତ ପୁତ୍ର ଜାତ ହୋଇଅଛି ବୋଲି ଜାଣି ପାରିଲେ । ୨୫ ।

ତହୁଁ ବଳ ଓ ବୃତ୍ରାସୁର ହନ୍ତା ଦେବରାଜ ସ୍ୱକୀୟ ପରାଭବ ଭୀତ ହୋଇ ବୃହସ୍ପତିଙ୍କ ନିକଟରେ ସମସ୍ତ ବୃତ୍ତାନ୍ତ ପ୍ରକାଶ କଲେ । ପରେ ସୁରାଚାର୍ଯ୍ୟଙ୍କର ପରାମର୍ଶାନୁସାରେ ଉକ୍ତ ରାଜକୁମାରଙ୍କର ଛିଦ୍ରାନ୍ୱେଷୀ ହେଲେ । ୨୬ ।

ଅନନ୍ତର ଇନ୍ଦ୍ରଦେବ ମୂର୍ତ୍ତିମାନ ଦିବ୍ୟାସ୍ତ୍ର ବଜ୍ରକୁ ସମ୍ବୋଧନ-ପୂର୍ବକ କହିଲେ—ହେ ବଜ୍ର ! ପର୍ବତ ଋଷିଙ୍କର ବର ପ୍ରଭାବରୁ ସୃଞ୍ଜୟ ରାଜାଙ୍କର ଯେଉଁ ପୁତ୍ର ଉତ୍ପନ୍ନ ହୋଇଅଛି, ସେ ବର୍ଦ୍ଧିତ ହେଲେ ଆମ୍ଭଙ୍କୁ ନିଶ୍ଚୟ ପରାଭୂତ କରିବ, ଅତଏବ ତୁମ୍ଭେ ବ୍ୟାଘ୍ର ମୂର୍ତ୍ତି ଧାରଣ କରି

ତାହାଙ୍କୁ ସଂହାର କର । ଏପରି କହି ସେ ବଜ୍ରକୁ ପ୍ରେରଣ କଲେ । ତତ୍କାଳରେ ଶତ୍ରୁପୁର ବିଜୟୀ ବଜ୍ର ଇନ୍ଦ୍ରଙ୍କ କର୍ତ୍ତୃକ ଈଦୃଶ ଆଦିଷ୍ଟ ହୋଇ ରାଜ କୁମାରଙ୍କର ଛିଦ୍ରାନ୍ୱେଷୀ ଓ ପଶ୍ଚାତ୍‌ବର୍ତ୍ତୀ ହେଲେ । ୨୯ ।

ନରପତି ସୃଞ୍ଜୟ ଦେବରାଜ ସଦୃଶ ଦ୍ୟୁତିସମ୍ପନ୍ନ ପୁତ୍ରକୁ ପ୍ରାପ୍ତ ହୋଇ ହୃଷ୍ଟାନ୍ତଃକରଣରେ କଥିତ ପରିମାଣ ସୈନ୍ୟ ସହିତ ସ୍ୱକୀୟ ପୁତ୍ରର ରକ୍ଷାନିମିତ୍ତ ସର୍ବଦା ଅନ୍ତଃପୁର ମଧ୍ୟରେ ଅବସ୍ଥାନ କଲେ । ଏହିପରି ସେହି ନୃପାତ୍ମଜ କ୍ରମରେ ପଞ୍ଚବର୍ଷ ବୟଃପ୍ରାପ୍ତ ହେଲେ; କିନ୍ତୁ ସେହି ବାଳକ ଅଳ୍ପ ବୟସ୍କ ହୋଇ ହିଁ ଗଜେନ୍ଦ୍ର ସଦୃଶ ବିକ୍ରମଶାଳୀ ହୋଇଥିଲେ । ଏମନ୍ତ ସମୟରେ ଏକଦା ଉପର୍ଯ୍ୟୁକ୍ତ ରାଜକୁମାର କ୍ରୀଡ଼ାର୍ଥୀ ହୋଇ କେବଳ ଧାତ୍ରୀ ସହିତ ଭାଗୀରଥୀ ତୀର ସମୀପସ୍ଥ ନିର୍ଜ୍ଜନ ଅରଣ୍ୟାଭିମୁଖକୁ ଗମନ କଲେ । ସେଠାରେ ଉପସ୍ଥିତ ହେଲା ମାତ୍ରକେ ସେହି ରାଜକୁମାର ଗୋଟିଏ ମହାବଳ ବ୍ୟାଘ୍ରକୁ ଉପସ୍ଥିତ ହେବାର ଦେଖି ଭୟରେ କମ୍ପିତ ହେଲେ ଏବଂ ସେହି ବ୍ୟାଘ୍ରଦ୍ୱାରା ନିଷ୍ପିଷ୍ଟ ଓ ବିଗତାସୁ ହୋଇ ଭୂତଳରେ ପତିତ ହେଲେ । ଧାତ୍ରୀ ତାହା ଦେଖି ଚିତ୍କାର ସ୍ୱରରେ ରୋଦନ କଲା ।୩୩।

ଶାର୍ଦ୍ଦୂଳ ରୂପଧାରୀ ବଜ୍ର ମଧ୍ୟ ରାଜକୁମାରଙ୍କୁ ସଂହାର କରି ଦେବରାଜଙ୍କର ମାୟା ପ୍ରଭାବଦ୍ୱାରା ସେହିଠାରେ ଅନ୍ତର୍ହିତ ହୋଇ ଗଲେ ।୩୪।

ଅନନ୍ତର ରୋଦନ ପରାୟଣା ଧାତ୍ରୀର ଆର୍ତ୍ତନାଦ ଶ୍ରବଣ କରି ସୃଞ୍ଜୟ ରାଜ ସେହି ସ୍ଥଳକୁ ସ୍ୱୟଂ ଧାବିତ ହେଲେ ।୩୫।

ସେଠାରେ ଉପନୀତ ହୋଇ ଦେଖିଲେ ଯେ ଶୋଭା ଶୂନ୍ୟ ଗଗନ ଭ୍ରଷ୍ଟ ନିଶାକର ପ୍ରାୟ, ରାଜକୁମାର ପ୍ରାଣବିହୀନ ହୋଇ ଭୂତଳରେ ପତିତ ରହି ଅଛନ୍ତି ଏବଂ କୌଣସି ହିଂସ୍ରଜନ୍ତୁ ତାହାଙ୍କର ଶୋଣିତକୁ ପାନ କରିଅଛି । ତେତେବେଳେ ସେ ଅତ୍ୟନ୍ତ ସନ୍ତପ୍ତଚିତ୍ତ ହୋଇ ରୁଧିରାକ୍ତ କଳେବର ମୃତ ପୁତ୍ରକୁ କୋଡ଼ରେ ଧାରଣପୂର୍ବକ ଆର୍ତ୍ତସ୍ୱରରେ ବିଳାପ କଲେ ।୩୬।

ତଦନନ୍ତର କୁମାରଙ୍କର ମାତୃଗଣ ଅତ୍ୟନ୍ତ ଶୋକ କର୍ଷିତ ହୋଇ ରୋଦନ କରୁକରୁ ଯେଉଁଠାରେ ସୃଞ୍ଜୟ ରାଜ ବିଳାପ କରୁଥିଲେ ସେଠାରେ ଉପସ୍ଥିତ ହେଲେ ।୩୮।

ସୃଞ୍ଜୟପୁତ୍ରଙ୍କ ବହୁକ୍ଷଣ ରୋଦନ କଲାପରେ ଏକାଗ୍ରଚିତ୍ତ ହୋଇ ଆମ୍ଭଙ୍କୁ ସ୍ମରଣ କଲେ । ଆମ୍ଭେ ତାହା ଜାଣିପାରି ତତ୍‌କ୍ଷଣାତ୍ ଶୋକସନ୍ତପ୍ତ ମନ୍ତ୍ରୀପତିଙ୍କଠାରେ ଉପନୀତ ହେଲୁ ଏବଂ କ୍ଷଣକାଳ ପୂର୍ବରୁ ଯଦୁବୀର କେଶବ ତୁମ୍ଭଠାରେ ଯାହା ବର୍ଣ୍ଣନ କଲେ ତତ୍ସମସ୍ତ ପୁରାତନ ଇତିହାସ ତାହାଙ୍କୁ ଶ୍ରବଣ କରାଇଲୁ । ତତ୍ପରେ ଇନ୍ଦ୍ରଙ୍କର ସମ୍ମତି ଅନୁସାରେ ତାହାଙ୍କର ପୁତ୍ରକୁ ପୁନର୍ଜୀବିତ କଲୁଁ । ଅତଏବ ହେ ରାଜନ୍ ! ଯାହା ଭବିତବ୍ୟ ତାହା ନିଶ୍ଚୟ ଘଟିବ । କୌଣସି କ୍ରମରେ ତାହାର ଅନ୍ୟଥା ହେବ ନାହିଁ ।୪୧।

ତଦନନ୍ତର ବୀର୍ଯ୍ୟବାନ୍ ମହାଯଶା ରାଜକୁମାର ସୁବର୍ଣ୍ଣଷ୍ଠୀବୀ ପୁନର୍ଜୀବିତ ହୋଇ ପିତା ଓ ମାତାଙ୍କର ଚିତ୍ତ ପ୍ରସନ୍ନ କଲେ ଏବଂ କିୟତ୍-କାଳ ପରେ ସୃଞ୍ଜୟପୁତ୍ରଙ୍କ ଲୋକାନ୍ତରିତ ହୁଅନ୍ତେ, ଭୀମ ବିକ୍ରମ ରାଜକୁମାର ପିତୃସିଂହାସନରେ ଆରୋହଣ କରି ଏକାଦଶ ଶତବର୍ଷ ପର୍ଯ୍ୟନ୍ତ ନିର୍ବିଘ୍ନରେ ରାଜ୍ୟ ଶାସନ କଲେ ।୪୩।

ଏମନ୍ତ ସମୟରେ ସେ ଭୂରିଦକ୍ଷିଣା ସମନ୍ୱିତ ବହୁ ସଂଖ୍ୟକ ଯଜ୍ଞାନୁଷ୍ଠାନପୂର୍ବକ ଦେବ ଓ ପିତୃଲୋକଙ୍କର ତୃପ୍ତି ସାଧନ କଲେ । ତଦନନ୍ତର ସେହି ମହାଦ୍ୟୁତିସମ୍ପନ୍ନ ରାଜକୁମାର ବହୁଳ ପୁତ୍ର ଉତ୍ପାଦନ କରି କୁଳବର୍ଦ୍ଧନ କଲେ । ଏହି ପ୍ରକାରରେ ସେ ସୁଦୀର୍ଘକାଳ ରାଜ୍ୟ ଶାସନ କରି ପରିଶେଷରେ ଲୋକାନ୍ତରିତ ହୋଇଥିଲେ ।୪୪।

ଅତଏବ ହେ ରାଜେନ୍ଦ୍ର ଯୁଧିଷ୍ଠିର ! ମହାତପା ବ୍ୟାସଦେବ ଓ କେଶବ ତୁମ୍ଭଙ୍କୁ ଯେପରି ଉପଦେଶ ପ୍ରଦାନ କଲେ, ତୁମ୍ଭେ ତଦନୁସାରେ ଏହି ପିତୃପିତାମହ ପ୍ରାପ୍ତ ରାଜ୍ୟଭାରକୁ ଗ୍ରହଣ କର । ଆଉ ଶୋକ କର ନାହିଁ । ପବିତ୍ର ମହାଯଜ୍ଞର ଅନୁଷ୍ଠାନ କରି ଦେବଗଣଙ୍କର ତୃପ୍ତି ସାଧନ କର । ତାହାହେଲେ ଦେହାନ୍ତରେ ସ୍ୱକୀୟ ଅଭିଲଷିତ ଲୋକକୁ ଗମନ କରି ପାରିବ ।୪୭।



## ଅଧ୍ୟାୟ-୩୨

ବୈଶମ୍ପାୟନ କହିଲେ—ସର୍ବଧର୍ମତତ୍ତ୍ୱଜ୍ଞ ତପସ୍ୱୀ କୃଷ୍ଣ ଦ୍ୱୈପାୟନ ଋଷି ଶୋକାର୍ତ୍ତ ରାଜା ଯୁଧିଷ୍ଠିରଙ୍କୁ ମୌନ ଭାବରେ ଅବସ୍ଥାନ କରିବାର ଦେଖି କହିଲେ ।୧।

ବ୍ୟାସ କହିଲେ—ହେ ରାଜୀବ ଲୋଚନ ! ସେମାନଙ୍କର ପ୍ରଜାପାଳନ କେବଳ ଏକ ମାତ୍ର ଧର୍ମ ଅଟେ । ଆଉ ନିୟତ ଧର୍ମାନୁବର୍ତ୍ତୀ ଲୋକମାନଙ୍କର ଧର୍ମହିଁ ପ୍ରମାଣସ୍ୱରୂପ । ଅତଏବ ହେ ରାଜନ୍ । ତୁମ୍ଭେ ତୁମ୍ଭର ପିତୃପିତାମହ ଚରିତ ଧର୍ମକୁ ପାଳନ କର । ତପସ୍ୟା ଧର୍ମ କେବଳ ବ୍ରାହ୍ମଣଙ୍କର । ବେଦରେ ଏହିପରି ନିର୍ଣ୍ଣିତ ଅଛି । ହେ ଭରତର୍ଷଭ ! ସେହି ଶାଶ୍ୱତ ଧର୍ମ ବ୍ରାହ୍ମଣମାନଙ୍କର ମୂଳ ସ୍ୱରୂପ; କିନ୍ତୁ ସମସ୍ତ ଧର୍ମର ରକ୍ଷିତା କ୍ଷତ୍ରିୟମାନେ ଅଟନ୍ତି । ୪ ।

ଯଦି କୌଣସି ବ୍ୟକ୍ତି ବିଷୟ ଲୋଭୀ ହୋଇ ରାଜ୍ୟ ଶାସନକୁ ଉଲ୍ଲଙ୍ଘନ କରେ ସେହି ଲୋକ ଯାହା ବିଘାତକ ଦୁରାତ୍ମାକୁ ରାଜାଙ୍କର ବାହୁବଳଦ୍ୱାରା ନିଗୃହୀତ କରିବା ଉଚିତ । ୫ ।

ଭୃତ୍ୟ, ପୁତ୍ର, ତପସ୍ୱୀ, କିମ୍ବା ଯେ କେହି ହେଉ, ଯଦି ମୋହର ବଶବର୍ତ୍ତୀ ହୋଇ ପ୍ରମାଣକୁ ଅପ୍ରମାଣ କରିବାରେ ପ୍ରବୃତ୍ତ ହୁଏ, ତାହାହେଲେ ଯେ କୌଣସି ଉପାୟଦ୍ୱାରା ପାପାତ୍ମାମାନଙ୍କୁ ଶାସନ କିମ୍ବା ବଧ କରିବା ଉଚିତ । ତାହାର ଅନ୍ୟ ଆଚରଣ କଲେ ରାଜାଙ୍କୁ ପାପରେ ଲିପ୍ତ ହେବାକୁ ହୁଏ । ୭ ।

କୌଣସି ଦୁରାତ୍ମାକୁ ଧର୍ମ ଲୋପ କରୁଥିବାର ଦେଖି ନରପତି ଯଦି ତାହାକୁ ଦମନପୂର୍ବକ ଧର୍ମରକ୍ଷା ନ କରନ୍ତି, ତାହାହେଲେ ସେହି ଧର୍ମ ବିଘାତ ଜନିତ ପାପ ରାଜାଙ୍କଠାରେ ସଂକ୍ରମିତ ହୁଏ । ହେ ଯୁଧିଷ୍ଠିର ତୁମ୍ଭେ ଧର୍ମବିଘାତକ ଦୁର୍ଯ୍ୟୋଧନାଦି ଦୁଷ୍ଟ ରାଜାମାନଙ୍କୁ ନିହତ କରି ପ୍ରକୃତ ରୂପରେ କ୍ଷତ୍ରିୟ ଧର୍ମକୁ ରକ୍ଷା କରିଅଛ । ଅତଏବ କି ନିମିତ୍ତ ଅନୁତାପ କରୁଅଛ ? ଧର୍ମାନୁସାରେ ପ୍ରଜାପାଳନ କରିବା ଏବଂ ଦାନ ଓ ଦୁଷ୍ଟ ଦମନ କରିବା ରାଜାମାନଙ୍କର ପ୍ରକୃତ ଧର୍ମ । ୯ ।

ଯୁଧିଷ୍ଠିର କହିଲେ—ହେ ତପୋଧନ ! ଆପଣ ଧର୍ମଜ୍ଞମାନଙ୍କର ଅଗ୍ରଗଣ୍ୟ ଅଟନ୍ତି ଏବଂ ଧର୍ମର ତତ୍ତ୍ୱକୁ ଅପରୋକ୍ଷରୂପରେ ଜ୍ଞାତହୋଇ

ଛନ୍ତି । ଅତଏବ ଆପଣଙ୍କର ଉପଦେଷ୍ଟା ବିଷୟରେ କୌଣସି ସନ୍ଦେହ କରୁନାହୁଁ । ୧୦ ।

କିନ୍ତୁ ଆମ୍ଭେ ଯେଉଁ ରାଜ୍ୟ ନିମିତ୍ତ ଭୀଷ୍ମ, ଦ୍ରୋଣପ୍ରଭୃତି ଅନେକ-ଗୁଡ଼ିଏ ଅବଧ୍ୟ ବ୍ୟକ୍ତିଙ୍କର ବଧ ସାଧନ କରିଅଛୁ, ସେହି ଦୁଷ୍କୃତ କର୍ମ ଆମ୍ଭର ହୃଦୟକୁ ଦଗ୍ଧ କରି ପାକ କରୁଅଛି । ୧୧ ।

ବ୍ୟାସ କହିଲେ—ହେ ଭାରତ ! ଯୁଦ୍ଧ ସ୍ଥଳରେ ଯେଉଁସବୁ ଲୋକ ନିହତ ହୋଇ ଅଛନ୍ତି, ସେହି ହନନ ବିଷୟର କର୍ତ୍ତା, ଈଶ୍ୱର, କର୍ମାଜୀବ, କର୍ମା ସ୍ୱଭାବ କର୍ମା କର୍ମଜନିତ ଫଳ । ଯଦି କହ ଯେ ଜୀବ ଈଶ୍ୱର ପ୍ରେରିତ ହୋଇ ଶୁଭାଶୁଭ କାର୍ଯ୍ୟରେ ପ୍ରବୃତ୍ତ ହୁଏ, ତାହାହେଲେ ତୁମ୍ଭର ଅନୁତାପ କରିବା ଉଚିତ ନୁହେଁ । କାରଣ ସେହି ଶୁଭାଶୁଭ କର୍ମର ଫଳ ପ୍ରୟୋଜକ କର୍ତ୍ତା ଈଶ୍ୱରଙ୍କଠାରେ ପ୍ରବର୍ତ୍ତିବ । ୧୩ ।

ତାହାର ଦୃଷ୍ଟାନ୍ତ ଦେଖି କୌଣସି ପୁରୁଷ ଅରଣ୍ୟସ୍ଥ ବୃକ୍ଷକୁ ପରଶୁଦ୍ୱାରା ଛେଦନ କଲେ ତଜ୍ଜନିତ ପାପ ଛେଦନ କର୍ତ୍ତାର ହେବ । ପରଶୁର ପାପ ହେବ ନାହିଁ । ୧୪ ।

ଯଦି କହ ଯେ ନିଯୋଜ୍ୟ କର୍ତ୍ତା ପରଶୁ ଅଚେତନ ପଦାର୍ଥ, ସେଥି ନିମିତ୍ତ ସେ ପାପୀ ହୁଏ ନାହିଁ; କିନ୍ତୁ ସଚେତନ ଜୀବ ଯଦିତ ନିଯୋଜ୍ୟ କର୍ତ୍ତା ହୁଏ, ତାହାହେଲେ ଅବଶ୍ୟ କୃତକର୍ମର ଫଳଭାଗୀ ହେବ । ତାହାହେଲେ ଏହା ମଧ୍ୟ ବୋଲି ଯାଇପାରେ ଯେ ବୃକ୍ଷଛେଦନ କର୍ତ୍ତାର ପାପ ନ ହୋଇ ତାହା ପରଶୁ ନିର୍ମାଣକାରୀର ପାପ ଅଟେ । ହେ କୌନ୍ତେୟ ! ଏହା କେତେବେଳେ ହୁଇବ ନାହିଁ ଯେ ବୃକ୍ଷ ଛେଦନ କର୍ତ୍ତାର ପାପରେ ନିଯୋଜ୍ୟ କର୍ତ୍ତାକୁ ଲିପ୍ତ ହେବାକୁ ହେବ, ଏହା କଦାପି ସଙ୍ଗତ ହୋଇପାରେ ନାହିଁ । ଅତଏବ ତୁମ୍ଭେ ସମସ୍ତ କର୍ମଫଳକୁ ଈଶ୍ୱରଙ୍କଠାରେ ସନ୍ନିବେଶିତ କର । ୧୬ ।

ଯଦି କୁହ ଯେ ଜୀବ ଶୁଭାଶୁଭ କର୍ମର କର୍ତ୍ତା ଅଟନ୍ତି ଏବଂ ତାହାର ପ୍ରୟୋଜକ କେହି ନାହିଁ, ତାହାହେଲେ କାହାକୁ ସୁଦ୍ଧା ଆଜି ଜଗତରେ ନିପୁଣ୍ୟା ବୋଲି ସ୍ୱୀକାର କରାଯିବ ନାହିଁ । ଅତଏବ ତୁମ୍ଭେ ଶୁଭାଶୁଭ କର୍ମ ଯାହା କରିଅଛ ତାହା ଉତ୍ତମ ଅଟେ । ତୁମ୍ଭର ଆଜି ତାହାହେଲେ ଭୟର କାରଣ କ'ଣ ? ହେ ରାଜନ୍ ! ଆମ୍ଭେ ଯାହା କହୁଅଛୁଁ, ତାହା ନିଶ୍ଚୟରୂପେ ଅବଧାରଣ କରନ୍ତୁ ଯେ ବୃକ୍ଷଛେଦନ କର୍ତ୍ତାର ପାପ କଦାପି

ନଯୋଜ୍ୟ କର୍ତ୍ତା ପରନ୍ତୁ କର୍ତ୍ତା ନିର୍ମିତାକୁ ସ୍ପର୍ଶ କରେ ନାହିଁ । ଦୈବକୁ ଅତିକ୍ରମ କରି କୌଣସି ବ୍ୟକ୍ତି କୌଣସି କର୍ମ କରିପାରେ ନାହିଁ । ଅର୍ଥାତ୍ ସମସ୍ତେ ଦୈବର ବଶବର୍ତ୍ତୀ ହୋଇ କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି । ଆଉ ଯଦି ସ୍ୱଭାବକୁ କର୍ତ୍ତା ବୋଲି ମନରେ ନିଶ୍ଚୟ କରିଥାଅ, ତାହାହେଲେ ଭୂତ କମ୍ବା ଭବିଷ୍ୟତ କୌଣସି କାଳରେ ସୁଦ୍ଧା ତୁମ୍ଭର ସହିତ ପାପର ସମ୍ବନ୍ଧ ରହିପାରେ ନାହିଁ । ୧୯ ।

ହେ ଭାରତ ! ଯଦି ଲୋକମାନଙ୍କର ଧର୍ମାଧର୍ମ ଉପୃତ୍ତି କରିବା ତୁମ୍ଭର କର୍ତ୍ତବ୍ୟ ହୁଏ, ତାହେଲେ ତାହା ଶାସ୍ତ୍ରଦ୍ୱାରା ତ ଉପୃତ୍ତି ହୁଏ ? କାରଣ ଧର୍ମ ଅଧର୍ମ ଉଭୟ ଶାସ୍ତ୍ରମୂଳକ ଅଟେ । ଅତଏବ ଶାସ୍ତ୍ରରେ ଯେତେବେଳେ ରାଜାମାନଙ୍କର ଦଣ୍ଡଧାରଣ କରିବା କର୍ତ୍ତବ୍ୟ ବୋଲି ପ୍ରତିପନ୍ନ ହୋଇଅଛି ତେତେବେଳେ ଆଉ ଅନୁତାପର କାରଣ କ'ଣ ? ଯଦି ଏପରି ମନେକର ଯେ ଶାସ୍ତ୍ରର ମତ ପ୍ରକୃତ ଏହିପରି ଏବଂ ଲୋକେ ମଧ୍ୟ ସେହି ଶାସ୍ତ୍ରଦ୍ୱାରା ଅନୁଶିଷ୍ଟ ହୁଅନ୍ତି, କିନ୍ତୁ ଶୁଭାଶୁଭ କର୍ମ ସବୁ ଜୀବ ସମ୍ବନ୍ଧରେ ଆପେ ଆସି ଉପସ୍ଥିତ ହୋଇ ସେମାନଙ୍କୁ ଫଳପ୍ରଦାନକରେ, ତାହାହେଲେ ଆମ୍ଭେ ଯାହା କରୁଅଛୁଁ ତାହା ଅବଧାରଣ କର । ହେ ରାଜ ଶାର୍ଦ୍ଦୂଳ । ପାପରୁ ଅଶୁଭ କର୍ମ କରିବାର ପ୍ରବୃତ୍ତି ହୁଏ । ଅତଏବ ତୁମ୍ଭେ ସେହି ଅସତ୍‌ଫଳାତ୍ମକ କର୍ମକୁ ପରିତ୍ୟାଗ କର । ଆଉ ବୃଥା ଅନୁତାପ କରନାହିଁ ।୨୨।

ହେ ରାଜନ୍ ! ତୁମ୍ଭେ ପ୍ରକୃତରୂପରେ ସ୍ୱଧର୍ମକୁ ପ୍ରତିପାଳନ କରିଅଛ । ଅତଏବ ଏପରି ଲୋକ ନିନ୍ଦିତ ଆତ୍ମହତ୍ୟାରେ ପ୍ରବୃତ୍ତ ହେବା ତୁମ୍ଭଙ୍କୁ ଶୋଭା ପାଉ ନାହିଁ ।୨୩।

ଇହଲୋକରେ ଅସତ୍ କାର୍ଯ୍ୟମାନଙ୍କର ପ୍ରାୟଶ୍ଚିତ୍ତ ବିହିତ ଅଛି; କିନ୍ତୁ ଜୀବିତ ଥିଲେ ସେହି ପ୍ରାୟଶ୍ଚିତ୍ତି ଅନାୟାସରେ କୃତ ହୁଏ ।୨୪।

ହେ ଯୁଧିଷ୍ଠିର ! ଦେହକୁ ରକ୍ଷାକଲେ ତୁମ୍ଭେ ଅନାୟାସରେ ପ୍ରାୟଶ୍ଚିତ୍ତ କରିପାରିବ । ଆଉ ଯଦି ପ୍ରାୟଶ୍ଚିତ୍ତ ନ କରି ଶରୀର ପରିତ୍ୟାଗ କରିବ, ତାହାହେଲେ ପରଲୋକରେ ତୁମ୍ଭଙ୍କୁ ଅତିଶୟ ଅନୁତାପିତ ହେବାକୁ ହେବ ।

---

## ଅଧ୍ୟାୟ ୩୩

ଯୁଧିଷ୍ଠିର କହିଲେ—ହେ ପିତାମହ ! ଆମ୍ଭେ ରାଜ୍ୟ ଲବ୍ଧ ହୋଇ ପୁତ୍ର, ପୌତ୍ର, ଭ୍ରାତା, ପିତୃବ୍ୟ, ପିତାମହ, ଗୁରୁ, ଶ୍ୱଶୁର, ମାତୁଳ, ଭାଗିନେୟ, ଜ୍ଞାତି, ସୁହୃତ, ସମ୍ବନ୍ଧୀ, ବୟସ୍ୟ ଓ ଅପରାପର ନାନାଦେଶ ସମାଗତ ରାଜାମାନଙ୍କର ବଧ ସାଧନ କରିଅଛୁଁ ।୩।

ଯେଉଁମାନେ ନିୟତ ଯଜ୍ଞ ଓ ଧର୍ମାନୁଷ୍ଠାନରେ ରତ ଥାନ୍ତି, ତାଦୃଶ ଧର୍ମାତ୍ମା ନରପତି ଓ ଜ୍ଞାତି ବନ୍ଧୁମାନଙ୍କୁ ନିପାତିତ କରି ଏହି ରାଜ୍ୟ ଗ୍ରହଣରେ ଆମ୍ଭର କି ସୁଖୋଦୟ ହେବ ?୪।

ସେହିସବୁ ଶ୍ରୀମାନ୍ ପାର୍ଥିବେନ୍ଦ୍ରମାନଙ୍କ ବିହୀନ ବସୁନ୍ଧରାର ଦୁରବସ୍ଥାକୁ ପୁନଃ ପୁନଃ ଚିନ୍ତା କରି ଅଦ୍ୟାପି ଆମ୍ଭର ହୃଦୟ ଅହର୍ନିଶି ଦଗ୍ଧ ହେଉଅଛି ।୫।

ବିଶେଷତଃ ଉପୂଙ୍କର ଜ୍ଞାତିବଧ ଏବଂ ଉଭୟ ପକ୍ଷୀୟ ଅସଂଖ୍ୟ ସୈନ୍ୟସଂହାର ଦର୍ଶନ କଲାବେଲଠୁ ଆମ୍ଭର ଚିତ୍ତ ଅତିଶୟ ଅନୁତପ୍ତ ହେଉଅଛି ।୬।

ଏହି କୁରୁକ୍ଷେତ୍ର ଯୁଦ୍ଧରେ ଯେଉଁମାନଙ୍କର ପତି ପୁତ୍ର କିମ୍ବା ଭ୍ରାତା ନିହତ ହୋଇ ଅଛନ୍ତି, ସେହି ସ୍ୱଜନ ବିହୀନା ବରାଙ୍ଗନାମାନଙ୍କର କି ଗତି ହେବ !୭।

ସେମାନେ କୃଶ ଓ ଘୋର ଭାବାପନ୍ନ ହୋଇ ପାଣ୍ଡବମାନେ ବୃଷ୍ଣିଗଣଙ୍କ ସହିତ ମିଳିତ ହୋଇ ଆମ୍ଭମାନଙ୍କର ସମସ୍ତଙ୍କୁ ବଧ କରି ଅଛନ୍ତି ବୋଲି କହି ଏବଂ ଆମ୍ଭମାନଙ୍କ ପ୍ରତି ଆକ୍ରୋଶ କରି ଭୂତଳରେ ପତିତ ହେବେ ।୮।

ସେହିସବୁ ସ୍ତ୍ରୀମାନେ ପିତା, ଭ୍ରାତା, ପତି ଓ ପୁତ୍ରମାନଙ୍କୁ ନ ଦେଖି ନିଶ୍ଚୟ ସ୍ନେହ ନିବନ୍ଧନ ହେତୁରୁ ଜୀବନ ବିସର୍ଜନପୂର୍ବକ ଯମାଳୟକୁ ଗମନ କରିବେ । ହେ ଦ୍ୱିଜଶ୍ରେଷ୍ଠ ! ଧର୍ମର ଯେପରି ସୂକ୍ଷ୍ମ ଗତି, ଏତଦ୍ୱାରା ଯେ ଆମ୍ଭମାନଙ୍କୁ ସ୍ତ୍ରୀବଧଜନିତ ପାପରେ ଲିପ୍ତ ହେବାକୁ ହେବ ଏଥିରେ ସନ୍ଦେହ ନାହିଁ ।୧୦।

ଆମ୍ଭେମାନେ ରାଜ୍ୟ ଲୋଭରେ ଆତ୍ମୀୟମାନଙ୍କୁ ନିହତ କରି ଅଶେଷ ପାପ ସଞ୍ଚୟ କରିଅଛୁଁ । ସୁତରାଂ ଆମ୍ଭେମାନେ ନିଶ୍ଚୟ ଅଧୋମସ୍ତକ ହୋଇ ଘୋରତର ନରକରେ ପତିତ ହେବୁଁ ।୧୧।

ଅତଏବ ହେ ଋଷିସତ୍ତମ ! ଆପଣ ଆମ୍ଭଠାରେ ଆଶ୍ରମମାନଙ୍କର ବିଶେଷ ଲକ୍ଷଣ ପ୍ରକାଶ କରି କହନ୍ତୁ । ଆମ୍ଭେମାନେ ତଦନୁସାରେ ଉଗ୍ରତର ତପସ୍ୟା କରି ଶରୀରର ପରିତ୍ୟାଗ କରିବୁଁ ।୧୨।

ବୈଶମ୍ପାୟନ କହିଲେ—ପାଣ୍ଡୁନନ୍ଦନ ଯୁଧିଷ୍ଠିରଙ୍କର ଏହିପରି ବାକ୍ୟ ଶ୍ରବଣ କରି ମହର୍ଷି କୃଷ୍ଣ ଦ୍ୱୈପାୟନ ବୁଦ୍ଧିଦ୍ୱାରା ନୈପୁଣ୍ୟ-ସହକାରେ ସମାଲୋଚନାପୂର୍ବକ ତାହାଙ୍କୁ କହିଲେ ।୧୩।

ବ୍ୟାସ କହିଲେ—ହେ ରାଜନ ! ତୁମ୍ଭେ କ୍ଷତ୍ରିୟ ଧର୍ମ ଅନୁସରଣ-ପୂର୍ବକ ହୃଦୟଶୋକକୁ ପରିତ୍ୟାଗ କର । କାରଣ ଏହିସବୁ କ୍ଷତ୍ରିୟମାନେ ସ୍ୱଧର୍ମାନୁସାରେ ଯୁଦ୍ଧରେ ପ୍ରବୃତ୍ତ ହୋଇ ନିହତ ହୋଇ ଅଛନ୍ତି ।୧୪।

ସେମାନେ ସମସ୍ତେ ଏହି ଭୂମଣ୍ଡଳ ମଧ୍ୟରେ ମହତ ଯଶ ଓ ସମଗ୍ର ସୌଭାଗ୍ୟ ପ୍ରାର୍ଥୀ ହୋଇ ଏହି ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ; କିନ୍ତୁ କାଳ ପୂର୍ଣ୍ଣ ହେବାରୁ କୃତାନ୍ତର ବଶବର୍ତ୍ତୀ ହୋଇ ନିଧନ ପ୍ରାପ୍ତ ହୋଇ ଅଛନ୍ତି ।୧୫।

ତୁମ୍ଭେ କିମ୍ବା, ଭୀମ ଅର୍ଜ୍ଜୁନ କିମ୍ବା ନକୁଳ ସହଦେବ କେହି ସୁଦ୍ଧା ସେମାନଙ୍କର ହନ୍ତାନୁହଁ (୧) ପର୍ଯ୍ୟାୟ ଧର୍ମାନୁସାରେ କାଳ ସେମାନଙ୍କର ପ୍ରାଣ ହରଣ କରିଅଛନ୍ତି ।୧୬।

ସେହି କାଳର କେହି ମାତା କିମ୍ବା ପିତା ନାହାନ୍ତି ଏବଂ କୌଣସି ବ୍ୟକ୍ତି ସୁଦ୍ଧା ତାହାଙ୍କର ଅନୁଗ୍ରହ ଭାଜନ ନୁହନ୍ତି । ଯେ ସମସ୍ତ ପ୍ରଜାମାନଙ୍କ କୃତ କର୍ମର ସାକ୍ଷୀସ୍ୱରୂପ, ସେହି କାଳ କର୍ତ୍ତୃକ ସମର ପ୍ରବୃତ୍ତିରେ କ୍ଷତ୍ରିୟମାନେ ନିହତ ହୋଇ ଅଛନ୍ତି ।୧୭।

ହେ ଭରତର୍ଷଭ ! ସେହି କାଳ ପ୍ରାଣିମାନଙ୍କଦ୍ୱାରା ଅନ୍ୟ ପ୍ରାଣିମାନଙ୍କୁ ବିନଷ୍ଟ କରନ୍ତି ! ଏହାହିଁ ତାହାଙ୍କର ବିହିତ ନିମିତ୍ତ ଏବଂ ତାହାଙ୍କର ନିତ୍ୟନୃତ୍ତ୍ୱ ମଧ୍ୟ ଏହିପରି ।୧୮।

ପୁଣ୍ୟ ପାପର ସାକ୍ଷୀସ୍ୱରୂପ କାଳକୁ କର୍ମସୂତ୍ରାତ୍ମକ ବୋଲି ଜାଣିବ ଅର୍ଥାତ୍ ଜୀବର କୃତକର୍ମ ଉତ୍ତର କାଳରେ ସୁଖ ଦୁଃଖ ରୂପରେ ପରିଣତ ହୁଏ, ଅତଏବ ଈଶ୍ୱର କର୍ମାନୁସାରେ ଫଳପ୍ରଦାନ ପୂର୍ବକ ନୈର୍ଘୃଣ୍ୟ ଓ ବୈଷମ୍ୟ ଦୋଷରେ ଲିପ୍ତ ହୁଅନ୍ତି ନାହିଁ ।୧୯।

ହେ ମହାବାହୋ ! ସେହି ସବୁ କ୍ଷତ୍ରିୟମାନେ ଯେଉଁ କର୍ମଦ୍ୱାରା ଯୁଦ୍ଧରେ ନିହତ ହୋଇ ଅଛନ୍ତି, ସେମାନଙ୍କର ସେହି ବିନାଶର ହେତୁ

ଭୂତକର୍ମ ସବୁକୁ ବିବେଚନା କର ଏବଂ ତୁମ୍ଭର ଆତ୍ମକୃତ ବ୍ରତ ଓ ତପସ୍ୟାଦି କର୍ମର ବିଷୟକୁ ମଧ୍ୟ ବିବେଚନା କର । କିନ୍ତୁ କ ତୁମ୍ଭେ ଶାନ୍ତ ହେଲେ ସୁଦ୍ଧା କର୍ମପ୍ରଭାବଦ୍ୱାରା ଦୈବ ତୁମ୍ଭଙ୍କୁ ଏହି ଧ୍ୱଂସାତ୍ମକ ଯୁଦ୍ଧରେ ପ୍ରବର୍ତ୍ତିତ କଲେ, ଅତଏବ ଭ୍ରଷ୍ଟା ନିର୍ମିତ ଯନ୍ତ୍ରପ୍ରାୟ ଏହି ଜଗତ ସେହି ସର୍ବ ନିୟନ୍ତା ଈଶ୍ୱରଙ୍କର ବଶରେ ଥାଇ କାଳପ୍ରେରିତ କର୍ମଦ୍ୱାରା ଚେଷ୍ଟାମାନ ହେଉଅଛି ।୨୨।

ଏହି ଭୂମଣ୍ଡଳରେ ପ୍ରତ୍ୟେକ ପ୍ରାଣିଙ୍କର ଯଦୃଚ୍ଛାବଶତଃ ଅହେତୁକ ବିନାଶ ଓ ଉତ୍ପତ୍ତି ବିଷୟକୁ ବିଚାର କରି ଦେଖିଲେ ଶୋକ କିମ୍ବା ହର୍ଷ କରିବା ନିରର୍ଥକ ହେଉଅଛି ।୨୩।

ହେ ରାଜନ୍ ! ତୁମ୍ଭେ ଆଉ ବୃଥା ଚିତ୍ତକ୍ଷୋଭ କରନାହିଁ । ବରଂ ତାହାର ନିବାରଣାର୍ଥ ଯେଉଁସବୁ ପ୍ରାୟଶ୍ଚିତ୍ତ ବିହିତ ଅଛି, ତାହାର ଅନୁଷ୍ଠାନ କର ।୨୪।

ପୂର୍ବେ ଦେବାସୁର ଯୁଦ୍ଧ ବିଷୟରେ ଏହିପରି ଶୁଣାଯାଏ ଯେ ଅସୁରମାନେ ଜ୍ୟେଷ୍ଠ ଥିଲେ ଏବଂ ଦେବଗଣ କନିଷ୍ଠ ଥିଲେ ।୨୫।

ରାଜଲକ୍ଷ୍ମୀ ନିମିତ୍ତ ସେମାନଙ୍କର ଘୋରତର ଭ୍ରାତୃବିବାଦ ଉପସ୍ଥିତ ହୋଇଥିଲା । ସେମାନଙ୍କ ମଧ୍ୟରେ ଦ୍ୱାତ୍ରିଂଶତ ବର୍ଷ ବ୍ୟାପି ଭୟଙ୍କର ସଂଗ୍ରାମ ଲାଗିଥିଲା । ପୃଥିବୀ ଏକାର୍ଣ୍ଣବ ପ୍ରାୟ ଶୋଣିତ ପରିପ୍ଳୁତା ହୋଇଥିଲେ । ତତ୍ପରେ ଦେବଗଣ ଦୈତ୍ୟମାନଙ୍କୁ ପରାଜିତ ଓ ନିହତ କରି ସ୍ୱର୍ଗରାଜ୍ୟକୁ ଲାଭ କଲେ ।୨୬।

ଏମନ୍ତ ସମୟରେ କେତେଗୁଡ଼ିଏ ବେଦ ପାରଗ ବ୍ରାହ୍ମଣ ପୃଥିବୀ ଲାଭକରି ଦର୍ପରେ ମୋହିତ ହୋଇ ଦୈତ୍ୟବର୍ଗଙ୍କ ସାହାଯ୍ୟାର୍ଥେ ବଦ୍ଧ ସନ୍ୟାସ ହେଲେ ।୨୮।

ହେ ଭାରତ ! ଅଷ୍ଟାଶୀତି ସହସ୍ର ସଂଖ୍ୟକ ସେହି ଦୁରାତ୍ମାମାନେ ଜଗତରେ ଶାଳାବୃକ ନାମରେ ଖ୍ୟାତ ଥିଲେ । ସୁତରାଂ ସେହି ମୂଢ଼ତା ଦୋଷରେ ସେମାନେ ଦେବଗଣଙ୍କ କର୍ତ୍ତୃକ ନିହତ ହେଲେ । ଭୂମଣ୍ଡଳରେ ଯେଉଁମାନେ ଧର୍ମର ଉଚ୍ଛେଦ କରି ଅଧର୍ମର ପ୍ରବର୍ତ୍ତକ ହୁଅନ୍ତି ସେହି ଉଦ୍ଧତ ସ୍ୱଭାବ ଦୁରାତ୍ମାମାନଙ୍କୁ ଦେବତାମାନେ ଦୈତ୍ୟଗଣଙ୍କୁ ବିନଷ୍ଟ କଲପ୍ରାୟ, ବିନଷ୍ଟ କରିବା କର୍ତ୍ତବ୍ୟ ।୩୦।

---

ପର୍ଯ୍ୟାୟ ଧର୍ମାନୁସାରେ—ମରଣ ବଧ ଅନୁସାରେ ।

ଯଦି ଗୋଟିଏ ବ୍ୟକ୍ତିଙ୍କୁ ବିନାଶ କଲେ କୁଳର ଅବଶିଷ୍ଟ ବ୍ୟକ୍ତିମାନଙ୍କର ଆପଦ ଦୂରୀଭୂତ ହୁଏ, ତେବେ ତାହା ଅବଶ୍ୟ କର୍ତ୍ତବ୍ୟ; ଅଥବା ଗୋଟିଏ କୁଳକୁ ଉଚ୍ଛନ୍ନ କଲେ ଯଦି ରାଷ୍ଟ୍ରସ୍ଥ ସମସ୍ତ ପ୍ରାଣିଙ୍କର ଅନାମୟ ହୁଏ, ତେବେ ତାହା ମଧ୍ୟ କର୍ତ୍ତବ୍ୟ, ତଦ୍ଦ୍ୱାରା କଦାଚ ଧର୍ମ ନଷ୍ଟ ହୁଏନାହିଁ । ୩୧ ।

ହେ ରାଜନ୍ ! ଏବଂବିଧ କୌଣସି କୌଣସି ଅଧର୍ମ ଅଛି ଯାହାକି ଧର୍ମ ରୂପରେ ପରିଗଣିତ ହୁଏ । ପୁନଶ୍ଚ କୌଣସି ଧର୍ମ ମଧ୍ୟ ଅଧର୍ମ ରୂପରେ ପରିଗଣିତ ହୋଇଥାଏ । ପଣ୍ଡିତମାନେ ଏ ବିଷୟକୁ ଜାଣନ୍ତି ।୩୨।

ହେ ଭାରତ ! ତୁମ୍ଭେ ସମସ୍ତ ଶାସ୍ତ୍ରକୁ ଅବଗତ ଅଛ ଏବଂ ଦେବଗଣଙ୍କଦ୍ୱାରା ଆଚରିତ ପୁରାତନ ପଥର ଅନୁଗାମୀ ହୋଇଅଛ । ତୁମ୍ଭ ପ୍ରାପ୍ତ ଧର୍ମଠାରୁ ବ୍ୟକ୍ତିମାନେ କଦାଚ ନରକକୁ ଗମନ କରନ୍ତି ନାହିଁ । ଅତଏବ ତୁମ୍ଭେ ବର୍ତ୍ତମାନ ତୁମ୍ଭର ସୁହୃଦଗଣଙ୍କୁ ଆଶ୍ୱାସିତ କର ।୩୪।

ଯେଉଁ ବ୍ୟକ୍ତି ମନରେ ଇଚ୍ଛା କରି ପାପାନୁଷ୍ଠାନ କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି ଏବଂ ପାପ କାର୍ଯ୍ୟ କରି ସୁଦ୍ଧା କିଞ୍ଚିତ୍ ମାତ୍ର ପଶ୍ଚାତ୍ତାପିତ ହୁଅନ୍ତି ନାହିଁ ସେହି ବ୍ୟକ୍ତି କେବଳ ସମ୍ପୂର୍ଣ୍ଣ ପାପଭାଗୀ ବୋଲି ଶ୍ରୁତିରେ କଥିତ ହୋଇଅଛି । ଅତଏବ ଈଦୃଶ ପାପାସକ୍ତ ବ୍ୟକ୍ତିଙ୍କ ପାପର ପ୍ରାୟଶ୍ଚିତ୍ତ ବିଧି ନାହିଁ । ସୁତରାଂ ତାହାଙ୍କର ସେହି ପାପର ହ୍ରାସ ହୁଏନାହିଁ ।୩୨।

କିନ୍ତୁ ତୁମ୍ଭେ ସୁମହତ ଆଭିଜାତ୍ୟ ସମ୍ପନ୍ନ ଅଟ ଏବଂ ପାପାନୁଷ୍ଠାନ କରିବ ବୋଲି ଇଚ୍ଛା ମଧ୍ୟ କରି ନାହିଁ । କେବଳ ଦୁର୍ଯ୍ୟୋଧନାଦିଙ୍କର ଅନିଷ୍ଟାଚରଣ ତୁମ୍ଭଙ୍କୁ ଏହି ଯୁଦ୍ଧକାର୍ଯ୍ୟରେ ପ୍ରବର୍ତ୍ତିତ କରିଥିଲା ଏବଂ ତୁମ୍ଭେ ଏହି କାର୍ଯ୍ୟ କରି ଅନୁତାପ ମଧ୍ୟ କରୁଅଛ, ଅତଏବ ତୁମ୍ଭର ପ୍ରାୟଶ୍ଚିତ୍ତର ଅଧିକାର ଅଛି । ହେ ମହାରାଜ ! ଅଶ୍ୱମେଧନାମକ ମହାଯଜ୍ଞର ଅନୁଷ୍ଠାନ କରିବା ହିଁ ଏହାର ପ୍ରାୟଶ୍ଚିତ୍ତ ବୋଲି କଥିତ ଅଛି । ଅତଏବ ତୁମ୍ଭେ ତାହାର ଅନୁଷ୍ଠାନ କର । ତାହାହେଲେ ନିଷ୍ପାପ ହେବ ।୩୬।

ଭଗବାନ ପାକଶାସନ ଦେବଗଣଙ୍କ ସହିତ ଏକତ୍ର ହୋଇ ବାରମ୍ବାର ଦୈତ୍ୟମାନଙ୍କୁ ବିନଷ୍ଟ କରିଥିଲେ, ତତ୍ପରେ ଗୋଟିଏ ଗୋଟିଏ

କର କ୍ରମଶଃ ଏକଶତ ଅଶ୍ୱମେଧ ଯଜ୍ଞ ଆହରଣ ପୂର୍ବକ ଶତକ୍ରତୁ ନାମକୁ ଧାରଣ କରିଅଛନ୍ତି ଏବଂ ବିଧୂତ ପାପ ହୋଇ ସ୍ୱର୍ଗ ଲୋକକୁ ଜୟ କରିଅଛନ୍ତି । ଅପିଚ ପରମ ସୁଖ ଲାଭକରି ସ୍ୱୀୟ ପ୍ରଭାବଦ୍ୱାରା ବାକ୍ ସମସ୍ତଙ୍କୁ ପ୍ରଶତ୍ରାସିତପୂର୍ବକ ମରୁଦ୍‌ଗଣଙ୍କ ସହିତ ସ୍ୱର୍ଗ ରାଜ୍ୟରେ ଶୋଭା ପାଉଅଛନ୍ତି ।୪୦।

ଦେଖ ବିବୁଧେଶ୍ୱର ଶଚୀପତି ଅପ୍‌ସରାବର୍ଗଙ୍କ ସହିତ ମହାସମ୍ଭ୍ରମ ହୋଇ ଜପରେ ସ୍ୱର୍ଗ ରାଜ୍ୟରେ ବିରାଜିତ ହୋଇଅଛନ୍ତି ଦେବତା ଓ ଋଷିମାନେ ସମସ୍ତେ ତାହାଙ୍କର ଉପାସନା କରୁଅଛନ୍ତି ।୪୧।

ବର୍ତ୍ତମାନ ତୁମ୍ଭେ ମଧ୍ୟ ସମସ୍ତ ମହୀପାଳମାନଙ୍କୁ ସ୍ୱୀୟ ବିକ୍ରମ-ଦ୍ୱାରା ପରାଜିତ କରିଅଛ ଏବଂ ସମଗ୍ରା ବସୁନ୍ଧରା ମଧ୍ୟ ତୁମ୍ଭର ଅଧିକୃତ ହୋଇଅଛି । ଅତଏବ ତୁମ୍ଭେ ସୁହୃଦଗଣଙ୍କଦ୍ୱାରା ପରିବୃତ ହୋଇ ସେହିସବୁ ରଣ ନିହତ ନରପତିମାନଙ୍କର ରାଷ୍ଟ୍ର ଓ ଘରମଧ୍ୟକୁ ଗମନ କର ଏବଂ ସେମାନଙ୍କର ପୁତ୍ର କନ୍ୟା ପୌତ୍ର କନ୍ୟା ଭ୍ରାତା ଯେ କେହି ବର୍ତ୍ତମାନ ଥାନ୍ତି ସେମାନଙ୍କୁ ସ୍ୱ ସ୍ୱ ପୈତୃକ ରାଜ୍ୟରେ ଅଭିଷିକ୍ତ କର । ୪୩ ।

ଯଦି ସେମାନଙ୍କ ମଧ୍ୟରେ କେହି ବାଳକ ଥାନ୍ତି ତଥାପି ସଦାଚାର ଓ ସାନ୍ତ୍ୱନା ବାକ୍ୟଦ୍ୱାରା ସେମାନଙ୍କୁ ରାଜ୍ୟାଭିଷିକ୍ତ କରି ସମସ୍ତ ପ୍ରଜାରଞ୍ଜନପୂର୍ବକ ପୃଥିବୀ ପାଳନ କର । ୪୪ ।

ଯେଉଁ ରାଜ୍ୟରେ ରାଜକୁମାର ନାହାନ୍ତି ସେଠାରେ ସେମାନଙ୍କର କନ୍ୟା ଥିଲେ ସେମାନଙ୍କୁ ଅଭିଷିକ୍ତ କରିବ । ଯେହେତୁ ସ୍ତ୍ରୀ ଲୋକ ପୂର୍ଣ୍ଣ କାମ ହେଲେ ପୁନର୍ବାର ସେମାନଙ୍କର ବଂଶ ବୃଦ୍ଧି ହୋଇ ପାରିବ । ଏହିପରି କାର୍ଯ୍ୟ କଲେ ତୁମ୍ଭର ଶୋକ ଦୂରୀଭୂତ ହେବ । ୪୫ ।

ହେ ମହାରାଜ ! ତୁମ୍ଭେ ଏହିପରି ରାଷ୍ଟ୍ରସମୂହକୁ ଆଶ୍ୱାସିତ କରି ଅସୁରପୁର ବିଜୟୀ ଇନ୍ଦ୍ରଙ୍କ ପ୍ରାୟ ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ କର ।୪୬।

କୁରୁକ୍ଷେତ୍ର ଯୁଦ୍ଧରେ ଯେଉଁସବୁ ମହାତ୍ମା କ୍ଷତ୍ରିୟମାନେ ନିହତ ହୋଇ ଅଛନ୍ତି, ସେମାନଙ୍କ ନିମିତ୍ତ ଶୋକ କରିବା କର୍ତ୍ତବ୍ୟ ନୁହେଁ । କାରଣ ସେମାନେ ସମସ୍ତେ କାଳବଳରେ ମୋହିତ ହୋଇ କ୍ଷତ୍ରିୟ ଧର୍ମ

ଅନୁଷ୍ଠାନପୂର୍ବକ ବିନାଶ ପ୍ରାପ୍ତ ହୋଇଅଛନ୍ତି । ସମ୍ପ୍ରତି କ୍ଷତ୍ରିୟମାନଙ୍କର ପ୍ରକୃତ ଧର୍ମ୍ମ ଓ ନିଷ୍କଣ୍ଟକ ରାଜ୍ୟ ଏହି ଉଭୟକୁ ତୁମ୍ଭେ ଲାଭ କରିଅଛ । ଅତଏବ ସ୍ୱକୀୟ ଧର୍ମ୍ମାନୁସାରେ ରାଜ୍ୟପାଳନ କର । ତାହା ହେଲେ ପରଲୋକରେ ଶ୍ରେୟ ହେବ ।୪୮।

---

## ଅଧ୍ୟାୟ—୩୪

ଯୁଧିଷ୍ଠିର କହିଲେ—ହେ ପିତାମହ ! ମନୁଷ୍ୟମାନେ କି କି କାର୍ଯ୍ୟ କରି ପ୍ରାୟଶ୍ଚିତ୍ତାର୍ହ ହୁଅନ୍ତି ଏବଂ କି କି କାର୍ଯ୍ୟ କରି ଅବା ସେମାନେ ସେହିସବୁ ପାପରୁ ମୁକ୍ତିଲାଭ କରିପାରନ୍ତି, ତାହା ଆପଣ ଆମ୍ଭଠାରେ କୁହନ୍ତୁ ।

ବ୍ୟାସ କହିଲେ—ଯେଉଁ ବ୍ୟକ୍ତିମାନେ ପ୍ରତିଷିଦ୍ଧ କର୍ମ୍ମର ଅଚରଣକାରୀ ବିହିତ କର୍ମ୍ମର ଅନନୁଷ୍ଠାୟୀ ଏବଂ ମିଥ୍ୟା କାର୍ଯ୍ୟର ଅନୁବର୍ତ୍ତୀ ଅଟନ୍ତି, ସେମାନେ ସମସ୍ତେ ପ୍ରାୟଶ୍ଚିତ୍ତାର୍ହ ଅଟନ୍ତି । ୨ ।

ବ୍ରହ୍ମଚାରୀ ଯଦି ସୂର୍ଯ୍ୟୋଦୟ କିମ୍ବା ସୂର୍ଯ୍ୟାସ୍ତ ସମୟରେ ଶୟାନ ଥାନ୍ତି, ତାହାହେଲେ ତାହାକୁ ମଧ୍ୟ ପାପଗ୍ରସ୍ତ ହେବାକୁ ହୁଏ । କୁନଖୀ, ଅର୍ଥାତ୍ ପୂର୍ବଜନ୍ମରେ ଯେଉଁମାନେ ସୁବର୍ଣ୍ଣ ହରଣ କରିଥାନ୍ତି, ସେମାନଙ୍କର ନଖସବୁ ଜନ୍ମାନ୍ତରରେ ଦୂଷିତ ହୁଏ । ସେହିମାନେ ଇହଲୋକରେ କୁନଖୀ ବୋଲି ପ୍ରସିଦ୍ଧ ଅଟନ୍ତି । ଶ୍ୟାବଦନ୍ତୀ ଅର୍ଥାତ୍ ପୂର୍ବ ଜନ୍ମରେ ସୁରାପାୟୀ ବ୍ୟକ୍ତିଙ୍କର ଦାନ୍ତସବୁ ଜନ୍ମାନ୍ତରରେ କୃଷ୍ଣବର୍ଣ୍ଣ ହୁଏ । ଯେଉଁ ବ୍ୟକ୍ତିଙ୍କର କନିଷ୍ଠ ସହୋଦର ଅଗ୍ରେ ବିବାହ କରେ ତାହାଙ୍କ ଜ୍ୟେଷ୍ଠଙ୍କୁ ପରିବିତ୍ତି ବୋଲାଯାଏ । ଯେଉଁ ବ୍ୟକ୍ତି ଜ୍ୟେଷ୍ଠଭ୍ରାତାଙ୍କ ପୂର୍ବରୁ ସ୍ୱୟଂ ଅଗ୍ରେ ବିବାହ କରେ, ତାହାଙ୍କୁ ପରିବେତ୍ତା ବୋଲାଯାଏ । ଜ୍ୟେଷ୍ଠା ଭଗିନୀ ଥାଉଁ ଥାଉଁ ଅଗ୍ରେ କନିଷ୍ଠାର ବିବାହ ହେଲେ ସେହି କନିଷ୍ଠାର ପତିଙ୍କ ନାମ ଦଧିଷୂପତି ଅଟେ । କନିଷ୍ଠାର ଅଗେ ବିବାହ ହେଲେ ତାହାର ଜ୍ୟେଷ୍ଠାକୁ ଯେ ବିବାହ କରେ ସେହି ବ୍ୟକ୍ତି ଦଧିଷୂପତି ବୋଲି ଆଖ୍ୟାତ ହୁଅନ୍ତି । ଅବକୀର୍ଣ୍ଣ ଅର୍ଥାତ୍ ବ୍ରତଭ୍ରଷ୍ଟ, ବ୍ରହ୍ମଘାତି, ପରନିନ୍ଦକ, ଦ୍ୱିଜାତିମାନଙ୍କର ବଧକାରୀ, ସତ୍ପାତ୍ରରେ ବେଦ ଅସମର୍ପଣକାରୀ, ଗ୍ରାମଘାତି, ମାଂସବିକ୍ରୟୀ

ଅଗ୍ନିତ୍ୟାଗୀ ବ୍ରାହ୍ମଣ, ବେତନଭୋଗୀ ଅଧ୍ୟାପକ, ଗୁରୁ ପତ୍ନୀଘାତକ, ପୁରୁଷାନୁକ୍ରମରେ ନାସ୍ତିକବଂଶ ସମ୍ଭୂତ ପୁରୁଷ, ଯଜ୍ଞସ୍ଥଳ ବ୍ୟତୀତ ବୃଥା, ପଶୁଘାତୀ, ଗୃହଦଗ୍ଧକାରୀ, ପ୍ରତାରଣାଦ୍ୱାରା ଜୀବିକା ନିର୍ବାହକାରକ ଗୁରୁଜନଙ୍କ ବିରୁଦ୍ଧାଚରଣ ଏବଂ ମର୍ଯ୍ୟାଦୋଲ୍ଲଙ୍ଘନକାରୀ, ଏହି ସମସ୍ତ ପାପଗ୍ରସ୍ତ ବ୍ୟକ୍ତିମାନେ ପ୍ରାୟଶ୍ଚିତ୍ତର ଅଧିକାରୀ ଅଟନ୍ତି । ୮ ।

ହେ କୁନ୍ତୀ ନନ୍ଦନ ! ବର୍ତ୍ତମାନ ଅକାର୍ଯ୍ୟ, ଅର୍ଥାତ୍ ଲୌକିକ ଏବଂ ବେଦ ବିରୁଦ୍ଧ କାର୍ଯ୍ୟସବୁ ତୁମ୍ଭଠାରେ ବର୍ଣ୍ଣନା କରୁଅଛୁଁ । ତୁମ୍ଭେ ଏକାଗ୍ରଚିତ୍ତ ହୋଇ ଶ୍ରବଣ କର । ୯ ।

ସ୍ୱଧର୍ମର ପରିତ୍ୟାଗ, ଅନ୍ୟ ଧର୍ମର ଅନୁଷ୍ଠାନ, ଅଯାଜ୍ୟ ଯାଜନ, ଅଭକ୍ଷ୍ୟ ଭକ୍ଷଣ, ଶରଣାଗତ ବ୍ୟକ୍ତିର ପରିତ୍ୟାଗ, ଭୃତ୍ୟବର୍ଗଙ୍କର ଭରଣ-ପୋଷଣ ନ କରିବା, ରସ ଅର୍ଥାତ୍ ଲବଣ ଓ ଗୁଡ଼ ପ୍ରଭୃତି ବିକ୍ରୟ କରିବା, ପକ୍ଷୀପ୍ରଭୃତିଙ୍କର ବିନାଶ, ସାମର୍ଥ୍ୟ ଥାଇଁ ଥାଇଁ ସ୍ତ୍ରୀ ଗର୍ଭରେ ବୀର୍ଯ୍ୟକ୍ଷେପଣ ନ କରିବା, ନିତ୍ୟଦେୟ ଗୋଗ୍ରାସାଦି ନ ଦେବା, ପ୍ରତିଶ୍ରୁତି ଦକ୍ଷିଣାକୁ ନ ଦେବା, ବ୍ରାହ୍ମଣ ପ୍ରତି ଅତ୍ୟାଚାର କରିବା, ଏହିସବୁ କାର୍ଯ୍ୟମାନଙ୍କୁ ଧର୍ମଜ୍ଞ ବ୍ୟକ୍ତିମାନେ ଅକାର୍ଯ୍ୟ ବୋଲି ନିର୍ଦ୍ଦେଶ କରି ଅଛନ୍ତି । ୧୩ ।

ଯେଉଁ ପୁତ୍ର ପିତାଙ୍କ ସହିତ ବିବାଦ କରେ ଯେ ଗୁରୁତଳ୍ପଗାମୀ ଏବଂ ଯେଉଁ ବ୍ୟକ୍ତି ପ୍ରକୃତ କାଳରେ ସ୍ୱକୀୟ ପତ୍ନୀଙ୍କଠାରେ ସନ୍ତାନୋତ୍ପାଦନ ନ କରନ୍ତି ସେମାନେ ସମସ୍ତେ ପ୍ରାୟଶ୍ଚିତ୍ତାର୍ହ ଅଟନ୍ତି । ହେ ନର ବ୍ୟାଘ୍ର ! ଯେଉଁ କର୍ମ କଲେ କିମ୍ବା ନ କଲେ ମନୁଷ୍ୟକୁ ପ୍ରାୟଶ୍ଚିତ୍ତ କରିବାକୁ ହୁଏ, ତାହା ଆମ୍ଭେ ତୁମ୍ଭଠାରେ ସଂକ୍ଷେପରେ ଏବଂ ବିସ୍ତାର-ପୂର୍ବକ ବର୍ଣ୍ଣନ କଲୁଁ । ବର୍ତ୍ତମାନ ପାପକର୍ମ କରି ମଧ୍ୟ ଯେଉଁ ଯେଉଁ କାରଣରୁ ପାପୀ ହେବାକୁ ହୁଏନାହିଁ ତାହା କହୁଅଛୁ ଶ୍ରବଣ କର । ୧୬ ।

ବେଦପାରଗ ବ୍ରାହ୍ମଣ ଯଦି ଶସ୍ତ୍ର ଗ୍ରହଣପୂର୍ବକ ଯୁଦ୍ଧକୁ ଆଗମନ କରନ୍ତି, ତାହାହେଲେ ସେହି ଜିଘାଂସୁ ବ୍ୟକ୍ତିଙ୍କ ପ୍ରତି ଜିଘାଂସାଚରଣ କଲେ ତଦ୍ଦ୍ୱାରା ବ୍ରହ୍ମହତ୍ୟାଜନିତ ପାପ ସଂସ୍ପର୍ଶ କରେ ନାହିଁ । ୧୭ ।

ହେ କୌନ୍ତେୟ ! ଆମ୍ଭେ ଯେପରି ବ୍ୟବସ୍ଥାରେ କଥା କହିଲୁଁ ବେଦରେ ମଧ୍ୟ ଏତଦ୍‌ବିଷୟରେ ପ୍ରମାଣ ଅଛି । ଯାହା ବେଦ ପ୍ରମାଣସମ୍ମତ ଏବଂ ବିହିତ ଧର୍ମ ବୋଲି କଥିତ ଅଛି ତାହା ତୁମ୍ଭଙ୍କୁ କହୁଅଛୁ । ୧୮ ।

ସ୍ୱକୀୟ ବୃତ୍ତିରୁ ବଞ୍ଚିତ ହୋଇଥିବା ଆତତାୟୀ ବ୍ରାହ୍ମଣଙ୍କୁ ବିନଷ୍ଟ କଲେ ହନ୍ତାଙ୍କୁ ବ୍ରହ୍ମହତ୍ୟା ପାପରେ ଲିପ୍ତ ହେବାକୁ ହୁଏନାହିଁ । କାରଣ ଆତତାୟୀର କ୍ରୋଧ ପ୍ରତି ଜିଘାଂସୁର କ୍ରୋଧୋଦ୍ରେକର ମୂଳ କାରଣ ଅଟେ । ୧୯ ।

ଅଜ୍ଞାନ ହେତୁରୁ କିମ୍ବା ଦୁଃସାଧ୍ୟ ବ୍ୟାଧିଦ୍ୱାରା ଜୀବନ ନଷ୍ଟ ହୁଏ, ଏମନ୍ତ ସମୟରେ ଧର୍ମପରାୟଣ ଜ୍ଞାନୀ ବୈଦ୍ୟଙ୍କର ଉପଦେଶାନୁସାରେ ସୁରାପାନ କଲେ ସୁଧା ତଜ୍ଜନିତ ପାପଦ୍ୱାରା କେବଳ ମୁକ୍ତ ହୁଏ । ୨୦ ।

ଅଭକ୍ଷ୍ୟ ଭକ୍ଷଣାଦିଜନିତ ଯେଉଁ ପାପ, ତଦ୍‌ବିଷୟରେ ଯାହା କହିଲୁ ମନୁଷ୍ୟ ବିହିତ ପ୍ରାୟଶ୍ଚିତ୍ତଦ୍ୱାରା ସେହି ପାପରୁ ମୁକ୍ତ ହୁଏ । ୨୧ ।

ଗୁରୁଙ୍କର ଆଦେଶାନୁସାରେ ଗୁରୁପତ୍ନୀ ସଙ୍ଗମ କଲେ ମନୁଷ୍ୟ ପାପସ୍ପୃଷ୍ଟ ହୁଏନାହିଁ । ତାହାର ପ୍ରମାଣ ଏହି ଯେ ଉଦ୍ଦାଲକ ଋଷି ଶିଷ୍ୟଦ୍ୱାରା ନିଜର ପତ୍ନୀଙ୍କଠାରୁ ଶ୍ୱେତକେତୁ ନାମକ ପୁତ୍ର ଉତ୍ପାଦନ କରାଇଥିଲେ । ୨୨ ।

ଆପତ୍କାଳ ଉପସ୍ଥିତ ହେଲେ ଗୁରୁଙ୍କ ସକାଶେ ଚୌର୍ଯ୍ୟ କାର୍ଯ୍ୟରେ ପ୍ରବୃତ୍ତ ହେବା ମଧ୍ୟ ନିଷିଦ୍ଧ ନୁହେଁ । ପରନ୍ତୁ ଏହି ଶିଷ୍ୟ ଯଦି ଗୁରୁଙ୍କର ହିତସାଧନ ବ୍ୟତୀତ ସ୍ୱୟଂ କିଛିହିର ଅଭିଳାଷୀ ନ ହୋଇ ଉକ୍ତ କାର୍ଯ୍ୟରେ ପ୍ରବୃତ୍ତ ହୁଏ, ସେହି ଅପହୃତ ବିତ୍ତ ଯଦି ବ୍ରହ୍ମସ୍ୱ ନ ହୁଏ ଏବଂ ଅପହର୍ତ୍ତା ସ୍ୱୟଂ ଯଦି ତାହା ବିଭାଗ ନ କରେ, ତା' ହେଲେ ପାପରେ ଲିପ୍ତ ହେବାକୁ ହେବନାହିଁ । ୨୩ ।

ଅନ୍ୟର କିମ୍ବା ନିଜର ପ୍ରାଣ ରକ୍ଷାର୍ଥେ, ଗୁରୁନିମିତ୍ତ, ରତି ସମୟରେ ସ୍ତ୍ରୀଠାରେ ଏବଂ ବିବାହ କାଳରେ ମିଥ୍ୟାକଥା ବ୍ୟବହାର କଲେ ପାପ ହୁଏନାହିଁ । ୨୪ ।

ବ୍ରହ୍ମଚାରୀଙ୍କର ସ୍ୱପ୍ନରେ ରେତ ସ୍ଖଳନ ହେଲେ ତାହାଙ୍କୁ ପୁନର୍ବାର ଉପନୟନ କରିବା ବିହିତ ନୁହେଁ । ତାହାଙ୍କର ଶୋଧନନିମିତ୍ତ ପ୍ରଜ୍ୱଳିତ ହୁତାଶନରେ ଆଜ୍ୟ ହୋମର ବିଧି ଅଛି । ୨୫ ।

ଜ୍ୟେଷ୍ଠ ଭ୍ରାତା ଯଦି ବିବାହ ପୂର୍ବରୁ ପତିତ କିମ୍ବା ପରିବ୍ରଜ୍ୟାଶ୍ରମକୁ ଗ୍ରହଣ କରେ, ତାହାହେଲେ ତାହାଙ୍କର କନିଷ୍ଠଭ୍ରାତା ଦାର ପରିଗ୍ରହ କରିପାରେ, ତଦ୍ୱାରା ପରିବିତ୍ତି ଦୋଷ ଘଟେ ନାହିଁ । ପରସ୍ତ୍ରୀ ଯଦି କାମାର୍ତ୍ତା

ହୋଇ ସ୍ୱୟଂ ଆସି ରକ୍ଷା ଯାଚଜ୍ଞା କରେ, ତାହାହେଲେ ତାହା ସହିତ ସଙ୍ଗମ କଲେ, ଧର୍ମ୍ମ ହାନ ହୁଏ ନାହିଁ । ୨୭ ।

ଯଜ୍ଞୋପଲକ୍ଷ ବ୍ୟତୀତ ବୃଥା ପଶୁବଧ କରିବା କର୍ତ୍ତବ୍ୟ ନୁହେଁ । ଅନ୍ୟ ଲୋକଦ୍ୱାରା ଏ କାର୍ଯ୍ୟକୁ କରାଇବା ମଧ୍ୟ ଉଚିତ ନୁହେଁ । ପରନ୍ତୁ ଯଜ୍ଞ ସ୍ଥଳରେ ମନ୍ତ୍ରପୂତକରି ଯେଉଁ ପଶୁ ହନନ ହୁଏ, ତାହା ପଶୁମାନଙ୍କ ପ୍ରତି ଅନୁଗ୍ରହ ପ୍ରକାଶିତ ହୋଇଅଛି ବୋଲି ବେଦରେ କଥିତ ଅଛି । ତୀର୍ଥ ସ୍ଥଳରେ ଯଦି କୌଣସି ବ୍ୟକ୍ତି ଅଜ୍ଞାନ ପ୍ରଯୁକ୍ତ ପ୍ରତିଦାନ ଉପଯୁକ୍ତ ପାତ୍ରରେ ଦାନ ନ କରି ଅଯୋଗ୍ୟ ବ୍ରାହ୍ମଣକୁ ଦାନ କରନ୍ତି, ତଦ୍ଦ୍ୱାରା ତାହାଙ୍କର ଧର୍ମ୍ମଲୋପ ହୁଏ ନାହିଁ । ୨୯ ।

ଯଦି ସ୍ତ୍ରୀ ଦୁଶ୍ଚାରିଣୀ ହୁଏ, ତାହାହେଲେ ତାହା ସହିତ ରତି ଭୋଜନାଦି କିମ୍ବା ପରିତ୍ୟାଗ କରି ତାହାକୁ ଧିକ୍କାରପୂର୍ବକ ପୃଥକ୍ ସ୍ଥାନରେ ରକ୍ଷା କଲେ ସ୍ତ୍ରୀ ପୁରୁଷ ଦୁହେଁ ନିର୍ଦ୍ଦୋଷ ହୁଅନ୍ତି । ୩୦ ।

ସୋମରସଦ୍ୱାରା ଦେବତାମାନେ ପରିତୃପ୍ତ ହୋଇ ମନୁଷ୍ୟମାନଙ୍କର ଅଭିଳାଷାନୁଯାୟୀ ବୃଷ୍ଟି ପ୍ରଦାନ କରନ୍ତି । ଅତଏବ ସୋମରସ ଦୁଇଲୋକର ଉପକାରକ । ସୋମରସର ଏହିପରି ତତ୍ତ୍ୱକୁ ଯେଉଁ ବ୍ୟକ୍ତି ଅବଗତ ଅଛନ୍ତି, ସେ ସୋମରସ ବିକ୍ରୟ କଲେ ପାପୀ ହୁଅନ୍ତି ନାହିଁ । କାର୍ଯ୍ୟରେ ଅସମର୍ଥ ଭୃତ୍ୟକୁ ପରିତ୍ୟାଗ କଲେ ପ୍ରଭୁଙ୍କର ଦୋଷ ହୁଏ ନାହିଁ । ଗୋରୁମାନଙ୍କର ରକ୍ଷାର୍ଥ ସମସ୍ତ ବନକୁ ଦଗ୍ଧକଲେ ଦୋଷ ହୁଏ ନାହିଁ । ୩୧ ।

ହେ ଭାରତ ! ଆମ୍ଭେ ଯେଉଁସବୁ କର୍ମ୍ମକଥା କହିଲୁ ତାହା ଉପର୍ଯ୍ୟୁକ୍ତ କାରଣବଶତଃ ଆଚରିତ ହେଲେ ତତ୍ତତ୍ କର୍ତ୍ତାମାନଙ୍କୁ ପାପୀ ହେବାକୁ ହୁଏ ନାହିଁ । ବର୍ତ୍ତମାନ ଆମ୍ଭେ ପ୍ରାୟଶ୍ଚିତ୍ତର ବିଷୟ ବିସ୍ତାରପୂର୍ବକ ବର୍ଣ୍ଣନ କରିବୁ । ଶ୍ରବଣ କର । ୩୨ ।

---

## ଅଧ୍ୟାୟ—୩୫

ବ୍ୟାସ କହିଲେ—ହେ ଭାରତ ! ମନୁଷ୍ୟ ଯଦି ପ୍ରାୟଶ୍ଚିତ୍ତ କଲାପରେ ପୂର୍ବକୃତ ପାପାନୁଷ୍ଠାନରେ ପୁନର୍ବାର ପ୍ରବୃତ୍ତ ନ ହୁଏ, ତାହାହେଲେ ତପସ୍ୟା, ଯଜ୍ଞାନୁଷ୍ଠାନ ଏବଂ ଗୋ-ହିରଣ୍ୟାଦି ପ୍ରଦାନଦ୍ୱାରା ସେହି ପାପରୁ ନିଷ୍କୃତି ଲାଭ କରିପାରେ । ୧ ।

ତାପାଦି ନ ରଖି ନିଜ କାର୍ଯ୍ୟସବୁ ନିଜେ ନିର୍ବାହପୂର୍ବକ ଭିକ୍ଷାବୃତ୍ତି ଅବଲମ୍ବନ କରି ସକୃତ୍ ଭୋଜନ କଲେ, କପାଳପାଣି ଓ ଖଟାଙ୍ଗୀ ହୋଇ ଏବଂ ବ୍ରହ୍ମଚର୍ଯ୍ୟ ବ୍ରତରେ ଥାଇ ସମସ୍ତ ଦିବସ ପର୍ଯ୍ୟଟନ କଲେ ଏବଂ ଅସୂୟାଶୂନ୍ୟ ଓ ଅଧଃଶାୟୀ ହୋଇ ଲୋକସମାଜରେ ସ୍ୱକୃତ ଦୋଷ ପ୍ରକାଶପୂର୍ବକ ଦ୍ୱାଦଶ ବର୍ଷକାଳ ଏହିପରି ନିୟମରେ ଅତିବାହିତ କଲେ, ବ୍ରହ୍ମହତ୍ୟାକାରୀ ବ୍ରହ୍ମହତ୍ୟାଜନିତ ପାପରୁ ମୁକ୍ତ ହୁଏ । ୩ ।

ଅଥବା ନିଜର ଇଚ୍ଛା ହେଲେ ବ୍ୟବସ୍ଥାପକ ପଣ୍ଡିତଙ୍କର ମତାନୁସାରେ ଶସ୍ତ୍ରଜୀବୀ ଧାନୁଷ୍କ ବ୍ୟକ୍ତିଙ୍କର ବାଣପଥର ଲକ୍ଷ୍ୟ ହେବ କିମ୍ବା ଅବାକ୍ ଶିର ହୋଇ ପ୍ରଜ୍ୱଳିତ ହୁତାଶନରେ ଆତ୍ମ ନିକ୍ଷେପପୂର୍ବକ ଜୀବନ ବିସର୍ଜନ କରିବ, ଅଥବା ଯେ କୌଣସି ବେଦମନ୍ତ୍ର ଜପ କରୁଁ କରୁଁ ବିଂଶତ ଯୋଜନ ପଥ ଭ୍ରମଣ କରି କୌଣସି ତୀର୍ଥ ସ୍ଥଳରେ ଉପନୀତ ହେବ, କିମ୍ବା ବେଦଜ୍ଞ ବ୍ରାହ୍ମଣଙ୍କୁ ସର୍ବସ୍ୱ ଦାନ କରିବ, ଅଥବା ସେହି ବ୍ରାହ୍ମଣଙ୍କ ଯାବଜ୍ଜୀବନ ସଂସାର ଯାତ୍ରା ନିର୍ବାହଯୋଗୀ ଧନ ଓ ଅବସ୍ଥାନାଦି ନିମିତ୍ତ ପରିଚ୍ଛଦାଦି ଉପକରଣ ସମନ୍ୱିତ ଗୃହ ପ୍ରଦାନ କରିବ । ତା'ହେଲେ ବ୍ରହ୍ମହତ୍ୟା ପାପରୁ ମୁକ୍ତ ହୋଇ ପାରିବ । ପରନ୍ତୁ ଯଦି ପ୍ରାଣ ସଙ୍କଟରେ ଗୋ ଏବଂ ବ୍ରାହ୍ମଣର ରକ୍ଷା କରିବ, ତା'ହେଲେ ବ୍ରହ୍ମହତ୍ୟା ପାପରୁ ମୁକ୍ତ ହେବ । ୬ ।

ପ୍ରଥମ ତିନ ଦିବସ ପୂର୍ବାହ୍ଣରେ, ତତ୍ପରବର୍ତ୍ତୀ ତିନଦିନ ସାୟଂ କାଳରେ, ତତ୍ପରବର୍ତ୍ତୀ ତିନ ଦିବସ ଅଯାଚିତ ଦ୍ରବ୍ୟ ଭୋଜନ କରିବା ଏବଂ ଶେଷ ତିନଦିନ କିଛିମାତ୍ର ଭୋଜନ କରିବ ନାହିଁ, ଏହାକୁ କୃଚ୍ଛ୍ର ଭୋଜନ କୁହାଯାଏ । ଏହିପରି କୃଚ୍ଛ୍ର ଭୋଗୀ ହୋଇ ଛଅ ବର୍ଷର ଅତିବାହିତ କଲେ ବ୍ରହ୍ମହତ୍ୟାକାରୀ ବିଧୂତପାପ ହୋଇ ପାରିବ । ଯଦି ପ୍ରତ୍ୟେକ ମାସରୁ

ପ୍ରଥମ ସପ୍ତାହରେ ସାୟଂକାଳରେ ଭୋଜନ କରିବ, ତୃତୀୟ ସପ୍ତାହରେ ଅଯାଚିତ ଦ୍ରବ୍ୟ ଭୋଜନ କରିବ ଏବଂ ଚତୁର୍ଥ ସପ୍ତାହ ଅନଶନରେ ରହିବ, ଏହିପରି ଭାବରେ ତିନିବର୍ଷ ଯାପନ କଲେ ବ୍ରହ୍ମହତ୍ୟାକାରୀ ପାପରୁ ମୁକ୍ତ ହେବ । ୭ ।

ଯଦି ପ୍ରଥମ ମାସରେ ପୂର୍ବାହ୍ଣ କାଳରେ ଭୋଜନ କରି, ତୃତୀୟ ମାସରେ ଅଯାଚିତ ଦ୍ରବ୍ୟ ଭୋଜନ କରି ଏବଂ ଚତୁର୍ଥ ମାସରେ ଉପବାସୀ ଥାଇ ବ୍ରହ୍ମହତ୍ୟାକାରୀ କ୍ରମଶଃ ଏକବର୍ଷକାଳ ଏହିପରି ଭାବରେ ଯାପନ କରେ, ତା'ହେଲେ ସେ ସ୍ୱକୀୟ ଦୁଷ୍କୃତିରୁ ମୁକ୍ତ ହୋଇ ପାରିବ କିମ୍ବା ଏକ ମାସରୁ ଅଧିକ କାଳ ପର୍ଯ୍ୟନ୍ତ ଯଦି କେହି କୌଣସି ଦ୍ରବ୍ୟ ଭୋଜନ ନ କରି କେବଳ ସଲିଳ ପାନଦ୍ୱାରା ପ୍ରାଣ ଧାରଣ କରି ରହେ ତା'ହେଲେ ସେହି ଅନଶନ ବ୍ରତାବଲମ୍ବୀ ବ୍ୟକ୍ତି ସ୍ୱଳ୍ପକାଳ ମଧ୍ୟରେ ବ୍ରହ୍ମହତ୍ୟାପାପରୁ ମୁକ୍ତ ହେବ । ୮ ।

ବ୍ରହ୍ମ ହତ୍ୟାକାରୀ କିମ୍ବା ଅନ୍ୟ ଯେ କୌଣସି ପ୍ରକାର ପାପୀ ହେଲେ ମଧ୍ୟ ସେ ଅଶ୍ୱମେଧ ଯଜ୍ଞାନୁଷ୍ଠାନପୂର୍ବକ ଅବଭୃଥ ଅର୍ଥାତ୍ ଯଜ୍ଞ ଶେଷରେ ସ୍ନାନ କଲେ ଉଲ୍ଲିଖିତ ସମସ୍ତ ପାପରୁ ମୁକ୍ତ ହୁଏ । ୯ ।

ବ୍ରହ୍ମହତ୍ୟାଦି ବିବିଧ ପାତକୀଙ୍କର ଅଶ୍ୱମେଧ ଯଜ୍ଞାନୁଷ୍ଠାନଦ୍ୱାରା ନିଷ୍ପାପ ହେବା ବିଷୟ ଯାହା କୀର୍ତ୍ତିତ ହେଲା ଶ୍ରୁତିରେ ତାହାର ପ୍ରବଳ ପ୍ରମାଣ ଅଛି । ଏହି ପ୍ରକାରେ ବ୍ରାହ୍ମଣର ପ୍ରାଣ ରକ୍ଷାର୍ଥ ପ୍ରବୃତ୍ତ ହୋଇ ଯଦି କେହି ଯୁଦ୍ଧରେ ନିହତ ହୁଏ, ତାହାହେଲେ ସେ ବ୍ରହ୍ମହତ୍ୟାଜନିତ ପାପରୁ ମୁକ୍ତ ହୁଏ, ଅଥବା ଉତ୍ତମ ବ୍ରାହ୍ମଣକୁ ଏକଲକ୍ଷ ଗୋପ୍ରଦାନ କଲେ ବ୍ରହ୍ମହତ୍ୟାକାରୀ ତଜ୍ଜନିତ ପାପରୁ ନିଷ୍କୃତି ପାଏ । ୧୨ ।

କିମ୍ବା ତତ୍ପରିବର୍ତ୍ତରେ ପଞ୍ଚବିଂଶତି ସହସ୍ର ଦୁଗ୍ଧବତୀ କପିଳା ଗୋ ପ୍ରଦାନ କଲେ ଉକ୍ତପାପରୁ ମୁକ୍ତ ହେବ, କିମ୍ବା କୌଣସି ଦରିଦ୍ର ସାଧୁ ବ୍ୟକ୍ତିର ଆହାରାଭାବରେ ପ୍ରାଣ ସଂଶୟ ହୋଇଅଛି । ଏମନ୍ତ ସମୟରେ ସେହି ବ୍ୟକ୍ତିକୁ ଏକ ସହସ୍ର ସବତ୍ସା ଦୁଗ୍ଧବତୀ ଗୋ ପ୍ରଦାନ କଲେ, ବ୍ରହ୍ମହତ୍ୟାଜନିତ ପାପରୁ ମୁକ୍ତ ହେବ । ୧୩ ।

ହେ ମହୀପାଳ ! ସଦ୍ୱୃତ୍ତ ଜିତେନ୍ଦ୍ରିୟ ବ୍ରାହ୍ମଣଙ୍କୁ କାମ୍ବୋଜଦେଶୀୟ ଏକଶତ ଅଶ୍ୱପ୍ରଦାନ କଲେ ନିଷ୍ପାପ ହେବ । ୧୪ ।

ଯେ ଯାଚକର ଅଭିଳାଷାନୁଯାୟୀ ବସ୍ତୁଦାନ କରେ ଏବଂ ଉକ୍ତ ପ୍ରକାର ଦାନକରି କାହାରିଠାରେ ପ୍ରକାଶ ନ କରେ, ସେ ଏକ ବ୍ୟକ୍ତିକୁ ଦାନକରି ସୁଦ୍ଧା ପାପରୁ ମୁକ୍ତ ହୁଏ । ୧୫ ।

ଏକବାର ମାତ୍ର ସୁରାପାନ କଲେ ଅଗ୍ନିବର୍ଣ୍ଣ ସୁରାପାନ କରିବ, ତାହାହେଲେ ଇହଲୋକ ଏବଂ ପରଲୋକରୁ ଆତ୍ମାକୁ ଉତ୍ତୀର୍ଣ୍ଣ କରିପାରିବ । ୧୬ ।

ଜଳହୀନ ଦେଶସ୍ଥ ପର୍ବତରୁ ପତିତ ହେଲେ ଜ୍ୱଳଦଗ୍ନିରେ ପ୍ରବେଶ କଲେ କିମ୍ବା ମହାପ୍ରସ୍ଥାନ ଅର୍ଥାତ୍ କେଦାରାଚଳକୁ ଗମନପୂର୍ବକ ହିମାଳୟାରୋହଣରେ ଜୀବନ ବିସର୍ଜ୍ଜନ କଲେ ସୁରାପାନଜନିତ ପାପରୁ ମୁକ୍ତ ହେବ । ୧୭ ।

ସୁରାପାୟୀ ବ୍ରାହ୍ମଣ ବୃହସ୍ପତି ସବନାମକ ଯଜ୍ଞ ଅନୁଷ୍ଠାନ କଲେ, ବିଧୂତ ପାପ ହୋଇ ବ୍ରାହ୍ମଣ ସମାଜଭୁକ୍ତ ହୋଇପାରେ । ଏହିପରି ଶ୍ରୁତିରେ କଥିତ ଅଛି । ୧୮ ।

ଯଦି ପ୍ରାୟଶ୍ଚିତ୍ତ ପରେ ପୁନର୍ବାର ସୁରାପାନ ନ କରେ, ତା' ହେଲେ ସେହି ବ୍ୟକ୍ତି ବିମତ୍ସର ହୋଇ ଭୂମିଦାନ କଲେ ନିଷ୍ପାପ ହୁଏ । ୧୯ ।

ଗୁରୁପତ୍ନୀଗାମୀ ବ୍ୟକ୍ତି ଲୌହ ସମାଚ୍ଛାଦିତ ପ୍ରତପ୍ତଶିଳାରେ ପତିତ ହୋଇ ଯଦି ପ୍ରାଣତ୍ୟାଗ କରେ ତା'ହେଲେ ସେ ତତ୍ପାପରୁ ମୁକ୍ତହୁଏ । ଅଥବା ସ୍ୱକୀୟ ଲିଙ୍ଗ ଛେଦନପୂର୍ବକ ଊର୍ଦ୍ଧ୍ୱଦୃଷ୍ଟି ହୋଇ ପ୍ରବ୍ରାଜିତ ହେଲେ ଗୁରୁପତ୍ନୀ ଗମନଜନିତ ପାପରୁ ମୁକ୍ତ ହେବ । ୨୦ ।

ଯେ କୌଣସି ପ୍ରକାର ପାପ କେହି ପଛକେ ଯଦି ଶରୀର ବିମୋକ୍ଷଣପୂର୍ବକ ପ୍ରାୟଶ୍ଚିତ୍ତ କରିପାରେ, ତା' ହେଲେ ତତ୍ସମସ୍ତ ପାପରୁ ବିମୁକ୍ତ ହେବାକୁ ହୁଏ; କିନ୍ତୁ ଯେଉଁସବୁ ପାପର ବିଷୟମାନ ଉଲ୍ଲେଖ କରାଗଲା, ସେହି ଉଲ୍ଲିଖିତ ପାପରେ ଯଦି ସ୍ତ୍ରୀ ଲୋକ ଲିପ୍ତ ହୋଇଥାଏ, ତା' ହେଲେ ସେ ଏକ ବର୍ଷକାଳ ଆହାରାଦି ସମ୍ଭୋଗ ପରିତ୍ୟାଗପୂର୍ବକ ସଂଯତ ଭାବରେ ଅବସ୍ଥାନ କଲେ ନିଷ୍ପାପ ହୋଇ ପାରିବ ।୨୧।

ଯେଉଁ ବ୍ୟକ୍ତି ମହାବ୍ରତର ଅନୁଷ୍ଠାନ କରେ ଅର୍ଥାତ୍ ମାସେ କାଳ ସମସ୍ତ ଭୋଜନ ଏବଂ ଜଳପାନ ପର୍ଯ୍ୟନ୍ତ ପରିତ୍ୟାଗ କରେ, ସେହି ବ୍ୟକ୍ତି ସମସ୍ତ ପାପରୁ ମୁକ୍ତ ହୁଏ । ଯେ ସର୍ବସ୍ୱ ଦାନ କରେ ସେ ସଦ୍ୟ ମୁକ୍ତି ଲଭେ

କରେ । ଅଥବା ଯେ ଗୁରୁଙ୍କର ପ୍ରାଣ ରକ୍ଷାର୍ଥ ଯୁଦ୍ଧରେ ନିହତ ହୁଏ ସେ ସମସ୍ତ ଦୁଷ୍କୃତମାନଙ୍କରୁ ମୁକ୍ତ ଲାଭ କରେ ।୨୨।

ଯଦି କେହି ଗୁରୁଙ୍କଠାରେ ମିଥ୍ୟା ବ୍ୟବହାର କରେ କିମ୍ବା ତାହାଙ୍କର ଅପ୍ରିୟାଚରଣ କରେ ତା' ହେଲେ ସେ ପୂର୍ବୋକ୍ତ ଗୁରୁଙ୍କର ପ୍ରିୟ କାର୍ଯ୍ୟ ସାଧନ କଲେ ତତ୍ପାପରୁ ମୁକ୍ତହୁଏ ।୨୩।

ଯଦି କୌଣସି ବ୍ୟକ୍ତି ବ୍ରହ୍ମଚର୍ଯ୍ୟାଦି ବ୍ରତୀଙ୍କୁ ତାହାଙ୍କର ବ୍ରତରୁ ଭ୍ରଷ୍ଟ କରେ ତାହାହେଲେ ଉକ୍ତ ବ୍ୟକ୍ତି ଗୋ ଚର୍ମ ପରିଧାନପୂର୍ବକ ଛଅମାସ ପର୍ଯ୍ୟନ୍ତ ବ୍ରହ୍ମହତ୍ୟାକାରୀ ପ୍ରାପ୍ୟ ବ୍ରତାନୁଷ୍ଠାନ କଲେ ତତ୍ପାପରୁ ମୁକ୍ତ ହୁଏ । ପରସ୍ତ୍ରୀ କିମ୍ବା ପରଧନ ଅପହରଣକାରୀ ବ୍ୟକ୍ତିଙ୍କୁ ସମ୍ବତ୍ସର କାଳ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ ବ୍ରତରେ ଅବସ୍ଥାନ କରିବାକୁ ହେବ ତାହାହେଲେ ସେ ଉକ୍ତ ପାପରୁ ମୁକ୍ତ ହେବେ ।୨୪।

ଅଥବା ଯେ ଯାହାର ଯେଉଁର ବସ୍ତୁ ଅପହରଣ କରିବ, ବିବିଧ ଉପାୟଦ୍ୱାରା ତାହାକୁ ସେହିପରି ବସ୍ତୁ ପ୍ରଦାନ କଲେ ଅପହରଣଜନିତ ପାପରୁ ମୁକ୍ତ ହେବ ।୨୫।

ପରିବେତ୍ତା (ଯେଉଁ ବ୍ୟକ୍ତି ଜ୍ୟେଷ୍ଠ ଭ୍ରାତାଙ୍କ ପୂର୍ବରୁ ବିବାହ କରେ) ଯଦି ସଂଯତେନ୍ଦ୍ରିୟ ହୋଇ ଦ୍ୱାଦଶ ଦିବସ ପର୍ଯ୍ୟନ୍ତ କୃଚ୍ଛ୍ର ଅର୍ଥାତ୍ ପ୍ରାଜାପତ୍ୟ ବ୍ରତାନୁଷ୍ଠାନ କରେ, ତାହା ହେଲେ ସେ ଶୁଦ୍ଧ ହୁଏ; କିନ୍ତୁ ପରିବିତ୍ତି ଅର୍ଥାତ ଜ୍ୟେଷ୍ଠ ଯଦି କନିଷ୍ଠର ବିବାହ ପରେ ସ୍ତ୍ରୀ ଗ୍ରହଣ କରେ ତାହା ହେଲେ ସେ ମଧ୍ୟ କନିଷ୍ଠ ପ୍ରାପ୍ୟ ପ୍ରାଜାପତ୍ୟ ବ୍ରତାନୁଷ୍ଠାନ ରୂପ ପ୍ରାୟଶ୍ଚିତ୍ତ କରିବ ।୨୬।

ପରିବେତ୍ତାକୁ ଅର୍ଥାତ୍ କନିଷ୍ଠ ଭ୍ରାତାକୁ ଜ୍ୟେଷ୍ଠଙ୍କର ପ୍ରାୟଶ୍ଚିତ୍ତି ପରେ ପୁନଶ୍ଚ ଦାର ପରିଗ୍ରହ କରିବାକୁ ହେବ । ତାହା ନ ହେଲେ ଶୁଦ୍ଧି ଲାଭ ହେବ ନାହିଁ । କାରଣ ସେ ଶ୍ରାଦ୍ଧାଦିଦ୍ୱାରା ପିତୃଲୋକଙ୍କର ଉଦ୍ଧାରଣରେ ସମର୍ଥ ହେବେ ନାହିଁ; କିନ୍ତୁ ଏହି ପରିବେତ୍ତାମାନଙ୍କର ପ୍ରଥମ ବିବାହିତ ସ୍ତ୍ରୀମାନଙ୍କୁ ପରିବିତ୍ତିଜନିତ ଦୋଷ ଘଟିବ ନାହିଁ । କାରଣ ସ୍ତ୍ରୀମାନଙ୍କୁ ପୁରୁଷକୃତ ପାପରେ ଲିପ୍ତ ହେବାକୁ ହୁଏ ନାହିଁ ।୨୮।

ସ୍ତ୍ରୀମାନଙ୍କର ମହାପାପ ସଂଯୋଗ ହେଲେ ମଧ୍ୟ ସେମାନେ ଅନ୍ତଃଶୁଦ୍ଧିକାରକ ଭୋଜନ ଦ୍ରବ୍ୟଦ୍ୱାରା ଚାତୁର୍ମାସ୍ୟ ବ୍ରତାନୁଷ୍ଠାନ କଲେ ପାପମୁକ୍ତ ହୁଅନ୍ତି । ଏହା ଧର୍ମଜ୍ଞମାନେ ବିଧି ଦେଇ ଅଛନ୍ତି ।୨୯।

ସ୍ତ୍ରୀଲୋକ ଯଦି ମନେ ମନେ କୌଣସି ପାପ ସଙ୍କଳ୍ପ କଲେ କିମ୍ବା ନ ଜାଣି କୌଣସି ପାପାଚାରପୁରୁଷ ସହିତ ସଙ୍ଗତ ହେଲେ, ଭସ୍ମମାର୍ଜିତ ଭୋଜନପାତ୍ର ପ୍ରାୟ, ଋତୁକାଳ ଉପସ୍ଥିତ ହେଲା ମାତ୍ରକେ ଶୁଦ୍ଧ ହୁଅନ୍ତି । ଭୋଜନାଦି ପାତ୍ର ବ୍ରାହ୍ମଣ କିମ୍ବା ଶୂଦ୍ରର ଉଚ୍ଛିଷ୍ଟଦ୍ୱାରା ସ୍ପୃଷ୍ଟ ହେଲେ କିମ୍ବା ଗୋଜାତିକର୍ତ୍ତୃକ ଆଘ୍ରାତ ହେଲେ, ପଞ୍ଚଗବ୍ୟ, ମୃତ୍ତିକା ଜଳ ଭସ୍ମ, ଅମ୍ଳ ଏବଂ ଅଗ୍ନି ଏହି ଦଶୋଟି ଦ୍ରବ୍ୟଦ୍ୱାରା ଶୁଦ୍ଧ ହେବ ।୩୧।

ବ୍ରାହ୍ମଣମାନଙ୍କ ଚତୁଷ୍ପାଦ ଧର୍ମାନୁଷ୍ଠାନ କରିବାକୁ ହେବ ବୋଲି ବିହିତ ହୋଇଅଛି । କ୍ଷତ୍ରିୟର ତ୍ରିପାଦ ଧର୍ମ, ବୈଶ୍ୟର ଦ୍ୱିପାଦ ଧର୍ମ, ଆଉ ଶୂଦ୍ରର ଏକପାଦ ମାତ୍ର ଧର୍ମ ଅନୁଷ୍ଠାନ କରିବା ବିହିତ ଅଛି । ପ୍ରାୟଶ୍ଚିତ୍ତୀକରଣ ବିଷୟରେ ମଧ୍ୟ ଧର୍ମାନୁଷ୍ଠାନ ପ୍ରାୟ ବ୍ରାହ୍ମଣାଦି ବର୍ଣ୍ଣାନୁସାରେ ଲାଘବ ଗୌରବ ବିବେଚନା କରିବାକୁ ହେବ । ତିର୍ଯ୍ୟକ ଅର୍ଥାତ୍ ପଶୁପକ୍ଷୀର ବଧ ସାଧନ ଏବଂ ନାନା ପ୍ରକାର ବୃକ୍ଷ ଛେଦନ କଲେ ଜନ ସମାଜରେ ନିଜର କୃତକର୍ମକୁ ପ୍ରକାଶପୂର୍ବକ ବାୟୁ ଭକ୍ଷଣ କରି ତିନିରାତ୍ର କ୍ଷେପଣ କରିବ । ତାହା ହେଲେ ନିଷ୍ପାପ ହେବ ।୩୪।

ଅଗମ୍ୟାଗମନ କଲେ ଆର୍ଦ୍ର ବସ୍ତ୍ରାଚ୍ଛାଦିତ ହୋଇ ଅଙ୍ଗରେ ଭସ୍ମ ଲେପନ ଏବଂ ଭସ୍ମ ଶଯ୍ୟାରେ ଶୟନପୂର୍ବକ ଶତ ରୁଦ୍ରୀପାଠ କରି ଛଅ ମାସ କାଳ ଅତିବାହିତ କରିବ । ତାହା ହେଲେ ଦୋଷରୁ ମୁକ୍ତ ହେବ ।୩୫।

ପରନ୍ତୁ ଦୃଷ୍ଟାନ୍ତଭୂତ ଶାସ୍ତ୍ରାନ୍ତରୋକ୍ତ ହେତୁ ମତ୍ ବାକ୍ୟ ସହିତ ବେଦ ବିହିତ ବାକ୍ୟର ଏକ ବାକ୍ୟତା କରି ସମସ୍ତ ପାପକାର୍ଯ୍ୟର ପ୍ରାୟଶ୍ଚିତ୍ତ ବ୍ୟବସ୍ଥା ପ୍ରଦାନ କରିବାକୁ ହେବ । ଅର୍ଥାତ୍ ବେଦରେ ଯଦି କୌଣସିଠାରେ ପ୍ରାୟଶ୍ଚିତ୍ତବିଧିର ଅସ୍ପଷ୍ଟ ବିଧିଥାଏ, ତାହା ହେଲେ ଶାସ୍ତ୍ରାନ୍ତରରେ ଯେଉଁଠାରେ ଉକ୍ତ ବିଷୟର ଅସ୍ପଷ୍ଟ ବିଧି ଲକ୍ଷିତ ହେବ, ଯୁକ୍ତିଦ୍ୱାରା ବିଚାରପୂର୍ବକ ସେହି ଦୃଷ୍ଟାନ୍ତାନୁସାରେ ଅସ୍ପଷ୍ଟ ବିଧିର ବ୍ୟାଖ୍ୟା-କରି ବ୍ୟବସ୍ଥା ଦେବାକୁ ହେବ । ବ୍ରାହ୍ମଣ ଯଦି ଅଜ୍ଞାନ ହେତୁ କୌଣସି ପାପାଚରଣ କରେ, ତାହା ହେଲେ ସେ ରାଗ, ଦ୍ୱେଷ, ହିଂସା ଓ କଳ୍ପନା-ରହିତ ମାନାପମାନ ଶୂନ୍ୟ ଏବଂ ମିତଭୋଜୀ ହୋଇ ସାବିତ୍ରୀ ଜପ କରିବ ।୩୭।

ପାପ ବିଶେଷରେ ଯେତେଦିନ ବ୍ରତାଚରଣ କରିବାକୁ ହେବ, ତାବତ୍କାଳ ପର୍ଯ୍ୟନ୍ତ ଦିବସରେ ପ୍ରତିଦିନ ସର୍ବଦା ଅନାବୃତ୍ତ ସ୍ଥଳରେ ଦଣ୍ଡାୟମାନ ରହିବ ! ନିଶାକାଳରେ ସ୍ଥଣ୍ଡିଳୋପରି ଶୟନ କରିବ ଏବଂ ଦିବାଭାଗରେ ତିନିଥର ଓ ନିଶାକାଳରେ ତିନିଥର ଜଳାଶୟକୁ ଗମନପୂର୍ବକ ସମସ୍ତ ଅବଗାହନ କରିବ ।୩୮।

ସ୍ତ୍ରୀ, ଶୂଦ୍ର କିମ୍ବା ପତିତ ବ୍ୟକ୍ତିଙ୍କ ସହିତ କଥା କହିବ ନାହିଁ । ଏହିପରି ଭାବରେ ରହିଲେ ବ୍ରାହ୍ମଣ ସମସ୍ତ ପାପରୁ ନିଷ୍କୃତି ପାଇବ ।୩୯।

ମନୁଷ୍ୟ ପାପ କିମ୍ବା ପୁଣ୍ୟ କାର୍ଯ୍ୟ ଯାହା ଅନୁଷ୍ଠାନ କରେ, ଲୋକାନ୍ତରକୁ ଗମନ କଲେ ଅଗ୍ନି, ଜଳ ଓ ବାୟୁ ପ୍ରଭୃତି ମହାଭୂତାଧିଷ୍ଠାତୃ ଦେବତାମାନେ ତାହାର ସେହି କୃତକର୍ମମାନଙ୍କର ସାକ୍ଷୀ ହୁଅନ୍ତି । ଅତଏବ ପରଲୋକରେ ତାହାଙ୍କ ନିଷ୍ଟୟ ଶୁଭାଶୁଭ କର୍ମଫଳ ଭୋଗ କରିବାକୁ ହୁଏ । ପରନ୍ତୁ ପୁରୁଷକୃତ ସତ୍ କିମ୍ବା ଅସତ୍କର୍ମ ମଧ୍ୟରୁ ଯେଉଁ କର୍ମର ଆତିଶଯ୍ୟ ହୁଏ, ସେହି ଅତିରିକ୍ତ କର୍ମ ଅନ୍ୟକୁ ଅଭିଭୂତ କରି କର୍ତ୍ତାକୁ ଇହଲୋକରେ ଫଳ ପ୍ରଦାନ କରେ । ଯେପରି ନିୟତ ଅସତ୍କର୍ମାନୁଷ୍ଠାୟୀ ପୁରୁଷ ପାପର ବୃଦ୍ଧି କରି ଅବିଳମ୍ବରେ ତତ୍ଫଳ ଭୋଗୀ ହୁଏ, ସେହିପରି ନିୟତ ଜ୍ଞାନାଲୋଚନା, ତପସ୍ୟାଚ୍ଚର ଓ ଯଜ୍ଞାନୁଷ୍ଠାନାଦି କର୍ମଦ୍ୱାରା ପୁରୁଷ ନିଷ୍ପାପ ହେଲେ ଇହଲୋକରେ ଶୁଭଫଳ ପ୍ରାପ୍ତ ହୁଏ ।୪୧।

ଅତଏବ ସର୍ବଥା ପାପକର୍ମମାନଙ୍କରୁ ନିବୃତ୍ତ ହୋଇ ପ୍ରତିଦିନ ଧନ ଦାନ ଏବଂ ଶୁଭ କାର୍ଯ୍ୟାନୁଷ୍ଠାନ କରିବା କର୍ତ୍ତବ୍ୟ । ତାହାହେଲେ ସେହି ପୁରୁଷ ଆଉ ପାପରେ ଲିପ୍ତ ହୁଏ ନାହିଁ ।୪୨।

ହେ ମହାରାଜ ! ଯେଉଁପରି ପାପସମୂହର ବିଷୟସବୁ ଉଲ୍ଲିଖିତ ହେଲା, ତଦନୁରୂପ ପ୍ରାୟଶ୍ଚିତ୍ତର ବିଷୟ ମଧ୍ୟ କୁହାଗଲା । ବର୍ତ୍ତମାନ ମହାପାତକ ବ୍ୟତୀତ ଭକ୍ଷ୍ୟ, ଅଭକ୍ଷ୍ୟ, ପାନ ଓ ଅପାନ ଇତ୍ୟାଦି ନାନା ବିଷୟର ବ୍ୟବସ୍ଥାମାନ କହୁଅଛୁଁ, ଶ୍ରବଣ କର । ଜ୍ଞାନକୃତ ଏବଂ ଅଜ୍ଞାନକୃତ ପାପର ଯେଉଁ ଯେଉଁ ପ୍ରାୟଶ୍ଚିତ୍ତ ବିଧି ଉକ୍ତ ହେଲା, ତାହା ବାଳକ କିମ୍ବା ନିତାନ୍ତ ପଶୁସଦୃଶ ମୂଢ଼ ଅନ୍ତ୍ୟଜ ଜାତିଙ୍କ ସମ୍ବନ୍ଧରେ ପ୍ରଯୋଜ୍ୟ ନୁହେଁ, କିନ୍ତୁ ତାହା ସଞ୍ଜାତ ଧର୍ମ୍ମତବୋଧ ବିଶିଷ୍ଟ ଲୋକଙ୍କ ପକ୍ଷରେ ପ୍ରଯୋଜ୍ୟ ।୪୩।

ଏହିପରି ବୋଧଶକ୍ତିସମ୍ପନ୍ନ ବ୍ୟକ୍ତି ଯଦି ଜ୍ଞାନପୂର୍ବକ କୌଣସି ପାପାଚରଣ କରେ, ତାହାହେଲେ ସେ ଗୁରୁତର ପାପୀ ହୁଏ; କିନ୍ତୁ ଅଜ୍ଞାନପୂର୍ବକ ଅର୍ଥାତ୍ ଦୈବବଶତଃ ପାପ ଅନୁଷ୍ଠିତ ହେଲେ, ପାପର ଲାଘବ ହେବ । ସୁତରାଂ ପ୍ରାୟଶ୍ଚିତ୍ତ ମଧ୍ୟ ଅଳ୍ପ ହେବ ।୪୭।

ଯେପରି ପାପ ଆଚରିତ ହେବ, ସେହିପରି ବିଧି ଅନୁସାରେ ପ୍ରାୟଶ୍ଚିତ୍ତ କଲେ ଉକ୍ତ ପାପର ଶୋଧନ ହେବ, କିନ୍ତୁ ଏହିସବୁ ବିଧି ବାକ୍ୟ ନାସ୍ତିକ କିମ୍ବା ଅଶ୍ରଦ୍ଧାବାନ୍ ପୁରୁଷମାନଙ୍କପାଇଁ ଉକ୍ତ ହୋଇ ନାହିଁ । ଏହା ଶ୍ରଦ୍ଧାବାନ୍ ଆସ୍ତିକମାନଙ୍କ ନିମିତ୍ତ ଉକ୍ତ ହୋଇଅଛି । କିମ୍ବା କ ଦମ୍ଭ ଓ ଦ୍ୱେଷାଦିଦୂଷିତ ବ୍ୟକ୍ତିମାନଙ୍କ ସକାଶେ ଶାସ୍ତ୍ରରେ କୌଣସି ପ୍ରାୟଶ୍ଚିତ୍ତ ବିଧି ଥିବାର ଦେଖାଯାଏ ନାହିଁ । ଯେହେତୁ ଶାସ୍ତ୍ରରେ କେବଳ ଶିଷ୍ଟାଚାରର ଧର୍ମ ବୋଲି ଉପଦିଷ୍ଟ ହୋଇଅଛି । ଅତଏବ ଇହଲୋକ ଓ ପରଲୋକର ମଙ୍ଗଳାର୍ଥୀ ବ୍ୟକ୍ତିମାନଙ୍କ ପକ୍ଷରେ ଏତତ୍ସମସ୍ତ ବିଧି ଅନୁସାରେ କାର୍ଯ୍ୟ କରିବା କର୍ତ୍ତବ୍ୟ ।୪୮।

ହେ ମହାରାଜ ! ଆମ୍ଭେ ତୁମ୍ଭଙ୍କୁ ପୂର୍ବରୁ କହିଅଛୁଁ ଯେ କ୍ଷତ୍ରିୟ ଧର୍ମନିମିତ୍ତ କିମ୍ବା ନିଜର ପ୍ରାଣରକ୍ଷାର୍ଥ ଦୁଷ୍ଟମାନଙ୍କୁ ବିନାଶ କଲେ ହନ୍ତାଙ୍କୁ କଦାପି ପାପ ଲିପ୍ତ ହେବାକୁ ହୁଏ ନାହିଁ । ସେହି କାରଣରୁ ତୁମ୍ଭେ ମଧ୍ୟ ଦୁରାତ୍ମା କୌରବମାନଙ୍କୁ ନିପାତିତ କରି ପାପ ସ୍ପୃଷ୍ଟ ହୋଇନାହଁ । ଏ ସମସ୍ତ ଅବଗତ ହୋଇସୁଦ୍ଧା ଯଦି ଚିତ୍ତ ଗ୍ଲାନିକୁ ଦୂରୀକୃତ କରିପାରୁ ନାହଁ, ତାହାହେଲେ ବିଧି ଅନୁସାରେ ପ୍ରାୟଶ୍ଚିତ୍ତାନୁଷ୍ଠାନ କର । ପରନ୍ତୁ ଯେପରି ଅନାର୍ଯ୍ୟମାନେ ମନୋଦୁଃଖ ସହି ନ ପାରି ଆତ୍ମଘାତୀ ହୁଅନ୍ତି, ତଦ୍ରୂପ ଆଚରଣରେ ତୁମ୍ଭେ କଦାଚ ପ୍ରବୃତ୍ତ ହୁଅନାହିଁ ।୫୦।

ବୈଶମ୍ପାୟନ ବୋଇଲେ—ହେ ମହାରାଜ ଜନମେଜୟ ! ଧର୍ମରାଜ ଯୁଧିଷ୍ଠିର ତପୋଧନ ଭଗବାନ ବେଦବ୍ୟାସଙ୍କଠାରୁ ଉଲ୍ଲିଖିତ ଉପଦେଶମାନ ଶ୍ରବଣ କରି ମୁହୂର୍ତ୍ତକାଳ ଚିନ୍ତାପୂର୍ବକ ବେଦବ୍ୟାସଙ୍କୁ କହିଲେ ।୫୧।

---

## ଅଧ୍ୟାୟ—୩୭

ଯୁଧିଷ୍ଠିର କହିଲେ—ହେ ପିତାମହ ! ବ୍ରାହ୍ମଣମାନଙ୍କର ଭକ୍ଷ୍ୟ କ'ଣ ? ଅଭକ୍ଷ୍ୟ ବା କ'ଣ ? ଦାନ ମଧ୍ୟରେ ପ୍ରଶସ୍ତ ଦାନ କଏ କାହାର ପାତ୍ରାପାତ୍ର ଅବା କପରି ? ତାହା ଆପଣ ଆମ୍ଭ ପାଖରେ କହନ୍ତୁ ।୧।

ବ୍ୟାସଦେବ କହିଲେ—ହେ ମହାରାଜ ! ଏହି ବିଷୟରେ ପ୍ରଜାପତି ମନୁ ଓ ସିଦ୍ଧ ଋଷିବୃନ୍ଦଙ୍କର ସମ୍ବାଦଘଟିତ ଗୋଟିଏ ପୁରାତନ ଇତିହାସ କଥିତ ଅଛି, ଶ୍ରବଣ କର । ଆଦ୍ୟ କାଳରେ ଏକଦା ବ୍ରତପରାୟଣ ଋଷିମାନେ ସମାସୀନ ପରମ ବିଜ୍ଞ ପ୍ରଜାପତି ମନୁଙ୍କଠାରେ ସମାଗତ ହୋଇ ଧର୍ମ ବିଷୟରେ ଏହି କେତୋଟି ପ୍ରଶ୍ନ କଲେ—ହେ ପ୍ରଜାପତେ ! ଅନ୍ନ, ପାତ୍ର, ଦାନ, ଅଧ୍ୟୟନ, ତପସ୍ୟା ଓ କାର୍ଯ୍ୟାକାର୍ଯ୍ୟ ବିଷୟ ବିସ୍ତାରପୂର୍ବକ ବର୍ଣ୍ଣନ କରନ୍ତୁ । ଋଷିମାନଙ୍କର ଏହି ସବୁ କଥା ଶୁଣି ଭଗବାନ୍ ସ୍ୱାୟମ୍ଭୁବ ମନୁ କହିଲେ—ହେ ଋଷିଗଣ ! ତୁମ୍ଭେମାନେ ସଂକ୍ଷେପ ଓ ବିସ୍ତରରେ ଯଥାବୃତ୍ତ ଧର୍ମ କଥା ଶ୍ରବଣ କର ।୫।

ଯେଉଁ ଯେଉଁ ସ୍ଥାନରେ ପୁଣ୍ୟଶୀଳା ସ୍ରୋତସ୍ୱତୀ ପ୍ରବାହିତା ହେଉଥାଏ, ଅଥବା ଯେଉଁ ଯେଉଁ ଦେଶସମ୍ବନ୍ଧରେ ଶାସ୍ତ୍ରରେ କୌଣସି ଦୋଷ ଉଲ୍ଲିଖିତ ହୋଇନାହିଁ ଏବଂ ବହୁଳାଂଶ ସାଧୁ ଋଷିମାନେ ଯେଉଁଠାରେ ଅବସ୍ଥିତ କରନ୍ତି, ସେହିଠାରେ ଜପ, ହୋମ, ଉପବାସ ଓ ଆତ୍ମଜ୍ଞାନ, ଅନଶନାଦି ତପସ୍ୟାନୁଷ୍ଠାନଦ୍ୱାରା ଲୋକମାନେ ପବିତ୍ର ହୁଅନ୍ତି ।୭।

ଉଲ୍ଲିଖିତ ଦେଶରେ ଜପ ହୋମାଦି ଅନୁଷ୍ଠାନ କଲେ ମନୁଷ୍ୟର ପବିତ୍ରତା ବିଷୟ ଯେପରି କଥିତ ହେଲା, ସେହିପରି କେତେଗୁଡ଼ିଏ ପାପାଚରଣ ଫଳରେ ସାମାନାଧିକରଣ୍ୟ ଥିବାରୁ ସେମାନଙ୍କ ପ୍ରାୟଶ୍ଚିତ୍ତ ବିଧି ମଧ୍ୟ ଶାସ୍ତ୍ରରେ ପୃଥକଭାବରେ ନିର୍ଦ୍ଦେଶ କରିବା ଅନାବଶ୍ୟକ ଜାଣି ସୁବର୍ଣ୍ଣ କମ୍ବା ଆଜ୍ୟ ପ୍ରାଶନ, ସ୍ୱର୍ଣ୍ଣାଦି ପଞ୍ଚରତ୍ନାଦି ସଂସୃଷ୍ଟ ଜଳରେ ସ୍ନାନ, ଦେବସ୍ଥାନ ଦର୍ଶନରେ ଯାତ୍ରା ଏବଂ ବ୍ରହ୍ମଗିରି ପ୍ରଭୃତି କେତେଗୁଡ଼ିଏ ଲୋକ ପାବନ ପର୍ବତ ଦର୍ଶନ ପ୍ରଭୃତି ଏହି କେତୋଟି ଅଶୁଭନାଶକ ବୋଲି ସାମାନ୍ୟରେ ପ୍ରାୟଶ୍ଚିତ୍ତ ବିଧି ନିର୍ଦ୍ଦେଶ କରି ଅଛନ୍ତି । ଉଲ୍ଲିଖିତ ବିଧି ଅନୁସାରେ କାର୍ଯ୍ୟ କଲେ ପୁରୁଷ ଅବିଳମ୍ବରେ ଅଶୁଭରୁ ମୁକ୍ତହୁଏ,

ଏଥିରେ ସନ୍ଦେହ ନାହିଁ । ଘୋରକାଳ ଉପସ୍ଥିତ ଥିଲେ, ତାହାରକ ପୁଣ୍ଡା ଅବଜ୍ଞା କରିବା ଉଚିତ ନୁହେଁ । ଅଜ୍ଞାନ ହେତୁରୁ ଈଦୃଶ କାର୍ଯ୍ୟ ଘଟିଲେ, ତଦୋଷ ଶୋଧନାର୍ଥ ନିର୍ଦ୍ଦିଷ୍ଟ କାଳ ତପ୍ତକୃଚ୍ଛ୍ର ବ୍ରତକୁ ଅନୁଷ୍ଠାନ କରିବା କର୍ତ୍ତବ୍ୟ ।୯।

ଅଦତ୍ତ ବସ୍ତୁର ଅନାଦାନ, ଦାନ, ଅଧ୍ୟୟନ, ତପସ୍ୟା, ଅହିଂସା, ସତ୍ୟ ବ୍ୟବହାର, ଅକ୍ରୋଧ ଓ ଦେବାର୍ଚ୍ଚନ, ଏମାନଙ୍କୁ ଧର୍ମର ଲକ୍ଷଣ ବୋଲି ଜାଣିବ ।୧୦।

ପରନ୍ତୁ ଉକ୍ତ ପ୍ରକାର ଧର୍ମ ମଧ୍ୟ ଦେଶକାଳ ବିଶେଷରେ, କେତେବେଳେ ଅଧର୍ମ ରୂପରେ ପରିଗଣିତ ହୁଏ ଏବଂ ପ୍ରତିଗ୍ରହ, ମିଥ୍ୟା ବ୍ୟବହାର ଓ ହିଂସା ପ୍ରଭୃତି ଅଧର୍ମ ମଧ୍ୟ ଅବସ୍ଥା ବିଶେଷରେ, ଅର୍ଥାତ୍ ପ୍ରାଣ ସଂଶୟାଦି ସ୍ଥାନରେ ଧର୍ମରୂପରେ ପରିଗୃହୀତ ହୁଏ ।୧୧।

ପ୍ରାଣିଲୋକ ସମ୍ବନ୍ଧରେ ଧର୍ମ ଓ ଅଧର୍ମ ଏହି ଦୁଇ ପ୍ରକାର କଥିତ ଅଛି । ଏହି ଧର୍ମାଧର୍ମ ପୁଣି ଲୌକିକ ଓ ବୈଦିକାନୁସାରେ ଶୁଭାଶୁଭ ଏବଂ ପ୍ରବୃତ୍ତି ନିବୃତ୍ତି ଭେଦରେ ଦୁଇ ଦୁଇ ଅଂଶରେ ବିଭକ୍ତ । ତନ୍ମଧ୍ୟରେ ପ୍ରବୃତ୍ତି ବୈଦିକ, ଆଉ ଶୁଭାଶୁଭ ଲୌକିକ । ପ୍ରବୃତ୍ତି ଅର୍ଥାତ୍ ଜ୍ୟୋତିଷ୍ଟୋମାଦି ଯାଗାନୁଷ୍ଠାନ ଏହାର ଫଳ । ବାରମ୍ବାର ସଂସାରରେ ଜନ୍ମମୃତ୍ୟୁ କ୍ଳେଶ ଘଟେ ଏବଂ ନିବୃତ୍ତିର ଫଳ ତତ୍ତ୍ୱଜ୍ଞାନ ଅର୍ଥାତ୍ ବ୍ରହ୍ମପ୍ରାପ୍ତି ଅଟେ । ଏହିପରି ଲୌକିକର ମଧ୍ୟ ପରୋପକାରାଦି ସତ୍କାର୍ଯ୍ୟ କଲେ ଲୋକସମାଜରେ ପ୍ରଶଂସା ଓ ଅର୍ଥ ବୃଦ୍ଧି ଶୁଭଫଳ ହୁଏ ଏବଂ ଅସତ୍କାର୍ଯ୍ୟ, ଅର୍ଥାତ୍ ଲୋକସମାଜରେ ଅତ୍ୟାଚାର କଲେ ନିନ୍ଦା ଓ ରାଜଦଣ୍ଡାଦି ଅଶୁଭ ଫଳ ଫଳେ । ଅତଏବ ବୈଦିକ ପ୍ରାୟ ଲୌକିକରେ ମଧ୍ୟ ଶୁଭାଶୁଭ ଫଳାନୁସାରେ ଧର୍ମାଧର୍ମ ହୁଏ ବୋଲି ଜାଣିବ ।୧୨।

ଦୈବବଶରୁ ଶାସ୍ତ୍ରୋକ୍ତ କର୍ମାନୁଯାୟୀ ନିଜର ଜୀବନ ରକ୍ଷାର୍ଥେ ଏବଂ ପିତା ମାତା କିମ୍ବା ପ୍ରଭୁ ପ୍ରଭୃତି ପ୍ରତିପାଳକମାନଙ୍କର ଅନୁରୋଧରେ ଅନ୍ୟାୟ କାର୍ଯ୍ୟ କଲେ ସୁଦ୍ଧା ଶୁଭଫଳ ଘଟିବ ।୧୩।

ପରନ୍ତୁ ଏହି ପୃଥିବୀରେ ଶ୍ୟେନ ଯାଗାଦି ଅଭିଚାର ନିସ୍ଫଳ ପ୍ରାୟ ଯାହା ଅବିଳମ୍ବରେ ଫଳେ, ଅଥବା ଯାହା ଉତ୍ତର କାଳରେ ଫଳିବ ବୋଲି ସନ୍ଦେହାସ୍ପଦ ହୋଇପାରେ, ତାଦୃଶ ଅନିଷ୍ଟକର କାର୍ଯ୍ୟକୁ କେବଳ

ନୋକାନୁରୋଧରେ କୌଣସି ବ୍ୟକ୍ତିକୁ ଲକ୍ଷ୍ୟକରି ଅନୁଷ୍ଠାନ କଲେ ଚତୁର୍ଥା ପ୍ରାୟଶ୍ଚିତ୍ତାର୍ଦ୍ଧ ହେବେ ।୧୫।

ଯଦି କୌଣସି ବ୍ୟକ୍ତି କ୍ରୋଧ ବା ମୋହର ବଶବର୍ତ୍ତୀ ହୋଇ ମନର ପ୍ରିୟ କିମ୍ବା ଅପ୍ରୀତିକର କାର୍ଯ୍ୟାନୁଷ୍ଠାନ କରେ, ତାହାହେଲେ ସେ ଶାସ୍ତ୍ରାନ୍ତରୋକ୍ତ ପ୍ରମାଣ ଓ ଯୁକ୍ତି ଅନୁସାରେ ଦେହ ଶୋଷଣ କରି ଉପବାସାଦି ପ୍ରାୟଶ୍ଚିତ୍ତ କରି ଶୁଦ୍ଧ ହୁଏ । କିମ୍ବା ହବିଷାନ୍ନ ଭୋଜନ, ପବିତ୍ର ମନ୍ତ୍ର ଜପ ଓ ତୀର୍ଥ ପର୍ଯ୍ୟଟନାଦି କଲେ ମଧ୍ୟ ଉକ୍ତ ପାପରୁ ମୁକ୍ତ ହୋଇପାରେ ।୧୬।

ରାଜା ଯଦି ଅଜ୍ଞାନ କିମ୍ବା କ୍ରୋଧର ବଶବର୍ତ୍ତୀ ହୋଇ ଦଣ୍ଡ ପ୍ରଦାନ କରନ୍ତି । ତାହାହେଲେ ସେ ଏକରାତ୍ରି ଉପବାସ କଲେ ଶୁଦ୍ଧି ଲାଭକରେ ଏବଂ ଯଦି କ୍ରୋଧ କିମ୍ବା ଅଜ୍ଞାନବଶତଃ ସ୍ୱେଚ୍ଛାରେ ଦଣ୍ଡ ପ୍ରଦାନ କରନ୍ତି ତାହାହେଲେ ତ୍ରିରାତ୍ର ଉପବାସ କଲେ ଶୁଦ୍ଧି ଲାଭ କରିପାରିବେ ।୧୭।

କୌଣସି ବ୍ୟକ୍ତି ଯଦି ପୁତ୍ରାଦି ମରଣଜନିତ ଶୋକ ହେତୁରୁ ଉଦ୍‌ବନ୍ଧନାଦିଦ୍ୱାରା ଆତ୍ମହତ୍ୟାରେ ପ୍ରବୃତ୍ତ ହୋଇ ସୁଦ୍ଧା କୃତକାର୍ଯ୍ୟ ନ ହୁଏ, ତାହାହେଲେ ତ୍ରିରାତ୍ର ଉପବାସ କରି ଆତ୍ମହତ୍ୟା ପ୍ରବୃତ୍ତିଜନିତ ପାପରୁ ମୁକ୍ତ ହେବ ବୋଲି ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ଅଛି ।୧୮।

ଯେଉଁମାନେ ସର୍ବତୋଭାବରେ ବ୍ରାହ୍ମଣତ୍ୱାଦି ଜାତି ଧର୍ମ, ଗାର୍ହସ୍ଥ୍ୟାଦି ଆଶ୍ରମ ଧର୍ମ, ଜନ୍ମଭୂମି ପ୍ରଭୃତି ଦେଶାଚାର ଏବଂ କୁଳାଚାର ଧର୍ମକୁ ପରିତ୍ୟାଗ କରନ୍ତି, ସେମାନଙ୍କର ପ୍ରାୟଶ୍ଚିତ୍ତ କରିବାରେ ଅଧିକାର ନାହିଁ ।୧୯।

ଆମ୍ଭେ ଯେଉଁସବୁ ବ୍ୟବସ୍ଥା କଥା କହିଲୁଁ ତାହା ଏହିପରି; କିନ୍ତୁ ଧର୍ମ ବିଷୟରେ କୌଣସି ସଂଶୟ ଉପସ୍ଥିତ ହେଲେ ଦଶଜଣ ବେଦ ଶାସ୍ତ୍ରଜ୍ଞ କିମ୍ବା ତିନିଜଣ ଧର୍ମ ଶାସ୍ତ୍ର ବ୍ୟବସାୟୀ ପଣ୍ଡିତ ଯାହା କହିବେ, ତାହାକୁ କେବଳ ଧର୍ମ ବୋଲି ଗ୍ରହଣ କରିବାକୁ ହେବ ।୨୦।

ବୃଷ, କ୍ଷୁଦ୍ର ପିପିଲିକା, ଶ୍ଳେଷ୍ମାତକ, ମୃତ୍ତିକା ଏବଂ ବିଷ ଏହି କେତୋଟି ପଦାର୍ଥ ଦ୍ୱିଜାତିମାନଙ୍କର ଅଭକ୍ଷ୍ୟ ଅଟେ । ଶଳ୍କହୀନ ମତ୍ସ୍ୟ ଏବଂ କଚ୍ଛପ ବ୍ୟତୀତ ମଣ୍ଡୂକ ପ୍ରଭୃତି ଅନ୍ୟାନ୍ୟ ଚତୁଷ୍ପଦ ଜଳଜନ୍ତୁମାନେ ବ୍ରାହ୍ମଣମାନଙ୍କର ଅଭକ୍ଷ୍ୟ ଅଟନ୍ତି । ସଜଳ ସନ୍ତରଣ କ୍ଷମ ବକ, ଚକ୍ରବାକ,

ସୁପର୍ଣ୍ଣ: ଭାସ, ହଂସ, କାକ, ମଦ୍‌ଗୁ, ଗୃଧ୍ର, ଶ୍ୟେନ, ପେଚକ ପ୍ରଭୃତି ପକ୍ଷୀମାନେ ଭକ୍ଷଣୀୟ ନୁହଁନ୍ତି । ଏତଦ୍ଭିନ୍ନ ଦଂଷ୍ଟ୍ରୀ, ମାଂସାଶୀ, ଚଞ୍ଚୁଷ୍ପାଦ ଓ ପକ୍ଷୀମାନେ ମଧ୍ୟ ଅଭକ୍ଷ୍ୟ ଅଟନ୍ତି । ଯେଉଁ ପକ୍ଷିମାନଙ୍କର ଜଳସ୍ଥ ଭାଗରେ ତନ୍ତୁ ଅଛି ଏବଂ ଯେଉଁ ପକ୍ଷୀସବୁ ଚଞ୍ଚୁଦର୍ନ୍ତବିଶିଷ୍ଟ ସେମାନଙ୍କର ମାଂସ ମଧ୍ୟ ଅଭକ୍ଷ୍ୟ ।୨୪।

ମାନୁଷୀ, ଏଡ଼କା ଅର୍ଥାତ୍ ମେଷ ସ୍ତ୍ରୀ, ଗର୍ଦ୍ଦଭୀ, ଉଷ୍ଟ୍ରୀ ଓ ମୃଗୀ ପ୍ରଭୃତି ପଶୁମାନଙ୍କର ଦୁଗ୍ଧ ବ୍ରାହ୍ମଣମାନଙ୍କର ଅପେୟ ଅଟେ । ନବ ପ୍ରସୂତ ଗୋ-ଦୁଗ୍ଧ ମଧ୍ୟ ଦଶଦିନ ଅତୀତ ନ ହେଲେ ପାନ କରିବା କର୍ତ୍ତବ୍ୟ ନୁହେଁ ।୨୫।

ପ୍ରେତୋଦ୍ଦେଶ୍ୟରେ ପ୍ରଦତ୍ତ ନବପ୍ରସୂତା ସ୍ତ୍ରୀଲୋକର ପାକ କରିଥିବା ଅନ୍ନ ଏବଂ ଦଶଦିନ ମଧ୍ୟରେ ନବପ୍ରସୂତା ଧେନୁ ଦୁଗ୍ଧ ପ୍ରସୂତ ପାୟସ ପ୍ରଭୃତିଙ୍କ ମଧ୍ୟ ଭୋଜନ କରିବା ଉଚିତ ନୁହେଁ ।୨୬।

ରାଜାନ୍ନ ଭୋଜନରେ ତେଜହାନି ହୁଏ, ଶୂଦ୍ରାନ୍ନ ଭୋଜନରେ ବ୍ରହ୍ମବର୍ଚ୍ଚସ ଅର୍ଥାତ୍ ବେଦାଧ୍ୟୟନଜନିତ ପ୍ରତିଭା କ୍ଷୟ ହୋଇଯାଏ ଏବଂ ସୁବର୍ଣ୍ଣକାର ଓ ଅବୀରସ୍ତ୍ରୀର ଅନ୍ନଭୋଜନ କଲେ ଆୟୁକ୍ଷୟ ହୁଏ ।୨୭।

ବାର୍ଦ୍ଧୁଷିକ ଅର୍ଥାତ୍ ବୃଦ୍ଧିଜୀବୀର ଅନ୍ନ ବିଷ୍ଠାସ୍ୱରୂପ ଏବଂ ଗଣିକାର ଅନ୍ନଭୋଜନ କଲେ ବୀର୍ଯ୍ୟହ୍ରାସ ହୁଏ । ଯେଉଁମାନେ ନିଜର ପତ୍ନୀ ପ୍ରଭୃତି ଦୁଷ୍ଟଚାରୀ ସ୍ତ୍ରୀମାନଙ୍କର ଉପପତିକୁ ଦେଖି ମଧ୍ୟ କ୍ଷମା କରନ୍ତି ଏବଂ ଯେଉଁମାନେ ସ୍ତ୍ରୀ ପରତନ୍ତ୍ର, ସେମାନଙ୍କର ଅନ୍ନଭୋଜନ କରିବା ନିଷିଦ୍ଧ ।୨୮।

ଅଗ୍ନି ସୋମୀୟ ମେଦ ହୋମର ପୂର୍ବରୁ ପାଚିତ ହୋଇଥିବା ବ୍ୟକ୍ତିଙ୍କର ଅନ୍ନଭୋଜନ କରିବା ନିଷିଦ୍ଧ । ସୋମରସ ବିକ୍ରୟୀ, ଲୁବ୍ଧ, ତକ୍ଷ, ଚର୍ମକାର, ପୁଂଶ୍ଚଳୀ, ରଜକ, ଶକୁନ୍ତକ ଏବଂ ନଗରରକ୍ଷକ, ଏମାନଙ୍କର ଅନ୍ନକୁ ଅଭକ୍ଷ୍ୟ ବୋଲି ଜାଣିବ । ଏହାପରି ପରିବର୍ତ୍ତି, ସୂତ, ପାଠକ ଓ ଦ୍ୟୁତ କ୍ରୀଡ଼ୋପଜୀବୀ ଏମାନଙ୍କର ଅନ୍ନ ଅଗ୍ରାହ୍ୟ ଅଟେ । ଗଣାନ୍ନ, ଗ୍ରାମ ଦୂଷିତ ବ୍ୟକ୍ତି ଓ ରଙ୍ଗ-ସ୍ତ୍ରୀ-ଜୀବୀ ବ୍ୟକ୍ତିଙ୍କର ଅନ୍ନ ମଧ୍ୟ ଗ୍ରହଣ କରିବା ଉଚିତ ନୁହେଁ । ପର୍ଯ୍ୟୁଷିତ ଏବଂ ବାମ ହସ୍ତ-ଦ୍ୱାରା ଆହୃତ ଭୋଜନସାମଗ୍ରୀ ଭକ୍ଷଣ କରିବା ବିଧେୟ ନୁହେଁ ।୩୧।

ଯେଉଁମାନେ ଅମ୍ଳ ପରିବାରମାନଙ୍କୁ ବଞ୍ଚିତ କରି ନିଜ ଭକ୍ଷଣାର୍ଥ ଖାଦ୍ୟସାମଗ୍ରୀ ରକ୍ଷା କରନ୍ତି, ସେମାନଙ୍କର ଅନ୍ନ ଏବଂ ସ୍ୱୀୟ ସ୍ପୃଷ୍ଟ ଓ ଉଚ୍ଛିଷ୍ଟାନ୍ନ ଅଭକ୍ଷ୍ୟ ଅଟେ । ପିଷ୍ଟକ, ଇକ୍ଷୁ, ଦୁଗ୍ଧ ଓ ଶାକ ବିକୃତ ଭାବ ଧାରଣ କଲେ ତାହା ପରିତ୍ୟାଜ୍ୟ ହୁଏ । ଶକ୍ତୁ, ଭୃଷ୍ଟ, ଯବ ଏବଂ ଦଧି ମିଶ୍ରିତ ଶକ୍ତୁ ଦୀର୍ଘକାଳ ରହିଗଲେ ଅଭୋକ୍ତବ୍ୟ ହୁଏ । ପାୟସ, କୃଶରାନ୍ନ ଅର୍ଥାତ୍ ତିଳ ମିଶ୍ରିତ ଅନ୍ନ, ମାଂସ ଏବଂ ପିଷ୍ଟକ ଦେବୋଦ୍ଦେଶ୍ୟରେ ପ୍ରସ୍ତୁତ ନ ହୋଇଥିଲେ ଭକ୍ଷଣୀୟ ହୁଏ ନାହିଁ ।୩୩।

ହେ ମହାରାଜ ! ଗୃହମେଧୀ ବ୍ରାହ୍ମଣମାନଙ୍କର ଯାହା ଅଭକ୍ଷ୍ୟ ଏବଂ ଅପେୟ ତାହା ତୁମ୍ଭଠାରେ କୀର୍ତ୍ତନ କଲି । ପରନ୍ତୁ ଦେବ, ଋଷି, ପିତୃ, ଅତିଥି ଓ ପରିଚ୍ୟାତ୍ମକ ଗୃହସେବ୍ୟ ଦେବତାମାନଙ୍କର ଅର୍ଚ୍ଚନାପୂର୍ବକ ଅବଶିଷ୍ଟ ଦ୍ରବ୍ୟସବୁ ଭୋଜନ କରିବା ବିଧେୟ । ଏହିପରି ଆଚରଣ କଲେ ଗୃହସ୍ଥ ମାନବ ପ୍ରବ୍ରାଜିତ ଚତୁର୍ଥାଶ୍ରମୀପ୍ରାୟ ଗୃହରେ ନିଷ୍ପାପ ହୋଇ ରହିପାରେ । ଅର୍ଥାତ୍ ସ୍ତ୍ରୀ ସହିତ ଉଞ୍ଛିଶିଳ ସଦାଚାରସମ୍ପନ୍ନ ହୋଇ ଗୃହୀ ବ୍ୟକ୍ତି ଗୃହାଶ୍ରମରେ ଥିଲେ ସୁଦ୍ଧା ଧର୍ମ ବଳରେ ସମର୍ଥ ହୋଇ ପାରିବ । ଧାର୍ମିକ ବ୍ୟକ୍ତିଙ୍କର ଯଶୋଲାଭନିମିତ୍ତ କିମ୍ବା ଭୟବଶତଃ ଅଥବା ଉପକାରୀ ବ୍ୟକ୍ତିଙ୍କୁ ଦାନ କରିବା କର୍ତ୍ତବ୍ୟ ନୁହେଁ । ଅପିଚ ନୃତ୍ୟଗୀତ, ବ୍ୟବସାୟୀ, ଭଣ୍ଡ, ମତ୍ତ, ଉନ୍ମତ୍ତ, ଚୋର, ନିନ୍ଦକ, ମୂକ, ବିବର୍ଣ୍ଣ, ଅଙ୍ଗହୀନ, ବାମନ, ଦୁର୍ଜନ, ଦୁଷ୍କୁଳୋଦ୍ଭବ, ଅପକାରୀ ଏବଂ ଯେଉଁମାନେ ବ୍ରହ୍ମଚର୍ଯ୍ୟାଦି ବ୍ରତଦ୍ୱାରା ଅସଂସ୍କୃତ ସେମାନଙ୍କୁ ଦାନ କରିବା ଉଚିତ ନୁହେଁ ।୩୮।

ଶୋତ୍ରିୟ ବ୍ୟତୀତ ବେଦଜ୍ଞାନଶୂନ୍ୟ ବ୍ରାହ୍ମଣଙ୍କୁ ଦାନ କରିବା ନିଷେଧ । କାରଣ ତାଦୃଶ ଦାନ ଏବଂ ପ୍ରତିଗ୍ରହ ଅନ୍ୟାଯ୍ୟ ବୋଲି କଥିତ ଅଛି । ସୁତରାଂ ତଦ୍ୱାରା ଦାତା ଏବଂ ଗ୍ରହୀତା ଉଭୟଙ୍କର ଅନର୍ଥ ଘଟିଥାଏ ।

ଯେପରି କିମ୍ବା ଶିଳା ଅବଲମ୍ବନପୂର୍ବକ ସମୁଦ୍ର ତରଣରେ ପ୍ରବୃତ୍ତ ହୋଇଥିବା ବ୍ୟକ୍ତିଙ୍କର ନିଶ୍ଚୟ ଜଳମଜ୍ଜନ ହୁଏ, ତଦ୍ରୂପ ଦାତା ଏବଂ ପ୍ରତିଗ୍ରହୀତା ପାପାର୍ଣ୍ଣବରେ ନିମଗ୍ନ ହୁଅନ୍ତି ।୪୦।

ଆର୍ଦ୍ର କାଷ୍ଠ ସମାଚ୍ଛନ୍ନ ଅଗ୍ନି ସଦୃଶ ତପସ୍ୟା, ସ୍ୱାଧ୍ୟାୟ ଏବଂ ସଚ୍ଚରିତହୀନ ବ୍ରାହ୍ମଣ ତେଜୋହୀନ ଅଟନ୍ତି । ଅତଏବ ତାହାଙ୍କୁ ଦାନ କରିବା ନିଷ୍ଫଳ ।୪୧।

ଯେପରି କପାଳ ପାତ୍ରସ୍ଥିତ ଜଳ ଏବଂ କୁକ୍କୁର ଚର୍ମନିର୍ମିତ କୋଷସ୍ଥ ଦୁଗ୍ଧ ଆଧାରର ଦୋଷରେ ଅଶୁଚି ହୁଏ । ସେହିପରି ସଦାଚାର-ବିହୀନ ବ୍ରାହ୍ମଣଠାରେ ବେଦ ସୁଦ୍ଧା ପ୍ରତିହତପ୍ରାପ୍ତ ହୁଏନାହିଁ ।୪୬।

ମନ୍ତ୍ରହୀନ ଅବ୍ରତୀ ଅଶାସ୍ତ୍ରଜ୍ଞ ଏବଂ ଅସୂୟାବିଶିଷ୍ଟ ବ୍ରାହ୍ମଣମାନଙ୍କୁ ଦୟାମାୟାର ବଶବର୍ତ୍ତୀ ହୋଇ ଦାନ କରଯାଇପାରେ । ଅର୍ଥାତ୍ ଦୀନ, କ୍ଷୁଧା, ପୀଡ଼ିତ ଆତୁର; ମନ୍ତ୍ରହୀନ, ଓ ଅବ୍ରତ ପ୍ରଭୃତି ବ୍ୟକ୍ତିଙ୍କୁ ଦାନ କରିବାକୁ ହେଲେ ଏହା ଶିଷ୍ଟାଚାର କମ୍ବା ଧର୍ମ ଏପରି ବିଚାର ଦାନ କରିବା କର୍ତ୍ତବ୍ୟ ନୁହେଁ । ମନ୍ତ୍ରାଦିଦ୍ୱାରା ଉତ୍ସର୍ଗ ନ କରି କେବଳ ଦୟା ପ୍ରଯୁକ୍ତ ଦାନ କରଯାଇପାରେ । ବେଦଜ୍ଞାନ ବର୍ଜ୍ଜିତ ବ୍ରାହ୍ମଣଙ୍କୁ ଦାନ କଲେ ତାହା ନିଷ୍ଫଳ ହୁଏ ବୋଲି ଶାସ୍ତ୍ରରେ କଥିତ ଅଛି । ବିଶେଷତଃ ଅପାତ୍ରରେ ଦାନ କଲେ ଦାତାଙ୍କୁ ଦୂଷିତ ହେବାକୁ ହୁଏ, ଏଥିରେ ସନ୍ଦେହ ନାହିଁ ।୪୫।

କାଷ୍ଠମୟ ହସ୍ତୀ, ଚର୍ମମୟ ମୃଗ ଓ ବେଦଜ୍ଞାନବିହୀନ ବ୍ରାହ୍ମଣ ଏହି ତିନିଜଣ ନାମଧାରୀ ମାତ୍ର । ଏମାନଙ୍କଦ୍ୱାରା କୌଣସି କାର୍ଯ୍ୟ ସୁଦ୍ଧା ସମ୍ପନ୍ନ ହୁଏ ନାହିଁ, ଯେପରି ନପୁଂସକ ପୁରୁଷଠାରେ ସ୍ତ୍ରୀମାନଙ୍କର ଏବଂ ବନ୍ଧ୍ୟାଗୋଠାରେ ପୁଂଗୋମାନଙ୍କର କୌଣସି ନିଷ୍ପନ୍ନ ହୁଏ ନାହିଁ, ଯେପରି ପକ୍ଷବର୍ଜ୍ଜିତ ପକ୍ଷୀ, ଶସ୍ୟହୀନ ଧାନ୍ୟ, ଜଳବିହୀନ କୂପ, ଏମାନଙ୍କଦ୍ୱାରା କାହାରି ଉପକାର ନ ହୁଏ, ସେହିପରି ମନ୍ତ୍ରଜ୍ଞାନ ଶୂନ୍ୟ, ବ୍ରାହ୍ମଣଙ୍କୁ ଦାନ କଲେ ଭସ୍ମରେ ଆହୁତି ପ୍ରଦାନ ନ୍ୟାୟ, ସମସ୍ତ ନିଷ୍ଫଳ ହୁଏ ।୪୮।

ମୂର୍ଖ ଶତ୍ରୁ ସ୍ୱରୂପ, କାରଣ ସେ ଅର୍ଥାପହାରୀ ଏବଂ ଦେବ ଓ ପିତୃଗଣଙ୍କ ଉଦ୍ଦେଶ୍ୟରେ ଦତ୍ତ ହୋଇଥିବା ହବ୍ୟକବ୍ୟର ବିନାଶକ ଅଟେ । ମୂର୍ଖର ଇହଲୋକ କମ୍ବା ପରଲୋକ କେଉଁଠାରେ ସୁଦ୍ଧା ଶ୍ରେୟ ହୁଏ ନାହିଁ ।୪୯।

ବ୍ୟାସଦେବ କହିଲେ—ହେ ଭରତଶ୍ରେଷ୍ଠ ଯୁଧିଷ୍ଠିର ! ତୁମ୍ଭେ ଯାହା ପ୍ରଶ୍ନ କରିଥିଲ, ଆମ୍ଭେ ସଂକ୍ଷେପରେ ତତ୍ସମସ୍ତ ଯଥାବୃତ୍ତ କୀର୍ତ୍ତନ କଲୁଁ । ଏହି ମହତ୍ ବୃତ୍ତାନ୍ତ ଆର୍ଯ୍ୟଗଣଙ୍କର ଅବଶ୍ୟ ଶ୍ରୋତବ୍ୟ ବୋଲି ଜାଣିବ ।୫୦।

———

# ଅଧ୍ୟାୟ—୩୭

ଯୁଧିଷ୍ଠିର କହିଲେ—ହେ ଋଷିସତ୍ତମ ଭଗବାନ୍ ! ବ୍ରାହ୍ମଣାଦି ଚାରିବର୍ଣ୍ଣର ସମଗ୍ର ଧର୍ମ୍ମ ବିଶେଷତଃ ରାଜଧର୍ମ ଓ ଆପତ୍କାଳ ଉପସ୍ଥିତ ହେଲେ ମନୁଷ୍ୟର କପରି ମତି ପ୍ରୟୋଗକରିବା କର୍ତ୍ତବ୍ୟ ଏବଂ ଧର୍ମ ସଂଯୁକ୍ତ ପଥକୁ ଲକ୍ଷ୍ୟ କରି କପରି ବା ପୃଥିବୀ ଜୟ କରିପାରିବି ଏହିସବୁ ବୃତ୍ତାନ୍ତ ବିସ୍ତାରପୂର୍ବକ ଶ୍ରବଣ କରିବାକୁ ଇଚ୍ଛା କରୁଅଛି ।୨।

ଭକ୍ଷ୍ୟ, ଅଭକ୍ଷ୍ୟ, ବିବର୍ଜିତା ଅର୍ଥାତ୍ ଉପବାସାତ୍ମିକା ସୁମହତ କୌତୂହଳ ପ୍ରବାହକ ଆପଣଙ୍କର କଥିତ ପ୍ରାୟଶ୍ଚିତ କଥା ଆମ୍ଭର ଅନ୍ତଃକରଣକୁ ଅତିଶୟ ଆନନ୍ଦିତ କରୁଅଛି ।୩।

ଧର୍ମାଚରଣ ଏବଂ ରାଜ୍ୟପାଳନ ଏହି ଦୁଇ ପଦାର୍ଥର ସର୍ବଦା ପରସ୍ପର ବିରୁଦ୍ଧଭାବ ଅଛି । ଅତଏବ ଏକ ବ୍ୟକ୍ତିଦ୍ୱାରା ଉଲ୍ଲିଖିତ ପରସ୍ପର ବିରୁଦ୍ଧଭାବାପନ୍ନ ଉଭୟ କାର୍ଯ୍ୟ କି ପ୍ରକାରେ ଅନୁଷ୍ଠିତ ହେବ ? ଏହି ଚିନ୍ତା କରି ଆମ୍ଭର ଚିତ୍ତ ସର୍ବଦା ବିମୋହିତ ହେଉଅଛି ।୪।

ବୈଶମ୍ପାୟନ କହିଲେ—ହେ ମହାରାଜ ଜନମେଜୟ ! ଭଗବାନ ବେଦବିଦାମ୍ବର ବ୍ୟାସଦେବ ଧର୍ମରାଜଙ୍କର ଏହିସବୁ ବାକ୍ୟ ଶ୍ରବଣ କରି ସର୍ବଜ୍ଞାନସମ୍ପନ୍ନ ପୁରାତନ ଋଷି ନାରଦଙ୍କ ପ୍ରତି ଦୃଷ୍ଟିପାତ ପୂର୍ବକ ଯୁଧିଷ୍ଠିରଙ୍କୁ କହିଲେ—ହେ ମହାରାଜ ! ଯଦି ତୁମ୍ଭର ସମଗ୍ରରୂପେ ଧର୍ମ-ତତ୍ତ୍ୱକୁ ଜାଣିବାର ଇଚ୍ଛା ଅଛି ତେବେ କୁରୁ ପିତାମହ ବୃଦ୍ଧ ଭୀଷ୍ମଙ୍କ ନିକଟକୁ ଗମନ କର ।୬।

ଧର୍ମ ରହସ୍ୟ ବିଷୟରେ ତୁମ୍ଭର ମନରେ ଯାହା ସନ୍ଦେହ ଅଛି ତତ୍‌ସମସ୍ତ ସର୍ବଧର୍ମାଭିଜ୍ଞ ସର୍ବଜ୍ଞ ଭୀଷ୍ମ ଛେଦନ କରି ପାରିବେ । ୭ ।

ହେ ମହାରାଜ ! ଯେ ସ୍ୱର୍ଗଲୋକରେ ତ୍ରିପଥଗାମିନୀ ହୋଇ ହୋଇ ପ୍ରବାହିତା ହେଉଅଛନ୍ତି, ସେହି ଗଙ୍ଗାଦେବୀ ଯାହାକୁ ପ୍ରସବ କରିଅଛନ୍ତି ଯେ ଏକ କାଳରେ ଇନ୍ଦ୍ର ପ୍ରମୁଖ ଦେବର୍ଷିଗଣଙ୍କର ସାକ୍ଷାତ୍ ଦର୍ଶନଲାଭ କରି ନାନା ଉପଚାରଦ୍ୱାରା ସେମାନଙ୍କ ଅର୍ଚ୍ଚନାପୂର୍ବକ ସମସ୍ତ ରାଜନୀତି ବିଦ୍ୟାଅଧ୍ୟୟନ କରିଥିଲେ । ଦୈତ୍ୟଗୁରୁ ଶୁକ୍ର ଓ ଦେବଗୁରୁ ବୃହସ୍ପତି ଯେଉଁସବୁ ଶାସ୍ତ୍ର ଓ ଯେଉଁ ଯେଉଁ ଧର୍ମକୁ ଅବଗତ ଅଛନ୍ତି,

ସେହି କୁରୁସତ୍ତମ ଭୀଷ୍ମ ତତ୍ତ୍ୱସମସ୍ତ ସେମାନଙ୍କଠାରୁ ପ୍ରାପ୍ତ ହୋଇଅଛନ୍ତି ।୧୦।

ବିଶେଷତଃ ସେହି ମହାବାହୁ ଭୀଷ୍ମ ଚରିତ ବ୍ରତ ହୋଇ ଭୃଗୁକୁଳନନ୍ଦନ ଚ୍ୟବନ ଓ ବଶିଷ୍ଠଙ୍କଠାରୁ ସାଙ୍ଗୋପାଙ୍ଗ ସମସ୍ତ ବେଦ ଅଧ୍ୟୟନ କରିଅଛନ୍ତି ।୧୧।

ପୂର୍ବେ ସେ ଅଧ୍ୟାତ୍ମ ବିଦ୍ୟାର ସାର ତତ୍ତ୍ୱଜ୍ଞ ବ୍ରହ୍ମାଙ୍କର ଜ୍ୟେଷ୍ଠପୁତ୍ର ପ୍ରଦୀପ୍ତତେଜା ସନତ୍କୁମାର ଋଷିଙ୍କଠାରୁ ସମସ୍ତ ଅଧ୍ୟାତ୍ମବିଦ୍ୟା ଅବଗତ ହୋଇଥିଲେ ଏବଂ ମାର୍କଣ୍ଡେୟ ଋଷିଙ୍କ ମୁଖରୁ ସମଗ୍ର ଯତି ଧର୍ମକୁ ଶ୍ରବଣ କରିଥିଲେ । ଏତଦ୍‌ବ୍ୟତୀତ ସେହି ପୁରୁଷଶ୍ରେଷ୍ଠ ଭୀଷ୍ମ, ଇନ୍ଦ୍ର ଓ ପରଶୁରାମଙ୍କଠାରୁ ସମସ୍ତ ଅସ୍ତ୍ରବିଦ୍ୟା ଶିକ୍ଷା କରିଥିଲେ ।୧୩।

ଯେ ମନୁଷ୍ୟ କୁଳରେ ଜନ୍ମଗ୍ରହଣ କରି ସୁଦ୍ଧା ଇଚ୍ଛା ମୃତ୍ୟୁକୁ ଲାଭ କରି ଅଛନ୍ତି ଏବଂ ଅପତ୍ୟବିହୀନ ହୋଇ ସୁଦ୍ଧା ଯାହାଙ୍କର ପୁଣ୍ୟ ଲୋକମାନ ଊର୍ଦ୍ଧ୍ୱରେ ବିଶ୍ରୁତ ହୋଇଅଛି, ପବିତାତ୍ମା ବ୍ରହ୍ମର୍ଷିଗଣ ଯାହାଙ୍କର ନିତ୍ୟ ସଭାସଦ ହୋଇଥାନ୍ତି ଏବଂ ଜ୍ଞାନ ଓ ଜ୍ଞେୟ ବିଷୟରେ ଯାହାଙ୍କର କିଛି ସୁଦ୍ଧା ଅବିଦିତ ନାହିଁ, ସେହି ସୂକ୍ଷ୍ମଧର୍ମାର୍ଥ ତତ୍ତ୍ୱଜ୍ଞ ଧର୍ମ-ଜ୍ଞାନ ବିଶାରଦ ଭୀଷ୍ମ ତୁମ୍ଭଙ୍କୁ ଉପଦେଶ କରିବେ । ପରନ୍ତୁ ସେହି ମହାତ୍ମାଙ୍କର ଜୀବନ ବିସର୍ଜ୍ଜନ ହେବାପୂର୍ବରୁ ତୁମ୍ଭେ ତାହାଙ୍କଠାକୁ ଗମନ କର ।୧୬।

ଏହିପରି କଥିତହୋଇ ମହାମତି ଦୀର୍ଘଦର୍ଶୀ ଯୁଧିଷ୍ଠିର ଜ୍ଞାନ-ଗଣାଗ୍ରଗଣ୍ୟ ସତ୍ୟବତୀସୁତ ବ୍ୟାସଦେବଙ୍କୁ କହିଲେ ।୧୭।

ଯୁଧିଷ୍ଠିର କହିଲେ ଆମ୍ଭେ ଲୋମହର୍ଷଣକର ସୁମହତ ଜ୍ଞାତି ହତ୍ୟାକରି ସର୍ବଲୋକଙ୍କଠାରେ ପୃଥିବୀନାଶକ ଓ ଅପରାଧୀ ବୋଲି ଗଣ୍ୟ ହୋଇଅଛୁଁ । ବିଶେଷତଃ ପିତାମହ ଭୀଷ୍ମଦେବ ସରଳଭାବରେ ଯୁଦ୍ଧ କରୁଥିଲେ ସୁଦ୍ଧା ଆମ୍ଭେ କପଟ ବ୍ୟବହାରଦ୍ୱାରା ତାହାଙ୍କୁ ନିପାତିତ କରିଅଛୁଁ । ଅତଏବ ଆମ୍ଭେ କ'ଣ ବୋଲି ତାହାଙ୍କଠାକୁ ଧର୍ମ କଥା ପଚାରିବାକୁ ଯିବୁଁ ।୧୯।

ବୈଶମ୍ପାୟନ କହିଲେ— ନୃପଶ୍ରେଷ୍ଠ ଯୁଧିଷ୍ଠିରଙ୍କର ଏହି କଥା ଶ୍ରବଣ କରି ଯଦୁକୁଳଶ୍ରେଷ୍ଠ ମହାମତି ବାସୁଦେବ ଚାତୁର୍ବର୍ଣ୍ଣ୍ୟ ପ୍ରଜାଙ୍କର ହିତାକାଙ୍‌କ୍ଷୀ ହୋଇ କହିଲେ ।୨୦।

ବାସୁଦେବ କହିଲେ—ହେ ନୃପୋତ୍ତମ ! ଶୋକବଶବର୍ତ୍ତୀରେ ଏପର୍ଯ୍ୟନ୍ତ ସୁଦ୍ଧା ଆଜ ଏପରି ନିତାନ୍ତ ଶୋକ ପ୍ରକାଶ କରିବା ଉଚିତ ନୁହେଁ । ଭଗବାନ ବ୍ୟାସଦେବ ଯାହା କହିଲେ, ତଦନୁଷ୍ଠାନରେ ଯତ୍ନପର ହେଉନ୍ତୁ ।୨୧।

ଯେପରି ନିଦାଘ କାଳର ଅନ୍ତେ ଜଳାର୍ଥୀ ପ୍ରାଣିମାନେ ପର୍ଜ୍ଜନ୍ୟଙ୍କର ଉପାସନା କରନ୍ତି, ସେହିପରି ଏହି ମହାବଳ ଭବଦୀୟ ଭ୍ରାତୃଗଣ ଓ ବ୍ରାହ୍ମଣଗଣ ଆପଣଙ୍କର ଉପାସନା କରୁଅଛନ୍ତି ।୨୨।

ଯୁଦ୍ଧରେ ହତାବଶିଷ୍ଟ ରାଜାମାନେ ଓ କୁରୁଜାଙ୍ଗଳବାସୀ ରାଷ୍ଟ୍ରସ୍ଥ ଚତୁର୍ବର୍ଣ୍ଣ ପ୍ରଜାମାନେ ସଭାକୁ ସମାଗତ ହୋଇ ଅଛନ୍ତି । ଅତଏବ ଆପଣ ଏମାନଙ୍କର, ମହାତ୍ମା ବ୍ରାହ୍ମଣମାନଙ୍କର, ଅସ୍ମଦାଦି ସୁହୃଦବର୍ଗଙ୍କର ଏବଂ ଦ୍ରୌପଦୀଙ୍କର ଅନୁରୋଧରେ ଓ ମହାତେଜା ଗୁରୁ ବ୍ୟାସଦେବଙ୍କର ଆଦେଶାନୁସାରେ ଏହି ପ୍ରିୟ କାର୍ଯ୍ୟକୁ ଅନୁଷ୍ଠାନ କରନ୍ତୁ । ହେ ଶତ୍ରୁହନ୍! ଆପଣ ଭୀଷ୍ମଙ୍କଠାରୁ ଉପଦେଶ ଗ୍ରହଣ କଲେ ତଦ୍ଦ୍ୱାରା ଜଗତର ହିତ ସାଧିତ ହେବ ।୨୫।

ବୈଶମ୍ପାୟନ କହିଲେ—ନର ଶାର୍ଦ୍ଦୂଳ ମହାମତି ରାଜୀବଲୋଚନ ଯୁଧିଷ୍ଠିର କୃଷ୍ଣଙ୍କର ବାକ୍ୟ ଶ୍ରବଣ କରି ସମସ୍ତଲୋକଙ୍କର ହିତକାମନାରେ ସମୁତ୍ଥିତ ହେଲେ ।୨୬।

ଶ୍ରୀକୃଷ୍ଣ, ଅର୍ଜ୍ଜୁନ, ମହର୍ଷି ଦ୍ୱୈପାୟନ ଓ ଦେବସ୍ଥାନ ପ୍ରଭୃତି ଅନ୍ୟାନ୍ୟ ବହୁଳ ଋଷିମାନଙ୍କଦ୍ୱାରା ଅନୁନୀତ ଓ ପ୍ରବୋଧିତ ହୋଇ ଯୁଧିଷ୍ଠିର ମାନସିକ ଦୁଃଖ ଓ ସନ୍ତାପକୁ ପରିତ୍ୟାଗ କଲେ । ପାଣ୍ଡୁନନ୍ଦନ ମହାଯଶା ଯୁଧିଷ୍ଠିର ବେଦବାକ୍ୟ ଓ ତଦର୍ଥ ବସ୍ତୁର ଗ୍ରନ୍ଥରେ, ଅର୍ଥାତ୍ ମୀମାଂସା ଓ ନୀତି ଶାସ୍ତ୍ରାଦିରେ ଅତ୍ୟନ୍ତ ବିଶାରଦ ଥିଲେ । ଏହିନିମିତ୍ତ ସେ ତତ୍ସମସ୍ତ ଅର୍ଥକୁ ନିଶ୍ଚୟ କରି ଚିତ୍ତରେ ଶାନ୍ତିଲାଭ କଲେ ଏବଂ ନକ୍ଷତ୍ର ପରିବୃତ୍ତ ଚନ୍ଦ୍ରମାପ୍ରାୟ, ଋଷି ଓ ଭ୍ରାତୃବର୍ଗଙ୍କଦ୍ୱାରା ପରିବୃତ୍ତ ହୋଇ ଅନ୍ଧରାଜ ଧୃତରାଷ୍ଟ୍ରଙ୍କୁ ପୁରସ୍କୃତପୂର୍ବକ ହସ୍ତିନାପୁରକୁ ଗମନ କଲେ ।୩୦।

ଧର୍ମ୍ମଜ୍ଞ କୁନ୍ତୀନନ୍ଦନ ରାଜପୁର ପ୍ରବେଶେଚ୍ଛୁକ ହୋଇ ଅଗ୍ରେ ଦେବତା ଓ ସହସ୍ର ସହସ୍ର ବ୍ରାହ୍ମଣଙ୍କର ଅର୍ଚ୍ଚନା କଲେ ।୩୧।

ସେହି ସମୟରେ ଶୁଭ ଲକ୍ଷଣଯୁକ୍ତ ପାଣ୍ଡୁର ବର୍ଣ୍ଣ ଷୋଳଟି ବୃଷ ସଂଯୋଜିତ କମ୍ବଳ ଓ ଅଜିନ ସଂବୃତ ଏକଖଣ୍ଡ ଶୁଭ୍ରବର୍ଣ୍ଣ ରଥ ତତ୍‌ସ୍ଥାନକୁ ଆନୀତ ହେଲା । ଅନନ୍ତର ପବିତ୍ର ବେଦମନ୍ତ୍ରଦ୍ୱାରା ରଥଖଣ୍ଡିକ ସମର୍ଚ୍ଚିତ ହୁଅନ୍ତେ ଧର୍ମରାଜ ଯୁଧିଷ୍ଠିର, ସୋମ ବେଦ ଅମୃତମୟ ରଥରେ ଆରୋହଣ କରି ପ୍ରାୟ, ସେହି ରଥରେ ଆରୋହଣ କଲେ । ତାହାଙ୍କର ଆରୋହଣ ସମୟରେ ବନ୍ଦିମାନେ ଚତୁର୍ଦ୍ଦିଗରେ ସ୍ତୁତିପାଠ କରିବାକୁ ଆରମ୍ଭ କଲେ ! ଭୀମ ପରାକ୍ରମ ଭୀମସେନ ସାରଥ୍ୟ କାର୍ଯ୍ୟରେ ନିଯୁକ୍ତ ହୋଇ ରଶ୍ମି ଗ୍ରହଣ କଲେ ଏବଂ ଅର୍ଜ୍ଜୁନ କିରଣ-ଜାଲ ବିରାଜିତ ଶ୍ୱେତ ଛତ୍ରକୁ ଧାରଣ କଲେ ।୩୪।

ସେହି ରଥୋପରି ମୌକ୍ତିକମାଳ ପରିଶୋଭିତ ଶୁଭ୍ରବର୍ଣ୍ଣ ଛତ୍ର ଅର୍ଜ୍ଜୁନଙ୍କ କର୍ତ୍ତୃକ ଧୃତ ହେବାରୁ ବୋଧ ହେଲା ଯେ ନଭୋମଣ୍ଡଳରେ ତାରକାଗଣ ସମାକୀର୍ଣ୍ଣ ଖଣ୍ଡିଏ ଶୁଭ୍ରମେଘ ସମୁଦିତ ହୋଇଅଛି ।୩୫।

ଅନନ୍ତର ମାଦ୍ରୀନନ୍ଦନ ମହାବୀର ନକୁଳ ଓ ସହଦେବ ଚନ୍ଦ୍ର ରଶ୍ମି ସଦୃଶ ପ୍ରଭା ସମନ୍ୱିତ ନାନାରତ୍ନାଲଙ୍କୃତ ଶୁଭ୍ରବର୍ଣ୍ଣ ଚାମର ଦ୍ୱୟ ଧାରଣ କରି ଉଭୟ ପାର୍ଶ୍ୱରେ ସଞ୍ଚାଳନ କଲେ ।୩୬।

ଯେଉଁ ସମୟରେ ସେହି ପଞ୍ଚଭ୍ରାତା ବିବିଧ ଅଳଙ୍କାରରେ ଭୂଷିତ ହୋଇ ରଥାରୋହଣପୂର୍ବକ ହସ୍ତିନାପୁରକୁ ଗମନ କଲେ । ସେହି ସମୟରେ ଉକ୍ତ ରଥଖଣ୍ଡିକ ସମସ୍ତ ପ୍ରାଣିଗଣକର୍ତ୍ତୃକ ପଞ୍ଚଭୂତମୟ ଦେହ ରଥ ପ୍ରାୟ ଦୃଷ୍ଟ ହେଲା । ଅନନ୍ତର ଯୁଯୁତ୍ସୁ ମନଃ ସଦୃଶ ବେଗ-ଗାମୀ ଅଶ୍ୱ ସଂଯୋଜିତ ରଥରେ ଆରୋହଣପୂର୍ବକ ପାଣ୍ଡବାଗ୍ରଜ ଯୁଧିଷ୍ଠିରଙ୍କର ଅଗ୍ରଗାମୀ ହେଲେ ଏବଂ କୃଷ୍ଣ ସାତ୍ୟକିଙ୍କ ସହିତ ଶୈବ ଓ ସୁଗ୍ରୀବ ପ୍ରମୁଖ ଅଶ୍ୱଗଣ ଯୋଜିତ ହେମମୟ ଶୁଭ୍ର ରଥରେ ସମାରୂଢ଼ ହୋଇ କୌରବମାନଙ୍କର ଅନୁଗମନ କଲେ ।୩୯।

ଅନ୍ଧରାଜ ଧୃତରାଷ୍ଟ୍ର ଗାନ୍ଧାରୀଙ୍କ ସହିତ ଶିବିକାରେ ଆରୋହଣ କରି ଧର୍ମରାଜଙ୍କର ଆଗେ ଆଗେ ଗମନ କଲେ ।୪୦।

ତତ୍ପଶ୍ଚାତ କୁନ୍ତୀ, ଦ୍ରୌପଦୀ ଓ ଅପରାପର କୌରବ ସ୍ତ୍ରୀମାନେ ନାନାବିଧ ଯାନରେ ସମାରୂଢ଼ ହୋଇ ବିଦୁରଙ୍କୁ ଅଗ୍ରସରପୂର୍ବକ ଗମନ କଲେ ।୪୧।

ତତ୍ପରେ ସମଲଙ୍କୃତ ରଥୀ, ପଦାତି, ହସ୍ତ୍ୟାରୋହୀ ଓ ହୟାରୋହୀ ପ୍ରଭୃତି ସେନାମାନେ ପଶ୍ଚାତ୍ ଗମନ କଲେ ।୪୨।

ଏମନ୍ତ ସମୟରେ ବୈତାଳିକ ଓ ସୂତ ମାଗଧଗଣ ସୁଲଳିତ ଭାଷାରେ ସ୍ତୂୟମାନ ହୋଇ ରାଜା ହସ୍ତିନା ପୁରାଭିମୁଖକୁ ଗମନ କଲେ ।୪୩।

ମହାବାହୁ ଯୁଧିଷ୍ଠିର ଏହିପରି ଚତୁରଙ୍ଗିଣୀ ସେନା ଓ ସ୍ୱଜନମାନଙ୍କଦ୍ୱାରା ପରିବୃତ୍ତ ହୋଇ ଗମନ କରୁଥିବା ସମୟରେ ସମସ୍ତ ସ୍ଥାନ ସେହି ମହତ୍ ଜନ ସମାଗମ ହେତୁ ଅତ୍ୟନ୍ତ ସମାକୁଳିତ ହେଲା ଏବଂ ତତ୍କାଳରେ ହୃଷ୍ଟପୁଷ୍ଟ ଲୋକଙ୍କର ପରସ୍ପର କଥୋପକଥନ କଳକଳ ଧ୍ୱନି ରୂପରେ ଶ୍ରୁତିଗୋଚର ହେଲା ।୪୪।

ପୃଥାନନ୍ଦନ ଯୁଧିଷ୍ଠିର ନଗର ପ୍ରବେଶ କରିବେ, ଏହା ଜାଣି ନଗରବାସୀ ପ୍ରଜାମାନେ ବିଧିପୂର୍ବକ ନଗରକୁ ସମଲଙ୍କୃତ କଲେ ।୪୫।

ଏମନ୍ତ ସମୟରେ ନଗରର ଭୂଭାଗରେ ରାଶି ରାଶି ପୁଷ୍ପ ସମାକୀର୍ଣ୍ଣ ହେବାରୁ ସମସ୍ତ ଭୂମି ପୁଷ୍ପମୟ ପରି ବୋଧ ହେଲା ଏବଂ ସମସ୍ତ ରାଜପଥ ଧୂପ ଗନ୍ଧରେ ବାସିତ ଓ ପତାକାଦ୍ୱାରା ସମାଚ୍ଛନ୍ନ ହେଲା ।୪୬।

ରାଜପୁରସ୍ଥିତ କର୍ମଚାରୀମାନେ ସୁଗନ୍ଧ ପୁଷ୍ପ ଏ ପ୍ରିୟଙ୍ଗୁ ପ୍ରଭୃତି ଗନ୍ଧ ଦ୍ରବ୍ୟସବୁ ଚୂର୍ଣ୍ଣିତ କରି ଗୃହସମୂହ ସୌରଭାନ୍ୱିତ କଲେ ଓ ମାଲ୍ୟ ଦାମରେ ସୁସଜ୍ଜିତ କଲେ । ନଗରର ଦ୍ୱାରଦେଶରେ ଅଭିନବ ଧାତୁମୟ କଳଶମାନଙ୍କୁ ବାରିପୂର୍ଣ୍ଣ କରି ରଖିଲେ ଏବଂ ସ୍ଥାନେ ସ୍ଥାନେ ସର୍ବାଙ୍ଗ ସୁନ୍ଦରୀ ମନୋରମା କନ୍ୟାମାନେ ଦଣ୍ଡାୟମାନ ରହିଲେ । ପାଣ୍ଡୁନନ୍ଦନ ରାଜା ଯୁଧିଷ୍ଠିର ସୁହୃଦଗଣଙ୍କଦ୍ୱାରା ପରିବୃତ୍ତ ହୋଇ ଓ ପୌରଜନ-କର୍ତ୍ତୃକ ମଙ୍ଗଳଜନକ ବାକ୍ୟଦ୍ୱାରା ସ୍ତୂୟମାନ ହୋଇ ଉଲ୍ଲିଖିତ ନଗରର ଦ୍ୱାରରେ ପ୍ରବିଷ୍ଟ ହେଲେ ।୪୯।

---

## ଅଧ୍ୟାୟ—୩୮

ବୈଶମ୍ପାୟନ କହିଲେ—ହେ ମହାରାଜ ! ପୃଥାନନ୍ଦନମାନେ ପୁରପ୍ରବେଶ କରନ୍ତେ ସେମାନଙ୍କ ଦର୍ଶନ ଲାଳସାରେ ବହୁସଂଖ୍ୟକ ପୁରବାସିମାନେ ସମାଗତ ହେଲେ ।୧।

ତତ୍କାଳରେ ରାଜପଥ ଓ ଚତ୍ୱରସବୁ ଚନ୍ଦ୍ରୋଦୟରେ ପରିବର୍ଦ୍ଧିତ ସାଗର ପ୍ରାୟ ସୁଶୋଭିତ ହେଲା । ରାଜପଥର ଉଭୟ ପାର୍ଶ୍ୱ-ବର୍ତ୍ତୀ ନାନାଳଙ୍କାର ଶୋଭିତ ବୃହତ୍ ବୃହତ୍ ଅଟ୍ଟାଳିକା ଗୃହସବୁ ସ୍ତ୍ରୀମାନଙ୍କ ଦ୍ୱାରା ପରିପୂର୍ଣ୍ଣ ହେବାରୁ ବୋଧ ହେଲା ଯେ ସେମାନଙ୍କର ଭାରରେ କମ୍ପିତ ହୋଇଅଛି । ଏହିସବୁ ସ୍ତ୍ରୀମାନେ ଲଜ୍ଜାପ୍ରଯୁକ୍ତ ଅତି ମୃଦୁ ସ୍ୱରରେ ଦ୍ରୌପଦୀଙ୍କୁ କହିଲେ—ହେ ପାଞ୍ଚାଳି ! ହେ କଲ୍ୟାଣି ! ମହର୍ଷିମାନଙ୍କର ଉପାସନାକାରିଣୀ ଗୌତମୀଙ୍କ ପ୍ରାୟ ତୁମ୍ଭେ ପୁରୁଷୋତ୍ତମ ପାଣ୍ଡବମାନଙ୍କର ଉପାସନା କରୁଅଛ । ତୁମ୍ଭର ବ୍ରତାଚରଣ ପ୍ରଭୃତି କର୍ମମାନ ମଧ୍ୟ ଅମୋଘ, ଅତଏବ ତୁମ୍ଭେ ଧନ୍ୟା । ଏହି କଥା କହି ସେମାନେ ଯୁଧିଷ୍ଠିର ଭୀମ, ଅର୍ଜ୍ଜୁନ ଏବଂ ମାଦ୍ରୀପୁତ୍ର ଦ୍ୱୟଙ୍କୁ ପ୍ରଶଂସା କଲେ । ସେମାନଙ୍କର ସେହି ପ୍ରୀତିପୂର୍ଣ୍ଣ ପ୍ରଶଂସାସୂଚକ କଥୋପକଥନ ଶବ୍ଦରେ ସମସ୍ତ ଅଟ୍ଟାଳିକାସ୍ଥ ଗୃହ ସମାକୁଳିତ ହେଲା ।୭।

ଅନନ୍ତର ଧର୍ମନନ୍ଦନ ଯୁଧିଷ୍ଠିର ଉଲ୍ଲିଖିତ ରାଜପଥକୁ ଅତିକ୍ରମ କରି ବିବିଧ ଅଳଙ୍କାରଶୋଭିତ ରାଜପୁରରେ ପ୍ରବିଷ୍ଟ ହେଲେ । ଏମନ୍ତ ସମୟରେ ସମସ୍ତ ଜନପଦ ଏବଂ ପୁରବାସୀ ପ୍ରଜାମାନେ ତାହାଙ୍କର ସମ୍ମୁଖରେ ସମୁପସ୍ଥିତ ହୋଇ ଶ୍ରୁତି ସୁଖକର ବାକ୍ୟ କହିଲେ—ହେ ଶତ୍ରୁସୂଦନ ! ହେ ରାମଚନ୍ଦ୍ର ! ଭାଗ୍ୟବଶତଃ ଆପଣ ଜୟଲାଭ କରି ପୁନର୍ବାର ରାଜ୍ୟପ୍ରାପ୍ତ ହୋଇ ଅଛନ୍ତି । ଏହା କେବଳ ଆପଣଙ୍କର ଧର୍ମ ଓ ବଳ ପ୍ରଭାବରୁ ହୋଇଅଛି । ବର୍ତ୍ତମାନ ଆପଣ ଆମ୍ଭମାନଙ୍କର ରାଜା ଦେବରାଜ ଯେପରି ସ୍ୱର୍ଗରାଜ୍ୟକୁ ପାଳନ କରୁଅଛନ୍ତି, ତଦ୍ରୂପ ଧର୍ମା-ନୁସାରେ ପ୍ରଜାପାଳନପୂର୍ବକ ଶତବର୍ଷ ରାଜ୍ୟଭୋଗ କରନ୍ତୁ ।୧୧।

ଶ୍ରୀମାନ୍ ଧର୍ମରାଜ ପୁରଦ୍ୱାରରେ ପ୍ରଜାଗଣଙ୍କର ମଙ୍ଗଳକର ବାକ୍ୟରେ ଅଭିପୂଜିତ ହୋଇ ଚତୁର୍ଦ୍ଦିଗରୁ ବ୍ରାହ୍ମଣମାନଙ୍କର ଆଶୀର୍ବାଦ ଗ୍ରହଣପୂର୍ବକ ଶ୍ରଦ୍ଧାଯୁକ୍ତ ଜୟଶବ୍ଦ ପରିତ ଇନ୍ଦ୍ରପୁର ତୁଲ୍ୟ ରାଜଭବନର

ବହିଃ କକ୍ଷାମଧ୍ୟରେ ପ୍ରବେଶ କଲେ ଏବଂ ଅଭ୍ୟନ୍ତର କକ୍ଷାରେ ପ୍ରବିଷ୍ଟ ହୋଇ ବହୁବିଧ ଗନ୍ଧ ଓ ଗନ୍ଧମାଲ୍ୟ ପ୍ରଭୃତି ଉପହାର ଗ୍ରହଣପୂର୍ବକ ମନ୍ଦିରସ୍ଥ ଦେବ ମୂର୍ତ୍ତିମାନଙ୍କର ପୂଜା କଲେ ।୧୪।

ତଦନନ୍ତର ମାଙ୍ଗଲ୍ୟ ଦ୍ରବ୍ୟ ହସ୍ତ କେତେଗୁଡ଼ିଏ ବ୍ରାହ୍ମଣଙ୍କୁ ଦର୍ଶନ କଲେ । ତତ୍କାଳରେ ମହାଯଶା ଶ୍ରୀମାନ୍ ଯୁଧିଷ୍ଠିର ଆଶୀର୍ବାଦ କରଣେଙ୍କୁ ସେହିସବୁ ବ୍ରାହ୍ମଣମାନଙ୍କଦ୍ୱାରା ପରିବୃତ୍ତ ହୋଇ, ତାରାଗଣ ପରିବୃତ୍ତ ଚନ୍ଦ୍ରମାପ୍ରାୟ ଶୋଭାପ୍ରାପ୍ତ ହେଲେ ।୧୬।

ଅନନ୍ତର ସେ ଗୁରୁ ଧୌମ୍ୟ ଓ ଜ୍ୟେଷ୍ଠତାତ ଧୃତରାଷ୍ଟ୍ରଙ୍କୁ ପୁରସ୍କୃତ କରି ସେହି ବ୍ରାହ୍ମଣମାନଙ୍କୁ ଆପଣଙ୍କର କି ଇଚ୍ଛା ? "ଆପଣଙ୍କର କି ଇଚ୍ଛା ?" ଏହିପରି ପ୍ରତ୍ୟେକଙ୍କୁ ପ୍ରଶ୍ନକଲେ ଏବଂ ଭୂରି ଭୂରି ସ୍ୱର୍ଣ୍ଣାଦି ରତ୍ନ, ମନୋହର ମୋଦକ, ବସ୍ତ୍ର ଏବଂ ଗୋ-ସମୂହଦ୍ୱାରା ସେମାନଙ୍କୁ ଅର୍ଚ୍ଚନା କଲେ ।୧୮।

ତତ୍କାଳରେ ଦର୍ଶକବୃନ୍ଦ କେବଳ ସେହି ବେଦଜ୍ଞ ବ୍ରାହ୍ମଣମାନଙ୍କର ପୁଷ୍କଳ ପଦାକ୍ଷର ଓ ଅର୍ଥସଂଯୁକ୍ତ ଅଥଚ ଏକକାଳରେ ବହୁଜନକର୍ତ୍ତୃକ ଉକ୍ତ ହେବାକୁ ହଂସର କଳନିନାଦବତ୍ ଆଶୀର୍ବାଦ ଧ୍ୱନିକି ଶ୍ରବଣ କଲେ । ହେ ଭରତ ! ସୁହୃଦଗଣଙ୍କର ପ୍ରୀତିବର୍ଦ୍ଧନ ସେହି ପବିତ୍ରାତ୍ମକ ଶ୍ରୁତିମୁଖରେ ଶବ୍ଦ ସମୁତ୍ଥିତ ହେବାରୁ, ଆକାଶମଣ୍ଡଳ ପର୍ଯ୍ୟନ୍ତ ନିସ୍ତବ୍ଧ ହେଲ ପ୍ରାୟ ବୋଧ ହେଲା ।୨୦।

ଏହି ସମୟରେ ଅସଂଖ୍ୟ ଲୋକମାନଙ୍କର ଜୟ ଶବ୍ଦ, ଶଙ୍ଖ ନିନାଦ ଦୁନ୍ଦୁଭି ନିର୍ଘୋଷ ଏକତ୍ରିତ ହୋଇ ଅତ୍ୟନ୍ତ ତୁମୁଳ ଶବ୍ଦ ହେଲା ।୨୨।

କିୟତ୍ କ୍ଷଣପରେ ପୌରଜନ ଓ ବ୍ରାହ୍ମଣଗଣ ନିଃଶବ୍ଦ ହୁଅନ୍ତେ ଦୁର୍ଯ୍ୟୋଧନଙ୍କର ସଖା ଚାର୍ବାକ ରାକ୍ଷସ ମାୟାଦ୍ୱାରା ଆତ୍ମଗୋପନପୂର୍ବକ, ଅକ୍ଷମାଳା, ଶିଖା ଓ ତ୍ରିଦଣ୍ଡକୁ ଧାରଣ କରି ଭିକ୍ଷୁକ ବ୍ରାହ୍ମଣ ବେଶରେ ସେଠାରେ ଆସି ଉପସ୍ଥିତ ହେଲା । ସେହି ଦୁଷ୍ଟ ମହାତ୍ମା ପାଣ୍ଡବମାନଙ୍କର ଅନିଷ୍ଟ କରିବା ଅଭିଳାଷରେ ନିର୍ଲଜ୍ଜ ଓ ଭୟଶୂନ୍ୟ ହୋଇ ରାଜ ସମୀପସ୍ଥ ସପଚ୍ଛେଦ୍ରୁ ତପୋନିଷ୍ଠ ଅସଂଖ୍ୟ ଆଶୀର୍ବାଦକ ବ୍ରାହ୍ମଣମାନଙ୍କ ମଧ୍ୟକୁ ଆଗମନ କଲା ଏବଂ ସେମାନଙ୍କ ସହିତ କିଛିମାତ୍ର ବାକ୍ୟାଳାପ ନ କରି ଏକାବେଳେକେ ଧର୍ମରାଜାଙ୍କ ନିକଟରେ କହିଲା ।୨୫।

ବୃଷୀକ କହିଲେ ! ହେ ମହାରାଜ ! ଏହିସବୁ ବ୍ରାହ୍ମଣମାନେ, ଯେଉଁମାନେ କି ଆମ୍ଭଙ୍କୁ ଧିକ୍କାର କରୁ ଅଛନ୍ତି ତାହା ଆରୋପିତ ବାକ୍ୟମାତ୍ର; ପ୍ରକୃତରେ ! "ତୁମ୍ଭେ ଜ୍ଞାତି ହତ୍ୟାକାରୀ କୁ-ନୃପତି, ତୁମ୍ଭଙ୍କୁ ଧିକ୍" ଏହି କଥା ଆପଣଙ୍କୁ କହୁ ଅଛନ୍ତି । ହେ କୁନ୍ତୀନନ୍ଦନ ! ଏହି ସୁମହତ୍ ଜ୍ଞାତି ହତ୍ୟାକରି ଆପଣଙ୍କର ଯାହାଲାଭ ହୋଇ ଅଛି, ତହିଁରେ କିଛିମାତ୍ର ପ୍ରୟୋଜନ ନାହିଁ । ବିଶେଷତଃ ଗୁରୁହତ୍ୟା କରି ଜୀବନ ରକ୍ଷା କରିବା ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର ।୨୭।

ଦ୍ଵିଜମାନେ ଦୁଷ୍ଟରାକ୍ଷସର ଏହିପରି ବାକ୍ୟ ଶ୍ରବଣପୂର୍ବକ ଅପ୍ରତିଭ ଓ ବ୍ୟଥିତ ହୋଇ ଚିତ୍କାର କରିବାରେ ପ୍ରବୃତ୍ତ ହେଲେ ।୨୮।

ତଦନନ୍ତର ସେମାନେ ଏବଂ ସ୍ୱୟଂ ଧର୍ମରାଜ ମଧ୍ୟ ଲଜ୍ଜାରେ ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇ କିଛିକ୍ଷଣ ମୌନଭାବରେ ରହିଲେ ।୨୯।

ଯୁଧିଷ୍ଠିର କହିଲେ—ହେ ଦ୍ଵିଜଗଣ ! ଆମ୍ଭେ ଆପଣମାନଙ୍କଠାରେ ପ୍ରଣତଭାବରେ ଯାଚଞ୍ଚା କରୁଅଛୁଁ । ଆପଣମାନେ ଆମ୍ଭପ୍ରତି ପ୍ରସନ୍ନ ହୁଅନ୍ତୁ । ଆମ୍ଭେ ସ୍ୱୟଂ ସୁଖାଭିଳାଷୀ ହୋଇ ରାଜ୍ୟଗ୍ରହଣ କରୁନାହୁଁ । ଅତଏବ ଆପଣମାନେ ଆମ୍ଭଙ୍କୁ ଆଉ ଧିକ୍କାର ପ୍ରଦାନ କରନ୍ତୁ ନାହିଁ ।୩୦।

ବୈଶମ୍ପାୟନ କହିଲେ—ବ୍ରାହ୍ମଣମାନେ ଯୁଧିଷ୍ଠିରଙ୍କର କାତର ବାକ୍ୟ ଶ୍ରବଣ କରି କହିଲେ—ହେ ରାଜନ୍ ! ଆମ୍ଭେମାନେ ଏହିସବୁ କଥା କହିନାହୁଁ । ଆମ୍ଭେମାନେ ବର୍ତ୍ତମାନ ସୁଦ୍ଧା କହୁଅଛୁଁ ଯେ ଆପଣଙ୍କର ଶ୍ରୀବୃଦ୍ଧି ହେଉ । ନିର୍ମଳଚିତ୍ତ ବେଦଜ୍ଞ ମହାତ୍ମା ବ୍ରାହ୍ମଣମାନେ ଧର୍ମରାଜଙ୍କୁ ଏହି କଥା କହି ତପଃ ପ୍ରଭାବଦ୍ୱାରା ସେହି ଛଦ୍ମବେଶୀ ଆଗନ୍ତୁକ ବ୍ରାହ୍ମଣର ବିଷୟକୁ ଜାଣିବାର ଚେଷ୍ଟାକଲେ ଏବଂ ଜ୍ଞାନ ଚକ୍ଷୁଦ୍ୱାରା ସମସ୍ତ ପ୍ରତ୍ୟକ୍ଷୀଭୂତ କଲେ ।୩୨।

ବ୍ରାହ୍ମଣମାନେ କହିଲେ, ହେ ଧର୍ମରାଜ ! ଆମ୍ଭେମାନେ କୌଣସି ବିରୁଦ୍ଧ ବାକ୍ୟ କହି ନାହୁଁ । ଅତଏବ ଆପଣଙ୍କର ମାନସିକ ସନ୍ତାପ ଓ ଭୟ ଦୂର ହେଉ । ଆମ୍ଭେମାନେ ଆଶୀର୍ବାଦ କରୁଅଛୁଁ ଯେ ଆପଣ ଭ୍ରାତୃଗଣଙ୍କ ସହିତ ଚିରଞ୍ଜୀବୀ ହୋଇ ପରମ ସୁଖରେ ରାଜ୍ୟଭୋଗ କରନ୍ତୁ । ଏହି ଦୁରାତ୍ମାକୁ ଆମ୍ଭେମାନେ ଜାଣିପାରି ଅଛୁଁ । ସେ ଦୁର୍ଯ୍ୟୋଧନର ସଖା, ଚାର୍ବାକ ନାମକ ରାକ୍ଷସ । ସେ ଦୁର୍ଯ୍ୟୋଧନଙ୍କର ହିତାକାଙ୍କ୍ଷୀ ହୋଇ ;

ପରିବ୍ରାଜକ ବେଶରେ ଆପଣଙ୍କର ଅନିଷ୍ଟ କରଣାର୍ଥ ଆଗମନ କରିଅଛି ।୩୦।

ବୈଶମ୍ପାୟନ କହିଲେ, ହେ ମହାରାଜ ! ତଦନନ୍ତର ସେହିସବୁ ପବିତ୍ରାତ୍ମା ବ୍ରାହ୍ମଣମାନେ ଯୁଧିଷ୍ଠିରଙ୍କୁ ଏହି କଥା କହୁଁ କହୁଁ କ୍ରୋଧରେ ମୂର୍ଚ୍ଛିତ ହୋଇ ସେହି ପାପାତ୍ମାର ରାକ୍ଷସ ଚାର୍ବାକଙ୍କୁ ନାନାବିଧ ବାକ୍ୟ-ଦ୍ୱାରା ଭର୍ତ୍ସନା କଲେ ଓ ତାହାକୁ ହୁଙ୍କାରଦ୍ୱାରା ଭସ୍ମୀଭୂତ କଲେ । ତେତେବେଳେ ଚାର୍ବାକ, ଇନ୍ଦ୍ର ବଜ୍ର ନିର୍ଦଗ୍ଧ-ଅଙ୍କୁରେନ୍ଦୁ କ୍ଷ-ମହୀରୁହ ପ୍ରାୟ ସେହି ବ୍ରହ୍ମବାଦୀମାନଙ୍କର ତେଜଃ ପ୍ରଭାବରେ ଦଗ୍ଧ ହୋଇ ଭୂତଳରେ ପତିତ ହେଲା । ବ୍ରାହ୍ମଣମାନେ ଏହି ପ୍ରକାରେ ରାକ୍ଷସର ବିନାଶ-ସାଧନ କରନ୍ତେ ଧର୍ମରାଜ ସୁହୃଦବର୍ଗଙ୍କ ସହିତ ଅତ୍ୟନ୍ତ ଆନନ୍ଦିତ ହୋଇ ବିଧିପୂର୍ବକ ସେମାନଙ୍କର ପୂଜା କଲେ ଏବଂ ସେମାନେ ମଧ୍ୟ ରାଜାଙ୍କୁ ଅଭିନନ୍ଦନ କରି ଆପଣା ଆପଣା ସ୍ଥାନକୁ ଗମନ କଲେ ।୩୬।

---

## ଅଧ୍ୟାୟ—୩୯

ବୈଶମ୍ପାୟନ କହିଲେ—ସର୍ବଦର୍ଶୀ ଦେବକୀନନ୍ଦନ ଜନାର୍ଦ୍ଦନ ଭ୍ରାତୃଗଣଙ୍କ ସହିତ ଅବସ୍ଥିତ ଧର୍ମରାଜ ଯୁଧିଷ୍ଠିରଙ୍କୁ କହିଲେ ।୧।

ବାସୁଦେବ କହିଲେ—ହେ ମହାବାହୋ ! ଏହି ଭୂମଣ୍ଡଳ ମଧ୍ୟରେ ବ୍ରାହ୍ମଣମାନେ କେବଳ ଆମ୍ଭର ସର୍ବତୋଭାବରେ ଅର୍ଚ୍ଚନୀୟ ଅଟନ୍ତି । ବ୍ରାହ୍ମଣମାନଙ୍କଠାରେ ପ୍ରଣତଭାବରେ ରହିଲେ ସେମାନେ ଅନାୟାସରେ ପ୍ରସନ୍ନ ହୋଇ ପ୍ରଣତ ଭକ୍ତମାନଙ୍କର ମଙ୍ଗଳସାଧନ କରନ୍ତି । ଯେଉଁମାନେ ମଦଗର୍ବିତ ହୋଇ ଉକ୍ତ ବ୍ରାହ୍ମଣମାନଙ୍କୁ ଅବଜ୍ଞା କରନ୍ତି ସେମାନେ ତତ୍କ୍ଷଣାତ୍ ସେମାନଙ୍କର ଶାପାନଳରେ ଦଗ୍ଧ ହୁଅନ୍ତି । ଏହିନିମିତ୍ତ ସେମାନେ ଇହଲୋକରେ ବାଗବଜ୍ର, ସୁପ୍ରସାଦକ ଓ ଭୂଦେବ ବୋଲି ବିଖ୍ୟାତ ଅଟନ୍ତି । ହେ ରାଜନ୍ ! ଆମ୍ଭେ ଗୋଟିଏ ପୂର୍ବ ବୃତ୍ତାନ୍ତ କହୁଅଛୁଁ, ଶ୍ରବଣ କରନ୍ତୁ । ସତ୍ୟଯୁଗରେ ଚାର୍ବାକ ରାକ୍ଷସ ବଦରିକାଶ୍ରମରେ ଅବସ୍ଥିତ ହୋଇ ଘୋରତର ତପୋନୁଷ୍ଠାନଦ୍ୱାରା ବ୍ରହ୍ମାଙ୍କର ତୁଷ୍ଟି ସମ୍ପାଦନ କରିଥିଲା । ପିତାମହ ବରଦାନରେ ଉନ୍ମୁଖ ହୁଅନ୍ତେ, ସେ କୌଣସି

ପ୍ରାଣୀଠାରୁ ଆମ୍ଭର ଭୟୋତ୍ପନ୍ନ ନ ହେଉ” ଏହିପରି ବର ଯାଚଜ୍ଞା କଲା । ଜଗତ୍ପତି ବ୍ରହ୍ମା ତାହାଙ୍କର ପ୍ରାର୍ଥନା ଶୁଣି “କୌଣସି ପ୍ରାଣୀକୁ ତୁମ୍ଭେ ଭୟ କରିବ ନାହିଁ; କିନ୍ତୁ ବ୍ରାହ୍ମଣମାନଙ୍କୁ ଅବମାନନା କଲେ ତୁମ୍ଭର ତତ୍‌କ୍ଷଣାତ୍ ମୃତ୍ୟୁ ହେବ” ଏହିପରି ଉତ୍କୃଷ୍ଟ ବର ପ୍ରଦାନ କଲେ ।୫।

ସେହି ପାପାତ୍ମର ରାକ୍ଷସ ବ୍ରହ୍ମାଙ୍କଠାରୁ ବର ଲାଭପୂର୍ବକ ଅମିତ ବିକ୍ରମ ଉଗ୍ର କର୍ମା ଓ ମହା ବଳଶାଳୀ ହୋଇ ଦେବତାମାନଙ୍କୁ ସନ୍ତାପିତ କରିବାରେ ପ୍ରବୃତ୍ତ ହେଲା ।୬।

ଯଦନନ୍ତର ଦେବତାମାନେ କ୍ରମଶଃ ଚାର୍ବାକ ରାକ୍ଷସର ଉପଦ୍ରବରେ ପ୍ରଧର୍ଷିତ ହୋଇ ବ୍ରହ୍ମାଙ୍କ ନିକଟକୁ ଗମନପୂର୍ବକ ସେହି ରାକ୍ଷସର ବଧାର୍ଥେ ଅନୁରୋଧ କଲେ । ତେତେବେଳେ ଅବ୍ୟୟ ଦେବବ୍ରହ୍ମା ସେମାନଙ୍କୁ କହିଲେ, ହେ ଦେବଗଣ ! ଅଚିର କାଳ ମଧ୍ୟରେ ଏହି ଦୁରାତ୍ମର ରାକ୍ଷସର ଯେପରି ମୃତ୍ୟୁ ହେବ । ଆମ୍ଭେ ତାହାର ଉପାୟ ସ୍ଥିର କରିଅଛୁଁ ଶ୍ରବଣ କର । ମନୁଷ୍ୟ ଲୋକରେ ରାଜା ଦୁର୍ଯ୍ୟୋଧନ ସେହି ଚାର୍ବାକ ରାକ୍ଷସର ସଖା ହେବେ । ସେ ଦୁର୍ଯ୍ୟୋଧନଙ୍କ ସ୍ନେହରେ ବଦ୍ଧ ହୋଇ ବ୍ରାହ୍ମଣମାନଙ୍କୁ ଅବଜ୍ଞା କରିବ । ତହିଁ ବାଗ୍‌ବଳ ସମ୍ପତ୍ତି ବ୍ରାହ୍ମଣମାନେ କୁପିତ ହୋଇ ସେହି ପାପାତ୍ମର ଚାର୍ବାକକୁ ଶାପାଗ୍ନିରେ ଦଗ୍ଧ କରି ବିନଷ୍ଟ କରିବେ ।୧୦।

ତତ୍କାଳରେ ଦେବଗଣ ପିତାମହଙ୍କର ଏହି କଥା ଶ୍ରବଣ କରି ନିଶ୍ଚିନ୍ତ ହୋଇ ସ୍ୱ ସ୍ୱ ସ୍ଥାନକୁ ଗମନ କଲେ । ଏହି ହେତୁରୁ କେବଳ ଅଦ୍ୟ ସେହି ଦୁରାତ୍ମା ଚାର୍ବାକ ରାକ୍ଷସ ବ୍ରାହ୍ମଣ ଶାପରେ ନିହତ ହୋଇ ଭୂତଳ-ଶାୟୀ ହେଲା । ଅତଏବ ଆପଣ ତନ୍ନିମିତ୍ତ ଦୁଃଖିତ ହେବେ ନାହିଁ । ଆଜ ଆପଣ ଜ୍ଞାତିବର୍ଗଙ୍କ ସକାଶେ ମନକୁ ଗ୍ଲାନିଯୁକ୍ତ କରିବେ ନାହିଁ । କାରଣ ସେହି ମହାତ୍ମା କ୍ଷତ୍ରିୟପୁଙ୍ଗବ ବୀରମାନେ କ୍ଷତ୍ରିୟ ଧର୍ମାନୁସାରେ ନିହତ ହୋଇ ସ୍ୱର୍ଗଗାମୀ ହୋଇ ଅଛନ୍ତି । ଅତଏବ ଆପଣ ବର୍ତ୍ତମାନ ଶତ୍ରୁ ଜୟ, ପ୍ରଜାପାଳନ ଓ ବ୍ରାହ୍ମଣମାନଙ୍କର ଅର୍ଚ୍ଚନାଦି କର୍ତ୍ତବ୍ୟ କର୍ମସବୁ ଅନୁଷ୍ଠାନ କରନ୍ତୁ ।୧୩।

———

# ଅଧ୍ୟାୟ-୪୦

ବୈଶମ୍ପାୟନ ବୋଇଲେ; କୁନ୍ତୀପୁତ୍ର ଯୁଧିଷ୍ଠିର କୃଷ୍ଣଙ୍କ ବାକ୍ୟ ଶ୍ରବଣ କରି ମାନସିକ ଚିନ୍ତା ଓ ଦୁଃଖକୁ ପରିତ୍ୟାଗପୂର୍ବକ ପୂର୍ବମୁଖ ହୋଇ ହସ୍ତିଚିତ୍ରରେ ଉତ୍କୃଷ୍ଟ କାଞ୍ଚନାସନୋପରି ଉପବେଶନ କଲେ ଏବଂ ଅରିନ୍ଦମ ବାସୁଦେବ ଓ ସାତ୍ୟକି ତାହାଙ୍କର ସମ୍ମୁଖଭାଗରେ ପ୍ରଦୀପ୍ତ କାଞ୍ଚନମୟ ସୁଖାସନରେ ଉପବିଷ୍ଟ ହେଲେ ।୨।

ମହାତ୍ମା ଭୀମାର୍ଜ୍ଜୁନ ଯୁଧିଷ୍ଠିରଙ୍କ ମଧ୍ୟରେ ରହି ମନୋହର ମଣିମୟ ପୀଠାସନରେ ଉପବେଶନ କଲେ । ପାଣ୍ଡବମାତା ପୃଥାଦେବୀ ନକୁଳ ଓ ସହଦେବଙ୍କ ସହିତ ଜାମ୍ବୁନଦ ବିଭୂଷିତ ହସ୍ତିଦନ୍ତନିର୍ମିତ ଶୁଭ୍ରାସନରେ ଉପବିଷ୍ଟ ହେଲେ ।୪।

ଦୁର୍ଯ୍ୟୋଧନଙ୍କ ପୁରୋହିତ ଧୌମ୍ୟ, କୁରୁପତି ଧୃତରାଷ୍ଟ୍ର ଏବଂ ବିଦୁର ପ୍ରଭୃତି ସମସ୍ତେ ଅଗ୍ନି ସଦୃଶ ପ୍ରଭାଶାଳୀ ପୃଥକ୍ ପୃଥକ୍ ଆସନରେ ସମାସୀନ ହେଲେ ।୫।

ଯଶସ୍ୱିନୀ ଗାନ୍ଧାରୀ, ଯୁଯୁତ୍ସୁ ଓ ସଞ୍ଜୟ ଏମାନେ ରାଜା ଧୃତରାଷ୍ଟ୍ରଙ୍କ ସମୀପରେ ଉପବେଶନ କଲେ ।୬।

ତଦନନ୍ତର ଧର୍ମାତ୍ମା ନରପତି ଯୁଧିଷ୍ଠିର ଶ୍ୱେତପୁଷ୍ପ, ଭୂମି, ସୁବର୍ଣ୍ଣ, ରଜତ, ମଣି, ଅକ୍ଷତ ଏବଂ ସର୍ବତୋଭଦ୍ର ପ୍ରଭୃତି ଅଙ୍କିତ ଦେବତା ପୀଠସବୁ ସ୍ପର୍ଶ କଲେ ।୭।

ତତ୍ସମୟରେ ପ୍ରଜାମାନେ ମୃତ୍ତିକା, ସୁବର୍ଣ୍ଣ, ବିବିଧରତ୍ନ ପ୍ରଭୃତି ମାଙ୍ଗଲ୍ୟ ଦ୍ରବ୍ୟ ଏବଂ ସର୍ବସମ୍ଭାର ସମନ୍ୱିତ ଅଭିଷେଚନିକ ଉପକରଣ ସବୁ ଗ୍ରହଣପୂର୍ବକ ପୁରୋହିତଙ୍କ ସହିତ ଆସି ରାଜଦର୍ଶନ କଲେ ।୯।

ତତ୍ପରେ ସେହି ସ୍ଥାନକୁ କାଞ୍ଚନମୟ, ରୌପ୍ୟମୟ ଓ କାଷ୍ଠମୟ ପୃଥ୍ୱୀମୂର୍ତ୍ତି, ପୂର୍ଣ୍ଣକୁମ୍ଭ, ପୁଷ୍ପ, ଲାଜ, କୁଶ, ଗୋରସ, ଶମୀ, ପିପ୍ପଳ, ପଳାଶାଦି ସମିଧକାଷ୍ଠ, ଉଦୁମ୍ବର କାଷ୍ଠନିର୍ମିତ ସ୍ରୁକ୍, ହେମ ବିଭୂଷିତ ଶଙ୍ଖ ମଧୁ ଏବଂ ଘୃତ ପ୍ରଭୃତି ଦ୍ରବ୍ୟସମୂହ ସମାନୀତ ହେଲା ।୧୧।

ଅନନ୍ତର ପାଣ୍ଡବଙ୍କ ପୁରୋହିତ ଧୌମ୍ୟ ବାସୁଦେବଙ୍କ ଦ୍ୱାରା ଅନୁଜ୍ଞାତ ହୋଇ ପୂର୍ବ ଓ ଉତ୍ତର ଭାଗକୁ କ୍ରମରେ ନିମ୍ନ ରଖି ଗୋଟିଏ

ଲକ୍ଷଣାକ୍ରାନ୍ତ ବେଦି ନିର୍ମାଣ କଲେ ଏବଂ ତତ୍ସନ୍ନିଧାନରେ ଜଳଦଗ୍ନିପ୍ରଭ ଦୃଢ଼ତର ଚରଣ ବିଶିଷ୍ଟ ଉପରିଭାଗରେ ବ୍ୟାଘ୍ରଚର୍ମ ସମାସ୍ତୀର୍ଣ୍ଣ ଶୁକ୍ଳବର୍ଣ୍ଣ ଗୋଟିଏ ସର୍ବତୋଭଦ୍ର ନାମକ ଆସନରେ ମହାତ୍ମା ଯୁଧିଷ୍ଠିରଙ୍କୁ ଓ ପଞ୍ଚାଳ ରାଜତନୟା ଦ୍ରୌପଦୀଙ୍କ ଉପବେଶନ କରାଇ ବିଧି ବିହିତ ମନ୍ତ୍ରୋଚ୍ଚାରଣ-ପୂର୍ବକ ହୁତାଶନର ଆହୁତି ପ୍ରଦାନ କରିବ.କୁ ଆରମ୍ଭ କଲେ ।୧୪।

ହୋମ କାର୍ଯ୍ୟ ସମାପ୍ତ ହେଲାପରେ ବାସୁଦେବ ସମୁତ୍ଥିତ ହୋଇ ଲୋକପୂଜିତ ଶଙ୍ଖଗ୍ରହଣପୂର୍ବକ କୁନ୍ତୀନନ୍ଦନ ପୃଥ୍ୱୀପତି ଯୁଧିଷ୍ଠିରଙ୍କୁ ଅଭିଷିକ୍ତ କଲେ ।୧୫।

ଅନନ୍ତର ରାଜର୍ଷି ଧୃତରାଷ୍ଟ୍ର ଏବଂ ପ୍ରଜାମାନେ କୃଷ୍ଣଙ୍କର ଆଦେଶାନୁସାରେ ଜଳ ଗ୍ରହଣପୂର୍ବକ ଯୁଧିଷ୍ଠିରଙ୍କୁ ଅଭିଷିକ୍ତ କରିବାରେ ପ୍ରବୃତ୍ତ ହେଲେ । ପରନ୍ତୁ ଧର୍ମନନ୍ଦନ ଯୁଧିଷ୍ଠିର ଭ୍ରାତାଗଣଙ୍କ ସହିତ ପାଞ୍ଚଜନ୍ୟ ଶଙ୍ଖ ଜଳରେ ଅଭିଷିକ୍ତ ହୋଇ ଅତ୍ୟନ୍ତ ଦର୍ଶନୀୟ ହେଲେ । ଏହି ସମୟରେ ଦୁନ୍ଦୁଭି ଓ ପଣବ ପ୍ରଭୃତି ବାଦ୍ୟ ନିନାଦ ହେଲା ।୧୭।

ତଦନନ୍ତର ଧର୍ମରାଜ ପ୍ରଜାଗଣ ପ୍ରଦତ୍ତ ଉପହାରାଦି ପ୍ରତିଗ୍ରହଣ-ପୂର୍ବକ ଭୂରି ଭୂରି ଅର୍ଥଦ୍ୱାରା ସେମାନଙ୍କର ସତ୍କାର କଲେ ଏବଂ ବେଦାଧ୍ୟୟନସମ୍ପନ୍ନ ଧୃତି ଓ ଶୀଳ ସମନ୍ୱିତ ସ୍ୱସ୍ତିବାଚକ ବ୍ରାହ୍ମଣମାନଙ୍କୁ ଏକ ସହସ୍ର ପରିମାଣ ନିଷ୍କ ଦକ୍ଷିଣା ପ୍ରଦାନ କଲେ ।୧୯।

ବ୍ରାହ୍ମଣମାନେ ଅତ୍ୟନ୍ତ ପ୍ରୀତ ହୋଇ ହଂସ ପ୍ରାୟ ମଧୁର ଶବ୍ଦ କରି ଯୁଧିଷ୍ଠିରଙ୍କର ଭୂୟସୀ ପ୍ରଶଂସାପୂର୍ବକ କହିଲେ "ହେ ରାଜନ୍! ଆପଣଙ୍କର ଜୟ ହେଉ ଏବଂ ସ୍ୱସ୍ତି ହେଉ । ହେ ମହାବାହୁ ଯୁଧିଷ୍ଠିର ! ତୁମ୍ଭେ ଭାଗ୍ୟବଶତଃ କେବଳ ଜୟଲାଭ କରିଅଛ । ହେ ମହାଦ୍ୟୁତେ ! ତୁମ୍ଭେ ଭାଗ୍ୟବଶତଃ ସ୍ୱକର୍ମଦ୍ୱାରା କ୍ଷତ୍ରିୟ ଧର୍ମକୁ ଲାଭ କରିଅଛ । ଭାଗ୍ୟବଶତଃ ଗାଣ୍ଡୀବ ଧନ୍ୱା ଅର୍ଜ୍ଜୁନ, ଭୀମ, ମାଦ୍ରୀ ତନୟ ଏବଂ ତୁମ୍ଭେ ଶତ୍ରୁମାନଙ୍କୁ ପରାଜିତ କରି ତାଦୃଶ ଭୟଙ୍କର ସଂଗ୍ରାମରୁ ମୁକ୍ତ ହୋଇ ଅବସ୍ଥାନ କରିଅଛ । ବର୍ତ୍ତମାନ ଯାହା ଯାହା କର୍ତ୍ତବ୍ୟ ଅବଶିଷ୍ଟ ଅଛି, ତାହା ଅତିଶୀଘ୍ର ଅନୁଷ୍ଠାନ କର" ।୨୩।

ଧର୍ମରାଜ ଯୁଧିଷ୍ଠିର ସାଧୁମାନଙ୍କଦ୍ୱାରା ଏହିପରି ପ୍ରତ୍ୟର୍ଚ୍ଚିତ ହୋଇ ସୁହୃଦଗଣଙ୍କ ସହିତ ମହତ୍ ସାମ୍ରାଜ୍ୟ ଭାରକୁ ଗ୍ରହଣ କଲେ ।୨୪।

---

# ଅଧ୍ୟାୟ-୪୧

ବୈଶମ୍ପାୟନ କହିଲେ—ରାଜା ଯୁଧିଷ୍ଠିର ବ୍ରାହ୍ମଣ ପ୍ରଜାମାନଙ୍କର ସେହିସବୁ ଦେଶକାଳ ଉପଯୁକ୍ତ ବାକ୍ୟ ଶ୍ରବଣ କରି କହିଲେ—ହେ ଶ୍ରେଷ୍ଠ ଦ୍ୱିଜମାନେ ! ପାଣ୍ଡୁପୁତ୍ରମାନେ ନିଶ୍ଚୟ ଧନ୍ୟ ଅଟନ୍ତି । କାରଣ ସତ୍ୟ ହେଉ କିମ୍ବା ମିଥ୍ୟା ହେଉ, ଆପଣମାନେ ସମାଗତ ହୋଇ ସେମାନଙ୍କର ଗୁଣକୀର୍ତ୍ତନ କରୁଅଛନ୍ତି ।୨।

ବିଶେଷତଃ ଆପଣମାନେ ବିମତ୍ସର ହୋଇ ଆମ୍ଭମାନଙ୍କୁ ଗୁଣ-ସମ୍ପନ୍ନ ବୋଲି କହୁଥିବା ସ୍ଥଳେ, ଆମ୍ଭେମାନେ ଆପଣମାନଙ୍କର ନିଶ୍ଚୟ ଅନୁଗ୍ରହ ଭାଜନ ଅଟୁଁ ।୩।

ଜ୍ୟେଷ୍ଠତାତ ମହାରାଜ ଧୃତରାଷ୍ଟ୍ର ଆମ୍ଭର ପରମ ଦୈବତ ସ୍ୱରୂପ ଅଟନ୍ତି । ଅତଏବ ଆପଣମାନେ ଯଦି ଆମ୍ଭର ପ୍ରିୟାକାଙ୍‌କ୍ଷୀ ହୁଅନ୍ତି, ତାହାହେଲେ ଧୃତରାଷ୍ଟ୍ରଙ୍କର ଶାସନରେ ଓ ପ୍ରିୟ କାର୍ଯ୍ୟାନୁଷ୍ଠାନରେ ନିଯୁକ୍ତ ଥିବେ ।୪।

ଆମ୍ଭେ କେବଳ ମହାରାଜ ଧୃତରାଷ୍ଟ୍ରଙ୍କୁ ନିରଳସଭାବରେ ଶୁଶ୍ରୂଷା କରିବାନିମିତ୍ତ ମହତ ଜ୍ଞାତି ବଧ କରି ସୁଦ୍ଧା ପ୍ରାଣଧାରଣ କରିଅଛୁଁ ।୫।

ଆମ୍ଭେ ଯଦି ଆପଣମାନଙ୍କର ଓ ସୁହୃଦବର୍ଗଙ୍କର ଅନୁଗ୍ରହ ପାତ୍ର ହେଉ, ତାହାହେଲେ ଆପଣମାନେ ସମସ୍ତେ ମହାତ୍ମା ଧୃତରାଷ୍ଟ୍ରଙ୍କୁ ପୂର୍ବବତ୍ ବ୍ୟବହାର କରିବେ ।୬।

ଏ ଆମ୍ଭମାନଙ୍କର ଆପଣମାନଙ୍କର ଏବଂ ଜଗତର ଅଧୀଶ୍ୱର ଅଟନ୍ତି । ଏହି ସମଗ୍ର ପୃଥିବୀ ଏବଂ ପାଣ୍ଡବମାନେ ଏହାଙ୍କର ଅଧୀନ ।୭।

ଆପଣମାନେ ଆମ୍ଭର ଏହି କଥାଗୁଡ଼ିକ ମନେ ରଖିଥିବେ । ରାଜା ଯୁଧିଷ୍ଠିର ଏହି ପ୍ରକାରେ ବ୍ରାହ୍ମଣମାନଙ୍କଠାରେ ଧୃତରାଷ୍ଟ୍ରଙ୍କୁ ରାଜା ବୋଲି ଜଣାଇଦେଇ "ଆପଣମାନେ ନିଜ ନିଜ ଅଭିଳଷିତ ସ୍ଥାନକୁ ଗମନ କରନ୍ତୁ" ବୋଲି ସେମାନଙ୍କୁ ବିଦାୟ ଦେଲେ ।୮।

ତତ୍ପରେ ସେ ପୌର ଓ ଜନପଦବାସୀ ପ୍ରକୃତିବର୍ଗଙ୍କୁ ବିଦାୟ ଦେଇ ରାଜକାର୍ଯ୍ୟରେ ପ୍ରବୃତ୍ତ ହେଲେ ଏବଂ ପ୍ରୀତିସହକାରେ ଭୀମସେନଙ୍କୁ ଯୌବରାଜ୍ୟରେ ନିଯୁକ୍ତ କଲେ । ମନ୍ତ୍ରଣା ନିଶ୍ଚୟ ଓ ଷାଡ୍‌ଗୁଣ୍ୟ, ଅର୍ଥାତ୍

(ଶତ୍ରୁ ସହିତ ସନ୍ଧିପୂର୍ବକ ଅବସ୍ଥାନ; ଯୁଦ୍ଧାର୍ଥ ଯାତ୍ରା, ଶତ୍ରୁତା କରି ଅବସ୍ଥାନ, ଶତ୍ରୁର ଭୟ ପ୍ରଦର୍ଶନାର୍ଥ, ସୈନ୍ୟ ବଳାଧିକ୍ୟ ପ୍ରଦର୍ଶନପୂର୍ବକ ସ୍ୱସ୍ଥାନରେ ଅବସ୍ଥାନ, ଉଭୟର ସନ୍ଧିକରଣ, ଏବଂ ଦୁର୍ଗାଦି କିମ୍ବା କୌଣସି ମହାରାଜର ଆଶ୍ରୟ ଗ୍ରହଣ) ରାଜ୍ୟରକ୍ଷା ବିଷୟରେ ଏହି ଛଅଗୋଟି ଉପାୟର ପରିଚାଳନନିମିତ୍ତ ବିଦୁରଙ୍କୁ ନିଯୋଜିତ କଲେ ।୧୦।

କର୍ତ୍ତବ୍ୟାକର୍ତ୍ତବ୍ୟ ପରିଜ୍ଞାନ ଏବଂ ଆୟ ବ୍ୟୟର ବିବେଚନା-ନିମିତ୍ତ ସର୍ବଗୁଣ ସମନ୍ୱିତ ବୃଦ୍ଧ ସଞ୍ଜୟଙ୍କୁ ନିଯୁକ୍ତ କଲେ । ସୈନ୍ୟ ପରିମାଣ କରିବା ଏବଂ ସେହି ସୈନ୍ୟମାନଙ୍କୁ ଅନ୍ନ ଓ ବେତନ ପ୍ରଦାନ କରି ସମସ୍ତ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବାନିମିତ୍ତ ନକୁଳଙ୍କୁ ଆଦେଶ କଲେ । ଦୁଷ୍ଟ ଦମନ କରିବା ଏବଂ ଶତ୍ରୁ ରାଜ୍ୟକୁ ଆକ୍ରମଣ କରିବାର ଭାର ଫାଲ୍‌ଗୁନୀଙ୍କୁ ଅର୍ପଣ କଲେ ଏବଂ ବ୍ରାହ୍ମଣାଦି ଦ୍ୱିଜ ଓ ଦେବକାର୍ଯ୍ୟାଦି ବିଷୟରେ ପୁରୋହିତ ଶ୍ରେଷ୍ଠ ଧୌମ୍ୟଙ୍କୁ ନିଯୁକ୍ତ କଲେ ।୧୪।

ତତ୍ପରେ ମହାରାଜ ଯୁଧିଷ୍ଠିର କେବଳ ସହଦେବଙ୍କୁ ତାହାଙ୍କର ସମୀପରେ ରହିବାନିମିତ୍ତ ଆଦେଶ ଦେଲେ । କାରଣ ସେ ସର୍ବାବସ୍ଥାରେ ସହଦେବଙ୍କ କର୍ତ୍ତୃକ ରକ୍ଷିତ ହେବେ ବୋଲି ଉଚିତ ବୋଧ କଲେ ।୧୫।

ପୃଥିବୀପତି ଯୁଧିଷ୍ଠିର ଏତଦ୍‌ଭିନ୍ନ ଯେଉଁ ଯେଉଁ କାର୍ଯ୍ୟରେ ଯାହାକୁ ଯୋଗ୍ୟ ବୋଲି ବିବେଚନା କଲେ, ସେହି ସେହି କାର୍ଯ୍ୟରେ ତାହାକୁ ପ୍ରୀତିଚିତ୍ତରେ ନିଯୁକ୍ତ କଲେ ।୧୬।

ତଦନନ୍ତର ସେହି ଧର୍ମବତ୍ସଳ ଧର୍ମାତ୍ମା ଶତ୍ରୁ ବୀରଘାତୀ ରାଜା ଯୁଧିଷ୍ଠିର ମହାମତି ବିଦୁର ଓ ଯୁଯୁତ୍ସୁଙ୍କୁ କହିଲେ—ଆମ୍ଭର ଜ୍ୟେଷ୍ଠତାତ ନରପତି ଧୃତରାଷ୍ଟ୍ରଙ୍କର ଯେଉଁ ଯେଉଁ କାର୍ଯ୍ୟ ଉପସ୍ଥିତ ହେବ, ଆପଣମାନେ ସ୍ୱୟଂ ସମୁତ୍ଥିତ ହୋଇ ତତ୍ସମସ୍ତ ଅପ୍ରମତ୍ତଭାବରେ ସମ୍ପାଦନ କରିବେ ଏବଂ ପୌର ଓ ଜନପଦବାସୀ ପ୍ରଜାମାନଙ୍କ ସମ୍ବନ୍ଧରେ ଯେଉଁସବୁ କାର୍ଯ୍ୟ ଉପସ୍ଥିତ ହେବ, ତତ୍ସମସ୍ତ ମଧ୍ୟ ଏହାଙ୍କର ଅନୁମତି ନେଇ ନିଜ ନିଜ ଭାଗ ଅନୁସାରେ ନିର୍ବାହ କରିବେ ।୧୯।

---

## ଅଧ୍ୟାୟ-୪୨

ବୈଶମ୍ପାୟନ କହିଲେ—ଉଦାରବୁଦ୍ଧି ଯୁଧିଷ୍ଠିର କୁରୁକ୍ଷେତ୍ର ଯୁଦ୍ଧରେ ନିହତ ହୋଇଥିବା ଜ୍ଞାତିମାନଙ୍କର ପୁନର୍ବାର ପୃଥକ ରୂପରେ ଶ୍ରାଦ୍ଧ କରାଇଲେ ।୧।

ଅନ୍ଧରାଜ ମହାଯଶା ଧୃତରାଷ୍ଟ୍ର ମଧ୍ୟ ସ୍ୱକୀୟ ପୁତ୍ରମାନଙ୍କର ଶ୍ରାଦ୍ଧୋପଲକ୍ଷରେ ଅଭିଲଷିତ ବହୁବିଧ ଅନ୍ନ, ମହାମୂଲ୍ୟ ବିବିଧ ରତ୍ନ ଏବଂ ଗୋ ପ୍ରଭୃତି ନାନାପ୍ରକାର ଅର୍ଥସବୁ ଦାନକଲେ । ବିଶେଷତଃ ଧର୍ମରାଜ ଯୁଧିଷ୍ଠିର ଦ୍ରୌପଦୀଙ୍କ ସହିତ ଏକତ୍ରିତହୋଇ ମହାତ୍ମା ଦ୍ରୋଣ କର୍ଣ୍ଣ, ଧୃଷ୍ଟଦ୍ୟୁମ୍ନ, ଅଭିମନ୍ୟୁ ହିଡ଼ିମ୍ବାତନୟ ଘଟୋତ୍କଚ, ଦ୍ରୌପଦୀଙ୍କର ପଞ୍ଚପୁତ୍ର ଓ ପରମହିତୈଷୀ ବିରାଟ ପ୍ରଭୃତି ସୁହୃଦବର୍ଗ ଏମାନଙ୍କର ପ୍ରତ୍ୟେକଙ୍କ ଉଦ୍ଦେଶ୍ୟରେ ଏକ ଏକ ସହସ୍ର ବ୍ରାହ୍ମଣ ଭୋଜନ କରାଇଲେ ଏବଂ ସେହି ବ୍ରାହ୍ମଣମାନଙ୍କୁ ଧନ, ରତ୍ନ ଏବଂ ଗୋସବୁ ଦାନ କଲେ ।୭।

ଏତଦ୍‌ଭିନ୍ନ ଯେଉଁସବୁ ନରପତିମାନଙ୍କର ପୁତ୍ର କନ୍ୟା ସୁହୃତ କେହି ଜୀବିତ ନାହାନ୍ତି, ରାଜା ଯୁଧିଷ୍ଠିର ସେମାନଙ୍କର ଶ୍ରାଦ୍ଧାଦ୍ଦ କଲେ ଏବଂ ସେମାନଙ୍କର ପ୍ରତ୍ୟେକଙ୍କର ନାମାଙ୍କିତ କରାଇ ଗୋଟିଏ ଗୋଟିଏ ଧର୍ମ୍ମଶାଳା, ଜଳସତ୍ର ଓ ତଡ଼ାଗ ପ୍ରଭୃତି ଉତ୍ସର୍ଗପୂର୍ବକ ସେମାନଙ୍କର ବଂଶଧର ପୁତ୍ରୋଚିତୌହୋଚିତ କାର୍ଯ୍ୟ କଲେ । ସେ ଏହି ପ୍ରକାରେ ଆତ୍ମୀୟ ଓ ସୁହୃଦବର୍ଗଙ୍କର ଔର୍ଦ୍ଧ୍ୱଦେହିକ କାର୍ଯ୍ୟ ସମାପନ କରି ସେମାନଙ୍କଠାରୁ ଆନୃଣ୍ୟ ଲାଭ କଲେ ଏବଂ ଲୋକ ନିନ୍ଦାରୁ ନିଷ୍କୃତି ଲାଭ କରି କୃତ୍ୟ କୃତ୍ୟ ହେଲେ । ସେ ଧର୍ମ୍ମାନୁସାରେ ପ୍ରଜାପାଳନରେ ପ୍ରବୃତ୍ତ ଥାଇ ପୂର୍ବବତ୍ ଧୃତରାଷ୍ଟ୍ର, ଗାନ୍ଧାରୀ ଓ ବିଦୁରପ୍ରଭୃତି ପୂଜ୍ୟ କୌରବ-ମାନଙ୍କ ଏବଂ ପ୍ରଧାନ ପଦାଭିଷିକ୍ତ ଭୃତ୍ୟବର୍ଗଙ୍କୁ ଅତ୍ୟନ୍ତ ସମ୍ମାନ ସହିତ-ପ୍ରତିପାଳନ କଲେ । ଯେଉଁସବୁ ସ୍ତ୍ରୀମାନେ ସ୍ୱାମୀ ଏବଂ ପୁତ୍ରବିହୀନା ହୋଇ ସେଠାରେ ଥିଲେ କୁରୁରାଜ ଯୁଧିଷ୍ଠିର ଅତ୍ୟନ୍ତ କୃପାପରବଶ ହୋଇ ସେମାନଙ୍କର ମଧ୍ୟ ସମାନ ସହିତ ଭରଣପୋଷଣ କଲେ । ସେ କୃପା ପରତନ୍ତ୍ର ହୋଇ ଦୀନ, ଅନ୍ଧ ଓ କୃପଣମାନଙ୍କର ମଧ୍ୟ ଗୃହ ଆଚ୍ଛାଦନ ଓ ଭୋଜନ ସାମଗ୍ରୀସବୁ ପ୍ରଦାନପୂର୍ବକ ଅନୁଗ୍ରହ ପ୍ରକାଶ କଲେ । ଏହି

ପ୍ରକାରେ ରାଜା ଯୁଧିଷ୍ଠିର ପୃଥିବୀ ଜୟପୂର୍ବକ ଶତ୍ରୁମାନଙ୍କଠାରୁ ଆନୃଣ୍ୟ ଲାଭ କଲେ ଏବଂ ନଷ୍ଟକଣ୍ଟକ ଓ ସୁଖୀ ହୋଇ ରାଜ୍ୟୋପବେଶରେ ପ୍ରବୃତ୍ତ ହେଲେ ।୧୭।

---

## ଅଧ୍ୟାୟ-୪୩

ବୈଶମ୍ପାୟନ କହିଲେ—ରାଜା ଯୁଧିଷ୍ଠିର, ପୁନର୍ବାର ରାଜ୍ୟପ୍ରାପ୍ତି ଓ ଅଭିଷିକ୍ତ ହୋଇ କୃତାଞ୍ଜଳିପୂର୍ବକ ପଦ୍ମପତ୍ରାକ୍ଷ ପୁଣ୍ଡରୀକାକ୍ଷ ଦାଶାର୍ହ କୃଷ୍ଣଙ୍କୁ କହିଲେ —ହେ ଅରିନ୍ଦମ ! ହେ ଯଦୁଶାର୍ଦ୍ଦୂଳ ପୁଣ୍ଡରୀକାକ୍ଷ ! ଆମ୍ଭେମାନେ ତୁମ୍ଭର ବୁଦ୍ଧି, ବଳ, ନୀତି ଓ ବିକ୍ରମ ପ୍ରଭାବରୁ ଏବଂ ପ୍ରସନ୍ନତାରୁ ଏହି ପିତୃ ପିତାମହ ରାଜ୍ୟକୁ ପୁନର୍ବାର ପ୍ରାପ୍ତ ହେଲୁଁ । ତୁମ୍ଭଙ୍କୁ ବାରମ୍ବାର ନମସ୍କାର କରୁଅଛୁଁ । ଶାସ୍ତ୍ରସବୁ ତୁମ୍ଭଙ୍କୁ ଅଦ୍ୱିତୀୟ ପୁରୁଷ ଓ ସାତ୍ତ୍ୱତମାନଙ୍କର ଗତି ସ୍ୱରୂପ ବୋଲି କହି ଅଛନ୍ତି । ଦ୍ୱିଜଗଣ ଯତ୍ନପର ହୋଇ ବିବିଧ ନାମୋଚ୍ଚାରଣପର୍ବକ ତୁମ୍ଭଙ୍କ ସ୍ତବ କରନ୍ତି ।୪।

ତୁମ୍ଭେ ପୁରୁଷୋତ୍ତମ, ବିଷ୍ଣୁ, ଜିଷ୍ଣୁ, କୃଷ୍ଣ, ବୈକୁଣ୍ଠ, ବିଶ୍ୱାତ୍ମା ଓ ବିଶ୍ୱୋତ୍ପାଦକ ଅଟ । ଅତଏବ ହେ ବିଶ୍ୱ କର୍ମନ୍ ! ତୁମ୍ଭଙ୍କୁ ନମସ୍କାର । ୫ ।

ତୁମ୍ଭେ ସପ୍ତଧା ଅଦିତିଙ୍କ ଗର୍ଭରେ ଜନ୍ମଗ୍ରହଣ କରିଅଛ ଏବଂ ପୁରାଣରେ ତୁମ୍ଭେ ପୃଶ୍ନିଗର୍ଭ ବୋଲି କଥିତ ହୋଇଅଛ । ପଣ୍ଡିତମାନେ ତୁମ୍ଭଙ୍କୁ ତ୍ରିଯୁଗ ବୋଲି କୀର୍ତ୍ତନ କରନ୍ତି ।୬।

ତୁମ୍ଭେ ଶୁଚିଶ୍ରବା, ଅର୍ଥାତ୍ ପୁଣ୍ୟକୀର୍ତ୍ତି ହୃଷିକେଶ, ଘୃତାର୍ଚ୍ଚିଃ, (ଯଜ୍ଞେଶ୍ୱର), ହଂସ, ତ୍ରିନେତ୍ର, ଶମ୍ଭୁ, ବିଭୁ ଓ ଦାମୋଦର ନାମରେ କୀର୍ତ୍ତିତ ହୋଇଥାଅ ।୭।

ତୁମ୍ଭେ ବରାହ, ଅଗ୍ନି, ସୂର୍ଯ୍ୟ, ବୃଷଭ ଧ୍ୱଜ, ଗରୁଡ଼ ଧ୍ୱଜ, ଅନୀକାସହ (ଶତ୍ରୁସେନା ବିମର୍ଦ୍ଦୀ), ପୁରୁଷ, (ଜୀବ) ଶିପିବିଷ୍ଟ, (ସର୍ବ ଶରୀରାଭ୍ୟନ୍ତରେ ପ୍ରବିଷ୍ଟ) ଉରୁକ୍ରମ, ବରିଷ୍ଠ, ଉଗ୍ରସେନାନୀ, ଦେବ ସେନାନୀ, ସତ୍ୟ, ବାଜସନ (ଅନ୍ନପ୍ରଦ) ଅଟ । ତୁମ୍ଭେ ସ୍ୱୟଂ ଅଚ୍ୟୁତ, ଅର୍ଥାତ୍ ଶତ୍ରୁ ବିନାଶକାରୀ । ତୁମ୍ଭେ ସଂସ୍କୃତ (ବ୍ରାହ୍ମଣ ସ୍ୱରୂପ) ଏବଂ ବିକୃତ (ମ୍ଳେଚ୍ଛ ପ୍ରଭୃତିମ୍ଳେଚ୍ଛ ଜାତିରୂପ) ଅଟ । ତୁମ୍ଭେ ଶ୍ରେଷ୍ଠ, ଊର୍ଦ୍ଧ୍ୱବର୍ତ୍ତୀ ଇନ୍ଦ୍ର, ବୃଷଦର୍ଭ,

ଏବଂ ବୃଷାକପି । ତୁମ୍ଭେ ସିନ୍ଧୁ, ବିଧର୍ମା, (ନିର୍ଗୁଣ), ତ୍ରିକକୁଦ, ତ୍ରିଧାମା ଓ ଦିବଦାଚ୍ୟୁତ, ଅବତୀର୍ଣ୍ଣ ମୂର୍ତ୍ତି, ଅଟ ।୧୦।

ତୁମ୍ଭେ ସମ୍ରାଟ, ବିରାଟ, ସ୍ୱରାଟ, ସୁରରାଜ, ଭବକରଣ ବିଭୁ, ଭୂ (ସତ୍ତାରୂପ), ଅଭିଭୂ (ଅଶରୀର) କୃଷ୍ଣ କୃଷ୍ଣବର୍ମା, ସ୍ୱିଷ୍ଟକୃତ୍ (ଅଭିଳାଷ ପୂରଣକାରୀ) ଏବଂ ଭିଷଜାବର୍ତ୍ତ (ଅଶ୍ୱିନୀକୁମାର ଦ୍ୱୟଙ୍କର ପିତା ସୂର୍ଯ୍ୟ) ଅଟ । ତୁମ୍ଭେ କପିଳ, ବାମନ, ଯଜ୍ଞ, ଧ୍ରୁବ, ଗରୁଡ଼ ଓ ଯଜ୍ଞସେନ ନାମରେ କଥିତ ।୧୨।

ତୁମ୍ଭେ ଶିଖଣ୍ଡି, ନହୁଷ, ବଭ୍ରୁ ( ମହେଶ୍ୱର ), ଦିବସ୍ପୃକ, ପୁନର୍ବସୁ ନାମକ ନକ୍ଷତ୍ର, ସୁବଭ୍ରୁ, (ଅତ୍ୟନ୍ତ ପିଙ୍ଗଳ ବର୍ଣ୍ଣ ) ଉକ୍ଥ ଯଜ୍ଞ, ସୁଷେଣ, ଦୁନ୍ଦୁଭି, ଗର୍ଭ ସ୍ତନେମି ଶ୍ରୀପଦ, ପୁଷ୍କର, ପୁଷ୍ପଧାରଣ, ଋଭୁ, ବିଭୁ ଓ ସର୍ବ ସୂକ୍ଷ୍ମ ଅଟ । ତୁମ୍ଭର ଚରିତ୍ର ବିଷୟ ବେଦରେ କୀର୍ତ୍ତିତ ହୋଇଥାଏ ।୧୪।

ତୁମ୍ଭେ ଅମ୍ଭୋନିଧି, ବ୍ରହ୍ମା, ପବିତ୍ରଧାମ ଓ ଧାମବିତ୍ ଅଟ । ଶାସ୍ତ୍ରମାନଙ୍କରେ ତୁମ୍ଭେ ହିରଣ୍ୟଗର୍ଭ ବୋଲି କୀର୍ତ୍ତିତ ହୁଅ । ତୁମ୍ଭେ ସ୍ୱାହା ସ୍ୱଧା ଓ କେଶବ ଅଟ । ତୁମ୍ଭେ ଏହି ବିଶ୍ୱର କାରଣ ଓ ପ୍ରଳୟ ସ୍ୱରୂପ ଅଟ । ହେ କୃଷ୍ଣ ! ତୁମ୍ଭେ ଏହି ବିଶ୍ୱକୁ ପ୍ରଥମେ ସୃଷ୍ଟି କରିଅଛ । ହେ ବିଶ୍ୱଯୋନେ ! ହେ ଶାର୍ଙ୍ଗପାଣେ ! ହେ ଖଡ୍ଗ ପାଣେ ! ହେ ଚକ୍ରପାଣେ ! ଏହି ବିଶ୍ୱ ତୁମ୍ଭ ବଶରେ ଅବସ୍ଥିତ । ଅତଏବ ତୁମ୍ଭଙ୍କୁ ନମସ୍କାର । ୧୬ ।

ଯଦୁବଂଶପ୍ରବର ପୁଷ୍କରଲୋଚନ କୃଷ୍ଣ ସଭା ମଧ୍ୟରେ ପାଣ୍ଡବ ଜ୍ୟେଷ୍ଠ ନରପତି ଯୁଧିଷ୍ଠିରଙ୍କ କର୍ତ୍ତୃକ ଏହିପରିଭାବରେ ସ୍ତୁତ ହୋଇ ଅତ୍ୟନ୍ତ ପ୍ରୀତିସହକାରେ ପୁଷ୍କଳ ବାକ୍ୟଦ୍ୱାରା ଯୁଧିଷ୍ଠିରଙ୍କୁ ଅଭିନନ୍ଦିତ କଲେ । ୧୭ ।

---

## ଅଧ୍ୟାୟ—୪୪

ବୈଶମ୍ପାୟନ କହିଲେ—ଅନନ୍ତର ଧର୍ମରାଜ ସଭାସ୍ଥ ବ୍ୟକ୍ତି-ମାନଙ୍କୁ ବିଦାୟ ଦିଅନ୍ତେ ସେମାନେ ସମସ୍ତେ ନିଜ ନିଜ ଗୃହକୁ ଗମନ କଲେ । ତତ୍ସମୟରେ ଧର୍ମନନ୍ଦନ ଯୁଧିଷ୍ଠିର ଭୀମ ପରାକ୍ରମ ଭୀମସେନଙ୍କୁ ଓ ଯମଜ ନକୁଳ ଓ ସହଦେବଙ୍କୁ ସାନ୍ତ୍ୱନାପୂର୍ବକ କହିଲେ—ହେ ଭରତ—

ଶ୍ରେଷ୍ଠଗଣ ! ତୁମ୍ଭେମାନେ ମହାସଂଗ୍ରାମରେ ଶତ୍ରୁଗଣଙ୍କର ବହୁବିଧ ଶସ୍ତ୍ର-ଦ୍ୱାରା କ୍ଷତ କଳେବର ହୋଇ ଅତିଶୟ ଶ୍ରାନ୍ତ ହୋଇଅଛ । ବିଶେଷତଃ ତୁମ୍ଭେମାନେ ଆମ୍ଭନିମିତ୍ତ ଦୀର୍ଘକାଳ ଅରଣ୍ୟବାସ କରି କ୍ରୋଧ ଓ ଶୋକରେ ସନ୍ତାପିତ ହୋଇ ଇତର ପୁରୁଷ ପ୍ରାୟ କ୍ଳେଶ ଅନୁଭବ କରି ଅଛ । ଅତଏବ ଅଦ୍ୟ ସ୍ୱଗୃହରେ ଯଥାଭିଳଷିତ ବିଜୟସୁଖକୁ ଅନୁଭବ କର । ବୁଦ୍ଧି ପ୍ରକୃତିସ୍ଥ ହେଲେ ଓ ଶ୍ରାନ୍ତିଦୂର ହେଲେ ସମସ୍ତେ ପୁନର୍ବାର କଲ୍ୟ ପ୍ରଭାତରେ ଆମ୍ଭଠାରେ ଉପସ୍ଥିତ ହେବ । ୫ ।

ଧର୍ମରାଜ ଏହିପରି ଆଦେଶ କରି ଧୃତରାଷ୍ଟ୍ରଙ୍କର ଅନୁମତି ଗ୍ରହଣପୂର୍ବକ ବିବିଧ ପ୍ରାସାଦଶୋଭିତ ବହୁରତ୍ନ ସମାକୀର୍ଣ୍ଣ ଦାସଦାସୀ ସମାକୁଳ ଦୁର୍ଯ୍ୟୋଧନଙ୍କର ଗୃହକୁ ଭୀମସେନଙ୍କୁ ପ୍ରଦାନ କଲେ । ଇନ୍ଦ୍ରଙ୍କର ବୈଜୟନ୍ତପୁରୀ ପ୍ରବେଶ ପ୍ରାୟ ଭୀମସେନ ତହିଁରେ ପ୍ରବିଷ୍ଟ ହେଲେ । ତତ୍ପରେ ରାଜା ଯୁଧିଷ୍ଠିର ଧୃତରାଷ୍ଟ୍ରଙ୍କର ଅନୁମତି ଅନୁସାରେ ପ୍ରାସାଦମାଳା ସୁଶୋଭିତ ହେମତୋରଣ ସଂଯୁକ୍ତ ଦୁର୍ଯ୍ୟୋଧନ ଭବନ-ସଦୃଶ ଦାସଦାସୀ ପୂର୍ଣ୍ଣ ଦୁଃଶାସନଙ୍କର ଗୃହକୁ ମହାବାହୁ ଅର୍ଜୁନଙ୍କୁ ପ୍ରଦାନ କଲେ । ୯ ।

ଅନନ୍ତର ଧର୍ମନନ୍ଦନ ଯୁଧିଷ୍ଠିର ଅରଣ୍ୟକ୍ଳେଶକର୍ଷିତ ସୁଯୋଗ୍ୟ ନକୁଳଙ୍କୁ ଦୁଃଶାସନ ଗୃହାପେକ୍ଷା ଶ୍ରେଷ୍ଠ, ମଣି ହେମ ବିଭୂଷିତ, କୁବେର ଗୃହସଦୃଶ ଦୁର୍ମର୍ଷଣଙ୍କ ଗୃହକୁ ଅତ୍ୟନ୍ତ ପ୍ରୀତିସହକାରେ ପ୍ରଦାନ କଲେ । ୧୧ ।

ସୁବର୍ଣ୍ଣଭୂଷିତ ପଦ୍ମପତ୍ରନୟନା ସ୍ତ୍ରୀବୃନ୍ଦ ସମନ୍ୱିତ ଓ ଶଯ୍ୟାନଚୟ-ସଂଯୁକ୍ତ ସମୃଦ୍ଧିଶାଳୀ ଦୁର୍ମୁଖଙ୍କର ଉତ୍କୃଷ୍ଟ ଗୃହକୁ ଧର୍ମପୁତ୍ର ଯୁଧିଷ୍ଠିର ପ୍ରିୟକାରୀ ସହଦେବଙ୍କୁ ପ୍ରଦାନ କଲେ ଏବଂ ସହଦେବ କୈଳାସଧାମରେ ଥିବା କୁବେର ପ୍ରାୟ ସେହି ଗୃହକୁ ପ୍ରାପ୍ତ ହୋଇ ଆନନ୍ଦିତ ହେଲେ । ୧୩ ।

ବିଦୁର, ସଞ୍ଜୟ, ଯୁଯୁତ୍ସୁ, ରାଜ ପୁରୋହିତ ଧୌମ୍ୟ ଓ ସୁଧର୍ମା ଏମାନେ ସମସ୍ତେ ପୂର୍ବବତ୍ ନିଜ ନିଜ ଆଳୟକୁ ଗମନ କଲେ । ୧୪ ।

ଶାର୍ଦ୍ଦୂଳ ଯେପରି ଗିରିଗୁହାରେ ପ୍ରବେଶ କରେ, ସେହିପରି ପୁରୁଷଶାର୍ଦ୍ଦୂଳ ଶୌରି ସାତ୍ୟକିଙ୍କ ସହିତ ଏକତ୍ର ହୋଇ ଅର୍ଜୁନଙ୍କ ଗୃହରେ ପ୍ରବିଷ୍ଟ ହେଲେ । ୧୫ ।

ସେମାନେ ସେହିସବୁ ଗୃହରେ ଅନ୍ନାଦି ଭକ୍ଷ୍ୟ ଓ ପାନୀୟ ଦ୍ରବ୍ୟ ଦ୍ୱାରା ତୃପ୍ତ ହୋଇ ପରମ ସୁଖରେ ରାତ୍ରିଯାପନପୂର୍ବକ ପ୍ରାତଃକାଳରେ ଯୁଧିଷ୍ଠିରଙ୍କ ନିକଟରେ ଉପସ୍ଥିତ ହେଲେ । ୧୭ ।

---

## ଅଧ୍ୟାୟ-୪୫

ଜନମେଜୟ ବୋଇଲେ—ହେ ବିପ୍ରର୍ଷେ ! ମହାବାହୁ ଧର୍ମରାଜ ରାଜ୍ୟପ୍ରାପ୍ତି ଉତ୍ତାରେ ଅପରାପର ଯାହା କରିଥିଲେ ଓ ତ୍ରିଲୋକ ଗୁରୁ ମହାବୀର ଭଗବାନ ହୃଷିକେଶ ଅବା କ'ଣ କରିଥିଲେ, ତାହା ଆପଣ ଆମ୍ଭ ନିକଟରେ ବର୍ଣ୍ଣନ କରନ୍ତୁ ।୨।

ବୈଶମ୍ପାୟନ ବୋଇଲେ—ହେ ମହାରାଜ ! ବାସୁଦେବଙ୍କୁ ଅଗ୍ରସର କରି ପାଣ୍ଡବମାନେ ଯାହା କରିଥିଲେ, ତତ୍ସମସ୍ତ ବୃତ୍ତାନ୍ତ ଅମ୍ଭେ କୀର୍ତ୍ତନ କରୁଅଛୁଁ ଶ୍ରବଣ କର ।୩।

କୁନ୍ତୀନନ୍ଦନ ଯୁଧିଷ୍ଠିର ରାଜ୍ୟପ୍ରାପ୍ତି ପରେ ଚତୁର୍ବର୍ଣ୍ୟ ପ୍ରଜାମାନଙ୍କୁ ନିଜ ନିଜ ଧର୍ମରେ ସଂସ୍ଥାପନ କରି ଏକସହସ୍ର ସ୍ନାତକ ବ୍ରାହ୍ମଣମାନଙ୍କୁ ପ୍ରତ୍ୟେକଙ୍କୁ ଏକ ସହସ୍ର କରି ସୁବର୍ଣ୍ଣ ନିଷ୍କ ପ୍ରଦାନପୂର୍ବକ ଅନୁଜୀବୀ ଭୃତ୍ୟ ଓ ସମାଗତ ଅତିଥିମାନଙ୍କର ଅଭିଳାଷାନୁଯାୟୀ ତୃପ୍ତିସାଧନ କଲେ । ଅପିଚ ସେ କୃପଣ ଓ ବିରୁଦ୍ଧମତାବଲମ୍ବିମାନଙ୍କର ଅଭିଳାଷ ପୂରଣ କରିବାକୁ ତ୍ରୁଟି କଲେ ନାହାନ୍ତି ।୭।

ସେହି ମହାଯଶା ଧର୍ମରାଜ ପୁରୋହିତ ଧୌମ୍ୟଙ୍କୁ ଅୟୁତ ଗୋ ଏବଂ ସୁବର୍ଣ୍ଣ ରଜତ ପ୍ରଭୃତି ବିବିଧ ରତ୍ନ ଓ ବସ୍ତୁସବୁ ପ୍ରଦାନ କରି କୃପାଚାର୍ଯ୍ୟଙ୍କୁ ପୂର୍ବବତ୍ ଗୁରୁତ୍ୱରେ ବରଣ କଲେ । ପରନ୍ତୁ ବିଦୁର ଓ ଧୃତରାଷ୍ଟ୍ରଙ୍କ ପୁତ୍ର ଯୁଯୁତ୍ସୁଙ୍କୁ ବିଶେଷ ରୂପରେ ସମ୍ମାନିତ କଲେ । ସେହି ଦାନ ଶୌଣ୍ଡ ପାଣ୍ଡୁନନ୍ଦନ ଯୁଧିଷ୍ଠିର ସମାଶ୍ରିତ ବ୍ୟକ୍ତିମାନଙ୍କୁ ପାନ, ଭୋଜନ, ଶୟନ, ଆସନ ଓ ବହୁଦ୍ୱାରା ସନ୍ତୋଷିତ କଲେ । ସେ ଏହି ପ୍ରକାରେ ସମସ୍ତ ନଗରକୁ ପ୍ରସନ୍ନ କରି ଏବଂ ଲବ୍ଧ ରାଜ୍ୟରେ ଶାନ୍ତି ସ୍ଥାପନ କରି ଧୃତରାଷ୍ଟ୍ର, ଗାନ୍ଧାରୀ ଏବଂ ବିଦୁରଙ୍କୁ ରାଜ୍ୟଭାର ସମର୍ପଣ ପୂର୍ବକ ସୁସ୍ଥ ଚିତ୍ତରେ ଓ ସୁଖରେ ଅବସ୍ଥାନ କଲେ । ତଦନନ୍ତର ସେ

କୃତାଞ୍ଜଳିବଦ୍ଧ ହସ୍ତ ହୋଇ ମହାତ୍ମା ବାସୁଦେବଙ୍କ ନିକଟକୁ ଗମନ କଲେ ।୧୨।

ସେ ସେଠାକୁ ଯାଇ ଦେଖିଲେ ଯେ ଦିବ୍ୟାଭରଣଭୂଷିତ ପୀତ କୌଶେୟ ବସନ ପରିଧାୟୀ ନୀଳମେଘସଦୃଶ କାନ୍ତିମାନ କୃଷ୍ଣ, ସୁବର୍ଣ୍ଣ-ଜଡ଼ିତ ମଣିପ୍ରାପ୍ତ ଶରୀର ପ୍ରଭାବରେ ଜାଜ୍ଜ୍ୱଲ୍ୟମାନ ହୋଇ ମଣି କାଞ୍ଚନ-ବିଭୂଷିତ ମହାର୍ହ ପର୍ଯ୍ୟଙ୍କୋପରି ଉପବେଶନ କରିଅଛନ୍ତି । ତାହାଙ୍କର ବକ୍ଷ ସ୍ଥଳରେ କୌସ୍ତୁଭମଣି ବିରାଜମାନ ଥିବାରୁ ସେ ସମୁଦିତ ପ୍ରଭାକର ବିରାଜିତ ଉଦୟାଚଳ ପ୍ରାପ୍ତ ଶୋଭା ପାଉଥିଲେ ।୧୫।

ହେ ମହାରାଜ ! ଏହି ତ୍ରିଲୋକ ମଧ୍ୟରେ ଏପରି କୌଣସି ବସ୍ତୁ ଦେଖାଯାଏ ନାହିଁ ଯେ କି ବାସୁଦେବଙ୍କର ତତ୍ସାମୟିକ ଶୋଭାର ଉପମା ହୋଇ ପାରିବ । ତତ୍କାଳରେ ଧର୍ମାତ୍ମା ଯୁଧିଷ୍ଠିର ସେହି ପୁରୁଷ ଶ୍ରେଷ୍ଠ ମହାତ୍ମା କୃଷ୍ଣଙ୍କର ନିକଟସ୍ଥ ହୋଇ ଈଷତ୍ ହାସ୍ୟପୂର୍ବକ ମଧୁର ବାକ୍ୟରେ କହିଲେ—ହେ ପୁରୁଷୋତ୍ତମ ! ହେ ପ୍ରାଜ୍ଞପ୍ରବର ! ସୁଖରେ ରାତ୍ରି ଯାପନ ହୋଇ ଅଛି ତ ? ବର୍ତ୍ତମାନ ତୁମ୍ଭର ବୁଦ୍ଧି ପୂର୍ବବତ୍ ପ୍ରସନ୍ନ ଓ ସୁସ୍ଥିର ଅଛି ତ ? ହେ ବିକ୍ରମ ଭଗବନ ! ତୁମ୍ଭର ପ୍ରସାଦରୁ ଆମ୍ଭେମାନେ ପୁନର୍ବାର ରାଜ୍ୟଲାଭ କଲୁଁ ଏବଂ ସମସ୍ତ ପୃଥିବୀ ମଧ୍ୟ ବଶୀଭୂତ ହେଲା । ତୁମ୍ଭ ପ୍ରସାଦରୁ ଆମ୍ଭେମାନେ କ୍ଷତ୍ରିୟ ଧର୍ମରୁ ବିଚ୍ୟୁତ ହୋଇ ନାହୁଁ ଏବଂ ତୁମ୍ଭର କୃପାରୁ ଆମ୍ଭେମାନେ ଯୁଦ୍ଧରେ ଜୟଲାଭ କରି ଉତ୍କୃଷ୍ଟ ଯଶ ଉପାର୍ଜ୍ଜନ କଲୁଁ । ଶତ୍ରୁ ଦମନକାରୀ ଯୁଧିଷ୍ଠିର ଏହିପରି ସ୍ତବ କରୁଥିଲେ ସୁଦ୍ଧା ଭଗବାନ କୃଷ୍ଣ କୌଣସି ଉତ୍ତର କଲେ ନାହିଁ, କାରଣ ସେ ତତ୍ସମୟରେ ଧ୍ୟାନସ୍ଥ ଥିଲେ ।୨୦।

---

## ଅଧ୍ୟାୟ—୪୭

ଯୁଧିଷ୍ଠିର କହିଲେ—ହେ ଅମିତ ବିକ୍ରମ ! ଆଜ ଏ କ'ଣ, କେଉଁ ଆଶ୍ଚର୍ଯ୍ୟର କଥା ? ତୁମ୍ଭେ ଧ୍ୟାନରେ ପ୍ରବୃତ୍ତ ହୋଇଅଛ ? ହେ ଲୋକ ପରାୟଣ ! ବର୍ତ୍ତମାନ ଲୋକତ୍ରୟର ସବୁ ମଙ୍ଗଳ ତ ? ହେ ଦେବ ? ତୁମ୍ଭେ ତୁରୀୟ ଧ୍ୟାନପଥ (ଜାଗ୍ରତ ଓ ସୁସୁପ୍ତିର ଅତୀତ ସ୍ୱରୂପ ଅବସ୍ଥା) ଅବଲମ୍ବନ-ପୂର୍ବକ ସ୍ଥୂଳ, ସୂକ୍ଷ୍ମ ଓ କାରଣ ଏହି ଶରୀରତ୍ରୟରୁ ଅପକ୍ରାନ୍ତ ହୋଇ ଅବସ୍ଥାନ କରୁଅଛ । ଏହା ଦେଖି ଅମ୍ଭର ମନ ବିସ୍ମିତ ହେଉଅଛି ।୨।

ତୁମ୍ଭେ ପ୍ରାଣାଦି ପଞ୍ଚକର୍ମ ନିର୍ବାହକ ଶରୀରସ୍ଥ ବାୟୁକୁ ନିଗୃହୀତ କରିଅଛ । ହେ ଗୋବିନ୍ଦ ! ତୁମ୍ଭେ ସମସ୍ତ ଇନ୍ଦ୍ରିୟଙ୍କୁ ପ୍ରସନ୍ନ କରି ମନ ମଧ୍ୟରେ ସ୍ଥାପିତ କରିଅଛ ଏବଂ ବାକ୍ୟ ଓ ମନକୁ ସଂଯତ କରି ବୁଦ୍ଧିରେ ସନ୍ନିବେଶିତ କରିଅଛ । ଶବ୍ଦାଦି ପଞ୍ଚବିଷୟ ନିଜ ନିଜ ଆଧାରରେ ନିବେଶିତ ହୋଇଅଛନ୍ତି ଏବଂ ତୁମ୍ଭର ଶରୀରସ୍ଥ ଲୋମସବୁ ମନ ଏବଂ ବୁଦ୍ଧି ସ୍ଥିରଭାବରେ ଅବସ୍ଥାନ କରିବାରୁ ତୁମ୍ଭେ କାଷ୍ଠ କିମ୍ବା ଶିଳାସଦୃଶ ନିଶ୍ଚେଷ୍ଟ ହୋଇ ରହିଅଛ ।୫।

ହେ ଭଗବନ ! ଦୀପ ଶିଖା ଯେପରି ବାୟୁହୀନ ସ୍ଥଳରେ ସ୍ଥିର ଭାବରେ ଜଳେ, ଅଥବା ପାଷାଣ ଯେପରି ନିଶ୍ଚଳ ତୁମ୍ଭେ ମଧ୍ୟ ସେହିପରି ଅଚଳଭାବରେ ଅବସ୍ଥାନ କରିଅଛ ।୬।

ହେ ଦେବ ! ଯଦି ଏହା ତୁମ୍ଭର ଗୋପନୀୟ ନ ହୁଏ ଏବଂ ମୁଁ ଯଦି ଏହାକୁ ଶ୍ରବଣ କରିବାର ଉପଯୁକ୍ତ ପାତ୍ର ହୁଏ, ତା'ହେଲେ ପ୍ରାର୍ଥନା କରୁଅଛି ଯେ ତୁମ୍ଭେ ଏହି ଶରଣାଗତ ଜନର ଏତଦ୍‌ବିଷୟକ ସଂଶୟକୁ ଛେଦନ କର ।୭।

ହେ ଧାର୍ମିକପ୍ରବର ! ହେ ପୁରୁଷୋତ୍ତମ ! ତୁମ୍ଭେ ଏକାକ୍ଷର, ଅକ୍ଷର, କର୍ତ୍ତା ଏବଂ ଅକର୍ତ୍ତା ଅଟ । ତୁମ୍ଭେ ଅନାଦି ନିଧନ ଏବଂ ଆଦି ପୁରୁଷ ଅଟ । ଆମ୍ଭେ ତୁମ୍ଭର ଶରଣାଗତ ଭକ୍ତ । ଆମ୍ଭେ ଅବନତ ମସ୍ତକରେ ପ୍ରଣାମ କରୁଅଛୁଁ ଯେ, ତୁମ୍ଭେ ଏହି ଧ୍ୟାନର ପ୍ରକୃତ କାରଣକୁ ଆମ୍ଭଠାରେ ପ୍ରକାଶ କରି କୁହ ।୯।

ତେତେବେଳେ ବାସବାନୁଜ ଭଗବାନ ବାସୁଦେବ ମନ, ବୁଦ୍ଧି ଓ ଇନ୍ଦ୍ରିୟ ସବୁକୁ ପୂର୍ବବତ୍ ସ୍ୱସ୍ୱ ସ୍ଥାନରେ ସ୍ଥାପିତ କରି ଈଷତ୍ ହାସ୍ୟପୂର୍ବକ ଧର୍ମରାଜଙ୍କୁ କହିଲେ ।୧୦।

ବାସୁଦେବ କହିଲେ—ହେ ଧର୍ମରାଜ ! ପ୍ରଶାନ୍ତୋନ୍ମୁଖୀ ହୁତାଶନ ପ୍ରାୟ, ଶର ଶଯ୍ୟାଗତ ପୁରୁଷବ୍ୟାଘ୍ର ଭୀଷ୍ମ ଆମ୍ଭଙ୍କୁ ଧ୍ୟାନ କରୁଅଛନ୍ତି । ତନ୍ନିମିତ୍ତ ଆମ୍ଭେ ମଧ୍ୟ ତଦ୍‌ଗତ ଚିତ୍ତ ହୋଇ ଥିଲୁଁ ।୧୧।

ଯେ ସ୍ୱୟମ୍ବର ସ୍ଥାନରେ ନିଜର ତେଜଃ ପ୍ରଭାବଦ୍ୱାରା ସମସ୍ତ ରାଜ-ମଣ୍ଡଳକୁ ପରାଜିତ କରି କନ୍ୟାତ୍ରୟ ଆନୟନ କରିଥିଲେ, ଯାହାଙ୍କର ବଜ୍ରନିର୍ଘୋଷ ଅଶନିବତ୍ ଜ୍ୟାଘୋଷ ତଳ ଶବ୍ଦକୁ ଦେବରାଜ ସୁଦ୍ଧା ସହ୍ୟ

କରିବାରୁ ନ ଥିଲେ, ଯେ ସୂର୍ଯ୍ୟବଂଶ ବିବସ ଭୃଗୁକୁଳ ନନ୍ଦନ ପଶୁରାମଙ୍କ ସହିତ ଯୁଦ୍ଧ କରିଥିଲେ, ଯାହାଙ୍କୁ ପରଶୁରାମ କୌଣସି ଉପାୟରେ ଯୁଦ୍ଧ ପରାଜିତ କରି ପାରି ନାହାନ୍ତି, ଯାହାଙ୍କୁ ଗଙ୍ଗାଦେବୀ ଗର୍ଭରେ ଧାରଣ କରିଥିଲେ ଏବଂ ବଶିଷ୍ଠ ଦେବ ଶିଷ୍ୟ ବୋଲି ଗ୍ରହଣ କରିଥିଲେ, ଯେଉଁ ମହାତେଜା ବୁଦ୍ଧି ପ୍ରଭାବରୁ ସମସ୍ତ ବିଦ୍ୟାସ୍ତ୍ର ଓ ସାଙ୍ଗ ବେଦ ଚତୁଷ୍ଟୟକୁ ଏକାଧାରରେ ଧାରଣ କରିଥିଲେ, ସେହି ଜମଦଗ୍ନିଙ୍କର ପ୍ରିୟ ଶିଷ୍ୟ ଏବଂ ସର୍ବବିଦ୍ୟାର ଆଧାରସ୍ୱରୂପ ଭୀଷ୍ମ, ମନ ଏବଂ ସମସ୍ତ ଇନ୍ଦ୍ରିୟମାନଙ୍କୁ ସଂଯତ କରି ଏକାନ୍ତଚିତ୍ତରେ ଆମ୍ଭର ଶରଣାଗତ ହୋଇ ଅଛନ୍ତି; ଏହି ହେତୁରୁ ଆମ୍ଭେ ମଧ୍ୟ ତଦ୍‌ଗତ ଚିତ୍ତ ହୋଇଥିଲୁଁ ।୧୮।

ସେହି ଧାର୍ମିକ ଶ୍ରେଷ୍ଠ ଭୀଷ୍ମଙ୍କୁ ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ତ୍ରିକାଳଜ୍ଞ ବୋଲି ଜାଣିବେ । ହେ ଭରତର୍ଷଭ ! ପୁରୁଷ ଶାର୍ଦ୍ଦୂଳ ଭୀଷ୍ମ ସ୍ୱକୀୟ କର୍ମପ୍ରଭାବଦ୍ୱାରା କଳେବର ପରିତ୍ୟାଗପୂର୍ବକ ସ୍ୱର୍ଗକୁ ଗମନ କଲେ ଏହି ପୃଥିବୀ ନଷ୍ଟଚନ୍ଦ୍ରା ଶର୍ବରୀ ପ୍ରାୟ ପ୍ରତୀୟମାନ ହେବ । ଅତଏବ ଆପଣ ସେହି ଭୀମ ପରାକ୍ରମ ଗଙ୍ଗାନନ୍ଦନଙ୍କ ସମୀପରେ ଉପସ୍ଥିତ ହୋଇ, ଧର୍ମ, ଅର୍ଥ, କାମ, ମୋକ୍ଷ, ଯଜ୍ଞାଦି ଚତୁରାଶ୍ରମ ବିଷୟ ଏବଂ ନିଖିଳ ରାଜଧର୍ମ ଏତଦ୍‌ଭିନ୍ନ ଅନ୍ୟ ଯାହା ଆପଣଙ୍କର ଜିଜ୍ଞାସ୍ୟ ଥାଏ, ତାହା ପ୍ରଶ୍ନ କରନ୍ତୁ । ହେ ମହାରାଜ ! କୌରବ କୁଳ ଧୁରନ୍ଧର ଭୀଷ୍ମ ଲୋକାନ୍ତରିତ ହେଲେ ପୃଥିବୀରୁ ସମସ୍ତ ଜ୍ଞାନଶାସ୍ତ୍ର ଏକାବେଳେକେ ଅସ୍ତମିତ ହେବ । ଏହି ହେତୁରୁ ଆମ୍ଭେ ତାହାଙ୍କ ନିକଟକୁ ଯିବାନିମିତ୍ତ ଆପଣଙ୍କୁ କହୁଅଛୁଁ ।୨୩।

ଧର୍ମଜ୍ଞ ଯୁଧିଷ୍ଠିର ବାସୁଦେବଙ୍କର ସେହି ସାରଗର୍ଭ ଉତ୍କୃଷ୍ଟ ବାକ୍ୟକୁ ଶ୍ରବଣ କରି ସାଶ୍ରୁକଣ୍ଠ ହୋଇ କହିଲେ—ହେ ମାଧବ ! ତୁମ୍ଭେ ଭୀଷ୍ମଙ୍କର ପ୍ରଭାବ ବିଷୟରେ ଯାହା କହିଲ, ତହିଁରେ ଆମ୍ଭର କୌଣସି ସନ୍ଦେହ ନାହିଁ । ଆମ୍ଭେ ଭୀଷ୍ମଙ୍କର ସୁମହତ ଭାଗ୍ୟ ଓ ପ୍ରଭାବ ବିଷୟ ମହାତ୍ମା ବ୍ରାହ୍ମଣମାନଙ୍କ ମୁଖରୁ ପୂର୍ବେ ଅନେକଥର ଶ୍ରବଣ କରିଅଛୁଁ ।୨୬।

ବିଶେଷତଃ ସର୍ବଲୋକ କର୍ତ୍ତା ହୋଇ ସୁଦ୍ଧା ତୁମ୍ଭେ ଯେତେବେଳେ ତାହାଙ୍କର ପ୍ରଶଂସା କରୁଅଛ, ସେତେବେଳେ ତାହା ଅବଶ୍ୟ ଆଦରଣୀୟ । ହେ ଶତ୍ରୁ ନିସୂଦନ ! ଯଦି ଆମ୍ଭପ୍ରତି ଅନୁଗ୍ରହ ପ୍ରକାଶ କରିବା ନିମିତ୍ତ ତୁମ୍ଭର ଇଚ୍ଛା ଥାଏ, ତାହାହେଲେ ତୁମ୍ଭେ ସ୍ୱୟଂ ଆମ୍ଭମାନଙ୍କୁ ସଙ୍ଗରେ

ନେଇ ଭୀଷ୍ମଙ୍କ ନିକଟକୁ ଗମନ କର । ହେ ଯଦୁନନ୍ଦନ ! କୁରୁକୁଳ ଚୂଡ଼ାମଣି ଭୀଷ୍ମ ସୂର୍ଯ୍ୟ ଉତ୍ତରାୟଣ ହେଲେ କଳେବର ପରିତ୍ୟାଗ କରିବେ । ଅତଏବ ତାହାଙ୍କୁ ଦର୍ଶନ କରିବା ବିଧେୟ । ହେ ଭଗବନ୍ ! ତୁମ୍ଭେ ଆଦି ଦେବ, କ୍ଷର, ଅକ୍ଷର, ବ୍ରହ୍ମମୟ ଏବଂ ପରମ ନିତ୍ୟ ଅଟ । ଅତଏବ ଆମ୍ଭର ଏହି ଇଚ୍ଛା ଯେ ପିତାମହ ତାହାଙ୍କର ଆସନ୍ନ ମୃତ୍ୟୁ ସମୟରେ ତୁମ୍ଭର ଦର୍ଶନ ଲାଭ କରନ୍ତୁ ।୩୦।

ବୈଶମ୍ପାୟନ କହିଲେ—ମଧୁସୂଦନ ଯୁଧିଷ୍ଠିରଙ୍କର ବାକ୍ୟ ଶ୍ରବଣ କରି ପାର୍ଶ୍ୱସ୍ଥ ସାତ୍ୟକିଙ୍କୁ କହିଲେ—ତୁମ୍ଭେ ଶୀଘ୍ର ଆମ୍ଭର ରଥକୁ ସଜ୍ଜିତ କର ।୩୧।

ଏହି କଥା ଶ୍ରବଣ କରି ସାତ୍ୟକି ତତ୍‌କ୍ଷଣାତ୍ କେଶବଙ୍କଠାରୁ ଗମନପୂର୍ବକ ଦାରୁକଙ୍କୁ କହିଲେ—ତୁମ୍ଭେ ଅବିଳମ୍ବରେ କୃଷ୍ଣଙ୍କର ରଥକୁ ସଜ୍ଜିତ କର ।୩୨।

ତତ୍ସମୟରେ ଦାରୁକ ସାତ୍ୟକିଙ୍କର ବାକ୍ୟକୁ ଶ୍ରବଣ କରିମାତ୍ରକେ ସେହି କାଞ୍ଚନ ବିଭୂଷିତାଙ୍ଗ ମଣି ମଣି ମରକତ ଚନ୍ଦ୍ରକାନ୍ତ ଓ ସୂର୍ଯ୍ୟକାନ୍ତ ମଣିମୟ ହେମ ନିବଦ୍ଧ ଚକ୍ର, ଦିବାକର କିରଣ ସଦୃଶ ଆଶୁଗାମୀ, ମଧ୍ୟଭାଗରେ ବହୁବିଧ ମଣିଦ୍ୱାରା ଅଲଂକୃତ, ନବୋଦିତ ସୂର୍ଯ୍ୟଙ୍କ ପ୍ରାୟ, ଶତ୍ରୁଗଣ ସନ୍ତାପକାରୀ, ସୁବର୍ଣ୍ଣାଳଙ୍କାର ବିଭୂଷିତ ଓ ମନତୁଲ୍ୟ ବେଗଗାମୀ ଶୈବ୍ୟ ସୁଗ୍ରୀବ ପ୍ରମୁଖ ଅଶ୍ୱବୃନ୍ଦ ସଂଯୋଜିତ, ନାନାବିଧ ପତାକା ଓ ଗରୁଡ଼ ଧ୍ୱଜପରିଶୋଭିତ ଉତ୍କୃଷ୍ଟ ରଥକୁ ସଜ୍ଜିତ କରି କୃଷ୍ଣଙ୍କ ନିକଟକୁ ଗମନପୂର୍ବକ କୃତାଞ୍ଜଳିପୂଟରେ ନିବେଦନ କଲା ।୩୪।

---

## ଅଧ୍ୟାୟ-୦୨

ଜନମେଜୟ ବୋଇଲେ—ହେ ଋଷିପ୍ରବର ! ଭରତକୁଳ ପିତାମହ ଭୀଷ୍ମଦେବ ଶରଶଯ୍ୟାଗତ ଥାଇ କେଉଁ ଯୋଗକୁ ଆଶ୍ରୟପୂର୍ବକ କଳେବର ପରିତ୍ୟାଗ କରିଥିଲେ, ତାହା ଅମ୍ଭଠାରେ କୀର୍ତ୍ତନ କରନ୍ତୁ ।୧।

ବୈଶମ୍ପାୟନ ବୋଇଲେ—ହେ ରାଜନ୍ ! ତୁମ୍ଭେ ପବିତ୍ର ଓ ଏକାଗ୍ର-ଚିତ୍ତ ହୋଇ ସାବଧାନରେ ମହାତ୍ମା ଭୀଷ୍ମଙ୍କର ଦେହୋତ୍ସର୍ଗ ବିଷୟ ଶ୍ରବଣ କର ।୨।

ହବାକର ଦକ୍ଷିଣାଯୁକ୍ତ ପରିତ୍ୟାଗ କରି ଉତ୍ତରାୟଣରେ ପ୍ରବୃତ୍ତ ହେଲା ମାତ୍ରକେ ଭୀଷ୍ମ ସମାହିତ ହୋଇ ଆତ୍ମାରେ ଚିତ୍ତକୁ ସମାବେଶିତ କଲେ । ୩ ।

ସେହି ଶ୍ରେଷ୍ଠ ବ୍ରାହ୍ମଣମାନଙ୍କ ଦ୍ୱାରା ପରିବୃତ୍ତ, ଅସଂଖ୍ୟ ଶର ସମୁଖିତ କଳେବର ଭୀଷ୍ମ ଦେବ, ପ୍ରକାଣ୍ଡ ରଶ୍ମି ଆଦିତ୍ୟଙ୍କ ପ୍ରାପ୍ତ, ପରମ ଶୋଭାରେ ଶୋଭିତ ହେଲେ । ୪ ।

ଏମନ୍ତ ସମୟରେ ବେଦବିତ୍ ବ୍ୟାସ ଦେବ, ଦେବର୍ଷି ନାରଦ, ମହାତ୍ମା ଦେବସ୍ଥାନ, ବାତ୍ସ୍ୟ, ଅଶ୍ମକ, ସୁମନ୍ତୁ, ଜୈମିନି, ମହାତ୍ମା ପୈଲ, ଶାଣ୍ଡିଲ୍ୟ, ଦେବରାତ, ଧୀମାନ୍ ମୈତ୍ରେୟ, ଅସିତ୍, ବଶିଷ୍ଠ, ମହାତ୍ମା କୌଶିକ, ହାରୀତ୍, ଲୋମଶ, ଧୀମାନ୍ ଆତ୍ରେୟ, ବୃହସ୍ପତି, ଶୁକ୍ରାଚାର୍ଯ୍ୟ, ମହାମୁନି ଚ୍ୟବନ, ସନତ୍କୁମାର, କପିଳ, ବାଲ୍ମୀକି, ତୁମ୍ବୁରୁ, କୁରୁ, ମୌଦଗଲ୍ୟ ଭୃଗୁକୁଳ ନନ୍ଦନ, ପରଶୁରାମ, ମହାମୁନି ତୃଣବିନ୍ଦୁ, ପିପ୍ପଳାଦ, ବାୟୁ, ସମ୍ବର୍ତ୍ତ, ପୁଲହ, କଠ, କାଶ୍ୟପ, ପୁଲସ୍ତ୍ୟ, କ୍ରତୁ, ଦକ୍ଷ, ପରାଶର, ମରୀଚି, ଅଙ୍ଗିରା, କାଶ୍ୟ, ଗୌତମ କୁଳୋଦ୍ଭବ ମହାମୁନି ଗାଲବ, ଧୌମ୍ୟ, ବିଭାଣ୍ଡ, ମାଣ୍ଡବ୍ୟ, ଧୌମ୍ର, କୃଷ୍ଣାନୁଭୌତିକ, ପରମର୍ଷି ଉଲୂକ, ମହାମୁନି ମାର୍କଣ୍ଡେୟ, ଭାସ୍କର, ପୂରଣ, କୃଷ୍ଣ ଓ ପରମ ଧାର୍ମିକ ସୂତ ଏମାନଙ୍କଦ୍ୱାରା ଏବଂ ଏତଦ୍ଭିନ୍ନ ଅପରାପର ଶ୍ରଦ୍ଧା, ଦମ ଓ ଶମ ପରାୟଣ ମହାଭାଗ ମହାତ୍ମା ମୁନିମାନଙ୍କଦ୍ୱାରା ପରିବୃତ ହୋଇ ପୁରୁଷ-ବ୍ୟାଘ୍ର ଭୀଷ୍ମ, ଗ୍ରହଗଣ ପରିବେଷ୍ଟିତ ଚନ୍ଦ୍ରଙ୍କ ପ୍ରାୟ ଶୋଭା ଧାରଣ କଲେ । ଅନନ୍ତର ଭୀଷ୍ମଦେବ ବଦ୍ଧାଞ୍ଜଳି ହୋଇ ବାକ୍ମନ କର୍ମଦ୍ୱାରା ଏକାଗ୍ରଚିତ୍ତରେ କୃଷ୍ଣଙ୍କ ଚିନ୍ତା କରିବାରେ ପ୍ରବୃତ୍ତ ହେଲେ ଏବଂ ହୃଷ୍ଟପୁଷ୍ଟ ସ୍ୱର ସହଯୋଗରେ ମଧୁସୂଦନଙ୍କର ସ୍ତବ କରିବାକୁ ଆରମ୍ଭ କଲେ । ୧୪ ।

ହେ ମହାରାଜ ! ବାଗ୍ମିପ୍ରବର ପରମ ଧର୍ମାତ୍ମା ଭୀଷ୍ମଦେବ କୃତାଞ୍ଜଳି ହୋଇ ସେହି ପଦ୍ମନାଭ, ଯୋଗେଶ୍ୱର, ବିଷ୍ଣୁ, ଜିଷ୍ଣୁ, ଓ ଜଗତପତି କୃଷ୍ଣଙ୍କ ସ୍ତବ କଲେ । ୧୫ ।

ଭୀଷ୍ମ କହିଲେ—ହେ ପୁରୁଷୋତ୍ତମ ! ତୁମ୍ଭେ ଶୁଚି ସ୍ୱତଃ ପରତଃ ଦୋଷହୀନ; ଅର୍ଥାତ୍ ହିରଣ୍ୟଗର୍ଭ ସ୍ୱରୂପ, ତୁମ୍ଭେ ସେହି ପାରମେଷ୍ଠ୍ୟ ପଦ ଶୁଚିପଦ, ଅର୍ଥାତ୍ ତୁମ୍ଭର ପ୍ରାପ୍ତି ମାର୍ଗ ଯୋଗ ମଧ୍ୟ ଶୁଚି । ତତ୍ପଦ ଅର୍ଥାତ୍ ତତ୍ତ୍ୱମସି ବାକ୍ୟଗତ ତତ୍ପଦାର୍ଥ ସ୍ୱରୂପ । ପ୍ରଜାପତି ଏବଂ ଆତ୍ମସ୍ୱରୂପ,

ଅତଏବ ଆମ୍ଭେ ଐକାନ୍ତିକଭାବରେ ତୁମ୍ଭଠାରେ ଚିତ୍ତ ସମର୍ପଣପୂର୍ବକ ତୁମ୍ଭର ଉପାସନା କରିବାନିମିତ୍ତ ଅଭିଳାଷୀ ହୋଇଅଛୁଁ ଏବଂ ଆମ୍ଭେ ଯାହା କହିବାକୁ ଇଚ୍ଛା କରୁଅଛୁଁ, ତୁମ୍ଭେ ସେହି ସଂକ୍ଷେପ ଓ ବିସ୍ତାର ସହିତ ମଦୁକ୍ତ ବାକ୍ୟର ଦୋଷକୁ ପରିହାରପୂର୍ବକ ଅନୁଗ୍ରହପୂର୍ବକ ପ୍ରୀତିଯୁକ୍ତ ହୁଅ । ୧୭ ।

ତୁମ୍ଭେ ଅନାଦି, ଅନନ୍ତ ଓ ପରବ୍ରହ୍ମ ସ୍ୱରୂପ ଅଟ । ଏକମାତ୍ର ଭଗବାନ୍ ସର୍ବଲୋକ ବିଧାତା ନାରାୟଣ ହରି ତୁମ୍ଭର ତତ୍ତ୍ୱକୁ ଅବଗତ ଅଛନ୍ତି । ତଦ୍ଭିନ୍ନ କୌଣସି ଦେବତା ବା ଋଷି କେହିସୁଦ୍ଧା ତୁମ୍ଭଙ୍କୁ ବିଦିତ ହେବାକୁ ସମର୍ଥ ନୁହଁନ୍ତି । ୧୮ ।

ନାରାୟଣଙ୍କଠାରୁ ଋଷି ସିଦ୍ଧ, ମହୋରଗ, ଦେବ ଓ ଦେବର୍ଷି-ମାନେ ଯାହାଙ୍କୁ ପରମ ଅବ୍ୟୟ ବୋଲି ଜାଣି ଅଛନ୍ତି । ପରନ୍ତୁ ଦେବ ଦାନବ, ଗନ୍ଧର୍ବ, ଯକ୍ଷ, ରାକ୍ଷସ ବା ପନ୍ନଗ, କେହିସୁଦ୍ଧା "ସେ କିଏ ? କେଉଁଠାରୁ ବା ଏହି ଭଗବାନ୍ ହେଲେ ?, ଏହିପରି ଯାହାଙ୍କର ତତ୍ତ୍ୱକୁ ଜାଣି ପାରନ୍ତି ନାହିଁ, ଯେଉଁ ଭୂତେଶ୍ୱରଙ୍କଠାରେ ଗୁଣାତ୍ମକ ଏହିସବୁ ଭୂତ-ସମୂହ, ସୂତ୍ରସ୍ଥ ମଣିନିକର ପ୍ରାୟ ଅବସ୍ଥିତ କରି ପୁନର୍ବାର ପ୍ରଳୟ କାଳରେ ତାହାଙ୍କର ମଧ୍ୟରେ ପ୍ରବିଷ୍ଟ ହୁଅନ୍ତି, ଯେଉଁ ବିଶ୍ୱାଙ୍ଗ ଓ ବିଶ୍ୱକର୍ତ୍ତା ନିତ୍ୟ ବ୍ୟାପକ ପୁରୁଷଙ୍କଠାରେ ଏହି ସଦସତ୍ ଗ୍ରଥିତ ବିଶ୍ୱ; ଦୃଢ଼ତର ବସ୍ତ୍ରତ, ତନ୍ତୁଗ୍ରଥିତ ମାଳାପ୍ରାୟ ଅବସ୍ଥିତ ରହିଅଛି, ଯାହାଙ୍କୁ ଋଷିମାନେ ସହସ୍ର ଶୀର୍ଷ, ସହସ୍ର ଚରଣ, ସହସ୍ର ଚକ୍ଷୁ, ସହସ୍ର ବାହୁ, ସହସ୍ର ମୁକୁଟ, ସହସ୍ର ବଦନଦ୍ୱାରା ଉଜ୍ଜ୍ୱଳ, ବିଶ୍ୱାଶ୍ରୟ, ନାରାୟଣଦେବ ସୂକ୍ଷ୍ମ ବସ୍ତୁମାନଙ୍କ ମଧ୍ୟରେ ସୂକ୍ଷ୍ମତମ, ସମସ୍ତ ସ୍ଥୁଳ ବସ୍ତୁମାନଙ୍କଠାରୁ ସ୍ଥୁଳତମ, ଗରୀୟାନ୍ ପଦାର୍ଥ ମଧ୍ୟରେ ଗରିଷ୍ଠ ଏବଂ ଶ୍ରେୟ ପଦାର୍ଥମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି କୀର୍ତ୍ତନ କରନ୍ତି । ଯେ ବାକ୍, ଅନୁବାକ୍, ନକ୍ଷତ୍ର, ଉପନକ୍ଷତ୍ର, ଏବଂ ସତ୍ୟସ୍ୱରୂପ, ସାମବେଦ ମଧ୍ୟରେ ସତ୍ୟ ଓ ସତ୍ୟକର୍ମ ବୋଲି ସ୍ତୁତ ହୋଇଥାନ୍ତି, ସାଧକମାନେ ବ୍ରହ୍ମ, ଜୀବ, ମନ, ଅହଙ୍କାର ଏହି ଚାରୋଟି ଅଧ୍ୟାତ୍ମ୍ୟ ତତ୍ତ୍ୱର ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ଏହି ଚାରୋଟି ପରମ ଗୁହ୍ୟ ଦିବ୍ୟ ନାମକୁ ଉଚ୍ଚାରଣପୂର୍ବକ ଯାହାଙ୍କୁ ନିୟତ ବୁଦ୍ଧିରେ ଅଭିବ୍ୟକ୍ତ ଓ ଭକ୍ତାଧୀଶ୍ୱର ବୋଲି ଜାଣି ଅର୍ଚ୍ଚନା କରନ୍ତି ଏବଂ ଯାହାଙ୍କର

ପ୍ରୀତି ସମ୍ପାଦନନିମିତ୍ତ ସ୍ୱଧର୍ମ୍ମରୂପ ତପସ୍ୟାକୁ ଆଚରଣ କରିଥାନ୍ତି, ଯାହାଙ୍କଠାରୁ ସେହି ଆଚରିତ ତପଃ ପ୍ରଭାବତତ୍ତ୍ୱରେ ଆସି ଉପସ୍ଥିତ ହୁଏ, ଆମ୍ଭେ ସେହି ଚୈତନ୍ୟ ସ୍ୱରୂପ ସର୍ବଜ୍ଞ ସର୍ବୋତ୍ପାଦକ ସର୍ବେଶ୍ୱରଙ୍କର ଶରଣାଗତ ହେଲୁଁ ।୨୮।

ଅରଣି ହସ୍ତୁ ଉତ୍ପନ୍ନ ଅଗ୍ନି ପ୍ରାପ୍ତ ଯେଉଁ ଦେବ ପୃଥିବୀ, ବ୍ରାହ୍ମଣ, ବେଦ, ଓ ଯଜ୍ଞରକ୍ଷାନିମିତ୍ତ ବାସୁଦେବ ଓ ଦେବକୀଙ୍କଠାରୁ ଉତ୍ପନ୍ନ ହୋଇ ଅଛନ୍ତି ଏବଂ ସାଧକମାନେ ଅନନ୍ୟଚିତ୍ତ ହୋଇ ଓ ସମସ୍ତ ବାସନାବର୍ଜନା-ପୂର୍ବକ ଏକମାତ୍ର ମୋକ୍ଷଲାଭ କରିବାନିମିତ୍ତ ଯାହାଙ୍କ ଅର୍ଚ୍ଚନା କରି ସ୍ୱକୀୟ ଆତ୍ମାରେ ବିଶ୍ୱାତ୍ମାଙ୍କୁ ଦର୍ଶନ କରନ୍ତି, ଆମ୍ଭେ ସେହି ନିର୍ମ୍ମଳ ଜ୍ୟୋତି ସ୍ୱରୂପ ସର୍ବେଶ୍ୱର ଗୋବିନ୍ଦଙ୍କର ଶରଣାଗତ ହେଲୁଁ ।୩୦।

ଯେ ତେଜ ପ୍ରଭାବଦ୍ୱାରା ସୂର୍ଯ୍ୟଙ୍କୁ ଏବଂ କର୍ମ୍ମଦ୍ୱାରା ବାୟୁ ଓ ଇନ୍ଦ୍ରଙ୍କୁ ଅତିକ୍ରମପୂର୍ବକ ବର୍ଦ୍ଧ୍ୟମାନ ରହିଅଛନ୍ତି, ଆମ୍ଭେ ସେହି ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କର ଅଗୋଚର ପରମାତ୍ମା ପ୍ରଜାପତିଙ୍କର ଶରଣାଗତ ହେଲୁଁ । ଯେ ପୁରାଣମାନଙ୍କରେ ଅର୍ଥାତ୍ ଅତୀତ କଳ୍ପରେ ପୁରୁଷ, ଯୁଗାଦିରେ ବ୍ରହ୍ମ ଏବଂ ପ୍ରଳୟ ସମୟରେ ସଙ୍କର୍ଷଣ ନାମରେ ଉକ୍ତ ହୋଇ ଅଛନ୍ତି, ସେହି ପରମୋପାସ୍ୟ ଦେବଙ୍କର ଉପାସନାରେ ପ୍ରବୃତ୍ତ ହେଲୁଁ ।୩୨।

ଯେ ଏକ ହୋଇ ସୁଦ୍ଧା ବହୁ ଅର୍ଥାତ୍ ଇନ୍ଦ୍ରାଦି ରୂପରେ ପ୍ରାଦୁର୍ଭୂତ ହୋଇ ପ୍ରତିଭାତ ହେଉଅଛନ୍ତି ଏବଂ କର୍ମ୍ମଯୋଗିମାନେ ଅନନ୍ୟ ଭକ୍ତ ହୋଇ ଯାହାଙ୍କୁ ଅର୍ଚ୍ଚନା କରନ୍ତି, ଆମ୍ଭେ ସେହି ସର୍ବକାମପ୍ରଦ ଅଧୋକ୍ଷଜଙ୍କର ଶରଣାଗତ ହେଲୁଁ ।୩୩।

ଜ୍ଞାନୀମାନେ ଯାହାଙ୍କୁ ଜଗତ୍କୋଷ ବୋଲି କୀର୍ତ୍ତନ କରନ୍ତି, ସମସ୍ତ ପ୍ରଜା ଯାହାଙ୍କଠାରେ ଅବସ୍ଥିତ ରହି ଅଛନ୍ତି ଏବଂ ସଲିଳରେ ଭାସମାନ ହଂସ ଓ କାରଣ୍ଡବ ପ୍ରଭୃତି ପକ୍ଷୀମାନଙ୍କ ପ୍ରାୟ, ଯାହାଙ୍କର ଚୈତନ୍ୟ ସତ୍ତ୍ୱରେ ସମସ୍ତ ପ୍ରଜାମାନେ ବିହାର କରୁଅଛନ୍ତି, ଯାହାଙ୍କର ସ୍ୱରୂପକୁ ଦେବତା ଓ ଋଷିମାନେ ସୁଦ୍ଧା ଅବଗତ ନୁହଁନ୍ତି, ସେହି ଆଦି, ଅନ୍ତ ଓ ମଧ୍ୟ ବର୍ଜ୍ଜିତ ସଦସତ୍ ଭିନ୍ନ ସତ୍ୟ ସ୍ୱରୂପ ଏକାକ୍ଷର ପରମବ୍ରହ୍ମଙ୍କର ଆଶ୍ରୟ ଗ୍ରହଣ କଲୁଁ । ଦେବ, ଅସୁର, ଗନ୍ଧର୍ବ, ସିଦ୍ଧ, ଋଷି ଓ ମହୋରଗମାନେ ନିଯୁକ୍ତ ସଂଯତଭାବରେ ଯାହାଙ୍କୁ ଅର୍ଚ୍ଚନା କରନ୍ତି, ଯେ ଭବରୋଗ ବିମୋଚନର ପରମ ଭେଷଜ ସ୍ୱରୂପ ଅଷ୍ଠନ୍ତି, ଆମ୍ଭେ ସେହି ଅନାଦି ନିଧନ

ଅନଭିଜ୍ଞେୟ, ଚର୍ମ ଚକ୍ଷୁର ଅଗୋଚର, ସର୍ବ କାରଣ, ସନାତନ, ପରମାତ୍ମା ସ୍ୱରୂପ ସର୍ବଶକ୍ତିମାନ ନାରାୟଣ ହରିଙ୍କର ଶରଣାଗତ ହେଲୁଁ । ଶ୍ରୁତିସବୁ ଯାହାଙ୍କୁ ବିଶ୍ୱକର୍ତ୍ତା, ସ୍ଥାବର ଜଙ୍ଗମାତ୍ମକ ଜଗତର ପାଳକ, ସର୍ବାଧ୍ୟକ୍ଷ, ଅକ୍ଷର ଓ ପରମାଧାର ବୋଲି କୀର୍ତ୍ତନ କରନ୍ତି, ଯେ ଏକ ହୋଇ ସୁଦ୍ଧା ଦୈତ୍ୟନାଶନିମିତ୍ତ ଅଦିତିଙ୍କ ଗର୍ଭରେ ହିରଣ୍ୟ ବର୍ଣ୍ଣ ଦ୍ୱାଦଶାଂଶରେ ବିଭକ୍ତ ହୋଇ ଜନ୍ମଗ୍ରହଣ କରିଥିଲେ, ସେହି ସୂର୍ଯ୍ୟ ସ୍ୱରୂପୀ ପରମାତ୍ମାଙ୍କୁ ନମସ୍କାର କରୁଅଛୁଁ ।୩୮।

ଯେ ଅମୃତଦ୍ୱାରା ଶୁକ୍ଳପକ୍ଷରେ ଦେବଗଣଙ୍କର ଏବଂ କୃଷ୍ଣ ପକ୍ଷରେ ପିତୃଗଣଙ୍କର ତୃପ୍ତି ସାଧନ କରନ୍ତି ଏବଂ ଜଗତରେ ଦ୍ୱିଜରାଜ ବୋଲି କୀର୍ତ୍ତିତ ହୋଇ ଅଛନ୍ତି ସେହି ସୋମମୂର୍ତ୍ତି ପରମାତ୍ମାଙ୍କୁ ନମସ୍କାର ।୩୯।

ଯେ ମହାନ୍ଧକାରର ଅତୀତ ଏବଂ ସ୍ୱୟଂ ଜ୍ୟୋତି ସ୍ୱରୂପ ସର୍ବତ୍ର ପୂର୍ଣ୍ଣ ହୋଇ ଅଛନ୍ତି, ସାଧକମାନେ ଯାହାଙ୍କୁ ଜାଣି ମୃତ୍ୟୁ ମୁଖରୁ ଚିର ନିସ୍ତାର ପ୍ରାପ୍ତ ହୁଅନ୍ତି, ସେହି ଜ୍ଞେୟ ସ୍ୱରୂପ ପରମାତ୍ମାଙ୍କୁ ନମସ୍କାର ।୪୦।

ଋଷିମାନେ ଯାହାଙ୍କୁ ବୃହତ୍ ଉକ୍ଥ ମଧ୍ୟରେ ବହ୍ୱୃଚ ବୋଲି ଏବଂ ଅଗ୍ନି ଚୟନ ରୂପ ମହାଯଜ୍ଞରେ ଅଧ୍ୱର୍ଯ୍ୟୁ ବୋଲି କୀର୍ତ୍ତନ କରନ୍ତି, ସେହି ବେଦାତ୍ମକ ପୁରୁଷଙ୍କୁ ନମସ୍କାର ।୪୧।

ଋକ୍, ଯଜୁ ଓ ସାମ ଏହି ବେଦତ୍ରୟ ଯାହାଙ୍କର ଧାମ, ଯେ ଭୃଷ୍ଟ ଯବ, ଦଧିମିଶ୍ର ଶକ୍ତୁ, ପରିବାପ, ପୁରୋଡାଶ ଓ ପୟ ଏହି ପଞ୍ଚ ହବିରାତ୍ମକ, ଯେ ବେଦ ମଧ୍ୟରେ ସପ୍ତତନ୍ତୁବତ, ଗାୟତ୍ରୀ ପ୍ରଭୃତି ସାତୋଟି ଛନ୍ଦଦ୍ୱାରା ବିସ୍ତୃତ ହୋଇ ଅଛନ୍ତି, ସେହି ଯଜ୍ଞାତ୍ମକ ପୁରୁଷଙ୍କୁ ନମସ୍କାର ।୪୩।

ଯେ ବେଦ ପୁରୁଷ ଓ ଯଜୁର୍ନାମରେ ବିଖ୍ୟାତ ଅଟନ୍ତି । ଗାୟତ୍ରୀ ପ୍ରଭୃତି ଛନ୍ଦସବୁ ଯାହାଙ୍କର ହସ୍ତାଦି ଅବୟବ, ଋକ୍, ସାମ, ଯଜୁ ଏହି ବେଦତ୍ରୟ ସମନ୍ୱିତ ଯଜ୍ଞ ଯାହାଙ୍କର ମସ୍ତକ ଏବଂ ବୃହତ୍ ରଥାନ୍ତର ଯାହାଙ୍କର ପ୍ରୀତିବାକ୍ୟ ସ୍ୱରୂପ, ସେହି ସ୍ତୋତ୍ରାତ୍ମକ ପୁରୁଷଙ୍କୁ ନମସ୍କାର ।୪୪।

ଯେଉଁ ସର୍ବଜ୍ଞ ପୁରୁଷ ପ୍ରଜାପତିମାନଙ୍କର ସହସ୍ର ବାର୍ଷିକ ଯଜ୍ଞରେ ହିରଣ୍ୟ ପକ୍ଷଯୁକ୍ତ ହଂସ ରୂପରେ ଆବିର୍ଭୂତ ହୋଇଥିଲେ ସେହି ହଂସରୂପୀ ପରମାତ୍ମାଙ୍କୁ ନମସ୍କାର ।୪୫।

ବୈଦିକ ପଦସମୂହ ଯାହାଙ୍କର ଅଙ୍ଗ, ସନ୍ଧିସବୁ ଯାହାଙ୍କର ଅଙ୍ଗୁଳି ପ୍ରଭୃତିର ପର୍ବ, ସ୍ୱର ଓ ବ୍ୟଞ୍ଜନସବୁ, ଯାହାଙ୍କର ଭୂଷଣ, ବେଦ ମଧ୍ୟରେ ଯେ ଦିବ୍ୟ ଅକ୍ଷର ବୋଲି କୀର୍ତ୍ତିତ ହୋଇଅଛନ୍ତି ସେହି ବାକ୍ ସ୍ୱରୂପ ପରମ ଦେବତାଙ୍କୁ ନମସ୍କାର ।୪୬।

ଯେ ତ୍ରିଲୋକର ହିତ କାମନାରେ ଯଜ୍ଞ ବରାହ ମୂର୍ତ୍ତିଧାରଣ କରି ରସାତଳଗତ ପୃଥିବୀର ଉଦ୍ଧାର ସାଧନ କରିଥିଲେ, ସେହି ବୀର୍ଯ୍ୟାତ୍ମକ ପୁରୁଷଙ୍କୁ ନମସ୍କାର ।୪୭।

ଯେ ଯୋଗନିଦ୍ରା ଅବଲମ୍ବନପୂର୍ବକ ସହସ୍ର ଫଣା ବିରଚିତ ନାଗ ଭୂଷିତ ପର୍ଯ୍ୟଙ୍କରେ ଶୟନ କରିଥାନ୍ତି, ସେହି ନିଦ୍ରାତ୍ମକ ପୁରୁଷଙ୍କୁ ନମସ୍କାର ।୪୮।

ଯେ ବାଗାଦି ଇନ୍ଦ୍ରିୟମାନଙ୍କୁ ଜୟକରି ମୋକ୍ଷର ହେତୁଭୂତ ବେଦୋକ୍ତ ଉପାୟ ସମସ୍ତଦ୍ୱାରା ସାଧୁମାନଙ୍କର ସଂସାର ତାପନ ସ୍ୱରୂପ ଯୋଗଧର୍ମକୁ ଆବିଷ୍କାର କରିଥିଲେ, ସେହି ସତ୍ୟାତ୍ମାଙ୍କୁ ନମସ୍କାର ।୪୯।

ଭିନ୍ନ ଭିନ୍ନ ଧର୍ମାବଲମ୍ବିମାନେ ଇଚ୍ଛାନୁସାରେ ବିବିଧ ପ୍ରକାର ଫଳାକାଙ୍କ୍ଷୀ ହୋଇ ନିଜ ନିଜ ଧର୍ମାନୁଯାୟୀ ଯାହାଙ୍କୁ ଅର୍ଚ୍ଚନା କରନ୍ତି, ସେହି ଧର୍ମାତ୍ମାଙ୍କୁ ନମସ୍କାର ।୫୦।

ଯାହାଙ୍କଠାରୁ ସମସ୍ତ ପ୍ରାଣିମାନେ ଉତ୍ପନ୍ନ ହୁଅନ୍ତି, ଯେ ସର୍ବ ଦେହସ୍ଥିତ କାମମୟାଙ୍ଗ ଦେହୀ (ଅର୍ଥାତ୍ ମନର ଉନ୍ମାଦଜନକ) ଅଟନ୍ତି ସେହି କାମାତ୍ମାଙ୍କୁ ନମସ୍କାର ।୫୧।

ମହର୍ଷିଗଣ ଯେଉଁ ଅବ୍ୟକ୍ତ ପୁରୁଷଙ୍କୁ ଦେହ ମଧ୍ୟସ୍ଥ କ୍ଷେତ୍ରଜ୍ଞ ବୋଲି ନିଷ୍ଟୟ କରିଅଛନ୍ତି ସେହି କ୍ଷେତ୍ରାତ୍ମାଙ୍କୁ ନମସ୍କାର ।୫୨।

ଚୈତନ୍ୟ ନିତ୍ୟ ସ୍ୱରୂପରେ ଅବସ୍ଥାନ କଲେ ସୁଦ୍ଧା ସାଂଖ୍ୟଗଣ ଯାହାଙ୍କୁ ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି ଏହି ତିନି ଅବସ୍ଥାରେ ଏକାଦଶ ଇନ୍ଦ୍ରିୟ ଓ ପଞ୍ଚ ମହାଭୂତ, ଏହି ଷୋଡ଼ଶ ଗୁଣ ପରିବୃତ୍ତ ଉଦାରଚରୁ ସପ୍ତଦଶ ସଂଖ୍ୟାତ୍ମକ ବୋଲି କୀର୍ତ୍ତନ କରନ୍ତି ସେହି ସଂଖ୍ୟାତ୍ମାଙ୍କୁ ନମସ୍କାର ।୫୩।

ସତ୍ତ୍ୱସ୍ଥ ଜିତେନ୍ଦ୍ରିୟ ଯୋଗିମାନେ ନିଦ୍ରା ଓ ଶ୍ୱାସ ବାୟୁକୁ ଜୟକରି ହୃଦୟ ମଧ୍ୟରେ ଯେଉଁ ଜ୍ୟୋତିଃ ପଦାର୍ଥକୁ ଦର୍ଶନ କରନ୍ତି, ସେହି ଯୋଗାତ୍ମାଙ୍କ ନମସ୍କାର ।୫୪।

ପାପ ଓ ପୁଣ୍ୟର କ୍ଷୟ ହେଲେ ଶାନ୍ତ ସନ୍ନ୍ୟାସୀମାନେ ପୁନରାବୃତ୍ତି ବିଷୟରେ ନିର୍ଭର ହୋଇ ଯାହାଙ୍କୁ ପ୍ରାପ୍ତ ହୁଅନ୍ତି, ସେହି ମୋକ୍ଷାତ୍ମାଙ୍କୁ ନମସ୍କାର ।୫୫।

ଯେ ସହସ୍ର ଯୁଗାନ୍ତରେ ପ୍ରଦୀପ୍ତଶିଖ ବିଭାବସୁଙ୍କ ରୂପରେ ସମସ୍ତ ଭୂତଗଣଙ୍କୁ ଭକ୍ଷଣ କରନ୍ତି, ସେହି ଘୋରାତ୍ମାଙ୍କୁ ନମସ୍କାର ।୫୬।

ଯେ ସମସ୍ତ ବସ୍ତୁକୁ ଭସ୍ମସାତ କରି ଏବଂ ଜଗତକୁ ଏକାର୍ଣ୍ଣବ କରି ଏକମାତ୍ର ବାଳକ ରୂପରେ ନିଦ୍ରିତ ହୁଅନ୍ତି, ସେହି ମାୟାତ୍ମାଙ୍କୁ ନମସ୍କାର ।୫୭।

ପୁଷ୍କରଲୋଚନ ଅଜଙ୍କର ନାଭିଦେଶରେ ଯେଉଁ ପଦ୍ମ ଉତ୍ପନ୍ନ ହୁଏ; ଯହିଁରେ ଏହି ବିଶ୍ୱ ପ୍ରତିଷ୍ଠିତ ରହିଅଛି, ସେହି ପଦ୍ମାତ୍ମାଙ୍କୁ ନମସ୍କାର ।୫୮।

ସାଗର ସଦୃଶ ଚତୁର୍ବିଧ ପ୍ରସୃପ୍ତଜନ୍ତୁ ବିଚ୍ଛିନୋଦାର ରୂପରେ କାମ । ଯାହାଙ୍କଠାରୁ ନଷ୍ଟ ହୁଏ, ସେହି ଅସଂଖ୍ୟ ମସ୍ତକ, ଅପରିମେୟ, ଯୋଗ ନିଦ୍ରାତ୍ମକ ପୁରୁଷଙ୍କୁ ନମସ୍କାର ।୫୯।

ଯାହାଙ୍କର କେଶରେ, ମେଘଗଣ, ସମସ୍ତ ଅଙ୍ଗ ସନ୍ଧି ମଧ୍ୟରେ ନଦୀମାନେ ଏବଂ କୁକ୍ଷିରେ ଚାରିଗୋଟି ସାଗର ଅବସ୍ଥିତ ରହିଅଛନ୍ତି, ସେହି ସଲିଳମୟ ପୁରୁଷଙ୍କୁ ନମସ୍କାର ।୬୦।

ଯାହାଙ୍କଠାରୁ ପ୍ରାଣୀମାନଙ୍କର ଜନ୍ମ ମରଣ ରୂପବିକାର ଉତ୍ପନ୍ନ ହୁଏ ଏବଂ ମହାପ୍ରଳୟରେ ଯାହାଙ୍କଠାରେ ସମସ୍ତ ଜଗତ ବିଲୀନ ହୁଏ, ସେହି କାରଣାତ୍ମଙ୍କୁ ନମସ୍କାର ।୬୧।

ଯେ ପ୍ରାଣିମାନଙ୍କର ସୁଷୁପ୍ତି କାଳରେ ସୁଦ୍ଧା ପ୍ରସୁପ୍ତ ହୁଅନ୍ତି ନାହିଁ ଯେ କର୍ତ୍ତା ନ ହୋଇ ସୁଦ୍ଧା ଜାଗ୍ରତ ଓ ସ୍ୱପ୍ନାବସ୍ଥାର କର୍ତ୍ତା ପ୍ରାୟ ପ୍ରତୀୟମାନ ହୁଅନ୍ତି, ପ୍ରାଣିମାନଙ୍କର ଇଷ୍ଟାନିଷ୍ଟ କାର୍ଯ୍ୟର ଦ୍ରଷ୍ଟାମାତ୍ର, ସେହି ସାକ୍ଷୀସ୍ୱରୂପ ଚୈତନ୍ୟ ପୁରୁଷଙ୍କୁ ନମସ୍କାର ।୬୨।

ଯେ କୌଣସି କାର୍ଯ୍ୟରେ କୁଣ୍ଠିତ ହୁଅନ୍ତି ନାହିଁ ଏବଂ ଧର୍ମ କାର୍ଯ୍ୟନିମିତ୍ତ ଉଦ୍ୟତ ଅଟନ୍ତି, ସେହି ପୁଣ୍ୟ ବୈକୁଣ୍ଠରୂପ କାର୍ଯ୍ୟାତ୍ମକ ପୁରୁଷଙ୍କୁ ନମସ୍କାର ।୬୩।

ଯେ କ୍ରୁଦ୍ଧହୋଇ ଯୁଦ୍ଧରେ ଏକବିଂଶତି ବାର ଧର୍ମ ମର୍ଯ୍ୟାଦା ଉଲ୍ଲଙ୍ଘନକାରୀ କ୍ଷତ୍ରିୟମାନଙ୍କର ବିନାଶସାଧନ କରିଥିଲେ, ସେହି କ୍ରୂରାତ୍ମାଙ୍କୁ ନମସ୍କାର ।୬୪।

ଯେ ପ୍ରାଣାଦି ପଞ୍ଚଧା ବିଭକ୍ତ ହୋଇ ଶରୀରଗତ ବାୟୁ ରୂପରେ ପ୍ରାଣିମାନଙ୍କୁ ଚେଷ୍ଟିତ କରନ୍ତି, ସେହି ବାୟୁମୟ ପୁରୁଷଙ୍କୁ ନମସ୍କାର ।୨୫

ଯେ ଯୁଗେ ଯୁଗେ କାର୍ଯ୍ୟାଧୀନ ନ ହୋଇ ଯୋଗମାୟା ପ୍ରଭାବ-ଦ୍ୱାରା ମତ୍ସ୍ୟ, କୂର୍ମ, ବରାହ, ପ୍ରଭୃତି ମୂର୍ତ୍ତିଧାରଣ କରି ଅବତୀର୍ଣ୍ଣ ହୁଅନ୍ତି ଏବଂ ମାସ, ଋତୁ, ଅୟନ, ଓ ବତ୍ସରାଦି ରୂପରେ ସୃଷ୍ଟି, ସ୍ଥିତି ଓ ପ୍ରଳୟ କାର୍ଯ୍ୟ ସମ୍ପାଦନ କରନ୍ତି, ସେହି କାଳରୂପ ପୁରୁଷଙ୍କୁ ନମସ୍କାର ।୨୬।

ବ୍ରାହ୍ମଣ ଯାହାଙ୍କର ମୁଖ, କ୍ଷତ୍ରିୟ ଯାହାଙ୍କର ବାହୁଦ୍ୱୟ, ବୈଶ୍ୟ ଯାହାଙ୍କର ଊରୁଦ୍ୱୟ, ଏବଂ ଶୂଦ୍ର ଯାହାଙ୍କର ପାଦଦ୍ୱୟକୁ ଆଶ୍ରୟ କରି ରହି ଅଛନ୍ତି, ସେହି ବର୍ଣ୍ଣାତ୍ମକ ପୁରୁଷଙ୍କୁ ନମସ୍କାର ।୨୭।

ସ୍ୱର୍ଗ ଯାହାଙ୍କର ମସ୍ତକ, ଅଗ୍ନି ଯାହାଙ୍କର ଆସ୍ୟ, ଆକାଶ ଯାହାଙ୍କର ନାଭି, ସୂର୍ଯ୍ୟ ଯାହାଙ୍କର ଚକ୍ଷୁ, ଦିକ୍ ସମସ୍ତ ଯାହାଙ୍କର ଶ୍ରୋତ୍ର ଏବଂ ପୃଥିବୀ ଯାହାଙ୍କର ଚରଣ, ସେହି ଲୋକାତ୍ମକ ପୁରୁଷଙ୍କୁ ନମସ୍କାର ।୨୮।

ଯେ କାଳରୁ ଭିନ୍ନ ଅଟନ୍ତି ଏବଂ ସମସ୍ତ ଯଜ୍ଞର ଅଧିଷ୍ଠାତୃଦେବ ହିରଣ୍ୟଗର୍ଭ, ଏମାନଙ୍କ ଅପେକ୍ଷା ମଧ୍ୟ ଶ୍ରେଷ୍ଠ ଅଟନ୍ତି, ସେହି ଶୁଦ୍ଧ ଅନାଦି ଓ ଇଶ୍ୱର ଆଦି ପୁରୁଷ ବିଶ୍ୱାତ୍ମାଙ୍କୁ ନମସ୍କାର ।୨୯।

ରାଗ ଦ୍ୱେଷ ମୋହିତ ଅଜ୍ଞମାନେ ଶବ୍ଦ ସ୍ପର୍ଶାଦି ବିଷୟରେ ବର୍ତ୍ତମାନ ଥିବା ଶ୍ରୋତ୍ରାଦି ଇନ୍ଦ୍ରିୟମାନଙ୍କୁ ଅନାଦର କରି ଯାହାଙ୍କୁ ବିଷୟଗୋପ୍ତା ବୋଲି ମନେ କରନ୍ତି, ସେହି ଗୋପ୍ତୃରୂପ ପରମାତ୍ମାଙ୍କୁ ନମସ୍କାର ।୭୦।

ଯେ ଅନ୍ନପାନ ଓ ଇନ୍ଦ୍ରିୟ ରୂପରେ ଶାରୀରିକ ରସ ଓ ବଳର ବୃଦ୍ଧି କରନ୍ତି ଯେ ସର୍ବଭୂତର ଧାରୟିତା ଅଟନ୍ତି, ସେହି ପ୍ରାଣମୟ ପୁରୁଷଙ୍କୁ ନମସ୍କାର ।୭୧।

ଯେ ପ୍ରାଣିମାନଙ୍କର ପ୍ରାଣଧାରଣନିମିତ୍ତ ଚତୁର୍ବିଧ ଅନ୍ନଭୋଜନ କରନ୍ତି ଏବଂ ଶରୀରାଭ୍ୟନ୍ତରରେ ପ୍ରବିଷ୍ଟ ହୋଇ ଉକ୍ତ ଚତୁର୍ବିଧ ଭୁକ୍ତାନ୍ନକୁ ପରିପାକ କରନ୍ତି, ସେହି ପାପାତ୍ମକ ପୁରୁଷଙ୍କୁ ନମସ୍କାର ।୭୨।

ଯାହାଙ୍କର ଜଟା ଓ ଚକ୍ଷୁ ପିଙ୍ଗଳବର୍ଣ୍ଣ, ଏବଂ ଦଂଷ୍ଟ୍ରା ଓ ନଖ ଯାହାଙ୍କର ଆୟୁଧ, ସେହି ଦୁର୍ଜୟ ଦୈତ୍ୟାନ୍ତର ନୃସିଂହ ମୂର୍ତ୍ତିଧାରୀ ପରମାତ୍ମାଙ୍କୁ ନମସ୍କାର ।୭୩।

ଯାହାଙ୍କୁ ଦେବ, ଗନ୍ଧର୍ବ, ଦୈତ୍ୟ କିମ୍ବା ଦାନବ କେହି ସୁଦ୍ଧା ଯଥାର୍ଥ ରୂପରେ ଜାଣିବାକୁ ସମର୍ଥ ନୁହନ୍ତି, ସେହି ସୂକ୍ଷ୍ମାତ୍ମାଙ୍କୁ ନମସ୍କାର ।୭୪।

ଯେଉଁ ସର୍ବଶକ୍ତିମାନ ସର୍ବବ୍ୟାପୀ ଭଗବାନ୍ ରସାତଳ ଗତ ହୋଇ ସମଗ୍ର ଜଗତକୁ ଧାରଣ କରିଅଛନ୍ତି, ସେହି ବୀର୍ଯ୍ୟାତ୍ମାଙ୍କୁ ନମସ୍କାର ।୭୫।

ଯେ ସୃଷ୍ଟି ରକ୍ଷାନିମିତ୍ତ ଜଗତସ୍ଥ ସମସ୍ତ ପ୍ରାଣିମାନଙ୍କୁ ସ୍ନେହପାଶଦ୍ୱାରା ମୋହିତ କରୁଅଛନ୍ତି ସେହି ମୋହାତ୍ମାଙ୍କୁ ନମସ୍କାର ।୭୬।

ଯୋଗୀମାନେ ଜ୍ଞାନସାଧନ ଦ୍ୱାରା ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଏହି ପାଞ୍ଚୋଟି ବିଷୟସ୍ଥିତ ଜ୍ଞାନକୁ ଉଲ୍ଲିଖିତ ବିଷୟମାନଙ୍କରୁ ପୃଥକ କରି ବିଶୁଦ୍ଧ ଜ୍ଞାନକୁ ଆତ୍ମ ସ୍ୱରୂପରେ ଅବଗତ ହୋଇ ଯାହାଙ୍କୁ ପ୍ରାପ୍ତ ହୁଅନ୍ତି, ସେହି ଜ୍ଞାନ ସ୍ୱରୂପ ପରମାତ୍ମାଙ୍କୁ ନମସ୍କାର ।୭୭।

ଯାହାଙ୍କର ବୋଧରୂପ ଚକ୍ଷୁ ସର୍ବତ୍ର ବର୍ତ୍ତମାନ, ଯେ ଅଗୋଚର ସ୍ୱରୂପ, ଯାହାଙ୍କଠାରେ ଏହି ଅନନ୍ତ ବିଷୟସମୂହ ଅବସ୍ଥିତ ରହିଅଛି ସେହି ଦିବ୍ୟାତ୍ମାଙ୍କୁ ନମସ୍କାର ।୭୮।

ଯେ ନିତ୍ୟ ଜଟା ଓ ଦଣ୍ଡଧାରୀ ଏବଂ ଲମ୍ବୋଦର ଶରୀରବିଶିଷ୍ଟ ଅଟନ୍ତି, ଯାହାଙ୍କର କମଣ୍ଡଳୁ ତୂଣୀର ସ୍ୱରୂପ, ସେହି ବ୍ରହ୍ମାତ୍ମାଙ୍କୁ ନମସ୍କାର ।୭୯।

ଯେ ସର୍ବଦା ଭସ୍ମାଚ୍ଛନ୍ନ କଳେବରରେ ଶୂଳଧାରଣପୂର୍ବକ ବିରାଜିତ ହୋଇ ଅଛନ୍ତି, ସେହି ତ୍ରିଦଶନାଥ ତ୍ରିନେତ୍ର ଊର୍ଦ୍ଧ୍ୱଲିଙ୍ଗ ରୁଦ୍ରାତ୍ମାଙ୍କୁ ନମସ୍କାର ।୮୦।

ଅର୍ଦ୍ଧଚନ୍ଦ୍ର ଯାହାଙ୍କର ଲଲାଟ ଭୂଷଣ, ସର୍ପ ଯାହାଙ୍କର ଯଜ୍ଞୋପବୀତ, ସେହି ଶୂଳ ଓ ପିନାକ ପାଣି ଉଗ୍ରାତ୍ମାଙ୍କୁ ନମସ୍କାର ।୮୧।

ଯେ ସର୍ବ ଭୂତର ଆତ୍ମ ସ୍ୱରୂପ, ଯେ ଅହଙ୍କାରର ପ୍ରଣାଶ କର୍ତ୍ତା, ସେହି କ୍ରୋଧ, ମୋହ ଓ ଦ୍ରୋହ ଶୂନ୍ୟ ଶାନ୍ତାତ୍ମାଙ୍କୁ ନମସ୍କାର ।୮୨।

ଏହି ବିଶ୍ୱ ଯାହାଙ୍କଠାରେ ଅବସ୍ଥିତ ରହିଅଛି, ଯାହାଙ୍କଠାରୁ ସମସ୍ତ ଜଗତ ଉତ୍ପନ୍ନ ହୁଏ, ଯେ ସର୍ବତ୍ର ଅବସ୍ଥାନ କରିଅଛନ୍ତି, ଯେ ସ୍ୱୟଂ ବିଶ୍ୱରୂପ ଏବଂ ବିଶ୍ୱର ଆତ୍ମ ସ୍ୱରୂପ ଅଟନ୍ତି, ସେହି ନିତ୍ୟ ସ୍ୱରୂପ ସର୍ବମୟ ପୁରୁଷଙ୍କୁ ନମସ୍କାର ।୮୩।

ହେ ବିଶ୍ୱକର୍ମନ୍! ହେ ବିଶ୍ୱୋତ୍ପାଦକ ! ତୁମ୍ଭେ ପଞ୍ଚଭୂତରୁ ଭିନ୍ନ ଅଟ ଏବଂ ନିତ୍ୟ ମୁକ୍ତ ସ୍ୱରୂପ ଅଟ, ତୁମ୍ଭଙ୍କୁ ନମସ୍କାର ।୮୩।

ତୁମ୍ଭେ ତ୍ରିଲୋକରେ, ସମସ୍ତ ଜଗମାନଙ୍କରେ ଓ ତ୍ରିକାଳରେ ଧର୍ମଭାବରେ ବିଦ୍ୟମାନ ରହିଅଛ, ତୁମ୍ଭେ ସର୍ବମୟ ଓ ନିଧି ସ୍ୱରୂପ ଅଟ, ତୁମ୍ଭଙ୍କୁ ନମସ୍କାର ।୮୪।

ହେ ଭଗବନ୍ ! ହେ ବିଷ୍ଣୋ ! ତୁମ୍ଭେ ଏହି ବିଶ୍ୱର ଉଦ୍ଭାବକ ଏବଂ ଅବ୍ୟୟ ସ୍ୱରୂପ, ତୁମ୍ଭଙ୍କୁ ନମସ୍କାର । ହେ ହୃଷୀକେଶ ! ତୁମ୍ଭେ ଜଗତର କର୍ତ୍ତା, ସଂହର୍ତ୍ତା ଏବଂ ଅପରାଜେୟ, ତୁମ୍ଭଙ୍କୁ ନମସ୍କାର ।୮୫।

ହେ ଭଗବାନ୍! ଆମ୍ଭେ ଯଦ୍ୟପି ତୁମ୍ଭର ବର୍ତ୍ତମାନାଦି କାଳତ୍ରୟା-ବସ୍ଥିତ ଦିବ୍ୟଭାବ ଦର୍ଶନରେ ସମର୍ଥ ହେଉନାହୁଁ, ତଥାପି ତୁମ୍ଭର ଯେଉଁ ସନାତନ ରୂପ ତାହା ଆମ୍ଭେ ତତ୍ତ୍ୱବୋଧଦ୍ୱାରା ଦର୍ଶନ କରୁଅଛୁଁ ।୮୬।

ତୁମ୍ଭର ମସ୍ତକଦ୍ୱାରା ଦ୍ୟୁଲୋକ ପଦଦ୍ୱାରା ଭୂଲୋକ ଏବଂ ବିକ୍ରମ-ଦ୍ୱାରା ତ୍ରିଲୋକବ୍ୟାପ୍ତ ହୋଇ ଅଛ, ତୁମ୍ଭେ ସାକ୍ଷାତ ସେହି ସନାତନ ପୁରୁଷ ।୮୮।

ଦିକ୍‌ସବୁ ତୁମ୍ଭର ବାହୁ, ରବି ତୁମ୍ଭର ଚକ୍ଷୁ, ପ୍ରଶଂସିତ ପ୍ରଜାପତିମାନେ ତୁମ୍ଭର ବୀର୍ଯ୍ୟ ସ୍ୱରୂପ, ତୁମ୍ଭେ ମହା ତେଜୋମୟ ବାୟୁ ସ୍ୱରୂପ ଉପରିତନ ସମସ୍ତ ଛିଦ୍ରକୁ ନିରୋଧ କରି ରହିଅଛ । ଅତସୀ କୁସୁମ ସଙ୍କାଶ ପୀତବାସ ଅଚ୍ୟୁତ ଗୋବିନ୍ଦଙ୍କୁ ଯେଉଁମାନେ ନମସ୍କାର କରନ୍ତି, ସେମାନଙ୍କର କୌଣସି ଭୟ ଉପସ୍ଥିତ ହୁଏନାହିଁ । ୯୦ ।

ଦଶୋଟି ଅଶ୍ୱମେଧ ଯଜ୍ଞାନ୍ତରେ ଅବଭୃଥ ସ୍ନାନକଲେ ଯେପରି ଶୁଭାଦୃଷ୍ଟ ଜନ୍ମେ, ତାହା କୃଷ୍ଣଙ୍କର ଗୋଟିଏମାତ୍ର ପ୍ରଣାମ ସହିତ ସୁଦ୍ଧା ତୁଲ୍ୟ ହୋଇ ପାରେନାହିଁ । କାରଣ ସେହି ଦଶାଶ୍ୱମେଧ ଯାଜୀ ପୁରୁଷଙ୍କୁ ପୁନର୍ବାର ଜନ୍ମଗ୍ରହଣ କରିବାକୁ ହୁଏ; କିନ୍ତୁ କୃଷ୍ଣ ପ୍ରଣାମ କର୍ତ୍ତାଙ୍କୁ ଆଉ ଜନ୍ମ ମରଣ ଯାତନା ଭୋଗ କରିବାକୁ ହୁଏନାହିଁ । ୯୧ ।

କୃଷ୍ଣ ଯେଉଁମାନଙ୍କର ବ୍ରତ ଏବଂ ଯେଉଁମାନେ ଶୟନ ଓ ଉତ୍‌ଥାନକାଳରେ କୃଷ୍ଣଙ୍କର ସ୍ମରଣ କରନ୍ତି, ସେହି କୃଷ୍ଣପ୍ରାଣ ସାଧକମାନେ ମନ୍ତ୍ରାହୂତ ଆଜ୍ୟ ହୁତାଶନରେ ପ୍ରବେଶ କଲା ପ୍ରାୟ ଚରମ କାଳରେ କୃଷ୍ଣଙ୍କଠାରେ ପ୍ରବିଷ୍ଟ ହୁଅନ୍ତି । ୯୨ ।

ଯେ ନରକ ଭୟର ନିବାରଣକାରୀ ଏବଂ ସଂସାର' ନଦୀର ଆବର୍ତ୍ତରୁ ଉଦ୍ଧାରଣ ସ୍ୱରୂପ, ସେହି କୃଷ୍ଣଙ୍କୁ ପୁନଃ ପୁନଃ ନମସ୍କାର । ୯୩ ।

ଯେ ଗୋ-ବ୍ରାହ୍ମଣ ଏବଂ ସମସ୍ତ ଜଗତର ହିତକାରୀ ଅଟନ୍ତି, ସେହି ଜଗତ ତ୍ରାଣକର୍ତ୍ତା ବ୍ରହ୍ମଣ୍ୟ ଦେବ କୃଷ୍ଣଙ୍କୁ ବାରମ୍ବାର ନମସ୍କାର । ୯୪ ।

"ହରି" ଏହି ଅକ୍ଷରଦ୍ୱୟଯୁକ୍ତ ନାମଟି ପ୍ରାଣିମାନଙ୍କର ପାଥେୟ । ସଂସାର ଛେଦର ଉପାୟ ଏବଂ ଦୁଃଖ ଶୋକର ପରିତ୍ରାତା ।୯୫।

ସତ୍ୟ କୃଷ୍ଣମୟ, ଜଗତ କୃଷ୍ଣମୟ ଏବଂ ସମସ୍ତ ବସ୍ତୁ କୃଷ୍ଣମୟ, ଅତଏବ ଆମ୍ଭର ଚିତ୍ତ ମଧ୍ୟ କୃଷ୍ଣମୟ ହେବାରୁ ନିଷ୍ପାପ ହେଉ ।୯୬।

ହେ ପୁଣ୍ଡରୀକାକ୍ଷ ! ହେ ସୁରଶ୍ରେଷ୍ଠ ! ଏହି ଭକ୍ତ ଅଭିଳଷିତ ଗତି ପ୍ରାପ୍ତି କାମନାରେ ତୁମ୍ଭର ଏକାନ୍ତ ଶରଣାଗତ ହେଲା । ବର୍ତ୍ତମାନ ଯହିଁରେ ମଙ୍ଗଳ ହୁଏ, ତୁମ୍ଭେ ତାହା ଚିନ୍ତା କର ।୯୭।

ହେ ଜନାର୍ଦ୍ଦନ ! ତୁମ୍ଭେ ବିଦ୍ୟା ଓ ତପସ୍ୟାର କାରଣ ସ୍ୱରୂପ ଅଟ । ତୁମ୍ଭେ ଆମ୍ଭରି ସ୍ତୁତି ବାକ୍ୟ ରୂପ ଯଜ୍ଞଦ୍ୱାରା ଅର୍ଚ୍ଚିତ ହୋଇ ପରିତୃପ୍ତ ହୁଅ ।୯୮।

ବେଦ ତପସ୍ୟା କିମ୍ବା ଦେବଗଣ, ଯାହା କିଛି ବସ୍ତୁ ଅଛି, ତତ୍ସମସ୍ତ ନିତ୍ୟ ନାରାୟଣ ପର ଅଟେ ।୯୯।

ବୈଶମ୍ପାୟନ କହିଲେ-କୁରୁକୁଳ ଚୂଡ଼ାମଣି ଭୀଷ୍ମ ଏହି କଥା କହି ତଦ୍‌ଗତ ଚିତ୍ତରେ କୃଷ୍ଣଙ୍କୁ ପ୍ରଣାମ କଲେ । ତତ୍କାଳରେ ମାଧବ ଯୋଗ ପ୍ରଭାବଦ୍ୱାରା ଭୀଷ୍ମଙ୍କର ଶରୀରାଭ୍ୟନ୍ତରେ ପ୍ରବିଷ୍ଟ ହୋଇ ତାହାଙ୍କୁ ଭକ୍ତି ଓ ତ୍ରିକାଳ ଦର୍ଶନଜ୍ଞାନ ପ୍ରଦାନପୂର୍ବକ ପୁନର୍ବାର ସ୍ୱକୀୟ ଶରୀରକୁ ଆଗମନ କଲେ । ୧୦୧ ।

ମହାମତି ଭୀଷ୍ମଙ୍କର ବାକ୍ୟ ଶେଷ ହୁଅନ୍ତେ ପ୍ରଧାନ ପ୍ରଧାନ ବ୍ରହ୍ମବାଦୀ ବ୍ରାହ୍ମଣମାନେ ବାକ୍ୟଦ୍ୱାରା ଭୀଷ୍ମଙ୍କୁ ଅର୍ଚ୍ଚନା କଲେ ।୧୦୨।

ଅନନ୍ତର ସେମାନେ ପୁରୁଷୋତ୍ତମ କୃଷ୍ଣଙ୍କର ସ୍ତବ କରି ମୃଦୁ ସ୍ୱରରେ ବାରମ୍ବାର ଭୀଷ୍ମଙ୍କର ପ୍ରଶଂସା କଲେ ।୧୦୩।

ତେତେବେଳେ ପୁରୁଷୋତ୍ତମ କୃଷ୍ଣ ଯୋଗବଳଦ୍ୱାରା ଭୀଷ୍ମଙ୍କର ଭକ୍ତି ବିଷୟକୁ ଅବଗତ ହୋଇ ଅତ୍ୟନ୍ତ ଅହ୍ଲାଦ ସହିତ ସହସା ଗାତ୍ରୋତ୍‌ଥାନପୂର୍ବକ ରଥାରୋହଣ କଲେ ।୧୦୪,

'ସାତ୍ୟକି କୃଷ୍ଣଙ୍କର ରଥରେ ସମାରୂଢ଼ ହୋଇ ତାହାଙ୍କ ସଙ୍ଗରେ ଗମନ କଲେ । ମହାତ୍ମା ଯୁଧିଷ୍ଠିର ଓ ଧନଞ୍ଜୟ ଗୋଟିଏ ରଥରେ ଏବଂ ଭୀମସେନ ଓ ମାଦ୍ରୀପୁତ୍ର ଦ୍ୱୟ ଅପର ରଥରେ ଆରୋହଣ କରି ଗମନ କଲେ । ପୁରୁଷଶ୍ରେଷ୍ଠ ପରନ୍ତପ କୃଷ୍ଣ, ଯୁଯୁତ୍ସୁ ଏବଂ ସୂତ କୁଳୋଦ୍ଭବ ସଞ୍ଜୟ ଗୋଟିଏ ଗୋଟିଏ ନଗରାକାର ରଥରେ ସମାରୂଢ଼ ହୋଇ ନେମି ନିର୍ଘୋଷଦ୍ୱାରା ବସୁନ୍ଧରାକୁ କମ୍ପିତ କରି ଗମନ କଲେ । ୧୦୭।

କେଶିନିସୂଦନ ପୁରୁଷପ୍ରବର କୃଷ୍ଣ ଗମନ କରିବା ସମୟରେ ପଥରେ ଦ୍ୱିଜଗଣଙ୍କଠାରୁ ନାନାବିଧ ସ୍ତୁତିବାଦ ଶ୍ରବଣ କରି ଏବଂ ଅପର କୌଣସି କୌଣସି ବ୍ୟକ୍ତିଙ୍କୁ ପ୍ରଣତଭାବରେ ଅବସ୍ଥାନ କରିବାର ଦେଖି ଆନନ୍ଦଚିତ୍ତରେ ସେମାନଙ୍କୁ ପ୍ରତ୍ୟଭିନନ୍ଦିତ କଲେ ।୧୦୮।

---

## ଅଧ୍ୟାୟ-୪୮

ବୈଶମ୍ପାୟନ ବୋଇଲେ—ହେ ମହାରାଜ ! ଏହି ପ୍ରକାରେ ବାସୁଦେବ, ସହୋଦର—ବୃନ୍ଦସମନ୍ୱିତ ନରପତି ଯୁଧିଷ୍ଠିର ଏବଂ କୃପାଚାର୍ଯ୍ୟ ପ୍ରଭୃତି ସମସ୍ତେ ଶୀଘ୍ରଗାମୀ ଅଶ୍ୱଗଣ ସଂଯୋଜିତ, ଧ୍ୱଜପତାକା ପରିଶୋଭିତ ନଗର ସଦୃଶ ରଥମାନଙ୍କରେ ସମାରୂଢ଼ ହୋଇ କୁରୁକ୍ଷେତ୍ରା-ଭିମୁଖରେ ଗମନ କଲେ ।୧।

ଯୁଧିଷ୍ଠିର ପ୍ରଭୃତି ମହାରଥୀମାନେ ଯେଉଁ ସ୍ଥଳରେ ମହାତ୍ମା କ୍ଷତ୍ରିୟଗଣ ସଂଗ୍ରାମରେ ଦେହ ବିସର୍ଜ୍ଜନ କରିଅଛନ୍ତି, ସେହି ପ୍ରେତ ଓ ରାକ୍ଷସସମୂହ ନିଷେବିତ, ଅନନ୍ତର ଭୁକ୍ତାବଶେଷ ଆପାନ ଭୂମି ପ୍ରାୟ କୁରୁକ୍ଷେତ୍ରରେ ଉତ୍ତୀର୍ଣ୍ଣ ହେଲେ ଏବଂ କୌଣସି କୌଣସି ସ୍ଥଳରେ ରାଶି ରାଶି କେଶ, ମଜ୍ଜା ଓ ଅସ୍ଥି ସମୂହ, କୌଣସି କୌଣସି ସ୍ଥାନରେ ନିହତ ହସ୍ତୀ ଓ ଅଶ୍ୱମାନଙ୍କର ପର୍ବତାକାର ସଞ୍ଚିତ ଦେହ ଓ ଅସ୍ଥି ନିଚୟ, କୌଣସି କୌଣସିଠାରେ ବର୍ମ ଓ ଅସ୍ତ୍ର ରାଶି ଏବଂ ସହସ୍ର ସହସ୍ର ଚିତା କମ୍ବା କୌଣସି କୌଣସି ସ୍ଥାନରେ ଶଙ୍ଖ ସଦୃଶ ନରକପାଳସବୁ ଦେଖି ଦେଖି ଶୀଘ୍ର ଗମନ କଲେ ।୨।

ଗମନ କରୁଁ କରୁଁ ଯଦୁନନ୍ଦନ କୃଷ୍ଣ ଯୁଧିଷ୍ଠିରଙ୍କଠାରେ ଜମଦଗ୍ନି କୁମାର ରାମଙ୍କର ପରାକ୍ରମ ବିଷୟ ବର୍ଣ୍ଣନ କରିବାକୁ ଆରମ୍ଭ କଲେ ।୨ ।

ଭୃଗୁକୁଳ ନନ୍ଦନ ରାମ ଯେଉଁଠାରେ ସମର ନିହତ କ୍ଷତ୍ରିୟ-ମାନଙ୍କର ଶୋଣିତଦ୍ୱାରା ସ୍ୱକୀୟ ପିତୃଗଣଙ୍କର ତୃପ୍ତିସାଧନ କରିଥିଲେ, ସେହି ପଞ୍ଚ ରାମହ୍ରଦ ଏହି ଦୂରରୁ ଦେଖା ଯାଉଅଛି ।୮।

ସେହି ମହାତ୍ମା ଏକବିଂଶତି ବାର ପୃଥିବୀକୁ ନିଃକ୍ଷତ୍ରିୟକରି ବର୍ତ୍ତମାନ ସେହି କ୍ରୂର କର୍ମରୁ ବିରତ ହୋଇ ଅଛନ୍ତି ।୯।

ଯୁଧିଷ୍ଠିର କହିଲେ—ହେ ଯଦୁପୁଙ୍ଗବ ! ହେ ଅମିତବିକ୍ରମ ! ତୁମ୍ଭେ ଯେ ପୂର୍ବେ ରାମଙ୍କର ଏକବିଂଶତିବାର ପୃଥିବୀ ନିଃକ୍ଷତ୍ରିୟ କରିବା କଥା କହିଲ, ତହିଁରେ ଆମ୍ଭର ମହାନ୍ ସଂଶୟ ଉପସ୍ଥିତ ହେଉଅଛି । ଯଦି ରାମ ଶସ୍ତ୍ରାନଳରେ ସମସ୍ତ କ୍ଷତ୍ରିୟମାନଙ୍କୁ ଦଗ୍ଧ କରିଥିଲେ, ତେବେ କି ପ୍ରକାରେ ତାଙ୍କର ପୁନରୁତ୍ପତ୍ତି ହେଲା ? କୋଟି କୋଟି କ୍ଷତ୍ରିୟମାନେ ସୁମହତ ରଥ ଯୁଦ୍ଧରେ ନିହତ ହୋଇ ନିଜ ନିଜ ଶରୀରଦ୍ୱାରା ମହୀତଳକୁ ସମାକୀର୍ଣ୍ଣ କଲେ । ମହାତ୍ମା ଭଗବାନ ରାମ, ଏକାକୀ କି ପ୍ରକାରେ ତାଦୃଶ କ୍ଷତ୍ରିୟ କୁଳକୁ ଉତ୍ସାଦିତ କଲେ ଏବଂ କି ପ୍ରକାରେ ବା ସେ କ୍ଷତ୍ରିୟ କୁଳର ପୁନର୍ବାର ବୃଦ୍ଧି ହେଲା ? ଭୃଗୁନନ୍ଦନ ଏହି କୁରୁ କ୍ଷେତ୍ରର କିନିମିତ୍ତ କ୍ଷତ୍ରିୟ କୁଳକୁ ଧ୍ୱଂସ କଲେ ? ହେ ବାର୍ଷ୍ଣେୟ ! ହେ ବାସବାନୁଜ ! ତୁମ୍ଭେ ଆମ୍ଭର ଏହି ସମସ୍ତ ସଂଶୟକୁ ଛେଦନ କର । ତୁମ୍ଭର କଥାକୁ ଆମ୍ଭେ ବେଦ ଅପେକ୍ଷା ଶ୍ରେଷ୍ଠ ବୋଲି ମାନ୍ୟକରୁଁ ।୧୫।

ବୈଶମ୍ପାୟନ କହିଲେ—ତଦନନ୍ତରେ ସର୍ବଶକ୍ତିମାନ ଗଦାଗ୍ରଜ କୃଷ୍ଣ ପୃଥିବୀ ଯେପରି କ୍ଷତ୍ରିୟ ଶରୀରରେ ସଙ୍କୁଳା ହୋଇଥିଲା, ତତ୍ସମସ୍ତ ବୃତ୍ତାନ୍ତ ଅପ୍ରତିମ ବଳଶାଳୀ ଯୁଧିଷ୍ଠିରଙ୍କୁ ପ୍ରକୃତ ରୂପରେ କହିଲେ ।୧୬।

---

## ଅଧ୍ୟାୟ-୪୯

ବାସୁଦେବ କହିଲେ—ହେ କୌନ୍ତେୟ ! ଆମ୍ଭେ ମହର୍ଷିଗଣଙ୍କ ମୁଖରୁ ଭୃଗୁନନ୍ଦନ ରାମଙ୍କର ଜନ୍ମ ଓ ପରାକ୍ରମ ବିଷୟ ଯେପରି ଶ୍ରବଣ କରିଅଛୁଁ, ତତ୍ସମସ୍ତ ବିଷୟ କୀର୍ତ୍ତନ କରୁଅଛୁଁ, ଶ୍ରବଣ କରନ୍ତୁ ।୧।

ସେହି ମହାତ୍ମା ଜାମଦଗ୍ନ୍ୟ ଯେପରି, ଯୁଦ୍ଧରେ କୋଟି କୋଟି କ୍ଷତ୍ରିୟାଙ୍କୁର ସଂହାର କରିଥିଲେ ଏବଂ ସେହିସବୁ କ୍ଷତ୍ରିୟ ଯେପରି

ପୁନର୍ବାର ରାଜବଂଶରେ ଉତ୍ପନ୍ନ ହୋଇଥିଲେ; ଅର୍ଥାତ୍ ଯେଉଁମାନେ ସମ୍ପ୍ରତି ଭାରତ ଯୁଦ୍ଧରେ ନିହତ ହେଲେ ସେମାନଙ୍କର ପୁନରୁତ୍ପତ୍ତି ପ୍ରଭୃତି ବୃତ୍ତାନ୍ତ କହିବୁ ।୨।

ପୂର୍ବେ ଜହ୍ନୁ ନାମରେ ଗୋଟିଏ ନରପତି ଥିଲେ । ଅଜ ନାମକ ତାହାଙ୍କର ପୁତ୍ର ବଲାକାଶ୍ୱ ଏବଂ ବଲାକାଶ୍ୱଙ୍କର ଗୋଟିଏ କୁଶିକନାମା ଧର୍ମ୍ମପୁତ୍ର ଜନ୍ମିଥିଲା ।୩।

କିୟତ୍କାଳ ପରେ ଇନ୍ଦ୍ରତୁଲ୍ୟ ପରାକ୍ରମୀ ମହାତ୍ମା କୁଶିକ ନିଜର ଯେପରି ସର୍ବଲୋକର ଅଜେୟ ତ୍ରିଲୋକେଶ୍ୱର ସଦୃଶ ଗୋଟିଏ ପୁତ୍ର ଲାଭ ହେବ ସେହିପରି କାମନାରେ ଉଗ୍ରତର ତପସ୍ୟାନୁଷ୍ଠାନ କଲେ ।୪।

ସହସ୍ରଲୋଚନ ଇନ୍ଦ୍ର ଉଗ୍ରତପା କୁଶିକଙ୍କୁ ଅଭିଲଷିତ ପୁତ୍ର ଲାଭରେ ପ୍ରକୃତ ଅଧିକାରୀ ଦେଖି ସ୍ୱୟଂ ତାହାଙ୍କର ପୁତ୍ରତ୍ୱକୁ ସ୍ୱୀକାର କଲେ ।୫।

ହେ ରାଜନ୍ ! ସୁରେଶ୍ୱର ପାକଶାସନ କୁଶିକ ରାଜଙ୍କର ପୁତ୍ର ରୂପରେ ଜନ୍ମଗ୍ରହଣ କରି ପୃଥିବୀରେ ଗାଧିନାମରେ ଖ୍ୟାତ ହେଲେ ।୬।

କାଳାନ୍ତରେ ମହାତ୍ମା ଗାଧିଙ୍କର ସତ୍ୟବତୀ ନାମରେ ଗୋଟିଏ କନ୍ୟା ଉତ୍ପନ୍ନ ହେଲା । ସେହି କନ୍ୟାକୁ ଭୃଗୁନନ୍ଦନ ଋଚୀକଙ୍କୁ ସମ୍ପ୍ରଦାନ କରିଥିଲେ । ଋଚୀକ ନିଜ ଭାର୍ଯ୍ୟାଙ୍କର ବିଶୁଦ୍ଧ ବ୍ୟବହାରରେ ଅତ୍ୟନ୍ତ ପ୍ରୀତ ହୋଇ ତାହାଙ୍କର ନିଜର ଏବଂ ଗାଧିରାଜଙ୍କର ପୁତ୍ରୋତ୍ପତ୍ତିନିମିତ୍ତ ଦୁଇଗୋଟି ଚରୁ ଉତ୍ପାଦନ କଲେ । ଅନନ୍ତର ଭାର୍ଯ୍ୟାଙ୍କୁ ସମୀପକୁ ଆହ୍ୱାନପୂର୍ବକ କହିଲେ—ଅୟି କଲ୍ୟାଣି ! ଏହି ଚରୁଦ୍ୱୟକୁ ଗ୍ରହଣ କର । ଏତନ୍ମଧ୍ୟରୁ ଏହି ଗୋଟିକ ତୁମ୍ଭର ମାତାଙ୍କୁ ଦେବ, ଆଉ ଗୋଟିକ ତୁମ୍ଭେ ଭକ୍ଷଣ କରିବ । ତାହାହେଲେ ତୁମ୍ଭମାତାଙ୍କର ସମସ୍ତ କ୍ଷତ୍ରିୟଜାତି-ମାନଙ୍କର ଅଜେୟ କ୍ଷତ୍ରିୟାଗ୍ରଗଣ୍ୟ ଗୋଟିଏ ଦୀପ୍ତତେଜା ପୁତ୍ର ଉତ୍ପନ୍ନ ହେବ । ସେହି ପୁତ୍ର ପୃଥିବୀର ସମସ୍ତ କ୍ଷତ୍ରିୟମାନଙ୍କର ଦମନକାରୀ ହେବ । ଏହି ଚରୁ ପ୍ରଭାବରୁ ତୁମ୍ଭର ମଧ୍ୟ ଗୋଟିଏ ଧୃତିମାନ୍, ପ୍ରଶାନ୍ତ ସ୍ୱଭାବ ତପଃପରାୟଣ ପୁତ୍ର ଜନ୍ମିବ ।୧୧।

ଭୃଗୁନନ୍ଦନ ଋଚୀକ ଭାର୍ଯ୍ୟାଙ୍କୁ ଏହି କଥା କହି ତପସ୍ୟାର୍ଥ ଅରଣ୍ୟକୁ ଗଲେ । ଅନନ୍ତର ଏକଦା ଗାଧିରାଜ ତୀର୍ଥଯାତ୍ରା ଉପଲକ୍ଷରେ ସସ୍ତ୍ରୀକ ହୋଇ ଋଚୀକଙ୍କର ଆଶ୍ରମରେ ଆସି ଉପସ୍ଥିତ ହେଲେ ।୧୩।

ତଦ୍ଦର୍ଶନରେ ଋଚୀକପତ୍ନୀ ସତ୍ୟବତୀ ଚରୁଦ୍ୱୟ ଗ୍ରହଣପୂର୍ବକ ହୃଷ୍ଟଚିତ୍ତରେ ମାତାଙ୍କ ସମୀପକୁ ଗମନ କଲେ ଏବଂ ଦୁଇଭାଗ ଚରୁକୁ ମାତାଙ୍କ ହସ୍ତରେ ଦେଇ ଭର୍ତ୍ତୃକଥିତ ସମସ୍ତ ବୃତ୍ତାନ୍ତକୁ ନିବେଦନ କଲେ ।୧୪।

ଗାଧିରାଜ ପତ୍ନୀ ଭ୍ରମବଶତଃ ସ୍ୱକୀୟ ଚରୁକୁ କନ୍ୟାକୁ ଦେଇ କନ୍ୟାର ଚରୁକୁ ସ୍ୱୟଂ ଭକ୍ଷଣ କଲେ ।୧୫।

ଅନନ୍ତର ସତ୍ୟବତୀ କ୍ଷତ୍ରିୟ ଅନ୍ତକର, ଅଗ୍ନିବତ୍ ପ୍ରଦୀପ୍ତ କଳେବର ଘୋର ଦର୍ଶନ ଗୋଟିଏ ପୁତ୍ରକୁ ଗର୍ଭରେ ଧାରଣ କଲେ ।୧୬।

ତତ୍କାଳରେ ଭୃଗୁ ଶାର୍ଦ୍ଦୂଳ ଋଚୀକ ଯୋଗ ପ୍ରଭାବଦ୍ୱାରା ଦେବ ରୂପିଣୀ ଭାର୍ଯ୍ୟା ସତ୍ୟବତୀଙ୍କର ଗର୍ଭସ୍ଥ ସନ୍ତାନକୁ ଦର୍ଶନ କରି ତାହାଙ୍କୁ କହିଲେ—ହେ ଭଦ୍ରେ ! ଚରୁର ବିପର୍ଯ୍ୟୟ ହେତୁରୁ ତୁମ୍ଭେ ତୁମ୍ଭର ମାତା କର୍ତ୍ତୃକ ଏକପ୍ରକାର ବଞ୍ଚିତ ହୋଇଅଛ । ଏହିନିମିତ୍ତ ତୁମ୍ଭର ପୁତ୍ର ଅମର୍ଷଣ ସ୍ୱଭାବ ଓ କ୍ରୂରକର୍ମା ହେବ ଏବଂ ତୁମ୍ଭର ମାତା ଗର୍ଭରେ ତପୋନିରତ ବ୍ରହ୍ମନିଷ୍ଠ ପୁତ୍ର ଉତ୍ପନ୍ନ ହେବ । କାରଣ ତୁମ୍ଭର ଚରୁରେ ସୁମହତ ବ୍ରହ୍ମତେଜ ଏବଂ ତୁମ୍ଭର ମାତାଙ୍କର ଚରୁରେ ସମଗ୍ର କ୍ଷତ୍ରିୟ ତେଜ ସମାହିତ କରାଯାଇଥିଲା; କିନ୍ତୁ ସେହି ଚରୁର ବିପର୍ଯ୍ୟସ୍ତ ହେବାରୁ ପୁତ୍ରମାନେ ମଧ୍ୟ ତଦନୁସାରେ ବିପରୀତ ଭାବରେ ଜାତ ହେବେ । ଅର୍ଥାତ୍ ତୁମ୍ଭ ଗର୍ଭରେ କ୍ଷତ୍ରିୟ ଏବଂ ତୁମ୍ଭଙ୍କ ମାତାଙ୍କ ଗର୍ଭରେ ବ୍ରାହ୍ମଣ ଲକ୍ଷଣ ବିଶିଷ୍ଟ ପୁତ୍ର ହେବ ।୨୦।

ତେତେବେଳେ ସତ୍ୟବତୀ ସ୍ୱାମୀଙ୍କଠାରୁ ଏହିପରି ବାକ୍ୟ ଶ୍ରବଣ କରି ଭୂତଳରେ ପତିତ ହେଲେ ଏବଂ ପ୍ରଣିପାତପୂର୍ବକ ଭୟରେ କମ୍ପିତ ହୋଇ କହିଲେ—ହେ ଭଗବନ୍ ! "ତୁମ୍ଭର ବ୍ରାହ୍ମଣାଧମ ପୁତ୍ର ହେବ" ଆପଣ ଅମୃତ ଏପରି ବାକ୍ୟ ପ୍ରୟୋଗ କରନ୍ତୁ ନାହିଁ ।୨୨।

ଋଚୀକ କହିଲେ—ହେ ଭଦ୍ରେ ! ତୁମ୍ଭେ ମନେ କର ନାହିଁ ଯେ ଆମ୍ଭେ ଦ୍ୱେଷବଶ ତୁମ୍ଭନିମିତ୍ତ ଏହିପରି ସଂକଳ୍ପ କରି ରଖିଅଛୁଁ, କେବଳ ଚରୁ ବିପର୍ଯ୍ୟୟ ଦୋଷରୁ ତୁମ୍ଭ ଗର୍ଭରେ ଉଗ୍ରକର୍ମା ସନ୍ତାନର ଉତ୍ପତ୍ତି ହୋଇଅଛି ।୨୩।

ସତ୍ୟବତୀ କହିଲେ—ହେ ପ୍ରଭୋ ! ଉତ୍ତମ ପୁତ୍ର ପ୍ରଦାନର କଥା କ'ଣ କହିବି । ଆପଣ ଇଚ୍ଛା କଲେ ତ୍ରିଲୋକକୁ ମଧ୍ୟ ସୃଷ୍ଟି କରି ପାରନ୍ତି । ଅତଏବ ଆପଣ ଅନୁଗ୍ରହ କରି ଗୋଟିଏ ଶମପରାୟଣ ସରଳ ସ୍ୱଭାବ ସନ୍ତାନ ପ୍ରଦାନ କରନ୍ତୁ ।୨୪।

ଋଚୀକ କହିଲେ—ହେ ଭଦ୍ରେ ଅଗ୍ନି ଆଧାନପୂର୍ବକ ମନ୍ତ୍ରୋପ-ଲକ୍ଷିତ ଚରୁସାଧନ କଥା ଦୂରେ ଥାଉ, ଆମ୍ଭେ କଦାପି ପୂର୍ବେ ପରିହାସଛଳରେ ସୁଦ୍ଧା ମିଥ୍ୟା କଥା କହି ନାହୁଁ । ବିଶେଷତଃ ତୁମ୍ଭର ପିତୃକୁଳରେ ଯେ ଶମ ଦମଯୁକ୍ତ ବ୍ରହ୍ମଜ୍ଞ ସନ୍ତାନ ଜନ୍ମଗ୍ରହଣ କରି ସମସ୍ତ କୁଳକୁ ବ୍ରାହ୍ମଣ ଧର୍ମାବଲମ୍ବୀ କରିବ ତାହା ଆମ୍ଭେ ପୂର୍ବରୁ ତପ ପ୍ରଭାବଦ୍ୱାରା ପ୍ରତ୍ୟକ୍ଷ ଦର୍ଶନ କରିଅଛୁଁ ।୨୬।

ସତ୍ୟବତୀ କହିଲେ—ହେ ପ୍ରଭୁ ! ଆପଣ ଯେ କଦାପି ମିଥ୍ୟା କହି ନାହାନ୍ତି, ତାହା ଆମ୍ଭେ ଅବଶ୍ୟ ସ୍ୱୀକାର କରୁଅଛୁଁ; କିନ୍ତୁ ପୁତ୍ର ଓ ପୌତ୍ରର କୌଣସି ବିଶେଷତ୍ୱ ନାହିଁ । ଅତଏବ ଆପଣଙ୍କ କୃପାରୁ ଆମ୍ଭର ପୌତ୍ର କ୍ଷତ୍ରିୟ ସ୍ୱଭାବ ଓ କ୍ରୂରକର୍ମା ଥାଉ ପୁତ୍ର ଶମପରାୟଣ ଓ ବ୍ରହ୍ମ-ନିଷ୍ଠ ହେଉ ।୨୭।

ଋଚୀକ କହିଲେ—ହେ ବରବର୍ଣ୍ଣିନେ ! ପୁତ୍ର ଓ ପୌତ୍ର ମଧ୍ୟରେ ଯେ କୌଣସି ବିଶେଷ ନାହିଁ ତାହା ସ୍ୱୀକାର କରୁଅଛୁଁ । ଅତଏବ ତୁମ୍ଭେ ଯାହା କହିଲ, ତାହା ନିଶ୍ଚୟ ହେବ ।୨୮।

ବାସୁଦେବ କହିଲେ—ହେ ମହାରାଜ ! ତଦନନ୍ତର ଋଚୀକ ପତ୍ନୀ ସତ୍ୟବତୀ ଜମଦଗ୍ନି ନାମକ ଗୋଟିଏ ପୁତ୍ର ପ୍ରସବ କଲେ, ସେହି ପୁତ୍ର ତପୋନିରତ, ସଂଯତବ୍ରତ ଓ ଶାନ୍ତ ପ୍ରକୃତି ହେଲେ ।୨୯।

କୁଶିକନନ୍ଦନ ଗାଧିରାଜଙ୍କର ମଧ୍ୟ ବ୍ରାହ୍ମଣ ଲକ୍ଷଣସମ୍ପନ୍ନ ବିଶ୍ୱା-ମିତ୍ର ନାମରେ ଗୋଟିଏ ପୁତ୍ର ଉତ୍ପନ୍ନ ହେଲା, ସେ କାଳକ୍ରମରେ ସ୍ୱକୀୟ ତପଃ ପ୍ରଭାବଦ୍ୱାରା ବ୍ରାହ୍ମଣତ୍ୱ ଲାଭ କରି ସମଗ୍ର ପୃଥିବୀରେ ବ୍ରହ୍ମର୍ଷି ବୋଲି ଖ୍ୟାତ ହୋଇ ଥିଲେ । ତଦନନ୍ତର ଋଚୀକ ପୁତ୍ର ତପୋନିଧି ଜମଦଗ୍ନିଙ୍କର ଗୋଟିଏ ସୁଦାରୁଣ ପୁତ୍ର ଉତ୍ପନ୍ନ ହେଲା । ବୟଃପ୍ରାପ୍ତ ହୁଅନ୍ତେ ସେହି ପୁତ୍ର ପ୍ରଦୀପ୍ତ ପାବକ ସଦୃଶ ତେଜସ୍ୱୀ ଓ ଧନୁର୍ବେଦ ପ୍ରଭୃତି ସମସ୍ତ ବିଦ୍ୟାରେ ପାରଦର୍ଶୀ ହୋଇ କ୍ଷତ୍ରିୟ ହନ୍ତା ରାମ ନାମରେ ବିଖ୍ୟାତ ହେଲେ ।୩୨।

ସେ ଗନ୍ଧମାଦନ ପର୍ବତକୁ ଗମନ କରି ମହାଦେବଙ୍କୁ ପରିତୁଷ୍ଟ କରି ତୀକ୍ଷ୍ଣଧାର ପରଶୁ ଓ ଅନ୍ୟାନ୍ୟ ସମସ୍ତ ଅସ୍ତ୍ରଲାଭ କଲେ ।୩୩।

ଏବଂ ଏହି ଜମଦଗ୍ନି ପ୍ରଭୁ ଅକୁଣ୍ଠଧାର ଓ ଅପ୍ରମେୟ ପରଶୁଦ୍ୱାରା ସମସ୍ତ ଲୋକ ମଧ୍ୟରେ ଅପ୍ରତିମ ଯୋଦ୍ଧା ହେଲେ ।୩୪।

ଏମନ୍ତ ସମୟରେ ହୈହୟ ଦେଶରେ କୃତବୀର୍ଯ୍ୟ ପୁତ୍ର ସହସ୍ର ବାହୁ ଅର୍ଜୁନ ନାମରେ ଗୋଟିଏ ମହାବଳଶାଳୀ ନରପତି ଥିଲେ । ସେହି ଧର୍ମଜ୍ଞ ମହାତେଜା ଅର୍ଜୁନ ମହର୍ଷି ଦତ୍ତାତ୍ରେୟଙ୍କ ପ୍ରସାଦରୁ ଏବଂ ଅସ୍ତ୍ର ଓ ବାହୁବଳ ପ୍ରଭାବରୁ ଯୁଦ୍ଧରେ ସମଗ୍ର ପୃଥିବୀକୁ ଜୟ କରି ଓ ରାଜଚକ୍ରବର୍ତ୍ତୀ ହୋଇ ଅଶ୍ୱମେଧ ଯଜ୍ଞୋପଲକ୍ଷରେ ଉକ୍ତ ଜୟଲବ୍ଧ ପର୍ବତ କାନନ ସମନ୍ୱିତ ସପ୍ତଦ୍ୱୀପା ବସୁନ୍ଧରାକୁ ବ୍ରାହ୍ମଣମାନଙ୍କୁ ଦାନ କଲେ ।୩୭।

କୌଣସି ସମୟରେ ଅଗ୍ନିଦେବ ବୁଭୁକ୍ଷୁ ହୋଇ ହୋଇ କେତେଗୁଡ଼ିଏ ଦ୍ରବ୍ୟ ଦଗ୍ଧ କରିବା ଅଭିଳାଷରେ ସେହି ବିକ୍ରମୀ ସହସ୍ର ବାହୁ ସମନ୍ୱିତ ବୀର୍ଯ୍ୟବାନ୍ ନରପତି ଅର୍ଜୁନଙ୍କୁ ଭିକ୍ଷା ପ୍ରାର୍ଥନା କରିବାରୁ ସେ ତାହାଙ୍କୁ ଘୋଷ ପଲ୍ଲୀ ସହିତ ଗ୍ରାମ, ପୁର ଓ ରାଷ୍ଟ୍ରମାନଙ୍କୁ ସମର୍ପଣ କଲେ । ତହିଁରେ ଅଗ୍ନିଦେବ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ମହାତେଜସ୍ୱୀ ପୁରୁଷେନ୍ଦ୍ର [କାର୍ତ୍ତବୀର୍ଯ୍ୟଙ୍କର ପ୍ରଭାବଦ୍ୱାରା ବାଣାଗ୍ରରୁ ପ୍ରଜ୍ୱଳିତ ହୋଇ ଶୈଳ ଓ ବନସ୍ପତିସବୁ ଦଗ୍ଧ କରି ପକାଇଲେ ।୪୦!

ସେ ହୈହୟାଧିପତିଙ୍କର ସାହାଯ୍ୟପ୍ରାପ୍ତ ହୋଇ ଓ ବାୟୁଦ୍ୱାରା ପ୍ରବୃଦ୍ଧଶିଖ ହୋଇ ମହାତ୍ମା ମହର୍ଷି ବଶିଷ୍ଠଙ୍କର ନିର୍ଜ୍ଜନସ୍ଥିତ ମନୋରମ ଆଶ୍ରମକୁ ମଧ୍ୟ ଭସ୍ମସାତ୍ କଲେ ।୪୧।

ହେ ମହାବାହୋ ! ଏହି ପ୍ରକାରେ କାର୍ତ୍ତବୀର୍ଯ୍ୟଙ୍କ କର୍ତ୍ତୃକ ବଶିଷ୍ଠାଶ୍ରମ ଦଗ୍ଧ ହୁଅନ୍ତେ ବୀର୍ଯ୍ୟବାନ୍ ବଶିଷ୍ଠ କ୍ରୋଧ ପରତନ୍ତ୍ର ହୋଇ ତାହାଙ୍କୁ କହିଲେ ହେ "ଅର୍ଜୁନ ! ଯେ ହେତୁ ତୁମ୍ଭେ ଆମ୍ଭର ଏହି ସୁମହତ ବନକୁ ଦଗ୍ଧ କଲ, ସେହି ହେତୁରୁ ପରଶୁରାମ ତୁମ୍ଭର ସମସ୍ତ ହସ୍ତକୁ ଛେଦନ କରିବେ ।" ଏହା କହି ଅଭିଶାପ ପ୍ରଦାନ କଲେ ।୪୩।

ମହାତ୍ମା ବଶିଷ୍ଠ ଅଭିଶାପ ପ୍ରଦାନ କଲେ ହେଁ ଶୌର୍ଯ୍ୟସମ୍ପନ୍ନ ଶମଦମୋପେତ ବ୍ରହ୍ମନିଷ୍ଠ ଶରଣାଗତ ପାଳକ ଦାନ ଶୌଣ୍ଡ ମହାତେଜା ଅର୍ଜୁନ ତାହାଙ୍କୁ ଗଣନା କଲେ ନାହିଁ । କିନ୍ତୁ ତାହାଙ୍କର ବଳଶାଳୀ ପୁତ୍ରମାନେ [ବଧର ହେତୁ ହୋଇ ପଡ଼ିଲେ; ଅର୍ଥାତ୍ ସେମାନେ ସେହି

ଶାପ ପ୍ରଭାବରେ ଅତିଶୟ ଗର୍ବିତ ଓ ନିଶ୍ଚିତ ନୃଶଂସ ସ୍ୱଭାବାପନ୍ନ ହୋଇ ରାମଙ୍କର ଅଜ୍ଞାତରେ ମହର୍ଷି ଜମଦଗ୍ନିଙ୍କର ହୋମଧେନୁ ବତ୍ସାକୁ ହରଣ କରି ନେଇ ଗଲେ; କିନ୍ତୁ ଏହି କାର୍ଯ୍ୟଟି ଧୀମାନ୍ ହୈହୟାଧିପତିଙ୍କର ଅଜ୍ଞାତରେ ହୋଇଥିଲା । ତଥାପି ମହାତ୍ମା ଜମଦଗ୍ନିଙ୍କ ସହିତ ତାହାଙ୍କର ଘୋରତର ଯୁଦ୍ଧ ଉପସ୍ଥିତ ହେଲା ।୪୭।

ଅନନ୍ତର ରାମ ଯୁଦ୍ଧରେ ପ୍ରବୃତ୍ତ ହୋଇ ଅର୍ଜୁନଙ୍କର ସମସ୍ତ ବାହୁର ଛେଦନପୂର୍ବକ ରାଜ ଅନ୍ତଃପୁରସ୍ଥିତ ନିଜର ଧେନୁବତ୍ସାକୁ ଆଶ୍ରମକୁ ପ୍ରତ୍ୟାନୟନ କଲେ । ତଦନନ୍ତର ଯଶସ୍ୱୀ ରାମ କୌଣସି ସମୟରେ ସମି-କୁଶ ଆହରଣାର୍ଥ ନିର୍ଗତ ହୁଅନ୍ତେ ଅର୍ଜୁନଙ୍କର ସେହି ନିର୍ବୋଧ ପୁତ୍ରମାନେ ତାହାଙ୍କୁ ଅବଜ୍ଞା କରି ଓ ସମସ୍ତେ ଏକତ୍ର ମିଳିତ ହୋଇ ମହାତ୍ମା ଜମଦଗ୍ନିଙ୍କର ଆଶ୍ରମକୁ ଗମନପୂର୍ବକ ଭଲ୍ଲ ଦ୍ୱାରା ତାହାଙ୍କର ଶିରଃଛେଦନ କଲେ ।

ତତ୍ପରେ ଭୃଗୁଶାର୍ଦ୍ଦୂଳ ବୀର୍ଯ୍ୟବାନ୍ ରାମ ପିତୃବଧ କ୍ରୋଧରେ ଅଧୀର ହୋଇ "ଆମ୍ଭେ ଏହି ପୃଥିବୀ ନିଃକ୍ଷତ୍ରିୟ କରିବୁ" ଏହିପରି ପ୍ରତିଜ୍ଞା କଲେ ଏବଂ ଶସ୍ତ୍ରଗ୍ରହଣ କରି ବିକ୍ରମ ପ୍ରକାଶପୂର୍ବକ ଅବିଳମ୍ବରେ କାର୍ତ୍ତବୀର୍ଯ୍ୟଙ୍କର ପୁତ୍ର ଓ ପୌତ୍ରାଦି ସମସ୍ତଙ୍କୁ ବିନାଶ କଲେ । ହେ ରାଜନ୍ ! ଭୃଗୁନନ୍ଦନ ରାମ କ୍ରୋଧପରତନ୍ତ୍ର ହୋଇ ସହସ୍ର ସହସ୍ର ହୈହୟ-ବଂଶୀୟମାନଙ୍କର ସଂହାରପୂର୍ବକ ସେମାନଙ୍କର ଶୋଣିତଦ୍ୱାରା ମହୀତଳକୁ କର୍ଦ୍ଦମମୟ କରି ପକାଇଲେ । ତଦନନ୍ତର ସେହି ମହାତେଜା ସ୍ୱୀୟ ପ୍ରତିଜ୍ଞାନୁସାରେ ପୃଥିବୀକୁ ନିଃକ୍ଷତ୍ରିୟ କରି ଅତ୍ୟନ୍ତ କୋପାବିଷ୍ଟ ଚିତ୍ତରେ ଅରଣ୍ୟକୁ ଗମନ କଲେ । ତଦନନ୍ତର ଅରଣ୍ୟମଧ୍ୟରେ ତାହାଙ୍କର କେତେ ସହସ୍ରବର୍ଷ ଅତିବାହିତ ହୁଅନ୍ତେ ବିଶ୍ୱାମିତ୍ରଙ୍କ ପୌତ୍ର ରୈଭ୍ୟପୁତ୍ର ମହାତପା ପରାବସୁ ଜନସମାଜ ମଧ୍ୟରେ ନିନ୍ଦାକରି କହିଲେ-ହେ ରାମ ! ସ୍ୱର୍ଗଚ୍ୟୁତ ଯଯାତି ରାଜାଙ୍କର ପୁନର୍ବାର ସ୍ୱର୍ଗପ୍ରାପ୍ତି ନିମିତ୍ତ ଯେଉଁ ଯଜ୍ଞ ହୋଇଥିଲା, ତଦୁପଲକ୍ଷରେ ପ୍ରତର୍ଦ୍ଦନ ପ୍ରଭୃତି ଯେଉଁସବୁ ନରପତିମାନେ ଆସିଥିଲେ, ସେମାନେ କ'ଣ କ୍ଷତ୍ରିୟ ନୁହଁନ୍ତି ? । ୪୮ ।

ତୁମ୍ଭେ ଯେ ଜନସମାଜରେ ପୃଥିବୀକୁ ନିଃକ୍ଷତ୍ରିୟ କରିବ ବୋଲି ଶ୍ଳାଘା କରିଥିଲ, ତୁମ୍ଭର ସେହିସବୁ ପ୍ରତିଜ୍ଞା ମିଥ୍ୟା, ଯେହେତୁ ବର୍ତ୍ତମାନ ମଧ୍ୟ ପୃଥିବୀ ପୁନର୍ବାର ଅସଂଖ୍ୟ କ୍ଷତ୍ରିୟମାନଙ୍କ ଦ୍ୱାରା ପରିବ୍ୟାପ୍ତ

ହୋଇଅଛୁ । ଏଣୁ ଆମ୍ଭେ ଜାଣୁଅଛୁଁ ଯେ ତୁମ୍ଭେ ସେହିସବୁ କ୍ଷତ୍ରିୟମାନଙ୍କ ଭୟରେ ଏହି ପର୍ବତରେ ଆଶ୍ରୟ ଗ୍ରହଣ କରିଅଛ । ୬୯ ।

ଅନନ୍ତର କୋପନସ୍ୱଭାବ ପରଶୁରାମ ପାର୍ଥିବସୁଙ୍କର ଏହିପରି ନିନ୍ଦାବାକ୍ୟ ଶ୍ରବଣ କରି ଅତ୍ୟନ୍ତ ଅବମାନନା ବୋଧ କଲେ ଏବଂ ପୁନର୍ବାର ଶସ୍ତ୍ର ଗ୍ରହଣ କଲେ । ୭୦ ।

ଯେଉଁମାନେ ପୂର୍ବେ ରାମଙ୍କ ହସ୍ତରୁ କଥଞ୍ଚିତ ମୁକ୍ତିଲାଭ କରିଥିଲେ, ସେହିସବୁ ମହାବୀର୍ଯ୍ୟ କ୍ଷତ୍ରିୟମାନେ କ୍ରମଶଃ ବୃଦ୍ଧିପ୍ରାପ୍ତ ହୋଇ ସେହି ସମୟରେ ପୃଥ୍ୱୀଶ୍ୱର ହୋଇଥିଲେ । ୭୧ ।

ଭୃଗୁନନ୍ଦନ ଅବିଳମ୍ବରେ ସେମାନଙ୍କୁ ଏବଂ ସେମାନଙ୍କର ବାଳକାଦି ଯାହାଥିଲେ, ସେମାନଙ୍କୁ ସୁଦ୍ଧା ସଂହାର କଲେ । ତଦନନ୍ତର ଯେଉଁମାନେ ଗର୍ଭସ୍ଥ ଥିଲେ ସେହିସବୁ କ୍ଷତ୍ରିୟ ବାଳକମାନଙ୍କଦ୍ୱାରା ପୁନର୍ବାର ପୃଥିବୀ ପରିବ୍ୟାପ୍ତ ହୁଅନ୍ତେ, ସେମାନଙ୍କୁ ମଧ୍ୟ ପୁନଃଶ୍ଚ ନିହତ କଲେ । ଏହିପରି ଯେତେ ଥର କ୍ଷତ୍ରିୟ ସନ୍ତାନ ଉତ୍ପତ୍ତି ହେଲେ, ରାମ ତେତେଥର ସେମାନଙ୍କୁ ସଂହାର କଲେ । ପରନ୍ତୁ କେତେଗୁଡ଼ିଏ କ୍ଷତ୍ରିୟ ସ୍ତ୍ରୀ ଅତି କୌଶଳଦ୍ୱାରା ନିଜ ନିଜ ଶିଶୁ ସନ୍ତାନମାନଙ୍କୁ ରକ୍ଷା କରିଥିଲେ । ୭୩ ।

ମହାପ୍ରଜ୍ଞାବୀ ପରଶୁରାମ ମଧ୍ୟ କ୍ରମଶଃ ଏକବିଂଶତିବାର ପୃଥିବୀକୁ ନିଃକ୍ଷତ୍ରିୟ କରି ଅଶ୍ୱମେଧ ଯଜ୍ଞାନୁଷ୍ଠାନପୂର୍ବକ ଦକ୍ଷିଣା ଉପଲକ୍ଷରେ ମହର୍ଷି କଶ୍ୟପଙ୍କୁ ସମସ୍ତ ପୃଥିବୀକୁ ଦାନ କଲେ ।୭୪।

କଶ୍ୟପ ହତାବଶିଷ୍ଟ କ୍ଷତ୍ରିୟ ବାଳକମାନଙ୍କର ରକ୍ଷାର୍ଥ ସ୍ରୁକ୍ ହସ୍ତ ହୋଇ ଦାନକୁ ଗ୍ରହଣ କରି କହିଲେ—ହେ ରାମ ! ବର୍ତ୍ତମାନ ଏହି ସମସ୍ତ ପୃଥିବୀ ଆମ୍ଭର ହୋଇଅଛି, ଅତଏବ ଏଥିରେ ଆଉ ବାସ କରିବା ତୁମ୍ଭର କର୍ତ୍ତବ୍ୟ ନୁହେଁ । ତୁମ୍ଭେ ସତ୍ୱର ଦକ୍ଷିଣ ସମୁଦ୍ରକୂଳକୁ ଗମନ କର ।୭୬।

ତଦନନ୍ତର ସମୁଦ୍ର ମହାତ୍ମା ଜାମଦଗ୍ନିଙ୍କ ନିମିତ୍ତ ପୃଥିବୀ ସୀମାକୁ ପରିତ୍ୟାଗପୂର୍ବକ ସ୍ୱକୀୟ ଉଦର ମଧ୍ୟରେ ଶୂର୍ପାରିକ ନାମକ ସ୍ଥାନ ନିର୍ମାଣ କରି ରଖିଲେ । ମହର୍ଷି କଶ୍ୟପ ବସୁନ୍ଧରାକୁ ପ୍ରତିଗ୍ରହପୂର୍ବକ ବ୍ରାହ୍ମଣମାନଙ୍କ ନିକଟରେ ସମର୍ପଣ କରି ବନକୁ ଗମନ କଲେ ।୭୮।

ତତ୍ପରେ ପୃଥିବୀ ରାଜଶୂନ୍ୟ ହେବାରୁ ବଳବାନ ବ୍ୟକ୍ତିମାନେ ଦୁର୍ବଳ ପ୍ରଜାମାନଙ୍କୁ ପୀଡ଼ନ କଲେ । ଶୂଦ୍ର ଓ ବୈଶ୍ୟମାନେ ସ୍ୱେଚ୍ଛାନୁସାର

ହୋଇ ଉତ୍ତମ ଉତ୍ତମ ବ୍ରାହ୍ମଣମାନଙ୍କର ରମଣୀଙ୍କଠାରେ ନିରତ ହେଲେ । ଏହି ଦସ୍ୟୁମାନଙ୍କର ଉପଦ୍ରବରୁ କୌଣସି ବ୍ୟକ୍ତିର ସ୍ତ୍ରୀ ନିଜ ଧନରେ ପ୍ରଭୁତ୍ୱ ରହିଲା ନାହିଁ ।୭୦।

ଏହି ପ୍ରକାରେ କାଳର ଗତି ବିପରୀତ ହୁଅନ୍ତେ ପୃଥିବୀ ଧର୍ମପାଳକ କ୍ଷତ୍ରିୟଗଣଙ୍କର୍ତ୍ତୃକ ଯଥା ବିହିତ ରକ୍ଷିତ ନ ହେବାରୁ ଦୁରାତ୍ମାମାନଙ୍କଦ୍ୱାରା ପ୍ରପୀଡ଼ିତ ହୋଇ ରସାତଳକୁ ଗମନ କରିବାନିମିତ୍ତ ଉଦ୍ୟତ ହେଲେ । ମହାମନା କଶ୍ୟପ ତାହାଙ୍କୁ ଉପ୍ୟୁକ୍ତ ରସାତଳ ଗମନୋଦ୍ୟତା ଦେଖି ତାହାଙ୍କ ଉରୁଦେଶ ଧାରଣ କଲେ । ପୃଥିବୀ ଉରୁଦ୍ୱାରେ ଧୃତ ହୋଇଥିଲେ ବୋଲି ଉର୍ବୀ ନାମରେ ବିଖ୍ୟାତ ହୋଇ ଅଛନ୍ତି ।୭୩।

ଅନନ୍ତର ପୃଥିବୀ ଦେବୀ ସ୍ୱୀୟ ରକ୍ଷାର୍ଥ ମହର୍ଷି କଶ୍ୟପଙ୍କୁ ପ୍ରସନ୍ନ କରି ତାହାଙ୍କଠାରେ ଧାର୍ମିକ ମହୀପାଳନିମିତ୍ତ ପ୍ରାର୍ଥନା କଲେ ।୭୪।

ପୃଥିବୀ କହିଲେ—ହେ ବ୍ରହ୍ମନ୍ ! କେତେଗୁଡ଼ିଏ ସ୍ତ୍ରୀମାନଙ୍କଠାରେ ପ୍ରଧାନ ପ୍ରଧାନ କ୍ଷତ୍ରିୟ ସନ୍ତାନମାନେ ଆମ୍ଭକର୍ତ୍ତୃକ ରକ୍ଷିତ ହୋଇ ଗୁପ୍ତଭାବରେ ଅବସ୍ଥାନ କରୁଅଛନ୍ତି । ଆମ୍ଭେ ତାହା କହୁଅଛୁଁ, ଆପଣ ତାହା ଶ୍ରବଣ କରି ଆମ୍ଭର ରକ୍ଷା ବିଧାନ କରନ୍ତୁ । କେତେଗୁଡ଼ିଏ ହୈହୟ କୁଳଜାତ ଧାର୍ମିକ କ୍ଷତ୍ରିୟ ଜୀବିତ ଅଛନ୍ତି । ପୁରୁବଂଶୀୟ ବିଦୂରଥ ପୁତ୍ର ଋକ୍ଷବାନ୍ ପର୍ବତରେ ଭଲ୍ଲୂକଗଣଙ୍କର୍ତ୍ତୃକ ସଂବର୍ଦ୍ଧିତ ହୋଇ ଅବସ୍ଥାନ କରୁଅଛନ୍ତି ।୭୬।

ସୌଦାସ୍ୟ ରାଜପୁତ୍ର, ଯାହାଙ୍କୁ ଅମିତତେଜା ମହା ଯଜ୍ଞଶାଳୀ ମହର୍ଷି ପରାଶର ଅନୁକମ୍ପା ପ୍ରକାଶପୂର୍ବକ ରକ୍ଷା କରିଥିଲେ । ତାହାଙ୍କର ସଂସ୍କାରାଦି ସମସ୍ତ କର୍ମ ଶୂଦ୍ରଜାତି ପ୍ରାୟ ଅନୁଷ୍ଠିତ ହେବାରୁ ସେ ସର୍ବ କର୍ମା ନାମରେ ପ୍ରଖ୍ୟାତ ହୋଇ କାଳଯାପନ କରୁଅଛନ୍ତି । ଶିବିପୁତ୍ର ମହାତେଜା ଗୋପତି ଅରଣ୍ୟ ମଧ୍ୟରେ ଗୋ-ଦୁଗ୍ଧଦ୍ୱାରା ପ୍ରତିପାଳିତ ହୋଇ ଜୀବନଧାରଣ କରୁଅଛନ୍ତି । ପ୍ରତର୍ଦ୍ଦନ ପୁତ୍ର ମହାବଳ ବତ୍ସ, ଗୋଷ୍ଠ ମଧ୍ୟରେ ବତ୍ସଗଣଙ୍କ ସହିତ ଦୁଗ୍ଧପାନ କରି ପ୍ରାଣ ଧାରଣ କରି ରହିଅଛି । ଗଙ୍ଗାଙ୍କରରେ ଗୌତମବଂଶୀୟ କୌଣସି ବ୍ରାହ୍ମଣ ଦଧିବାହନଙ୍କ ପୌତ୍ର ଦିବିରଥ ପୁତ୍ରଙ୍କୁ ଦୟାକରି ରକ୍ଷା କରିଅଛନ୍ତି । ମହର୍ଷ ଭୂରିଭୂତି ମହାତେଜା ବୃହଦ୍ରଥଙ୍କର ସଂସ୍କାରାଦି କରିଅଛନ୍ତି ' ସେହି ସୌଭାଗ୍ୟବାନ୍

ବାଳକ ଗୃଧ୍ରକୂଟ ପର୍ବତରେ ଗୋ-ଲାଙ୍ଗୁଳମାନଙ୍କକର୍ତ୍ତୃକ ରକ୍ଷିତ ହୋଇ ପ୍ରାଣଧାରଣ କରୁଅଛନ୍ତି ।୮୨।

ଇନ୍ଦ୍ରତୁଲ୍ୟ ପରାକ୍ରମୀ କେତେଗୁଡ଼ିଏ ମରୁତବଂଶୀୟ କ୍ଷତ୍ରିୟମାନେ ମଧ୍ୟ ଜୀବିତ ଅଛନ୍ତି । ସମୁଦ୍ର ସେମାନଙ୍କୁ ରକ୍ଷା କରିଥିଲେ ।୮୩।

ହେ ମୁନେ ! ଏହିସବୁ କ୍ଷତ୍ରିୟମାନେ ଆସି ଅଧାର୍ମିକ ଦସ୍ୟୁମାନଙ୍କଠାରୁ ଆମ୍ଭଙ୍କୁ ରକ୍ଷା କରନ୍ତୁ । ଆମ୍ଭେ ଯେଉଁସବୁ କ୍ଷତ୍ରିୟମାନଙ୍କର ପରିଚୟ ଦେଲୁଁ, ସେମାନେ ପ୍ରାଣଭୟରେ ଉଲ୍ଲିଖିତ ସ୍ଥାନମାନଙ୍କୁ ଆଶ୍ରୟ କରି ଗୁପ୍ତଭାବରେ ଅବସ୍ଥାନ କରୁଅଛନ୍ତି । ଏତଦ୍‌ଭିନ୍ନ ଅନେକେ ଶିଳ୍ପକାର ଓ ସ୍ୱର୍ଣ୍ଣକାରଙ୍କ ଗୃହରେ ଛଦ୍ମବେଶରେ ବାସ କରୁଅଛନ୍ତି । ଯଦି ଉଲ୍ଲିଖିତ ମହତ କୁଳସମ୍ଭୂତ କ୍ଷତ୍ରିୟମାନେ ଆସି ଆମ୍ଭଙ୍କ ରକ୍ଷା କରିବେ; ତାହାହେଲେ ଆମ୍ଭେ ନିଶ୍ଚୟ ନିଶ୍ଚଳଭାବରେ ଅବସ୍ଥାନ କରିବୁଁ । ଏହିସବୁ ଉପଯୁକ୍ତ କ୍ଷତ୍ରିୟମାନଙ୍କର ପିତୃ ପିତାମହମାନେ ଆମ୍ଭନିମିତ୍ତ ଯୁଦ୍ଧରେ ଅକ୍ଲିଷ୍ଟକର୍ମା ରାମଙ୍କଦ୍ୱାରା ନିହତ ହୋଇ ଅଛନ୍ତି, ଅତଏବ ଆମ୍ଭେ ଅବଶ୍ୟ ସେମାନଙ୍କର କୁଳ ଧୁରନ୍ଧର ହତାବଶିଷ୍ଟ ପୁତ୍ର-ପୌତ୍ରାଦିମାନଙ୍କୁ ପ୍ରଭୁବୋଲି ସ୍ୱୀକାର କରି ଋଣରୁ ମୁକ୍ତ ହେବୁଁ । ଆମ୍ଭେ ଯାହା କହିଲୁଁ, ଯଦି ତାହା ହୁଏ, ତେବେ ସ୍ଥିରଭାବରେ ଅବସ୍ଥାନ କରିବୁଁ, କିନ୍ତୁ ଅଧାର୍ମିକ ଦସ୍ୟୁମାନଙ୍କ କର୍ତ୍ତୃକ ରକ୍ଷିତ ହେବା, କଦାପି ସ୍ୱୀକାର କରିବୁଁ ନାହିଁ । ଅତଏବ ଆପଣ ଏହାର ସତ୍ୱର ପ୍ରତିବିଧାନ କରନ୍ତୁ ।୮୭।

ବାସୁଦେବ କହିଲେ—ହେ ମହାରାଜ ! ତଦନନ୍ତର ମହର୍ଷି କଶ୍ୟପ ପୃଥିବୀ ନିର୍ଦ୍ଦିଷ୍ଟ ସେହିସବୁ ବୀର୍ଯ୍ୟସମନ୍ୱିତ କ୍ଷତ୍ରିୟ ସନ୍ତାନମାନଙ୍କ ଆନୟନପୂର୍ବକ ରାଜ୍ୟରେ ଅଭିଷିକ୍ତ କଲେ ।୮୮।

ଯେଉଁସବୁ ନରପତିମାନଙ୍କର ପୁତ୍ର ପୌତ୍ରାଦି ଜୀବିତ ଥିଲେ, ସେମାନଙ୍କର ବଂଶ ଏହିପ୍ରକାରେ ପୁନର୍ବାର ରାଜପଦରେ ପ୍ରତିଷ୍ଠିତ ହେଲା । ହେ ରାଜନ ! ଆପଣ ଆମ୍ଭଙ୍କୁ ଯାହା ପ୍ରଶ୍ନ କରିଥିଲେ, ଆମ୍ଭେ ତତ୍ସମସ୍ତ ପୁରାବୃତ୍ତ ଆପଣଙ୍କଠାରେ କୀର୍ତ୍ତନ କଲୁଁ ।୮୯।

ବୈଶମ୍ପାୟନ କହିଲେ—ହେ ମହାରାଜ ! ଏହି ପ୍ରକାରେ ଯଦୁପ୍ରବୀର ମହାତ୍ମା କୃଷ୍ଣ ଧାର୍ମିକାଗ୍ରଗଣ୍ୟ ଯୁଧିଷ୍ଠିରଙ୍କୁ ପୂର୍ବବୃତ୍ତାନ୍ତ ସବୁ

କହୁଁ କହୁଁ ଭଗବାନ ପ୍ରଶ୍ନକର ପ୍ରାପ୍ତ ରଥଦ୍ୱାରା ଦିକ୍ ସମସ୍ତ ଉଦ୍ଭାସିତ କରି ବାୟୁ ବେଗରେ ଗମନ କଲେ ।୧୦।

---

## ଅଧ୍ୟାୟ—୫୦

ବୈଶମ୍ପାୟନ କହିଲେ—ତଦନନ୍ତର ଧର୍ମରାଜ ଯୁଧିଷ୍ଠିର ପରଶୁରାମଙ୍କର ସେହି ଅଦ୍ଭୁତ କର୍ମ ଶ୍ରବଣ କରି ଅତ୍ୟନ୍ତ ବିସ୍ମିତ ହୋଇ ଜନାର୍ଦ୍ଦନଙ୍କ ପ୍ରତ୍ୟୁତ୍ତର କଲେ—ହେ ବୃଷ୍ଣିନନ୍ଦନ ! ଆମ୍ଭେ ଇନ୍ଦ୍ରତୁଲ୍ୟ ପରାକ୍ରମୀ ରାମଙ୍କର ବିକ୍ରମ କଥା ଶ୍ରବଣ କରି ଆଶ୍ଚର୍ଯ୍ୟାନ୍ୱିତ ହେଲୁଁ । କାରଣ ସେ କ୍ରୁଦ୍ଧହୋଇ ସମସ୍ତ ବସୁଧାକୁ ନିଃକ୍ଷତ୍ରିୟ କରିଥିଲେ । ହତାବଶିଷ୍ଟ କ୍ଷତ୍ରିୟ ସନ୍ତାନମାନେ ରାମଙ୍କ ଭୟରେ ଉଦ୍‌ବିଗ୍ନ ହୋଇ ଗୋ, ଗୋଲାଙ୍ଗୁଳ, ଋକ୍ଷ, ବାନର ଓ ସମୁଦ୍ର ପ୍ରଭୃତିଙ୍କ ଆଶ୍ରୟରେ ପ୍ରାଣରକ୍ଷା କରିଥିଲେ । ଏହା ମଧ୍ୟ ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ଅଟେ ।୩।

ଅହୋ ! ଏହି ଜୀବଲୋକ ଧନ୍ୟ ଓ ଏହି ପୃଥିବୀସ୍ଥ ମନୁଷ୍ୟମାନେ ମଧ୍ୟ ଧନ୍ୟ । କାରଣ ଦ୍ୱିଜଗଣାଗ୍ରଗଣ୍ୟ ମହର୍ଷି କଶ୍ୟପ ଈଦୃଶ ଧର୍ମକାର୍ଯ୍ୟ କରିଅଛନ୍ତି, ଅର୍ଥାତ୍ ସଦୟ ହୋଇ ରାଜପୁତ୍ରମାନଙ୍କୁ ରକ୍ଷା କରି ପୃଥିବୀର ଧର୍ମ ରକ୍ଷା କରିଅଛନ୍ତି ।୪।

ହେ ମହାରାଜ ! ଅଚ୍ୟୁତ କୃଷ୍ଣ ଓ ଧର୍ମରାଜ ଯୁଧିଷ୍ଠିର ଏହିପରି କଥୋପକଥନ କରି କରି ସାତ୍ୟକି ପ୍ରଭୃତି ବୀରମାନଙ୍କ ସହିତ ମିଳିତ ହୋଇ ଯେଉଁଠାରେ ଗଙ୍ଗାନନ୍ଦନ ଭୀଷ୍ମଦେବ ଶରଶଯ୍ୟାରେ ଶୟନ କରିଥିଲେ, ସେହିଠାକୁ ଗମନ କଲେ ।୫।

ସେମାନେ ସେଠାରେ ଉପସ୍ଥିତ ହୋଇ ଦେଖିଲେ ଯେ ପ୍ରବାହବତୀ ନଦୀ ସନ୍ନିହିତ ପରମ ପବିତ୍ର ପ୍ରଦେଶରେ ଶରଶଯ୍ୟାସ୍ଥିତ ଭୀଷ୍ମଦେବ, ସ୍ୱକୀୟ ରଶ୍ମିଜାଲ ସମାକୀର୍ଣ୍ଣ ସାୟଂକାଳୀନ ସୂର୍ଯ୍ୟଙ୍କ ପ୍ରାୟ ଶୋଭା ପାଉ ଅଛନ୍ତି । ଅନନ୍ତର ଭଗବାନ କୃଷ୍ଣ, କୃପାଚାର୍ଯ୍ୟ ଓ ଭୀମାର୍ଜ୍ଜୁନ ପ୍ରଭୃତି ପୁରୁଷୋତ୍ତମ ବୀରମାନେ ଯେପରି ଦେବତାମାନେ ଶତକ୍ରତୁଙ୍କର ଉପାସନା କରନ୍ତି, ସେହିପରି ମହାତ୍ମା ମୁନିଗଣକର୍ତ୍ତୃକ ଉପାସ୍ୟମାନ ଭୀଷ୍ମଦେବଙ୍କୁ ଦୂରରୁ ଦର୍ଶନ କରି ରଥରୁ ଅବତୀର୍ଣ୍ଣ ହେଲେ ଏବଂ ସମସ୍ତ ଇନ୍ଦ୍ରିୟ ଓ ଚଞ୍ଚଳ ଚିତ୍ତକୁ ସଂଯମପୂର୍ବକ ପ୍ରଥମତଃ ପ୍ରଧାନ ପ୍ରଧାନ ମୁନି ଓ

ବ୍ୟାସାଦ ଋଷିଶ୍ରେଷ୍ଠମାନଙ୍କୁ ଅଭିବାଦନ କରି ଗଙ୍ଗାନନ୍ଦନଙ୍କ ଉପାସନାରେ ପ୍ରବୃତ୍ତ ହେଲେ ।୧୦।

ତଦନନ୍ତର ପୁରୁଷଶ୍ରେଷ୍ଠ ଯାଦବ ଓ କୌରବମାନେ ତପୋବୃଦ୍ଧ ଗଙ୍ଗାନନ୍ଦନ ଭୀଷ୍ମଙ୍କୁ ଦର୍ଶନ କରି ତାହାଙ୍କର ଚତୁର୍ଦ୍ଦିଗରେ ଉପବେଶନ କଲେ । ନିର୍ବାଣୋନ୍ମୁଖ ଅନଳ ପ୍ରାୟ ଭୀଷ୍ମଦେବ କ୍ରମଶଃ ଶାନ୍ତ ହେଉଅଛନ୍ତି ବୋଲି ବିବେଚନା କରି ଯଦୁନନ୍ଦନ କୃଷ୍ଣ କିଞ୍ଚିତ ଧ୍ୟାନମନା ହୋଇ ଏହିପରି କହିଲେ ।୧୨।

ବାସୁଦେବ କହିଲେ—ହେ ବଦତାମ୍ବର ! ବର୍ତ୍ତମାନ ଆପଣଙ୍କର ଚିତ୍ତ ପୂର୍ବପ୍ରାପ୍ତ ପ୍ରସନ୍ନ ଅଛି ତ ? ଆପଣଙ୍କର ବୁଦ୍ଧି ବ୍ୟାକୁଳ ହୋଇ ନାହିଁ ତ ? ଶରାଭିଘାତଜନିତ ବେଦନା ଆପଣଙ୍କର ଶରୀରକୁ ସନ୍ତାପିତ କରୁନାହିଁ ତ ? କର୍ମା କି ମାନସିକ କ୍ଲେଶ ଅପେକ୍ଷା ଶାରୀରିକ କ୍ଲେଶ ବଳବତ୍ତର ।୧୪।

ଆମ୍ଭେ ଜାଣୁ ଯେ ଆପଣ ସତତ ଧର୍ମ୍ମନିରତ ପିତା ମହାରାଜ ଶାନ୍ତନୁଙ୍କର ବର ପ୍ରଭାବରୁ ଇଚ୍ଛା ମରଣରେ ସମର୍ଥ ହୋଇ ଅଛନ୍ତି । ଆପଣ ଯେପରି ପିତୃ ସନ୍ତୋଷ ସମ୍ପାଦନ କରି ଇଚ୍ଛାମରଣ ରୂପ ବର ଲାଭକରି ଅଛନ୍ତି, ତାଦୃଶ ପିତୃସନ୍ତୋଷ ରୂପ କାରଣ ଆମ୍ଭର ମଧ୍ୟ ନାହିଁ ।୧୫।

ତଥାପି ଯେଉଁସ୍ଥଳେ ମନୁଷ୍ୟ ଶରୀରରେ ଗୋଟିଏ କଣ୍ଟକ ବିଦ୍ଧ ହେଲେ ପୀଡ଼ାହୁଏ ସେ ସ୍ଥଳେ ଅସଂଖ୍ୟ ଶର ପ୍ରହାର ଯନ୍ତ୍ରଣାରେ ଯେ ଆପଣଙ୍କର ଚିତ୍ତ ବ୍ୟଥିତ ହେବ, ତହିଁରେ ଆଶ୍ଚର୍ଯ୍ୟ କ'ଣ ? ପରନ୍ତୁ ଏହା ଆମ୍ଭେ ଅବଶ୍ୟ ସ୍ୱୀକାର କରୁଁ ଯେ ଉଲ୍ଲିଖିତ ସୁଖ ଦୁଃଖ କେବଳ ସାଧାରଣ ଜନମାନଙ୍କ ଅନ୍ତଃକରଣକୁ ଆକ୍ରମଣ କରେ; କିନ୍ତୁ ଆପଣଙ୍କଠାରେ ଏହି ସୁଖ ଦୁଃଖ କଦାପି ଉତ୍ପନ୍ନ ହୋଇପାରେ ନାହିଁ । କାରଣ ଆପଣ ପ୍ରାଣିମାନଙ୍କର ଉତ୍ପତ୍ତି ଲୟାଦି ସମସ୍ତ ତତ୍ତ୍ୱ ବିଷୟ ଦେବଗଣଙ୍କୁ ମଧ୍ୟ ଉପଦେଶ ଦେବାକୁ ସମର୍ଥ ଅଟନ୍ତି । ହେ ଭରତ କୁଳପ୍ରବର ! ଆପଣ ଏହି ପୃଥିବୀର ସମସ୍ତ ଜ୍ଞାନୀମାନଙ୍କର ଅଗ୍ରଗଣ୍ୟ ଅଟନ୍ତି । ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ଏହି ତ୍ରିକାଳବିଷୟକ ଯାହା କିଛି ଜ୍ଞାତବ୍ୟ ଅଛି ତତ୍ସମସ୍ତ ଆପଣଙ୍କଠାରେ ପ୍ରତିଷ୍ଠିତ ରହିଅଛି ।୧୮।

'ହେ ମହାପ୍ରାଜ୍ଞ ! ଧର୍ମର ଫଳୋଦୟ ଏବଂ ପ୍ରାଣିମାନଙ୍କର ସଂହାର ଏତତ୍ସମସ୍ତ ଆପଣଙ୍କୁ ବିଦିତ ଅଛି । ଯେହେତୁ ଆପଣ ଧର୍ମାତ୍ମା ଓ ଧର୍ମର ଆଧାରସ୍ୱରୂପ ଅଟନ୍ତି ।୧୯।

ଦାର ପରିତ୍ୟାଗ ରୂପ ପ୍ରତିଜ୍ଞାର ପୂର୍ବରୁ ଯେତେବେଳେ ଆପଣ ତାଦୃଶ ସମୃଦ୍ଧିସମ୍ପନ୍ନ ରାଜ୍ୟ ମଧ୍ୟରେ ସହସ୍ର ସହସ୍ର ସ୍ତ୍ରୀମାନଙ୍କଦ୍ୱାରା ପରିବୃତ୍ତ ଥିଲେ, ତେତେବେଳେ ମଧ୍ୟ ଆମ୍ଭେ ଆପଣଙ୍କୁ ସର୍ବତୋଭାବରେ ନୀରୋଗ ଶରୀର ଓ ଉର୍ଦ୍ଧ୍ୱରେତା ପ୍ରାପ୍ତ ଦେଖିଥିଲୁଁ । ଧାର୍ମିକ ପରାୟଣ ସତ୍ୟନିଷ୍ଠ ମହାବୀର୍ଯ୍ୟ ଶୂର ଶାନ୍ତନୁନନ୍ଦନ ଭୀଷ୍ମଙ୍କ ବ୍ୟତୀତ ଏହି ତ୍ରିଲୋକ ମଧ୍ୟରେ କୌଣସି ପ୍ରାଣୀର ସମ୍ବନ୍ଧ ଏପରି ପ୍ରଭାବ ଶ୍ରୁତ ହୋଇନାହିଁ ଯେ କେ ଶର ଶଯ୍ୟାରେ ଶୟନ ଥାଇ ତପଃ ପ୍ରଭାବଦ୍ୱାରା ମୃତ୍ୟୁକୁ ଇଚ୍ଛାନୁସାରେ ନିବାରଣ କରିପାରେ ? ହେ ଭରତକୁଳ ଚୂଡ଼ାମଣି ! ସତ୍ୟ, ତପସ୍ୟା, ଦାନ, ସମର ଯଜ୍ଞ, ଧନୁର୍ବେଦ, ବେଦ ଓ ଶରଣାଗତ ପାଳନରେ ଆପଣଙ୍କ ସଦୃଶ କୌଣସି ବ୍ୟକ୍ତି ନାହିଁ ଏବଂ ଅନୃଶଂସ, ପବିତ୍ରସ୍ୱଭାବ ସଂଯତେନ୍ଦ୍ରିୟ, ସମସ୍ତ ପ୍ରାଣିମାନଙ୍କର ହିତ ନିରତ ଓ ସମରରେ ଅଦ୍ୱିତୀୟ ରଥୀ ଅବା ଏହି ଭୂମଣ୍ଡଳରେ ଆପଣଙ୍କସଦୃଶ କିଏ ଅଛି ? ।୨୪।

ଆପଣ ଯେ ଏକାକୀ ଯୁଦ୍ଧରେ ଦେବ, ଗନ୍ଧର୍ବ, ଅସୁର, ଯକ୍ଷ ଓ ରାକ୍ଷସଗଣଙ୍କୁ ପରାଜୟ କରିବାରେ ସମର୍ଥ, ତହିଁରେ କୌଣସି ସନ୍ଦେହ ନାହିଁ ।୨୫।

ବସୁ ଅଂଶରେ ଜନ୍ମଗ୍ରହଣ କରିବାରୁ ଯଦି ବିପ୍ରମାନେ ଆପଣଙ୍କୁ ନବମ ବସୁ ବୋଲି ଗଣନା କରନ୍ତି, ତଥାପି ସ୍ୱୀୟ ଗୁଣ ପ୍ରଭାବଦ୍ୱାରା ଆପଣ ବସୁମାନଙ୍କ ଅପେକ୍ଷା ଅତିଶୟିତ ହୋଇ ଇନ୍ଦ୍ରଙ୍କ ପ୍ରାପ୍ତ ହୋଇ ଅଛନ୍ତି । ହେ ପୁରୁଷୋତ୍ତମ ! ଆପଣ ଶକ୍ତି ପ୍ରଭାବଦ୍ୱାରା ଦେବଲୋକ ମଧ୍ୟରେ ବିଖ୍ୟାତ ହୋଇଅଛନ୍ତି । ଆପଣଙ୍କର ଜ୍ଞାନ ଓ ସାମର୍ଥ୍ୟର ବିଷୟ ଆମ୍ଭର ଅଗୋଚର ନାହିଁ ।୨୭। ହେ ମନୁଷ୍ୟେନ୍ଦ୍ର ! ଏହି ପୃଥିବୀରେ ଆପଣଙ୍କ-ସଦୃଶ ଗୁଣଶାଳୀ ପୁରୁଷ କେଉଁଠାରେ ମଧ୍ୟ ବିଦ୍ୟମାନ ଥିବାର ଦୃଷ୍ଟ ହୁଏ ନାହିଁ କିମ୍ବା ଶ୍ରୁତ ହୁଏ ନାହିଁ ।୨୮।

ହେ ପୁରୁଷୋତ୍ତମ ! ଆପଣ ସମସ୍ତ ଗୁଣଦ୍ୱାରା ଦେବଗଣଙ୍କଠାରୁ ଅତିରିକ୍ତ ହୋଇ ଅଛନ୍ତି ଏବଂ ତପଃ ପ୍ରଭାବଦ୍ୱାରା ଚରାଚରବିଶିଷ୍ଟ ସମସ୍ତ ଲୋକର ସୃଷ୍ଟି କରିବାକୁ ସମର୍ଥ ଅଟନ୍ତି । ଏପରି ସ୍ଥଳରେ ଆପଣ ଯେ

ଉତ୍ତମଗୁଣସମୂହଦ୍ୱାରା ନିଜର ଗନ୍ତବ୍ୟ ଉତ୍ତମ ଉତ୍ତମ ସ୍ଥାନକୁ ଉପାର୍ଜ୍ଜନ କରିବେ, ଏଥିରେ ଆଉ ସନ୍ଦେହ କ'ଣ ? ଅତଏବ ଆପଣ ବର୍ତ୍ତମାନ ଉପଦେଶଦ୍ୱାରା ଜ୍ଞାତିକ୍ଷୟଜନିତ ଶୋକସନ୍ତପ୍ତ ଜ୍ୟେଷ୍ଠ ପାଣ୍ଡବ ମହାରାଜ ଯୁଧିଷ୍ଠିରଙ୍କର ଶୋକାପନୟନ କରନ୍ତୁ । ଚାରି ବର୍ଣ୍ଣ, ଚାରିବର୍ଣ୍ଣ୍ୟ, ଚାରିଆଶ୍ରମ୍ୟ, ଚାରିବେଦ୍ୟ, ଚାରିହୋତ୍ର, ବେଦ, ସାଂଖ୍ୟ, ଯୋଗ ଓ ଶିଷ୍ଟାଚାରର ପ୍ରଭୃତିରେ ଯେଉଁ ସବୁ ଧର୍ମ୍ମ କଥିତ ଅଛି ତତ୍ସମସ୍ତ ଆପଣଙ୍କୁ ବିଦିତ ଅଛି । ବିଶେଷତଃ ଯାହା ଗୂଢ଼ବର୍ଣ୍ଣ୍ୟ ବିରୁଦ୍ଧ ନୁହେଁ, ତତ୍ସମସ୍ତ ଧର୍ମ୍ମ ଗୂଢ଼ତାତ୍ପର୍ଯ୍ୟାର୍ଥ-ବ୍ୟାଖ୍ୟା ସହିତ ଆପଣ ଅବଗତ ଅଛନ୍ତି । ଏତଦ୍ଭିନ୍ନ ପ୍ରତିଲୋମଜାତ ବର୍ଣ୍ଣଧର୍ମ୍ମ, ଦେଶଧର୍ମ୍ମ, ଜାତିଧର୍ମ୍ମ ଓ କୁଳଧର୍ମ୍ମ ପ୍ରଭୃତିର ଯେଉଁସବୁ ଲକ୍ଷଣ ବର୍ଣ୍ଣିତ ହୋଇଅଛି, ତାହା ମଧ୍ୟ ଆପଣଙ୍କୁ ବିଦିତ ଅଛି । ହେ ପୁରୁଷର୍ଷଭ ! ଅର୍ଥ ସମେତ ନିଖିଳ ଧର୍ମ୍ମଶାସ୍ତ୍ର ଓ ପୁରାବୃତ୍ତାଦି ସମସ୍ତ ଆପଣଙ୍କର ମନୋମଧ୍ୟରେ ନିତ୍ୟ ଜାଗରୂକ ରହିଅଛି । ବିଶେଷତଃ ଏହି ସଂସାର ମଧ୍ୟରେ ଯେଉଁସବୁ ଅର୍ଥରେ ସଂଶୟ ଅଛି ତାହାର ଛେତ୍ତା ଆପଣଙ୍କ ଭିନ୍ନ ଅପର କେହି ନାହିଁ । ଅତଏବ ଆପଣ ନିଜର ଜ୍ଞାନ-ପ୍ରଭାବଦ୍ୱାରା ଧର୍ମ୍ମରାଜଙ୍କର ମାନସୋତ୍ପନ୍ନ ଶୋକକୁ ଅପନୀତ କରନ୍ତୁ । କାରଣ ଭବାଦୃଶ ଜ୍ଞାନ ପ୍ରବୃଦ୍ଧ ବ୍ୟକ୍ତିମାନେ କେବଳ ଶୋକାଦି ବିମୋହିତ ମନୁଷ୍ୟମାନଙ୍କର ଚିତ୍ତୋପଶାନ୍ତି ନିମିତ୍ତ ଜନ୍ମଗ୍ରହଣ କରିଅଛନ୍ତି ।୩୮।

---

## ଅଧ୍ୟାୟ-୪୧

ବୈଶମ୍ପାୟନ କହିଲେ—ହେ ମହାରାଜ ! ଭୀଷ୍ମଦେବ ଧୀମାନ୍ ବାସୁଦେବଙ୍କର ଏହିସବୁ ବାକ୍ୟ ଶ୍ରବଣ କରି ବଦନକୁ କିଞ୍ଚିତ ଉନ୍ନମିତ-ପୂର୍ବକ ପ୍ରାଞ୍ଜଳି ସହିତ କହିଲେ । ୧ ।

ଭୀଷ୍ମ କହିଲେ—ହେ ଭଗବନ୍ ! ତୁମ୍ଭେ ସମସ୍ତ ଲୋକର ଉତ୍ପତ୍ତି ଓ ପ୍ରଳୟକାରକ; ତୁମ୍ଭଙ୍କୁ ନମସ୍କାର । ହେ କୃଷ୍ଣ ! ହେ ବିଶ୍ୱକର୍ମନ ! ତୁମ୍ଭେ ଏହି ବିଶ୍ୱର ଆତ୍ମା, ତୁମ୍ଭଠାରୁ ବିଶ୍ୱ ଉତ୍ପନ୍ନ ହୋଇଅଛି । ହେ ହୃଷୀକେଶ ! ତୁମ୍ଭେ ସର୍ବଲୋକର ଅପରାଜେୟ, ସର୍ବ ଲୋକକର୍ତ୍ତା ଓ ସଂହର୍ତ୍ତା ଅଟ । ତୁମ୍ଭେ ଅପବର୍ଗ ଅର୍ଥାତ୍ ନିତ୍ୟ ମୁକ୍ତସ୍ୱରୂପ, ପଞ୍ଚ ମହାଭୂତ

ଏବଂ ସେମାନଙ୍କର ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ଏହି ପଞ୍ଚଗୁଣରୁ ତୁମ୍ଭେ ପୃଥକ ।୩।

ତୁମ୍ଭେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏହି ଲୋକତ୍ରୟରେ ତ୍ରିକାଳରେ ବିଦ୍ୟମାନ ଥାଇ ସୁଦ୍ଧା ତହିଁରୁ ଭିନ୍ନ ଅଛ । ଅତଏବ ତୁମ୍ଭଙ୍କୁ ନମସ୍କାର । ହେ ଯୋଗୀଶ୍ୱର ! ତୁମ୍ଭେ ସମସ୍ତଙ୍କର ଆଶ୍ରୟ, ଅତଏବ ତୁମ୍ଭଙ୍କୁ ନମସ୍କାର ।୪।

ହେ ପୁରୁଷୋତ୍ତମ ! ତୁମ୍ଭେ ପ୍ରସନ୍ନ ହୋଇ ମହାପ୍ରଭୁ ଗୁଣକୀର୍ତ୍ତନ କରିବାରୁ ଆମ୍ଭେ ଦିବ୍ୟଚକ୍ଷୁ ଲାଭ କରିଅଛୁଁ । ଯଦ୍ଦ୍ୱାରା ଆମ୍ଭେ ତ୍ରିଲୋକ-ସ୍ଥିତ ଦିବ୍ୟଭାବକୁ ଏବଂ ସନାତନ ରୂପକୁ ଦର୍ଶନ କରିଅଛୁଁ । ତୁମ୍ଭେ ଅପରିମିତତେଜା ବାୟୁରୂପରେ ସପ୍ତବିମ୍ବକୁ ରୋଧ କରିଅଛ । ତୁମ୍ଭର ମସ୍ତକଦ୍ୱାରା ଆକାଶ ଓ ଚରଣଦ୍ୱାରା ଭୂମଣ୍ଡଳ ପରିବ୍ୟାପ୍ତ ହୋଇଅଛି । ଦିକ୍‌ସମସ୍ତ ତୁମ୍ଭର ବାହୁ, ରବି ତୁମ୍ଭର ଚକ୍ଷୁ, ଏବଂ ଇନ୍ଦ୍ର ତୁମ୍ଭର ବୀର୍ଯ୍ୟରେ ପ୍ରତିଷ୍ଠିତ ହୋଇଅଛନ୍ତି ।୭।

ହେ ଅଚ୍ୟୁତ ! ତୁମ୍ଭର ଶରୀର ଅତସୀକୁସୁମସଦୃଶ ପୀତବର୍ଣ୍ଣ ବସ୍ତ୍ରଦ୍ୱାରା ସମାଚ୍ଛାଦିତ ଥିବାରୁ ବିଦ୍ୟୁଦ୍ଦାମ-ବିମଣ୍ଡିତ ବାରିଦ-ବ୍ୟୂହପ୍ରାପ୍ତ ବୋଧ ହେଉଅଛି ।୮।

ହେ ସୁରୋତ୍ତମ ! ହେ ପୁଣ୍ଡରୀକାକ୍ଷ ! ଆମ୍ଭେ ତୁମ୍ଭର ଶରଣାଗତ ଭକ୍ତ ଅଟୁଁ । ସଦ୍‌ଗତି କାମନାରେ ତୁମ୍ଭଙ୍କୁ ପ୍ରାର୍ଥନା କରୁଅଛୁଁ । ଯଦ୍ଦ୍ୱାରା ତଦ୍‌ବିଷୟରେ ଆମ୍ଭର ଶ୍ରେୟ ହୁଏ, ତାହା ଚିନ୍ତାକର ।୯।

ବାସୁଦେବ କହିଲେ—ହେ କୁରୁନାଥ ! ଯେହେତୁ ଆମ୍ଭପ୍ରତି ତୁମ୍ଭେ ଅକପଟ ଭକ୍ତି କରିଥାଅ, ସେହି ହେତୁରୁ ଆମ୍ଭେ ଆମ୍ଭର ଦିବ୍ୟ ମୂର୍ତ୍ତିକି ତୁମ୍ଭଙ୍କୁ ପ୍ରଦର୍ଶନ କଲୁଁ । ଭକ୍ତିଶୂନ୍ୟ ବ୍ୟକ୍ତିକୁ କିମ୍ବା କପଟ ଭକ୍ତକୁ କିମ୍ବା ଅଶାନ୍ତ ବ୍ୟକ୍ତିକୁ ଆମ୍ଭେ କଦାପି ନିଜମୂର୍ତ୍ତି ପ୍ରଦର୍ଶନ କରୁଁ ନାହିଁ ।୧୧।

ତୁମ୍ଭେ ଆମ୍ଭର ନିତ୍ୟ ଭକ୍ତ ଓ ଆର୍ଜବସମ୍ପନ୍ନ; ବିଶେଷତଃ ତୁମ୍ଭେ ତପ, ଦମ ଓ ଦାନ ପ୍ରଭୃତି କର୍ତ୍ତବ୍ୟକାର୍ଯ୍ୟରେ ସର୍ବଦା ନିରତ ଏବଂ ନିର୍ମଳ ସ୍ୱଭାବ । ସୁତରାଂ ସେହି ତପପ୍ରଭାବରୁ ତୁମ୍ଭେ ଆମ୍ଭର ଦିବ୍ୟରୂପ ଦର୍ଶନର ଉପଯୁକ୍ତ ପାତ୍ର । ହେ ଭୀଷ୍ମ ! ଯେଉଁଠାକୁ ଗମନ କଲେ ଜୀବର ଆଉ ପୁନରାବୃତ୍ତି ହୁଏ ନାହିଁ, ଆମ୍ଭେ ତୁମ୍ଭଙ୍କୁ ସେହି ସ୍ଥଳକୁ ପ୍ରେରଣ କରିବୁଁ । ୧୩ ।

କିନ୍ତୁ ବର୍ତ୍ତମାନ ମଧ୍ୟ ତିଂଶତ ଦିବସ ତୁମ୍ଭର ଜୀବନର ଅବଶିଷ୍ଟ ଅଛି । ଅନ୍ୟ ଲୋକେ ଶତ ଦିବସ ମଧ୍ୟରେ ଯେଉଁ କାର୍ଯ୍ୟ କରିବାକୁ ସମର୍ଥ ଅଟନ୍ତି, ତୁମ୍ଭେ ଏହି ତିଂଶତ ଦିବସ ମଧ୍ୟରେ ସେହି ସମସ୍ତ କର୍ତ୍ତବ୍ୟାନୁଷ୍ଠାନରେ ସମର୍ଥ ହେବ । ତଦନନ୍ତର କଳେବର ପରିତ୍ୟାଗ-ପୂର୍ବକ ନିଜର ସୁକୃତ ପ୍ରଭାବଦ୍ୱାରା ଅଭିଲଷିତ ଧାମକୁ ଗମନ କରିବ । ଜ୍ୱଳଦଗ୍ନି କଳ୍ପବସୁ ଓ ଦେବତାମାନେ ବିମାନାରୂଢ଼ ହୋଇ ଅନ୍ତର୍ହିତ-ଭାବରେ ସୂର୍ଯ୍ୟଙ୍କର ଉତ୍ତରାୟଣ କାଳକୁ ଅପେକ୍ଷା କରୁଅଛନ୍ତି । ହେ କୁରୁପ୍ରବର ! ତତ୍ତ୍ୱଜ୍ଞାନୀ ପୁରୁଷ ଯେଉଁଲୋକକୁ ଗମନ କଲେ ପୁନରା-ବର୍ତ୍ତିତ ହୁଅନ୍ତି ନାହିଁ, ଭଗବାନ ସୂର୍ଯ୍ୟ ପରିବର୍ତ୍ତିତ କାଳର ବଶବର୍ତ୍ତୀ ହୋଇ ଉତ୍ତରାୟଣରେ ଗମନ କଲେ, ତୁମ୍ଭେ ସେଠାକୁ ଗମନ କରିବ । ହେ ଭୀଷ୍ମ ! ତୁମ୍ଭେ ଇହଲୋକକୁ ପରିତ୍ୟାଗ କଲେ ପୃଥିବୀରୁ ଜ୍ଞାନ ପ୍ରାୟ ବିଲୁପ୍ତ ହୋଇଯିବ । ସେହିନିମିତ୍ତ ସମସ୍ତେ ଧର୍ମଜିଜ୍ଞାସୁ ହୋଇ ତୁମ୍ଭ-ଠାରେ ସମାଗତ ହୋଇଅଛନ୍ତି । ଅତଏବ ଜ୍ଞାତିକ୍ଷୟଜନିତ ଶୋକରେ ଉପହତଚିତ୍ତ ସତ୍ୟସନ୍ଧ ଯୁଧିଷ୍ଠିରଙ୍କୁ ଧର୍ମ, ଅର୍ଥ ଓ ସମାଧି ପ୍ରଭୃତି ଯୋଗଯୁକ୍ତ ସତ୍ୟବାକ୍ୟକୁ ଉପଦେଶ ଦେଇ ଏହାଙ୍କର ଶୋକାପନୋଦନ କରନ୍ତୁ । ୧୮ ।

———

## ଅଧ୍ୟାୟ-୫୨

ବୈଶମ୍ପାୟନ କହିଲେ—ତଦନନ୍ତର ଶାନ୍ତନୁନନ୍ଦନ ଭୀଷ୍ମ କୃଷ୍ଣଙ୍କର ଧର୍ମାର୍ଥଯୁକ୍ତ ଲୋକହିତକର ବାକ୍ୟଶ୍ରବଣ କରି କୃତାଞ୍ଜଳି-ପୁଟରେ ଏହିପରି ପ୍ରତ୍ୟୁତ୍ତର କଲେ । ୧ ।

ଭୀଷ୍ମ କହିଲେ—ହେ ଲୋକନାଥ ! ତୁମେ ସାକ୍ଷାତ ଶିବସ୍ୱରୂପ ଅବ୍ୟୟ ପୁରୁଷ ନାରାୟଣ; ତୁମ୍ଭର ବାକ୍ୟଶ୍ରବଣ କରି ଆମ୍ଭର ହୃଦୟ ଆନନ୍ଦରେ ପରିପ୍ଲୁତ ହେଲା । ୨ ।

ଯେତେବେଳେ ବାକ୍ୟ ସମସ୍ତଙ୍କର ଯାହା କିଛି ବକ୍ତବ୍ୟ ବିଷୟ ଅଛି, ତତ୍ସମସ୍ତ ତୁଦୁକ୍ତ ବାକ୍ୟ ଅଟେ; ଅର୍ଥାତ୍ ବେଦରେ ସମାହିତ ହୋଇଅଛି, ତେତେବେଳେ ଆମ୍ଭେ ଆଜ ତୁମ୍ଭ ସାକ୍ଷାତରେ କି ଉପଦେଶ

ଦେଇ ପାରିବ ? ଇହଲୋକ ଓ ପରଲୋକରେ ହିତ କାମନାରେ ବୁଦ୍ଧିମାନ ଲୋକେ ଯାହା କିଛି କରନ୍ତି ଏବଂ ଏହି ସଂସାରରେ ଯାହା କିଛି କର୍ତ୍ତବ୍ୟ ଅଛି, ତତ୍ସମସ୍ତ ତୁମ୍ଭଠାରୁ ବିସ୍ତୃତ ହୋଇଅଛି । ଅତଏବ ଯେଉଁ ବ୍ୟକ୍ତି ଦେବରାଜ ଇନ୍ଦ୍ରଙ୍କ ସମୀପରେ ଦେବଲୋକର ବୃତ୍ତାନ୍ତ କହିବାକୁ ସମର୍ଥ ଅଟନ୍ତି, ସେହି ବ୍ୟକ୍ତି ତୁମ୍ଭ ସମକ୍ଷରେ ଧର୍ମ, ଅର୍ଥ, କାମ ଓ ମୋକ୍ଷର ତତ୍ତ୍ୱାର୍ଥକୁ ବର୍ଣ୍ଣନ କରିବାରେ ସମର୍ଥ ହେବେ । ୫ ।

ହେ ମଧୁସୂଦନ ! ଆମ୍ଭର ମନ ଶରପ୍ରହାରଜନିତ ବେଦନାରେ ଅତ୍ୟନ୍ତ ବ୍ୟଥିତ ହେଉଅଛି ଏବଂ ସର୍ବାଙ୍ଗ ଶରୀର ଅବସନ୍ନ ହୋଇ ପଡ଼ୁଅଛି । ଏଣୁକରି ବୁଦ୍ଧିର ସ୍ଫୂର୍ତ୍ତି ହେଉନାହିଁ । ୬ ।

ହେ ଗୋବିନ୍ଦ ! ବିଷାନଳସଦୃଶ ଶରସମୂହଦ୍ୱାରା ପ୍ରପୀଡ଼ିତ ହେବାରୁ ଆମ୍ଭର ବୁଦ୍ଧି ଏପରି ପ୍ରତିଭାଶୂନ୍ୟ ହୋଇଅଛି ଯେ କଥା କହିବାକୁ ସୁଦ୍ଧା ପ୍ରବୃତ୍ତି ହେଉନାହିଁ । ୭ ।

ଆମ୍ଭର ଶରୀର କ୍ରମଶଃ ବଳହୀନ ହୋଇ ଆସୁଅଛି । ପ୍ରାଣ ବହିର୍ଗତ ପ୍ରାୟ ଏବଂ ମର୍ମସ୍ଥଳ ଏପରି ପୀଡ଼ିତ ହେଉଅଛି ଯେ ତଦ୍ଦ୍ୱାରା ଆମ୍ଭ ଚିତ୍ତରେ ବାରମ୍ବାର ଭ୍ରମ ଜନ୍ମୁଅଛି । ୮ ।

ଦୌର୍ବଲ୍ୟ ହେତୁରୁ ଆମ୍ଭର ବାକ୍ୟସବୁ ପୁନଃପୁନଃ ଜଡ଼ିତ ହେଉଅଛି । ଅତଏବ ଆମ୍ଭେ ଆଉ କି ପ୍ରକାରେ କଥା କହିବାକୁ ଉତ୍ସାହ କରିବୁଁ । ହେ ଦାଶାର୍ହ କୁଳବର୍ଦ୍ଧନ ! ଆମ୍ଭେ ତୁମ୍ଭଠାରୁ କ୍ଷମା ପ୍ରାର୍ଥନା କରୁଅଛୁଁ । ତୁମ୍ଭେ କୃପାକରି ଆମ୍ଭପ୍ରତି ପ୍ରସନ୍ନ ହୁଅ । ଆମ୍ଭେ କିଛି କହି ପାରିବୁ ନାହିଁ । ବିଶେଷତଃ ତୁମ୍ଭଠାରେ କଥା କହିବାକୁ ବୃହସ୍ପତି ସୁଦ୍ଧା ଅବସନ୍ନ ହୁଅନ୍ତି । ୧୦ ।

ହେ ମଧୁସୂଦନ ! ଆମ୍ଭର ଚିତ୍ତ ଏପରି ଭ୍ରାନ୍ତ ହୋଇଅଛି ଯେ ଆକାଶ, ପୃଥିବୀ କିମ୍ବା ଦିକ୍ କିଛି ସୁଦ୍ଧା ଆମ୍ଭେ ବିଶେଷରୂପରେ ଜାଣି ପାରୁନାହୁଁ । ଆମ୍ଭେ କେବଳ ତୁମ୍ଭର ତେଜଃ ପ୍ରଭାବଦ୍ୱାରା ଜୀବନଧାରଣ କରି ଅବସ୍ଥାନ କରୁଅଛୁଁ । ଅତଏବ ଧର୍ମରାଜ ଯୁଧିଷ୍ଠିରଙ୍କର ସହିତରେ ହିତ ହୁଏ, ତୁମ୍ଭେ ସ୍ୱୟଂ ତାହା ଉପଦେଶ ଦିଅ । କାରଣ ତୁମ୍ଭେ ସମସ୍ତ ଆଗମମାନଙ୍କର ଆଗମ ସ୍ୱରୂପ; ଅର୍ଥାତ ଶାସ୍ତ୍ରମାନଙ୍କର ନିୟନ୍ତା ଅଟ । ୧୧ ।

ହେ କୃଷ୍ଣ ! ସର୍ବଲୋକକର୍ତ୍ତା ନିତ୍ୟପୁରୁଷ ତୁମ୍ଭେ ଆଜ ଆଜ୍ଞ ମାଦୃଶବ୍ୟକ୍ତି କି ପ୍ରକାରେ ଧର୍ମବକ୍ତା ହେବ ? ଏହା ଗୁରୁ ନିକଟରେ ଆଉଁ ଆଉଁ କୌଣସି ଶିଷ୍ୟ ଉପଦେଷ୍ଟା ହେବା ସଦୃଶ ହେବ । ୧୩ ।

ବାସୁଦେବ କହିଲେ—ହେ ଗଙ୍ଗାନନ୍ଦନ ! ତୁମ୍ଭେ ଯାହା କହିଲ ତାହା ସର୍ବାର୍ଥଦର୍ଶୀ ସ୍ଥିରପ୍ରତିଜ୍ଞ ମହାବୀର୍ଯ୍ୟଶାଳୀ କୌରବକୁଳ ଧୁରନ୍ଧର ମହାତ୍ମା ଭୀଷ୍ମଙ୍କର ଉପଯୁକ୍ତ ହୋଇଅଛି । ତୁମ୍ଭେ ଶରାଭିଘାତ-ଜନିତ ପୀଡ଼ା ବିଷୟ ଯାହା କହିଲ, ତନ୍ନିମିତ୍ତରେ ଆମ୍ଭେ ପ୍ରସନ୍ନ ହୋଇ ତୁମ୍ଭଙ୍କୁ ବରଦାନ କରୁଅଛୁଁ । ତୁମ୍ଭର ଆଉ ଶାରୀରିକ ଗ୍ଲାନି, ଦାହ କିମ୍ବା ମୂର୍ଚ୍ଛା କୌଣସି ପୀଡ଼ା ରହିବ ନାହିଁ ଏବଂ କ୍ଷୁତ୍‌ପିପାସା ମଧ୍ୟ ତୁମ୍ଭଙ୍କୁ ଆଉ ଅଭିଭୂତ କରି ପାରିବ ନାହିଁ । ୧୭ ।

ହେ ଅନଘ ! ତୁମ୍ଭର ବର୍ତ୍ତମାନଠାରୁ ଏଣିକି ଜ୍ଞାନ ସମ୍ୟକ୍ ପ୍ରକାରରେ ପ୍ରତିଷ୍ଠାପ୍ରାପ୍ତ ହେବ । ତୁମ୍ଭର ବୁଦ୍ଧି ଆଉ କୌଣସି ବିଷୟରେ ଅବସନ୍ନ ହେବ ନାହିଁ । ଏଣିକି ତୁମ୍ଭର ମନ ମେଘରାଶିରୁ ମୁକ୍ତ ଚନ୍ଦ୍ରମା ପ୍ରାୟ, ରଜ ଓ ତମୋଗୁଣ ରହିତ ହୋଇ କେବଳ ସତ୍ତ୍ୱଗୁଣରେ ଅବସ୍ଥାନ କରିବ । ୧୮ ।

ତୁମ୍ଭେ ଯେଉଁ ଯେଉଁ ଧର୍ମ କିମ୍ବା ଅର୍ଥର ବିଷୟ ଚିନ୍ତାକରିବ, ସେହି ସେହି ବିଷୟରେ ତୁମ୍ଭର ବୁଦ୍ଧି ପ୍ରଶସ୍ତରୂପରେ ପ୍ରବିଷ୍ଟ ହେବ ।୧୯।

ହେ ଅମିତବିକ୍ରମ ରାଜଶାର୍ଦ୍ଦୂଳ ! ତୁମ୍ଭେ ଦିବ୍ୟଚକ୍ଷୁକୁ ଆଶ୍ରୟ କରି ଚତୁର୍ବିଧ ପ୍ରାଣିମାନଙ୍କର ସୂକ୍ଷ୍ମତତ୍ତ୍ୱକୁ ଜାଣି ପାରିବ ଏବଂ ସେମାନେ ବିମଳ-ସଲିଳସ୍ଥ ମତ୍ସ୍ୟସମୂହ ପ୍ରାୟ ଯେପରି ଏହି ସଂସାରରେ ବିଚରଣ କରୁଅଛନ୍ତି, ତତ୍ସମସ୍ତ ତୁମ୍ଭେ ସେହି ଜ୍ଞାନଚକ୍ଷୁଦ୍ୱାରା ପ୍ରକୃତରୂପରେ ଦର୍ଶନ କରିବାକୁ ସମର୍ଥ ହେବ ।୨୧।

ବୈଶମ୍ପାୟନ କହିଲେ—ଭଗବାନ୍ ବାସୁଦେବ ଭୀଷ୍ମଙ୍କୁ ଏହିପରି ବରପ୍ରଦାନ କଲାପରେ ବ୍ୟାସଦେବ ପ୍ରଭୃତି ମହର୍ଷିମାନେ ଋକ୍, ଯଜୁ, ଓ ସାମୋକ୍ତ ବାକ୍ୟ ଉଚ୍ଚାରଣପୂର୍ବକ କୃଷ୍ଣଙ୍କର ଅର୍ଚ୍ଚନା କଲେ ।୨୨।

ଏମନ୍ତ ସମୟରେ ନଭୋମଣ୍ଡଳରୁ ବାସୁଦେବ, ଗଙ୍ଗାନନ୍ଦନ ଭୀଷ୍ମ ଓ ଧର୍ମରାଜ ଯୁଧିଷ୍ଠିରଙ୍କ ଉପରେ ସର୍ବଋତୁସମ୍ଭୂତ ରାଶି ରାଶି ଦିବ୍ୟ କୁସୁମ ବୃଷ୍ଟି, ବାଦିତ୍ର ନିନାଦ, ଏବଂ ଅପ୍ସରାମାନଙ୍କର ସଙ୍ଗୀତ ହେଲା ।

ତତ୍ସମୟରେ ସେଠାରେ କୌଣସି ପ୍ରକାର ଅନିଷ୍ଟ ଦୃଷ୍ଟ ହୋଇ ନ ଥିଲା ।୨୭।

ସର୍ବପ୍ରକାର ସଦ୍‌ଗନ୍ଧ ସମନ୍ୱିତ ଅତ୍ୟନ୍ତ ସୁଖସ୍ପର୍ଶ ନିର୍ମଳ ମଙ୍ଗଳମୟ ବାୟୁ ବହିବାକୁ ଆରମ୍ଭ କଲା । ଦିକ୍ ସମସ୍ତ ପ୍ରଶାନ୍ତ ହେଲା; ମୃଗ ଓ ପକ୍ଷିମାନେ ପ୍ରଶାନ୍ତଭାବରେ ବିଚରଣ କରିବାକୁ ଆରମ୍ଭ କଲେ ।୨୮।

ତଦନନ୍ତର ଅଗ୍ନିଦେବ ଯେପରି ବିସ୍ତୀର୍ଣ୍ଣ ଅରଣ୍ୟକୁ ଦଗ୍ଧ କରି ତାହାର ଏକ ଦେଶରେ ଦୃଷ୍ଟ ହୁଅନ୍ତି, ସେହିପରି ସହସ୍ର ରଶ୍ମି ଭଗବାନ୍ ପ୍ରଭାକର ଜଗତକୁ ଉତ୍ତପ୍ତ କରି ପ୍ରତୀଚୀ ଦିଗ୍‌ଭାଗରେ ଦୃଷ୍ଟ ହେଲେ । ତାହା ଦେଖି ମହର୍ଷିଗଣ ସନ୍ଧ୍ୟୋପାସନାନିମିତ୍ତ ସହସା ସମୁତ୍‌ଥିତ ହୋଇ ଜନାର୍ଦ୍ଦନଙ୍କୁ, ଗଙ୍ଗାନନ୍ଦନ ଭୀଷ୍ମଙ୍କୁ ଏବଂ ଧର୍ମରାଜ ଯୁଧିଷ୍ଠିରଙ୍କୁ ସମ୍ବୋଧନପୂର୍ବକ ବିଦାୟ ପ୍ରାର୍ଥନା କଲେ । ମହାତ୍ମା କେଶବ ପାଣ୍ଡବଗଣ, ସାତ୍ୟକି, ସଞ୍ଜୟ ଏବଂ କୃପାଚାର୍ଯ୍ୟ ପ୍ରଭୃତି ସମସ୍ତେ ସେମାନଙ୍କୁ ପ୍ରଣାମ କଲେ । ଧର୍ମନିରତ ମହର୍ଷିମାନେ କେଶବାଦିମାନଙ୍କ କର୍ତ୍ତୃକ ସମ୍ୟକ ପ୍ରକାରରେ ପୂଜିତ ହୋଇ "କାଲି ଆସିବୁ" ଏହି କଥା କହି ନିଜ ନିଜ ଅଭିଲଷିତ ସ୍ଥାନକୁ ଗମନ କଲେ ।୨୯।

ସେତେବେଳେ ଭଗବାନ୍ ବାସୁଦେବ ଓ ମହାତ୍ମା ପାଣ୍ଡବମାନେ ଭୀଷ୍ମଦେବଙ୍କୁ ସମ୍ବୋଧନପୂର୍ବକ ପ୍ରଦକ୍ଷିଣ କରି ଉତ୍କୃଷ୍ଟ ରଥରେ ଆରୋହଣ କଲେ ।୩୦।

ତଦନନ୍ତର କାଞ୍ଚନମୟ ଧ୍ୱଜଯୁକ୍ତ କୁବେର ସୁଶୋଭିତ ରଥ, ସୁପର୍ଣ୍ଣ ସଦୃଶ ଶୀଘ୍ରଗାମୀ ଅଶ୍ୱ ଓ ପର୍ବତାକାର ମଦମତ୍ତ ହସ୍ତୀବୃନ୍ଦ ସୁସଜ୍ଜିତ ହୁଅନ୍ତେ ରଥୀ, ନିଷାଦି ଓ ସାଦିଗଣ ବଦ୍ଧସନ୍ନାହ ହୋଇ ସେଥିରେ ଆରୋହଣ କଲେ ଏବଂ ପଦାତିମାନେ ମଧ୍ୟ ହସ୍ତରେ ଶରାସନ ଗ୍ରହଣପୂର୍ବକ ସେମାନଙ୍କ ସହିତ ମିଳିତ ହେଲେ । ଅନନ୍ତର ସେହି ଚତୁରଙ୍ଗିଣୀ ସେନା ବ୍ୟୂହିତ ଓ ଦୁଇଭାଗରେ ବିଭକ୍ତ ହୋଇ, ଋକ୍ଷବାନ୍ ପର୍ବତର ଅଗ୍ରପଶ୍ଚାଦଗାମିନୀ ମହାନଦୀ ନର୍ମଦା ପ୍ରାୟ, ଭଗବାନ୍ କେଶବ ଓ ଯୁଧିଷ୍ଠିର ପ୍ରଭୃତି ପାଣ୍ଡବମାନଙ୍କ ରଥର ଅଗ୍ର ଓ ପଶ୍ଚାତରେ ଗମନ କଲେ ।୩୧।

ଭଗବାନ୍ ଅଂଶୁମାନଙ୍କର ନିଜର ଶୀତ ରଶ୍ମି ଗୁଣରେ ସେହି ବ୍ୟୂହିତ ସେନାମାନଙ୍କର ଚିତ୍ତକୁ ଆନନ୍ଦିତ କଲେ ଏବଂ ପ୍ରଚଣ୍ଡ ପ୍ରଭାକର ପୀଡିତ ମହୌଷଧିମାନଙ୍କର ଅନ୍ତରରେ ରସ ସଞ୍ଚାରିତ କରି ପୂର୍ବ ଦିକ୍‌ଭାଗରେ ସମୁଦିତ ହେଲେ । ତଦନନ୍ତର ଯଦୁପତି କୃଷ୍ଣ, ସାତ୍ୟକି ଏବଂ ପାଣ୍ଡବମାନେ ଅମରପୁରୀ ସଦୃଶ୍ୟ ଶ୍ରୀସମ୍ପନ୍ନ ହସ୍ତିନା ନଗରୀରେ ଉପସ୍ଥିତ ହୋଇ ପରିଶ୍ରାନ୍ତ ସିଂହ ଗିରିଗୁହାରେ ପ୍ରବେଶ କଲାପ୍ରାୟ, ମହର୍ଷି ରାଜପୁରୀ ମଧ୍ୟରେ ପ୍ରବିଷ୍ଟ ହେଲେ ।

---

## ଅଧ୍ୟାୟ–୫୩

ବୈଶମ୍ପାୟନ କହିଲେ—ତଦନନ୍ତର ମଧୁସୂଦନ ଶଯ୍ୟାଗାରକୁ ଗମନପୂର୍ବକ ସୁଖରେ ନିଦ୍ରିତ ହେଲେ ଏବଂ ଯାମିନୀର ଅର୍ଦ୍ଧଯାମ ମାତ୍ର ଅବଶିଷ୍ଟ ଥିବା ସମୟରେ ଜାଗରିତ ଧ୍ୟାନ ପଥାବଲମ୍ବନପୂର୍ବକ ପ୍ରଥମତଃ ଇନ୍ଦ୍ରିୟମାନଙ୍କୁ ଓ ବୁଦ୍ଧିକି ସ୍ଥିର କରି ପରେ ସନାତନ ପରବ୍ରହ୍ମଙ୍କୁ ଚିନ୍ତା କଲେ । ୨ ।

କିୟତ୍‌କ୍ଷଣ ପରେ ମନୋହର କଣ୍ଠସ୍ୱର ସମନ୍ୱିତ ସୁଶିକ୍ଷିତ ସୂତ ଓ ପୁରାଣାଭିଜ୍ଞ ବନ୍ଦିମାନେ ସେହି ପ୍ରଜାପତି ବିଶ୍ୱକର୍ମା ବାସୁଦେବଙ୍କର ସ୍ତବ କଲେ । ୩ ।

ସେହି ସମୟରେ ସହସ୍ର ମୃଦଙ୍ଗ, ଶଙ୍ଖ ଓ କରତଳ ଧ୍ୱନି ଓ ମନୋହର ପଣବ, ବୀଣା ଓ ବଂଶୀରବ ହେଲା । ଗାୟକମାନେ ଉତ୍ତମ ସ୍ୱରରେ ସଙ୍ଗୀତ କରିବାକୁ ଆରମ୍ଭ କଲେ । ତତ୍କାଳରେ ସେହି ଗୀତ ବାଦ୍ୟଜନିତ ଗମ୍ଭୀର କଳନାଦ ହୁଅନ୍ତେ, ଭଗବାନଙ୍କର ଶୟନ ଗୃହଟି, ଉଚ୍ଚସ୍ୱରରେ ହାସ୍ୟ କଲାପ୍ରାୟ ବୋଧହେଲା । ୫ ।

ଧର୍ମରାଜ ଯୁଧିଷ୍ଠିରଙ୍କର ମଧ୍ୟ ମଙ୍ଗଳଜନକ ସ୍ତୁତିପାଠ, ସୁମଧୁର ସ୍ୱରରେ ସଙ୍ଗୀତ ଏବଂ ବାଦିତ୍ର ନିନାଦ ହେଲା । ୬ ।

ତଦନନ୍ତର ଦାଶାର୍ହ କୁଳନନ୍ଦନ ମହାବାହୁ କୃଷ୍ଣ ସ୍ନାନ ଓ କୃତାଞ୍ଜଳିପୂର୍ବକରେ ଗୁହ୍ୟ ମନ୍ତ୍ର ଜପ ଓ ହୋମକାର୍ଯ୍ୟ ସମାପ୍ତ କରି ଗୃହର ବହିର୍ଭାଗରେ ଅବସ୍ଥାନ କରନ୍ତେ ଚତୁର୍ବେଦ ବିଶାରଦ ଏକ ସହସ୍ର ବିପ୍ର

ତାହାଙ୍କଠାରେ ଉପସ୍ଥିତ ହେଲେ । କୃଷ୍ଣ ସେମାନଙ୍କୁ ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ ଗୋ ପ୍ରଦାନ କରିବାରୁ ସେମାନେ ସମସ୍ତେ ଆନନ୍ଦ-ଚିତ୍ତରେ ବେଦବାଦ ପ୍ରବୃତ୍ତିପୂର୍ବକ ତାହାଙ୍କର ସ୍ୱସ୍ତିବାଚନ କଲେ । ତତ୍ପରେ କୃଷ୍ଣ ମାଙ୍ଗଲ୍ୟ ଦ୍ରବ୍ୟସବୁ ସ୍ପର୍ଶ କରି ଓ ବିମଳ ଆଦର୍ଶ ମଧ୍ୟରେ ଆତ୍ମଦର୍ଶନ କରି ସାତ୍ୟକଙ୍କୁ କହିଲେ—ହେ ଶିନିକୁଳନନ୍ଦନ ! ମହାତେଜା ଧର୍ମରାଜ ଯୁଧିଷ୍ଠିର ଭୀଷ୍ମଙ୍କଠାକୁ ଯିବାନିମିତ୍ତ ସୁସଜ୍ଜିତ ହୋଇ ଅଛନ୍ତି କି ନା, ତାହା ତୁମ୍ଭେ ରାଜଭବନକୁ ଯାଇ ବୁଝିଆସ ।

ସାତ୍ୟକି କୃଷ୍ଣଙ୍କର ଆଦେଶ ଶ୍ରବଣ କଲାକ୍ଷଣି ଯୁଧିଷ୍ଠିରଙ୍କ ନିକଟକୁ ଯାଇ କହିଲେ—ହେ ରାଜନ ! ଧୀମାନ୍ ବାସୁଦେବଙ୍କର ରଥ ସଜ୍ଜିତ ହୋଇଅଛି । ସେ ଗଙ୍ଗାନନ୍ଦନଙ୍କୁ ଦେଖିବାକୁ ଯିବେବୋଲି ଆପଣଙ୍କୁ ଅପେକ୍ଷା କରୁଅଛନ୍ତି, ବର୍ତ୍ତମାନ ଯାହା କର୍ତ୍ତବ୍ୟ ତାହା କୁହନ୍ତୁ । ଧର୍ମରାଜ ଯୁଧିଷ୍ଠିର ସାତ୍ୟକଙ୍କର ବାକ୍ୟଶ୍ରବଣ କରି ଅର୍ଜୁନଙ୍କୁ କହିଲେ । ଯୁଧିଷ୍ଠିର କହିଲେ—ହେ ଅପ୍ରତିମ ଦ୍ୟୁତେ ଫଲ୍‌ଗୁନ ! ତୁମ୍ଭେ ଆମ୍ଭନିମିତ୍ତ ଉତ୍କୃଷ୍ଟ ରଥ ସଜ୍ଜା କରିବାକୁ ଆଦେଶ କର । ଆଜି କେବଳ ଆମ୍ଭେମାନେ କେତେଜଣ ଯିବୁ । ଆମ୍ଭମାନଙ୍କ ସହିତ ସୈନ୍ୟମାନଙ୍କର ଯିବାର ଆବଶ୍ୟକ ନାହିଁ, କାରଣ ଧାର୍ମିକଶ୍ରେଷ୍ଠ ମହାତ୍ମା ଭୀଷ୍ମଙ୍କୁ ସୈନ୍ୟ କୋଳାହଳଦ୍ୱାରା ପୀଡ଼ିତ କରିବା ଉଚିତ ନୁହେଁ ।୧୮।

ଅତଏବ ତୁମ୍ଭେ ଆଜି ସୈନ୍ୟମାନଙ୍କୁ ଯିବାପାଇଁ ନିଷେଧ କର । ପିତାମହ ଆଜଠାରୁ ଅତିଗୁହ୍ୟ କଥାସବୁ ଉପଦେଶ ଦେବେ । ଏହି ହେତୁରୁ ସେଠାରେ ଅନ୍ୟଲୋକଙ୍କର ସମାଗମ ହେବା ଆମ୍ଭର ଇଚ୍ଛାନୁହେଁ । ବୈଶମ୍ପାୟନ କହିଲେ-ହେ ମହାରାଜ ! କୁନ୍ତୀନନ୍ଦନ ନରଶ୍ରେଷ୍ଠ ଧନଞ୍ଜୟ ଧର୍ମରାଜଙ୍କର ଆଜ୍ଞା ଶ୍ରବଣପୂର୍ବକ ଅବିଳମ୍ବରେ ରଥ ସଜ୍ଜିତ କରି ନିବେଦନ କଲେ । ତତେବେଳେ ଧର୍ମରାଜ ଯୁଧିଷ୍ଠିର, ଭୀମ, ଅର୍ଜୁନ ଏବଂ ଯମଜ ନକୁଳ ସହଦେବ ମିଳିତ ପଞ୍ଚ ମହାଭୂତ ପ୍ରାୟ, ପଞ୍ଚଭ୍ରାତା ଏକତ୍ର ହୋଇ କୃଷ୍ଣଙ୍କର ନିବେଶନକୁ ଗମନ କଲେ । ମହାତ୍ମା ପାଣ୍ଡବଗଣ ଆଗମନ କଲା ମାତ୍ରକେ ଭଗବାନ କୃଷ୍ଣ ଓ ସାତ୍ୟକି ସେମାନଙ୍କ ସହିତ ଆଗମନପୂର୍ବକ ରଥାରୋହଣ କଲେ । ସେହି ନରଶ୍ରେଷ୍ଠ ବୀରମାନେ "ପରସ୍ପର ନିର୍ବିଘ୍ନରେ ରାତିଯାପନ ହୋଇ ଅଛିତ ?" ଇତ୍ୟାଦି ନାନାପ୍ରକାର କୁଶଳ ସମ୍ବାଦ ଜିଜ୍ଞାସା କରୁ କରୁ ମେଘଗମ୍ଭୀର ନିର୍ଘୋଷରେ

ଉତ୍କୃଷ୍ଟ ରଥରେ ଆରୋହଣପୂର୍ବକ ଗମନ କଲେ । ତଦନନ୍ତର କୃଷ୍ଣଙ୍କର ମେଘପୁଷ୍ପ, ବଳାହକ, ଶୈବ୍ୟ ଓ ସୁଗ୍ରୀବ ଏହି ଚାରୋଟି ଅଶ୍ୱ ଦାରୁକଙ୍କ କର୍ତ୍ତୃକ ବେଗରେ ପରିଚାଳିତ ହୋଇ ଖୁରଦ୍ୱାରା ପୃଥିବୀକୁ ବିଦାରଣପୂର୍ବକ ନକ୍ଷତ୍ରବେଗରେ ଧାବିତ ହେଲେ । ସେତେବେଳେ ବୋଧ ହେଲା ଯେ ସେହି ମହାବଳ ବେଗବାନ୍ ଅଶ୍ୱମାନେ ଆକାଶକୁ ଗ୍ରାସ କରି ଧାବିତ ହେଉଅଛନ୍ତି । ୨୩ ।

ଏହିପ୍ରକାରେ ମହାତ୍ମା ପାଣ୍ଡବମାନଙ୍କର ରଥମଧ୍ୟ ଦ୍ରୁତଗତିରେ ଗମନ କଲା । କ୍ଷଣକାଳ ମଧ୍ୟରେ ସେମାନଙ୍କର ରଥସବୁ କୁରୁକ୍ଷେତ୍ର ନାମକ ଧର୍ମ୍ମକ୍ଷେତ୍ରରେ ସମୁତ୍ତୀର୍ଣ୍ଣ ହୋଇ କ୍ରମଶଃ ଯେଉଁସ୍ଥାନରେ ଦେବଗଣ ପରିବୃତ୍ତ ବ୍ରହ୍ମାଙ୍କ ପ୍ରାୟ ଭୀଷ୍ମଦେବ ମହର୍ଷିମାନଙ୍କଦ୍ୱାରା ପରିବୃତ୍ତ ହୋଇ ଶରଶଯ୍ୟାରେ ଶୟନ କରିଅଛନ୍ତି ସେହିଠାରେ ଉପସ୍ଥିତ ହେଲା । ତତ୍କାଳରେ ଗୋବିନ୍ଦ, ଧର୍ମରାଜ ଯୁଧିଷ୍ଠିର, ଭୀମ, ଗାଣ୍ଡିବଧନ୍ୱା ଧନଞ୍ଜୟ, ନକୁଳ, ସହଦେବ ଓ ସାତ୍ୟକି ରଥରୁ ଅବତୀର୍ଣ୍ଣ ହୋଇ ଦକ୍ଷିଣ ହସ୍ତ ଉତ୍ତୋଳନପୂର୍ବକ ଋଷିମାନଙ୍କର ଅର୍ଚ୍ଚନା କଲେ । ୨୬ ।

ଅନନ୍ତର ନରପତି ଯୁଧିଷ୍ଠିର ନକ୍ଷତ୍ରମଣ୍ଡଳପରିବୃତ୍ତ ଚନ୍ଦ୍ରମାଙ୍କ ପ୍ରାୟ, ଭ୍ରାତୃମାନଙ୍କଦ୍ୱାରା ପରିବୃତ୍ତ ହୋଇ ଇନ୍ଦ୍ର ଯେପରି ଉପଦେଶାର୍ଥୀ ହୋଇ ବ୍ରହ୍ମାଙ୍କ ନିକଟକୁ ଗମନ କରନ୍ତି, ସେହିପରି ଗଙ୍ଗାନନ୍ଦନ ଭୀଷ୍ମଙ୍କ ନିକଟକୁ ଗମନ କଲେ । ୨୭ ।

ସେ ସେଠାରେ ଉପସ୍ଥିତ ହୋଇ ଭୟଯୁକ୍ତଚିତ୍ତରେ ସ୍ୱର୍ଗଭ୍ରଷ୍ଟ ଆଦିତ୍ୟଙ୍କ ସଦୃଶ, ଶରଶଯ୍ୟାଗତ ମହାବାହୁ ଭୀଷ୍ମଙ୍କୁ ଦର୍ଶନ କଲେ । ୨୮ ।

---

## ଅଧ୍ୟାୟ—୫୪

ଜନମେଜୟ କହିଲେ—ହେ ମହର୍ଷେ ! ସେହି ଭୟଙ୍କର ବୀର ସମାଗମରେ ସର୍ବସୈନ୍ୟହତ ହୁଅନ୍ତେ ବୀର ଶଯ୍ୟାରୂପ ଶରଶଯ୍ୟାରେ ଶୟାନ, ସତ୍ୟସନ୍ଧ, ଜିତେନ୍ଦ୍ରିୟ, ମହାବୀର୍ଯ୍ୟବାନ, ଗଙ୍ଗାତନୟ, ପୁରୁଷ ଶାର୍ଦ୍ଦୂଳ ଶାନ୍ତନୁନନ୍ଦନ ମହାଭାଗ ଦେବବ୍ରତ ଭୀଷ୍ମ ପାଣ୍ଡବମାନଙ୍କ

କର୍ତ୍ତିକ ଉପାସିତ ହୋଇ କେଉଁ କେଉଁ କଥା କହୁଥିଲେ ତାହା ଆମ୍ଭଠାରେ ବର୍ଣ୍ଣନା କରନ୍ତୁ । ୩ ।

ବୈଶମ୍ପାୟନ କହିଲେ—ନାରଦ ପ୍ରଭୃତି ସିଦ୍ଧ ଋଷିମାନେ, ଅନ୍ଧରାଜ ଧୃତରାଷ୍ଟ୍ର, ଧର୍ମରାଜ ଯୁଧିଷ୍ଠିର ଭୀମ, ଅର୍ଜ୍ଜୁନ, ଯମଜ ନକୁଳ ସହଦେବ ଓ ହତାବଶିଷ୍ଟ ରାଜାମାନେ ପରଦିନ ପ୍ରାତଃକାଳ ହେବାମାତ୍ରକେ କୁରୁପାଣ୍ଡବ ପିତାମହ କୁଳ ଧୁରନ୍ଧର ଗଙ୍ଗାନନ୍ଦନ ଭୀଷ୍ମଙ୍କର ସମୀପସ୍ଥ ହୋଇ ତାହାଙ୍କୁ ଆକାଶଭ୍ରଷ୍ଟ ଆଦିତ୍ୟଙ୍କ ପ୍ରାୟ ଶରଶଯ୍ୟାରେ ପତିତ ହୋଇଥିବାର ଦେଖି ଶୋକ କଲେ । ୭ ।

ଅନନ୍ତର ଦେବଦର୍ଶନ ଦେବର୍ଷି ନାରଦ ମୁହୂର୍ତ୍ତକାଳ ଚିନ୍ତା କରି ହତାବଶିଷ୍ଟ ରାଜବୃନ୍ଦ ଓ ପାଣ୍ଡବମାନଙ୍କୁ କହିଲେ—ଅସ୍ତ ଗମନୋନ୍ମୁଖ ସୂର୍ଯ୍ୟଙ୍କ ପ୍ରାୟ ଗଙ୍ଗାନନ୍ଦନ ଭୀଷ୍ମଙ୍କର ମୃତ୍ୟୁକାଳ ନିକଟବର୍ତ୍ତୀ ହୋଇଅଛି । ଅତଏବ ତୁମ୍ଭମାନଙ୍କର ଯାହା କିଛି ଜିଜ୍ଞାସ୍ୟ ଅଛି, ବର୍ତ୍ତମାନ ଏହାଙ୍କୁ ପ୍ରଶ୍ନ କର । ଏ ଚତୁର୍ବର୍ଣ୍ଣର ଧର୍ମକୁ ସମଗ୍ର ରୂପରେ ଅବଗତ ଅଛନ୍ତି; କିନ୍ତୁ ବର୍ତ୍ତମାନ ଜୀବନ ବିସର୍ଜ୍ଜନରେ କୃତସଙ୍କଳ୍ପ ହୋଇଅଛନ୍ତି । ଅତଏବ ତୁମ୍ଭେମାନେ ଏହାଙ୍କୁ ଧର୍ମ ଜିଜ୍ଞାସ କର । ଏହି ଜ୍ଞାନବୃଦ୍ଧ ଭୀଷ୍ମ ନିଶ୍ଚୟ ଶରୀରତ୍ୟାଗ କରି ପରଲୋକକୁ ଗମନ କରିବେ । ତୁମ୍ଭମାନଙ୍କର ମନରେ ଯାହା ଯାହା ସଂଶୟ ଅଛି, ତାହା ଏହାଙ୍କଦ୍ୱାରା ଅପନୟନ କର । ୧୦ ।

ବୈଶମ୍ପାୟନ କହିଲେ—ରାଜାମାନେ ନାରଦଙ୍କର ଏହିପରି ବାକ୍ୟ ଶ୍ରବଣ କରି ସମସ୍ତେ ଭୀଷ୍ମଙ୍କର ସମୀପସ୍ଥ ହେଲେ; କିନ୍ତୁ କୌଣସି କଥା ହେଲା ପ୍ରଶ୍ନ କରିବାକୁ ସମର୍ଥ ନ ହୋଇ ପରସ୍ପର ପରସ୍ପରର ମୁଖପ୍ରତି ଦୃଷ୍ଟିପାତ କଲେ । ୧୧ ।

ସେହି ସମୟରେ ପାଣ୍ଡୁନନ୍ଦନ ଯୁଧିଷ୍ଠିର ହୃଷୀକେଶଙ୍କୁ ସମ୍ବୋଧନପୂର୍ବକ କହିଲେ-ହେ ଦେବକୀନନ୍ଦନ ! ହେ ମଧୁସୂଦନ ! ହେ ଯଦୁଶ୍ରେଷ୍ଠ ! ତୁମ୍ଭ ବ୍ୟତୀତ ଅପର କେଉଁ ବ୍ୟକ୍ତି ପିତାମହଙ୍କୁ ପ୍ରଶ୍ନ କରିବାକୁ ସମର୍ଥ ହେବ ? ଆମ୍ଭମାନଙ୍କ ସମସ୍ତଙ୍କ ମଧ୍ୟରେ ତୁମ୍ଭେ ସର୍ବତୋଭାବରେ ଧର୍ମଜ୍ଞ । ଅତଏବ ତୁମ୍ଭେ ପ୍ରଥମେ ଏହାଙ୍କଠାରେ କଥା ଉତ୍ଥାପନ କର । ତହୁଁ ଅଚ୍ୟୁତ ଭଗବାନ କେଶବ

ଯୁଧିଷ୍ଠିରଙ୍କର ବାକ୍ୟ ଶ୍ରବଣକରି ଦୁର୍ଦ୍ଧର୍ଷ ଭୀଷ୍ମଙ୍କର ନିକଟବର୍ତ୍ତୀ ହୋଇ କହିଲେ । ୧୪ ।

ବାସୁଦେବ କହିଲେ—ହେ ରାଜସତ୍ତମ ! ଗତରାତ୍ରି ସୁଖରେ ଅତିବାହିତ ହୋଇଅଛି ତ ? ତୁମ୍ଭର ବୁଦ୍ଧି ବିଶିଷ୍ଟରୂପରେ ଉତ୍ପନ୍ନ ହୋଇଅଛି ତ ? ହେ ଅନଘ ! ତୁମ୍ଭର ଜ୍ଞାନ ସର୍ବତୋଭାବରେ ପ୍ରତିଭାତ ହୋଇଅଛି ତ ? ତୁମ୍ଭର ମନ ବେଦନାରେ କାତର ହୋଇ ବ୍ୟାକୁଳ ହୋଇନାହିଁ ତ ? । ୧୬ ।

ଭୀଷ୍ମ କହିଲେ—ହେ ବୃଷ୍ଣିନନ୍ଦନ ! ଗତ ଦିବସରେ ତୁମ୍ଭର ବରଦାନ ସମ୍ପର୍କରୁ ଆମ୍ଭର ଦାହ, ମୋହ, ଶ୍ରମ, କ୍ଲାନ୍ତି, ଗ୍ଲାନି ଓ ବେଦନା ସମସ୍ତ ଦୂରୀକୃତ ହୋଇଅଛି । ହେ ଅଚ୍ୟୁତ ! ହେ ପରମଦ୍ୟୁତେ ! ତୁମ୍ଭର ବରଦାନପ୍ରଭାବରୁ ଆମ୍ଭେ ଭୂତ ଭବିଷ୍ୟତ ଓ ବର୍ତ୍ତମାନ ଏହି ତ୍ରୈକାଳିକ ବ୍ୟାପାରକୁ କରସ୍ଥିତ ଫଳପ୍ରାୟ ଦର୍ଶନ କରୁଅଛୁଁ ଏବଂ ବେଦ ଓ ବେଦାନ୍ତୋକ୍ତ ଯାହା କିଛି ଧର୍ମ ଅଛି ତତ୍ସମସ୍ତ ମଧ୍ୟ ଆମ୍ଭେ ପ୍ରତ୍ୟକ୍ଷବତ୍ ଦର୍ଶନ କରୁଅଛୁଁ ।୧୯।

ହେ ଜନାର୍ଦ୍ଦନ ! ଦେଶ, ଜାତି ଓ କୁଳ ବିଷୟକ ଏବଂ ଶିଷ୍ଟଗଣ କଥିତ ଯେଉଁସବୁ ଧର୍ମ ଅଛି, ତାହା ଆମ୍ଭର ଅନ୍ତଃକରଣରେ ସମୁଦିତ ହୋଇଅଛି । ହେ ଜନାର୍ଦ୍ଦନ ! ତୁମ୍ଭ ପ୍ରାସାଦରୁ ଆମ୍ଭର ମନ କଲ୍ୟାଣକାଙ୍କ୍ଷୀ ବୁଦ୍ଧିର ଆଶ୍ରୟ ନେଇଅଛି । ଅତଏବ ସମଗ୍ର ରାଜଧର୍ମ ଏବଂ ବ୍ରହ୍ମଚର୍ଯ୍ୟ ଗୃହସ୍ଥ, ବାନପ୍ରସ୍ଥ ଓ ସନ୍ନ୍ୟାସ ଏହି ଆଶ୍ରମ ଚତୁଷ୍ଟୟ ସମ୍ବନ୍ଧୀୟ ଧର୍ମର ଯାହା ଉଦ୍ଦେଶ୍ୟ ତତ୍ସମସ୍ତ ଅବଗତ ହୋଇଅଛୁଁ ।୨୧।

ହେ ଜନାର୍ଦ୍ଦନ ! ଯେଉଁ ଯେଉଁ ସ୍ଥାନରେ ଯାହା କହିବା କର୍ତ୍ତବ୍ୟ ତାହା କହିବୁଁ । ତୁମ୍ଭର ଅନୁଧ୍ୟାନ ପ୍ରଭାବରୁ ଆମ୍ଭେ ପୁନର୍ବାର ଯୁବାପ୍ରାୟ ବଳପ୍ରାପ୍ତ ହୋଇଅଛୁଁ । ଅତଏବ ବର୍ତ୍ତମାନ ଲୋକହିତକର ଧର୍ମ କଥା କହିବାକୁ ସମର୍ଥ ହେବୁଁ ।୨୩।

କିନ୍ତୁ ତୁମ୍ଭେ ସ୍ୱୟଂ କିମନିମିତ୍ତ ଧର୍ମରାଜଙ୍କୁ ଧର୍ମୋପଦେଶ କହୁନାହିଁ ? ଏ ବିଷୟରେ ତୁମ୍ଭର କ'ଣ ବିବକ୍ଷିତ ଅଛି, ତାହା ଶୀଘ୍ର ଆମ୍ଭଠାରେ ପ୍ରକାଶ କର ।୨୫।

ବାସୁଦେବ କହିଲେ—ହେ କୌରବ ! ଆମ୍ଭଙ୍କୁ ତୁମ୍ଭେ ଶ୍ରେୟ ଓ କୀର୍ତ୍ତିର ମୂଳ ବୋଲି ଜାଣିବ । ସତ୍ କମ୍ବା ଅସଦାତ୍ମକ ସବୁ ଆମ୍ଭଠାରୁ ନିସୃତ ହୋଇଅଛି ।୨୫।

ଯଦି କେହି ଚନ୍ଦ୍ରଙ୍କୁ ଶୀତକିରଣ ବୋଲି ପ୍ରଶଂସା କରନ୍ତି, ତାହାହେଲେ କେଉଁ ବ୍ୟକ୍ତି ତହିଁରେ ଅଶ୍ଚର୍ଯ୍ୟାନ୍ୱିତ ହେବ ? ଏହିପରି କୃଷ୍ଣ "କୀର୍ତ୍ତିପୂର୍ଣ୍ଣ" ବୋଲି ଯଦି କେହି ଆମ୍ଭର ଗୁଣ କୀର୍ତ୍ତନ କରେ, ତାହା ମଧ୍ୟ କାହାର ବିସ୍ମୟାବହ ହେବ ନାହିଁ ।୨୬।

ହେ ମହାଦ୍ୟୁତେ ! ଆମ୍ଭେ ଏହି ପୃଥିବୀ ମଧ୍ୟରେ ତୁମ୍ଭର ସମଧିକ ଯଶ ବିସ୍ତାର କରିବୁଁ ବୋଲି ମନେ କରି ତୁମ୍ଭଙ୍କୁ ସମ୍ୟକ ବୁଦ୍ଧି ପ୍ରଦାନ କରୁଅଛୁଁ । ଯେତେଦିନ ଏହି ପୃଥିବୀ ଥିବ, ତାବତ୍କାଳ ପର୍ଯ୍ୟନ୍ତ ତୁମ୍ଭର ଏହି ଅକ୍ଷୟକୀର୍ତ୍ତି ସମସ୍ତ ଲୋକରେ ପ୍ରବର୍ତ୍ତିତ ହେବ । ହେ ଭୀଷ୍ମ ! ତୁମ୍ଭେ ଧର୍ମରାଜ ଯୁଧିଷ୍ଠିରଙ୍କର ପ୍ରଶ୍ନାନୁସାରେ ତାହାଙ୍କୁ ଯାହା କହିବ, ତାହା ଏହି ବସୁଧା ତଳରେ ବେଦୋକ୍ତ ବାକ୍ୟ ପ୍ରାୟ ପ୍ରମାଣୀକୃତ ହେବ ।୨୯।

ଯେଉଁ ବ୍ୟକ୍ତି ସେହି ପ୍ରମାଣାନୁସାରେ କାର୍ଯ୍ୟାନୁବର୍ତ୍ତୀ ହୋଇ ଲୋକଯାତ୍ରା ନିର୍ବାହ କରିବେ, ସେ ପରଲୋକରେ ସମସ୍ତ ପୁଣ୍ୟଫଳକୁ ଅନୁଭବ କରିବାରେ ସମର୍ଥ ହେବେ ।୩୦।

ହେ ଭୀଷ୍ମ ! ଜଗତ୍ତ ତଳରେ କିପରି ତୁମ୍ଭର ସମଧିକ ଯଶ ବିସ୍ତାରିତ ହେବ, ଏହିନିମିତ୍ତ ଆମ୍ଭେ ତୁମ୍ଭଙ୍କୁ ଦିବ୍ୟମତି ପ୍ରଦାନ କରିଅଛୁଁ । ଏହି ପୃଥିବୀରେ ଯେତେଦିନ ଲୋକେ କୌଣସି ବ୍ୟକ୍ତିର ଯଶୋଗାନ କରନ୍ତି, ସେତେଦିନ ସେହି ବ୍ୟକ୍ତିର ଅକ୍ଷୟକୀର୍ତ୍ତି ହୋଇଥାଏ—ଏଥିରେ ସନ୍ଦେହ ନାହିଁ ।୩୨।

ହେ ରାଜନ୍ ! କୁରୁକ୍ଷେତ୍ର ଯୁଦ୍ଧରେ ହତାବଶିଷ୍ଟ ରାଜାମାନେ ଧର୍ମ-ଜିଜ୍ଞାସୁ ହୋଇ ତୁମ୍ଭର ଚତୁର୍ଦ୍ଦିଗରେ ଅବସ୍ଥାନ କରୁଅଛନ୍ତି, ତୁମ୍ଭେ ଏମାନଙ୍କୁ ଉପଦେଶ ଦିଅ ।୩୩।

ତୁମ୍ଭେ ସର୍ବାପେକ୍ଷା ବୟୋବୃଦ୍ଧ, ଶ୍ରୁତାଚାରର ସମନ୍ୱିତ ଏବଂ ରାଜଧର୍ମ ପ୍ରଭୃତି ସମସ୍ତ ଧର୍ମରେ କୁଶଳ । ଜନ୍ମାବଧି କୌଣସି ବ୍ୟକ୍ତି ସୁଦ୍ଧା ତୁମ୍ଭର କୌଣସିପ୍ରକାର ପାପାଚରଣ ଦର୍ଶନ କରିବାକୁ ସମର୍ଥ

ହୋଇ ନାହାନ୍ତି । ବିଶେଷତଃ ପୃଥିବୀର ସମସ୍ତ ରାଜାମାନେ ତୁମ୍ଭଙ୍କୁ ସର୍ବ-ଧର୍ମ୍ମର ଅଭିଜ୍ଞତା ବୋଲି ଜାଣନ୍ତି ।୩୫।

କମ୍ପାକ ତୁମ୍ଭେ ବାଲ୍ୟାବଧି ସର୍ବଦା ଦେବ ଓ ଋଷିଗଣଙ୍କର ଉପାସନା କରିଅଛ । ଅତଏବ ପିତା ଯେପରି ପୁତ୍ରମାନଙ୍କୁ ପରମହିତ ଉପଦେଶ ଦିଅନ୍ତି; ତୁମ୍ଭେ ସେହିପରି ଏମାନଙ୍କୁ ଉପଦେଶ ଦିଅ । ପ୍ରାଚୀନ ପଣ୍ଡିତମାନେ ଧର୍ମବିଷୟରେ ଏହିପରି କହିଅଛନ୍ତି ଯେ ଧର୍ମ୍ମ ଶୁଶ୍ରୂଷା ହୋଇ ଯେଉଁମାନେ ପ୍ରଶ୍ନ କରିବେ, ସେମାନଙ୍କୁ ପ୍ରଶ୍ନ କହିବା କର୍ତ୍ତବ୍ୟ । ଅତଏବ ଏହି ଧର୍ମ୍ମ ଶୁଶ୍ରୂଷା ରାଜାମାନଙ୍କୁ ଉପଦେଶ ଦେବା ତୁମ୍ଭର ଅବଶ୍ୟ କର୍ତ୍ତବ୍ୟ । ହେ ବିଦ୍ୱନ୍ ! ଶୁଶ୍ରୂଷୁ ବ୍ୟକ୍ତିଙ୍କୁ ନ କହିଲେ ପାପ ଉତ୍ପନ୍ନ ହୁଏ, ଏହା ବିହିତ ଅଛି । ଅତଏବ ତୁମ୍ଭର ଏହି ପୁତ୍ର ଓ ପୌତ୍ରଗଣ ଜିଜ୍ଞାସୁ ହୋଇ ଧର୍ମ୍ମବିଷୟରେ ଯାହା ଯାହା ପ୍ରଶ୍ନ କରିବେ, ତୁମ୍ଭେ ତଦନୁସାରେ ଉପଦେଶ ଦିଅ ।୩୯।

---

## ଅଧ୍ୟାୟ-୫୫

ବୈଶମ୍ପାୟନ କହିଲେ—ତଦନନ୍ତର କୌରବପ୍ରଧାନ ମହା-ତେଜା ଭୀଷ୍ମ କହିଲେ—ହେ ଗୋବିନ୍ଦ ! ତୁମ୍ଭେ ସର୍ବଭୂତର ନିତ୍ୟ ଆତ୍ମ ସ୍ୱରୂପ; ତୁମ୍ଭ ପ୍ରସାଦରୁ ଆମ୍ଭର ବାକ୍ୟ ଏବଂ ମନ ଦୃଢ଼ୀଭୂତ ହୋଇଅଛି । ଅତଏବ ଆମ୍ଭେ ହୃଷ୍ଟ ଅନ୍ତଃକରଣରେ ଧର୍ମ୍ମ କଥା କହିବୁଁ; କିନ୍ତୁ କୌଣସି ଧର୍ମ୍ମାତ୍ମା ଆମ୍ଭଙ୍କୁ ଧର୍ମ୍ମବିଷୟରେ ପ୍ରଶ୍ନ କରନ୍ତୁ । ତାହାହେଲେ ଆମ୍ଭେ ପ୍ରୀତିସହକାରେ ସମଗ୍ର ଧର୍ମ୍ମକୁ ବର୍ଣ୍ଣନ କରିବୁଁ ।୨।

ଯେଉଁ ଧର୍ମ୍ମଶୀଳ ମହାତ୍ମା ରାଜର୍ଷି ଜନ୍ମଗ୍ରହଣ କରନ୍ତେ ସମସ୍ତ ବୃଷ୍ଣିଗଣ ଆନନ୍ଦସାଗରେ ମଗ୍ନ ହୋଇଥିଲେ, ସେହି ପାଣ୍ଡୁନନ୍ଦନ ଯୁଧିଷ୍ଠିର ଆମ୍ଭଙ୍କୁ ପ୍ରଶ୍ନ କରନ୍ତୁ ।୩।

ପ୍ରଥିତଯଶା ଧର୍ମ୍ମରତ କୌରବମାନଙ୍କ ମଧ୍ୟରେ କେହି ସୁଦ୍ଧା ଯାହାଙ୍କର ସମାନ ନୁହଁନ୍ତି, ଯାହାଙ୍କଠାରେ ଧୃତି, ଦମ, ବ୍ରହ୍ମଚର୍ଯ୍ୟ, କ୍ଷମା, ଧର୍ମ୍ମ, ତେଜ ଓ ବଳ ସର୍ବଦା ବିଦ୍ୟମାନ ଅଛି, ଯେ ସମ୍ବନ୍ଧୀ, ଅତିଥି ଓ ଆଶ୍ରିତ ଭୃତ୍ୟବର୍ଗଙ୍କୁ ସତ୍କାରଦ୍ୱାରା ସମ୍ମାନିତ କରନ୍ତି, ସତ୍ୟ, ଦାନ,

ତପସ୍ୟା ଶୌର୍ଯ୍ୟ, ଶାନ୍ତି, ଦକ୍ଷତା ଓ ଅସନ୍ତାନ୍ତ ଏହିସବୁ ଧର୍ମ ଯାହାଙ୍କ-ଠାରେ ସର୍ବଦା ରହିଅଛି, ଯେଉଁ ଧର୍ମାତ୍ମା କାମ, କ୍ରୋଧ, ଭୟ କିମ୍ବା ଅର୍ଥ ପରତନ୍ତ୍ର ହୋଇ କଦାପି ଅଧର୍ମରେ ପ୍ରବୃତ୍ତ ହୁଅନ୍ତି ନାହିଁ, ଯେ ସତ୍ୟ, କ୍ଷମା ଓ ଜ୍ଞାନ ବିଷୟରେ ଅବିଚଳିତମତି ଓ ଅତିଥିପ୍ରିୟ ଏବଂ ନିତ୍ୟ ସାଧୁମାନଙ୍କୁ ଦାନ କରନ୍ତି, ଯେ ଯଜ୍ଞ, ଅଧ୍ୟୟନ, ଧର୍ମ ଓ ଶାସ୍ତ୍ରପଥରେ ସର୍ବଦା ନିରତ ଏବଂ ଯେ ସମସ୍ତ ରହସ୍ୟ ବିଷୟକୁ ଶ୍ରବଣ କରିଅଛନ୍ତି, ସେହି ପାଣ୍ଡୁନନ୍ଦନ ଯୁଧିଷ୍ଠିର ଆମ୍ଭଙ୍କୁ ପ୍ରଶ୍ନ କରନ୍ତୁ ।୧୦।

ବାସୁଦେବ କହିଲେ—ହେ କୌରବ ଚୂଡ଼ାମଣେ ! ଧର୍ମରାଜ ଯୁଧିଷ୍ଠିର, ଗୁରୁ ପ୍ରଭୃତି ପୂଜ୍ୟଗଣଙ୍କୁ ଏବଂ ଭୃତ୍ୟ, ସମ୍ବନ୍ଧୀ, ବାନ୍ଧବାଦି ଭକ୍ତ ଓ ମାନାର୍ହା ବ୍ୟକ୍ତିମାନଙ୍କୁ କୁରୁକ୍ଷେତ୍ର ଯୁଦ୍ଧରେ ନିପାତିତ କରିଅଛନ୍ତି ଏବଂ ଅତ୍ୟନ୍ତ ଲଜ୍ଜାନ୍ୱିତ ଏବଂ ଅଭିଶାପ ଭୟରେ ଭୀତ ହୋଇଅଛନ୍ତି । ଏହି ହେତୁରୁ ଆପଣଙ୍କ ସମୀପକୁ ଆସିବାକୁ ସମର୍ଥ ହେଉ ନାହାନ୍ତି । ତାହାଙ୍କର ଯେଉଁମାନଙ୍କୁ ବିବିଧପ୍ରକାରରେ ସମ୍ମାନ କରିବା ଉଚିତ ସେ ସେମାନଙ୍କର ଶରୀରକୁ ଅସ୍ତ୍ରଦ୍ୱାରା ଭେଦ କରିଥିବାରୁ ଆପଣଙ୍କର ସମ୍ମୁଖ-ବର୍ତ୍ତୀ ହୋଇ ପାରୁନାହାନ୍ତି ।୧୩।

ଭୀଷ୍ମ କହିଲେ—ହେ କୃଷ୍ଣ ! ବ୍ରାହ୍ମଣଙ୍କର ଯେପରି ଦାନ, ଅଧ୍ୟୟନ ଓ ତପସ୍ୟା ପ୍ରଭୃତି ଧର୍ମ ଅଟେ, ସେହିପରି କ୍ଷତ୍ରିୟମାନଙ୍କର ମଧ୍ୟ ଯୁଦ୍ଧରେ ଶତ୍ରୁମାନଙ୍କୁ ନିହତ କରିବା ଧର୍ମ ଅଟେ ।୧୪।

ପିତା, ପିତାମହ, ଭ୍ରାତା, ଗୁରୁ, ସମ୍ବନ୍ଧୀ କିମ୍ବା ବାନ୍ଧବ ଯେ କେହି ହେଉ, ମିଥ୍ୟାରେ ଆସି ଯୁଦ୍ଧରେ ପ୍ରବୃତ୍ତ ହେଲେ ତତ୍‌କ୍ଷଣାତ୍ ସେମାନଙ୍କ ବିନାଶ କରିବ । କାରଣ ତାହା ଧର୍ମ ଅଟେ ।୧୫।

ହେ କେଶବ ! ଯେ ନିୟମୋଲ୍ଲଙ୍ଘନକାରୀ, ଲୁବ୍‌ଧ ପ୍ରକୃତି, ଅତ୍ୟାଚାରୀ ଗୁରୁଙ୍କୁ ଯୁଦ୍ଧରେ ନିହତ କରନ୍ତି ସେ ଧର୍ମଜ୍ଞ କ୍ଷତ୍ରିୟ ଅଟନ୍ତି । ଯେଉଁ ବ୍ୟକ୍ତି ଲୋଭବଶତଃ ସନାତନ ଧର୍ମ ସେତୁକୁ ଉଲ୍ଲଂଘନ କରେ, ତାହାର ନିହନ୍ତା କେବଳ ଧର୍ମଜ୍ଞ କ୍ଷତ୍ରିୟ ଅଟନ୍ତି । ଯେ ଯୁଦ୍ଧରେ ପ୍ରବୃତ୍ତ ହୋଇ ଏହି ପୃଥିବୀକୁ ଶୋଣିତ—ସଲିଳମୟୀ, କେଶରୂପ ତୃଣ, ଗଜ ରୂପ ଶୈଳ ଓ ଧ୍ୱଜରୂପ ଦ୍ରୁମ ସମୂହଦ୍ୱାରା ସମାଚ୍ଛନ୍ନ କରିବାକୁ ସମର୍ଥ ଅଟନ୍ତି ସେହି ସେ ଧର୍ମବିତ୍ କ୍ଷତ୍ରିୟ ଅଟନ୍ତି ।୧୮।

ଅହୂତ ହେଲେହେଁ ଆତ୍ମୀୟ କିମ୍ବା ଅନାତ୍ମୀୟ କାହାକୁ ଖାତିର ନ କରି ତାହାଙ୍କ ସହିତ ଯୁଦ୍ଧ କରିବା କ୍ଷତ୍ରିୟଙ୍କର କର୍ତ୍ତବ୍ୟ । କାରଣ ମନୁ ଧର୍ମଯୁଦ୍ଧକୁ କ୍ଷତ୍ରିୟର ଇହକାଳ ଓ ପରକାଳର କଲ୍ୟାଣ-ପ୍ରଦ ବୋଲି କହିଅଛନ୍ତି ।୦୯।

ବୈଶମ୍ପାୟନ କହିଲେ—ଧର୍ମରାଜ ଯୁଧିଷ୍ଠିର ଭୀଷ୍ମଙ୍କର ଏହିପରି ବାକ୍ୟ ଶ୍ରବଣ କରି ଅତି ବିନୀତଭାବରେ ତାହାଙ୍କୁ ଦର୍ଶନ କରିବାନିମିତ୍ତ ଅଗ୍ରବର୍ତ୍ତୀ ହୋଇ ଚରଣଦ୍ୱୟ ଧାରଣ କଲେ । ତତ୍କାଳର ସମସ୍ତ ଧନୁର୍ଦ୍ଧରା-ଗ୍ରଗଣ୍ୟ ଭୀଷ୍ମ ତାହାଙ୍କର ମସ୍ତକକୁ ଆଘ୍ରାଣ କରି ତାହାଙ୍କୁ ଅଭିନନ୍ଦିତ କଲେ । ଅନନ୍ତର ତାହାଙ୍କୁ ଉପବେଶନ କରିବାକୁ ଆଦେଶ କରି କହିଲେ—ହେ କୁରୁସତ୍ତମ ବତ୍ସ ! ତୁମ୍ଭର କୌଣସି ଭୟ ନାହିଁ । ତୁମ୍ଭେ ବିଶ୍ରବ୍ଧଚିତ୍ତରେ ଆମ୍ଭଙ୍କୁ ପ୍ରଶ୍ନ କର ।୨୨।

---

## ଅଧ୍ୟାୟ—୫୬

ବୈଶମ୍ପାୟନ ବୋଇଲେ—ହେ ମହାରାଜ ! ତଦନନ୍ତର ଧର୍ମରାଜ ଯୁଧିଷ୍ଠିର ହୃଷୀକେଶ କୃଷ୍ଣଙ୍କୁ ଓ ପିତାମହ ଭୀଷ୍ମଙ୍କୁ ପ୍ରଣିପାତପୂର୍ବକ ତତ୍ରତ୍ୟ ସମସ୍ତ ଗୁରୁଜନମାନଙ୍କର ଅନୁମତି ଗ୍ରହଣ କରି ପ୍ରଶ୍ନ କରିବାକୁ ଆରମ୍ଭ କଲେ । ୧ ।

ଯୁଧିଷ୍ଠିର ବୋଇଲେ—ହେ ପିତାମହ ! ଧର୍ମାଭିଜ୍ଞ ବ୍ୟକ୍ତିମାନେ ରାଜଧର୍ମକୁ ପରମଧର୍ମ ବୋଲି ଜାଣନ୍ତି ଏବଂ ଆମ୍ଭେ ମଧ୍ୟ ତାହାର ଭାରକୁ ଦୁର୍ବହ ବୋଲି ବିବେଚନା କରୁଁ । ଅତଏବ ଆପଣ ବିଶେଷ କରି ରାଜ ଧର୍ମକୁ ବର୍ଣ୍ଣନ କରନ୍ତୁ । ରାଜଧର୍ମ ସମସ୍ତ ଜୀବଲୋକର ଅବଲମ୍ବନ ସ୍ୱରୂପ; କାରଣ ଧର୍ମ, ଅର୍ଥ, ଓ କାମ ଏହି ତ୍ରିବର୍ଗ ଏବଂ ମୋକ୍ଷଧର୍ମ ଏତତ୍ସମସ୍ତ ହି ସ୍ପଷ୍ଟଭାବରେ ରାଜଧର୍ମରେ ସମାହିତ ରହିଅଛି । ଯେପରି ଅଶ୍ୱର ରଶ୍ମି, ହସ୍ତୀର ଅଙ୍କୁଶ ପରିଚାଳକ ଅଟେ, ସେହିପରି ରାଜଧର୍ମ ସମସ୍ତଲୋକର ପରିଚାଳକ ଅଟେ । ୫ ।

ଯଦି ସେହି ରାଜର୍ଷିଗଣସେବିତ ରାଜଧର୍ମରେ ଲୋକଙ୍କର ମୋହୋପସ୍ଥିତ ହୁଏ, ତାହାହେଲେ ସମସ୍ତ ନିୟମ ବିଶୃଙ୍ଖଳ ହୋଇଯାଏ, ସୁତରାଂ ସମସ୍ତେ ବ୍ୟାକୁଳିତ ହୁଅନ୍ତି । ୬ ।

ଯେପରି ସୂର୍ଯ୍ୟ ସମୁଦିତ ହୋଇ ଅଶୁଭଜନିତ ଅନ୍ଧକାରରାଶିକୁ ନଷ୍ଟ କରନ୍ତି, ସେହିପରି ରାଜଧର୍ମଦ୍ୱାରା ସମସ୍ତ ଲୋକଙ୍କର ଅଶୁଭ ଗତି ନିରାକୃତ ହୁଏ । ୭ ।

ହେ ପିତାମହ ! ଆପଣ ଭରତକୁଳର ଏବଂ ସମସ୍ତ ଧାର୍ମିକ-ଗଣଙ୍କର ଅଗ୍ରଗଣ୍ୟ ଅଟନ୍ତି । ଅତଏବ ପ୍ରଥମରେ ଆମ୍ଭଙ୍କୁ ରାଜଧର୍ମ ବିଷୟକ ଉପଦେଶ ପ୍ରଦାନ କରନ୍ତୁ । ହେ ଶତ୍ରୁତାପନ ! ଯେତେବେଳେ ବାସୁଦେବ ଆପଣଙ୍କୁ ପରମଜ୍ଞାନୀ ବୋଲି ବିବେଚନା କରନ୍ତି, ସେତେବେଳେ ଆପଣଙ୍କ ନିକଟରୁ ନିଗୂଢ଼ ଉପଦେଶ ଗ୍ରହଣକରିବା ଆମ୍ଭର ଶ୍ରେୟସ୍କର । ୯ ।

ଭୀଷ୍ମ କହିଲେ—ଆମ୍ଭେ ସେହି ସୁମହତ ଧର୍ମକୁ, ପୁଣ୍ୟବ୍ରହ୍ମ କୃଷ୍ଣଙ୍କୁ ଓ ବ୍ରାହ୍ମଣମାନଙ୍କୁ ନମସ୍କାର କରି ଶାଶ୍ୱତ ଧର୍ମ ବ୍ୟାଖ୍ୟା କରୁଛୁଁ । ୧୦ ।

ହେ ଯୁଧିଷ୍ଠିର ! ଆମ୍ଭେ ସମଗ୍ରରୂପରେ ରାଜଧର୍ମକୁ ବିଶ୍ଲେଷଣ କରି କହୁଅଛୁଁ, ତୁମ୍ଭେ ଅବହିତଚିତ୍ତରେ ତତ୍ସମସ୍ତ ଏବଂ ଅନ୍ୟାନ୍ୟ ଧର୍ମ ଯାହା ତୁମ୍ଭର ଇଚ୍ଛା ହୁଏ, ତାହା ଆମ୍ଭଠାରୁ ଶ୍ରବଣ କର । ୧୧ ।

ରାଜା କ୍ଷତ୍ରିୟ ନ ହେଲେ ସୁଦ୍ଧା ପ୍ରକୃତିବର୍ଗଙ୍କର ଅନୁରାଗଭାଜନ ହେବାନିମିତ୍ତ ବିଧିର ଅନୁବର୍ତ୍ତୀ ହୋଇ ଦେବତା ଓ ଦେବଗଣଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ପ୍ରକାଶ କରିବେ । ଦେବ ଓ ବ୍ରାହ୍ମଣମାନଙ୍କର ଅର୍ଚ୍ଚନା କଲେ ରାଜା ଆନୃଣ୍ୟଲାଭ କରନ୍ତି ଏବଂ ସମସ୍ତ ଲୋକଙ୍କର ପୂଜନୀୟ ହୁଅନ୍ତି । ୧୩ ।

ହେ ପୁତ୍ର ଯୁଧିଷ୍ଠିର ! ତୁମ୍ଭେ ସର୍ବଦା ପୁରୁଷକାରାର୍ଥ ଯତ୍ନଶୀଳ ହୁଅ । ପୁରୁଷର ଉଦ୍ୟୋଗ ବ୍ୟତୀତ କେବଳ ଦୈବ ରାଜାମାନଙ୍କର କାର୍ଯ୍ୟ ସାଧନରେ ସମର୍ଥ ହୁଅନ୍ତି ନାହିଁ । ୪ ।

ଦୈବ ଏବଂ ପୁରୁଷକାର ସମାନ ହେଲେ ସୁଦ୍ଧା ଆମ୍ଭେ ପୁରୁଷ-କାରକୁ ଶ୍ରେଷ୍ଠ ବୋଲି ବିବେଚନା କରୁଁ । କାରଣ ପୁରୁଷକାର ଲୋକର ପ୍ରତ୍ୟକ୍ଷୀଭୂତ ଏବଂ ଦୈବ ସେହି ପୁରୁଷକାର ପ୍ରବର୍ତ୍ତିତ ଅଟେ । ଯଦି ଦୈବବଶତଃ ଆରବ୍ଧ କର୍ମ ପ୍ରତିହତ ହୁଏ, ତଥାପି ମନରେ କୌଣସି ସନ୍ତାପ କରିବ ନାହିଁ । ପୁନର୍ବାର ଦ୍ୱିଗୁଣ ଯତ୍ନ ସହିତ ସେହି କାର୍ଯ୍ୟ ସିଦ୍ଧିନିମିତ୍ତ ପ୍ରବୃତ୍ତ ହେବ । କାରଣ ଏହାହିଁ ରାଜାମାନଙ୍କର ପରମ ମତ । ୧୬ ।

ପରନ୍ତୁ ସତ୍ୟ ଯେପରି ରାଜାମାନଙ୍କର କାର୍ଯ୍ୟ ସିଦ୍ଧିକାରକ ତଦ୍ରୂପ ଅନ୍ୟ କିଛି ନାହିଁ । ସତ୍ୟନିରତ ରାଜା ଇହଲୋକ ଓ ପରଲୋକ ଏହି ଉଭୟସ୍ଥାନରେ ପରମାନନ୍ଦ ଲାଭ କରନ୍ତି । ୧୭ ।

ହେ ରାଜେନ୍ଦ୍ର ! ସତ୍ୟ ଋଷିମାନଙ୍କର ପରମ ଧର୍ମ ଏବଂ ରାଜାମାନଙ୍କର ମଧ୍ୟ ବିଶ୍ବାସୋତ୍ପାଦନର କାରଣ ଅଟେ । ସତ୍ୟ ଭିନ୍ନ ଅନ୍ୟ କିଛି ଏପରି ନୁହେଁ । ଗୁଣବାନ୍, ଶୀଳସମ୍ପନ୍ନ, ଦାନଶୀଳ, ଦୟାବାନ୍, ଧର୍ମନିଷ୍ଠ, ଜିତେନ୍ଦ୍ରିୟ, ପ୍ରିୟଦର୍ଶନ ଓ ବଦାନ୍ୟ ରାଜା କଦାପି ଶ୍ରୀଭ୍ରଷ୍ଟ ହୁଅନ୍ତି ନାହିଁ । ୧୯ ।

ହେ କୁରୁନନ୍ଦନ ! ନିଜର ରନ୍ଧ୍ରକୁ ଗୋପନ ଓ ପରର ଛିଦ୍ରକୁ ଅନ୍ୱେଷଣ କରୁ କରୁ ଅନ୍ୟଠାରୁ ନିଜର ମନ୍ତ୍ରଣାକୁ ଗୋପନ କରିବ ଏବଂ ନ୍ୟାୟାନୁଗତ ବ୍ୟବହାର ସମସ୍ତକାର୍ଯ୍ୟରେ ସରଳତା ଅବଲମ୍ବନ କରିବ । ୨୦ ।

ରାଜା ମୃଦୁସ୍ୱଭାବ ହେଲେ ପ୍ରଜାମାନେ ତାହାଙ୍କୁ ସର୍ବପ୍ରକାରରେ ଅତିକ୍ରମ କରନ୍ତି ଏବଂ ତୀକ୍ଷ୍ଣ ହେଲେ ଲୋକେ ତାହାଙ୍କୁ ଭୟ କରନ୍ତି । ଅତଏବ ତୁମ୍ଭର ସମୁଚିତ ମୃଦୁତ୍ୱ ଓ ତୀକ୍ଷ୍ଣତ୍ୱ ଅବଲମ୍ବନ କରିବା ଉଚିତ । ୨୧ ।

ହେ ବଦାନ୍ୟବର ବତ୍ସ ପାଣ୍ଡୁନନ୍ଦନ ! ତୁମ୍ଭେ କଦାପି ବ୍ରାହ୍ମଣମାନଙ୍କର ଦଣ୍ଡବିଧାନ କରିବ ନାହିଁ । ଯେହେତୁ ଇହଲୋକରେ ବ୍ରାହ୍ମଣମାନେ ସର୍ବାପେକ୍ଷା ଉତ୍କୃଷ୍ଟ ହୋଇ ଅଛନ୍ତି । ୨୨ ।

ହେ ରାଜେନ୍ଦ୍ର ! ମହାନୁଭାବ ମନୁ ଏ ବିଷୟରେ ଦୁଇଗୋଟି ଶ୍ଳୋକ କୀର୍ତ୍ତନ କରିଅଛନ୍ତି । ତୁମ୍ଭର ସ୍ୱକୀୟ ଧର୍ମବିଷୟରେ ସେହି ଦୁଇ ଶ୍ଳୋକକୁ ହୃଦୟଙ୍ଗମ କରିବା କର୍ତ୍ତବ୍ୟ । ୨୩ ।

"ଜଳରୁ ଅଗ୍ନି, ବିପ୍ରଙ୍କଠାରୁ କ୍ଷତ୍ରିୟ ଏବଂ ପ୍ରସ୍ତରରୁ ଲୌହ ସମୁତ୍ପନ୍ନ ହୋଇଅଛି । ଅତଏବ ଏମାନଙ୍କର ତେଜ ସର୍ବତ୍ର ପ୍ରସୃତ ହେଲେ ସୁଦ୍ଧା ନିଜ ନିଜ ଯୋନିରେ ପ୍ରଶାନ୍ତ ହୋଇଯାଏ । ଯେତେବେଳେ ଲୌହ ପାଷାଣକୁ ବିଦାରଣ କରେ, ଅଗ୍ନିଦ୍ୱାରା ଯେତେବେଳେ ବାରି ବିଶୁଷ୍କ ହୁଏ ଏବଂ କ୍ଷତ୍ରିୟମାନେ ଯେତେବେଳେ ବ୍ରାହ୍ମଣମାନଙ୍କ ଦ୍ୱେଷ କରନ୍ତି; ସେତେବେଳେ ସେମାନେ ଅବସନ୍ନ ହୋଇଯାନ୍ତି ।" । ୨୪ ।

'ଅତଏବ ହେ ମହାରାଜ ! ବ୍ରାହ୍ମଣମାନେ କ୍ଷତ୍ରିୟମାନଙ୍କର ନମସ୍କରଣୀୟ ଅଟନ୍ତି । ଦ୍ୱିଜଶ୍ରେଷ୍ଠମାନେ ସମ୍ୟକ ପ୍ରକାରରେ ଅର୍ଚ୍ଚିତ ହେଲେ ବେଦ ଓ ଯଜ୍ଞମାନଙ୍କୁ ଧାରଣ କରନ୍ତି । ୨୭ ।

ହେ ନରପୁଙ୍ଗବ ! ଯେଉଁମାନେ ଲୋକଦ୍ୱୟର ବ୍ୟାଘାତଜନକ ହୋଇ ଏତାଦୃଶ ସମ୍ମାନ ଲାଭ କରିବାକୁ ଅଭିଳାଷ କରନ୍ତି, ବାହୁବଳଦ୍ୱାରା ସେମାନଙ୍କର ନିଗ୍ରହ କରିବା ସତତ କର୍ତ୍ତବ୍ୟ ଅଟେ ! ହେ ତାତ ! ପୂର୍ବକାଳରେ ମହର୍ଷି ଉଶନାଙ୍କ କର୍ତ୍ତୃକ ଯେଉଁ ଶ୍ଳୋକଦ୍ୱୟ ଗୀତ ହୋଇଥିଲା, ତୁମ୍ଭେ ଏକାଗ୍ରଚିତ୍ତରେ ସେହି ଦୁଇ ଶ୍ଳୋକକୁ ଶ୍ରବଣ କର । ୨୮ ।

"ବେଦାନ୍ତ ପାରଦର୍ଶୀ ବ୍ରାହ୍ମଣ ଯଦି ଯୁଦ୍ଧରେ ଶସ୍ତ୍ରଧାରଣପୂର୍ବକ ଆଗମନ କରନ୍ତି, ତେବେ ଧର୍ମାପେକ୍ଷୀ ନୃପତି ଶାସ୍ତ୍ରୋଦ୍ୟମଦ୍ୱାରା ତାହାଙ୍କୁ ନିଗୃହୀତ କରିବେ, କଦାପି ନିହତ କରିବେ ନାହିଁ । ଯେ ଆତତାୟୀଙ୍କ କର୍ତ୍ତୃକ ବିନଶ୍ୟମାନ ଧର୍ମକୁ ସର୍ବତୋଭାବରେ ରକ୍ଷା କରନ୍ତି, ସେ ଧର୍ମବିତ୍ ଅଟନ୍ତି । ଆତତାୟୀ ବ୍ୟକ୍ତିଙ୍କୁ ନିଗ୍ରହ କଲେ ଧର୍ମହାନି ହୁଏ ନାହିଁ । ଆତତାୟୀର କ୍ରୋଧ ଅନ୍ୟକୁ ଉଦ୍ଦୀପ୍ତକରି ଅନ୍ତରସ୍ଥ ତାହାଦ୍ୱାରା ନିଜକୁ ବିନଷ୍ଟ କରେ । ଅତଏବ ନିଗ୍ରହକାରୀର ଏଥିରେ କୌଣସି ଦୋଷ ହୁଏ ନାହିଁ ।" ୩୦ ।

ହେ ନରଶ୍ରେଷ୍ଠ ! ଏହି ପ୍ରକାରେ ଦ୍ୱିଜଗଣଙ୍କୁ ରକ୍ଷାକରିବା ଅବଶ୍ୟ କର୍ତ୍ତବ୍ୟ । ବ୍ରାହ୍ମଣମାନେ ଅପରାଧକଲେ ତାହାଙ୍କୁ ରାଜ୍ୟରୁ ବିସର୍ଜନ କରିବା ବିଧେୟ । ୩୧ ।

ହେ ବିଶାମ୍ପତେ ! ବ୍ରାହ୍ମଣ ପରନାରୀ ସହବାସ ଦୋଷଦୂଷିତ କିମ୍ବା ତାଦୃଶ ଅପବାଦ ଯୁକ୍ତ ହେଲେ ତାହାଙ୍କ ପ୍ରତି କୃପା କରିବା କର୍ତ୍ତବ୍ୟ । ଯେଉଁମାନେ ବ୍ରହ୍ମହତ୍ୟା, ଗୁରୁପତ୍ନୀ ସହବାସ ଓ ଭ୍ରୂଣହତ୍ୟା ଏହି ତ୍ରିବିଧ ପ୍ରକାର ପାପଗ୍ରସ୍ତ ହୁଅନ୍ତି କିମ୍ବା ରାଜଦ୍ୱେଷୀ ହୁଅନ୍ତି, ସେମାନଙ୍କୁ ନିଜ ରାଜ୍ୟରୁ ନିର୍ବାସିତ କରିବା କର୍ତ୍ତବ୍ୟ; କିନ୍ତୁ କଷାଘାତ ସ୍ୱରୂପ ଦୈହିକ ଦଣ୍ଡବିଧାନ କରିବା କର୍ତ୍ତବ୍ୟ ନୁହେଁ । ୩୨ ।

ଯେଉଁମାନେ ବ୍ରାହ୍ମଣମାନଙ୍କୁ ଭକ୍ତି ପ୍ରଦର୍ଶନ କରନ୍ତି, ସେମାନଙ୍କୁ ପ୍ରିୟବୋଧ କରି ନିଜର ନିଯୋଗରେ ନିଯୁକ୍ତ କରିବା କର୍ତ୍ତବ୍ୟ ।

କାରଣ ରାଜାମାନଙ୍କର ଅଧିକ ପରିମାଣରେ ଧନରତ୍ନାଦି କୋଷଥିଲେ ସୁଦ୍ଧା ବ୍ରାହ୍ମଣ ଭକ୍ତ ପୁରୁଷ ସଂଗ୍ରହ ଅପେକ୍ଷା କୌଣସି କୋଷ ଉତ୍କୃଷ୍ଟ ନୁହେଁ । ୩୪ ।

ହେ ମହାରାଜ ! ପଣ୍ଡିତମାନେ ମରୁ, ଜଳ, ଭୂମି, ବନ, ପର୍ବତ, ଏବଂ ମନୁଷ୍ୟ ଏହି ଷଡ଼ବିଧ ଦୁର୍ଗ ମଧ୍ୟରେ ମନୁଷ୍ୟ ଦୁର୍ଗକୁ ସୁଦୃଢ଼ତର ବୋଲି କହନ୍ତି । ଅତଏବ ବୁଦ୍ଧିମାନ ରାଜାମାନଙ୍କର, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ଶୂଦ୍ର ଏହି ଚତୁର୍ବର୍ଣ୍ଣ୍ୟ ପ୍ରଜାମାନଙ୍କ ପ୍ରତି ଦୟାପ୍ରକାଶ କରିବା କର୍ତ୍ତବ୍ୟ । ରାଜା ଧର୍ମଶୀଳ ଏବଂ ସତ୍ୟବାଦୀ ହେଲେ ପ୍ରକୃତିବୃନ୍ଦ ତାହାଙ୍କର ଅନୁରକ୍ତ ହୁଅନ୍ତି । ୩୬ ।

ହେ ପୁତ୍ର ! ତୁମ୍ଭେ ସର୍ବଜାତୀୟ ପ୍ରକୃତିବର୍ଗଙ୍କ ପ୍ରତି କ୍ଷମା ପ୍ରକାଶ କରିବ ନାହିଁ । କାରଣ ରାଜା କ୍ଷମାଶୀଳ କୁଞ୍ଜର ପ୍ରାୟ ମୃଦୁ ସ୍ୱଭାବ ହେଲେ ଅଧର୍ମ ଅର୍ଥାତ ଧର୍ମ ବିରୋଧି ବେଳ କଥିତ ହୁଅନ୍ତି । ୩୭ ।

ହେ ମହାରାଜ ! ଏହି ହେତୁରୁ ପୂର୍ବେ ବୃହସ୍ପତିଙ୍କଦ୍ୱାରା ପ୍ରଣୀତ ଶାସ୍ତ୍ରରେ ଯେଉଁ ଶ୍ଳୋକ କଥିତ ହୋଇଅଛି, ଆମ୍ଭେ ତାହା ବର୍ଣ୍ଣନ କରୁଅଛୁଁ ଶ୍ରବଣ କର । ୩୮ ।

ହସ୍ତିପକ ଯେପରି କ୍ଷମାଶୀଳ ହସ୍ତୀର ମସ୍ତକରେ ଆରୋହଣ କରିବାକୁ ଇଚ୍ଛାକରେ, ସେହିପରି ନୃପତି କ୍ଷମାଶୀଳ ହେଲେ, ନୀଚ ବ୍ୟକ୍ତି-ମାନେ ତାହାଙ୍କୁ ଅଭିଭୂତ କରନ୍ତି; ଅତଏବ ବସନ୍ତକାଳୀକ ସୂର୍ଯ୍ୟ ଯେପରି ନିରତିଶୟ ଶୀତଳ କିମ୍ବା ପ୍ରଖର କିରଣ ହୁଅନ୍ତି ନାହିଁ, ସେହିପରି ରାଜାମାନଙ୍କର ମଧ୍ୟ ସର୍ବଦା ମୃଦୁ କିମ୍ବା ନିତାନ୍ତ ତୀକ୍ଷ୍ଣ ଦଣ୍ଡହେବା କର୍ତ୍ତବ୍ୟ ନୁହେଁ । ୪୦ ।

ହେ ମହାରାଜ ! ପ୍ରତ୍ୟକ୍ଷ (ଉପକାର ଓ ଅପକାରାଦିରୂପ କାର୍ଯ୍ୟ), ଅନୁମାନ, (ମୁଖନେତ୍ରାଦି ବିକାର) ଉପମାନ (ଅନ୍ୟର ଚରିତ କାର୍ଯ୍ୟ ଦର୍ଶନ) ଏବଂ ଆଗମ ( ଅର୍ଥାତ୍ ସାମୁଦ୍ରିକୋକ୍ତ ଶଙ୍ଖାଦି ଲକ୍ଷଣ ) ଏମାନଙ୍କଦ୍ୱାରା ଶତ୍ରୁ କିମ୍ବା ମିତ୍ର ଉଭୟଙ୍କୁ ସର୍ବଦା ପରୀକ୍ଷା କରିବା କର୍ତ୍ତବ୍ୟ । ୪୧ ।

ହେ ଭୂରିଦକ୍ଷିଣ ! ତୁମ୍ଭେ ମୃଗୟାଦି ସର୍ବପ୍ରକାର ବ୍ୟସନକୁ ପରିତ୍ୟାଗ କରିବ; କିନ୍ତୁ ସର୍ବତୋଭାବରେ ତତ୍ସମସ୍ତ ପରିତ୍ୟାଗ ନ କର

କେବଳ ତନ୍ମିରେ ନିଯୁକ୍ତ ଆସକ୍ତିକୁ ପରିତ୍ୟାଗ କରିବ, କାରଣ ବ୍ୟସନାସକ୍ତ ବ୍ୟକ୍ତି ସର୍ବଦା ପରିଭୂତ ହୁଅନ୍ତି । ରାଜା ପ୍ରଜାଦ୍ରୋହୀ ହେଲେ ପ୍ରଜାମାନେ ଉଚ୍ଛୃଙ୍ଖଳ ହୁଅନ୍ତି । ଅତଏବ ପ୍ରକୃତିବର୍ଗଙ୍କ ସହିତ ଗର୍ଭଧାରିଣୀ ସଦୃଶ ବ୍ୟବହାର କରିବା ରାଜାଙ୍କର କର୍ତ୍ତବ୍ୟ । ହେ ମହାରାଜ ! ଯେଉଁ କାରଣରୁ ଏତାଦୃଶ ଉପମା ସଂଲଗ୍ନ ହୋଇଅଛି, ତାହା ଶ୍ରବଣ କର । ୪୪ ।

ଗର୍ଭଧାରିଣୀ ଯେପରି ନିଜର ମନାନୁଯାୟୀ ଇଷ୍ଟକୁ ପରିତ୍ୟାଗ କରି ଯନ୍ମିରେ ଗର୍ଭସ୍ଥ ସନ୍ତାନଙ୍କର ମଙ୍ଗଳ ହୁଏ ତାହା ଚେଷ୍ଟା କରନ୍ତି, ସେହିପରି ଯନ୍ମିରେ ପ୍ରଜାବର୍ଗଙ୍କର ମଙ୍ଗଳ ହୁଏ ତାଦୃଶ କାର୍ଯ୍ୟାନୁଷ୍ଠାନ କରିବା ରାଜାଙ୍କର କର୍ତ୍ତବ୍ୟ । ହେ କୁରୁଶ୍ରେଷ୍ଠ ! ଯେଉଁ ଯେଉଁ କାର୍ଯ୍ୟକଲେ ପ୍ରଜାମଣ୍ଡଳର ମଙ୍ଗଳ ହୁଏ, ତୁମ୍ଭେ ନିଜେ ପ୍ରିୟ ଅଭିଳାଷକୁ ପରିତ୍ୟାଗ କରି ସୁଦ୍ଧା ସର୍ବଦା ସେହି ସେହି କାର୍ଯ୍ୟ ସମ୍ପାଦନପୂର୍ବକ ଧର୍ମାନୁବର୍ତ୍ତୀ ହେବ । ୪୬ ।

ହେ ପାଣ୍ଡୁନନ୍ଦନ ! ତୁମ୍ଭେ କଦାପି ଧୈର୍ଯ୍ୟ ପରିତ୍ୟାଗ କରିବ ନାହିଁ । କାରଣ ରାଜା ଧୀର ଓ ପ୍ରଖ୍ୟାତ ଦଣ୍ଡ ଦେଲେ ତାହାଙ୍କର କେଉଁଠାରୁ ସୁଦ୍ଧା ଭୟ ଉପସ୍ଥିତ ହୁଏ ନାହିଁ । ୪୭ ।

ହେ ବଦତାମ୍ବର ରାଜଶାର୍ଦ୍ଦୂଳ ! ଭୃତ୍ୟବର୍ଗଙ୍କ ସହିତ ସର୍ବଦା ପରିହାସ କରିବା କର୍ତ୍ତବ୍ୟ ନୁହେଁ । କାରଣ ତଦ୍ୱାରା ଯେଉଁ ଦୋଷ ହୁଏ, ତାହା ଶ୍ରବଣ କର । ୪୮ ।

ଉପଜୀବୀ ଭୃତ୍ୟବର୍ଗଙ୍କ ସହିତ ସର୍ବଦା ସହବାସ କଲେ ସେମାନେ ଭର୍ତ୍ତାଙ୍କୁ ସମୁଚିତ ସମ୍ମାନ ପ୍ରଦର୍ଶନ କରନ୍ତି ନାହିଁ । ନିଜର ମର୍ଯ୍ୟାଦାକୁ ଅତିକ୍ରମ କରି ପ୍ରଭୁଙ୍କର ଆଜ୍ଞାକୁ ଉଲ୍ଲଙ୍ଘନ କରନ୍ତି । କୌଣସି କାର୍ଯ୍ୟରେ ନିଯୁକ୍ତ ହେଲେ ସେହି କାର୍ଯ୍ୟର ସଂଶୟ ଜନ୍ମାନ୍ତି । ଗୋପନୀୟ ଛିଦ୍ର ସମସ୍ତଙ୍କୁ ପ୍ରକାଶ କରି ଦିଅନ୍ତି । ଯେଉଁ ଦ୍ରବ୍ୟସବୁ ପ୍ରାର୍ଥନୀୟ ନୁହେଁ ତାହାମଧ୍ୟ ପ୍ରାର୍ଥନା କରନ୍ତି । ରାଜାଙ୍କର ଅଗୋଚରରେ ତାହାଙ୍କର ଭକ୍ଷ୍ୟଦ୍ରବ୍ୟସବୁ ଭକ୍ଷଣ କରନ୍ତି । ପ୍ରଭୁଙ୍କ ଉପରେ କ୍ରୋଧ କରନ୍ତି ଏବଂ ତାହାଙ୍କ ଅପେକ୍ଷା ନିଜ ବୁଦ୍ଧିର ପ୍ରାଚୁର୍ଯ୍ୟ ପ୍ରକାଶ କରନ୍ତି । ସେମାନେ ରାଜଶାସନକୁ ଅତିକ୍ରମ କରି ଲୋକଙ୍କଠାରୁ ଉତ୍କୋଚ ଗ୍ରହଣ କରନ୍ତି ଏବଂ

ରାଜାଙ୍କଠାରେ ଲୋକଙ୍କର ଅଳୀକ ଗୁଣ ଦୋଷାଦି ବର୍ଣ୍ଣନ କରି ସମସ୍ତ କାର୍ଯ୍ୟନଷ୍ଟ କରନ୍ତି । ସେମାନେ କୃତ୍ରିମ ଶାସନପତ୍ର ପ୍ରସ୍ତୁତକରି ଅଧିକୃତ ଦେଶମାନଙ୍କୁ ନିଃସାର କରନ୍ତି । ରାଜା ଯେପରି ବସ୍ତ୍ରାଦି ପରିଧାନ କରନ୍ତି, ଏମାନେ ମଧ୍ୟ ତଦ୍ରୂପ ବସ୍ତ୍ରାଦି ପରିଧାନ କରି ତାହାଙ୍କର ତୁଲ୍ୟ ବେଶଧାରୀ ହୁଅନ୍ତି ଏବଂ ଅନ୍ତଃପୁର ରକ୍ଷିଣୀ ସ୍ତ୍ରୀମାନଙ୍କ ସହିତ ଆସକ୍ତ ହୋଇ କ୍ରମେ ଅନ୍ତଃପୁର ମଧ୍ୟକୁ ପ୍ରବେଶ କରିବାନିମିତ୍ତ ଇଚ୍ଛା କରନ୍ତି । ୫୨ ।

ହେ ରାଜଶାର୍ଦ୍ଦୂଳ ! ତାଦୃଶ ଭୃତ୍ୟମାନେ ଏତାଦୃଶ ନିର୍ଲ୍ଲଜ ହୁଅନ୍ତି ଯେ ସେମାନେ ରାଜାଙ୍କର ସନ୍ନିଧାନରେ ଜୃମ୍ଭଣାଦିଦ୍ୱାରା ବାୟୁନିଃସରଣ କରନ୍ତି ଏବଂ ନିଷ୍ଠୀବନ କରନ୍ତି ଓ ରାଜାଙ୍କର ଅତି ଗୋପନୀୟ କଥା ମଧ୍ୟ ଅନ୍ୟ ବ୍ୟକ୍ତିଙ୍କଠାରେ ପ୍ରକାଶ କରନ୍ତି । ୫୩ ।

ରାଜା ମୃଦୁସ୍ୱଭାବ କିମ୍ବା ପରିହାସଶୀଳ ହେଲେ ଉପଜୀବୀ ଭୃତ୍ୟବର୍ଗ ତାହାଙ୍କର ବାକ୍ୟରେ ଅନାଦର ପ୍ରଦର୍ଶନ କରି ରାଜାଙ୍କ ସଦୃଶ ଅଶ୍ୱ, ହସ୍ତୀ ଏବଂ ରଥରେ ଆରୋହଣ କରନ୍ତି । ୫୪ ।

ସେହି ସୁହୃଦବର୍ଗ ସଭାମଧ୍ୟରେ ରାଜାଙ୍କୁ "ହେ ରାଜନ ! ଆପଣ ଏହି କାର୍ଯ୍ୟ କରିବାକୁ ସମର୍ଥ ହେବେ ନାହିଁ ଏବଂ ଏହା ଆପଣଙ୍କର ଦୁରଭିସନ୍ଧି, ଇତ୍ୟାଦି ବାକ୍ୟସବୁ କହନ୍ତି । ୫୫ ।

ରାଜା କ୍ରୁଦ୍ଧ ହେଲେ ସେମାନେ ହାସ୍ୟ କରନ୍ତି ଏବଂ ରାଜା ସତ୍କାରକଲେ ସେମାନେ ତହିଁରେ ହୃଷ୍ଟ ନ ହୋଇ ତେତେବେଳେ ତାହା ଗୋପନପୂର୍ବକ ଅନ୍ୟାନ୍ୟ କାରଣଜନିତ ହର୍ଷକୁ ପ୍ରକାଶ କରନ୍ତି । ସେମାନେ ଅବଲୀଳାକ୍ରମେ ରାଜାଙ୍କ ଆଜ୍ଞାରେ ଅବଜ୍ଞା ପ୍ରଦର୍ଶନ କରି ତାହାଙ୍କର ଦୁଷ୍କୃତସବୁ ପ୍ରକାଶ କରନ୍ତି ଓ ମନ୍ତ୍ରଣାସବୁ ଭେଦ କରି ଦିଅନ୍ତି । ୫୬ ।

ହେ ପୁରୁଷଶ୍ରେଷ୍ଠ ! ରାଜାଙ୍କର ଅଳଙ୍କାର, ଭକ୍ଷ୍ୟ, ସ୍ନାନୀୟ, ଓ ବିଲେପନ ଦ୍ରବ୍ୟସବୁ ଅପହୃତ ହେଲେ, ସେମାନେ ତାହାଙ୍କ ସମ୍ମୁଖରେ ନିର୍ଭୟଚିତ୍ତ ହୋଇ ତତ୍ସମସ୍ତରେ ଉପେକ୍ଷା ପ୍ରଦର୍ଶନ କରନ୍ତି । ୫୮ ।

ହେ ଭାରତ ! ସେମାନେ ସର୍ବଦା ନିଜର ଅଧିକାରକୁ ପରିତ୍ୟାଗ କରନ୍ତି ଏବଂ ଆପଣା ଆପଣା ବୃତ୍ତିରେ ପରିତୁଷ୍ଟ ନ ହୋଇ ରାଜସ୍ୱ

ପର୍ଯ୍ୟନ୍ତ ହରଣ କରନ୍ତି । ଆହୁରି ମଧ୍ୟ ସେମାନେ ରାଜାଙ୍କ ସହିତ ସୂତ୍ରବଦ୍ଧ ଶ୍ୟେନପକ୍ଷୀ ସଦୃଶ କ୍ରୀଡ଼ା କରିବାକୁ ଇଚ୍ଛା କରନ୍ତି ଏବଂ ଲୋକଙ୍କଠାରେ କହନ୍ତି ଯେ ରାଜା କେବଳ ଆମ୍ଭମାନଙ୍କର ମନ୍ତ୍ରଣାନୁସାରେ କାର୍ଯ୍ୟ କରନ୍ତି । ୬୦ ।

ହେ ଯୁଧିଷ୍ଠିର ! ରାଜା ମୃଦୁ ଓ ପରିହାସଶୀଳ ହେଲେ ପୂର୍ବୋକ୍ତ ଏବଂ ଅପର ବହୁବିଧ ଦୋଷ ପ୍ରାଦୁର୍ଭୂତ ହୁଏ । ୬୧ ।

---

## ଅଧ୍ୟାୟ—୫୭

ଭୀଷ୍ମ କହିଲେ-ହେ ଯୁଧିଷ୍ଠିର ! ରାଜାଙ୍କର ସର୍ବଦା ଉଦ୍ୟମଶୀଳ ହେବା କର୍ତ୍ତବ୍ୟ; କାରଣ ରାଜା ରମଣୀମାନଙ୍କ ପରି ଉଦ୍ୟମବିହୀନ ହେଲେ ପ୍ରଶଂସା ଲାଭ କରି ପାରନ୍ତି ନାହିଁ । ୧ ।

ହେ ମହାରାଜ ! ଏହି ପ୍ରସ୍ତାବରେ ଭଗବାନ୍ ଭୃଗୁନନ୍ଦନ ଯେଉଁ ଶ୍ଳୋକ କହିଅଛନ୍ତି, ତାହା କୀର୍ତ୍ତନ କରୁଅଛୁ, ଶ୍ରବଣ କର । ୨ ।

ଯେପରି ସର୍ପ ବିଳବାସୀ ମୂଷିକମାନଙ୍କୁ ଗ୍ରାସ କରେ, ସେହିପରି ଅବିରୋଧୀ ନୃପତିଙ୍କୁ ଏବଂ ଯେ ବେଦାଧ୍ୟୟନନିମିତ୍ତ ଦେଶାନ୍ତରକୁ ଗମନ କରନ୍ତି ନାହିଁ, ତାଦୃଶ ବ୍ରାହ୍ମଣ କିମ୍ବା ଯତିଙ୍କ ଭୂମି ଗ୍ରାସ କରନ୍ତି, ଅର୍ଥାତ୍ ତାଦୃଶ ନୃପତି କିମ୍ବା ବ୍ରାହ୍ମଣ ଅଚିର କାଳ ମଧ୍ୟରେ ବିନଷ୍ଟ ହୁଅନ୍ତି । ୩ ।

ଅତଏବ ହେ ନରଶାର୍ଦ୍ଦୂଳ ! ଆମ୍ଭର ଏହି ଉପଦେଶକୁ ସର୍ବଦା ମନୋମଧ୍ୟରେ ରଖିବ । ଅର୍ଥାତ୍ ଯେଉଁମାନଙ୍କ ସହିତ ସନ୍ଧି କରିବା କର୍ତ୍ତବ୍ୟ, ସେମାନଙ୍କ ସହିତ ସନ୍ଧି କରିବ ଏବଂ ଯେଉଁମାନଙ୍କ ସହିତ ବିରୋଧ କରିବା ବିଧେୟ, ସେମାନଙ୍କ ସହିତ ବିରୋଧ କରିବ । ୪ ।

ସ୍ୱାମୀ, ଅମାତ୍ୟ ସୁହୃଦ, କୋଷ, ରାଷ୍ଟ୍ର, ଦୁର୍ଗ ଏବଂ ବଳ ଏହି ସପ୍ତାଙ୍ଗବିଶିଷ୍ଟ ରାଜାର କିମ୍ବା ଏହାର କୌଣସି ଅଙ୍ଗର ପ୍ରତିକୂଳରେ ଯେ ଆଚରଣ କରିବ, ସେ ମିତ୍ର କିମ୍ବା ଗୁରୁହେଲେ ସୁଦ୍ଧା ତାହାଙ୍କୁ ବିନଷ୍ଟ କରିବ । ୫ ।

ହେ ରାଜେନ୍ଦ୍ର ! ଏହି ବିଷୟରେ ପୂର୍ବେ ବୃହସ୍ପତିଙ୍କ ମତାନୁସାରେ ମରୁତରାଜଙ୍କ କର୍ତ୍ତୃକ ରାଜାମାନଙ୍କ କର୍ତ୍ତବ୍ୟ ସମ୍ବନ୍ଧରେ ଯେଉଁ ପ୍ରାଚୀନ ଶ୍ଳୋକ କଥିତ ହୋଇଥିଲା, ତାହା ଶ୍ରବଣ କରନ୍ତୁ । ୭ ।

"ଗୁରୁ କାର୍ଯ୍ୟାକାର୍ଯ୍ୟ ବିବେକହୀନ, ଗର୍ବିତ ଏବଂ କୁପଥଗାମୀ ହେଲେ ତାହାଙ୍କର ମଧ୍ୟ ଅପ୍ରତିସମାଧେୟ ଦଣ୍ଡ ହୁଏ ।" ହେ ମହାରାଜ ! ପୂର୍ବେ ସଗରପୁତ୍ର ଅସମଞ୍ଜ ପୁରବାସିମାନଙ୍କର ବାଳକମାନଙ୍କୁ ବଳପୂର୍ବକ ସରଯୂ ନଦୀରେ ନିମଜ୍ଜିତ କରୁଥିଲେ; ଏହି ହେତୁରୁ ତାହାଙ୍କର ପିତା ବହୁ ପୁତ୍ରଧୀମାନ୍ ନୃପତି ସଗର ପୌରଜନମାନଙ୍କର ହିତ ସାଧନାଭିଳାଷୀ ହୋଇ ନିଜର ଜ୍ୟେଷ୍ଠପୁତ୍ର ଅସମଞ୍ଜଙ୍କୁ ଭର୍ତ୍ସନାପୂର୍ବକ ପରିତ୍ୟାଗ କରି ନିର୍ବାସିତ କରିଥିଲେ । ୯ ।

ମହାତପା ଶ୍ୱେତକେତୁ ଅତିଥି ସତ୍କାର କରିବୁଁ ବୋଲି ବ୍ରାହ୍ମଣମାନଙ୍କୁ ବୃଥା ନିମନ୍ତ୍ରଣ କରୁଥିଲେ । ଏହିନିମିତ୍ତ ସେ ପିତାଙ୍କର ପ୍ରିୟ ହେଲେ ସୁଦ୍ଧା ତାହାଙ୍କର ପିତା ମହର୍ଷି ଉଦ୍ଦାଳକ ତାହାଙ୍କୁ ପରିତ୍ୟାଗ କରିଥିଲେ; ଅତଏବ ସର୍ବଦା ଲୋକରଞ୍ଜନ କାର୍ଯ୍ୟରେ ନିଯୁକ୍ତ ଥିବା, ସତ୍ୟର ରକ୍ଷା କରିବା ଏବଂ ପ୍ରକୃତିବର୍ଗଙ୍କ ସହିତ ସଦ୍‌ବ୍ୟବହାର କରିବା ରାଜାଙ୍କର ସନାତନ ଧର୍ମ ଅଟେ । ୧୧ ।

ପରଧନରେ ଲୋଭ ପ୍ରକାଶ କରିବା ରାଜାଙ୍କର କର୍ତ୍ତବ୍ୟ ନୁହେଁ, ଭୃତ୍ୟବର୍ଗଙ୍କୁ ଯଥା ସମୟରେ ବେତନ ପ୍ରଦାନ କରିବା ନୃପତିଙ୍କର କର୍ତ୍ତବ୍ୟ । ନୃପତି ସତ୍ୟବାଦୀ, କ୍ଷମାଶୀଳ, ଏବଂ ବିକ୍ରମ ସମ୍ପନ୍ନ ହେଲେ ନିର୍ଦ୍ଦିଷ୍ଟ ପଥରୁ ବିଚଳିତ ହୁଅନ୍ତି ନାହିଁ । ୧୨ ।

ଯେ କ୍ରୋଧ ଏବଂ ମନୋବୃତ୍ତିମାନଙ୍କୁ ବଶୀଭୂତ କରିଅଛନ୍ତି, ଶାସ୍ତ୍ରୋକ୍ତ ବାକ୍ୟମାନଙ୍କରେ ଯାହାଙ୍କର ଅବିଶ୍ୱାସ ନାହିଁ, ଯେ ସର୍ବଦା ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚତୁର୍ବର୍ଗରେ ରତଥାନ୍ତି ଏବଂ ଯାହାଙ୍କର ମନ୍ତ୍ରଣାସବୁ ଅନ୍ୟ ବ୍ୟକ୍ତିଙ୍କର ଶ୍ରୁତିଗୋଚର ହୁଏ ନାହିଁ— ଏତାଦୃଶ ବିବିଧ ଶକ୍ତିସମ୍ପନ୍ନ ବ୍ୟକ୍ତି ରାଜାହେବାର ଯୋଗ୍ୟ ଅଟନ୍ତି । ସାଧାରଣ ଲୋକଙ୍କଠାରେ ମନ୍ତ୍ରଣାସବୁ ପ୍ରକାଶ କରିବା ଅପେକ୍ଷା ରାଜାମାନଙ୍କର ଅନ୍ୟ ଅଧିକ ସର୍ବନାଶ ନାହିଁ । ୧୪ ।

• ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚତୁର୍ବର୍ଣ୍ଣର ଧର୍ମମାନଙ୍କୁ ରକ୍ଷାକରିବା ରାଜାଙ୍କର କର୍ତ୍ତବ୍ୟ । କାରଣ ଧର୍ମସଙ୍କଟରୁ ପ୍ରଜାମାନଙ୍କୁ ରକ୍ଷା କରିବା ରାଜାଙ୍କର ସନାତନ ଧର୍ମ । ୧୫ ।

ସମସ୍ତଙ୍କୁ ବିଶ୍ୱାସ ନ କରି କେବଳ ସ୍ୱଜନମାନଙ୍କୁ ବିଶ୍ୱାସ କରିବା ରାଜାଙ୍କର କର୍ତ୍ତବ୍ୟ; କିନ୍ତୁ ତଥାପି ସେମାନଙ୍କୁ ପ୍ରତି ସମ୍ପୂର୍ଣ୍ଣ ବିଶ୍ୱାସ କରିବା ଅନୁଚିତ । ରାଜା ନିଜର ବୁଦ୍ଧି ଦ୍ୱାରା ଷାଡ଼ଗୁଣ୍ୟ ଅର୍ଥାତ୍ ବଳଶାଳୀ ସହିତ ସନ୍ଧି, ତୁଲ୍ୟବଳ ସହିତ ବିଗ୍ରହ, ଦୁର୍ବଳମାନଙ୍କର ଦୁର୍ଗାଦି ଆକ୍ରମଣ ଇତ୍ୟାଦି ରାଜନୀତିମାନଙ୍କର ପରିଣାମଫଳଭୂତ ଜୟ ଓ ପରାଜୟ ରୂପ ଗୁଣ ଓ ଦୋଷର ବିବେଚନା କରିବେ । ଯେଉଁ ରାଜା ନିଜର ଛିଦ୍ର ସମସ୍ତ ଗୋପନ ରଖି ଶତ୍ରୁମାନଙ୍କର ଛିଦ୍ରସବୁ ଅବଲୋକନ କରନ୍ତି, ଯେ ଧର୍ମ, ଅର୍ଥ, ଓ କାମ ଏହି ତ୍ରିବର୍ଗର ଯଥାର୍ଥ ତତ୍ତ୍ୱକୁ ଅବଗତ ହୋଇଅଛନ୍ତି, ଯେ ଯଥାସ୍ଥାନରେ ଚର ନିଯୁକ୍ତ କରିପାରନ୍ତି ଏବଂ ଶତ୍ରୁ ପକ୍ଷୀୟ ଅମାତ୍ୟବର୍ଗଙ୍କୁ ଉତ୍କୋଚାଦି ପ୍ରଦାନ କରି ସେମାନଙ୍କ ମଧ୍ୟରେ ଭେଦ ଜନ୍ମାଇ ପାରନ୍ତି, ସେ ସମସ୍ତଙ୍କଠାରୁ ପ୍ରଶଂସା ଲାଭ କରନ୍ତି । ଯମଙ୍କ ସଦୃଶ ପ୍ରଭାବଶାଳୀ ଓ ସଦ୍ବିଚାରକ, କୁବେରଙ୍କ ସଦୃଶ କୋଷ ସଞ୍ଚୟକାରୀ ଏବଂ କ୍ଷୟ ଓ ବୃଦ୍ଧି ଜନକ କାର୍ଯ୍ୟମାନଙ୍କର ଅବସ୍ଥା ବିଶେଷରେ ଗୁଣ ଓ ଦୋଷକୁ ଅବଗତ ହେବା ରାଜାଙ୍କର କର୍ତ୍ତବ୍ୟ । ୧୮ ।

ନୃପତି ଅଭୁକ୍ତମାନଙ୍କର ଭୋଜନ ଦାତା, ଭୁକ୍ତମାନଙ୍କର ତତ୍ତ୍ୱାବଧାରକ, ବୃଦ୍ଧଜନଙ୍କର ଉପାସକ, ଅନଳସ ଲୋଭରହିତ, ଏବଂ ସୁମୁଖ ହେବେ । ସର୍ବଦା ସନ୍ତୁଷ୍ଟଚିତ୍ତ ହେବା, ସାଧୁ ଚରିତ ପଥରେ ବିଚରଣ କରିବା ରାଜାଙ୍କର କର୍ତ୍ତବ୍ୟ । ୨୦ ।

ସାଧୁମାନଙ୍କଠାରୁ କଦାପି ଧନଗ୍ରହଣ କରିବା କର୍ତ୍ତବ୍ୟ ନୁହେଁ, ବରଂ ଅସାଧୁମାନଙ୍କଠାରୁ ନେଇ ସାଧୁମାନଙ୍କୁ ପ୍ରଦାନ କରିବା ବିଧେୟ । ୨୧ ।

ରାଜା ସ୍ୱୟଂ ଯୁଦ୍ଧ କୁଶଳ, ଦାତା, ଅର୍ଥାତ୍ ଯଥା ସମୟରେ ଦାନଶୀଳ, ଶୁଦ୍ଧାଚାର, ଜିତେନ୍ଦ୍ରିୟ, ମନୋହର ଭୂଷଣ ଭୂଷିତ ଏବଂ ଯଥାକାଳ ଭୋଜୀ ହେବେ । ୨୨ ।

ଯେଉଁ ମନୁଷ୍ୟମାନେ ଶୂର, ପ୍ରଭୁଭକ୍ତ, ଆବେଗୀ, ଶିଷ୍ଟ, ଶିଷ୍ଟ ବିଚାର ଯୁକ୍ତ, ସମ୍ମାନସମ୍ପନ୍ନ, ବିଦ୍ୱାନ୍, ଧାର୍ମିକ, ସାଧୁ, ଓ ଅଚଳ ସଦୃଶ ସ୍ଥିରଲକ୍ଷ ଏବଂ ଯେଉଁମାନେ ଅପର ବ୍ୟକ୍ତିଙ୍କ କଥାରେ ପ୍ରତାରିତ ହୁଅନ୍ତି ନାହିଁ, ଅନ୍ୟ ବ୍ୟକ୍ତିଙ୍କର ଅବମାନନା କରନ୍ତି ନାହିଁ, ସମସ୍ତ ଲୋକଙ୍କର ଚରିତ୍ରଜ୍ଞ, ପରଲୋକଦର୍ଶୀ; ଏବଂ ସତ୍କୁଳ ପ୍ରସୂତ, ସେମାନଙ୍କୁ ଐଶ୍ୱର୍ଯ୍ୟାଭିଳାଷୀ ନୃପତି ନିକଟରେ ସହାୟ କରି ସେମାନଙ୍କ ସହିତ ସମାନଭାବରେ ବିଷୟାଦିକୁ ଭୋଗ କରିବେ । କେବଳ ଛତ୍ର ଗ୍ରହଣ କରିବା ଓ ଆଜ୍ଞା ପ୍ରଦାନ କରିବା ରାଜାଙ୍କର ଅଧିକ ରହିବ । ୨୫ ।

ନୃପତି ପ୍ରତ୍ୟକ୍ଷ ଓ ପରୋକ୍ଷ ଏହି ଉଭୟବିଧ ବୃତ୍ତିକୁ ସମଭାବରେ ପର୍ଯ୍ୟାଲୋଚନା କରି କାର୍ଯ୍ୟରେ ପ୍ରବୃତ୍ତ ହେଲେ କଦାପି ଦୁଃଖଭାଗୀ ହୁଅନ୍ତି ନାହିଁ । ୨୬ ।

ନରପତି ଯଦି କାହାକୁ ବିଶ୍ୱାସ ନ କରନ୍ତି, କିମ୍ବା ଲୋଭ ପରବଶ ହୋଇ ଅନ୍ୟପ୍ରତି ବୃଥା ଦୋଷାରୋପପୂର୍ବକ ସେମାନଙ୍କର ସର୍ବସ୍ୱ ହରଣ କରନ୍ତି, ତାହାହେଲେ ତାହାଙ୍କର ସ୍ୱଜନମାନେ ଅଚିର କାଳ ମଧ୍ୟରେ ତାହାଙ୍କୁ ବିନଷ୍ଟ କରନ୍ତି । ୨୭ ।

ଯେଉଁ ବିଶୁଦ୍ଧ ସ୍ୱଭାବ ନରପତି ସର୍ବଦା ପ୍ରକୃତିବର୍ଗଙ୍କର ଚିତ୍ତ ରଞ୍ଜନରେ ଅନୁରକ୍ତ ଥାନ୍ତି, ସେ କଦାଚ ଅରାତିମାନଙ୍କ କର୍ତ୍ତୃକ ଆକ୍ରାନ୍ତ ହୋଇ ସ୍ଥାନଭ୍ରଷ୍ଟ ହୁଅନ୍ତି ନାହିଁ । ହେଲେ ସୁଦ୍ଧା ତାହାକୁ ପୁନର୍ବାର ପ୍ରାପ୍ତ ହୁଅନ୍ତି । ଯେଉଁ ରାଜା କ୍ରୋଧ ରହିତ, ମୃଦୁଦଣ୍ଡ, ଜିତେନ୍ଦ୍ରିୟ ଏବଂ ମୃଗୟା ବ୍ୟସନରେ ଅନାସକ୍ତ ଅଟନ୍ତି, ସେ ହିମାଳୟ ପର୍ବତ ସଦୃଶ ସର୍ବଭୂତଙ୍କର ବିଶ୍ୱାସଭାଜନ ହୁଅନ୍ତି । ୨୯ ।

ଯେଉଁ ଭୂପତି ପ୍ରାଜ୍ଞ ଦାନଶୀଳ, ପରଛିଦ୍ରାନୁସନ୍ଧାୟୀ, ସୁନ୍ଦର ଦର୍ଶନ, ଚତୁର୍ବର୍ଣ୍ଣ୍ୟ ପ୍ରଜାମାନଙ୍କର ନ୍ୟାୟପରାୟଣ, ଜିତକ୍ରୋଧ, ନିୟତ ସୁପ୍ରସନ୍ନ, କ୍ଷିପ୍ରକାରୀ, ମନସ୍ୱୀ, କ୍ରିୟାବାନ୍, ଆତ୍ମଶ୍ଲାଘା ବିରହିତ, ଯୋଗାଭ୍ୟାସ ରତ, ଏବଂ ଯାହାଙ୍କର ଅମାତ୍ୟବର୍ଗ ଅକ୍ରୋଧ ସ୍ୱଭାବାପନ୍ନ ଓ ଯାହାଙ୍କର କାର୍ଯ୍ୟସବୁ ନିର୍ବିଘ୍ନରେ ସମାପ୍ତ ହେବାର ଦେଖାଯାଏ, ସେ ରାଜସତ୍ତମ ବୋଲି କଥିତ ହୁଅନ୍ତି । ୩୨ ।

ପୁତ୍ରମାନେ ଯେପରି ପିତୃଗୃହରେ ବାସ କରନ୍ତି, ସେହିପରି ଯାହାଙ୍କ ରାଜ୍ୟ ମଧ୍ୟରେ ମନୁଷ୍ୟମାନେ ନିର୍ଭୟଚିତ୍ତରେ ବିଚରଣ କରନ୍ତି, ସେହି ରାଜା ରାଜସତ୍ତମ ବୋଲି କଥିତ ହୁଅନ୍ତି । ୩୩ ।

ଯାହାଙ୍କର ପୁରବାସୀମାନେ ସମସ୍ତେ ବିଭବଶାଳୀ ଏବଂ ନ୍ୟାୟାନ୍ୟାୟକୁଶଳ ଲୋକମାନେ ଯାହାଙ୍କ ରାଜ୍ୟ ମଧ୍ୟରେ ବାସ କରନ୍ତି, ସେହି ରାଜା ରାଜସତ୍ତମ ଅଟନ୍ତି । ୩୪ ।

ଯାହାଙ୍କର ବିଷୟବାସୀ, ରାଜବଶୀଭୂତ, ମନ୍ତ୍ରନିପୁଣ, ରାଜାଜ୍ଞା ପ୍ରତିପାଳକ, ପରାଭିଭବଶାଳୀ ଏବଂ ଦାନରତ ପ୍ରକୃତିବର୍ଗ ଯଥାବିଧି ପାଳିତ ହୁଅନ୍ତି ଓ ସୁଶାସନରେ ଶାସିତ ହୋଇ ପରସ୍ପର ବିରୋଧ ନ କରି ନିଜ ନିଜ କର୍ମରେ ନିଯୁକ୍ତ ଥାନ୍ତି, ସେହି ସେ ନରପତି ବୋଲି ଅଭିହିତ ହୁଅନ୍ତି । ୩୬ ।

ଯେଉଁ ରାଜାଙ୍କର ରାଜ୍ୟମଧ୍ୟରେ ଦମ୍ଭ, ଅନୃତ, ମାୟା ଏବଂ ମତ୍ସରାଦି ନାହିଁ, ସେ ସନାତନ ଧର୍ମପାଳନଜନିତ ଫଳକୁ ଭୋଗ କରନ୍ତି । ୩୭ ।

ଯେ ଜ୍ଞାନବାନ୍ , ପଣ୍ଡିତମାନଙ୍କ ସତ୍କାର କରନ୍ତି ଏବଂ ଶାସ୍ତ୍ରାନୁଶୀଳନରେ ଓ ପୁରବାସିମାନଙ୍କର ହିତସାଧନରେ ରତଥାନ୍ତି, ତାଦୃଶ ସନ୍ମାର୍ଗବର୍ତ୍ତୀ ଦାନଶୀଳ ନୃପତି ରାଜ୍ୟ ଲାଭ କରିବାର ଯୋଗ୍ୟ ଅଟନ୍ତି । ୩୮ ।

ଶତ୍ରୁମାନେ ଯାହାଙ୍କର ଚରମାନଙ୍କ ସମସ୍ତ ମନ୍ତ୍ରଣାକୁ ଓ କୃତକାର୍ଯ୍ୟକୁ ଅକୃତପ୍ରାୟ ଅବଗତ ହୋଇ ନ ପାରନ୍ତି, ସେହି ରାଜା ରାଜତ୍ୱ ଲାଭ କରିବାର ଯୋଗ୍ୟ ଅଟନ୍ତି । ୩୯ ।

ହେ ଭାରତ ! ମହାତ୍ମା ଭୃଗୁନନ୍ଦନ ଶୁକ୍ର ପୂର୍ବେ ରାମଚରିତ କହୁଥିବା ସମୟରେ ନୃପତିଙ୍କ ପ୍ରତି ଏହି ଶ୍ଲୋକଟି କହିଥିଲେ :—ପ୍ରଜାମାନେ ଭୂପତିଙ୍କୁ ସର୍ବାପେକ୍ଷା ଶ୍ରେଷ୍ଠ ଜ୍ଞାନ କରି ରକ୍ଷା କରିବେ; ତତ୍ପରେ ଭାର୍ଯ୍ୟା ଏବଂ ତଦନନ୍ତର ଧନ ରକ୍ଷାରେ ଯତ୍ନବାନ ହେବେ । କାରଣ ରାଜା ନ ଥିଲେ ସେମାନଙ୍କର ଭାର୍ଯ୍ୟା ବା କେଉଁଠାରେ ରହିବ ? ଧନ ଅବା କେଉଁଠାରେ ରହିବ ? ଅତଏବ ଲୋକମାନଙ୍କୁ ସର୍ବତୋଭାବରେ ରକ୍ଷା କରିବା ବ୍ୟତୀତ ରାଜ୍ୟାର୍ଥୀ ରାଜାଙ୍କର ଅନ୍ୟ ସନାତନ ଧର୍ମ ନାହିଁ,

କାରଣ ପ୍ରଜା ରକ୍ଷାଦ୍ୱାରା ପ୍ରଜାରଞ୍ଜନ ହୁଏ ।" ହେ ରାଜେନ୍ଦ୍ର ! ରାଜଧର୍ମ ବିଷୟରେ ପ୍ରାଚେତସ୍ ମନୁ ଯେଉଁ ଦୁଇଗୋଟି ଶ୍ଳୋକ କହିଥିଲେ, ଉଦାହରଣ ସ୍ୱରୂପ ସେହି ଶ୍ଳୋକ ଦୁଇଟି ତୁମ୍ଭଠାରେ କହୁଅଛୁ । ଏକାଗ୍ର ଚିତ୍ତରେ ଶ୍ରବଣ କର । ୪୩ ।

ମନୁଷ୍ୟ ଅବକ୍ତା ଆଚାର୍ଯ୍ୟଙ୍କୁ, ଅଧ୍ୟୟନବିହୀନ ଋତ୍ୱିକଙ୍କୁ, ଅରକ୍ଷକ ଭୂପତିଙ୍କୁ, ଅପ୍ରିୟବାଦିନୀ ଭାର୍ଯ୍ୟାଙ୍କୁ, ଗ୍ରାମବାସାଭିଳାଷୀ ଗୋପାଳଙ୍କୁ ଏବଂ ବନବାସାଭିଳାଷୀ ନାପିତଙ୍କୁ ଏହି ଷଟ୍‌ବ୍ୟକ୍ତିଙ୍କୁ, ଅର୍ଣ୍ଣବ ମଧ୍ୟଗତ ଭଗ୍ନ ନୌକାପ୍ରାୟ ପରିତ୍ୟାଗ କରିବ । ୪୪ ।

---

## ଅଧ୍ୟାୟ—୫୮

ଭୀଷ୍ମ କହିଲେ—ହେ ଯୁଧିଷ୍ଠିର ! ଦୁଗ୍ଧର ନବନୀତ ସଦୃଶ ରାଜଧର୍ମର ପ୍ରଜାରକ୍ଷା ସାର ଅଟେ । କାରଣ ଭଗବାନ ବୃହସ୍ପତି ଏତଦ୍‌ଭିନ୍ନ ଅନ୍ୟ କୌଣସି ଧର୍ମକୁ ପ୍ରଶଂସା କରନ୍ତି ନାହିଁ । ୧ ।

ହେ ଧାର୍ମିକପ୍ରବର ! ଭଗବାନ ବିଶାଳାକ୍ଷ, ମହାତପା ଶୁକ୍ର, ସହସ୍ରଲୋଚନ ଇନ୍ଦ୍ର, ପ୍ରାଚେତସ୍ ମନୁ, ଭଗବାନ୍ ଭରଦ୍ୱାଜ ଏବଂ ଗୌରଶିରା ମୁନି ଏହି ଧାର୍ମିକଶ୍ରେଷ୍ଠ ରାଜଧର୍ମ ପ୍ରଣେତା ବ୍ରହ୍ମବାଦୀମାନେ ଲୋକରକ୍ଷା ରୂପ ଧର୍ମକୁ ପ୍ରଶଂସା କରନ୍ତି । ହେ କମଳଲୋଚନ ଯୁଧିଷ୍ଠିର ! ବର୍ତ୍ତମାନ ଲୋକରକ୍ଷା ଯୁକ୍ତିସବୁ ଶ୍ରବଣ କର । ୪ ।

ଯଥା ନିୟମରେ ଚର ନିୟୋଗ ଓ ଦୂତ ପ୍ରେରଣ କରିବ, ସମୟାନୁସାରେ ଦାନ କରିବା, ବାହାର ବିହୀନ ଲୋକମାନଙ୍କଠାରୁ ସଦ୍‌ଯୁକ୍ତି ଗ୍ରହଣ କରିବା, ଅସଦୁପାୟ ଅବଲମ୍ବନପୂର୍ବକ କରସଂଗ୍ରହ ନ କରିବା, ସାଧୁଲୋକମାନଙ୍କୁ ସଂଗ୍ରହ କରିବା, ସତ୍ୟବାଦୀ ହେବା, ସମୟାନୁରୂପ ଶୌର୍ଯ୍ୟ ଓ କାର୍ଯ୍ୟଦକ୍ଷତା ପ୍ରକାଶ କରିବା, ପ୍ରକୃତିବର୍ଗଙ୍କର ହିତସାଧନାର ଚେଷ୍ଟା କରିବା, ସରଳ କିମ୍ବା କୁଟିଳ ଉପାୟ ଅବଲମ୍ବନପୂର୍ବକ ଶତ୍ରୁପକ୍ଷମାନଙ୍କ ମଧ୍ୟରେ ପରସ୍ପର ଭେଦ ଜନ୍ମାଇବା, ଜୀର୍ଣ୍ଣ ଏବଂ ଭଗ୍ନୋନ୍ମୁଖ ଗୃହସମୂହର ପର୍ଯ୍ୟବେକ୍ଷଣ କରିବା, ଶରୀର ଏବଂ ଅର୍ଥ ଏହି ଉଭୟବିଧ ଦଣ୍ଡର ସମୟାନୁରୂପ ପ୍ରୟୋଗ କରିବା, ସାଧୁ ଏବଂ ସଜ୍ଜନ-

ପ୍ରସୃତମାନଙ୍କୁ ପରିତ୍ୟାଗ ନ କରି କାର୍ଯ୍ୟବିଶେଷରେ ନିଯୁକ୍ତ କରିବା, ଯେଉଁମାନଙ୍କୁ ସଂଗ୍ରହ କରିବା କର୍ତ୍ତବ୍ୟ, ସେମାନଙ୍କୁ ସଂଗ୍ରହ କରିବା, ବୁଦ୍ଧିମନ୍ତମାନଙ୍କର ସେବା କରିବା, ସୈନ୍ୟମାନଙ୍କର ଉତ୍ସାହବର୍ଦ୍ଧନ କରିବା, ସର୍ବଦା ପ୍ରଜାମାନଙ୍କର ଅବସ୍ଥାକୁ ପର୍ଯ୍ୟବେକ୍ଷଣ କରିବା, କୋଷ ବର୍ଦ୍ଧନ କରିବା ଏବଂ କାର୍ଯ୍ୟକାଳରେ ତାହାର ଦୃଢ଼ତା ପ୍ରଦର୍ଶନ କରିବା ପ୍ରହରୀମାନଙ୍କ ଉପରେ ବିଶ୍ୱାସ ନ କରି ସ୍ୱୟଂ ନିଜ ପୁରକୁ ପର୍ଯ୍ୟବେକ୍ଷଣ କରିବା, ଅନ୍ୟ ଶତ୍ରୁକର୍ତ୍ତୃକ ବାଣିଜ୍ୟାଦି ଛଳରେ ବଶୀକୃତ ପୁରବାସୀ-ମାନଙ୍କର ଏବଂ ଭୃତ୍ୟବର୍ଗଙ୍କର ପରସ୍ପର ଭେଦ ଜନ୍ମାଇବା, ପ୍ରଚ୍ଛନ୍ନ-ଭାବରେ ଶତ୍ରୁ ଓ ମଧ୍ୟସ୍ଥ ମିତ୍ରବର୍ଗଙ୍କ ଯଥାବତ୍ ତତ୍ତ୍ୱାବଧାରଣ କରିବା, ସ୍ୱୟଂ ଅନ୍ତଃପୁରକୁ ପର୍ଯ୍ୟବେକ୍ଷଣ କରିବା, ଭୃତ୍ୟବର୍ଗଙ୍କୁ ଅବିଶ୍ୱାସ କରିବା ଶତ୍ରୁଗଣଙ୍କୁ ବାହ୍ୟରେ ଆଶ୍ୱାସ ପ୍ରଦାନପୂର୍ବକ ନିଜେ ସେମାନଙ୍କୁ ବିଶ୍ୱାସ ନ କରିବା, ଅସାଧୁ ସଙ୍ଗକୁ ପରିତ୍ୟାଗ କରିବା, ଶତ୍ରୁମାନଙ୍କୁ ଅବଜ୍ଞା ନ କରିବା, ସତତ ଉଦ୍ୟୋଗୀ ହେବା, ଏବଂ ନୀତିମାର୍ଗାନୁଯାୟୀ ହେବା ରାଜାମାନଙ୍କର କର୍ତ୍ତବ୍ୟ । ୧୨ ।

ବୃହସ୍ପତି ରାଜାମାନଙ୍କର ଉଦ୍ୟୋଗକୁ ରାଜଧର୍ମର ମୂଳ ବୋଲି ନିର୍ଦ୍ଦେଶ କରି ଅଛନ୍ତି । ହେ ଯୁଧିଷ୍ଠିର ! ଏ ବିଷୟରେ ଗୋଟିଏ ଶ୍ଳୋକ ଅଛି, ତାହା ଶ୍ରବଣ କର । ତ୍ରିଦଶମାନେ ଉଦ୍ୟୋଗଦ୍ୱାରା ଅମୃତଲାଭ କରିଥିଲେ ଏବଂ ଅସୁରମାନଙ୍କୁ ନିହତ କରିଥିଲେ । ଦେବରାଜ ନିଜର ଉଦ୍ୟୋଗଦ୍ୱାରା ତ୍ରିଲୋକ ମଧ୍ୟରେ ପ୍ରାଧାନ୍ୟ ଲାଭ କରି ଅଛନ୍ତି । ୧୪ ।

ଉଦ୍ୟୋଗୀ ପୁରୁଷ ପଣ୍ଡିତମାନଙ୍କ ଉପରେ ଆଧିପତ୍ୟ କରନ୍ତି ଏବଂ ପଣ୍ଡିତମାନେ ସ୍ତୁତିବାଦଦ୍ୱାରା ତାହାଙ୍କର ପ୍ରସନ୍ନତା ସାଧନପୂର୍ବକ ତାହାଙ୍କୁ ଉପାସନା କରନ୍ତି । ୧୫ ।

ରାଜା ବୁଦ୍ଧିମାନ ହୋଇସୁଦ୍ଧା ନିୟତ ଉଦ୍ୟୋଗବିହୀନ ହେଲେ ନିର୍ବିଷ ସର୍ପପ୍ରାୟ, ଶତ୍ରୁମାନଙ୍କର ଧର୍ଷଣୀୟ ହୁଅନ୍ତି । ୧୬ ।

ଶତ୍ରୁ ଦୁର୍ବଳ ହେଲେ ସୁଦ୍ଧା ତାହାକୁ ଅବଜ୍ଞା କରିବା ବଳବାନ୍‌ର କର୍ତ୍ତବ୍ୟ ନୁହେଁ । କାରଣ ଅଗ୍ନି ଅଳ୍ପ ହେଲେ ସୁଦ୍ଧା ଦଗ୍ଧ କରିପାରେ ଏବଂ ବିଷ ବିନ୍ଦୁମାତ୍ର ହେଲେ ସୁଦ୍ଧା ଜୀବନ ନାଶ କରିପାରେ । ଶତ୍ରୁ ଯଦି ହସ୍ତୀ ଓ ଅଶ୍ୱ ପ୍ରଭୃତି ଅଙ୍ଗମାନଙ୍କର ଏକାଙ୍ଗମାତ୍ର ହୋଇ ଦୁର୍ଗରେ ଅବସ୍ଥାନ

ଗ୍ରହଣ କରେ ତେବେ ସମୃଦ୍ଧିବାନ୍ ନୃପତିର ମଧ ସମସ୍ତ ଦେଶକୁ ସନ୍ତାପିତ କରିପାରେ । ୧୮ ।

ରାଜା ହିଁ ନିଜର ଗୋପନୀୟ ବାକ୍ୟସବୁ, ଶତ୍ରୁ ବିଜୟ ନିମିତ୍ତ ଲୋକସଂଗ୍ରହ ଓ ଶାରୀରିକ କିମ୍ବା ମାନସିକ କୌଶଲ୍ୟାଦି ଏବଂ ଯେଉଁ ସବୁ ହୀନକାର୍ଯ୍ୟ କରିଥାନ୍ତି, ତତ୍ସମସ୍ତ ସମସ୍ତଙ୍କଠାରେ ସାରଲ୍ୟ ପ୍ରକାଶ-ପୂର୍ବକ ଗୋପନ ରଖିବା ଲୋକମାନଙ୍କ ସଂଗ୍ରହ କରିବାପାଇଁ ଧାର୍ମିଷ୍ଠ କର୍ମ ସବୁ ଆଚରଣ କରିବ । କାରଣ ଅକୃତାତ୍ମା ବ୍ୟକ୍ତିମାନେ ସୁମହତ ରାଜ୍ୟ-ତନ୍ତ୍ର ରକ୍ଷା କରିବାକୁ ସମର୍ଥ ହୁଅନ୍ତି ନାହିଁ । ହେ ଯୁଧିଷ୍ଠିର ! ଭରତଶ୍ରେଷ୍ଠ ମୃଦୁ ବ୍ୟକ୍ତି ଏହିପରି ଆୟାସସାଧ୍ୟ ସ୍ଥାନକୁ ରକ୍ଷାକରି ପାରନ୍ତି ନାହିଁ ଏବଂ ନିତାନ୍ତ ସରଳ ପ୍ରକୃତି ହେଲେ ସୁଦ୍ଧା ଏତାଦୃଶ ସର୍ବଲୋକ ଲୋଭ-ଜନକ ରାଜ୍ୟ ରକ୍ଷା ହୁଏ ନାହିଁ । ସୁତରାଂ ସାରଲ୍ୟ, ଏବଂ କ୍ରୋଧ ଏହି ଉଭୟ ମିଶ୍ରିତ ବୃତ୍ତିକି ଅବଲମ୍ବନ କରିବା କର୍ତ୍ତବ୍ୟ । ଯଦି ଏହି ନିୟମରେ ପ୍ରଜାମାନଙ୍କ ରକ୍ଷା କରିବାକୁ ଗଲେ ନୃପତିଙ୍କର ବିପତ୍ତି ଉପସ୍ଥିତ ହୁଏ, ତଥାପି ଏହାହିଁ ତାହାଙ୍କର ବିପୁଳ ଧର୍ମ । କାରଣ ଏହିପରି ବୃତ୍ତି ଅବଲମ୍ବନ କରିବା କର୍ତ୍ତବ୍ୟ । ହେ କୁରୁସତ୍ତମ ! ଏହିପରି ସାମାନ୍ୟରେ ରାଜଧର୍ମର କିୟଦଂଶ ତୁମ୍ଭଠାରେ ବର୍ଣ୍ଣିତ ହେଲା । ଅତଃପର ତୁମ୍ଭର ଯେଉଁଠାରେ ସନ୍ଦେହ ଅଛି ତାହା କୁହ । ୨୪ ।

ବୈଶମ୍ପାୟନ କହିଲେ, ତଦନନ୍ତର ଭଗବାନ ବ୍ୟାସ, ଦେବ-ସ୍ଥାନ, ଅଶ୍ୱ, ବାସୁଦେବ, କୃପ, ସାତ୍ୟକି ଏବଂ ସଞ୍ଜୟ ସେହି ଧାର୍ମିକଶ୍ରେଷ୍ଠ ନରଶାର୍ଦ୍ଦୂଳ ଭୀଷ୍ମଦେବଙ୍କୁ ସାଧୁ ସାଧୁ ବୋଲି ସ୍ତବ କଲେ । ତତ୍କାଳରେ ସେମାନେ ଏହିପରି ଆନନ୍ଦିତ ହୋଇଥିଲେ ଯେ ସମସ୍ତଙ୍କର ମୁଖ ବିକଶିତ ପଦ୍ମପ୍ରାୟ ଶୋଭାନ୍ୱିତ ହେଲା । ତଦନନ୍ତର କୁରୁସତ୍ତମ ଯୁଧିଷ୍ଠିର ଦୁଃଖିତାନ୍ତଃକରଣରେ ଏବଂ ଅଶ୍ରୁପୂର୍ଣ୍ଣ ଲୋଚନରେ ଭୀଷ୍ମଙ୍କର ପଦଦ୍ୱୟ ସ୍ପର୍ଶ କରି କହିଲେ—ହେ ପିତାମହ ! ଆମ୍ଭର ଯେଉଁସବୁ ସନ୍ଦେହ ଅଛି, ତାହା କାଲି ଆପଣଙ୍କଠାରେ କହିବୁଁ । କାରଣ ଅଦ୍ୟ ସୂର୍ଯ୍ୟଦେବ ପାର୍ଥିବ ରସ ପାନ କରି ଅସ୍ତଗାମୀ ହେଉ ଅଛନ୍ତି । ୨୮ ।

ତଦନନ୍ତର ଶତ୍ରୁତାପନ ସୁବ୍ରତ କେଶବ, କୃପ ଏବଂ ଯୁଧିଷ୍ଠିର ପ୍ରଭୃତି ସମସ୍ତେ ବ୍ରାହ୍ମଣମାନଙ୍କୁ ଅଭିବାଦନ କରି ଏବଂ ଗଙ୍ଗାନନ୍ଦନ ଭୀଷ୍ମଙ୍କ

ପ୍ରଦକ୍ଷିଣ କରି ବୃଷଧ୍ୱଜ ନଦୀରେ ଯଥାବିଧି ମାଙ୍ଗଳିକ ଜପକାର୍ଯ୍ୟ, ସନ୍ଧ୍ୟୋପାସନା ଓ ଉଦକକାର୍ଯ୍ୟ ସମାପନାପୂର୍ବକ ହସ୍ତିନାପୁର ମଧ୍ୟରେ ପ୍ରବେଶ କଲେ । ୩୦ ।

---

## ଅଧ୍ୟାୟ—୫୯

ବୈଶମ୍ପାୟନ କହିଲେ—ତଦନନ୍ତର ପାଣ୍ଡବ ଏବଂ ଯାଦବଗଣ ପରଦିନ ପ୍ରତ୍ୟୁଷରେ ଗାତ୍ରୋତ୍ଥାନପୂର୍ବକ ପୌର୍ବାହ୍ଣିକ କ୍ରିୟା ସମାପନାନ୍ତେ ନଗର ସଦୃଶ ରଥମାନଙ୍କରେ ଆରୋହଣ କରି ପୁନର୍ବାର ଭୀଷ୍ମଙ୍କ ସମୀପକୁ ଯାତ୍ରା କଲେ । ୧ ।

ଅନନ୍ତର ସେମାନେ କୁରୁକ୍ଷେତ୍ରରେ ଉପସ୍ଥିତ ହୋଇ ଅନଘ ରଥିଶ୍ରେଷ୍ଠ ଭୀଷ୍ମଦେବଙ୍କୁ ପ୍ରଶ୍ନ କଲେ "ଆପଣଙ୍କର ସୁଖରେ ରଜନୀ ଅତିବାହିତ ହୋଇଅଛି ତ ?" ସେମାନେ ବ୍ୟାସାଦି ମହର୍ଷିଗଣଙ୍କୁ ନମସ୍କାର କରି ଓ ସେମାନଙ୍କଦ୍ୱାରା ଅଭିନନ୍ଦିତ ହୋଇ ଗଙ୍ଗାନନ୍ଦନ ଭୀଷ୍ମଙ୍କର ଚତୁର୍ଦ୍ଦିଗରେ ଉପବେଶନ କଲେ । ୩ ।

ତଦନନ୍ତର ଧର୍ମରାଜ ମହାତେଜା ରାଜା ଯୁଧିଷ୍ଠିର ଗଙ୍ଗାନନ୍ଦନଙ୍କୁ ଯଥାବିଧି ପୂଜାକରି କୃତାଞ୍ଜଳି ହସ୍ତରେ କହିଲେ । ୪ ।

ଯୁଧିଷ୍ଠିର କହିଲେ—ହେ ଶତ୍ରୁକର୍ଷଣ ଭରତନନ୍ଦନ ! ଭୂମଣ୍ଡଳ ମଧ୍ୟରେ "ରାଜା" ବୋଲି ଯେଉଁ ଶବ୍ଦ ପ୍ରଚଳିତ ଅଛି, ତାହା କି ପ୍ରକାରେ ଉତ୍ପନ୍ନ ହୋଇଅଛି, ତାହା ଆମ୍ଭଠାରେ କହନ୍ତୁ । ୫ ।

ମନୁଷ୍ୟମାନଙ୍କର ପାଣି, ଭୁଜ, ଗ୍ରୀବା, ମୁଖ, ଉଦର, ପୃଷ୍ଠ, ଶୁକ୍ର, ଅସ୍ଥି, ମଜ୍ଜା, ମାଂସ, ଶୋଣିତ, ବୁଦ୍ଧି, ଇନ୍ଦ୍ରିୟ, ଆତ୍ମା, ସୁଖ, ଇଚ୍ଛା, ଦୁଃଖ ନିଶ୍ୱାସ, ପ୍ରାଣ, ଶରୀର, ଜନ୍ମ, ମୃତ୍ୟୁ ଏବଂ ଅପର ଗୁଣସବୁ ସମାନ ହେଲେ ସୁଦ୍ଧା କି କାରଣରୁ ଏକବ୍ୟକ୍ତି ଅନ୍ୟାନ୍ୟ ବଳିଷ୍ଠ ବୁଦ୍ଧିଶୂର ପୁରୁଷମାନଙ୍କ ଉପରେ ଆଧିପତ୍ୟ କରନ୍ତି ? ।୮।

ଏକବ୍ୟକ୍ତି ଅବା କି ହେତୁରୁ ଏହି ଶୂର, ବୀର ଏବଂ ଆର୍ଯ୍ୟସଙ୍କୁଳ ସମଗ୍ର ବସୁନ୍ଧରାକୁ ରକ୍ଷା କରନ୍ତି ଏବଂ ଆଉ ସମସ୍ତ ଲୋକେ କାହିଁକି

ତାହାଙ୍କର ପ୍ରସନ୍ନତା ଲାଭ କରିବାକୁ ଆକାଙ୍କ୍ଷା କରନ୍ତି ? ହେ ବାଗ୍ମିପ୍ରବର ଭରତଶ୍ରେଷ୍ଠ ! ଏକ ବ୍ୟକ୍ତି ପ୍ରସନ୍ନ ହେଲେ, ସମସ୍ତେ ପ୍ରସନ୍ନ ହୁଅନ୍ତି ଏବଂ ଏକବ୍ୟକ୍ତି ବ୍ୟାକୁଳ ହେଲେ ସମସ୍ତେ ବ୍ୟାକୁଳ ହୁଅନ୍ତି; ଅତଏବ ଏହି ଯେଉଁ ରୀତି ଚିରକାଳ ପ୍ରଚଳିତ ହୋଇ ଆସୁଅଛି, ତାହାର କାରଣ ଆମ୍ଭେ ଯଥାବତ୍ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ଆପଣ ବିସ୍ତାରପୂର୍ବକ ଆମ୍ଭଠାରେ ତତ୍ସମସ୍ତ ବର୍ଣ୍ଣନ କରନ୍ତୁ । ହେ ବିଶାମ୍ପତେ ! ସମସ୍ତ ଲୋକେ ଯେ ଏକବ୍ୟକ୍ତିଙ୍କଠାରେ ନତ ହୋଇଥାନ୍ତି, ତାହାର କାରଣ କଦାପି ସାମାନ୍ୟ ହେବ ନାହିଁ ।୧୬।

ଭୀଷ୍ମ କହିଲେ—ହେ ନରପୁଙ୍ଗବ ଯୁଧିଷ୍ଠିର ! ପୂର୍ବେ ସତ୍ୟ ଯୁଗରେ ଯେପରି ରାଜତ୍ୱ ସଂସ୍ଥାପିତ ହୋଇଥିଲା, ତାହା ଶ୍ରବଣ କର । ପୂର୍ବେ ରାଜା କମ୍ବା ରାଜ୍ୟ, ଦଣ୍ଡକର୍ତ୍ତା କମ୍ବା ଦଣ୍ଡ କିଛିମାତ୍ର ଥିଲା ନାହିଁ । ପ୍ରଜାମାନେ ଧର୍ମାନୁବର୍ତ୍ତୀ ହୋଇ ପରସ୍ପର ପରସ୍ପରକୁ ରକ୍ଷା କରୁଥିଲେ ।୧୪।

ଏହି ପ୍ରକାରେ ରକ୍ଷା କରୁଁ କରୁଁ ସେମାନେ ପରିଶ୍ରାନ୍ତ ହେବାରୁ ସେମାନଙ୍କର ଚିତ୍ତ ବିଭ୍ରମ ଉପସ୍ଥିତ ହେଲା । ହେ ମନୁଜର୍ଷଭ ! ଏହି ପ୍ରକାରେ ଚିତ୍ତ ବିଭ୍ରମ ହେତୁ ଜ୍ଞାନ ଲୋପ ହେବାରୁ ସେମାନଙ୍କର ଧର୍ମ ବିନଷ୍ଟ ହେଲା ।୧୬।

ହେ ଭରତସତ୍ତମ ! କ୍ରମଶଃ ମୋହ ଏବଂ ଲୋଭ ଉପସ୍ଥିତ ହୁଅନ୍ତେ ସେମାନେ ଅପ୍ରାପ୍ତ ବସ୍ତୁସବୁ ପାଇବାର ଇଚ୍ଛା କଲେ; ଅତଏବ ବିଷୟାଭିଳାଷ ଏବଂ ଇନ୍ଦ୍ରିୟପ୍ରୀତି ପ୍ରଭୃତି କାମନାସବୁ ତେତେବେଳେ ସେମାନଙ୍କର ଚିତ୍ତକୁ ଆକ୍ରମଣ କଲା । ହେ ଯୁଧିଷ୍ଠିର ! ଏହି ପ୍ରକାରେ ସେମାନଙ୍କର ଭୋଗାଭିଳାଷ ଉପସ୍ଥିତ ହୁଅନ୍ତେ ସେମାନେ ତହିଁରେ ଏକାନ୍ତ ଅନୁରକ୍ତ ହୋଇ କର୍ତ୍ତବ୍ୟାକର୍ତ୍ତବ୍ୟ ବିବେକଶୂନ୍ୟ ହେଲେ ।୧୯।

ହେ ରାଜେନ୍ଦ୍ର । ଏହିସବୁ କାରଣରୁ ସେମାନଙ୍କର ଅଗମ୍ୟାଗମନ, ବାଚ୍ୟାବାଚ୍ୟ, ଭକ୍ଷ୍ୟାଭକ୍ଷ୍ୟ, କମ୍ବା, ଦୋଷାଦୋଷ କୌଣସି ଜ୍ଞାନ ରହିଲା ନାହିଁ । ନରଲୋକରେ ଏହିପରି ବିପ୍ଳବ ଉପସ୍ଥିତ ହେବାରୁ ବେଦସବୁ ନଷ୍ଟ ହୋଇଗଲା । ଏଣୁକରି ଯଜ୍ଞାଦି ଧର୍ମକର୍ମ ମଧ୍ୟ ବିଲୁପ୍ତ ହେଲା । ବେଦ ଏବଂ ଯଜ୍ଞାଦି ବିଲୁପ୍ତ ହେବାରୁ ଦେବତାମାନେ ଭୟ ବିହ୍ୱଳଚିତ୍ତରେ ଲୋକ ପିତାମହ ବ୍ରହ୍ମାଙ୍କର ଶରଣାଗତ ହେଲେ ଏବଂ ତାହାଙ୍କୁ ପ୍ରଣିପାତ-

ଦ୍ୱାରା ପ୍ରସନ୍ନ କରି ଦୁଃଖିତାନ୍ତକରଣରେ ଓ କୃତାଞ୍ଜଳିପୂର୍ବରେ କହିଲେ— ହେ ଭଗବାନ ! ନରଲୋକରେ ଲୋଭ ଏବଂ ମୋହାଦି ଭାବସବୁ ଉପସ୍ଥିତ ହେବାରୁ ସନାତନ ବେଦସବୁ ବିଲୁପ୍ତ ହୋଇଅଛି । ସେହି ହେତୁରୁ ଆମ୍ଭମାନଙ୍କର ମଧ୍ୟ ଭୟ ଉପସ୍ଥିତ ହୋଇଅଛି ।୨୪।

ହେ ତ୍ରିଭୁବନେଶ୍ୱର ! ବେଦସବୁ ବିଲୁପ୍ତ ହେବାରୁ ଯଜ୍ଞାଦି ଧର୍ମ କର୍ମ ସମସ୍ତ ନଷ୍ଟ ହୋଇଅଛି । ଅତଏବ ବର୍ତ୍ତମାନ ଆମ୍ଭେମାନେ ସେହି ମର୍ତ୍ତ୍ୟବାସୀ ମାନବଗଣଙ୍କ ସଦୃଶ ହୋଇଅଛୁଁ ।୨୫।

ମନୁଷ୍ୟମାନେ ଆମ୍ଭମାନଙ୍କୁ ଊର୍ଦ୍ଧ୍ୱମୁଖରେ ଆହୁତି ପ୍ରଦାନ କରୁଥିଲେ ଏବଂ ଆମ୍ଭେମାନେ ମଧ୍ୟ ତତ୍ପରିବର୍ତ୍ତିରେ ପୃଥିବୀରେ ଜଳବର୍ଷଣ କରୁଥିଲୁଁ; କିନ୍ତୁ ବର୍ତ୍ତମାନ ସେହିସବୁ କ୍ରିୟା ଉପଗତ ହେବାରୁ ଆମ୍ଭେମାନେ ନଷ୍ଟପ୍ରାୟ ହୋଇଅଛୁଁ । ହେ ପିତାମହ ! ଆପଣଙ୍କ ପ୍ରଭାବରୁ ଆମ୍ଭମାନଙ୍କର ଯେଉଁ ଐଶ୍ୱର୍ଯ୍ୟାଦି ହୋଇଥିଲା, ତତ୍ସମସ୍ତ ବିନଷ୍ଟ ହୋଇଅଛି । ଅତଏବ ଯଦ୍ଦ୍ୱାରା ଆମ୍ଭମାନଙ୍କର ଶ୍ରେୟ ହେବ ଆପଣ ତାହା ବିଧାନ କରନ୍ତୁ ।୨୭।

ତଦନନ୍ତର ଭଗବାନ୍ ସ୍ୱୟମ୍ଭୂ ସେହି ସମାଗତ ସୁରଗଣଙ୍କୁ କହିଲେ—ହେ ସୁରସତ୍ତମମାନେ ! ତୁମ୍ଭେମାନେ ଭୀତ ହୁଅ ନାହିଁ । ଯଦ୍ଦ୍ୱାରା ତୁମ୍ଭମାନଙ୍କର ମଙ୍ଗଳ ହେବ, ଆମ୍ଭେ ତନ୍ନିମିତ୍ତ ଚିନ୍ତିତ ରହିଲୁଁ ।୨୮।

ଅନନ୍ତର ପିତାମହ ନିଜର ବୁଦ୍ଧି ପ୍ରଭାବରେ ଶତ ସହସ୍ର ଅଧ୍ୟାୟାତ୍ମକ ଶାସ୍ତ୍ର ପ୍ରଣୟନ କରି ତନ୍ମଧ୍ୟରେ ଧର୍ମ୍ମ, ଅର୍ଥ, ଏବଂ କାମକୁ ବିସ୍ତାରରୂପରେ ବର୍ଣ୍ଣନା କଲେ । ସ୍ୱୟମ୍ଭୂ ଧର୍ମ୍ମ, ଅର୍ଥ ଏବଂ କାମ ଏହି ତିନୋଟିକୁ ତ୍ରିବର୍ଗ ବୋଲି ବିଖ୍ୟାତ କଲେ ଏବଂ ତ୍ରିବର୍ଗଠାରୁ ବିପରୀତ ଫଳଦାୟକ ପୃଥକଗଣବିଶିଷ୍ଟ ଚତୁର୍ଥ ମୋକ୍ଷ ନାମକ ପଦ ତନ୍ମଧ୍ୟରୁ ସନ୍ନିବେଶିତ କଲେ ।୩୦।

ମୋକ୍ଷର ମଧ୍ୟ ସକାମ କର୍ମ୍ମ ଭେଦରେ ସତ୍ତ୍ୱ, ରଜ ଏବଂ ତମୋରୂପ ତ୍ରିବର୍ଗ ଏବଂ ନିଷ୍କାମ ଭେଦରେ ତଦତିରିକ୍ତ ଅନ୍ୟ ଗୋଟିଏ ବର୍ଗକୁ ସନ୍ନିବେଶିତ କଲେ । ବଣିକମାନଙ୍କର ସାମ୍ୟ, ତାପସଗଣଙ୍କର ବୃଦ୍ଧି, ଏବଂ ଚୌରଗଣଙ୍କର କ୍ଷୟ, ଏହି ଦଣ୍ଡଜନିତ ତ୍ରିବର୍ଗ, ଆତ୍ମା, ଦେଶ, କାଳ, ଉପାୟ, ପ୍ରୟୋଜନ, ଏବଂ ସହାୟ ଏହି ତିନିଜ ଷଡ଼ବର୍ଗ

ଏବଂ କର୍ମକାଣ୍ଡ ଜ୍ଞାନକାଣ୍ଡ, କୃଷି ବାଣିଜ୍ୟାଦିଦ୍ୱାରା ଜୀବିକାକାଣ୍ଡ, ଏହି ସ୍ୱତନ୍ତ୍ରୀର୍ଣ୍ଣ ଦଣ୍ଡ ନୀତିସବୁ ସେହି ପିତାମହ ପ୍ରଣୀତ ଶତ ସହସ୍ରାଧ୍ୟାୟରେ ବର୍ଣ୍ଣିତ ହୋଇଅଛି ।୩୩।

ହେ ପାର୍ଥିବ ! ଅମାତ୍ୟବର୍ଗଙ୍କର ରକ୍ଷା ପ୍ରଣିଧି ଓ ରାଜପୁତ୍ର-ମାନଙ୍କର ଲକ୍ଷଣ, ବିବିଧୋପାୟ ଚରଗଣ, ବ୍ରହ୍ମଚର୍ଯ୍ୟାଦିବେଶଧାରୀ, ପୃଥଗ୍‌ବିଧ ଗୁପ୍ତଚର ଏବଂ ସାମ, ଦାନ, ଦଣ୍ଡ, ଭେଦ ଓ ଉପେକ୍ଷା ଏତତ୍ ସମସ୍ତ ତହିଁରେ ବର୍ଣ୍ଣିତ ହୋଇଅଛି ।୩୫।

ମନ୍ତ୍ର, ଭେଦାର୍ଥ, ମନ୍ତ୍ରଣା ବିଭ୍ରମ, ସିଦ୍ଧି ଏବଂ ଅସିଦ୍ଧିର ଫଳସବୁ ତହିଁରେ ଉକ୍ତ ହୋଇଅଛି ।୩୬।

ଭୟ ପ୍ରଯୁକ୍ତ ସତ୍କାରପୂର୍ବକ ଏବଂ ହୀନ ମଧ୍ୟମ ଏବଂ ଉତ୍ତମରୂପ ତ୍ରିବିଧ ପ୍ରକାର ସନ୍ଧି, ପିତାମହଙ୍କର ଶତସହସ୍ରାଧ୍ୟାୟରେ ସମ୍ପୂର୍ଣ୍ଣଭାବରେ ବର୍ଣ୍ଣିତ ହୋଇଅଛି ।୩୭।

ଚତୁର୍ବିଧ ଯାତ୍ରାକାଳ, ତ୍ରିବର୍ଗର ବିସ୍ତାର, ଧର୍ମସଂଯୁକ୍ତ ବିଜୟ, ଅର୍ଥ ବିଜୟ, ଏବଂ ଅନ୍ୟାୟପୂର୍ବକ କୃତ ଅସୁର ବିଜୟ ତହିଁରେ ସୁସ୍ପଷ୍ଟରୂପରେ ବର୍ଣ୍ଣିତ ହୋଇଅଛି । ଉତ୍ତମ, ମଧ୍ୟମ ଏବଂ ଅଧମ ଭେଦରେ ଅମାତ୍ୟ ରାଷ୍ଟ୍ର, ଦୁର୍ଗ, ବଳ ଏବଂ କୋଷ ଏହି ପଞ୍ଚବର୍ଗର ଲକ୍ଷଣସବୁ ବର୍ଣ୍ଣିତ ହୋଇଅଛି ।୩୭।

ପ୍ରକାଶ୍ୟ ଏବଂ ଗୁପ୍ତ ଏହି ଦ୍ୱିବିଧ ସେନା କଥିତ ହୋଇଅଛି । ତଦୁଭୟରେ ଅଷ୍ଟବିଧ ବିସ୍ତାର ବର୍ଣ୍ଣିତ ହୋଇଅଛି । ହେ ପାଣ୍ଡବ ! ରଥ, ନାଗ, ହୟ, ପତ୍ତି, ବିଷ୍ଟି, ନାବିକ, ଭାରବାହୀ, ଚର ଏବଂ ଦୈଶିକ ଅର୍ଥାତ୍ ଉପଦେଷ୍ଟା ଏହି ଆଠୋଟି ପ୍ରକାଶ୍ୟ ବଳର ଅଙ୍ଗ ଅଟେ । ପରିହିତ ବାସରେ, ଅନ୍ନପାନାଦି ଭକ୍ଷ୍ୟ ଦ୍ରବ୍ୟରେ ଏବଂ ଆଭରଣାଦି କାର୍ଯ୍ୟରେ ଜଙ୍ଗମ ଅର୍ଥାତ୍ ମହା ବୃଶ୍ଚିକାଦିର ଏବଂ ଅଜଙ୍ଗମ ଅର୍ଥାତ୍ ବତ୍ସନାଭ ଶୃଙ୍ଗିକାଦିର ବିଷାଦିଚୂର୍ଣ୍ଣ ଯୋଗରୂପ ଦଣ୍ଡ ପିତାମହଙ୍କର ଉକ୍ତ ସହସ୍ରାଧ୍ୟାୟାତ୍ମକ ଶାସ୍ତ୍ରରେ ଅଭିହିତ ହୋଇଅଛି । ଅରି, ମିତ୍ର ଏବଂ ଉଦାସୀନମାନଙ୍କର ଲକ୍ଷଣ ମଧ୍ୟ ବର୍ଣ୍ଣିତ ହୋଇଅଛି ।୪୩।

ଉକ୍ତ ଶାସ୍ତ୍ରରେ ଗ୍ରହ ଓ ନକ୍ଷତ୍ରାଦିର ମାର୍ଗଗୁଣ, ଭୂମିଗୁଣ, ମନ୍ତ୍ର ଓ ଯନ୍ତ୍ରାଦି ଧାରଣଦ୍ୱାରା ଆତ୍ମାର ରକ୍ଷା, ଆଶ୍ୱାସ, ଏବଂ ରଥ ନିର୍ମାଣାଦି

ପର୍ଯ୍ୟବେକ୍ଷଣ ମନୁଷ୍ୟ, ନାଗ ଏବଂ ଅଶ୍ୱଗଣଙ୍କର ବଳପୁଷ୍ଟିକାରକ ବହୁବିଧ ଯୋଗ, ବହୁବିଧ ବ୍ୟୂହ ଏବଂ ବିଚିତ୍ର ଯୁଦ୍ଧ କୌଶଳ, ଧୂମକେତୁ ପ୍ରଭୃତି ଉତ୍ପାତ, ଉଲ୍‌କାପାତ, ଭୂମିକମ୍ପାଦିରୂପ ନିପାତ, ଶସ୍ତ୍ର ସମୂହର ଶିକ୍ଷଣ କରଣ ଏବଂ ସେମାନଙ୍କର କ୍ଷେପଣ ଓ ଉପସଂହାରାଦି ଜ୍ଞାନସବୁ ସମ୍ପୂର୍ଣ୍ଣରୂପେ ପରିବର୍ଣ୍ଣିତ ହୋଇଅଛି ।୪୯।

ହେ ପାଣ୍ଡୁନନ୍ଦନ ! ବଳସମୂହର କ୍ଷୟବୃଦ୍ଧି, ପୀଡ଼ା, ଆପଦ କାଳରେ ମନ୍ତ୍ରିମାନଙ୍କର ଗୁଣାଗୁଣ ବିଜ୍ଞାନ, ଦୁନ୍ଦୁଭି ପ୍ରଭୃତି ଧ୍ୱନିଦ୍ୱାରା ଯାତ୍ରାକାଳ ବିଧାନ, ପତାକାଦି ଦର୍ଶନ, ଏବଂ ମନ୍ତ୍ରଣାଦି ଶ୍ରବଣଦ୍ୱାରା ଶତ୍ରୁଗଣଙ୍କୁ ସମ୍ମୋହିତ କରଣ ରୂପଯୋଗ ସଞ୍ଚାର ସେହି ଶତସହସ୍ରାଧ୍ୟାୟରେ ଉକ୍ତ ହୋଇଅଛି । ଉଗ୍ରରୂପ ଚୌର, ବନଚର, କିରାତ, ଅଗ୍ନିଦ, ବିଷଦ ଏବଂ କୃତ୍ରିମ ଅନୁଶାସନ ପତ୍ର ପ୍ରସ୍ତୁତକାରୀ ଲୋକମାନଙ୍କଦ୍ୱାରା ବାଳାଧ୍ୟକ୍ଷମାନର ଭେଦଜନ୍ମାଇ, ଧାନ୍ୟାଦି ଛେଦନ କରି ମନ୍ତ୍ର ତନ୍ତ୍ର ଓ ମହୌଷଧିଦ୍ୱାରା ମାତଙ୍ଗସମୂହର ଦୋଷ ଜନ୍ମାଇ, ପ୍ରଜାଗଣଙ୍କୁ ଭୟ ପ୍ରଦର୍ଶନ କରି, ଅନୁଗତମାନଙ୍କର ସତ୍କାର କରି ଏବଂ ଲୋକଙ୍କର ମନରେ ବିଶ୍ୱାସ ଉତ୍ପାଦନ କରି ଶତ୍ରୁରାଜାଙ୍କୁ ପୀଡ଼ିତ କରିବା ବିଷୟ ସେହି ଶତସହସ୍ରାଧ୍ୟାୟରେ ବର୍ଣ୍ଣିତ ହୋଇଅଛି ।୫୦।

ସପ୍ତାଙ୍ଗ ରାଜ୍ୟର ହ୍ରାସବୃଦ୍ଧି ଏବଂ ତନ୍ମଧ୍ୟରେ ଶାନ୍ତି ସ୍ଥାପନ, ରାଜ୍ୟ ବୃଦ୍ଧି କରଣ, ଏବଂ ବଳବାନ ଲୋକମାନଙ୍କୁ ସଂଗ୍ରହ କରିବା ଏହି ସମସ୍ତ ସେହି ଶାସ୍ତ୍ରରେ ଉକ୍ତ ହୋଇଅଛି । ଶତ୍ରୁର ନିକଟସ୍ଥିତ ମିତ୍ରଗଣଙ୍କର ପ୍ରପଞ୍ଚନ, ବଳଶାଳୀମାନଙ୍କୁ ପ୍ରତିହତ ଓ ପୀଡ଼ିତ କରିବା, ସୂକ୍ଷ୍ମ ବିଚାର କରିବା, ଖଳପୁରୁଷମାନଙ୍କୁ ଉନ୍ମୂଳିତ କରିବା, ମଲ୍ଲକ୍ରୀଡ଼ା, ଆୟୁଧ କ୍ଷେପଣ, ଦାନ, ଦ୍ରବ୍ୟ ସଂଗ୍ରହ, ଭୃତ୍ୟବର୍ଗଙ୍କର ଭରଣ, ଭୃତ୍ୟବର୍ଗଙ୍କର ତତ୍ତ୍ୱାବଧାରଣ, ସମୟାନୁରୂପ, ଅର୍ଥବ୍ୟୟ, ମୃଗୟାଦି ବ୍ୟସନରେ ଅନାସକ୍ତି, ଉତ୍‌ଥାନାଦି ରାଜଗୁଣ, ମୌଳତାଦି ସେନାପତିଗୁଣ ଏବଂ ତ୍ରିବର୍ଗର ଗୁଣ ଦୋଷ ଓ କାରଣସବୁ ସେହି ଶାସ୍ତ୍ରରେ ପରିବର୍ଣ୍ଣିତ ହୋଇଅଛି ।୫୧।

ନାନାବିଧ ଦୁରଭିସନ୍ଧି, ଅନୁବର୍ତ୍ତୀମାନଙ୍କର ବୃତ୍ତି, ସର୍ବ ପ୍ରକାର ପ୍ରମାଦର ଶକ୍ତିତନ୍ତ୍ର ଓ ବର୍ଜନ ବିଧି, ଅଲବ୍‌ଧ ଅର୍ଥର ଲାଭ, ଲବ୍‌ଧ ଅର୍ଥର ପରିବର୍ଦ୍ଧନ, ଏବଂ ବର୍ଦ୍ଧିତ ଅର୍ଥର ବିଧିବତ୍ ସତ୍ପାତ୍ରରେ ଦାନ,

ଯଜ୍ଞାଦି ଧର୍ମକର୍ମ ନିମିତ୍ତଦାନ, କାମ୍ୟଦାନ, ଓ ବିପଦ କାଳକୃନ୍ଦନ ଏହି ସବୁ ଶତସହସ୍ରାଧ୍ୟାୟ ମଧ୍ୟରେ ବିଶେଷ ରୂପରେ ବର୍ଣ୍ଣିତ ହୋଇଅଛି । ହେ କୁରୁଶ୍ରେଷ୍ଠ ! ସେହି ଶତସହସ୍ରାଧ୍ୟାୟ ମଧ୍ୟରେ ନିଦାରୁଣ କ୍ରୋଧ ଓ କାମଜନିତ ଦଶବିଧ ବ୍ୟସନ ଉକ୍ତ ହୋଇଅଛି । ୫୯ ।

ପିତାମହ ତନ୍ମଧ୍ୟରେ କହିଅଛନ୍ତି ଯେ ଆଚାର୍ଯ୍ୟଗଣ ମୃଗୟା, ଅକ୍ଷକ୍ରୀଡ଼ା, ସୁରାପାନ, ଏବଂ ରମଣୀମାନଙ୍କଠାରେ ଏକାନ୍ତ ଆସକ୍ତ ଏହି ଚାରୋଟିକୁ କାମଜନିତ ବ୍ୟସନ ବୋଲି କହନ୍ତି । ପରୁଷବାକ୍ୟ, କୋପନ ସ୍ୱଭାବ, କଠୋରଦଣ୍ଡ, ନିଗ୍ରହ, କ୍ରୋଧବଶତଃ ଆତ୍ମ ହନନ ଦ୍ୱାରା ଦେହତ୍ୟାଗ ଏବଂ ଅର୍ଥ ଦୂଷଣ ଏହି ଛଅଗୋଟି କ୍ରୋଧଜନିତ ବ୍ୟସନ ବୋଲି ଅଭିହିତ ହୁଏ । ୬୧ ।

ଯନ୍ତ୍ରନିର୍ମାଣର ବହୁବିଧ କୌଶଳ, ଏବଂ ତାହାର କ୍ରିୟାସବୁ ବର୍ଣ୍ଣିତ ହୋଇଅଛି । ଶତ୍ରୁମାନଙ୍କର ପୀଡ଼ନ ଓ ପ୍ରତିଘାତ, କେତନମାନଙ୍କର ଭଞ୍ଜନ, ଚୈତ୍ୟଦ୍ରୁମମାନଙ୍କର ଅବମର୍ଦ୍ଦନ, କୃଷ୍ୟାଦି କର୍ମର ଅନୁଶାସନ ଏବଂ କୃଷିଜାତ ଦ୍ରବ୍ୟସମୂହର ରକ୍ଷଣ, ଆବଶ୍ୟକୀୟ ଦ୍ରବ୍ୟମାନଙ୍କର ଆୟୋଜନ, ବର୍ମ ଏବଂ କର୍ମନିର୍ମାଣର ଯୁକ୍ତି ସମସ୍ତ ବର୍ଣ୍ଣିତ ହୋଇଅଛି । ୬୩ ।

ହେ ଯୁଧିଷ୍ଠିର ! ସେହି ଶାସ୍ତ୍ରରେ ପଣବ, ମୃଦଙ୍ଗ, ଶଙ୍ଖ ଓ ଭେରୀ ସକଳର ଲକ୍ଷଣ ଏବଂ ମଣି, ପଶୁଭୂମି, ବସନ, ଦାସୀ ଓ କାଞ୍ଚନ, ଏହି ଷଡ଼ବିଧ ଦ୍ରବ୍ୟର ଉପାର୍ଜ୍ଜନ ଓ ଅବମର୍ଦ୍ଦନ, ଲବ୍ଧବସ୍ତୁର ପ୍ରଶମନ, ସାଧୁମାନଙ୍କର ପୂଜନ, ପଣ୍ଡିତମାନଙ୍କ ସହିତ ସମଭାବ, ଦାନ ଓ ହୋମର ନିୟମସବୁ ଅବଗତ ହେବା, ସୁବର୍ଣ୍ଣାଦି ମାଙ୍ଗଳିକବସ୍ତୁର ସ୍ପର୍ଶ, ଶରୀରର ଅଳଙ୍କରଣ, ଭକ୍ଷ୍ୟବସ୍ତୁର ନିୟମ, ଏବଂ ନିୟତ ଆସ୍ତିକ୍ୟ ଏହି ସବୁ ତନ୍ମଧ୍ୟରେ ଉକ୍ତ ହୋଇଅଛି । ୬୬ ।

ହେ ଭରତଶ୍ରେଷ୍ଠ ! ଏକର ଉତ୍‌ଥାନ ପ୍ରକାର ବାକ୍ୟର ସତ୍ୟତ୍ୱ, ସଭା ମଧ୍ୟରେ ଓ ଉତ୍ସବରେ କଥିତ ହୋଇଥିବା ବାକ୍ୟର ମଧୁରତ୍ୱ, ଧ୍ୱଜାରୋପଣାଦି ରୂପ ଗୃହକାର୍ଯ୍ୟ, ସାଧାରଣ ଲୋକେ ଯେଉଁଠାରେ ଉପବେଶନ କରନ୍ତି, ତାଦୃଶ ଚତ୍ୱରରେ ପ୍ରତ୍ୟକ୍ଷ ବା ପରୋକ୍ଷରେ ଯେଉଁ-ସବୁ କାର୍ଯ୍ୟର ଅନୁଷ୍ଠାନ ସେହି ସେହି କାର୍ଯ୍ୟମାନଙ୍କର ଯଥାବତ୍ ପର୍ଯ୍ୟବେକ୍ଷଣ, ବିପ୍ରମାନଙ୍କର ଅଦଣ୍ଡତ୍ୱ, ଯୁକ୍ତ୍ୟନୁସାରେ ଦଣ୍ଡନିପାତନ

ଅନୁଜୀବୀ ସ୍ୱଜାତବର୍ଗଙ୍କର ଗୁଣାନୁସାରେ ମର୍ଯ୍ୟାଦାସ୍ଥାପନ, ପୌରଗଣଙ୍କର ରକ୍ଷଣ ଏବଂ ରାଜ୍ୟର ପରିବର୍ଦ୍ଧନ, ସେହି ଶତସହସ୍ରାଧ୍ୟାୟ ମଧ୍ୟରେ ଉକ୍ତ ହୋଇଅଛି । ହେ ରାଜନ୍ ! ଅରି, ମିତ୍ର, ଏବଂ ଉଦାସୀନ ପ୍ରତ୍ୟେକ ସ୍ୱର ସ୍ୱର ଭେଦରେ ଦ୍ୱାଦଶରାଜକ ମଣ୍ଡଳ ବିଷୟକ ଯୁକ୍ତି ସମୁଦାୟ, ବୈଦିକ ଶାସ୍ତ୍ରୋକ୍ତ ଶୌଚ ଓ ଅଭ୍ୟଙ୍ଗାଦି ଦ୍ୱିସପ୍ତତି ପ୍ରକାର ଶରୀର ସଂସ୍କାର ଏବଂ ଦେଶ, ଜାତି ଓ କୁଳ ଭେଦରେ ପୃଥକ ପୃଥକ ଧର୍ମ୍ମସବୁ ସେହି ଶାସ୍ତ୍ରରେ କଥିତ ହୋଇଅଛି । ୭୧ ।

ହେ ଭୃଗୁବଂଶିଣ ! ତନ୍ମଧ୍ୟରେ ଧର୍ମ୍ମ, ଅର୍ଥ, କାମ, ମୋକ୍ଷ, ବହୁବିଧ ଉପାୟ ଏବଂ ଅର୍ଥଲିପ୍ସାର ବିଷୟ ସବୁ ବର୍ଣ୍ଣିତ ହୋଇଅଛି । ୭୨ ।

କୋଷ ବୃଦ୍ଧିକର କୃଷ୍ୟାଦି କାର୍ଯ୍ୟ, ମାୟାଯୋଗ ଏବଂ ବିଛସ୍ରୋତ ଜଳର ଦୂଷଣସବୁ ତହିଁରେ ବର୍ଣ୍ଣିତ ହୋଇଅଛି । ୭୩ ।

ହେ ରାଜଶାର୍ଦ୍ଦୂଳ ! ଯେଉଁ ଯେଉଁ ଉପାୟ ଅବଲମ୍ବନ କଲେ ମନୁଷ୍ୟମାନେ ଆର୍ଯ୍ୟମାନଙ୍କର ଅବଲମ୍ବିତ ପଥରୁ ବିଚଳିତ ହୁଅନ୍ତି ନାହିଁ; ତତ୍ସମସ୍ତ ସେହି ପିତାମହ ପ୍ରଣୀତ ନୀତି ଶାସ୍ତ୍ରମଧ୍ୟରେ ବର୍ଣ୍ଣିତ ହୋଇଅଛି । ପ୍ରଭୁ ଭଗବାନ ପିତାମହ ଏହି ମଙ୍ଗଳଜନକ ଶାସ୍ତ୍ର ପ୍ରଣୟନ କରି ହୃଷ୍ଟାନ୍ତଃକରଣରେ ଇନ୍ଦ୍ରପ୍ରମୁଖ ଦେବତାମାନଙ୍କୁ କହିଲେ :—ଆମ୍ଭେ ଲୋକମାନଙ୍କର ଉପକାର ଏବଂ ତ୍ରିବର୍ଗ ସଂସ୍ଥାପନ ନିମିତ୍ତ ବୁଦ୍ଧିର ନବନୀତ ପ୍ରାପ୍ତ ବାକ୍ୟମାନଙ୍କର ସାରଭୂତ ଏହି ଯୁକ୍ତିକୁ ପ୍ରକାଶ କରିଅଛୁଁ । ୭୭ ।

ଲୋକରକ୍ଷଣକାରିଣୀ ଏହି ଯୁକ୍ତିକୁ ଦଣ୍ଡ ସହିତ ପ୍ରୟୋଗକଲେ ଏହା ଲୋକମାନଙ୍କର ନିଗ୍ରହାନୁଗ୍ରହରେ ରତ ହୋଇ ଭୂମଣ୍ଡଳରେ ପ୍ରଚରିତ ହେବ । ଏହି ଶାସ୍ତ୍ର ବିଶ୍ୱଦଣ୍ଡଦ୍ୱାରା ପ୍ରଣୀତ ହୁଏ କିମ୍ବା ବିଶ୍ୱଦଣ୍ଡକୁ ପ୍ରଣୟନ କରେ, ଅତଏବ ଏହାମାନ ତ୍ରିଲୋକ ମଧ୍ୟରେ ଦଣ୍ଡନୀତି ବୋଲି ବିଖ୍ୟାତ ହେବ । ୭୮ ।

ଷାଡ଼୍‌ଗୁଣ୍ୟ ଗୁଣମାନଙ୍କର ସାରଭୂତ, ଏହି ଶାସ୍ତ୍ର ସର୍ବଦା ମହାତ୍ମାମାନଙ୍କର ଅଗ୍ରରେ ଅବସ୍ଥାନ କରିବ । କାରଣ ଧର୍ମ୍ମ, ଅର୍ଥ, କାମ ଏବଂ ମୋକ୍ଷ ସମସ୍ତ ଏତନ୍ମଧ୍ୟରେ ବର୍ଣ୍ଣିତ ହୋଇଅଛି । ୭୯ ।

ତଦନନ୍ତର ବହୁରୂପ ବିଶାଳାକ୍ଷ ସ୍ଥାଣୁ ଭଗବାନ୍ ଉମାପତି ଶଙ୍କର ସେହି ନୀତିଶାସ୍ତ୍ରକୁ ପ୍ରଥମେ ଗ୍ରହଣ କଲେ । ୮୦ ।

ଭଗବାନ୍ ଶିବ ପ୍ରଜାମାନଙ୍କର ଆୟୁଷ ହ୍ରାସ ହେଉଥିବାର ଜାଣି ପିତାମହକୃତ ସେହି ମହାର୍ଥ ଶାସ୍ତ୍ରକୁ ସଂକ୍ଷିପ୍ତ କଲେ । ୮୧ ।

ସୁବ୍ରାହ୍ମଣ୍ୟ ମହାତପା ଭଗବାନ ପୁରନ୍ଦର ଇନ୍ଦ୍ର, ଦଶସହସ୍ର ଅଧ୍ୟାୟାତ୍ମକ ସେହି ବୈଶାଳାକ୍ଷନାମକ ନୀତିଶାସ୍ତ୍ରକୁ ଗ୍ରହଣ କରି ତାହାକୁ ସଂକ୍ଷେପପୂର୍ବକ ପଂଚସହସ୍ର ଅଧ୍ୟାୟ କଲେ ଏବଂ ସେହି ଶାସ୍ତ୍ର ବାହୁଦନ୍ତକ ନାମରେ ବିଖ୍ୟାତ ହେଲା । ୮୨ ।

ବୁଦ୍ଧିମାନମାନଙ୍କର ଅଗ୍ରଗଣ୍ୟ ବୃହସ୍ପତି, ସେହି ବାସବ-ପ୍ରଣୀତ ଶାସ୍ତ୍ରକୁ ସଂକ୍ଷେପ କରି ତିନ ସହସ୍ର ଅଧ୍ୟାୟ କଲେ । ତାହା ବର୍ତ୍ତମାନ ବାର୍ହସ୍ପତ୍ୟ ଶାସ୍ତ୍ର ବୋଲି କଥିତ ହୁଏ । ୮୪ ।

ଅମିତପ୍ରଜ୍ଞ ଯୋଗାଚାର୍ଯ୍ୟ ମହାଯଶା ଶୁକ୍ର ସେହି ଶାସ୍ତ୍ରକୁ ସଂକ୍ଷେପ-କରି ଏକ ସହସ୍ର ଅଧ୍ୟାୟ କଲେ । ଏହି ପ୍ରକାରେ ଲୋକମାନଙ୍କର ଆୟୁଷ୍କାଳର ନ୍ୟୂନ୍ୟତା ଅନୁସାରେ ମହର୍ଷିମାନେ ନିଜନିଜ ବୁଦ୍ଧି ପ୍ରଭାବ-ଦ୍ୱାରା ସେହି ଶାସ୍ତ୍ରକୁ ସଂକ୍ଷେପ କଲେ । ଅନନ୍ତର ଦେବତାମାନେ ପ୍ରଜାପତି ବିଷ୍ଣୁଙ୍କ ନିକଟକୁ ସମାଗତ ହୋଇ କହିଲେ, ଯେଉଁ ବ୍ୟକ୍ତି ସମସ୍ତ ମର୍ତ୍ତ୍ୟଗଣଙ୍କ ଉପରେ ଆଧିପତ୍ୟ କରିପାରିବେ, ଆପଣ ତଦ୍ରୂପ କୌଣସି ବ୍ୟକ୍ତିଙ୍କୁ ଆଦେଶ କରନ୍ତୁ । ତଦନନ୍ତର ଭଗବାନ ଦେବ ପ୍ରଭୁ ନାରାୟଣ ତୈଜସ ଓ ବିରଜା ନାମକ ଦୁଇଗୋଟି ମାନସ ପୁତ୍ର ସୃଷ୍ଟି କଲେ । ୮୮ ।

ହେ ପାଣ୍ଡୁନନ୍ଦନ ! ତନ୍ମଧ୍ୟରେ ମହାଭାଗ ବିରଜା ଭୂମଣ୍ଡଳରେ ଆଧିପତ୍ୟ ବିସ୍ତାର କରିବାକୁ ଇଚ୍ଛାକଲେ ନାହିଁ; କାରଣ ତାହାଙ୍କର ବୁଦ୍ଧି ସନ୍ନ୍ୟାସ ବୃତ୍ତିରେ ଅନୁରକ୍ତା ହେଲା । ବିରଜାଙ୍କର କୀର୍ତ୍ତିମାନ ନାମକ ଯେଉଁ ପୁତ୍ର ହୋଇଥିଲେ ସେ ମଧ୍ୟ ପଞ୍ଚତ୍ୱ ପ୍ରାପ୍ତ ହୋଇଥିଲେ । କୀର୍ତ୍ତିମାନଙ୍କ ପୁତ୍ର କର୍ଦ୍ଦମ ମଧ୍ୟ ସୁମହତ ତପସ୍ୟା କଲେ । ୯୦ ।

ପ୍ରଜାପତି କର୍ଦ୍ଦମଙ୍କର ଦଣ୍ଡନୀତିବିଶାରଦ ଅନଙ୍ଗନାମକ ଯେଉଁ ପୁତ୍ର ହୋଇଥିଲେ, ସେ ପ୍ରଜାମାନଙ୍କୁ ରକ୍ଷାକଲେ । ତତ୍ପରେ ଅନଙ୍ଗପୁତ୍ର ଅତିମାନ୍ ଅବିକଳ ସୁମହତ ରାଜ୍ୟପ୍ରାପ୍ତ ହୋଇ ଇନ୍ଦ୍ରିୟପରାୟଣ ହେଲେ । ୯୨ ।

ହେ ରାଜନ୍ ! ତ୍ରିଲୋକବିଶ୍ରୁତା ସୁନୀଥାନାମ୍ନୀ ମୃତ୍ୟୁଙ୍କର ଯେଉଁ ମାନସୀ କନ୍ୟା ଥିଲେ ତାହାଙ୍କଠାରୁ ବେଣଙ୍କର ଜନ୍ମ ହେଲା । ଅତିବଳ

ପୁତ୍ର ବେଣ ରାଗଦ୍ୱେଷ ବଶୀଭୂତ ହୋଇ ପ୍ରଜାଗଣଙ୍କ ଉପରେ ଅଧର୍ମାଚରଣ କରିବାରୁ ବ୍ରହ୍ମବାଦୀ ଋଷିମାନେ ମନ୍ତ୍ରପୂତ କୁଶସମୂହ ଦ୍ୱାରା ତାହାଙ୍କୁ ନିହତ କଲେ । ୯୪ ।

ତଦନନ୍ତର ଋଷିଗଣ ମନ୍ତ୍ରୋଚ୍ଚାରଣପୂର୍ବକ ସେହି ବେଣଙ୍କର ଦକ୍ଷିଣ ଉରୁ ମନ୍ଥନ କରିବାରୁ ତନ୍ମଧ୍ୟରୁ ଜଣେ ହ୍ରସ୍ୱ ବିକୃତକେଶ ଦଗ୍ଧସ୍ଥାଣୁ ସଦୃଶ ଲୋହିତଲୋଚନ ଅସିତକେଶ ଏବଂ ହ୍ରସ୍ୱାଙ୍ଗ ପୁରୁଷ ଉତ୍ପନ୍ନ ହୁଅନ୍ତେ ସେହି ବ୍ରହ୍ମବାଦୀ ଋଷିମାନେ ତାହାଙ୍କୁ ନିଷୀଦ ଅର୍ଥାତ୍ ଉପବିଷ୍ଟ ହୁଅ ବୋଲି କହିଲେ । ସୁତରାଂ ତାହାଠାରୁ ଯେଉଁ କ୍ରୂର ମନୁଷ୍ୟମାନେ ଉତ୍ପନ୍ନ ହେଲେ ସେମାନେ ନିଷାଦ ନାମରେ ବିଖ୍ୟାତ ହୋଇ ଶୈଳ ଏବଂ ବନମାନଙ୍କରେ ଆଶ୍ରୟ ଗ୍ରହଣ କଲେ । ହେ ରାଜନ୍ ! ବର୍ତ୍ତମାନ ବିନ୍ଧ୍ୟ ପର୍ବତରେ ଯେଉଁମାନେ ବାସକରନ୍ତି ଏବଂ ଅନ୍ୟାନ୍ୟ ଯେଉଁସବୁ ମ୍ଲେଚ୍ଛ ଅଛନ୍ତି, ଏମାନେ ସମସ୍ତେ ସେହି ନିଷାଦମାନଙ୍କଠାରୁ ଉତ୍ପନ୍ନ ହୋଇ ଅଛନ୍ତି । ୯୭ ।

ତଦନନ୍ତର ମହର୍ଷିଗଣ ପୁନର୍ବାର ବେଣଙ୍କର ଦକ୍ଷିଣ ପାଣିକୁ ମନ୍ଥନ କଲେ । ତଦ୍ୱାରା କବଚଧାରୀ ବଦ୍ଧନିସ୍ତ୍ରିଂଶ ସଶରଶରାସନ ବେଦ-ବେଦାଙ୍ଗବିତ୍ ଏବଂ ଧନୁର୍ବେଦପାରଗ ଦ୍ୱିତୀୟ ଇନ୍ଦ୍ରଙ୍କର ପ୍ରାୟ ଆଉ ଗୋଟିଏ ପୁରୁଷ ଉତ୍ପନ୍ନ ହେଲେ । ୯୯ ।

ହେ ରାଜନ୍ ! ଦଣ୍ଡନୀତିସବୁ ମୂର୍ତ୍ତିମତୀ ହୋଇ ତାହାଙ୍କୁ ଆଶ୍ରୟ କଲେ । ତଦନନ୍ତର ବେଣନନ୍ଦନ କୃତାଞ୍ଜଳିବଦ୍ଧ ହସ୍ତ ହୋଇ ସେହି ମହର୍ଷିମାନଙ୍କୁ କହିଲେ, "ଆମ୍ଭର ଏହି ଯେଉଁ ଧର୍ମତତ୍ତ୍ୱ ସୂକ୍ଷ୍ମ ବୁଦ୍ଧି ପ୍ରାଦୁର୍ଭୂତ ହୋଇଅଛି, ଆମ୍ଭେ ଏତଦ୍ୱାରା କି କାର୍ଯ୍ୟ କରିବୁ, ତାହା ଆପଣମାନେ ଆମ୍ଭଙ୍କୁ ସତ୍ୟ କରି କହନ୍ତୁ । ୧୦୧ ।

ଆପଣମାନେ ଆମ୍ଭଙ୍କୁ ଯେଉଁ ଅର୍ଥ ସମନ୍ୱିତ କାର୍ଯ୍ୟ କରିବାକୁ କହିବେ, ଆମ୍ଭେ ଅବିଳମ୍ବରେ ତାହା ସମ୍ପାଦନ କରିବୁ । ଏଥିରେ କୌଣସି ସନ୍ଦେହ ନାହିଁ । ୧୦୨ ।

ଅନନ୍ତର ଦେବତା ଏବଂ ପରମର୍ଷିଗଣ ତାହାଙ୍କୁ କହିଲେ:— ତୁମ୍ଭେ ନିୟମଶୀଳ ହୋଇ ନିଃଶଙ୍କଚିତ୍ତରେ ଧର୍ମସଙ୍ଗତ କାର୍ଯ୍ୟସବୁ ଆଚରଣ କର । ତୁମ୍ଭେ କାମ, କ୍ରୋଧ, ଲୋଭ, ଓ ଅଭିମାନ ପରିତ୍ୟାଗ କର ଏବଂ ପ୍ରିୟ କିମ୍ବା ଅପ୍ରିୟ ଏପରି ବିବେଚନା ନକରି ସମସ୍ତ

ଜନ୍ତୁଙ୍କଠାରେ ସମଭାବ ପ୍ରକାଶ କରିବ । ପୃଥିବୀରେ ଯେ କୌଣସି ମନୁଷ୍ୟ ଧର୍ମ୍ମପଥରୁ ବିଚଳିତ ହେବ, ତୁମ୍ଭେ ଧର୍ମ୍ମପ୍ରତି ଦୃଷ୍ଟି ରଖି ସ୍ୱୀୟ ବାହୁବଳଦ୍ୱାରା ସେମାନଙ୍କ ଦଣ୍ଡବିଧାନ କରିବ । ୧୦୫ ।

ହେ ପରନ୍ତପ ! ତୁମ୍ଭେ ମନ, କର୍ମ୍ମ ଏବଂ ବାକ୍ୟଦ୍ୱାରା ପ୍ରତିଜ୍ଞା କର ଯେ ଅଖିଳ ଭୌମ ପଦାର୍ଥକୁ ବ୍ରହ୍ମସ୍ୱରୂପ ଜ୍ଞାନ କରି ପାଳନ କରିବ, ନଜର ବଶୀଭୂତ ନ ହୋଇ, ଦଣ୍ଡନୀତିର ନିୟମାନୁସାରେ ଯେଉଁସବୁ ଧର୍ମ୍ମ ଉକ୍ତ ହୋଇଅଛି, ତତ୍ସମସ୍ତ ନିଃଶଙ୍କଚିତ୍ତରେ ଆଚରଣ କରିବ, ଦ୍ୱିଜାତିଗଣ ଅମ୍ଭର ଅଦଣ୍ଡ୍ୟ, ଏବଂ ଆମ୍ଭେ ଲୋକମାନଙ୍କୁ ସଙ୍କରଭାବରୁ ରକ୍ଷା କରିବୁଁ । ଏହା ଜାଣିବ । ୧୦୮ ।

ତଦନନ୍ତର ବେଣନନ୍ଦନ ସେହି ଋଷିପ୍ରମୁଖ ଦେବଗଣଙ୍କୁ କହିଲେ:—ପୁରୁଷଶ୍ରେଷ୍ଠ ବ୍ରାହ୍ମଣମାନେ ଆମ୍ଭର ନମସ୍ୟ ହେଉନ୍ତୁ । ୧୦୯ ।

ସେହି ବ୍ରହ୍ମବାଦୀ ଋଷିମାନେ "ତାହା ହେଉ" ବୋଲି ଅଙ୍ଗୀକାର କରନ୍ତେ, ବ୍ରହ୍ମମୟ ନିଧିସ୍ୱରୂପ ଭଗବାନ ଶୁକ୍ର ତାହାଙ୍କର ପୁରୋହିତ ହେଲେ । ୧୧୦ ।

ସାରସ୍ୱତ୍ୟମାନେ ଓ ବାଲଖିଲ୍ୟମାନେ ତାହାଙ୍କର ମନ୍ତ୍ରୀ ହେଲେ ଏବଂ ମହର୍ଷି ଭଗବାନ୍ ଗର୍ଗ ଜ୍ୟୋତିର୍ବିଦ୍ ହେଲେ । ୧୧୧ ।

ଏହି ପ୍ରକାରେ ଶରୀରଭେଦରେ ବିଷ୍ଣୁଙ୍କଠାରୁ ଅଷ୍ଟମ ସୃଷ୍ଟିକର୍ତ୍ତା ବେଣତନୟ ପୃଥୁ ପୃଥିବୀରେ ରାଜ୍ୟଶାସନ କଲେ ଏହିପରି ଶ୍ରୁତି ଅଛି । ଏଥିପୂର୍ବେ ସୂତ ଓ ମାଗଧ ନାମକ ତାହାଙ୍କର ଦୁଇଜଣ ବନ୍ଦୀ ଉତ୍ପନ୍ନ ହୋଇଥିଲେ । ୧୧୨ ।

ପ୍ରତାପବାନ୍ ବେଣନନ୍ଦନ ପୃଥୁ ସେ ଦୁହିଁଙ୍କଠାରେ ପ୍ରୀତ ହୋଇ ସୂତଙ୍କୁ ଅନୂପଦେଶ ଏବଂ ମାଗଧଙ୍କୁ ମଗଧ ଦେଶ ପ୍ରଦାନ କଲେ ।୧୧୩।

ଆମ୍ଭେମାନେ ଶୁଣିଅଛୁଁ ଯେ ପୂର୍ବେ ଭୂମିର ନିରତିଶୟ ବୈଷମ୍ୟ ଦୋଷ ଥିଲା; କାରଣ ପ୍ରତ୍ୟେକ ମନ୍ୱନ୍ତରରେ ପୃଥିବୀ ସବିଶେଷ ବିଷମ ହୋଇଥିଲା । ସେହି କାରଣରୁ ବେଣତନୟ ଧନୁକୋଟିଦ୍ୱାରା ଶିଳାରାଶିସବୁ ଉଦ୍ଧୃତକରି ବସୁଧାର ସମତା ସମ୍ପାଦନ କଲେ । ହେ ପାଣ୍ଡବ ! ଏହିପରି ଇନ୍ଦ୍ରାଦି ଦେବଗଣ, ବିଷ୍ଣୁ, ପ୍ରଜାପାଳକ ଓ ବ୍ରାହ୍ମଣମାନଙ୍କ କର୍ତ୍ତୃକ ପୃଥୁରାଜ ଅଭିଷିକ୍ତ ହୁଅନ୍ତେ, ରତ୍ନପୂର୍ଣ୍ଣ ବସୁନ୍ଧରା ସାକ୍ଷାତ୍ ମୂର୍ତ୍ତିମତୀ ହୋଇ ତାହାଙ୍କଠାରେ ସମୁପସ୍ଥିତ ହେଲେ । ୧୧୬ ।

ହେ ଯୁଧିଷ୍ଠିର ! ସରତ୍ପତି ସାଗର, ଅଚଳୋତ୍ତମ ହିମବାନ୍ ଏବଂ ଦେବରାଜ ଶତକ୍ରତୁ ତାହାଙ୍କୁ ଅକ୍ଷୟ ଧନପ୍ରଦାନ କଲେ । ୧୨୮ ।

କନକ ପର୍ବତ ସୁମେରୁ ସ୍ୱୟଂ ଆସି ସୁବର୍ଣ୍ଣ ପ୍ରଦାନ କଲେ । ଯକ୍ଷ ଏବଂ ରାକ୍ଷସଗଣଙ୍କର ଭର୍ତ୍ତା ନରବାହନ ଭଗବାନ୍ କୁବେର ଧର୍ମ୍ମ, ଅର୍ଥ ଓ କାମ ଏହି ତ୍ରିବର୍ଗ ସାଧନକ୍ଷମ ଧନ ପ୍ରଦାନ କଲେ । ହେ ପାଣ୍ଡୁନନ୍ଦନ ! ପୃଥୁରାଜ ଚିନ୍ତା କଲାମାତ୍ରକେ ଅସଂଖ୍ୟ ରଥ ନାଗ ଏବଂ ପୁରୁଷସବୁ ପ୍ରାଦୁର୍ଭୂତ ହେଲା । ତାହାଙ୍କର ରାଜତ୍ୱ ସମୟରେ ଜରା, ଦୁର୍ଭିକ୍ଷ, ଆଧି କିମ୍ବା ବ୍ୟାଧି କିଛି ଥିଲା ନାହିଁ । ୧୨୧ ।

ତାହାଙ୍କର ଶାସନ କାଳରେ ସରୀସୃପ କିମ୍ବା ଚୌରଭୟ ହେଉ ନଥିଲା । ସେ ଯେତେବେଳେ ସମୁଦ୍ରକୁ ଗମନ କରୁଥିଲେ, ସେତେବେଳେ ଊର୍ମିମାଳାସଙ୍କୁଳ ସମୁଦ୍ରଜଳ ସ୍ତମ୍ଭିତ ହେଉଥିଲା; ପର୍ବତସବୁ ଦ୍ୱିଧାଭିନ୍ନ ହୋଇ ତାହାଙ୍କୁ ପଥ ପ୍ରଦାନ କରୁଥିଲେ । ତାହାଙ୍କର କ୍ୱାପି ଗତିରୋଧ କିମ୍ବା ଧ୍ୱଜଭଙ୍ଗାଦି ଦୁର୍ନିମିତ୍ତସବୁ ଉପସ୍ଥିତ ହେଉ ନ ଥିଲା । ସେ ଶସ୍ୟ ନିମିତ୍ତ ଏହି ପୃଥିବୀକୁ ସପ୍ତ ଦଶବାର ଦୋହନ କରିଥିଲେ । ତଦ୍ଦ୍ୱାରା ଯକ୍ଷ ରାକ୍ଷସ, ଏବଂ ନାଗଗଣ ସମସ୍ତେ ନିଜନିଜ ଅଭିଲଷିତ ଦ୍ରବ୍ୟସବୁ ପ୍ରାପ୍ତ ହୋଇଥିଲେ । ଏହି ପ୍ରକାରେ ସେହି ମହାତ୍ମା ପୃଥୁ ଭୂପାଳ ଙ୍କ ମଧ୍ୟରେ ଧର୍ମ୍ମ ସଂସ୍ଥାପନପୂର୍ବକ ପ୍ରକୃତିବର୍ଗଙ୍କର ମନୋରଞ୍ଜନ କଲେ । ତଦବଧି ପୃଥିବୀର ରାଜା ଏହି ଶବ୍ଦ ପ୍ରଚଳିତ ହେଲା । ୧୨୫ ।

ବ୍ରାହ୍ମଣମାନଙ୍କୁ କ୍ଷତରୁ ପରିତ୍ରାଣ କରିବାରୁ କ୍ଷତ୍ରିୟ ବୋଲି ଅଭିହିତ ହେଲେ । ପୃଥୁରାଜ ଧର୍ମ୍ମାନୁସାରେ ମେଦିନୀକୁ ପ୍ରଥିତ କରିଥିଲେ । ସେହି ନିମିତ୍ତ ଏହି ବସୁନ୍ଧରା ପୃଥିବୀ ବୋଲି ବିଖ୍ୟାତ ହେଲା । ୧୨୬ ।

ହେ ଭରତ ! ସନାତନ ବିଷ୍ଣୁ ସ୍ୱୟଂ ରାଜାମାନଙ୍କର ଏହି ମର୍ଯ୍ୟାଦା ସ୍ଥାପନ କଲେ ଓ କହିଲେ:—ହେ ରାଜନ୍ ! ତୁମ୍ଭଙ୍କୁ କେହି ଅତିକ୍ରମ କରିପାରିବେ ନାହିଁ । ୧୨୭ ।

ଭଗବାନ୍ ବିଷ୍ଣୁ ତପସ୍ୟାଦ୍ୱାରା ଭୂପତିଙ୍କର ଶରୀର ମଧ୍ୟରେ ପ୍ରବେଶ କଲେ । ହେ ମହାରାଜ ! ଅଖିଳ ଜଗତ୍-ଦେବ ସଦୃଶ ସେହି ସେହି ନରଦେବଙ୍କଠାରେ ନତ ହୋଇଥିଲେ । ହେ ନରନାଥ !

ଯେ ସ୍ଵରଦ୍ଵାରା ତ୍ରିଲୋକ ବୃତ୍ତାନ୍ତ ଅବଲୋକନ କରେ ତାହାଙ୍କୁ କେହି ନଷ୍ଟ କରିବାକୁ ସମର୍ଥ ହୁଏ ନାହିଁ ଏବଂ ଦଣ୍ଡନୀତି ନୟମାନୁସାରେ ସର୍ବଦା ରାଜ୍ୟରକ୍ଷା କରିବା କର୍ତ୍ତବ୍ୟ । ୧୨୯ ।

ନୃପତିଙ୍କର ଚିତ୍ତବୃତ୍ତି ଏବଂ ପ୍ରଜାମାନଙ୍କର ସମତା ଅନୁସାରେ ତାହାଙ୍କର କୃତ ଶୁଭକାର୍ଯ୍ୟାଦିର ଫଳ ଶୁଭରୂପରେ ପରିଣତ ହୁଏ । ସମସ୍ତ ଲୋକେ ଯେ ଏକ ବ୍ୟକ୍ତିଙ୍କର ବଶୀଭୂତ ହୋଇଥାନ୍ତି ଏହି ଦୈବ-ନିର୍ବନ୍ଧ ତାହାର କାରଣ ଅଟେ । ହେ ପାଣ୍ଡୁନନ୍ଦନ ! ସେହି ସମୟରେ ବିଷ୍ଣୁଙ୍କର ଲଲାଟ ଦେଶରୁ ଗୋଟିଏ ସୌବର୍ଣ୍ଣ କମଳ ଉତ୍ପନ୍ନ ହେଲା । ତଦ୍ଵାରା ଧୀମାନ୍ ଧର୍ମଙ୍କର ପତ୍ନୀ ଅର୍ଥାତ୍ ପାଳୟିତ୍ରୀ ଶ୍ରୀସମ୍ଭୂତା ହେଲେ । ଧର୍ମତଃ ଶ୍ରୀରୁ ଅର୍ଥସବୁ ଉତ୍ପନ୍ନ ହେଲା ।୧୩୨।

ତଦବଧି ରାଜ୍ୟମଧ୍ୟରେ ଶ୍ରୀ, ଅର୍ଥ ଏବଂ ଧର୍ମ, ଏହି ତିନୋଟି ପ୍ରତିଷ୍ଠିତ ହେଲା । ପୂର୍ବଜନ୍ମ କୃତ ସୁକୃତର କ୍ଷୟ ହେବାରୁ ମନୁଷ୍ୟ ସ୍ଵର୍ଗଲୋକରୁ ମର୍ତ୍ତ୍ୟଲୋକକୁ ଆଗମନପୂର୍ବକ ସତ୍ତ୍ଵଗୁଣାବଲମ୍ବୀ, ବୁଦ୍ଧିମାନ, ଦଣ୍ଡନୀତିବିଶାରଦ ଭୂପତି ହୋଇ ଜନ୍ମ ଗ୍ରହଣ କଲେ ଏବଂ ପୃଥ୍ଵୀରେ ଦେବଗଣଙ୍କ କର୍ତ୍ତୃକ ଅଭିଷିକ୍ତ ହୋଇ ଅସୀମ ମାହାତ୍ମ୍ୟକୁ ପ୍ରାପ୍ତ ହେଲେ । ଏହି କାରଣରୁ ଅଖିଳ ଜଗତ ଏକ ବ୍ୟକ୍ତିଙ୍କର ବଶୀଭୂତ ହୋଇଥାଏ ଏବଂ ତାହାଙ୍କର ଶାସନକୁ ଅତିକ୍ରମ କରେ ନାହିଁ, କିନ୍ତୁ ରାଜା ଜଗଦ୍‌ବିଧାନକର୍ତ୍ତା ହୋଇଥିଲେ ଜ୍ଞାନ କର ଯେ ତାହାଙ୍କର ବଶୀଭୂତ ଥାଇ ତାହା ନୁହେ ।୧୩୫।

ହେ ରାଜେନ୍ଦ୍ର ! ଶୁଭକର୍ମର ଫଳ ଶୁଭ ରୂପରେ ପରିଣତ ହୁଏ, ଦେଶ ସମସ୍ତଙ୍କର କର ଚରଣାଦି ଅବୟବ ସମାନ ହେଲେ ହେଁ ସେମାନେ ଏକ ବ୍ୟକ୍ତିଙ୍କର ଆଜ୍ଞାନୁବର୍ତ୍ତୀ ହୋଇଥାନ୍ତି ।୧୩୬।

ଯେ ତାହାଙ୍କର ସେହି ମନୋହର ମୁଖକୁ ଦର୍ଶନ କରେ, ସେ ତାହାଙ୍କର ବଶୀଭୂତ ହୁଏ, ତାହାଙ୍କୁ ମଙ୍ଗଳମୟ, ରୂପବାନ୍ ଏବଂ ଅର୍ଥଶାଳୀ ବୋଲି ଦର୍ଶନ କରନ୍ତି ।୧୩୭।

ତାହାଙ୍କର ସୁମହତ, ଦଣ୍ଡ ପ୍ରଭାବରୁ ଧର୍ମ ସଂସ୍ଥାପନର ମୂଳଭୂତ ବିଶିଷ୍ଟ ଲକ୍ଷଣାନ୍ୱିତ ଏବଂ ବିପୁଳନୟ ପ୍ରବୃତ୍ତିରୁ ଦୃଷ୍ଟ ହୁଏ ।୧୩୮।

ଏହି ପ୍ରକାର ସେହି ପିତାମହପ୍ରଣୀତ ଶାସ୍ତ୍ର ମଧ୍ୟରେ ପୁରାଣମାନଙ୍କର ଆଗମ, ମହର୍ଷିଗଣଙ୍କର ସମ୍ଭବ, ତୀର୍ଥବଂଶ ଏବଂ ନକ୍ଷତ୍ର

ବଂଶମାନଙ୍କର ଉତ୍ପତ୍ତି, ଗାର୍ହସ୍ଥ୍ୟ ପ୍ରଭୃତି ସ୍ବତନ୍ତ୍ର ଆଶ୍ରମର ନିୟମ, ସ୍ତ୍ରୀଦୋଷ, ସ୍ତ୍ରୀବର୍ଣ୍ଣ୍ୟ ଏବଂ ସ୍ତ୍ରୀବିଦ୍ୟ, ସମସ୍ତ କୀର୍ତ୍ତିତ ହୋଇଅଛି ।୧୪୦।

ଏହି ଶାସ୍ତ୍ର ମଧ୍ୟରେ ଇତିହାସ, ବେଦ, ନ୍ୟାୟ, ତପସ୍ୟା, ଜ୍ଞାନ, ଅହିଂସା, ସତ୍ୟ, ମିଥ୍ୟା ଏବଂ ଉତ୍କୃଷ୍ଟ ମାନ ସବୁ ବିସ୍ତାରିତ ରୂପରେ ବର୍ଣ୍ଣିତ ହୋଇଅଛି ।୧୪୧।

ବୃଦ୍ଧଗଣଙ୍କର ସେବା, ଦାନ, ଶୌଚ, ଉତ୍ଥାନ, ଏବଂ ଭୂତଙ୍କଠାରେ ଅନୁକମ୍ପା ପ୍ରକାଶ ଏହି ସମସ୍ତ ତନ୍ତ୍ରମଧ୍ୟରେ ବର୍ଣ୍ଣିତ ହୋଇଅଛି ।୧୪୨।

ଏହି ଭୂତଳ ମଧ୍ୟରେ ଯେଉଁସବୁ କାର୍ଯ୍ୟ ଅଛି ତତ୍‌ସମସ୍ତ ସେହି ପିତାମହପ୍ରଣୀତ ଶାସ୍ତ୍ର ମଧ୍ୟରେ ନିଃସନ୍ଦେହଭାବରେ କୀର୍ତ୍ତିତ ହୋଇଅଛି ।୧୪୩।

ହେ ରାଜେନ୍ଦ୍ର ! ସେହି ଦିନଠାରୁ "ଦେବତାମାନେ ଏବଂ ନର ଦେବଗଣ ସମାନ" ବୋଲି ପଣ୍ଡିତମାନେ କହନ୍ତି । ହେ ଭରତ ଶ୍ରେଷ୍ଠ ମହାରାଜ ! ଏହିସବୁ ରାଜାମାନଙ୍କର କର୍ତ୍ତବ୍ୟ ବିଷୟ ସମ୍ପୂର୍ଣ୍ଣ ରୂପରେ କଥିତ ହେଲା । ଅନ୍ୟ କ'ଣ କହିବି ତାହା କହ ।୧୪୪।

---

## ଅଧ୍ୟାୟ—୬୦

ବୈଶମ୍ପାୟନ କହିଲେ—ତଦନନ୍ତର ନିୟମଶୀଳ ଯୁଧିଷ୍ଠିର ଗଙ୍ଗାନନ୍ଦନ ପିତାମହ ଭୀଷ୍ମଙ୍କୁ ଅଭିବାଦନ କରି କୃତାଞ୍ଜଳି ହସ୍ତରେ ପୁନର୍ବାର ପ୍ରଶ୍ନ କଲେ; ହେ କୁରୁପୁଙ୍ଗବ ! ଅନୁଲୋମ ଏବଂ ବିଲୋମଜାତ ବର୍ଣ୍ଣମାନଙ୍କର ସାଧାରଣ ଧର୍ମ କ'ଣ ? ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଓ ଶୂଦ୍ର ଏହି ବର୍ଣ୍ଣ ଚତୁଷ୍ଟୟର ପୃଥକ ଧର୍ମ ଓ ଆଶ୍ରମ କ'ଣ ? ଯେଉଁ ଧର୍ମ ରାଜଧର୍ମ ବୋଲି ଅନୁମତ ? କି ପ୍ରକାର ରାଜ୍ୟ ପରିବର୍ଦ୍ଧିତ ହୁଏ ଏବଂ କେଉଁ ଉପାୟ ଅବଲମ୍ବନ କଲେ ନୃପତି, ଭୃତ୍ୟଗଣ ଓ ପୁରବାସୀମାନେ ଉନ୍ନତି ଲାଭ କରନ୍ତି ? ନୃପତି କିପ୍ରକାର କୋଷ, ଦଣ୍ଡ, ଦୁର୍ଗ, ସହାୟ, ମନ୍ତ୍ରୀ, ଋତ୍ୱିକ, ପୁରୋହିତ ଏବଂ ଆଚାର୍ଯ୍ୟଗଣଙ୍କୁ ପରିତ୍ୟାଗ କରିବେ ? ହେ

ପିତାମହ ! ଏତାଦୃଶ ଆପଦ ଉପସ୍ଥିତ ହେଲେ କାହାପ୍ରତି ବିଶ୍ୱାସ କରିବା କର୍ତ୍ତବ୍ୟ ଏବଂ କେଉଁ ବିଷୟରୁ ଆତ୍ମାକୁ ସର୍ବତୋଭାବରେ ରକ୍ଷା କରିବା ବିଧେୟ ? ଆପଣ ଏହିସବୁ ଆମ୍ଭଠାରେ ବର୍ଣ୍ଣନ କରନ୍ତୁ ।୭।

ଭୀଷ୍ମ କହିଲେ—ଆମ୍ଭେ ସେହି ମହତ ଧର୍ମ, ପୂର୍ଣ୍ଣବ୍ରହ୍ମ କୃଷ୍ଣ ଓ ବ୍ରାହ୍ମଣମାନଙ୍କୁ ନମସ୍କାରପୂର୍ବକ ଶାଶ୍ୱତ ଧର୍ମ ବ୍ୟାଖ୍ୟା କରିବୁଁ । ହେ ଯୁଧିଷ୍ଠିର ! ଅକ୍ରୋଧ, ସତ୍ୟବଚନ, ସମ୍ବିଭାଗ, କ୍ଷମା, ସ୍ୱଦାରରତି, ଶୌଚ, ଅଦ୍ରୋହ, ଆର୍ଜବ ଓ ଭୃତ୍ୟଭରଣ ଏହି ନଅ ଗୋଟି ଅନୁଲୋମ ଏବଂ ବିଲୋମ ଜାତ ସମସ୍ତ ବର୍ଣ୍ଣମାନଙ୍କର ସାଧାରଣ ଧର୍ମ । ଅତଃପର ଯେଉଁସବୁ ଧର୍ମ କେବଳ ବ୍ରାହ୍ମଣମାନଙ୍କର ଆଚରଣୀୟ, ତାହା କହୁଅଛୁଁ ଶ୍ରବଣ କର ।୮।

ହେ ମହାରାଜ ! ଦମ ଅର୍ଥାତ୍ ବାହ୍ୟେନ୍ଦ୍ରିୟ ନିଗ୍ରହ, ତପଃ କ୍ଲେଶ ସହିଷ୍ଣୁତା ଏବଂ ଯଦ୍ଦ୍ୱାରା ଅପର ସାଂସାରିକ କାର୍ଯ୍ୟସମୂହର ସମାପ୍ତି ହୁଏ, ଏତାଦୃଶ ବେଦାଧ୍ୟୟନ କରିବା ବ୍ରାହ୍ମଣମାନଙ୍କର ସନାତନ ଧର୍ମ । ଏହିପରି ଶାନ୍ତ ପ୍ରକୃତି ଓ ପ୍ରାଜ୍ଞ ବ୍ରାହ୍ମଣ ଦୁଷ୍କର୍ମରତ ନ ହୋଇ ନିଜ କର୍ମରେ ରତ ଥିଲେ ଯଦି ଅର୍ଥସବୁ ସ୍ୱୟଂ ତାହାଙ୍କଠାରେ ଉପସ୍ଥିତ ହୁଏ, ତାହା ହେଲେ ସେ ସନ୍ତାନୋତ୍ପାଦନ ବାସନାରେ ଦାରପରିଗ୍ରହ-ପୂର୍ବକ ନିୟତ ଦାନ ଏବଂ ଯଜ୍ଞାଦି ସତ୍କର୍ମ କରିବେ । ଅପିଚ ପଣ୍ଡିତମାନେ କହିଅଛନ୍ତି ଯେ ସେହି ଅର୍ଥ ସ୍ୱଜନମାନଙ୍କ ସହିତ ସମଭାଗରେ ଭୋଗ କରିବେ ।୧୦।

ବେଦାଧ୍ୟୟନ ସମ୍ପୂର୍ଣ୍ଣ ହେଲେ ବ୍ରାହ୍ମଣମାନଙ୍କର ସମସ୍ତ କାର୍ଯ୍ୟ ସମାପ୍ତ ହୁଏ, ଅତଃପର ସେ ଅନ୍ୟ କୌଣସି କର୍ମ କରନ୍ତୁ କିମ୍ବା ନ କରନ୍ତୁ, ସର୍ବଭୂତଙ୍କର ପ୍ରିୟ-ବ୍ରାହ୍ମଣ ବୋଲି ଅଭିହିତ ହୁଅନ୍ତି ।୧୨।

ହେ ଭାରତ ! କ୍ଷତ୍ରିୟମାନଙ୍କର ଯେଉଁସବୁ ପୃଥକ ପୃଥକ ଧର୍ମ ଅଛି ତାହା ମଧ୍ୟ ତୁମ୍ଭଙ୍କୁ କହୁଅଛୁଁ, ଶ୍ରବଣ କର । କ୍ଷତ୍ରିୟ ଦାନ କରିବେ; କିନ୍ତୁ ପ୍ରତିଗ୍ରହ କରିବେ ନାହିଁ । ଯଜ୍ଞାଦି କରିବେ; କିନ୍ତୁ ଯାଜନ କରିବେ ନାହିଁ,ଅଧ୍ୟୟନ କରିବେ; କିନ୍ତୁ କାହାକୁ ଅଧ୍ୟାପନା କରିବେ ନାହିଁ । ପ୍ରକୃତି-ବୃନ୍ଦଙ୍କୁ ସର୍ବତୋଭାବରେ ପ୍ରତିପାଳନ କରିବେ; ନିୟତ ଦସ୍ୟୁ ବଧରେ ନିଯୁକ୍ତ ଥିବେ ଏବଂ ରଣଭୂମିରେ ପରାକ୍ରମ ପ୍ରକାଶ କରିବେ ।୧୪।

ଯେଉଁ ଭୂପତିମାନେ ଅଶ୍ୱମେଧାଦି ଯଜ୍ଞସମୂହଦ୍ୱାରା ଭୂମଣ୍ଡଳରେ ମହତୀ କୀର୍ତ୍ତି ଲାଭ କରିଅଛନ୍ତି ଏବଂ ଯେଉଁମାନେ ସମରକ୍ଷେତ୍ରରେ ଜୟଲାଭ କରିଥାନ୍ତି, ସେମାନେ ତ୍ରିଲୋକବାସୀ ଲୋକମାନଙ୍କୁ ବଶୀଭୂତ କରିପାରନ୍ତି ।୧୬।

କ୍ଷତ୍ରିୟ ଅକ୍ଷତ ଶରୀରରେ ସମରରୁ ନିବୃତ୍ତ ହେଲେ, ଧର୍ମଦର୍ଶୀ ପଣ୍ଡିତମାନେ ତାହାଙ୍କର ସେହି କାର୍ଯ୍ୟକୁ ପ୍ରଶଂସା କରନ୍ତି ନାହିଁ ।୧୭।

କ୍ଷତ୍ରବନ୍ଧୁ ଅର୍ଥାତ୍ ଅଧମ କ୍ଷତ୍ରିୟମାନଙ୍କର ପ୍ରଧାନତଃ ଏହିପଥକୁ ଅବଲମ୍ବନ କରିବା କର୍ତ୍ତବ୍ୟ; ପରନ୍ତୁ ଦସ୍ୟୁନିବର୍ହଣ ଭିନ୍ନ ଅନ୍ୟ କୌଣସି କର୍ମ୍ମ ଏମାନଙ୍କର କର୍ତ୍ତବ୍ୟତମ ବୋଲି ଅଭିହିତ ହୁଏ ନାହିଁ । ଦାନ, ଅଧ୍ୟୟନ ଏବଂ ଯଜ୍ଞ ରାଜାମାନଙ୍କର ମଙ୍ଗଳ ବିଧାନ କରେ । ଅତଏବ ଧର୍ମ୍ମାକାଙ୍‌କ୍ଷୀ ନୃପତିଙ୍କର ବିଶେଷ ଯତ୍ନସହକାରେ ଯୁଦ୍ଧ କରିବା କର୍ତ୍ତବ୍ୟ ।୧୮।

ରାଜା ପ୍ରକୃତିବର୍ଗଙ୍କୁ ନିଜର ଧର୍ମ୍ମରେ ଅବସ୍ଥାପିତ କରି ଧର୍ମାନୁସାରେ ସମଭାବରେ ସମସ୍ତ କାର୍ଯ୍ୟ ସମ୍ପାଦନ କରିବେ ।୧୯।

ଏହିପରି ପ୍ରଜାପାଳନଦ୍ୱାରା ରାଜାଙ୍କର ସମସ୍ତ କାର୍ଯ୍ୟ ସମାପ୍ତ ହୁଏ, ଅତଃପର ସେ ଅନ୍ୟ କୌଣସି କାର୍ଯ୍ୟ କରନ୍ତୁ କିମ୍ବା ନ କରନ୍ତୁ, ସର୍ବଭୂତଙ୍କର ପ୍ରଧାନ ରାଜନ୍ୟ ବୋଲି ଅଭିହିତ ହୁଅନ୍ତି ।୨୦।

ହେ ଯୁଧିଷ୍ଠିର ! ବୈଶ୍ୟଙ୍କର ଯେଉଁ ସବୁ ଶାଶ୍ୱତ ଧର୍ମ ଅଛି, ତାହା ତୁମ୍ଭଙ୍କୁ କହୁଅଛୁଁ, ଶ୍ରବଣ କର । ବୈଶ୍ୟ ଦାନ, ଅଧ୍ୟୟନ, ଯଜ୍ଞ ବିଶୁଦ୍ଧ ଉପାୟ ଅବଲମ୍ବନଦ୍ୱାରା ଧନ ସଞ୍ଚୟ ଏବଂ ଅନୁରାଗ ସହିତ ପିତା ସଦୃଶ ପଶୁଗଣଙ୍କୁ ପାଳନ କରିବେ । ଅନ୍ୟ କୌଣସି କାର୍ଯ୍ୟ କରିବେ ନାହିଁ । କାରଣ ଏତଦ୍‌ଭିନ୍ନ ଅପର ସମସ୍ତ କାର୍ଯ୍ୟ ସେମାନଙ୍କର ଅକର୍ତ୍ତବ୍ୟ ଅଟେ ।୨୨।

ପ୍ରଜାପତିଙ୍କର ସୃଷ୍ଟି ପରେ ବ୍ରାହ୍ମଣ ଏବଂ ରାଜନ୍ୟବର୍ଗଙ୍କୁ ସର୍ବଜାତୀୟ ପ୍ରଜା ପ୍ରଦାନ କରି ଅଛନ୍ତି ଓ ବୈଶ୍ୟମାନଙ୍କୁ ପଶୁସବୁ ପ୍ରଦାନ କରିଅଛନ୍ତି । ଅତଏବ ବୈଶ୍ୟମାନେ ତଦନୁସାରେ ପଶୁରକ୍ଷାରେ ନିଯୁକ୍ତଥିଲେ ସୁମହତ ସୁଖପ୍ରାପ୍ତ ହୁଅନ୍ତି । ଅତଃପର ଏମାନେ ଯେଉଁ ବୃତ୍ତି ଅବଲମ୍ବନପୂର୍ବକ ଜୀବିକାନିର୍ବାହ କରିବେ, ତାହା ମଧ୍ୟ କହୁଅଛୁ । ୨୪।

୨୩୨ (ଘ)

ଯେଉଁ ବୈଶ୍ୟ ଛଅଗୋଟି ଧେନୁପାଳନ କରନ୍ତି, ସେ ସ୍ୱକୀୟ ବେତନରୂପେ ଗୋଟିଏ ଧେନୁର ଦୁଗ୍ଧ ପାନ କରିବେ । ଯେଉଁ ବୈଶ୍ୟ ଅନ୍ୟ ବ୍ୟକ୍ତିଙ୍କର ଶତଗୋଟି ଗୋପାଳନ କରନ୍ତି, ସେ ନିଜର ବାର୍ଷିକ ବେତନରୂପେ ଗୋଟିଏ ଗୋମିଥୁନ ପ୍ରାପ୍ତ ହେବେ । ଶୃଙ୍ଗ ଓ ଖୁରଭିନ୍ନ ଦ୍ରବ୍ୟମାନଙ୍କର ବାଣିଜ୍ୟରେ ଲବ୍ଧ ହୋଇଥିବା ଧନର ସପ୍ତମଭାଗ ଏବଂ ସର୍ବ ପ୍ରକାର ଶସ୍ୟ ଓ ବୀଜର ସପ୍ତମାଂଶ ବୈଶ୍ୟଙ୍କର ସାମ୍ବତ୍ସରିକ ବେତନ ଅଟେ । ବୈଶ୍ୟ ପଶୁପାଳନରେ ଅନିଚ୍ଛା ପ୍ରକାଶ କରିବେ ନାହିଁ ଏବଂ ସେମାନେ ଯଦି ପଶୁରକ୍ଷା କରିବାକୁ ଇଚ୍ଛା କରନ୍ତି, ତା ହେଲେ ଅନ୍ୟ କୌଣସି ବର୍ଣ୍ଣର ପଶୁରକ୍ଷା କରିବା କର୍ତ୍ତବ୍ୟ ନୁହେଁ । ହେ ଭାରତ ! ଶୂଦ୍ରଙ୍କର ଯେଉଁ ଧର୍ମ, ତାହା କହୁଅଛୁଁ, ଶ୍ରବଣ କର । ୨୬ ।

ପ୍ରଜାପତି ଶୂଦ୍ରମାନଙ୍କୁ ଅନ୍ୟ ବର୍ଣ୍ଣମାନଙ୍କର ଦାସ ବୋଲି ନିର୍ଦ୍ଦେଶ କରି ଅଛନ୍ତି । ସୁତରାଂ ସମସ୍ତ ବର୍ଣ୍ଣ ପରିଚର୍ଯ୍ୟା କରିବା ଶୂଦ୍ରର କର୍ତ୍ତବ୍ୟ । କାରଣ ସେମାନଙ୍କର ଶୁଶ୍ରୂଷା କଲେ ଶୂଦ୍ର ସୁମହତ ସୁଖ ପ୍ରାପ୍ତ ହୁଏ । ଶୂଦ୍ର ପର୍ଯ୍ୟାୟକ୍ରମରେ ବ୍ରାହ୍ମଣ, କ୍ଷତ୍ରିୟ ଏବଂ ବୈଶ୍ୟ ଏହି ବର୍ଣ୍ଣତ୍ରୟର ପରିଚର୍ଯ୍ୟାରେ ନିଯୁକ୍ତ ଥିବେ କିନ୍ତୁ କଦାପି ଧନ ସଞ୍ଚୟ କରିବେ ନାହିଁ । କାରଣ ସେମାନେ ଧନବାନ୍ ହେଲେ ନିଜ ଅପେକ୍ଷା ଶ୍ରେଷ୍ଠଗଣଙ୍କ ବଶୀଭୂତ କରିବେ ଓ ଅକାର୍ଯ୍ୟସବୁ କରିବାରେ ପ୍ରବୃତ୍ତ ହେବେ; କିନ୍ତୁ ନୃପତିଙ୍କର ଆଦେଶାନୁସାରେ ଲୋଭପରବଶ ହୋଇ ଧର୍ମପ୍ରଧାନ କାର୍ଯ୍ୟସବୁ କରିବାନିମିତ୍ତ ସାମାନ୍ୟ ଧନସଞ୍ଚୟ କରିପାରିବେ । ଶୂଦ୍ରମାନେ ଯେଉଁ ବୃତ୍ତି ଅବଲମ୍ବନ କରିବେ ଏବଂ ଯଦ୍ଦ୍ୱାରା ଜୀବିକା ନିର୍ବାହ କରିବେ ତାହା ମଧ୍ୟ କହୁଅଛୁଁ । ୩୧ ।

ଶୂଦ୍ର ବ୍ରାହ୍ମଣାଦି ବର୍ଣ୍ଣ ତ୍ରୟଙ୍କର ଅବଶ୍ୟ ଭରଣୀୟ । ଉଶୀର ବେଷ୍ଟନ, ଜୀର୍ଣ୍ଣଛତ୍ର, ଉପାନହ ଏବଂ ବ୍ୟଜନସବୁ ପରିଚାରକ ଶୂଦ୍ରମାନଙ୍କୁ ପ୍ରଦାନ କରିବ । ଅପରିଧେୟ ବିଶୀର୍ଣ୍ଣ ବସନସବୁ ଶୂଦ୍ରମାନଙ୍କୁ ଦ୍ୱିଜାତିମାନଙ୍କର ପ୍ରଦାନ କରିବା କର୍ତ୍ତବ୍ୟ; କାରଣ ତାହା ସେମାନଙ୍କର ଧର୍ମଧନ । ଧାର୍ମିକ ମନୁଷ୍ୟମାନେ କହନ୍ତି ଯେ ଶୂଦ୍ର ଶୁଶ୍ରୂଷୁ ହୋଇ ଦ୍ୱିଜାତିଗଣଙ୍କ ମଧ୍ୟରୁ ଯେ କୌଣସି ବ୍ୟକ୍ତିଙ୍କ ନିକଟକୁ ଗମନ କଲେ ସେ ତାହାର ଉପଯୁକ୍ତ ବୃତ୍ତି କଳ୍ପନା କରି ଦେବେ । ପ୍ରତିପାଳକ ଦ୍ୱିଜାତି

ଅପତ୍ୟବିହୀନ ହେଲେ ଶୂଦ୍ର ତାହାଙ୍କୁ ପିଣ୍ଡ ପ୍ରଦାନ କରିବେ ଏବଂ ବୃଦ୍ଧ ଅଥବା ଦୁର୍ବଳ ହେଲେ ତାହାଙ୍କର ଭରଣ କରିବେ । ୩୫ ।

ଅଧିକରେ ଯେ କୌଣସି ବିପଦ ଉପସ୍ଥିତ ହେଲେ ସୁଦ୍ଧା କୌଣସି ଅବସ୍ଥାରେ ଭର୍ତ୍ତାଙ୍କୁ ପରିତ୍ୟାଗ କରିବା ଶୂଦ୍ରଙ୍କର କର୍ତ୍ତବ୍ୟ ନୁହେଁ । ପ୍ରଭୁଙ୍କର ହୀନଦଶା ଉପସ୍ଥିତ ହେଲେ ସ୍ୱୀୟ କୁଟୁମ୍ବମାନଙ୍କ ଅପେକ୍ଷା ଅଧିକଭାବରେ ତାହାଙ୍କର ଭରଣାଦି କରିବା ଶୂଦ୍ରର କର୍ତ୍ତବ୍ୟ । ୩୬ ।

କାରଣ ଶୂଦ୍ରଙ୍କର ଯାହାକିଛି ଧନାଦି ଥାଏ ତତ୍ସମସ୍ତ ସ୍ୱାମୀଙ୍କର ଅଟେ । ତନ୍ମଧ୍ୟରେ ତାହାଙ୍କର କୌଣସି ସ୍ୱତ୍ୱ ନାହିଁ । ହେ ଭାରତ ! ବ୍ରାହ୍ମଣାଦି ବର୍ଣ୍ଣତ୍ରୟଙ୍କର ଧର୍ମ ଏବଂ ଯଜ୍ଞାଦି ଉକ୍ତ ହୋଇଅଛି; କିନ୍ତୁ ଶୂଦ୍ରଗଣଙ୍କର ସ୍ୱାହାକାର, ବଷଟ୍‌କାର ଏବଂ ଅପର ବୈଦିକ ମନ୍ତ୍ର-ମାନଙ୍କରେ ଅଧିକାର ନାହିଁ । ସୁତରାଂ ସେମାନେ ସ୍ୱୟଂ ଶ୍ରୌତ ବ୍ରତ-ବିହୀନ ହୋଇ ଗ୍ରହଶାନ୍ତି ଏବଂ ବୈଶ୍ୱଦେବାଦି କ୍ଷୁଦ୍ର ଯଜ୍ଞସବୁ ସମ୍ପାଦନ-ପୂର୍ବକ ଶାସ୍ତ୍ରୋକ୍ତ ପୂର୍ଣ୍ଣ ପାତ୍ରମୟୀ ଦକ୍ଷିଣା ପ୍ରଦାନ କରିବେ । ୩୮ ।

ହେ ମହାରାଜ ! ଆମ୍ଭେମାନେ ଶ୍ରବଣ କରିଅଛୁଁ ଯେ ପୂର୍ବେ ପୈଜବନ ନାମକ ଶୂଦ୍ର ଐନ୍ଦ୍ରାଗ୍ନ୍ୟ ବିଧାନରେ ଯଜ୍ଞକରି ଦକ୍ଷିଣା ସ୍ୱରୂପ ଏକଲକ୍ଷ୍ୟ ଗୋଦାନ କରିଥିଲେ । ୩୯ ।

ବ୍ରାହ୍ମଣାଦି ବର୍ଣ୍ଣତ୍ରୟ ଯେଉଁ ଯଜ୍ଞାଦି ଅନୁଷ୍ଠାନ କରନ୍ତି, ସେମାନଙ୍କର ସେବକ ଶୂଦ୍ରଗଣ ମଧ୍ୟ ତାହାର ଫଳଭାଗୀ ହୁଅନ୍ତି । ସର୍ବ ପ୍ରକାର ଯଜ୍ଞ ଅପେକ୍ଷା ଶ୍ରଦ୍ଧାଯଜ୍ଞ କେବଳ ଶ୍ରେଷ୍ଠ ଏବଂ ଯଜମାନମାନଙ୍କର ପବିତ୍ର ସୁମହତ୍ତ । ଦୈବତ ବ୍ରାହ୍ମଣମାନେ ମଧ୍ୟ ନିଜ ନିଜ ସେବକ ଶୂଦ୍ର-ଗଣଙ୍କର ସୁମହତ ଦୈବତ ଅଟନ୍ତି । ସୁତରାଂ ସେବକ ଶୂଦ୍ରମାନେ ଶ୍ରଦ୍ଧା-ସହକାରେ ବ୍ରାହ୍ମଣମାନଙ୍କର ଆରାଧନା କଲେ ସ୍ୱାମୀକୃତ ଯଜ୍ଞାଦିର ଫଳଭାଗୀ ହେବେ । ବ୍ରାହ୍ମଣମାନଙ୍କଠାରୁ ଇତରବର ବର୍ଣ୍ଣତ୍ରୟର ସୃଷ୍ଟି ହୋଇଅଛି । ସୁତରାଂ ସେମାନେ ସମାହିତ ଚିତ୍ତ ହୋଇ କାମନାସହକାରେ ଯଜ୍ଞାଦି ନ କଲେ ସୁଦ୍ଧା ଅବଶ୍ୟ ବ୍ରାହ୍ମଣଙ୍କ କୃତ ଯଜ୍ଞାଦିର ଫଳଭାଗୀ ହୋଇଥାନ୍ତି । ୪୨ ।

ଯେଉଁମାନେ ଦେବଗଣଙ୍କ ବେଦ, ସେହି ବ୍ରାହ୍ମଣମାନେ ଯାହା କହିବେ, ତାହା ପରମ ମଙ୍ଗଳ ଅଟେ । ସେଥିପାଇଁ ଶୂଦ୍ରାଦି ବର୍ଣ୍ଣମାନେ ସ୍ୱେଚ୍ଛାନୁସାରେ ଶ୍ରୌତ କିମ୍ବା ସ୍ମାର୍ତ୍ତ ଯଜ୍ଞାଦି କରିବେ ନାହିଁ । ୪୩ ।

ଋକ୍, ଯଜୁ, ଏବଂ ସାମବିତ ବ୍ରାହ୍ମଣ ଶୂଦ୍ରମାନଙ୍କ ନିକଟରେ ଦେବ ସଦୃଶ ପୂଜନୀୟ ଅଟନ୍ତି ଏବଂ ଦାସରୂପରେ ପରିଗଣିତ ଶୂଦ୍ର ବେଦତ୍ରୟରେ ଅନଧିକାରୀ ହୋଇ ସୁଦ୍ଧା ପ୍ରଜାପତି ଦୈବତ ବୋଲି ଅଭିହିତ ହୁଅନ୍ତି । ହେ ବଂଶ ଭାରତ ! ସଂକଳ୍ପପୂର୍ବକ ଦେବୋଦ୍ଦେଶରେ ଅନୁଷ୍ଠିତ ଦ୍ରବ୍ୟ ତ୍ୟାଗରୂପ ଯଜ୍ଞମାନଙ୍କରେ ସମସ୍ତ ବର୍ଣ୍ଣର ଅଧିକାର ଅଛି । ଅଧମ ବର୍ଣ୍ଣ ଶୂଦ୍ର ସୁଦ୍ଧା ତାଦୃଶ ଯଜ୍ଞକଲେ ଦେବଗଣ ଏବଂ ଅପର ଉତ୍ତମ ବର୍ଣ୍ଣଗଣ ତାହାର ସେହି ଯଜ୍ଞଭାଗକୁ ଗ୍ରହଣ କରନ୍ତି । ହେ ମହାରାଜ ! ଏହି ହେତୁରୁ ସମସ୍ତ ବର୍ଣ୍ଣମାନଙ୍କର ଶ୍ରଦ୍ଧାଯଜ୍ଞାନୁଷ୍ଠାନ ବିଧି ଅଭିହିତ ହୋଇଅଛି । ୦୫ ।

ବ୍ରାହ୍ମଣମାନେ କ୍ଷତ୍ରିୟାଦି ବର୍ଣ୍ଣତ୍ରୟର ଅସାଧାରଣ ଦୈବତ ଅଟନ୍ତି । ସୁତରାଂ ସେହି ଆର୍ଯ୍ୟ ବ୍ରାହ୍ମଣମାନେ ଅବଶିଷ୍ଟ ବର୍ଣ୍ଣତ୍ରୟଦ୍ୱାରା ବୃତ ହୋଇ ସେମାନଙ୍କର ଫଳ ଲାଭ ବାସନାରେ ଯଜ୍ଞାଦି କରନ୍ତି ନାହିଁ । ଏହା ନିତାନ୍ତ ଅସମ୍ଭବ । ପରନ୍ତୁ "ଆମେ ଅମୁକ କାମନାରେ ଅମୁକ ଋତ୍ୱିକ ବୃତ ହୋଇ ଅମୁକ ଯଜ୍ଞ କରୁଅଛୁ" ଏହି ଉଦ୍ଦେଶ୍ୟରେ ନିୟତ ଯଜ୍ଞାଦି ଅନୁଷ୍ଠାନ କରନ୍ତି । ଏହି ପ୍ରକାରେ ବୈଶ୍ୟଗୃହରୁ ଆନୀତ ଏବଂ ମନ୍ତ୍ର ସଂସୃଷ୍ଟ ଯଜ୍ଞସବୁ ନୀଚବର୍ଣ୍ଣ ମଧ୍ୟରେ ଦୃଷ୍ଟହୁଏ । ଏହିସବୁ ଦର୍ଶନ କରି ବୋଧହୁଏ ଯେ ବ୍ରାହ୍ମଣମାନଙ୍କଠାରୁ କେବଳ କ୍ଷତ୍ରିୟାଦି ବର୍ଣ୍ଣତ୍ରୟଙ୍କର ଯଜ୍ଞସବୁ ସୃଷ୍ଟ ହୋଇଅଛି । ୪୬ ।

ଯେହେତୁ ବ୍ରାହ୍ମଣମାନେ କ୍ଷତ୍ରିୟାଦି ବର୍ଣ୍ଣତ୍ରୟର ଯଜ୍ଞସ୍ରଷ୍ଟା ଅଟନ୍ତି ଏବଂ ଯେ ହେତୁ ବ୍ରାହ୍ମଣମାନଙ୍କର ବିକାରରେ କ୍ଷତ୍ରିୟାଦି କନ୍ୟାମାନଙ୍କଠାରେ କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରମାନଙ୍କର ଉତ୍ପତ୍ତି ହୋଇଅଛି, ସେହି ହେତୁରୁ କ୍ଷତ୍ରିୟାଦି ବର୍ଣ୍ଣତ୍ରୟ ମଧ୍ୟ ସାଧୁ ଓ ବ୍ରାହ୍ମଣ-ମାନଙ୍କର ଜ୍ଞାତିବର୍ଣ୍ଣ ଅଟନ୍ତି; କାରଣ ଏକମାତ୍ର ବ୍ରହ୍ମରୁ ପ୍ରଥମତଃ ବ୍ରାହ୍ମଣ-ମାନଙ୍କର ଉତ୍ପତ୍ତି ହେଲା ଏବଂ ସେହି ବ୍ରାହ୍ମଣମାନଙ୍କଠାରୁ କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ତିନିବର୍ଣ୍ଣ ଉତ୍ପନ୍ନ ହୋଇ ଅଛନ୍ତି । ଯେପରି ଏକମାତ୍ର ଆକାରରୁ ସାମ, ଯଜୁ, ଓ ଋକ୍ ଏହି ତିନିବେଦ ଉତ୍ପନ୍ନ ହୋଇଅଛନ୍ତି,

ଏବଂ ସେହି ବେଦସବୁ ଯେପରି ଉକ୍ତ ଆକାରରୁ ଭିନ୍ନ ନୁହଁନ୍ତି, ସେହିପରି ଏକବ୍ରହ୍ମରୁ ବ୍ରାହ୍ମଣାଦି ବର୍ଣ୍ଣ ଚତୁଷ୍ଟୟ ଉତ୍ପନ୍ନ ହୋଇଅଛନ୍ତି ଏବଂ ସେମାନେ ପରସ୍ପର ସମାନ ଅଟନ୍ତି । ୪୭ ।

ହେ ରାଜେନ୍ଦ୍ର ! ପୁରାବିତ୍ ପଣ୍ଡିତମାନେ ଏହି ପ୍ରସ୍ତାବରେ ଉଦାହରଣସ୍ୱରୂପ ବିଷ୍ଣୁଗୀତ ଓ ଯଜ୍ଞସ୍ତୁତିବିଷୟକ ଯେ କେତୋଟି ଶ୍ଳୋକ କୀର୍ତ୍ତନ କରନ୍ତି, ତାହା ଶ୍ରବଣ କର । ୪୮ ।

ପ୍ରାତଃ, ମଧ୍ୟାହ୍ନ ଏବଂ ସାୟଂକାଳରେ ଶ୍ରଦ୍ଧାବାନ୍ ଜିତେନ୍ଦ୍ରିୟ ବ୍ୟକ୍ତିମାନେ ଯେ ଅଗ୍ନିରେ ହୋମ କରନ୍ତି ଶ୍ରଦ୍ଧା ତାହାର ମହତ କାରଣ ଅଟେ । ୪୯ ।

ବହ୍ୱୃଚ ବ୍ରାହ୍ମଣରେ ଯେଉଁ ଷୋଡ଼ଶବିଧି ଅଗ୍ନିହୋତ୍ର ଉକ୍ତ ହୋଇଅଛି ତନ୍ମଧ୍ୟରେ ଯାହା ସ୍ୱପ୍ନ, ଅର୍ଥାତ୍ ମରୁତ ଦୈବତ, ଯାହା ଅପକୃଷ୍ଟ ଏବଂ ଯାହା ଅସ୍କନ୍ନ ଅର୍ଥାତ୍ ଯଥାବିଧି ହୁତ, ତାହା ସର୍ବୋତ୍କୃଷ୍ଟ ଅଟେ । ୫୦ ।

ଯେ ସେହି ଷୋଡ଼ଶ ପ୍ରକାର ଅଗ୍ନିହୋତ୍ର, ବହୁବିଧ ଯଜ୍ଞମାନଙ୍କର ରୂପ ଏବଂ ନାନାବିଧ କର୍ମ୍ମ ଓ ତାହାର ଫଳସବୁ ଅବଗତ ଅଛନ୍ତି, ସେହି ଜ୍ଞାନୀ ଶ୍ରଦ୍ଧାବାନ୍ ଦ୍ୱିଜାତି ଯଜ୍ଞ କରିବାକୁ ସମର୍ଥ ଅଟନ୍ତି । ୫୧ ।

ଯେଉଁ ବ୍ୟକ୍ତି ଯଜ୍ଞଦ୍ୱାରା ବିଷ୍ଣୁଙ୍କୁ ଆରାଧନା କରିବାକୁ ଇଚ୍ଛା କରନ୍ତି ସେହି ବ୍ୟକ୍ତି ଯଦି ଚୋର, ପାପୀ ଅଥବା ପାପକୃତ୍ତମ ହୁଅନ୍ତି, ତଥାପି ପଣ୍ଡିତମାନେ ତାହାଙ୍କୁ ସାଧୁବୋଲି କହନ୍ତି । ୫୨ ।

ଯେତେବେଳେ ସାଧୁ ଏବଂ ମହର୍ଷିମାନେ ଏହିପରି ପ୍ରଶଂସା କରନ୍ତି ସେତେବେଳେ ସମସ୍ତ ବର୍ଣ୍ଣମାନଙ୍କର ସର୍ବଦା ସର୍ବପ୍ରକାର ଯଜ୍ଞ କରିବା କର୍ତ୍ତବ୍ୟ । ଏହା ନିର୍ଣ୍ଣୀତ ହୋଇଅଛି । ୫୩ ।

ତ୍ରୈଲୋକ୍ୟମଧ୍ୟରେ ଯଜ୍ଞ ସଦୃଶ ଅନ୍ୟ କୌଣସି କର୍ମ୍ମ ନାହିଁ, ସୁତରାଂ ସମସ୍ତଙ୍କର ଅସୂୟାରହିତ ଏବଂ ଶ୍ରଦ୍ଧାପୂତ ହୋଇ ଶକ୍ତି ଓ ଇଚ୍ଛାନୁସାରେ ଯଜ୍ଞ କରିବା କର୍ତ୍ତବ୍ୟ । ୫୪ ।

---

# ଅଧ୍ୟାୟ—୭୧

ଭୀଷ୍ମ କହିଲେ—ହେ ମହାବାହୁ ସତ୍ୟପରାକ୍ରମ ଯୁଧିଷ୍ଠିର ! ବର୍ତ୍ତମାନ ଚତୁର ଆଶ୍ରମର ନାମ ଏବଂ କର୍ମସବୁ ଶ୍ରବଣ କର । ବ୍ରହ୍ମଚର୍ଯ୍ୟ, ସୁମହତ ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ଚତୁର୍ଥ ଭୈକ୍ଷ୍ୟଚର୍ଯ୍ୟ ଏ ରୂପ ଚତୁର ଆଶ୍ରମ ବ୍ରାହ୍ମଣମାନେ ନିର୍ଦ୍ଦେଶ କରି ଅଛନ୍ତି । ୨ ।

ଦ୍ୱିଜକୁଳରେ ଜନ୍ମଲାଭ କରି ଏବଂ ଜଟାଧାରଣ ସଂସ୍କାର ଓ ଅଗ୍ନ୍ୟାଧାନାଦି କାର୍ଯ୍ୟସବୁ ସମାପନ କରି ବେଦାଧ୍ୟୟନପୂର୍ବକ ଆତ୍ମବାନ୍ ଏବଂ ସଂଯତେନ୍ଦ୍ରିୟ ସସ୍ତ୍ରୀକ ହୋଇ କମ୍ବା ପତ୍ନୀ ବିରହିତ ହୋଇ ଗୃହସ୍ଥାଶ୍ରମରେ କୃତକୃତ୍ୟଲାଭ କରି ବାନପ୍ରସ୍ଥାଶ୍ରମକୁ ଗମନ କରିବ । ୪ ।

ଏହି ପ୍ରକାରେ ବାନପ୍ରସ୍ଥାଶ୍ରମରେ ପ୍ରବେଶ କରି ସେଠାରେ ଆରଣ୍ୟକ ବାନପ୍ରସ୍ଥମାନଙ୍କର ଅନୁଶାସନସବୁ ଯଥାବତ୍ ଅଧ୍ୟୟନପୂର୍ବକ ଊର୍ଦ୍ଧ୍ୱରେତା ହୋଇ ପବ୍ରଜ୍ୟା କରି ମୋକ୍ଷପଦ ଲାଭ କରନ୍ତି । ୫ ।

ଏହିସବୁ ଊର୍ଦ୍ଧ୍ୱରେତା ମୁନିମାନଙ୍କର ମୋକ୍ଷପଦ ଲାଭ କରିବାର କାରଣ ଅଟେ । ଅତଏବ ବିଦ୍ୱାନ ବ୍ରାହ୍ମଣଙ୍କର ପ୍ରଥମତଃ ଏହିସବୁ କାର୍ଯ୍ୟ କରିବା କର୍ତ୍ତବ୍ୟ । ୬ ।

ମୋକ୍ଷାଭିଳାଷୀ ବ୍ରାହ୍ମଣ ଏହି ବ୍ରହ୍ମଚର୍ଯ୍ୟାଶ୍ରମର କର୍ତ୍ତବ୍ୟ କର୍ମସବୁ ଆଚରଣ କଲାପରେ ତାହାଙ୍କର ଭୈକ୍ଷଚର୍ଯ୍ୟରୂପ ଚତୁର୍ଥ ଆଶ୍ରମରେ ଅଧିକାର ହୁଏ । ୭ ।

ବ୍ରାହ୍ମଣ ଏହି ଆଶ୍ରମରେ ପ୍ରବେଶପୂର୍ବକ ଅସ୍ତମିତଶାୟୀ ଅର୍ଥାତ୍ ନିବାଶୟନବିହୀନ, ଆତ୍ମ-ଶୁଭେଚ୍ଛା ରହିତ, ଅନିକେତନ, ମନନଶୀଳ, ଦାନ୍ତ ଏବଂ ଜିତେନ୍ଦ୍ରିୟ ହୋଇ ଯଥାଲବ୍ଧୋପନ୍ନ ଭକ୍ଷଦ୍ରବ୍ୟରେ ଜୀବିକା ନିର୍ବାହ କରିବେ । ଆଶାବିହୀନ, ସମସ୍ତଙ୍କଠାରେ ସମଭାବସମ୍ପନ୍ନ, ନିର୍ଭୋଗ ଓ ନିର୍ବିକାର ଅର୍ଥାତ୍ କାମ-ସଂକଳ୍ପାଦି ରହିତ ବ୍ରାହ୍ମଣ ଏହି ମଙ୍ଗଳମୟ ଆଶ୍ରମ ପ୍ରାପ୍ତ ହୋଇ ମୋକ୍ଷପଦ ଲାଭ କରନ୍ତି । ୯ ।

ଯେଉଁ ବ୍ରାହ୍ମଣ ବେଦାଧ୍ୟୟନ ପରେ କର୍ତ୍ତବ୍ୟ କାର୍ଯ୍ୟସବୁ ସମାପନପୂର୍ବକ ସନ୍ତାନୋତ୍ପାଦନ ଓ ବହୁବିଧ ସୁଖ ଭୋଗକରି ଯୋଗ-ଯୁକ୍ତ ହୋଇ ମୁନିଗଣସେବିତ ଦୁଷ୍କର ଗାର୍ହସ୍ଥ୍ୟ ଧର୍ମ ଆଚରଣ କରନ୍ତି, ସେ ମଧ୍ୟ ମୋକ୍ଷପଦକୁ ଲାଭ କରନ୍ତି । ୧୦ ।

ଗୃହସ୍ଥାଶ୍ରମବାସିଙ୍କର ନିତ୍ୟ ସ୍ୱଦାରନିଷ୍ଠ, ଋତୁକାଳଗାମୀ ନିଯୋଗସେବୀ, ଧୂର୍ତ୍ତତାବର୍ଜିତ, ଅକୁଟିଳ, ମିତାହାରୀ, ଦେବରତ, କୃତଜ୍ଞ ସତ୍ୟବାଦୀ, ମୃଦୁ, ଅନୃଶଂସ, କ୍ଷମାବାନ୍, ଦାନ୍ତ ବିଧେୟ ହବ୍ୟକବ୍ୟରେ ଅପ୍ରମତ୍ତ, ଦ୍ୱିଜଗଣଙ୍କର ନିତ୍ୟ ଅନ୍ନଦାତା, ମାତ୍ସର୍ଯ୍ୟବର୍ଜିତ, ଲିଙ୍ଗଯୁକ୍ତ ଆଶ୍ରମମାନଙ୍କର ଅନ୍ନଦାତା ଏବଂ ଶ୍ରୌତକର୍ମ ନିଷ୍ଠ ହେବା ଉଚିତ । ୧୨ ।

ଏହି ପ୍ରସ୍ତାବରେ ମହାନୁଭବ ମହର୍ଷିଗଣେ ଯେଉଁ ମହାର୍ଥ ତପଃ ପ୍ରଯୁକ୍ତ ଓ ପ୍ରାଦୁର୍ଭୂତ ନାରାୟଣଗୀତ ଶ୍ଳୋକକୁ ଉଦାହରଣ ଦିଅନ୍ତି, ତାହା କହୁଅଛୁଁ, ଶ୍ରବଣ କର । ୧୩ ।

ଅନନ୍ତରରେ ଇହଲୋକ ଏବଂ ପରଲୋକରେ ସତ୍ୟ, ଆର୍ଜବ, ଅତିଥିପୂଜକ, ଧର୍ମ, ଅର୍ଥ, ସ୍ୱଦାରରତି ଏବଂ ଅପର ବହୁବିଧ ସୁଖସବୁ ଭୋଗ କରିବା କର୍ତ୍ତବ୍ୟ । ୧୪ ।

ପରମର୍ଷିଗଣ ଗୃହସ୍ଥାଶ୍ରମବାସୀଙ୍କ ପକ୍ଷରେ ସ୍ତ୍ରୀପୁତ୍ରାଦିଙ୍କର ଭରଣ ଏବଂ ବେଦମାନଙ୍କର ଧାରଣାକୁ ଅର୍ଥାତ୍ ଅଧ୍ୟୟନ ଓ ଅଧ୍ୟାପନାରୂପ କାର୍ଯ୍ୟକୁ ଶ୍ରେଷ୍ଠ ବୋଲି କହନ୍ତି । ୧୫ ।

ଏହି ପ୍ରକାରେ ଯେଉଁ ଯଜ୍ଞଶୀଳ ବ୍ରାହ୍ମଣ ଗୃହସ୍ଥ ବୃତ୍ତିକୁ ସର୍ବତୋଭାବରେ ପରିଶୋଧିତ କରି ନ୍ୟାୟଲବ୍ଧ ଧନଦ୍ୱାରା ଜୀବିକା ନିର୍ବାହପୂର୍ବକ ଗାର୍ହସ୍ଥ୍ୟାଶ୍ରମରେ ବାସକରନ୍ତି ସେ ବିବୁଧଧାମରେ ବିଶୁଦ୍ଧଫଳ ଲାଭ କରନ୍ତି । ୧୬ ।

ତାହାଙ୍କର ଦେହତ୍ୟାଗ ପରେ ତାଙ୍କ ଅଭିଲଷିତ ସର୍ବତୋଗାମୀ କାମନାସବୁ ଅକ୍ଷୟ ହୋଇ ଅନନ୍ତକାଳ ପର୍ଯ୍ୟନ୍ତ, ବେତନଭୋଗୀ କିଙ୍କରଗଣ ପ୍ରାୟ ତାହାଙ୍କର ଅନୁଗତ ହୋଇଥାନ୍ତି । ୧୭ ।

ବ୍ରହ୍ମଚାରୀମାନେ ସ୍ୱୟଂ ମନଃସଂଯୋଗ ହୋଇ ନିତ୍ୟ ଗୁରୁ ଶୁଶ୍ରୂଷା ହୋଇ କେହି ଅଧୀତ ବେଦସମୂହକୁ ସ୍ମରଣ, କେହି ସ୍ୱୀୟ ମନ୍ତ୍ର ଜପ, କେହି ଅବା ସମସ୍ତ ଦେବଙ୍କର ଉପାସନା ଓ ସମସ୍ତ ମନ୍ତ୍ର ଜପପୂର୍ବକ ନିତ୍ୟ ବ୍ରତାବଲମ୍ବୀ, ନିତ୍ୟ ପାଷାପର ଏବଂ ଜିତେନ୍ଦ୍ରିୟ

ହୋଇ ବେଦାନ୍ତ ଶାସ୍ତ୍ରର ଅନୁସାରେ ଧ୍ୟାନ ଯୋଗାଦି ରୂପ କର୍ତ୍ତବ୍ୟ କର୍ମସବୁ ସମାପନୋପରାନ୍ତ ବ୍ରହ୍ମଚର୍ଯ୍ୟାଶ୍ରମରେ ବାସ କରିବେ । ୧୯ ।

ଯଜନାଦି ଷଟ୍ କର୍ମରୁ ନିବୃତ୍ତ ହୋଇ ଏବଂ ଅପର କୌଣସି କର୍ମରେ ସର୍ବତୋଭାବରେ ପ୍ରବୃତ୍ତ ନ ହୋଇ ନିତ୍ୟ ଗୁରୁଙ୍କର ଶୁଶ୍ରୂଷ କରିବେ ଏବଂ ତାହାଙ୍କଠାରେ ପ୍ରଣତ ହୋଇ ରହିବେ । ସେମାନଙ୍କର ସେଟା କର୍ମ୍ମ ବାହାରିପ୍ରତି ନିଗ୍ରହ ପ୍ରକାଶ କରିବା କର୍ତ୍ତବ୍ୟ ନୁହେଁ; ହେ ବତ୍ସ ଯୁଧିଷ୍ଠିର ! ବ୍ରହ୍ମଚାରୀମାନଙ୍କ ନିମିତ୍ତ ଏହି ଆଶ୍ରମପଦ ଅଭିହିତ ହୋଇଅଛି । ୨୧ ।

---

## ଅଧ୍ୟାୟ—୬୨

ଯୁଧିଷ୍ଠିର କହିଲେ:—ଉତ୍ତରକାଳରେ ସୁଖଦାୟକ, ମଙ୍ଗଳମୟ ଅହିଂସା, ଲୋକସମ୍ମତ ସୁଖପାୟଭୂତ, ଏବଂ ଆମ୍ଭ ସଦୃଶ ମନୁଷ୍ୟମାନଙ୍କର ସୁଖାବହ ଧର୍ମ୍ମସବୁ କହିବା ହେଉନ୍ତୁ । ୧ ।

ଭୀଷ୍ମକହିଲେ:—ହେ ପ୍ରଭୁ ଭରତ ସତ୍ତମ ! ବ୍ରାହ୍ମଣମାନଙ୍କର ଯେଉଁ ବ୍ରହ୍ମଚର୍ଯ୍ୟାଦି ଚାରିଗୋଟି ଆଶ୍ରମ ବିହିତ ହୋଇଅଛି, ହିଂସାପ୍ରବୃତ୍ତ କ୍ଷତ୍ରିୟାଦି ବର୍ଣ୍ଣତ୍ରୟ ତାହାର ଅନୁବର୍ତ୍ତୀ ହୁଅନ୍ତି ନାହିଁ ଏବଂ ଗୃହସ୍ଥ ବ୍ରାହ୍ମଣର ମଧ୍ୟ ହିଂସା ଧର୍ମ୍ମ କାମନାର କେବଳ କଲ୍ପ ବିଧି ବିହିତ ନୁହେଁ । ୨ ।

ହେ ରାଜନ୍ ! ରାଜନ୍ୟଗଣଙ୍କର ଯୁଦ୍ଧ ଜୟାଦିରୂପ ଯେଉଁସବୁ ସ୍ୱର୍ଗଲାଭଜନକ ବିଧିପ୍ରଯୁକ୍ତ ପ୍ରବୃତ୍ତିପର ବହୁବିଧ କାର୍ଯ୍ୟ ଉକ୍ତ ହୋଇଅଛି, ତାହା ତୁମ୍ଭର ପ୍ରଶ୍ନର ପ୍ରକୃତ ଉତ୍ତର ହୋଇ ନପାରେ; କାରଣ ତତ୍ସମସ୍ତ ହିଂସାପ୍ରବୃତ୍ତ କ୍ଷତ୍ରିୟମାନଙ୍କ ପକ୍ଷରେ ବିହିତ ହୋଇଅଛି । ୩ ।

ବ୍ରାହ୍ମଣ କୁଳରେ ଜନ୍ମ ଗ୍ରହଣ କରି ଯଦି କେହି କ୍ଷତ୍ରିୟ, ବୈଶ୍ୟ ଅଥବା ଶୂଦ୍ରଗଣଙ୍କର କର୍ତ୍ତବ୍ୟ କର୍ମ୍ମସବୁ ଆଚରଣ କରେ ତାହାହେଲେ ସେହି ମନ୍ଦବୁଦ୍ଧି ଇହଲୋକରେ ନିନ୍ଦିତ ଏବଂ ପରଲୋକରେ ନରକଗାମୀ ହୁଏ । ୪ ।

ହେ ପାଣ୍ଡୁନନ୍ଦନ ! ପୃଥିବୀରେ ଦାସ, କୁକ୍କୁର, ବୃକ ଏବଂ ଅପର ପଶୁମାନଙ୍କ ପ୍ରତି ଯେଉଁସବୁ ସଂଜ୍ଞା ବ୍ୟବହୃତ ହୁଏ, ବ୍ରାହ୍ମଣ କୁକର୍ମାନ୍ୱିତ ହେଲେ ତାହାଙ୍କ ପ୍ରତି ମଧ୍ୟ ସେହିସବୁ ସଂଜ୍ଞା ବ୍ୟବହୃତ ହୁଏ । ୫ ।

ବ୍ରହ୍ମଚର୍ଯ୍ୟାଦି ଆଶ୍ରମ ଚତୁଷ୍ଟୟରେ ସୁଦ୍ଧା ପ୍ରାଣାୟାମାଦି ଷଟ୍‌କର୍ମରେ ପ୍ରବୃତ୍ତ, ହିଂସାବିହୀନ, ଜିତଚିତ୍ତ ବିଶୁଦ୍ଧସ୍ୱଭାବ, ତପସ୍ୟାରତ ଅର୍ଥାତ୍ ବିଦ୍ୟୁରପର, ଆତ୍ମ ଶୁଭେଚ୍ଛା ବିରହିତ ଏବଂ ବଦାନ୍ୟ ବ୍ରାହ୍ମଣ ଅକ୍ଷୟ ଲୋକରେ ବସତି ଲାଭ କରନ୍ତି । ୭ ।

ଯେଉଁ ପୁରୁଷ ଯାଦୃଶାବସ୍ଥାରେ ଯେଉଁ ସ୍ଥାନରେ ଯେପରି କାର୍ଯ୍ୟ କରିଥାନ୍ତି, ସେ ସେହି କର୍ମ ଦ୍ୱାରା ତାଦୃଶ ଫଳ ଲାଭ କରନ୍ତି । ୮ ।

ହେ ରାଜେନ୍ଦ୍ର ! ତୁମେହାନ ବେଦାଭ୍ୟାସକୁ ମଧ୍ୟ କ୍ଷତ୍ରିୟବୃତ୍ତି, କୃଷିକାର୍ଯ୍ୟ, ବାଣିଜ୍ୟ କିମ୍ବା ମୃଗୟାଦ୍ୱାରା ଜୀବିକାନିର୍ବାହ ଏମାନଙ୍କ ତୁଲ୍ୟ ବିବେଚନା କରିବ । ୯ ।

ପ୍ରାଗ୍‌ଭବ ବାସନାସମୂହ କାଳ ପ୍ରେରିତ ହୋଇ ଉତ୍ତମ, ମଧ୍ୟମ ଓ ଅଧମ କାର୍ଯ୍ୟସବୁ କରିଥାଏ, କାରଣ ସମସ୍ତେ କାଳର ବଶୀଭୂତ ଅଟନ୍ତି । ୧୦ ।

ଦେହାରମ୍ଭକ ପ୍ରାକ୍ତନ ପାପ ଓ ପୁଣ୍ୟର ଫଳଭୂତ ସୁଖ ଓ ଦୁଃଖାଦି ସମସ୍ତ ବିନାଶୀ ଅଟେ; କିନ୍ତୁ ପରନ୍ତ ସୁଖାଦିଲାଭ ନିମିତ୍ତ ଜୀବ ନିଜର ଇଚ୍ଛାନୁସାରେ ଶୁଭ କିମ୍ବା ଅଶୁଭ କାର୍ଯ୍ୟରେ ପ୍ରବୃତ୍ତ ହୁଏ । ଅତଏବ ବିଧି ନିଷେଧ ବାକ୍ୟସମୂହ ବିଫଳ ନୁହେଁ, କାମବୃତ୍ତିର ନିବୃତ୍ତି ନିମିତ୍ତ ଅଶ୍ରମାସ୍ତୁ । ୧୧ ।

---

# ଅଧ୍ୟାୟ—୭୩

ଭୀଷ୍ମ କହିଲେ:—ଜ୍ୟା କର୍ଷଣ, ଶତ୍ରୁନିବାଦ, କୃଷି, ବାଣିଜ୍ୟ, ପଶୁପାଳନ ଏବଂ ଅର୍ଥଲୋଭ ଲାଳସାରେ ଅନ୍ୟର ଶୁଶ୍ରୂଷା କରିବା ଏହି ସମସ୍ତ ବ୍ରାହ୍ମଣଙ୍କର ଅକାର୍ଯ୍ୟ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ୧ ।

ବୁଦ୍ଧିମାନ ଗୃହସ୍ଥର ବ୍ରହ୍ମୋଦ୍ଦେଶରେ ଷଟ୍‌କର୍ମ୍ମସବୁ ଆଚରଣ କରି କୃତକୃତ୍ୟ ହୋଇ ଅରଣ୍ୟରେ ବାସ କରିବା ପ୍ରଶସ୍ତ । ୨ ।

ରାଜାଙ୍କର ଦାସତ୍ୱ, କୃଷିଲବ୍ଧ ଧନ, ବାଣିଜ୍ୟଦ୍ୱାରା ଜୀବିକା ନିର୍ବାହ, କୌଟିଲ୍ୟ, କୌଳଟେୟ୍ୟ, ଅର୍ଥାତ୍ ପରଦାରରତି ଏବଂ କୁଷୀଦ ଅର୍ଥାତ୍ ସୁଦଗ୍ରହଣ କରି ଋଣ ଦାନ ଏହିସବୁ ବ୍ରାହ୍ମଣ ପରିତ୍ୟାଗ କରିବେ । ୩ ।

ହେ ରାଜନ୍ ! ବ୍ରହ୍ମବନ୍ଧୁ, ଅର୍ଥାତ୍ ଅଧମ ବାହ୍ମଣ ଏବଂ ଦୁଷ୍ଟଚରିତ, ସ୍ୱକର୍ମ୍ମ ପରିତ୍ୟାଗୀ, ବୃଷଳୀପତି, ପିଶୁନ, ନର୍ତ୍ତକ, ଗ୍ରାମପ୍ରେଷ୍ୟ, ଓ କୁକର୍ମ୍ମରତ ବ୍ରାହ୍ମଣ ଶୂଦ୍ର ସଦୃଶ, ଅତଏବ ସେ ବେଦୋକ୍ତ ମନ୍ତ୍ରସବୁ ଜପ କରନ୍ତୁ କିମ୍ବା ନ କରନ୍ତୁ, ଦାସଗଣଙ୍କ ସଦୃଶ ବହି ପଂକ୍ତିରେ ନିୟୋଜନୀୟ ହୁଅନ୍ତି । ହେ ରାଜନ୍ ! ଏମାନେ ସମସ୍ତେ ଶୂଦ୍ରଙ୍କ ତୁଲ୍ୟ ଅଟନ୍ତି; ସୁତରାଂ ସେମାନଙ୍କୁ ଦେବକୃତ୍ୟରେ ବର୍ଜ୍ଜନ କରିବ । ୪ ।

ବ୍ରାହ୍ମଣ ମର୍ଯ୍ୟାଦାବିହୀନ ଅଶୁଚି କ୍ରୂରବୃତ୍ତି ଓ ହିଂସକ ହେଲେ ଏବଂ ନିଜର ଧର୍ମ୍ମ ଓ ବୃତ୍ତିକୁ ପରିତ୍ୟାଗ କଲେ ତାହାକୁ ଯଦ୍ୟପି ହବ୍ୟକବ୍ୟ ପ୍ରଭୃତି ଦିଆଯାଏ, ତାହାହେଲେ ତତ୍ସମସ୍ତ ଅଦତ୍ତ ପ୍ରାୟ ହୁଏ । ୨ ।

ହେ ମହାରାଜ ! ଏହି ହେତୁରୁ ବ୍ରହ୍ମା ପୂର୍ବରୁ ବ୍ରାହ୍ମଣମାନଙ୍କର ଶୌଚ, ଆର୍ଜବ, ଓ ଆଶ୍ରମସବୁ ବିଧାନ କରିଅଛନ୍ତି । ଯେ ଦାନ୍ତ, ସୁଶୀଳ, ଦୟାଳୁ, ସର୍ବସହ, ନିରାଶୀ, ଋଜୁ, ମୃଦୁ, ଅନୃଶଂସ, କ୍ଷମାବାନ୍ ଏବଂ ଯଜ୍ଞାଦିର ଅନୁଷ୍ଠାନ କରି ସୋମପାନ କରନ୍ତି, ସେହି ସେ ବ୍ରାହ୍ମଣ

ଅଟନ୍ତି, ଏତଦ୍ଭିନ୍ନ ଅନ୍ୟାନ୍ୟ ପାପକର୍ମମାନେ ବ୍ରାହ୍ମଣ ବୋଲି ଅଭିହିତ ହୁଅନ୍ତି ନାହିଁ । ୮ ।

ହେ ପାଣ୍ଡୁନନ୍ଦନ ! ଧର୍ମକାମୀ ଲୋକମାନେ ମଧ୍ୟ ଶୂଦ୍ର, ବୈଶ୍ୟ କିମ୍ବା କ୍ଷତ୍ରିୟମାନଙ୍କର ଆଶ୍ରୟ ଗ୍ରହଣ କରନ୍ତି । ଏହି ହେତୁରୁ ଦସ୍ୟୁବର୍ଣ୍ଣମାନଙ୍କୁ ଶାନ୍ତ ଧର୍ମରେ ଅଶକ୍ତ ବିବେଚନା କରି ସେମାନଙ୍କର ମଙ୍ଗଳ-ବାସନା କରନ୍ତି ନାହିଁ । ଦସ୍ୟୁଙ୍କର ପ୍ରତିକୂଳରେ ସୁତରାଂ ସୁଖାଦି ଲାଭର, ପ୍ରତ୍ୟାଶା ଗୃହୀ ବର୍ଣ୍ଣୀୟ ଧର୍ମ, ବେଦବାଦ, ସର୍ବପ୍ରକାର ଯଜ୍ଞ ଓ ଲୋକମାନଙ୍କର ସମସ୍ତ କ୍ରିୟା ବିନଷ୍ଟ ହୁଏ ଏବଂ ଆଶ୍ରମସ୍ଥମାନେ ମଧ୍ୟ ସ୍ୱକୀୟ ଧର୍ମରେ ଅବସ୍ଥାନ କରି ପାରନ୍ତି ନାହିଁ । ୧୦ ।

ହେ ପାଣ୍ଡୁନନ୍ଦନ ! ଯେଉଁ ନୃପତି ନିଜର ରାଜ୍ୟ ମଧ୍ୟରେ ବ୍ରାହ୍ମଣ ବୈଶ୍ୟ ଓ ଶୂଦ୍ର ଏହି ବର୍ଣ୍ଣତ୍ରୟଙ୍କୁ ଯଥୋକ୍ତ ଆଶ୍ରମ ଧର୍ମସବୁ ଆଚରଣ କରାଇବାକୁ ଇଚ୍ଛା କରିବେ, ବର୍ତ୍ତମାନ ସେହି ଅବଶ୍ୟ ଆଚରଣୀୟ ଗୃହୀସମ୍ପ୍ରଦାୟ ଦୃଷ୍ଟ ଧର୍ମସବୁ ଶ୍ରବଣ କର । ୧୧ ।

ହେ ଜଗତ୍ପତେ ! ବେଦାନ୍ତରେ ଅନଧିକାରୀ ହେତୁରୁ ପୁରାଣାଦି-ଦ୍ୱାରା ଆତ୍ମ ଶୁଶ୍ରୂଷୁ ଯେଉଁ ଶୂଦ୍ର ପୁତ୍ରୋତ୍ପାଦନପୂର୍ବକ ଶରୀରର ସାମର୍ଥ୍ୟ ଅନୁସାରେ ତ୍ରୈବର୍ଣ୍ଣିକ କାର୍ଯ୍ୟସବୁ ଆଚରଣ କରି ନୃପତିଙ୍କ କର୍ତ୍ତୃକ ଅନୁଜ୍ଞାତ ହୋଇ ଏବଂ ଯୋଗଶାସ୍ତ୍ରରେ ଅନଧିକାରୀ ହୋଇ ସୁଦ୍ଧା ଆତ୍ମର ନିଷ୍ଠାଦ୍ୱାରା ତ୍ରୈବର୍ଣ୍ଣିକ ସମ ହୋଇଥାଏ, ସେହି ଶୂଦ୍ର ପକ୍ଷରେ ନିରାଶୀଭିନ୍ନ ସକଳ ଆଶ୍ରମ ବିହିତ ହୋଇଅଛି । ୧୩ ।

ହେ ରାଜେନ୍ଦ୍ର ! ଏହିପରି ସ୍ୱଧର୍ମାନୁଗାମୀ ଶୂଦ୍ରର ଭୈକ୍ଷଚର୍ଯ୍ୟାରୂପ ଚତୁର୍ଥ ଆଶ୍ରମ ବିହିତ ହୋଇଅଛି । ବୈଶ୍ୟ ଏବଂ କ୍ଷତ୍ରିୟମାନେ ମଧ୍ୟ ଏହି ଧର୍ମସବୁ ଆଚରଣ କରିବେ । ବୈଶ୍ୟମାନେ ପରିଶ୍ରମ ସହକାରେ ପଶୁପାଳନାଦିରୂପ ସ୍ୱଧର୍ମସବୁ ଆଚରଣ କରି ଗୃହସ୍ଥାଶ୍ରମରେ କୃତକୃତ୍ୟହୋଇ ନୃପତିଙ୍କର ଆଜ୍ଞାନୁସାରେ କ୍ଷତ୍ରିୟ ବିହିତ ଆଶ୍ରମରେ ଆଶ୍ରମ ଗ୍ରହଣ କରିବେ । ହେ ବାଗ୍ମିପ୍ରବର ଅନଘ ଯୁଧିଷ୍ଠିର !

କ୍ଷତ୍ରିୟମାନେ ଧର୍ମାନୁସାରେ ରାଜଶାସ୍ତ୍ର ଓ ବେଦ ଅଧ୍ୟୟନପୂର୍ବକ ସନ୍ତାନ ଉତ୍ପାଦନାଦି କର୍ମ, ସୋମପାନ, ଧର୍ମାନୁସାରେ ପ୍ରଜାପାଳନ, ରଣଭୂମିରେ ବିଜୟଲାଭ ଏବଂ ରାଜସୂୟ ଓ ଅଶ୍ୱମେଧ ପ୍ରଭୃତି ଯଜ୍ଞସବୁ ଆଚରଣ କରି ବ୍ରାହ୍ମଣମାନଙ୍କୁ ଆହ୍ୱାନ କରିବେ ଏବଂ ସେମାନଙ୍କୁ ଯଥାଯୋଗ୍ୟ ଦକ୍ଷିଣା ପ୍ରଦାନ କରିବେ । ୧୮ ।

ହେ କ୍ଷତ୍ରିୟର୍ଷଭ ପାଣ୍ଡୁନନ୍ଦନ ! ତଦନନ୍ତର ପ୍ରଜାପାଳନ ସମର୍ଥ ପୁତ୍ରକୁ କିମ୍ବା ଶାସ୍ତ୍ରୋକ୍ତ ଲକ୍ଷଣଯୁକ୍ତ ଅନ୍ୟଗୋତ୍ର କ୍ଷତ୍ରିୟକୁ ସିଂହାସନରେ ପ୍ରତିଷ୍ଠିତ କରି ପିତୃ ଯଜ୍ଞଦ୍ୱାରା ପିତୃଗଣଙ୍କୁ, ଯଜ୍ଞଦ୍ୱାରା ଦେବଗଣଙ୍କୁ ଏବଂ ବେଦ ସକଳଦ୍ୱାରା ଋଷିଗଣଙ୍କୁ ଯତ୍ନସହକାରେ ଅର୍ଚ୍ଚନାପୂର୍ବକ ଅନ୍ତକାଳ ଉପସ୍ଥିତ ହେଲେ ଆଶ୍ରମାନ୍ତର ଗମନରେ ଇଚ୍ଛାକରିବେ । ହେ ରାଜନ୍ ! ଏହିରୂପ ଆନୁପୂର୍ବିକ ଆଶ୍ରମଧର୍ମ ଆଚରଣ କଲେ କ୍ଷତ୍ରିୟ ସିଦ୍ଧିଲାଭ କରନ୍ତି । ୨୧ ।

ହେ ରାଜେନ୍ଦ୍ର ! କ୍ଷତ୍ରିୟମାନେ ଗୃହସ୍ଥଧର୍ମକୁ ପରିତ୍ୟାଗ କରି ନିଜକୁ ରାଜର୍ଷି ଜ୍ଞାନ ନ କରି କେବଳମାତ୍ର ଜୀବନ ରକ୍ଷାନିମିତ୍ତ ଭିକ୍ଷା ବୃତ୍ତି ଅବଲମ୍ବନ କରିବେ; କିନ୍ତୁ ଭୋଗାଭିଳାଷୀ ହୋଇ ତାଦୃଶ ବୃତ୍ତି ଅବଲମ୍ବନ କରିବେ ନାହିଁ । ୨୨ ।

ହେ ଭୂରିଦକ୍ଷିଣ ! ଆର୍ଯ୍ୟମାନେ କହିଅଛନ୍ତି ଯେ ଏହି ଭୈକ୍ଷ୍ୟଚର୍ଯ୍ୟ ଧର୍ମ, କ୍ଷତ୍ରିୟାଦି ବର୍ଣ୍ଣତ୍ରୟର ନିତ୍ୟ ନୁହେଁ । ସେମାନେ ଇଚ୍ଛାନୁସାରେ ଏହି ଧର୍ମକୁ ଗ୍ରହଣ କରି ପାରନ୍ତି କିମ୍ବା ନ କରି ପାରନ୍ତି । ହେ ରାଜନ୍ ! ଲୋକଶ୍ରେଷ୍ଠ ଧର୍ମାଚରଣକାରୀ କ୍ଷତ୍ରିୟମାନଙ୍କର ବାହୁଦ୍ୱାରା ଲୋକମାନଙ୍କୁ ଅଭୟଦାନ କରିବା କର୍ତ୍ତବ୍ୟ । କାରଣ ବେଦରେ ଏହିପରି ଶ୍ରୁତି ଅଛି ଯେ ବ୍ରାହ୍ମଣ, ବୈଶ୍ୟ ଓ ଶୂଦ୍ର ଏହି ବର୍ଣ୍ଣତ୍ରୟର ଧର୍ମ ଓ ଉପଧର୍ମ ସବୁ, ରାଜଧର୍ମରୁ ଉତ୍ପନ୍ନ ହୋଇଅଛି । ୨୪ ।

ହେ ରାଜନ ! ଯେପରି କ୍ଷୁଦ୍ର ଜନ୍ତୁମାନଙ୍କର ପଦ ଚିହ୍ନସବୁ ହସ୍ତି ପଦ ଚିହ୍ନ ମଧ୍ୟରେ ଲୀନହୁଏ, ସେହିପରି ସର୍ବପ୍ରକାର ଧର୍ମ ରାଜଧର୍ମ ମଧ୍ୟରେ ବିଲୀନ ବୋଲି ଜାଣିବ । ୨୫ ।

'ଧର୍ମଜ୍ଞ ମନୁଷ୍ୟମାନେ ଅନ୍ୟ ଧର୍ମମାନଙ୍କୁ ଅଲ୍ପାଶ୍ରୟ ଓ ଅଳ୍ପ ଫଳଦାୟକ ବୋଲି କହନ୍ତି । କାରଣ ଆର୍ଯ୍ୟଗଣ ମହାଶ୍ରୟ ବହୁ କଲ୍ୟାଣ-ରୂପ କ୍ଷତ୍ରିୟ ଧର୍ମକୁ ଧର୍ମ ବୋଲି କହନ୍ତି ନାହିଁ । ୨୬ ।

ହେ ରାଜନ୍ ! ସମସ୍ତ ଧର୍ମ ମଧ୍ୟରେ ରାଜଧର୍ମ ପ୍ରଧାନ ଅଟେ । ରାଜଧର୍ମଦ୍ୱାରା ସମସ୍ତ ବର୍ଣ୍ଣ ରକ୍ଷିତ ହୁଏ ଏବଂ ରାଜଧର୍ମ ମଧ୍ୟରେ ସର୍ବ ପ୍ରକାର ଦାନ ଉକ୍ତ ହୋଇଅଛି; ସୁତରାଂ ରାଜଧର୍ମ ପ୍ରଧାନ ଅଟେ । କାରଣ ଆର୍ଯ୍ୟମାନେ ଦାନକୁ ସର୍ବାପେକ୍ଷା ଶ୍ରେଷ୍ଠକାର୍ଯ୍ୟ ବୋଲି କହନ୍ତି । ୨୭ ।

ରାଜାମାନେ ଦଣ୍ଡନୀତିବିହୀନ ହେଲେ, କର୍ଣ୍ଣଧାର ନୌକାପ୍ରାୟ ଜଳନିମଗ୍ନ ହୋଇଯାଏ; ଅତଏବ ସମସ୍ତଧର୍ମ ବିନଷ୍ଟ ହୁଏ । ପୁରାତନ କ୍ଷାତ୍ର ରାଜଧର୍ମ ପରିତ୍ୟକ୍ତ ହେଲେ, ଆଶ୍ରମ ଧର୍ମସବୁ ବିନଷ୍ଟ ହୁଏ । ରାଜଧର୍ମ ମଧ୍ୟରେ ସର୍ବ ପ୍ରକାର ଦାନ ଦୃଷ୍ଟ ହୋଇଥାଏ । ଦୀକ୍ଷାସବୁ ରାଜଧର୍ମ ମଧ୍ୟରେ ଉକ୍ତ ହୋଇଅଛି । ସମସ୍ତ ବିଦ୍ୟା ରାଜଧର୍ମରେ ପ୍ରବିଷ୍ଟ ହୋଇ ଅଛନ୍ତି । ୨୯ ।

ଯେପରି ମୃଗକୁଳ ନୀଚଗଣକର୍ତ୍ତୃକ ବଧମାନ ହୋଇ ହନନ-କାରୀର ଶ୍ରୁତଦୃଷ୍ଟାଦି ଧର୍ମନାଶର କାରଣ ହୁଅନ୍ତି, ସେହିପରି ଯଜ୍ଞାଦି ଧର୍ମ କର୍ମସବୁ ରାଜଧର୍ମରୁ ବିଯୁକ୍ତ ହେଲେ ଚୋରମାନେ ସେହି ଯଜ୍ଞାଦିକୁ ନଷ୍ଟ କରନ୍ତି । ସୁତରାଂ ଯଜ୍ଞକର୍ତ୍ତାମାନେ ଯଜ୍ଞାଦିରେ ଅନାଦର କରି ଆତ୍ମରକ୍ଷା ନିମିତ୍ତ ପରିତ୍ୟାଗ କରନ୍ତି ।

---

## ଅଧ୍ୟାୟ—୬୪

ଭୀଷ୍ମ କହିଲେ—ହେ ପାଣ୍ଡୁନନ୍ଦନ ! ଲୌକିକ, ବୈଦିକ, ଚାତୁର୍ବର୍ଣ୍ୟ ଏବଂ ଯେତେ ଧର୍ମସବୁ ରାଜଧର୍ମରେ ସମାହିତ ।୧।

ହେ ଭରତସତ୍ତମ ! ସମସ୍ତ କର୍ମ କ୍ଷାତ୍ରଧର୍ମର ଅଧୀନ ଅଟେ । ସୁତରାଂ କ୍ଷାତ୍ରଧର୍ମ ଅବ୍ୟବସ୍ଥିତ ହେଲେ ଜୀବଲୋକସବୁ ଆଶୀର୍ବିହୀନ ହୁଅନ୍ତି ।୨।

ଆଶ୍ରମବାସୀମାନଙ୍କର ଧର୍ମ ଅପ୍ରତ୍ୟକ୍ଷ ଓ ବହୁଦ୍ୱାରଯୁକ୍ତ ଅଟେ; କିନ୍ତୁ କେତେକ ଲୋକମାନେ ପୁଣ୍ୟବଚନମାନଙ୍କଦ୍ୱାରା ଲୋକନିଷ୍ଠସ୍ୱାଦକୁ ଅଥଚ କେତେକ ଧର୍ମତତ୍ତ୍ୱାନଭିଜ୍ଞଲୋକମାନେ ପରିମାଣଫଳକୁ ନ ଭାବି ଅପର ଧର୍ମଦ୍ୱାରା ହତବୁଦ୍ଧି ହୋଇ ବିରୁଦ୍ଧ ଆଗମମାନଙ୍କଦ୍ୱାରା ତାହାଙ୍କର ସେହି ଶାଶ୍ୱତଭାବକୁ ପ୍ରକୋପିତ କରନ୍ତି । ପରନ୍ତୁ କ୍ଷତ୍ରିୟ ଧର୍ମ ପ୍ରତ୍ୟକ୍ଷରେ ସୁଖ ଭୂୟିଷ୍ଠ, କପଟରହିତ, ଆତ୍ମସାକ୍ଷିକ ଓ ସର୍ବ ଲୋକଙ୍କର ହିତକର । ହେ ଯୁଧିଷ୍ଠିର ! ଯେପରି ଗାର୍ହସ୍ଥ୍ୟ ନାମକ ଧର୍ମାଶ୍ରମରେ ତିନବର୍ଣ୍ଣ ଧର୍ମମାନଙ୍କର ଅନ୍ତର୍ଭାବ ପ୍ରକଟିତ ହୋଇଅଛି, ସେହିପରି ଏହି ରାଜଧର୍ମ ମଧ୍ୟରେ ନୈଷ୍ଠିକ, ବାନପ୍ରସ୍ଥ, ଯତି ଓ ବ୍ରାହ୍ମଣମାନଙ୍କର ଧର୍ମବିଶିଷ୍ଟ ଲୋକ ସମୂହ ମଧ୍ୟ ଅନ୍ତର୍ଭୁକ୍ତ ହୋଇଅଛନ୍ତି । ହେ ରାଜେନ୍ଦ୍ର ! ଯେପରି ଶୂର ନୃପତିଗଣ ଦଣ୍ଡନୀତି କିମ୍ବା ଆଶ୍ରମ ବିହିତ ଧର୍ମସବୁ ଶ୍ରେଷ୍ଠ ଏହି ବିଷୟକୁ ଦୃଷ୍ଟାନ୍ତ ସହିତ ଅବଗତ ହେବାନିମିତ୍ତ ସର୍ବଭୂତଙ୍କର ଈଶ୍ୱର, ଦେବ, ପ୍ରଭୁ, ନାରାୟଣ, ବିଷ୍ଣୁଙ୍କ ଠାକୁ ଗମନ କରି ତାହାଙ୍କ ଉପାସନା କରିଥିଲେ, ସେହି ଉଦାହରଣକୁ ତୁମ୍ଭଙ୍କୁ ପୂର୍ବେ କହିଅଛୁଁ ।୯।

ସମ୍ପ୍ରତି ଯେ ପ୍ରକାରରେ ସାଧ୍ୟ, ଦେବ, ବସୁ, ରୁଦ୍ର, ବିଶ୍ୱ ଓ ମରୁତ ପ୍ରଭୃତି ଗଣସବୁ ଏବଂ ଅଶ୍ୱିନୀ କୁମାରଦ୍ୱୟ ଆଦିଦେବ ନାରାୟଣଙ୍କ କର୍ତ୍ତୃକ ସୃଷ୍ଟ ହୋଇ କ୍ଷାତ୍ରଧର୍ମରେ ପ୍ରବୃତ୍ତ ହୋଇଥିଲେ, ସେହି ଧର୍ମ ସଙ୍ଗତ ଅର୍ଥ ନିଶ୍ଚିତ ଇତିହାସଟି ତୁମ୍ଭଠାରେ କୀର୍ତ୍ତନ କରୁଅଛୁଁ ଶ୍ରବଣ କର । ହେ ରାଜେନ୍ଦ୍ର ! ପୂର୍ବେ ଯେତେବେଳେ ଦାନବରୂପ ଏକାର୍ଣ୍ଣବ ନିଜର ମର୍ଯ୍ୟାଦାକୁ ଅତିକ୍ରମ କରି ଦେବଗଣଙ୍କର ପୀଡ଼ାକର ହୋଇଥିଲା, ସେହି ସମୟରେ ମାନ୍ଧାତାନାମକ ପୃଥିବୀରେ ଜଣେ ବୀର୍ଯ୍ୟବାନ ନରପତି ଥିଲେ । ହେ ରାଜଶାର୍ଦ୍ଦୂଳ ! ସେହି ମହୀପତି ମାନ୍ଧାତା, ଆଦି, ମଧ୍ୟ ଓ ଅନ୍ତବିହୀନ ଦେବ ପ୍ରଭୁ ପରମେଶ୍ୱର ନାରାୟଣଙ୍କର ଦର୍ଶନେଚ୍ଛାରେ ଯଜ୍ଞ କରିବାରୁ ବିଷ୍ଣୁ ଇନ୍ଦ୍ରରୂପ ଧାରଣ କରି ତାହାଙ୍କର ନୟନଗୋଚର ହେଲେ ।୧୩।

ଅନନ୍ତର ନୃପତି ମାନ୍ଧାତା ସଦସ୍ୟ ପାର୍ଥିବଗଣଙ୍କ ସହିତ ସେହି ପ୍ରଭୁ ଇନ୍ଦ୍ରଙ୍କ ଚରଣରେ ପତିତ ହୋଇ ତାହାଙ୍କୁ ଯଥାବତ ଅର୍ଚ୍ଚନା

କଲେ । ତତ୍ପରେ ସେହି ମହାତ୍ମା ଇନ୍ଦ୍ରଙ୍କ ସହିତ ରାଜସିଂହ ମାନ୍ଧାତାଙ୍କର ମହାଦ୍ୟୁତି ବିଷ୍ଣୁଙ୍କ ବିଷୟରେ ଏହି ସୁମହତ ସମ୍ବାଦ ହୋଇଥିଲା ।୧୫।

ଇନ୍ଦ୍ର ବୋଇଲେ—ହେ ଧାର୍ମିକପ୍ରବର ! ତୁମ୍ଭର ଅଭିପ୍ରାୟ କ'ଣ ? ତୁମ୍ଭେ କି ନିମିତ୍ତ ସେହି ଅପ୍ରମେୟ ଅନନ୍ତ ମାୟାସମ୍ପନ୍ନ ଅନନ୍ତ ମନ୍ତ୍ର ବୀର୍ଯ୍ୟ ଆଦିଦେବ ପୁରାଣ ପୁରୁଷ ନାରାୟଣଙ୍କୁ ଦେଖିବାକୁ ଇଚ୍ଛା କରୁଅଛ ? ହେ ରାଜନ୍ ! ଅନ୍ୟ ଲୋକର କଥା ଦୂରେ ଥାଉ, ବ୍ରହ୍ମା କିମ୍ବା ଆମ୍ଭେ ସୁଦ୍ଧା ସେହି ବିଶ୍ୱରୂପ ଦେବ ବିଷ୍ଣୁଙ୍କର ପ୍ରତ୍ୟକ୍ଷ ଦର୍ଶନ ଲାଭ କରିପାରୁ ନାହୁଁ । ଅତଏବ ଏତଦଭିନ୍ନ ତୁମ୍ଭମନରେ ଅନ୍ୟ ଯାହା କିଛି କାମନା ଅଛି, ତତ୍ସମସ୍ତ ପ୍ରଦାନ କରିବୁଁ । କାରଣ ତୁମ୍ଭେ ମର୍ତ୍ତ୍ୟଗଣଙ୍କର ରାଜା ଅଟ ।୧୬।

ତୁମ୍ଭେ ଶାନ୍ତ, ଧର୍ମ ପରାୟଣ, ଜିତେନ୍ଦ୍ରିୟ ଓ ଶୂର ଏବଂ ତୁମ୍ଭର ବୁଦ୍ଧି, ଭକ୍ତି ଓ ସୁମହତ ଶ୍ରଦ୍ଧାଦ୍ୱାରା ସୁରମାନେ ପରମପ୍ରୀତି ଲାଭ କରି-ଅଛନ୍ତି । ଅତଏବ ଆମ୍ଭେ ତୁମ୍ଭଙ୍କୁ ତୁମ୍ଭର ଅଭିଲଷିତ ବର ପ୍ରଦାନ କରିବୁଁ ।୧୭।

ମାନ୍ଧାତା ବୋଇଲେ—ହେ ଭଗବାନ୍ ! ଆମ୍ଭେ ସ୍ୱୀୟ ମସ୍ତକଦ୍ୱାରା ଆପଣଙ୍କୁ ପ୍ରସନ୍ନ କରି ନିଶ୍ଚୟ ସେହି ଆଦିଦେବ ବିଷ୍ଣୁଙ୍କୁ ଦର୍ଶନ କରିବୁଁ ଓ ଇତର କାମନାସବୁ ପରିତ୍ୟାଗପୂର୍ବକ ସାଧୁଗଣଙ୍କର ଅବଲମ୍ବିତ ଓ ଲୋକଦୃଷ୍ଟ ଅରଣ୍ୟମଧ୍ୟକୁ ଗମନ କରିବାକୁ ଇଚ୍ଛା କରୁଅଛୁଁ ।୧୮।

ଆମ୍ଭେ ବିପୁଳ ଅପ୍ରମେୟ ସ୍ଥାନ ଧର୍ମଦ୍ୱାରା ଲୋକମାନଙ୍କୁ ସ୍ୱାୟତ କରି ପାଳନ କରିଅଛୁଁ ଏବଂ ପୃଥିବୀରେ ବିପୁଳ ଯଶ ମଧ୍ୟ ସ୍ଥାପନ କରିଅଛୁଁ; କିନ୍ତୁ ଆଦିଦେବ ବିଷ୍ଣୁଙ୍କଠାରୁ ଯେଉଁ ଧର୍ମ ପ୍ରବୃତ୍ତ ହୋଇଅଛି, କି ପ୍ରକାରେ ସେହି ଲୋକଶ୍ରେଷ୍ଠ ଧର୍ମକୁ ଆଚରଣ କରିବାକୁ ହୁଏ, ତାହା ଜାଣିବାକୁ ସକ୍ଷମ ହୋଇ ନାହୁଁ ।୧୯।

ଇନ୍ଦ୍ର କହିଲେ—ଯହିଁସ୍ଥ ଭିନ୍ନ ଧର୍ମପରେ ଲୋକମାନେ ଧର୍ମର ପରାକାଷ୍ଠାକୁ ପ୍ରାପ୍ତ ହୁଅନ୍ତି ନାହିଁ । କାରଣ ପ୍ରଥମତଃ ଆଦିଦେବ

ନାରାୟଣଙ୍କଠାରୁ କ୍ଷାତ୍ରଧର୍ମ କେବଳ ପ୍ରବୃତ୍ତ ହୋଇଥିଲା ଏବଂ ତତ୍ପରେ ତର୍ହିରୁ ତାହାର ଅଙ୍ଗଭୂତ ଇତର ଧର୍ମସବୁ ପ୍ରବୃତ୍ତ ହୋଇଅଛି ।୨୧।

ଅଙ୍ଗଭୂତ ଏହି ଧର୍ମସବୁ ଅନନ୍ତ ଓ ଅଚରସ୍ଥାୟୀ; କିନ୍ତୁ ପରିବ୍ରାଜକ ଧର୍ମ ସହିତ ଏହି କ୍ଷାତ୍ର ଧର୍ମ କେବଳ ସର୍ବାପେକ୍ଷା ବିଶିଷ୍ଟ ଅଟେ । ସମସ୍ତ ଧର୍ମ ଏହି କ୍ଷାତ୍ର ଧର୍ମ ମଧ୍ୟରେ ପ୍ରବିଷ୍ଟ । ସେହି ହେତୁରୁ ଆର୍ଯ୍ୟଗଣ ଏହି କ୍ଷତ୍ରିୟ ଧର୍ମକୁ ଶ୍ରେଷ୍ଠ ବୋଲି କହନ୍ତି ।୨୨।

ପୂର୍ବେ ବିଷ୍ଣୁ ଅମିତ ତେଜସ୍ୱୀ ଦେବ ଓ ଋଷିଗଣଙ୍କ ଈପ୍ସାରେ ପରିତୁଷ୍ଟ ହୋଇ କ୍ଷାତ୍ରଧର୍ମ ଅବଲମ୍ବନପୂର୍ବକ ସେହି ଦେବ ଓ ଋଷିଗଣଙ୍କୁ ଶତ୍ରୁହସ୍ତରୁ ରକ୍ଷା କରିଥିଲେ ।୨୩।

ଯଦି ଏହି ଅପ୍ରମେୟ ଭଗବାନ୍ ବିଷ୍ଣୁ ସୁରଶତ୍ରୁ ଅସୁରଗଣଙ୍କୁ ନିହତ ନ କରିଥାନ୍ତେ, ତାହା ହେଲେ ବ୍ରାହ୍ମଣଗଣ ବ୍ରାହ୍ମ କ୍ଷାତ୍ର ଧର୍ମ କିମ୍ବା ବ୍ରହ୍ମାଦି ଅପର କୌଣସି ଧର୍ମର ରକ୍ଷା ହୁଅନ୍ତା ନାହିଁ ।୨୪।

ଦେବଶ୍ରେଷ୍ଠ ଆଦି ଦେବ ବିଷ୍ଣୁ ବିକ୍ରମଦ୍ୱାରା ଅସୁରଗଣଙ୍କ ସହିତ ଏହି ପୃଥିବୀକୁ ଜୟ କରି ନ ଥିଲେ, ପରନ୍ତୁ ତଦ୍ଦ୍ୱାରା ବ୍ରାହ୍ମଣମାନଙ୍କୁ ରକ୍ଷା କରିବାହିଁ ତାହାଙ୍କର ପ୍ରକୃତ ଉଦ୍ଦେଶ୍ୟ ଥିଲା । କାରଣ ବ୍ରାହ୍ମଣମାନେ ବିନଷ୍ଟ ହେଲେ ଚାତୁର୍ବର୍ଣ୍ୟ କିମ୍ବା ଚାତୁରାଶ୍ରମ୍ୟ ପ୍ରଭୃତି କୌଣସି ଧର୍ମ ସୁଦ୍ଧା ରହନ୍ତା ନାହିଁ ।୨୫।

ଶତଧା ବିନଷ୍ଟ ବୈଷ୍ଣବ ଧର୍ମସବୁ କ୍ଷାତ୍ର ଧର୍ମଦ୍ୱାରା ପୁନର୍ବାର ପ୍ରବୃଦ୍ଧ ହୋଇଅଛି । ସେହି ହେତୁରୁ ଆର୍ଯ୍ୟଗଣ କ୍ଷତ୍ରିୟ ଧର୍ମକୁ ଶ୍ରେଷ୍ଠ ବୋଲି କହନ୍ତି ।୨୬।

ରଣଭୂମିରେ ଶରୀର ତ୍ୟାଗ, ସମସ୍ତ ଭୂତଙ୍କଠାରେ ଅନୁକମ୍ପା ପ୍ରକାଶ, ଲୋକମାନଙ୍କର ପ୍ରକୃତ ଅବସ୍ଥା ଅବଗତ ହୋଇ ସେମାନଙ୍କର ପାଳନ ଓ ମୋକ୍ଷଣ କରିବା ଏବଂ ବିଷଣ୍ଣ ଓ ପୀଡ଼ିତ ପ୍ରାର୍ଥୀଗଣଙ୍କର ମୋଚଣ କରିବା, ଏହି ସମସ୍ତ କ୍ଷାତ୍ର ଧର୍ମରେ ବିଦ୍ୟମାନ ଅଛି ।୨୭।

ହେ ମହାରାଜ ! ନୃପତିଙ୍କର ଉପରେ ଲୋକମାନେ ମର୍ଯ୍ୟାଦା ବିହୀନ, କାମ କ୍ରୋଧ ବଶୀଭୂତ କିମ୍ବା ପାପ କର୍ମ ରତ ହୁଅନ୍ତି ନାହିଁ । ସେହି କାରଣରୁ ଅନ୍ୟ ସର୍ବ ଧର୍ମୋପପନ୍ନ, ସଦାଚାରସମ୍ପନ୍ନ ଶିଷ୍ଟ ଲୋକମାନେ ରାଜଧର୍ମକୁ ସାଧୁବାଦ ପ୍ରଦାନ କରନ୍ତି ।୨୮।

ଜୀବଗଣ ଭୂପତିଙ୍କ କର୍ତ୍ତୃକ ପୂର୍ବବତ୍ ପ୍ରତିପାଳିତ ହୋଇ ଅସଙ୍କୋଚିତ ଚିତ୍ତରେ ଭୂମଣ୍ଡଳରେ ବିଚରଣ କରନ୍ତି । ଏହି ଲୋକଶ୍ରେଷ୍ଠ ସନାତନ ସର୍ବତୋମୁଖ୍ୟ କ୍ଷାତ୍ର ଧର୍ମ କେବଳ ସମସ୍ତ ଧର୍ମର ସାରଭୂତ ଅଟେ ଏବଂ ଏହି ଧର୍ମଦ୍ୱାରା କେବଳ ମୋକ୍ଷପ୍ରଦ ଲବ୍ଧହୁଏ ।୩୦।

---

## ଅଧ୍ୟାୟ—୭୪

ଇନ୍ଦ୍ର କହିଲେ—ହେ ରାଜନ୍ ! ତୁମ୍ଭମାନଙ୍କ ସଦୃଶ ପ୍ରକୃତି-ବର୍ଗଙ୍କର ହିତରତ ପାର୍ଥିବ ଗଣଙ୍କର ଏହିରୂପ ସର୍ବ ଧର୍ମପନ୍ନ ଓ ସର୍ବ ପ୍ରକାର ଧର୍ମାପେକ୍ଷା ଶ୍ରେଷ୍ଠ କ୍ଷାତ୍ର ଧର୍ମକୁ ରକ୍ଷା କରିବା କର୍ତ୍ତବ୍ୟ । କାରଣ ଏହି ଧର୍ମର ରକ୍ଷା ନ ହେଲେ ପ୍ରଜାଗଣଙ୍କର ମଧ୍ୟ ଅଭାବ ହେବ । ୧ ।

ସର୍ବ ଭୂତାନୁକମ୍ପୀ ନୃପତି ସର୍ବତୋଭାବରେ ପ୍ରଜାଗଣଙ୍କ ପାଳନ କରିବେ । ରାଜାସୂୟାଦି ଯଜ୍ଞ ଓ ସଦାଚାର ପୃଥିବୀରେ ଭୂରି ପରିମାଣରେ ଶସ୍ୟ ଉତ୍ପନ୍ନ ହେବ, ତାହା ଅନୁଷ୍ଠାନ କରିବେ; ଭୈକ୍ଷଚର୍ଯ୍ୟ ଭିନ୍ନ ଅପର ଆଶ୍ରମମାନଙ୍କରେ ବାସ କରିବେ ଏବଂ ରଣଭୂମିରେ ଦେହତ୍ୟାଗ ରୂପ ଉତ୍କୃଷ୍ଟ ଧର୍ମକୁ ଆଚରଣ କରିବେ । ୨ ।

ମୁନିମାନେ ଦାନକୁ ଶ୍ରେଷ୍ଠ ବୋଲି କହନ୍ତି; ତନ୍ମଧ୍ୟରେ ଶରୀର ଦାନ ସର୍ବାପେକ୍ଷା ଶ୍ରେଷ୍ଠ ଅଟେ । ଯେ ପ୍ରକାରରେ ଭୂପତିଗଣ ନିଯୁକ୍ତ ରାଜ-ଧର୍ମରେ ଅନୁରକ୍ତ ହୋଇ ବହୁଶ୍ରୁତ ଗୁରୁ ଶୁଶ୍ରୂଷା ଏବଂ ପରସ୍ପର ଯୁଦ୍ଧ କରି ରଣଭୂମିରେ ନିଜ ନିଜ ଶରୀର ଦାନ କରୁଥିଲେ । ତାହା ତୁମ୍ଭେ ପ୍ରତ୍ୟକ୍ଷ ଦେଖିଅଛ । କେବଳ ଧର୍ମ କାମ କ୍ଷତ୍ରିୟ ଏକାକୀ ହୋଇ ସନାତନ ଧର୍ମରୂପ ବ୍ରହ୍ମଚର୍ଯ୍ୟ ନାମକ ଆଶ୍ରମରେ ବିଚରଣ କରିବେ ଏବଂ ସାଧାରଣଙ୍କର ବିଗ୍ରହ କାଳରେ ପ୍ରବୃତ୍ତ ହୋଇ ତାହାକୁ ପ୍ରିୟ

କମ୍ବା କାହାକୁ ଅପ୍ରିୟ ବୋଲି ଜ୍ଞାନ କରିବେ ନାହିଁ । ସ୍ଥିତୁର୍ବର୍ଣ୍ଣ୍ୟ ସ୍ଥାପନ, ପ୍ରଜାପାଳନ ଏବଂ ଦର୍ବୋକ୍ତ ଯୋଗ, ନିୟମ ପୌରୁଷ ଓ ସର୍ବବିଧ ଉଦ୍ୟୋଗ ବିଦ୍ୟମାନଥିବାରୁ ପଣ୍ଡିତମାନେ ସର୍ବ ଧର୍ମୋପପନ୍ନ କ୍ଷାତ୍ରଧର୍ମକୁ ଶ୍ରେଷ୍ଠ ଧର୍ମକୁ ବୋଲି କହନ୍ତି । ଯେଉଁ ଯେଉଁ ବର୍ଣ୍ଣସବୁ ନିଜର ଆଚରଣୀୟ ଧର୍ମକୁ ଅଯଥାର୍ଥ ଜ୍ଞାନ କରି ନିଜନିଜ ଧର୍ମକୁ ଆଚରଣ ନ କରନ୍ତି ଆର୍ଯ୍ୟଗଣ ସେହି ନିଯୁତ ଅର୍ଥ ବିନଷ୍ଟ ମନୁଷ୍ୟମାନଙ୍କୁ ମର୍ଯ୍ୟାଦାବିହୀନ ଓ ପଶୁ ସଦୃଶ ବୋଲି କହନ୍ତି । ଉକ୍ତ ପଶୁଭୂତ ମନୁଷ୍ୟମାନଙ୍କ କ୍ଷାତ୍ରଧର୍ମ ଅର୍ଥଯୋଗରୁ ମାତ୍ର ସମସ୍ତ ଜଣାଇବେ; ଅତଏବ ସମସ୍ତ ଆଶ୍ରମ ଅପେକ୍ଷା କ୍ଷାତ୍ରଧର୍ମ ଶ୍ରେୟସ୍କର । ୭ ।

ନିବେଦବତ୍ ବ୍ରାହ୍ମଣମାନଙ୍କର ଯେଉଁ ଯଜ୍ଞାଦି ଓ ଅପର ବ୍ରାହ୍ମଣମାନଙ୍କର ଯେଉଁ ଆଶ୍ରମ ଧର୍ମସବୁ ଉକ୍ତ ହୋଇଅଛି, ଏହି ଉଭୟ କର୍ମ ବ୍ରାହ୍ମଣମାନଙ୍କର ଅବଶ୍ୟ ଆଚରଣୀୟ ବୋଲି ପଣ୍ଡିତମାନେ କହନ୍ତି ଏବଂ ଏତଦ୍‌ଭିନ୍ନ ସେ ଅନ୍ୟ କୌଣସି କର୍ମ କଲେ, ଶୂଦ୍ର ପ୍ରାୟ ଶସ୍ତ୍ରଦ୍ୱାରା ବଧ୍ୟ ହେବେ । ୮ ।

ହେ ପାର୍ଥିବ ? ବ୍ରାହ୍ମଣ ଆଶ୍ରମ ଚତୁଷ୍ଟୟ ବିହିତ ଓ ବେଦୋକ୍ତ ଧର୍ମସବୁ ଆଚରଣ କରିବେ, କିନ୍ତୁ ଶୂଦ୍ରାଦି ବର୍ଣ୍ଣଗଣ କଦାପି ସେହି ଧର୍ମକୁ ଆଚରଣ କରିବେ ନାହିଁ ଏବଂ ଅନ୍ୟଧର୍ମପ୍ରବୃତ୍ତ ବ୍ରାହ୍ମଣଙ୍କ ପକ୍ଷରେ ନୈହିତକ ବୃତ୍ତି କଳ୍ପିତ ହୁଏ ନାହିଁ । ସେ ଯେଉଁପରି କର୍ମ କରନ୍ତି ତାହାଙ୍କର ତଦନୁରୂପ ଧର୍ମହୁଏ ଏବଂ ସେ ସେହି ଧର୍ମର ସ୍ୱରୂପ ହୋଇଥାନ୍ତି । ୧୦ ।

ବ୍ରାହ୍ମଣ କୁକର୍ମ ରତ ହୋଇ ନିଜର କର୍ତ୍ତବ୍ୟ କର୍ମକୁ ଆଚରଣ ନ କଲେ ସେ ସମ୍ମାନ ଲାଭର ଅଯୋଗ୍ୟ ଓ ସମସ୍ତଙ୍କର ଅବିଶ୍ୱାସ୍ୟ ହୁଅନ୍ତି । ୧୧ ।

ଏହି ଧର୍ମ ସମସ୍ତ ଧର୍ମରେ ସଂସୃଷ୍ଟ, ସେହି ହେତୁରୁ କ୍ଷତ୍ରିୟ-ମାନଙ୍କର ସର୍ବତୋଭାବରେ ଏହି ଧର୍ମର ଉତ୍କର୍ଷ ବିଧାନ କରିବା କର୍ତ୍ତବ୍ୟ ଯେ ହେତୁରୁ ରାଜଧର୍ମ ବୀରଜ୍ୟେଷ୍ଠ ଓ ବୀରଧର୍ମ ଅଟେ । ଅତଏବ ଆମ୍ଭମତରେ ସମସ୍ତ ଧର୍ମମଧ୍ୟରେ ରାଜଧର୍ମ ପ୍ରଧାନ ଅଟେ । ୧୨ ।

ମାନ୍ଧାତା କହିଲେ-ହେ ଭଗବାନ୍ ସୁରନାଥ ! ଯବନ, କିରାତ ବ୍ୟାଧ, ଗାନ୍ଧାର ଚୀନ, ଶବର, ବର୍ବର, ଶକ, ତୁଷାର, କଙ୍କ, ପହ୍ଲବ,

ଆନ୍ଧ୍ର; ମଦ୍ର, ପୌଣ୍ଡ୍ର, ପୁଳନ୍ଦ, ରମଠ ଓ କାମ୍ବୋଜଗଣ ଏବଂ ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କଠାରୁ ଉତ୍ପନ୍ନ ଇତର ଜାତିସବୁ ଓ ବୈଶ୍ୟ ଓ ଶୂଦ୍ରଗଣ ଏମାନେ ରାଜ୍ୟମଧ୍ୟରେ ଅବସ୍ଥାନ କରି କି ପ୍ରକାରେ ଧର୍ମ୍ମାଚରଣ କରିବେ ଏବଂ ଆମ୍ଭପରି ମନୁଷ୍ୟମାନେ କପରି ବା ଦସ୍ୟୁଗଣଙ୍କୁ ଧର୍ମ୍ମରେ ସଂସ୍ଥାପିତ କରିବେ ? ଆମ୍ଭେ ଏହିସବୁ ଆପଣଙ୍କଠାରୁ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । କାରଣ ଆପଣ ମଦ୍‌ବିଧ କ୍ଷତ୍ରିୟମାନଙ୍କର ପରମ ବନ୍ଧୁ ଅଟନ୍ତି । ୧୬ ।

ଇନ୍ଦ୍ର କହିଲେ—ସମସ୍ତ ଦସ୍ୟୁଗଣଙ୍କର ମଧ୍ୟ ମାତା, ପିତା, ଆଚାର୍ଯ୍ୟ, ଗୁରୁ, ଆଶ୍ରମବାସୀ ଏବଂ ଭୂପତିଗଣଙ୍କର ସେବା କରିବା କର୍ତ୍ତବ୍ୟ । ବେଦୋକ୍ତ ଧର୍ମକର୍ମସବୁ ଏବଂ ଆମାନ୍ନଦ୍ୱାରା ଶ୍ରାଦ୍ଧାଦି ପିତୃଯଜ୍ଞ ଶୂଦ୍ରଙ୍କର ମଧ୍ୟ କର୍ତ୍ତବ୍ୟ ବୋଲି ବିହିତ ହୋଇଅଛି । ସେମାନେ ସମୟାନୁସାରେ ନିଯୁକ୍ତ ଦ୍ୱିଜଗଣଙ୍କୁ କୂପ, ପ୍ରପା, ଶଯ୍ୟା ଏବଂ ଇତର ଦାନସବୁ ପ୍ରଦାନ କରିବେ । ସଙ୍କର ଜାତି ଓ ସ୍ୱୈରଗଣଙ୍କର ସର୍ବଦା ଅହିଂସା, ସତ୍ୟ ଅକ୍ରୋଧ, ଶୌଚ ଓ ଅଦ୍ରୋହ, ବୃତ୍ତି ଦାୟମାନଙ୍କର ପାଳନ ଏବଂ ସ୍ତ୍ରୀ-ପୁତ୍ରାଦିଙ୍କର ଭରଣ ଏହିସବୁ ଧର୍ମ ଆଚରଣ କରିବା କର୍ତ୍ତବ୍ୟ । ୨୦ ।

ସେହି ଐଶ୍ୱର୍ଯ୍ୟାଭିଳାଷୀ ଦସ୍ୟୁଗଣଙ୍କର ସର୍ବ ପ୍ରକାର ଯଜ୍ଞ କରିବା ଏବଂ ଶାସ୍ତ୍ରୋକ୍ତ ଦକ୍ଷିଣା ଓ ମହାର୍ଘ ପାକ ଯଜ୍ଞ କରି ସର୍ବଭୂତଙ୍କୁ ଅନ୍ନପ୍ରଦାନ କରିବା କର୍ତ୍ତବ୍ୟ । ୨୧ ।

ହେ ଅନଘ ! ପୂର୍ବରୁ ଦସ୍ୟୁବୃତ୍ତିଗଣଙ୍କ ପକ୍ଷରେ ଏହିସବୁ କର୍ମ ବିହିତ ହୋଇଅଛି ଏବଂ ସକଳ ଲୋକଙ୍କର ଏହିପରି ଆଚରଣ କରିବା କର୍ତ୍ତବ୍ୟ । ୨୨ ।

ମାନ୍ଧାତା କହିଲେ—ମନୁଷ୍ୟଲୋକରେ ଦସ୍ୟୁଗଣ ଚାରିବର୍ଣ୍ଣ ଓ ଚାରି ଆଶ୍ରମ ମଧ୍ୟରେ ଲିଙ୍ଗାନ୍ତରରେ ବର୍ତ୍ତମାନ ରହିଅଛନ୍ତି, ଏହାର କାରଣ କ'ଣ ? । ୨୩ ।

ଇନ୍ଦ୍ର କହିଲେ—ହେ ଅନଘ ! ଦଣ୍ଡନୀତି ବିନଷ୍ଟ ଓ ରାଜଧର୍ମ ନିରାକୃତ ହେଲେ ଲୋକମାନେ ରାଜଦୌରାତ୍ମ୍ୟରେ ସର୍ବତୋଭାବରେ ପ୍ରମୋହିତ ହୁଅନ୍ତି । ହେ ମହାରାଜ ! ଏହି ସତ୍ୟ ଯୁଗ ନିବୃତ୍ତ ହେଲେ ଆଶ୍ରମମାନଙ୍କର ବିକଳ୍ପ ଉପସ୍ଥିତ ହେବ ଏବଂ ପୃଥିବୀରେ ଅସଂଖ୍ୟ ଜଟାଦି ଚିହ୍ନଧାରୀ ଭିକ୍ଷୁକସବୁ ବିଚରଣ କରିବେ । ୨୫ ।

ସେମାନେ କାମ ଓ କ୍ରୋଧର ବଶୀଭୂତ ହୋଇ ପୁରାତନ ଧର୍ମ ସକଳର ପରମ ଗତିରେ ଅବଜ୍ଞା ପ୍ରଦର୍ଶନପୂର୍ବକ ଅସତ୍‌ପଥ ଅବଲମ୍ବନ କରିବେ । ୨୬ ।

ପରନ୍ତୁ ଯେତେବେଳେ ଦଣ୍ଡନୀତିଦ୍ୱାରା ପାପମତି ନିବୃତ୍ତ ହୁଏ, ସେତେବେଳେ ସେହି ମଙ୍ଗଳମୟ, ପରମ, ଶାଶ୍ୱତ ଧର୍ମ କଦାପି ବିଚଳିତ ହୁଏ ନାହିଁ । ୨୭ ।

ଯେ ସର୍ବଲୋକଗୁରୁ ଭୂପତିଙ୍କୁ ଅବମାନିତ କରନ୍ତି, ତାହାଙ୍କର ଦାନ, ହବନ ବା ଶ୍ରାଦ୍ଧ କୁତ୍ରାପି ଫଳଦାୟକ ହୁଏ ନାହିଁ । ୨୮ ।

ହେ ମହାରାଜ ! ଦେବତାମାନେ ସୁଦ୍ଧା ସନାତନ ଦେବରୂପ ମନୁଷ୍ୟମାନଙ୍କର ଅଧିପତି ଧର୍ମକାମ ନରପତିଙ୍କୁ ଅବମାନିତ କରନ୍ତି ନାହିଁ । ଭଗବାନ ପ୍ରଜାପତି ଏହି ଅଖିଳ ଜଗତକୁ ସୃଷ୍ଟି କରିଅଛନ୍ତି, କିନ୍ତୁ ସେ ମଧ୍ୟ ଏହାର ପ୍ରବୃତ୍ତି ନିବୃତ୍ତି ନିମିତ୍ତ ସମସ୍ତ ଧର୍ମ ମଧ୍ୟରେ କ୍ଷତ୍ର ଧର୍ମକୁ ଇଚ୍ଛା କରନ୍ତି । ୩୦ ।

ଯେ ପ୍ରବୃତ୍ତ ଧର୍ମର ଗତିକୁ ସ୍ମରଣ କରି ତଦନୁସାରେ କାର୍ଯ୍ୟ କରନ୍ତି, ସେହି ବ୍ୟକ୍ତି ଆମ୍ଭର ମାନ୍ୟ ଓ ପୂଜ୍ୟ ଅଟନ୍ତି, କାରଣ ତାଦୃଶ ଧର୍ମରେ କ୍ଷାତ୍ରଧର୍ମ ପ୍ରତିଷ୍ଠିତ ଅଛି । ୩୧ ।

ଭୀଷ୍ମ କହିଲେ, ସେହି ଇନ୍ଦ୍ରରୂପଧାରୀ ପ୍ରଭୁ ଭଗବାନ ବିଷ୍ଣୁ ଏହିପରି କହି ସୁରଗଣଙ୍କଦ୍ୱାରା ପରିବୃତ୍ତ ହୋଇ ସ୍ୱକୀୟ ଅକ୍ଷତ, ଶାଶ୍ୱତ-ପଦ ଭବନକୁ ଗମନ କଲେ । ୩୨ ।

ହେ ଅନଘ ! ଯେତେବେଳେ ସୁଚରିତ ଧର୍ମସବୁ ପୂର୍ବରୁ ଏହିପରି ପ୍ରବର୍ତ୍ତିତ ହୋଇଅଛି, ସେତେବେଳେ କେଉଁ ବହୁଶ୍ରୁତ ସଚେତନ ଜୀବ ସେହି କ୍ଷାତ୍ରଧର୍ମର ଅବମାନନା କରିବ ? ୩୩ ।

ଅନ୍ୟାୟ ମତରେ ପ୍ରବୃତ୍ତ ଓ ନିବୃତ୍ତ ଧର୍ମସବୁ, ଅନ୍ଧପ୍ରାୟ ପଥ ମଧ୍ୟରେ ବିଲୟ ପ୍ରାପ୍ତ ହୁଏ । ୩୪ ।

ହେ ଅନଘ ! ପୁରୁଷ ଶାର୍ଦ୍ଦୂଳ ! ତୁମ୍ଭେ ନିୟତ ସେହି ଆଦି ପ୍ରବର୍ତ୍ତିତ ଓ ପ୍ରାଚୀନଗଣଙ୍କର ଶରଣଭୂତ କ୍ଷାତ୍ରଧର୍ମକୁ ଆଚରଣ କର । ତଦ୍ଦ୍ୱାରା ତୁମ୍ଭର ମନୋରଥ ପୂର୍ଣ୍ଣହେବ । ତୁମ୍ଭେ ତଦନୁଷ୍ଠାନରେ ସମର୍ଥ ଅଟ । ୩୫ । (୨୩୨ ପରେ କ ଠାରୁ ଫ ପର୍ଯ୍ୟନ୍ତ ସଙ୍ଖ୍ୟାତ ପୃଷ୍ଠା ଏଠାରେ ଶେଷ ହେଲା ଓ ଏହାପରେ ୨୩୩ ପୃଷ୍ଠା ଆରମ୍ଭ)

---

## ଅଧ୍ୟାୟ—୬୭

ଯୁଧିଷ୍ଠିର କହିଲେ—ଆପଣଙ୍କର କଥିତ ବାନପ୍ରସ୍ଥାଦି ଗୃହସ୍ଥିତି ଆଶ୍ରମର ଧର୍ମ ସବୁ ସଂକ୍ଷେପ ରୂପରେ ଶ୍ରବଣ କଲି । କିନ୍ତୁ ତହିଁରେ ଆମ୍ଭର ମନ ବିଶେଷ ପରିତୃପ୍ତି ହୋଇ ନାହିଁ । ଅତଏବ ଆପଣ ପୁନର୍ବାର ବିସ୍ତାର କ୍ରମରେ ତତ୍ସମସ୍ତ ଆମ୍ଭଠାରେ ବର୍ଣ୍ଣନ କରନ୍ତୁ । ୧ ।

ଭୀଷ୍ମ କହିଲେ—ହେ ମହାବାହୁ ଯୁଧିଷ୍ଠିର । ଯେଉଁ ସାଧୁସମ୍ମତ ଧର୍ମ ସବୁ ଅଛନ୍ତି ବିଦିତ ଅଛି, ତୁମ୍ଭେ ତତ୍ସମସ୍ତ ଅବଗତ ହୋଇ ଅଛ । ପରନ୍ତୁ ହେ ଧାର୍ମିକ ପ୍ରବର ମହାରାଜ ଯୁଧିଷ୍ଠିର । ତୁମ୍ଭେ ଆମ୍ଭଙ୍କୁ ଲିଙ୍ଗାନ୍ତର ତେ ଯେଉଁ ଧର୍ମ ବିଷୟ ପ୍ରଶ୍ନ କରୁଅଛ ତାହା ଶ୍ରବଣ କର । ୩ ।

ହେ ମନୁଜ ଶ୍ରେଷ୍ଠ କୁନ୍ତୀ ନନ୍ଦନ । ଏହି ଚତୁରାଶ୍ରମ କର୍ମ ସକଳର ସର୍ବ ପ୍ରକାର ଲିଙ୍ଗ ସାଧୁ ଭୂପତିମାନଙ୍କର ଆଚରିତ ରାଜଧର୍ମ ମଧ୍ୟରେ ବର୍ତ୍ତମାନ ଅଛି । ଭୂପତି କାମ ଦ୍ୱେଷ ରହିତ ଓ ସମଦର୍ଶୀ ହୋଇ ଦଣ୍ଡ ନୀତିର ନିୟମାନୁସାରେ ପ୍ରଜା ପାଳନ କଲେ, ସନ୍ନ୍ୟାସ ଲଭ୍ୟ ବ୍ରହ୍ମ ଲୋକକୁ ପ୍ରାପ୍ତ ହୁଅନ୍ତି । ଯେ ଜ୍ଞାନ ଲାଭ କରି ଅଛନ୍ତି, ଯଥା ସ୍ଥାନରେ ଦାନ, ନିଗ୍ରହ ଓ ଅନୁଗ୍ରହ ପ୍ରୟୋଗ କରି ପାରନ୍ତି, ଏବଂ ଶାସ୍ତ୍ରୋକ୍ତ କାର୍ଯ୍ୟ ସବୁ ଆଚରଣ କରନ୍ତି, ସେ ଗାର୍ହସ୍ଥ୍ୟମାନଙ୍କର ଲଭ୍ୟ ସ୍ଥାନକୁ ଲାଭ କରନ୍ତି । ୬ । ହେ ପାଣ୍ଡୁ ନନ୍ଦନ । ଯେ ସମ୍ବିଭାଗ ଅନୁସାରେ ନିଯୁକ୍ତ ପୂଜ୍ୟଗଣଙ୍କର ପୂଜା କରନ୍ତି, ସେହି ଭୂପତି ସର୍ବତୋଭାବରେ ବ୍ରହ୍ମଚର୍ଯ୍ୟ ଲଭ୍ୟ ଫଳକୁ ପ୍ରାପ୍ତ ହୁଅନ୍ତି । ୭ । ଯେ ବିପଦଗ୍ରସ୍ତ ଜ୍ଞାତି, ମିତ୍ର ଓ ସମ୍ବନ୍ଧିମାନଙ୍କ ସାଧ୍ୟାନୁସାରେ ଉଦ୍ଧାର କରନ୍ତି, ସେ ବାନପ୍ରସ୍ଥାଶ୍ରମର ପଦଲାଭ କରନ୍ତି । ୮ ।

ହେ କୁନ୍ତୀ ନନ୍ଦନ । ଲୋକମୁଖ୍ୟ ଓ ଆଶ୍ରମି ପ୍ରଧାନମାନଙ୍କର ସତ୍କାରକାରୀ, ପ୍ରତ୍ୟହ ବିପୁଳ ପିତୃଯଜ୍ଞ, ଭୂତଯଜ୍ଞ ଓ ମାନୁଷ ଯଜ୍ଞ ନିର୍ବାହକାରୀ, ଦେବ ଯଜ୍ଞ ଦ୍ୱାରା ସବିଭାଗ କ୍ରମେ ସମାଗତ ଅତିଥି ଓ ଅପର ଭୂତଗଣଙ୍କର ଯଥାବତ୍ ଅର୍ଚ୍ଚନାକାରୀ ଓ ଶିଷ୍ଟଗଣଙ୍କ ରକ୍ଷା ନିମିତ୍ତ ଶତ୍ରୁ ରାଜ୍ୟର ମର୍ଦ୍ଦନକାରୀ, ଏମାନେ ସମସ୍ତେ ବାନପ୍ରସ୍ଥଗଣଙ୍କ ନ୍ୟାୟ, ମୋକ୍ଷପ୍ରଦ ଲାଭ କରନ୍ତି । ୧୨ । ହେ ରାଜେନ୍ଦ୍ର । ପୃଥା ନନ୍ଦନ । ଯେ ସର୍ବଭୂତଙ୍କ ପାଳନ ଓ ନିଜର ରାଜ୍ୟକୁ ରକ୍ଷା କରନ୍ତି, ସେହି ନରପତି

ପାଳନର ସଂଖ୍ୟା ଅନୁସାରେ ଉପୂରମିତ ଯଜ୍ଞର ଫଳ ଲାଭ କରି ସନ୍ନ୍ୟାସ-ଲଭ୍ୟ ବ୍ରହ୍ମ ଲୋକଙ୍କୁ ପ୍ରାପ୍ତ ହୁଅନ୍ତି । ୧୩ । ନିୟତ ବେଦାଧ୍ୟୟନ, କ୍ଷମା, ଆଚାର୍ଯ୍ୟପୂଜନ ଏବଂ ଉପାଧ୍ୟାୟ ଶୁଶ୍ରୂଷା ଦ୍ୱାରା ବ୍ରହ୍ମଲୋକ ଲାଭ କରନ୍ତି । ଧର୍ମାନୁସାରେ ଆହ୍ନିକ ଜପ ଓ ଦେବପୂଜାରତ ନରପତି ଧାର୍ମିକ ଲଭ୍ୟ ପଦକୁ ଲାଭ କରନ୍ତି । ୧୫ । ପ୍ରଶାତ୍ୟୟ ଉପସ୍ଥିତ ହେଲେ ହେଁ ଯେଉଁ ଭୂପତି "ବିଜୟ ଲାଭ ହେବ କିମ୍ବା ମୃତ୍ୟୁ ହେବ" ଏହିପରି ନିଶ୍ଚୟ କରି ଯୁଦ୍ଧରେ ପ୍ରବୃତ୍ତ ହୁଅନ୍ତି, ସେ ବ୍ରହ୍ମ ଲୋକକୁ ପ୍ରାପ୍ତ ହୁଅନ୍ତି । ୧୬ ।

ହେ ଭାରତ । ଯେ ଶାଠ୍ୟ ବିହୀନ ହୋଇ ସର୍ବଦା ସର୍ବଭୂତଙ୍କ ଠାରେ ସରଳ ଭାବ ପ୍ରଦର୍ଶନ କରନ୍ତି ସେ ମଧ୍ୟ ବ୍ରହ୍ମ ଲୋକଙ୍କୁ ପ୍ରାପ୍ତ ହୁଅନ୍ତି । ୧୭ । ଯେ ବାନପ୍ରସ୍ଥ ଏବଂ ବେଦବିତ୍ ବ୍ରାହ୍ମଣମାନଙ୍କୁ ବିପୁଳ ଅର୍ଥ ପ୍ରଦାନ କରନ୍ତି, ସେ ବାନପ୍ରସ୍ଥଗଣଙ୍କ ସଦୃଶ ମୋକ୍ଷପ୍ରଦ ଲାଭ କରନ୍ତି । ୧୮ । ହେ ଭାରତ । ଯେଉଁ ଭୂପତି ସର୍ବଭୂତଙ୍କଠାରେ ଦୟା ଓ ଆନୃଶଂସ୍ୟ ପ୍ରକାଶ କରନ୍ତି, ସେ ଇଚ୍ଛାନୁସାରେ ସର୍ବ ପ୍ରକାର ସ୍ଥାନ ଲାଭ କରନ୍ତି । ୧୯ ।

ହେ ପାର୍ଥ କୁନ୍ତୀ ନନ୍ଦନ ଯୁଧିଷ୍ଠିର । ବାଳକ ଏବଂ ବୃଦ୍ଧଗଣଙ୍କ ଉପରେ କୌଣସି ପ୍ରକାର ନିଷ୍ଠୁର ବ୍ୟବହାର ନ କଲେ, ଇଚ୍ଛାନୁରୂପ ସ୍ଥାନ ଲାଭ ହୁଏ । ୨୦ । ହେ କୁରୁଶ୍ରେଷ୍ଠ । ଅନ୍ୟ ଲୋକର ବଳରେ ପୀଡ଼ିତ ଶରଣାଗତ ଜୀବଗଣଙ୍କୁ ପରିତ୍ରାଣ କଲେ ଗାର୍ହସ୍ଥ-ଲଭ୍ୟ ପଦ ଲାଭ ହୁଏ । ୨୧ । ଚରାଚର ଭୂତଗଣଙ୍କର ସର୍ବ ପ୍ରକାର ରକ୍ଷା ଏବଂ ଯଥା-ଯୋଗ୍ୟ ପୂଜା ଦ୍ୱାରା ଗାର୍ହସ୍ଥ୍ୟପଦ ଲାଭ ହୁଏ । ୨୨ ।

ହେ ପାର୍ଥ । ଜ୍ୟେଷ୍ଠାନୁଜ୍ୟେଷ୍ଠ ପତ୍ନୀମାନଙ୍କର, ଭ୍ରାତାମାନଙ୍କର ଏବଂ ପୁତ୍ର ଓ ନପ୍ତାମାନଙ୍କର ସମୟାନୁସାରେ ନିଗ୍ରହ କିମ୍ବା ଅନୁଗ୍ରହ ରୂପ ଗୃହସ୍ଥାଶ୍ରମ କର୍ମକୁ ତପ ବୋଲି ଯାଏ । ୨୩ । ହେ ପୁରୁଷ ଶାର୍ଦ୍ଦୂଳ । ଆତ୍ମା ଅର୍ଚ୍ଚନୀୟ ସାଧୁଗଣଙ୍କର ପୂଜା ପ୍ରଭୃତି ନିର୍ବାହ କଲେ ଗୃହସ୍ଥାଶ୍ରମର ଫଳ ଲାଭ କରନ୍ତି । ୨୪ । ହେ ଭରତ ଯୁଧିଷ୍ଠିର । ଆଶ୍ରମସ୍ଥ ଭୂତଗଣଙ୍କୁ ସ୍ୱଗୃହକୁ ଆହ୍ୱାନ କରି ଭୋଜ୍ୟାଦି ଦାନ କରିବା ଗୃହସ୍ଥମାନଙ୍କର କର୍ତ୍ତବ୍ୟ କର୍ମ । ୨୫ । ଯେଉଁ ପୁରୁଷ ବିଧାତୃ ସୃଷ୍ଟି ଧର୍ମରେ ଯଥା ନିୟମରେ ଅବସ୍ଥାନ କରନ୍ତି ସେ ସର୍ବାଶ୍ରମ ଲଭ୍ୟ ମଙ୍ଗଳମୟ ସ୍ଥାନକୁ ଲାଭ କରନ୍ତି । ୨୬ ।

ହେ କୁନ୍ତୀ ନନ୍ଦନ ଯୁଧିଷ୍ଠିର ! ଯେଉଁ ପୁରୁଷଙ୍କଠାରେ କୌଣସି କୌଣସି ଗୁଣସୁଦ୍ଧା ବିନଷ୍ଟ ହୁଏ ନାହିଁ, ଅର୍ଥଗଣ ସେହି ନରଶ୍ରେଷ୍ଠଙ୍କୁ ମଧ୍ୟ ଅଶ୍ରମସ୍ଥ ବୋଲି କହନ୍ତି । ୨୭ । ହେ ଯୁଧିଷ୍ଠିର । ସକଳ ଆଶ୍ରମରେ ସ୍ଥାନମାନ, କୁଳମାନ ଏବଂ ବୟୋମାନ ରକ୍ଷା କରି ଅବସ୍ଥାନ କରିବା କର୍ତ୍ତବ୍ୟ । ହେ ପାର୍ଥ ! ନୃପତି ଦେଶ ଧର୍ମ ଏବଂ କୁଳ ଧର୍ମ ସବୁ ଯଥାବତ୍ ପାଳନ କଲେ ସର୍ବାଶ୍ରମ ଲଭ୍ୟ ଫଳକୁ ଲାଭ କରନ୍ତି । ୨୯ । ଯଥା ସମୟରେ ଭୂତଗଣଙ୍କର ଯଥାଯୋଗ୍ୟ ବିଭୂତି ଏବଂ ଉପହାର ପ୍ରଦାନ କଲେ ସାଧୁଗଣଙ୍କର ଆଶ୍ରମରେ ବସତି ଲାଭ କରନ୍ତି । ୩୦ । ହେ କୌନ୍ତେୟ ! ଭୟ ଉପସ୍ଥିତ ହେବାରୁ ଧର୍ମାଧର୍ମ ପ୍ରତିପତ୍ତି ଶୂନ୍ୟ ହୋଇ ମଧ୍ୟ ଯେଉଁ ଭୂପତି ଧର୍ମପ୍ରତି ବିଶେଷ ଦୃଷ୍ଟି ରଖନ୍ତି, ସେ ସର୍ବାଶ୍ରମ ଲଭ୍ୟ ଫଳକୁ ଲାଭ କରନ୍ତି । ୩୧ । ଧର୍ମ କୁଶଳ ଲୋକମାନେ ଯେଉଁ ରାଜାଙ୍କର ରାଜ୍ୟ ମଧ୍ୟରେ ଯଥାବତ୍ ପାଳିତ ହୋଇ ଯେଉଁ ଧର୍ମ ଆଚରଣ କରନ୍ତି, ସେହି ରାଜା ମଧ୍ୟ ସେମାନଙ୍କର ସେହି ଆଚରିତ ଧର୍ମର ଅଂଶଭାଗୀ ହୁଅନ୍ତି । ପରନ୍ତୁ ହେ ପୁରୁଷ ବ୍ୟାଘ୍ର ! ଯେଉଁ ଭୂପତିମାନେ ଧର୍ମାଧର୍ମ ଓ ଧର୍ମପରାୟଣ ମନୁଷ୍ୟମାନଙ୍କ ରକ୍ଷା ନ କରନ୍ତି, ସେହି ଭୂପତିମାନେ ଉକ୍ତ ମନୁଷ୍ୟମାନଙ୍କ କୃତ ପାପର ଫଳଭାଗୀ ହୁଅନ୍ତି । ୩୩ ।

ହେ ଅନଘ ଯୁଧିଷ୍ଠିର ! ଯେଉଁମାନେ ପାର୍ଥିବଗଣଙ୍କର ସାହାଯ୍ୟ କରନ୍ତି, ସେମାନେ ଅନ୍ୟକୃତ ଧର୍ମର ଅଂଶଭାଗୀ ହୁଅନ୍ତି । ୩୪ । ହେ ପୁରୁଷ ଶାର୍ଦ୍ଦୂଳ ! ଆମ୍ଭେମାନେ ଯେଉଁ ଧର୍ମର ଉପାସନା କରୁଁ ଏହି ସର୍ବ ଶ୍ରେଷ୍ଠ ଗାର୍ହସ୍ଥ୍ୟ ଧର୍ମ ସକଳ ଆଶ୍ରମ ଧର୍ମ ଅପେକ୍ଷା ପବିତ୍ର ଅଟେ । ୩୫ । ଯେ ନ୍ୟସ୍ତ ଦଣ୍ଡ ଓ ଜିତକ୍ରୋଧ ହୋଇ ସର୍ବଭୂତଙ୍କୁ ଆପଣାତୁଲ୍ୟ ଜ୍ଞାନ କରନ୍ତି, ସେ ଇହଲୋକ ଓ ପରଲୋକରେ ସୁଖ ଲାଭ କରନ୍ତି । ୩୬ ।

ସେହି ଭୂପତି ସତ୍ତ୍ୱରୂପ କର୍ଣ୍ଣଧାର ବଳ ବିଶିଷ୍ଟ, ଶାସ୍ତ୍ରରୂପ ବନ୍ଧନ ରଜ୍ଜୁଯୁକ୍ତ, ଦାନ ରୂପ ବାୟୁ ଦ୍ୱାରା ସଞ୍ଚାଳିତ ଶୀଘ୍ରଗାମୀ ରାଜଧର୍ମ ରୂପ ନୌକାଦ୍ୱାରା ସଂସାର ରୂପ ସମୁଦ୍ରକୁ ଉତ୍ତୀର୍ଣ୍ଣ ହୁଅନ୍ତି । ୩୭ । ଯେତେବେଳେ ତାହାଙ୍କର ହୃଦୟସ୍ଥ ବାସନା ସବୁ ସର୍ବପ୍ରକାରେ ବିଷୟରୁ ନିବୃତ୍ତ ହୁଏ, ସେତେବେଳେ ସେ ସତ୍ତ୍ୱସ୍ଥ ହୁଅନ୍ତି ଏବଂ ତଦନନ୍ତର ବ୍ରହ୍ମ ସାକ୍ଷାତ୍କାର ଲାଭ କରନ୍ତି । ୩୮ ।

ହେ ପୁରୁଷ ଶାର୍ଦ୍ଦୂଳ ନରନାଥ । ପ୍ରଜାପାଳନ ରତ ଭୂପତି ଧ୍ୟାନ ଏବଂ ଶତ୍ରୁ ନିରୋଧ ଦ୍ୱାରା ସୁପ୍ରସନ୍ନ ହୋଇ ବିପୁଳ ଧର୍ମକୁ ପ୍ରାପ୍ତ ହୁଅନ୍ତି । ୩୯ । ହେ ଯୁଧିଷ୍ଠିର ! ତୁମ୍ଭେ ନିଯୁକ୍ତ ବେଦାଧ୍ୟୟନଶୀଳ ସତ୍କର୍ମ-ରତ ବ୍ରାହ୍ମଣମାନଙ୍କର ପାଳନରେ ଯତ୍ନବାନ୍ ହୁଅ । ବାନପ୍ରସ୍ଥଗଣ ଏବଂ ଅପର ଆଶ୍ରମବାସୀଗଣ ଯେଉଁ ଧର୍ମ ଆଚରଣ କରନ୍ତି, ଭୂପତି ପ୍ରଜାପାଳନ-ରୂପ ଧର୍ମ ଦ୍ୱାରା ତାହାର ଶତଗୁଣ ଫଳ ଲାଭ କରନ୍ତି । ୪୧ ।

ହେ ପାଣ୍ଡବ ଶ୍ରେଷ୍ଠ । ଏହି ସବୁ ବହୁବିଧ ଧର୍ମ ତୁମ୍ଭଠାରେ କୀର୍ତ୍ତିତ ହେଲା । ତୁମ୍ଭେ ଏହି ପରମ୍ପରାଗତ ଅନାଦି ଧର୍ମର ଅନୁଷ୍ଠାନ କର । ହେ ପୁରୁଷ ଶାର୍ଦ୍ଦୂଳ ପାଣ୍ଡୁନନ୍ଦନ । ତୁମ୍ଭେ ନିଯୁକ୍ତ ଏକାଗ୍ର ଚିତ୍ତରେ ପ୍ରଜା ପାଳନ କରିବାରେ ଅନୁରକ୍ତ ଥାଅ; ତାହାହେଲେ ଚାତୁରାଶ୍ରମ୍ୟ ଓ ଚାତୁର୍ବର୍ଣ୍ଣ୍ୟ ଧର୍ମମାନଙ୍କର ଫଳ ଲାଭ କରିବ । ୪୩ ।

---

## ଅଧ୍ୟାୟ—୬୭

ଯୁଧିଷ୍ଠିର କହିଲେ—ହେ ପିତାମହ ! ଆପଣ ଚାତୁରାଶ୍ରମ୍ୟ ଓ ଚାତୁର୍ବର୍ଣ୍ଣ୍ୟ ଧର୍ମ ସବୁ ବର୍ଣ୍ଣନ କଲେ ବର୍ତ୍ତମାନ ରାଜ୍ୟର କର୍ତ୍ତବ୍ୟତମ କାର୍ଯ୍ୟ ସବୁ କୀର୍ତ୍ତନ କରନ୍ତୁ । ୧ ।

ଭୀଷ୍ମ କହିଲେ—ରାଜ୍ୟବାସୀ ଲୋକମାନଙ୍କର ରାଜାଙ୍କୁ ଅଭିଷେଚନ କରିବା କର୍ତ୍ତବ୍ୟତମ । କାରଣ ଦସ୍ୟୁଗଣ ଅରାଜକ ଏବଂ ବଳବିହୀନ ରାଜ୍ୟକୁ ଅଭିଭୂତ କରନ୍ତି । ୨ । ଅରାଜକ ରାଜ୍ୟ ମଧ୍ୟରେ ପରସ୍ପର ପରସ୍ପରର ଧର୍ମରକ୍ଷା ନିମିତ୍ତ ଯତ୍ନବାନ ହୁଅନ୍ତି ନାହିଁ । କିନ୍ତୁ ପରସ୍ପରର ଅନିଷ୍ଟ ଚେଷ୍ଟା କରନ୍ତି; ଅତଏବ ଏତାଦୃଶ ରାଜ ବିହୀନ ରାଜ୍ୟକୁ ଧିକ୍ । ୩ ।

ହେ ଯୁଧିଷ୍ଠିର । ଏହିପରି ଶ୍ରୁତ ଅଛି ଯେ ରାଜାଙ୍କୁ ବରଣ କଲେ ଇନ୍ଦ୍ରକୁ ବରଣ କରିବା ହୁଏ । ଅତଏବ ଐଶ୍ୱର୍ଯ୍ୟାଭିଳାଷୀ ଲୋକମାନଙ୍କର ଇନ୍ଦ୍ରଙ୍କ ପ୍ରାୟ, ରାଜାଙ୍କୁ ମଧ୍ୟ ପୂଜା କରିବା କର୍ତ୍ତବ୍ୟ । ଆମ୍ଭ ମତରେ ଅରାଜକ ରାଜ୍ୟ ମଧ୍ୟରେ ବାସ କରିବା କର୍ତ୍ତବ୍ୟ ନୁହେଁ । କାରଣ ତାଦୃଶ ରାଜ୍ୟରେ ଅଗ୍ନି ମଧ୍ୟ ହବ୍ୟ ବହନ କରନ୍ତି ନାହିଁ । ୫ । ପରନ୍ତୁ ହିତାର୍ଥୀ

ଅରାଜକ ରାଜ୍ୟ ମଧ୍ୟକୁ ଅପର ରାଜ୍ୟାର୍ଥୀ ବଳଶାଳୀ ରାଜା ଆଗମନ କଲେ ପ୍ରତ୍ୟୁଦ୍‌ଗମାଦି ଦ୍ୱାରା ତାହାଙ୍କର ସମ୍ମାନ ପ୍ରଦର୍ଶନ କରିବା ସୁମନ୍ତ୍ରଣାର କାର୍ଯ୍ୟ । କାରଣ ପାପମୟ ଅରାଜକରୁ ଅଧିକ ଦୋଷାବହ ଆଉ କିଛି କାର୍ଯ୍ୟ ନାହିଁ । ସେହି ବଳବାନ ଭୂପତି ସନ୍ତୁଷ୍ଟ ଥିଲେ, ସମସ୍ତ ମଙ୍ଗଳ କିନ୍ତୁ ସେ ପ୍ରକୁପିତ ହେଲେ ସମସ୍ତ ଦେଶକୁ ଉତ୍ସନ୍ନ କରି ପାରନ୍ତି । ୮ ।

ହେ ମହାରାଜ ! ସେଉଁ ଗାଭୀ ଦୋହନ କାଳରେ ବ୍ୟାଘାତ ଜନ୍ମାଏ, ତାହାକୁ ବହୁତର ଯନ୍ତ୍ରଣା ଭୋଗ କରିବାକୁ ହୁଏ, କିନ୍ତୁ ସୁଦୁହା ହେଲେ କେହି ତାହାକୁ କ୍ଲେଶ ଦିଅନ୍ତି ନାହିଁ ଏବଂ ଯେଉଁ ଦାରୁ ସହଜରେ ପ୍ରଣତ ହୁଏ, ତାହାକୁ ଅଗ୍ନିରେ ସନ୍ତାପ କରିବାର ଆବଶ୍ୟକ ହୁଏ ନାହିଁ । କିନ୍ତୁ ସ୍ୱୟଂ ପ୍ରଣତ ନ ହେଲେ ତାହାକୁ ଅବଶ୍ୟ ସନ୍ତାପିତ କରିବାକୁ ହୁଏ । ୧୦ । ହେ ବୀର ! ଏହି ଦୁଇ ଉପମା ପ୍ରତି ଦୃଷ୍ଟିକରି ବଳବାନଠାରେ ନତ ହେବା କର୍ତ୍ତବ୍ୟ । କାରଣ ବଳବାନଠାରେ ନତ ହେଲେ ଇନ୍ଦ୍ରଙ୍କଠାରେ ନତ ହେଲା ପ୍ରାପ୍ତ ହୁଏ । ସୁତରାଂ ରାଜ ବିହୀନ ପ୍ରଜାମାନଙ୍କର ଆତ୍ମ ମଙ୍ଗଳ ନିମିତ୍ତ ରାଜାଙ୍କୁ ରକ୍ଷା କରିବା କର୍ତ୍ତବ୍ୟ, କାରଣ ଅରାଜକ ରାଜ୍ୟରେ ଧନ କିମ୍ବା ଦାରାଦିର ଉପଭୋଗ ହୁଏ ନାହିଁ । ୧୨ । ଅରାଜକ ରାଜ୍ୟ ମଧ୍ୟରେ ପାପୀ ପୁରୁଷ ପରବିତ୍ତ ହରଣ କରି ପରମପ୍ରୀତି ଲାଭ କରନ୍ତି; କିନ୍ତୁ ଯେତେବେଳେ ଅନ୍ୟାନ୍ୟ ଲୋକମାନେ ସେହି ପରବିତ୍ତ ହରଣକାରୀର ବିତ୍ତକୁ ହରଣ କରନ୍ତି, ତେତେବେଳେ ସେମାନେ ମଧ୍ୟ ରାଜାଙ୍କୁ ଇଚ୍ଛା କରନ୍ତି, କାରଣ ତାହାହେଲେ ପାପାତ୍ମାମାନେ କୌଣସି ପ୍ରକାରେ ମଙ୍ଗଳ ଲାଭ କରିପାରିବେ ନାହିଁ । ୧୩ ।

ହେ ଯୁଧିଷ୍ଠିର ! ଅରାଜକ ହେଲେ ଦୁଇଜଣ ଏକ ବ୍ୟକ୍ତିର ବିତ୍ତକୁ ଏବଂ ଅନ୍ୟାନ୍ୟ ଅନେକ ଲୋକେ ଦୁଇଜଣଙ୍କର ବିତ୍ତକୁ ହରଣ କରନ୍ତି । ୧୪ । ଦାସ୍ୟ ବୃତ୍ତିର ଅନର୍ହମାନଙ୍କୁ ବଳପୂର୍ବକ ଦାସ କରନ୍ତି ଏବଂ ବଳପୂର୍ବକ ପର ସ୍ତ୍ରୀମାନଙ୍କୁ ହରଣ କରନ୍ତି, ଏହି କାରଣରୁ କେବଳ ଦେବଗଣ ପ୍ରଜାପାଳକ ରାଜାଙ୍କର ନିୟମ କରିଅଛନ୍ତି । ୧୫ । ଯଦି ଦଣ୍ଡଧାରକ ନରପତି ଲୋକମାନଙ୍କ ସହିତ ପୃଥିବୀକୁ ରକ୍ଷା କରୁ ନଥାନ୍ତେ, ତାହା ହେଲେ ବଳଶାଳୀମାନେ ଜଳଜୀବୀ ମତ୍ସ୍ୟମାନଙ୍କ ସଦୃଶ ଦୁର୍ବଳଗଣଙ୍କୁ ଭକ୍ଷଣ କରନ୍ତେ । ୧୬ । ଆମ୍ଭେମାନେ ଶୁଣିଅଛୁଁ ଯେ, ଯେରୂପ ଜଳ ମଧ୍ୟରେ ବୃହଦାକାୟ ମତ୍ସ୍ୟ ସବୁ କୃଶକାୟ ମତ୍ସ୍ୟମାନଙ୍କୁ

ଭକ୍ଷଣ କରନ୍ତି, ତଦ୍ରୂପ ଅରାଜକ ରାଜ୍ୟ ମଧ୍ୟରେ ପ୍ରଜାଗଣ ବିନଷ୍ଟ ହୋଇଥିଲେ, ଏହି ପ୍ରକାରେ ପରସ୍ପର ସମସ୍ତଙ୍କର କ୍ଷୁଲକ୍ଷୟ ହେବାରୁ ସେମାନେ ସମବେତ ହୋଇ ପରସ୍ପର ଶପଥ ପୂର୍ବକ ଏହି ନିୟମ ସ୍ଥାପନ କରିଥିଲେ ଯେ, "ଆମ୍ଭମାନଙ୍କ ମଧ୍ୟରେ ଯେ କେହି ନିଷ୍ଠୁର ଭାଷୀ, କଠୋର ଦଣ୍ଡ, ପରସ୍ତ୍ରୀଗାମୀ ଏବଂ ପରସ୍ୱାପହାରୀ ହେବେ, ସେମାନେ ଆମ୍ଭମାନଙ୍କର ତ୍ୟାଜ୍ୟ ହେବେ ।" ସେମାନେ ନିର୍ବିଶେଷରେ ସକଳ ବର୍ଣ୍ଣର ବିଶ୍ୱାସ ନିମିତ୍ତ ପରସ୍ପର ଏହିପରି ପ୍ରତିଜ୍ଞା କରି ନିର୍ବିରୋଧରେ ଅବସ୍ଥାନ କଲେ । ୧୯ ।

ତଦନନ୍ତର ସେମାନେ ସମସ୍ତେ ମିଳିତ ହୋଇ ପିତାମହ ବ୍ରହ୍ମାଙ୍କ ନିକଟକୁ ଗମନ ପୂର୍ବକ ତାହାଙ୍କୁ କହିଲେ—ହେ ଭଗବାନ ! ଆମ୍ଭମାନଙ୍କର କୌଣସି ଈଶ୍ୱର ନଥିବାରୁ ଆମ୍ଭମାନଙ୍କର ଅସୁଖ ବୃଦ୍ଧି ହେଉଅଛି ଏବଂ ଆମ୍ଭେମାନେ ବିନଷ୍ଟପ୍ରାୟ ହୋଇଅଛୁଁ । ଅତଏବ ଆପଣ ଆମ୍ଭମାନଙ୍କ ନିମିତ୍ତ ଏପରି ଜଣେ ଈଶ୍ୱର ନିଯୁକ୍ତ କରନ୍ତୁ, ଯେ କି ଆମ୍ଭମାନଙ୍କୁ ସମସ୍ତଙ୍କୁ ପ୍ରତିପାଳନ କରିବେ ଏବଂ ଯାହାଙ୍କୁ ଆମ୍ଭେମାନେ ସମସ୍ତେ ମିଳିତ ହୋଇ ପୂଜା କରିବୁଁ । ତଦନନ୍ତର ପିତାମହ ମନୁଙ୍କୁ ସେମାନଙ୍କର ରାଜା ହେବା ନିମିତ୍ତ ଆଦେଶ କରିବାରୁ ମନୁ ସେହି ପ୍ରଜାମାନଙ୍କୁ ସ୍ୱୀକାର କଲେ ନାହିଁ । ୨୧ ।

ମନୁ କହିଲେ—ପାପ ପୂର୍ଣ୍ଣ କର୍ମ ଆଚରଣ କରିବାକୁ ଆମ୍ଭର ଅତିଶୟ ଭୟ ହୁଏ । ବିଶେଷତଃ ମିଥ୍ୟାବୃତ୍ତି ମନୁଷ୍ୟମାନଙ୍କ ମଧ୍ୟରେ ରାଜ୍ୟ ପାଳନ କରିବା ନିରତିଶୟ ଦୁଷ୍କର ଅଟେ ।୨୨ । ଭୀଷ୍ମ କହିଲେ— ପ୍ରଜାଗଣ ମନୁଙ୍କର ଏହି କଥା ଶ୍ରବଣ କରି ତାହାଙ୍କୁ କହିଲେ—ଆପଣ ଭୀତ ହେଉନ୍ତୁ ନାହିଁ, ପାପ ନିମିତ୍ତ ଆପଣ ଭୟ କରନ୍ତୁ ନାହିଁ । ଯେଉଁମାନେ ପାପକର୍ମ କରିବେ, ସେମାନେ ତାହାର ଫଳ ଭୋଗ କରିବେ । ଆମ୍ଭେମାନେ ଆପଣଙ୍କର କୋଷବୃଦ୍ଧି ନିମିତ୍ତ ଆମ୍ଭମାନଙ୍କର ଲବ୍ଧ ପଶୁ ଓ ହିରଣ୍ୟର ପଞ୍ଚାଶତ ଭାଗର ଏକଭାଗ ଓ ଧାନ୍ୟର ଦଶ ଭାଗର ଏକ ଭାଗ ପ୍ରଦାନ କରିବୁଁ । ବିବାହ ଉପସ୍ଥିତ ହେଲେ, ଯେଉଁ କନ୍ୟାର ସର୍ବାପେକ୍ଷା ଅଧିକ ଶୁଳ୍କ ନିରୂପିତ ହେବ ଆପଣଙ୍କୁ ସେହି ଗୁଣରୂପୀ କନ୍ୟା ପ୍ରଦାନ କରିବୁଁ । ୨୪ । ଦେବଗଣ ଯେପରି ଦେବେନ୍ଦ୍ରଙ୍କର ଅନୁଗମନ କରନ୍ତି, ତଦ୍ରୂପ ଉତ୍କୃଷ୍ଟ ବାହନ ମାନଙ୍କରେ ଆରୂଢ଼ ଶସ୍ତ୍ରଧାରୀ

ଦେବତାଗଣ ଆପଣଙ୍କର ପଶ୍ଚାତ୍ ଗମନ କରିବେ । ୨୫ । ଆପଣ ଏହି ପ୍ରକାରେ ବଳବାନ୍, ପ୍ରତାପବାନ୍ ଓ ଅନ୍ୟର ଦୁରାଧର୍ଷ ହୋଇ କୁବେର ନୈଋତ ଗଣଙ୍କୁ ରକ୍ଷାକଲା ପ୍ରାୟ ଆମ୍ଭମାନଙ୍କୁ ରକ୍ଷା କରିବେ । ୨୬ । ପ୍ରଜାଗଣ ନୃପତିଙ୍କ କର୍ତ୍ତୃକ ସୁରକ୍ଷିତ ହୋଇ ଯେଉଁ ଧର୍ମ୍ମ ଆଚରଣ କରିବେ, ଆପଣ ସେହି ଧର୍ମ୍ମମାନଙ୍କର ଚତୁର୍ଥାଂଶ ଭାଗୀ ହେବେ ଏବଂ ସେହି ଧର୍ମ୍ମ ଦ୍ୱାରା ବଳଶାଳୀ ହୋଇ, ଶତକ୍ରତୁ ଦେବଗଣଙ୍କୁ ରକ୍ଷାକଲା ପ୍ରାୟ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ୨୮ । ଆପଣ ମଣ୍ଡଳ ମାଳୀ ଦିବାକରଙ୍କ ପ୍ରାୟ ଅରାତିକୁଳକୁ ସନ୍ତାପିତ କରି ବିଜୟ ଲାଭ ନିମିତ୍ତ ନିର୍ଗତ ହେଉନ୍ତୁ ଏବଂ ଶତ୍ରୁଗଣଙ୍କର ଦର୍ପ ନାଶ କରନ୍ତୁ । ତାହାହେଲେ ଅମ୍ଭେମାନେ ନିରୁଦ୍‌ବେଗରେ ଧର୍ମ୍ମ ଆଚରଣ କରି ପାରିବୁଁ । ୨୯ ।

ମହାବଳ ପରାକ୍ରାନ୍ତ ମହାତେଜା ମନୁ ଉକ୍ତ ବର୍ଗଙ୍କ କର୍ତ୍ତୃକ ଏହିପରି ଅଭିହିତ ହୋଇ ନିଜର ତେଜଃ ପ୍ରଭାବ ଦ୍ୱାରା ଦଶଦିଗକୁ ପ୍ରଜ୍ୱଳିତ କରି ନିର୍ଗତ ହେଲେ । ତତ୍କାଳରେ ଅସଂଖ୍ୟ ଶ୍ରେଷ୍ଠ ବଂଶୋଦ୍ଭବ ଲୋକମାନେ ତାହାଙ୍କର ଅନୁଗମନ କଲେ । ଦେବଗଣ ତାହାଙ୍କର ସେହି ମହେନ୍ଦ୍ର ସଦୃଶ ମହତ୍ତ୍ୱକୁ ଦର୍ଶନ କରି ନିରତିଶୟ ଭୟ ପ୍ରାପ୍ତ ହେଲେ ଏବଂ ସମସ୍ତ ସ୍ୱଧର୍ମ୍ମରେ ମନୋନିବେଶ କଲେ । ୩୧ ।

ତଦନନ୍ତର ପର୍ଜ୍ଜନ୍ୟ ଯେପରି ଧୂଳି ରାଶିକି ନିବାରଣ କରେ, ତଦ୍ରୂପ ମନୁରାଜା ସମସ୍ତଙ୍କୁ ପାପକର୍ମ୍ମରୁ ନିବୃତ୍ତ ଏବଂ ସ୍ୱକର୍ମରେ ପ୍ରବୃତ୍ତ କରି ପୃଥିବୀକୁ ଗମନ କଲେ । ୩୨ ।

ହେ ଯୁଧିଷ୍ଠିର ! ଏହିପରି ପୃଥିବୀରେ ଯେଉଁ ମନୁଷ୍ୟମାନେ ମଙ୍ଗଳ ବାସନା କରିବେ, ସେମାନେ ପ୍ରଜାବର୍ଗଙ୍କର ଅନୁଗ୍ରହ ନିମିତ୍ତ ରାଜାଙ୍କୁ ସର୍ବାପେକ୍ଷା ଶ୍ରେଷ୍ଠ ଜ୍ଞାନ କରିବେ । ୩୩ । ଶିଷ୍ୟଗଣ ଯେପରି ଗୁରୁଙ୍କ ନିକଟରେ ଏବଂ ଦେବଗଣ ଯେପରି ଦେବେନ୍ଦ୍ରଙ୍କ ନିକଟରେ ସର୍ବଦା ପ୍ରଣତ ହୋଇଥିବେ, କାରଣ ସ୍ୱଜନବୃନ୍ଦ କର୍ତ୍ତୃକ ସମ୍ମାନିତ ହେଲେ ଶତ୍ରୁମାନେ ମଧ୍ୟ ସତ୍କାର କରନ୍ତି, କିନ୍ତୁ ସେମାନଙ୍କ ଦ୍ୱାରା ଅବଜ୍ଞାତ ହେଲେ ଶତ୍ରୁମାନେ ମଧ୍ୟ ଅବଜ୍ଞା ପ୍ରଦର୍ଶନ କରନ୍ତି । ୩୫ । ବିଶେଷତଃ ଶତ୍ରୁଗଣଙ୍କ କର୍ତ୍ତୃକ ରାଜାଙ୍କର ପରାଭବ ସମସ୍ତଙ୍କର ଅସୁଖାବହ । ତଦନନ୍ତର ପ୍ରଜାଗଣ ନୃପତି ମନୁଙ୍କୁ ଛତ୍ର, ବାହନ,

ବାହ୍ୟାଭରଣ, ଭୋଜ୍ୟ, ପାନୀୟ, ଗୃହ, ଆସନ, ଶଯ୍ୟା ଏବଂ ଅପର ସର୍ବପ୍ରକାର ଉପକରଣ ପ୍ରଦାନ କଲେ । ୩୭ ।

ହେ ଯୁଧିଷ୍ଠିର ! ରାଜା ଅନ୍ୟାନ୍ୟ ଲୋକଙ୍କର ଦୁର୍ଦ୍ଧର୍ଷ ହେବେ ଏବଂ ଅପର ମନୁଷ୍ୟମାନଙ୍କ କର୍ତ୍ତୃକ ଆଭାଷିତ ହୋଇ ସହାସ୍ୟ ବଦନରେ ମଧୁର ବାକ୍ୟ ଦ୍ୱାରା ପ୍ରତ୍ୟୁତ୍ତର ପ୍ରଦାନ କରିବେ । ଉପକାରକଠାରେ କୃତଜ୍ଞ ହେବା ଗୁରୁଜନଙ୍କଠାରେ ଦୃଢ଼ ଭକ୍ତି କରିବା, ସମସ୍ତଙ୍କ ସହିତ ବିଭାଗ ପୂର୍ବକ ଭୋଗ କରିବା ଏବଂ ଜିତେନ୍ଦ୍ରିୟ ହେବା ରାଜାଙ୍କର କର୍ତ୍ତବ୍ୟ । ରାଜା ଅନ୍ୟଦ୍ୱାରା ଈଡ଼ିତ ହୋଇ ମୃଦୁଭାବରେ ଶୋଭନ ରୂପରେ ସେମାନଙ୍କଠାରେ ମନୋହର ଦୃଷ୍ଟି ନିକ୍ଷେପ କରିବେ । ୩୮ ।

---

## ଅଧ୍ୟାୟ—୬୮

ଯୁଧିଷ୍ଠିର କହିଲେ—ହେ ଭରତର୍ଷଭ ପିତାମହ ! ବ୍ରାହ୍ମଣମାନେ ମଧ୍ୟ କି ନିମିତ୍ତ ମନୁଷ୍ୟ ମାନଙ୍କର ଅଧିପତି ରାଜାଙ୍କୁ ଦେବରୂପ ବୋଲି କହନ୍ତି ? । ୧ ।

ଭୀଷ୍ମ କହିଲେ—ହେ ଭାରତ ! ପୂର୍ବେ ବସୁମନା ବୃହସ୍ପତିଙ୍କୁ ଯେଉଁ ବିଷୟ ଜିଜ୍ଞାସା କରିଥିଲେ, ପଣ୍ଡିତମାନେ ଏହି ପ୍ରସ୍ତାବରେ ସେହି ପୁରାତନ ଇତିହାସକୁ ଉଦାହରଣ ସ୍ୱରୂପରେ ବ୍ୟବହାର କରନ୍ତି । ୨ । ସର୍ବଲୋକ ହିତକାରୀ ବିନୟଶୀଳ ଧୀମାନ୍ କୌଶଲ୍ୟ ନୃପତି ବସୁମନା ପ୍ରଜାଗଣଙ୍କର ସୁଖ ସାଧନ ବାସନାରେ ଧର୍ମଶୀଳ ମହାପ୍ରାଜ୍ଞ ବୃହସ୍ପତିଙ୍କୁ ସର୍ବପ୍ରକାର ଶିଷ୍ଟାଚାର ପ୍ରଦର୍ଶନ ଓ ପ୍ରଦକ୍ଷିଣ କରି ବିଧିବତ୍ତୁ ପ୍ରଣିପାତ ପୂର୍ବକ ରାଜ୍ୟ କର୍ତ୍ତବ୍ୟ ବିଷୟ ସବୁ ପ୍ରଶ୍ନ କଲେ । ୪ ।

ବସୁମନା କହିଲେ—ହେ ମହାପ୍ରାଜ୍ଞ, ଜୀବଗଣ କି ପ୍ରକାରେ ଉନ୍ନତି ଲାଭ କରନ୍ତି, କେଉଁକାର୍ଯ୍ୟ ଦ୍ୱାରା କ୍ଷୟ ପ୍ରାପ୍ତ ହୁଅନ୍ତି ଏବଂ କାହାର ଉପାସନା ଦ୍ୱାରା ଅନନ୍ତ ସୁଖ ଲାଭ କରନ୍ତି ? ୬ । ମହାପ୍ରାଜ୍ଞ ବୃହସ୍ପତି କଲ୍ୟାଣାର୍ହ ଅମିତ ତେଜସ୍ୱୀ ବସୁମନାଙ୍କ କର୍ତ୍ତୃକ ଏହିପରି ଜିଜ୍ଞାସିତ ହୋଇ ତାହାଙ୍କୁ ଆନନ୍ଦ ସହକାରେ ରାଜସତ୍କାର ବିଷୟକ ବାକ୍ୟସବୁ କହିବାକୁ ଆରମ୍ଭ କଲେ । ୭ । ବୃହସ୍ପତି କହିଲେ—ହେ ମହାପ୍ରାଜ୍ଞ ! ପ୍ରଜାଗଣ

ଯେଉଁ ଧର୍ମ୍ମ ଆଚରଣ କରନ୍ତି, ରାଜା ତାହାର ମୂଳ । କାରଣ ସେମାନେ ରାଜ ଭୟରେ ପରସ୍ପରକୁ ହିଂସା କରି ପାରନ୍ତି ନାହିଁ । ରାଜା ଧର୍ମ୍ମାନୁସାରେ ମର୍ଯ୍ୟାଦା ବିହୀନ ଏବଂ ପରଦାରାଦି ଦୁଷ୍କର୍ମରତ ଅଖିଳ ଲୋକଙ୍କର ପ୍ରସନ୍ନତା ସାଧନ କରି ସ୍ୱୟଂ ସୁପ୍ରସନ୍ନ ଭାବରେ ବିରାଜିତ ହୁଅନ୍ତି । ୯ । ହେ ରାଜନ୍ । ଯେପରି ସୂର୍ଯ୍ୟ ଚନ୍ଦ୍ରଙ୍କର ଅନୁଦୟରେ ଜୀବଗଣ ଘୋରାନ୍ଧକାରରେ ନିମଗ୍ନ ହୁଅନ୍ତି, ଏବଂ ପରସ୍ପର ପରସ୍ପରକୁ ଦେଖି ପାରନ୍ତି ନାହିଁ, ଯେପରି ଅଳ୍ପୋଦକ ସରୋବରରେ ମତ୍ସ୍ୟଗଣ ଏବଂ ହିଂସ୍ର ଭୟ ରହିତ କାନନ ମଧ୍ୟରେ ବିହଙ୍ଗମଗଣ ପୁନଃ ପୁନଃ ହିଂସାକରି ଇଚ୍ଛାନୁସାରେ ବିଚରଣ କରନ୍ତି ଓ କାଳକ୍ରମରେ ପରସ୍ପର କାହାରିକୁ ସୁଦ୍ଧା ସହ୍ୟ ନ କରି ସମସ୍ତଙ୍କୁ ଅତିକ୍ରମ ପୂର୍ବକ ଉତ୍ପୀଡ଼ନ କରି ଅଚିରକାଳ ମଧ୍ୟରେ ବିନାଶ ପ୍ରାପ୍ତ ହୁଅନ୍ତି, ସେହିପରି ରାଜା ନଥିଲେ, ପ୍ରଜାମାନେ ମଧ୍ୟ, ପାଳକ ବିହୀନ ପଶୁମାନଙ୍କ ପ୍ରାୟ ଘୋରାନ୍ଧକାରରେ ନିମଗ୍ନ ହୋଇ ବିନଷ୍ଟ ହୁଅନ୍ତି । ୧୩ ।

ଯଦି ରାଜା ପ୍ରଜାପାଳନ ନ କରନ୍ତେ ତାହା ହେଲେ ବଳବାନ୍‌ମାନେ ବଳପୂର୍ବକ ଦୁର୍ବଳ ମାନଙ୍କର ପରିଗ୍ରହ ସବୁ ଅର୍ଥାତ୍ ଗୃହାଦି ହରଣ କରନ୍ତେ ଏବଂ ଯେଉଁମାନେ ସାମର୍ଥ୍ୟ ଅନୁସାରେ ନିଜ ନିଜ ଅର୍ଥକୁ ପରମ ଆଗ୍ରହାନ୍ୱିତ ହୋଇ ରକ୍ଷା କରନ୍ତି, ସେମାନଙ୍କୁ ନଷ୍ଟ କରନ୍ତେ ।୧୪। କୌଣସି ବ୍ୟକ୍ତି "ଏହି ବସ୍ତୁ ଆମ୍ଭର" ଏହିପରି ଜ୍ଞାନ କରି ପାରନ୍ତେ ନାହିଁ । ସ୍ତ୍ରୀ, ପୁତ୍ର, ଅନ୍ନାଦି ଭକ୍ଷ୍ୟଦ୍ରବ୍ୟ କିମ୍ବା ଅପର କୌଣସି ବସ୍ତୁ ସ୍ୱାୟତ୍ତରେ ଥାନ୍ତା ନାହିଁ । ରାଜା ରକ୍ଷା ନ କଲେ, ଅର୍ଥ ସବୁ ସର୍ବତୋଭାବରେ କ୍ଷୟ ପ୍ରାପ୍ତ ହୁଅନ୍ତା । ଯଦି ରାଜା ପାଳନ ନ କରନ୍ତେ, ତାହାହେଲେ ପାପାଗ୍ରସ୍ତ ଚୌରଗଣ ବଳପୂର୍ବକ ସମସ୍ତଙ୍କର ଯାନ, ବସ୍ତ୍ର ଅଳଙ୍କାର ଏବଂ ଅନ୍ୟାନ୍ୟ ରତ୍ନସବୁ ହରଣ କରନ୍ତେ । ଯଦି ରାଜା ପ୍ରଜାପାଳନ ନ କରନ୍ତେ ତାହାହେଲେ ଧର୍ମଗୁରୁଗଣଙ୍କ ଉପରେ ବହୁଧା ଶସ୍ତ୍ରପାତ ହୁଅନ୍ତା ଏବଂ ସମସ୍ତେ ଅଧର୍ମ୍ମର ଆଶ୍ରୟ ଗ୍ରହଣ କରନ୍ତେ ।୧୭।

ରାଜା ରକ୍ଷା ନ କଲେ, ସମସ୍ତେ ବୃଦ୍ଧ ପିତା, ମାତା, ଆଚାର୍ଯ୍ୟ, ଅତିଥି ଏବଂ ଗୁରୁଗଣଙ୍କୁ କ୍ଲେଶ ଦେବାକୁ କିମ୍ବା ବିନାଶ କରିବାକୁ ସୁଦ୍ଧା ସଙ୍କୁଚିତ ହୁଅନ୍ତେ ନାହିଁ । ୧୮ । ଯଦି ରାଜା ପାଳନ ନ କରନ୍ତେ, ତାହାହେଲେ ଅର୍ଥଶାଳୀ ଗଣଙ୍କର ନିୟତ ବଧ, ବନ୍ଧନ, କିମ୍ବା ନିରତଶଯୁ

କ୍ଲେଶ ଉପସ୍ଥିତ ହୁଅନ୍ତା ଏବଂ କେହ ସୁଦ୍ଧା କୌଣସି ବସ୍ତୁକୁ ସର୍ବତୋ-ଭାବରେ ଅସ୍ଥିର ବୋଲି ଜ୍ଞାନ କରି ପାରନ୍ତେ ନାହିଁ । ୧୯ ।

ରାଜା ରକ୍ଷା ନ କଲେ, ସମସ୍ତେ ଅକାଳରେ କାଳ କବଳରେ ପତିତ ହୁଅନ୍ତେ, ଅଖିଳ ଲୋକ ଦସ୍ୟୁଗଣଙ୍କର ଅଧୀନ ହୁଅନ୍ତେ ଏବଂ ସମସ୍ତେ ଘୋର ନରକରେ ପତିତ ହୁଅନ୍ତେ । ୨୦ । ଯଦି ରାଜା ରାଜ୍ୟ ଶାସନ ନ କରନ୍ତେ, ତାହାହେଲେ ଯୋନି ଦୋଷ, ଅର୍ଥାତ୍ ବ୍ୟଭିଚାର କର୍ମର ନିନ୍ଦା, କୃଷି କିମ୍ବା ବଣିକ ପଥ କିଛି ସୁଦ୍ଧା ରହନ୍ତା ନାହିଁ । ଧର୍ମ ନିମଗ୍ନ ହୋଇ ଯାନ୍ତା ଏବଂ ବେଦସବୁ ବିଲୁପ୍ତ ହୁଅନ୍ତା ୨୧ । ରାଜା ରାଜ୍ୟ ପାଳନ ନ କଲେ ସମ୍ପ୍ରବିଧ ଦକ୍ଷିଣା ବିଶିଷ୍ଟ ଯଜ୍ଞ, ବିବାହ କିମ୍ବା ସମାଜ କିଛି ସୁଦ୍ଧା ବିଧିବତ ପ୍ରବର୍ତ୍ତିତ ହୁଅନ୍ତା ନାହିଁ । ୨୨ । ରାଜାଙ୍କର ଶାସନ ନ ଥିଲେ, ବୃଷଗଣ ଗୋ ସମୂହରେ ରେତ ସିଞ୍ଚନ କରନ୍ତେ ନାହିଁ, ଗର୍ଗରୀ ସବୁ ମଥିତ ହୁଅନ୍ତା ନାହିଁ, ସୁତରାଂ ଘୋଷ ସବୁ ମଧ୍ୟ ବିନଷ୍ଟ ହୋଇଯାନ୍ତା । ୨୩ । ରାଜା ପ୍ରଜା ରକ୍ଷା ନ କଲେ, ସମସ୍ତ ଲୋକେ ବସ୍ତ ଓ ଉଦ୍ବିଗ୍ନ ଚିତ୍ତ ହୋଇ ହାହାକାର ପୂର୍ବକ ଅଚେତନ ପ୍ରାୟ କ୍ଷଣକାଳ ମଧ୍ୟରେ ବିନାଶ ପ୍ରାପ୍ତ ହୁଅନ୍ତେ । ୨୪ । ଯଦି ରାଜା ପ୍ରଜା ରକ୍ଷା ନ କରନ୍ତେ, ତାହାହେଲେ କେହ ସୁଦ୍ଧା ନିର୍ଭୟ ଚିତ୍ତରେ ଯଥା ବିହିତ ଦକ୍ଷିଣା ବିଶିଷ୍ଟ ସାମ୍ବତ୍ସରିକ ଯଜ୍ଞମାନ ଅଚରଣ କରନ୍ତେ ନାହିଁ । ୨୫ ।

ରାଜଶାସନ ନ ଥିଲେ, ବିଦ୍ୟାସ୍ନାତ, ବ୍ରତସ୍ନାତ, ତପସ୍ୱୀ ଓ ବ୍ରାହ୍ମଣମାନେ ବେଦଚତୁଷ୍ଟୟକୁ ଅଧ୍ୟୟନ କରନ୍ତେ ନାହିଁ । ୨୬ । ଯଦି ରାଜା ପ୍ରଜାପାଳନ ନ କରନ୍ତେ, ତାହା ହେଲେ ଯେଉଁ ବ୍ୟକ୍ତି ବ୍ରହ୍ମହତ୍ୟା-କାରୀମାନଙ୍କୁ ହନନ କରନ୍ତେ, ସେ ତାଦୃଶ ଧର୍ମଜନିତ ପ୍ରଶଂସାକୁ ଲାଭ କରି ପାରନ୍ତେ ନାହିଁ, କିନ୍ତୁ ବ୍ରହ୍ମଘାତୀ ସୁଚ୍ଛେନ୍ଦ୍ରମୟ ହୋଇ ବିଚରଣ କରନ୍ତେ । ୨୭ । ଯଦି ରାଜ୍ୟ ଶାସନ ନ ଥାନ୍ତା, ତାହାହେଲେ ଚୋରଗଣ ହସ୍ତସ୍ଥ ଧନାଦି ମଧ୍ୟ ଅପହରଣ କରନ୍ତେ । ସେତୁ ସବୁ ଭଗ୍ନ ହୁଅନ୍ତା ଏବଂ ପ୍ରଜାଗଣ ମଧ୍ୟ ଭୟ ବିହ୍ୱଳ ହୋଇ ଚତୁର୍ଦ୍ଦିଗକୁ ପଳାୟନ କରନ୍ତେ । ୨୮ । ଯଦି ରାଜା ପ୍ରକୃତିବର୍ଗଙ୍କୁ ଶାସନ ନ କରନ୍ତେ, ତାହା-ହେଲେ ଚତୁର୍ଦ୍ଦିଗରେ ଅନୀତି ସବୁ ପ୍ରବର୍ତ୍ତିତ ହୁଅନ୍ତା, ବର୍ଣ୍ଣସଙ୍କର ଜାତିର ବୃଦ୍ଧି ହୁଅନ୍ତା ଏବଂ ରାଜ୍ୟ ମଧ୍ୟରେ ନିଯୁକ୍ତ ଦୁର୍ଭିକ୍ଷ ଉପସ୍ଥିତ ହୁଅନ୍ତା । ୨୯ ।

ମନୁଷ୍ୟମାନେ ରାଜାକର୍ତ୍ତୃକ ରକ୍ଷିତ ହୋଇ ଗୃହ ଦ୍ୱାରକୁ ଉଦ୍‌ଘାଟନ କରି ଇଚ୍ଛାନୁସାରେ ଗୃହ ମଧ୍ୟରେ ଅକୁତୋଭୟରେ ଶୟନ କରନ୍ତି ।୩୦। ଯଦି ଧାର୍ମିକ ନରପତି ସର୍ବତୋ ଭାବରେ ପୃଥିବୀକୁ ରକ୍ଷା ନ କରନ୍ତେ, ତାହା ହେଲେ ଅନ୍ୟ ଲୋକେ ଯେ ଅପର ଲୋକର ତାଡ଼ନା ଓ ଆକ୍ରୋଶ ବାକ୍ୟକୁ ସହ୍ୟ କରନ୍ତେ, ଏଥିରେ ଆଶ୍ଚର୍ଯ୍ୟ କଣ ? ୩୧ ।

ନରପତି ଯଥାବତ୍ ରାଜ୍ୟ ରକ୍ଷା କଲେ ସର୍ବାଲଙ୍କାର ଭୂଷିତ ଅବଳାମାନେ ଅରକ୍ଷିତା ହେଲେ ସୁଦ୍ଧା ଅକୁତଭୟରେ ରାଜମାର୍ଗରେ ବିଚରଣ କରନ୍ତି । ୩୨ । ଯଦି ରାଜା ରାଜ୍ୟ ଶାସନ କରନ୍ତି, ତାହାହେଲେ ପରସ୍ପର ସମସ୍ତେ ସମସ୍ତଙ୍କୁ ଅନୁଗ୍ରହ ପ୍ରକାଶ କରନ୍ତି ଏବଂ ପରସ୍ପର ହିଂସା ନ କରି ଧର୍ମ ପଥରେ ବିଚରଣ କରନ୍ତି । ୩୩ । ଯେତେବେଳେ ଭୂପତି ପ୍ରଜାଗଣଙ୍କୁ ରକ୍ଷା କରନ୍ତି, ସେତେବେଳେ ବ୍ରାହ୍ମଣାଦି ବର୍ଣ୍ଣତ୍ରୟ ସମସ୍ତେ ପୃଥକ ବିଧି ଯଜ୍ଞ ଦ୍ୱାରା ଦେବଗଣଙ୍କର ଅର୍ଚ୍ଚନା କରନ୍ତି ।୩୪ । ବାର୍ତ୍ତାମୂଳ ଅର୍ଥାତ୍ ଜୀବିକାମୂଳ ଏହି ସଂସାର ବେଦତ୍ରୟ ଦ୍ୱାରା ରକ୍ଷିତ ହୁଏ, କିନ୍ତୁ ରାଜାଙ୍କର ସୁଶାସନ ଥିଲେ, ତତ୍ସମସ୍ତ ସୁରକ୍ଷିତ ହୋଇଯାଏ । ୩୫ ।

ଯେତେବେଳେ ରାଜା ଗୁରୁତର ଭାର ଗ୍ରହଣ ପୂର୍ବକ ସୁମହତି ବଳ ସହକାରେ ପ୍ରଜାଗଣଙ୍କୁ ରକ୍ଷା କରନ୍ତି, ସେତେବେଳେ ଲୋକମାନେ ସମସ୍ତେ ସୁପ୍ରସନ୍ନ ଭାବରେ ଅବସ୍ଥାନ କରନ୍ତି । ୩୬ । ଯାହାଙ୍କର ଅବସ୍ଥାନରେ ସମସ୍ତେ ସ୍ୱଚ୍ଛନ୍ଦରେ ଅବସ୍ଥାନ କରନ୍ତି ଏବଂ ଯାହାଙ୍କର ଅଭାବରେ ସମସ୍ତଙ୍କର ଅଭାବ ଉପସ୍ଥିତ ହୁଏ, ଏପରି ଯେଉଁ ନରପତି ତାହାଙ୍କୁ କିଏ ପୂଜା ନ କରିବ ? ୩୭ । ଯେଉଁ ବ୍ୟକ୍ତି ରାଜାଙ୍କର ପ୍ରିୟ ଓ ହିତକାରୀ ହୋଇ ତାହାଙ୍କର ସର୍ବଲୋକ ଭୟାବହ ଗୁରୁତର ଭାରକୁ ବହନ କରେ, ସେ ଏହି ଉଭୟ ଲୋକକୁ ଜୟ କରେ । ୩୮ । ଯେଉଁ ପୁରୁଷ ମନରେ ମଧ୍ୟ ରାଜାଙ୍କର ଅନିଷ୍ଟାଶଙ୍କା କରିବ, ସେ ନିଶ୍ଚୟ ଇହ ଲୋକରେ କ୍ଲେଶ ଭୋଗ କରି ପର ଲୋକରେ ନରକରେ ପତିତ ହେବ । ୩୯ ।

ଭୂପତିଙ୍କୁ ମନୁଷ୍ୟ ଜ୍ଞାନ କରି କଦାପି ଅବମାନନା କରିବା କର୍ତ୍ତବ୍ୟ ନୁହେଁ । କାରଣ ଏହି ମହତୀ ଦେବତା ନରରୂପ ଧାରଣ କରି ପୃଥିବୀରେ ଅବସ୍ଥାନ କରିଅଛନ୍ତି । ୪୦ । ଯେଉଁ ଭୂପତି କାଳୋପଯୁକ୍ତ ବକ୍ଷ୍ୟମାଣ ପଞ୍ଚଦେବଙ୍କର କାର୍ଯ୍ୟସବୁ ଅନୁଷ୍ଠାନ କରନ୍ତି, ସେ ତତ୍କାଳରେ

ଅଗ୍ନି, ସୂର୍ଯ୍ୟ, ମୃତ୍ୟୁ, ବୈଶ୍ରବଣ ଓ ଯମ ଏହି ପଞ୍ଚବିଧ ଆଖ୍ୟାର ଅନ୍ୟତମ ଆଖ୍ୟାକୁ ଲାଭ କରନ୍ତି । ୪୧ । ଯତ୍କାଳରେ ଭୂପତି ବର୍ଦ୍ଧିତ ହୋଇ ସୁଦ୍ଧା ନିଜର ତେଜଃ ପ୍ରଭାବ ଦ୍ୱାରା ସମୀପସ୍ଥ ପାପମାନଙ୍କୁ ଦହନ କରନ୍ତି, ତତ୍କାଳରେ ସେ "ପାବକ" ସଂଜ୍ଞାକୁ ଲାଭ କରନ୍ତି । ୪୨ ।

ରାଜା ଯେତେବେଳେ ଚର ଦ୍ୱାରା ସମସ୍ତଙ୍କର କାର୍ଯ୍ୟକୁ ପର୍ଯ୍ୟବେକ୍ଷଣ କରନ୍ତି ଏବଂ ପ୍ରକୃତି ବୃନ୍ଦଙ୍କର ମଙ୍ଗଳ ଜନକ କାର୍ଯ୍ୟ ସବୁ ଆଚରଣ କରନ୍ତି, ସେତେବେଳେ ସେ "ଭାସ୍କର" ବୋଲି ଅଭିହିତ ହୁଅନ୍ତି । ୪୩ । ଯତ୍କାଳରେ ସେ କ୍ରୁଦ୍ଧ ହୋଇ ଅଶୁଚି ଲୋକମାନଙ୍କୁ ପୁତ୍ର, ପୌତ୍ର ଓ ଅମାତ୍ୟଗଣଙ୍କ ସହିତ ଶଧୋକ୍ଷୟ କରୁଥାନ୍ତି, ସେତେବେଳେ ସେ "ଅନ୍ତକ" ସଂଜ୍ଞାକୁ ଧାରଣ କରନ୍ତି । ୪୪ । ଯେତେବେଳେ ତୀକ୍ଷ୍ଣ ଦଣ୍ଡଦ୍ୱାରା ଅଧାର୍ମିକଗଣଙ୍କୁ ନିଗ୍ରହ ଏବଂ ଧାର୍ମିକଗଣଙ୍କ ପ୍ରତି ଅନୁଗ୍ରହ ପ୍ରକାଶ କରନ୍ତି, ସେତେବେଳେ ସେ "ଯମ" ବୋଲି ଅଭିହିତ ହୁଅନ୍ତି । ୪୫ ।

ହେ ମହାରାଜ ! ଯେତେବେଳେ ଭୂପତି ପୁଷ୍କଳ ଧନଦ୍ୱାରା ଉପକାରଗଣଙ୍କୁ ତର୍ପିତ କରି ଓ ଅପକାରଗଣଙ୍କର ବହୁବିଧ ରତ୍ନାଦି ହରଣ କରି କାହାକୁ ସଶ୍ରୀକ ଓ କାହାକୁ ନଷ୍ଟ ଶ୍ରୀ କରନ୍ତି, ସେତେ-ବେଳେ ସେ "ବୈଶ୍ରବଣ" ବୋଲି ଅଭିହିତ ହୁଅନ୍ତି । ୪୬ । ଯହିଁରେ ରାଜାଙ୍କର ଅପବାଦ ହୁଏ, ତାଦୃଶ କାର୍ଯ୍ୟ, ଦ୍ୱେଷ ଶୂନ୍ୟ, ଧର୍ମ ଲୋକାକାଙ୍କ୍ଷୀ ଦକ୍ଷ ଏବଂ ଅକ୍ଲିଷ୍ଟ କର୍ମା ବ୍ୟକ୍ତିମାନଙ୍କର ଆଚରଣ କରିବା କର୍ତ୍ତବ୍ୟ ନୁହେଁ, କାରଣ ରାଜାଙ୍କର ପ୍ରତିକୂଳାଚରଣ କରି କଦାପି ସୁଖଲାଭ ହୁଏ ନାହିଁ । ଯେଉଁମାନେ ରାଜାଙ୍କର ଅପବାଦ ଜନକ କାର୍ଯ୍ୟ କରନ୍ତି, ସେହି ବ୍ୟକ୍ତିମାନେ ରାଜାଙ୍କର ପୁତ୍ର, ଭ୍ରାତା, ବୟସ୍ୟ କିମ୍ବା ଆତ୍ମସମ ହେଲେ ସୁଦ୍ଧା ଅନିଳ ସାରଥି ପ୍ରଜ୍ୱଳିତ ହୁତାଶନ ସେମାନଙ୍କୁ ଭସ୍ମୀଭୂତ କରନ୍ତି । ପରନ୍ତୁ ନରପତି ଯାହାକୁ ରକ୍ଷା କରନ୍ତି ତାହାର କୁତ୍ରାପି ବିନାଶ ନାହିଁ । କାରଣ ଭୂପତିଙ୍କର ରକ୍ଷ୍ୟଦ୍ରବ୍ୟମାନଙ୍କୁ ଦୂରରୁ ପରିତ୍ୟାଗ କରିବା କର୍ତ୍ତବ୍ୟ । ଲୋକମାନେ ଯେପରି ମୃତ୍ୟୁଠାରୁ ଆପଣାକୁ ରକ୍ଷା କରନ୍ତି, ତଦ୍ରୂପ ରାଜସ୍ୱ ହରଣରୁ ଆତ୍ମାକୁ ରକ୍ଷା କରିବା କର୍ତ୍ତବ୍ୟ । କାରଣ ତାହାକୁ ସ୍ପର୍ଶ କଲେ ଯନ୍ତ୍ରର ସ୍ପର୍ଶରେ ମୃଗ ବିନଷ୍ଟ ହେଲା ପ୍ରାୟ, ବିନାଶ ପ୍ରାପ୍ତ ହେବାକୁ ହୁଏ । ବୁଦ୍ଧିମାନ ମନୁଷ୍ୟ ନିଜସ୍ୱ ସଦୃଶ୍ୟ ରାଜସ୍ୱକୁ ରକ୍ଷା

ଭଟବେ ।୫୨। ଯେଉଁ ବ୍ୟକ୍ତିମାନେ ରାଜଧନକୁ ଅପହରଣ କରନ୍ତି, ସେହି ବ୍ୟକ୍ତିମାନେ ଚିରକାଳ ପର୍ଯ୍ୟନ୍ତ ଅଚେତନ, ଅପ୍ରତିଷ୍ଠ, ଭୟଙ୍କର ଓ ସୁମହତ ନରକରେ ପତିତ ହୁଅନ୍ତି ।୫୩।

ହେ ମହାରାଜ ! ଯାହାଙ୍କୁ ରାଜା, ଭୋଜ, ବିରାଟ, ସମ୍ରାଟ, କ୍ଷତ୍ରିୟ, ଭୂପତି ଏବଂ ନୃପତି ଇତ୍ୟାଦି ଦ୍ୱାରା ସ୍ତବ କରାଯାଏ, କେଉଁ ବ୍ୟକ୍ତି ତାହାଙ୍କୁ ଅର୍ଚ୍ଚନା ନ କରିବ ? ୫୪। ଏହି ସବୁ କାରଣରୁ ଐଶ୍ୱର୍ଯ୍ୟାଭିଳାଷୀ, ଜିତାତ୍ମା, ସଂଯତେନ୍ଦ୍ରିୟ, ମେଧାବୀ, ସ୍ମୃତିମାନ ଓ ଦକ୍ଷ ଲୋକମାନେ ମହୀପତିଙ୍କର ଆଶ୍ରୟ ଗ୍ରହଣ କରିବେ ।୫୫। ଭୂପତିମାନେ କୃତଜ୍ଞ, ପ୍ରାଜ୍ଞ, ଉଚ୍ଚକୁଳୋଦ୍ଭବ, ଦୃଢ଼ଭକ୍ତ, ଜିତେନ୍ଦ୍ରିୟ, ଧର୍ମନିଷ୍ଠ ଏବଂ ଧର୍ମନୀତି ମନ୍ତ୍ରୀଙ୍କୁ ସତ୍କାର କରିବେ ।୫୬। ଦୃଢ଼ଭକ୍ତ ସମ୍ପନ୍ନ, କୃତପ୍ରଜ୍ଞ, ଧର୍ମଜ୍ଞ, ସଂଯତେନ୍ଦ୍ରିୟ ଶୂର, ଅକ୍ଷୁଦ୍ର କର୍ମଶୂର ଏବଂ ଯେଉଁବ୍ୟକ୍ତି ଅନ୍ୟର ସାହାଯ୍ୟ ନିରପେକ୍ଷ ହୋଇ କାର୍ଯ୍ୟାନୁଷ୍ଠାନ କରନ୍ତି, ଏତାଦୃଶ ଲୋକମାନଙ୍କର ଆଶ୍ରୟ ଗ୍ରହଣ କରିବ । ୫୭ । ପ୍ରଜ୍ଞା ମନୁଷ୍ୟକୁ ପ୍ରତିଲାଭ କରେ, କିନ୍ତୁ ରାଜା ଲୋକମାନଙ୍କୁ ସର୍ବପ୍ରକାର କୃଶ କରି ଦିଅନ୍ତି । ରାଜା ଯାହାଙ୍କୁ ଅବମାନ କରନ୍ତି, ତାହାଙ୍କର ସୁଖ କେଉଁଠାରେ ? ପରନ୍ତୁ ରାଜାଙ୍କର ଅନୁଗତ ଥିଲେ ସର୍ବପ୍ରକାର ସୁଖ ଲାଭହୁଏ ।୫୮।

ହେ ନରେନ୍ଦ୍ର ! ରାଜା ପ୍ରକୃତିବର୍ଗଙ୍କର ମାନସିକ ଉତ୍କର୍ଷ ସଦ୍‌ଗତି, ପ୍ରତିଷ୍ଠା ଏବଂ ପରମ ସୁଖଲାଭର କାରଣ ଅଟନ୍ତି । ଯେଉଁମାନେ ରାଜାଙ୍କର ଆଶ୍ରୟ ଗ୍ରହଣ କରନ୍ତି ସେମାନେ ଇହଲୋକ ଓ ମରଣାନ୍ତରେ ପରଲୋକ ପର୍ଯ୍ୟନ୍ତ ଜୟଲାଭ କରିବାକୁ ସମର୍ଥ ହୁଅନ୍ତି । ମହାଯଶା ନରପତିଗଣ ଦମ, ସତ୍ୟ ଏବଂ ସୌହୃଦ ସହିତ ବସୁମତୀକୁ ଶାସନ ପୂର୍ବକ ସୁମହତ ଯଜ୍ଞକରି ଅମର ଶାଶ୍ୱତ ପଦକୁ ଲାଭ କରନ୍ତି ।୬୦। ରାଜସତ୍ତମ କୌଶଲ୍ୟ ବସୁମନା ବୃହସ୍ପତିଙ୍କ କର୍ତ୍ତୃକ ଏହିପରି ଉକ୍ତ ହୋଇ ଯତ୍ନ ସହକାରେ ପ୍ରଜାଗଣଙ୍କୁ ପାଳନ କରିବାରେ ପ୍ରବୃତ୍ତ ହୋଇଥିଲେ ।୬୧।

---

# ଅଧ୍ୟାୟ—୭୯

ଯୁଧିଷ୍ଠିର କହିଲେ—ହେ ଭାରତ ! ନୃପତିଙ୍କର କର୍ତ୍ତବ୍ୟ କର୍ମ-ମଧ୍ୟରେ ଆଉ କଣ ଅବଶିଷ୍ଟ ଅଛି ଏବଂ ସେ ଗୁପ୍ତ, ଭୃତ୍ୟ, ସ୍ତ୍ରୀ, ପୁତ୍ର ଓ ଇତର ବର୍ଣ୍ଣମାନଙ୍କ ମଧ୍ୟରେ କାହାକୁ କି ପ୍ରକାରେ ବିଶ୍ୱାସ କରିବେ, ଏବଂ କାହାକୁ କୀଦୃଶ କାର୍ଯ୍ୟରେ ନିଯୁକ୍ତ କରିବେ, ଆପଣ ତତ୍ସମସ୍ତ ଅସ୍ପଷ୍ଟତାରେ ବର୍ଣ୍ଣନା କରନ୍ତୁ । ୨ ।

ଭୀଷ୍ମ କହିଲେ—ହେ ମହାରାଜ ! ଭୂପତିଙ୍କର ଅପର ଯେଉଁ ସବୁ କର୍ତ୍ତବ୍ୟ କର୍ମ ଅଛି, ତୁମ୍ଭେ ଏକମନରେ ସେହି ରାଜନୀତି ସବୁ ଶ୍ରବଣ କର ।୩। ରାଜା ପ୍ରଥମତଃ ନିଜର ଚିତ୍ତକୁ ଜୟ କରିବାକୁ ଚେଷ୍ଟା କରିବେ କାରଣ ଯେ ନିଜର ଚିତ୍ତକୁ ଜୟକରିବାକୁ ଅସମର୍ଥ ଅଟନ୍ତି, ତାଦୃଶ ନରପତି କି ପ୍ରକାରେ ଶତ୍ରୁଗଣଙ୍କୁ ଜୟ କରିବେ ? ଯେ ଶ୍ରୋତାଦି ପଞ୍ଚବର୍ଗ ଏବଂ ନିଜର ଚିତ୍ତକୁ ବଶୀଭୂତ କରିଅଛନ୍ତି, ସେହିପରି ଜିତେନ୍ଦ୍ରିୟ ନରପତି ଅରାତିଗଣଙ୍କୁ ଜୟ କରିବାକୁ ସମର୍ଥ ଅଟନ୍ତି ।୫।

ହେ ନର ଶାର୍ଦ୍ଦୂଳ କୁରୁନନ୍ଦନ ! ଦୁର୍ଗ, ସ୍ୱକୀୟ ରାଜସୀମାର ବହିର୍ଭାଗ, ନଗର, ଅନ୍ତଃପ୍ରକୋଷ୍ଠ ଉଦ୍ୟାନ, ଚତୁଷ୍ପଥ, ପୁର, ଅନ୍ତଃପୁର ଏବଂ ରାଜନିବେଶନ ଏହିସବୁ ସ୍ଥାନମାନଙ୍କରେ ନରପତି ପଦାତି ସୈନ୍ୟମାନଙ୍କୁ ସଂସ୍ଥାପିତ କରିବେ ।୭। ଜଡ଼, ଅନ୍ଧ ଏବଂ ବଧିରାକୃତି, କ୍ଷୁତ୍ପିପାସାକ୍ଷମ, ସନ୍ତୁଷ୍ଟ, ପ୍ରାଜ୍ଞ ଓ ପରୀକ୍ଷିତ ପୁରୁଷମାନଙ୍କୁ ଗୁପ୍ତ ରୂପରେ ନିଯୁକ୍ତ କରିବେ ।୮। ଗୁପ୍ତଚର ସବୁ ନିଯୁକ୍ତ କରି ସର୍ବପ୍ରକାର ଅମାତ୍ୟ ବନ୍ଧୁବର୍ଗ ମିତ୍ର ଏବଂ ପୁତ୍ରମାନଙ୍କର କାର୍ଯ୍ୟସବୁ ପରୀକ୍ଷା କରିବେ ।୯। ପୁର, ଜନପଦ ଏବଂ ସାମନ୍ତ ରାଜାମାନଙ୍କ ନିକଟକୁ ଏପରି ଗୁପ୍ତଚର ସବୁ ନିଯୁକ୍ତ କରିବେ ଯେ ସେମାନେ ପରସ୍ପର କେହିସୁଦ୍ଧା କାହାରିକୁ ଜାଣି ପାରିବେ ନାହିଁ ।୧୦।

ହେ ଭରତର୍ଷଭ ! ନରପତି ନିଜର ମଲ୍ଲକ୍ରୀଡ଼ା ସ୍ଥାନ, ସମାଜ, ଭିକ୍ଷୁ, ପୁଷ୍ପବାଟିକା, ବନବାଟିକା, ପଣ୍ଡିତଗଣଙ୍କର ସଭା, ଆକର ସ୍ଥାନ, ଅଧିକାରିମାନଙ୍କର ଉପବେଶନ ସ୍ଥାନ, ରାଜସଭା ଏବଂ ପ୍ରଧାନ ଲୋକ-ମାନଙ୍କର ଗୃହ, ଏହିସବୁ ସ୍ଥାନ ଅନୁସନ୍ଧାନ କଲେ ଶତ୍ରୁପ୍ରେରିତ ଗୁପ୍ତଚରଗଣଙ୍କୁ ଅବଗତ ହୋଇ ପାରିବେ । ହେ ପାଣ୍ଡୁନନ୍ଦନ ! ବିଚକ୍ଷଣ

ନରପତି ଏହିପ୍ରକାରେ ଗୂଢ଼ଗଣଙ୍କୁ ଅବଗତ ହୋଇପାରନ୍ତି । କାରଣ ପୂର୍ବରୁ ଗୂଢ଼ମାନଙ୍କୁ ଅବଗତ ହେଲେ ମଙ୍ଗଳ ହୁଏ ।୧୩। ଯେତେବେଳେ ନରପତି ସ୍ୱୟଂ ନିଜକୁ ବଳହୀନ ବୋଲି ବିବେଚନା କରିବେ, ସେତେବେଳେ ଅମାତ୍ୟବର୍ଗଙ୍କ ସହିତ ମନ୍ତ୍ରଣା କରି ବଳବାନ ସହିତ ସନ୍ଧିସ୍ଥାପନ କରିବେ । ୧୪। ଯଦି ଶତ୍ରୁ ଅପେକ୍ଷା ନିଜର ହୀନତ୍ୱକୁ ବିବେଚନା ନ କରନ୍ତି, ତଥାପି କିଞ୍ଚିତ ସ୍ୱାର୍ଥସିଦ୍ଧି ପ୍ରତ୍ୟାଶାଥିଲେ ସୁଦ୍ଧା ବିଚକ୍ଷଣ ନରପତି ଶତ୍ରୁ ସହିତ ଶୀଘ୍ର ସନ୍ଧିସ୍ଥାପନ କରିବେ ।୧୫। ଯେଉଁମାନେ ଗୁଣବାନ୍, ମହୋତ୍ସାହ ସମ୍ପନ୍ନ, ଧର୍ମଜ୍ଞ ଏବଂ ସାଧୁ ଅଟନ୍ତି, ଭୂପତି ଏତାଦୃଶ ଲୋକମାନଙ୍କ ସହିତ ସନ୍ଧିସ୍ଥାପନ କରି ଧର୍ମାନୁସାରେ ରାଜ୍ୟପାଳନ କରିବେ ।୧୬।

ବୁଦ୍ଧିମାନ ନରପତି ନିଜକୁ ଉଚ୍ଛିଦ୍ୟମାନ ଜ୍ଞାନ କଲେ, ଲୋକଦ୍ୱିଷ୍ଟ ପୂର୍ବାପକାରୀ ଲୋକମାନଙ୍କର ବିନାଶ ସାଧନ କରିବେ ।୧୭। ଯେଉଁ ଭୂପତି କୌଣସି ପ୍ରକାରେ ଉପକାର କିମ୍ବା ଅପକାର କରିବାକୁ ସମର୍ଥ ହୁଅନ୍ତି ନାହିଁ ଏବଂ ନିଜକୁ ସୁଦ୍ଧା ଉଦ୍ଧାର କରିବାକୁ ଅସମର୍ଥ ଅଟନ୍ତି । ତାହାଙ୍କୁ ଉପେକ୍ଷା ପ୍ରଦର୍ଶନ କରିବେ ।୧୮। ଯୁଦ୍ଧ ଯାତ୍ରାରେ ନିର୍ଗତ ହେବାର ଇଚ୍ଛାହେଲେ, ପୂର୍ବେ ନଗର ରକ୍ଷାର ବିଧାନ କରି ଓ ଯାତ୍ରିକ ଦ୍ରବ୍ୟସବୁ ଆୟୋଜନ କରି କଲ୍ୟାଣଜନକ ବାକ୍ୟ ସକଳ ଦ୍ୱାରା ଅଭିନନ୍ଦିତ ଓ ସୁମହତି ବଳପରିବୃତ ହୋଇ ସ୍ୱଚ୍ଛନ୍ଦରେ ଅଜ୍ଞ, ମନ୍ତ୍ରହୀନ, ବନ୍ଧୁବିହୀନ, ଅନ୍ୟ ସହିତ ଯୁଦ୍ଧରେ ଆସକ୍ତ, ଅନବହିତ ଏବଂ ଦୁର୍ବଳ ନୃପତି ପ୍ରତି ଯାତ୍ରା କରିବେ ।୨୦। ଯଦି ତାଦୃଶ ଭୂପତି ବଳ ଏବଂ ବୀର୍ଯ୍ୟରେ ନ୍ୟୁନ ହୋଇସୁଦ୍ଧା ସ୍ୱୀୟ ବୀର୍ଯ୍ୟ ପ୍ରକାଶ କରିବା ଇଚ୍ଛାରେ ସ୍ୱୟଂ ବଶୀଭୂତ ନ ହୁଅନ୍ତି ତାହାହେଲେ ତାହାଙ୍କର ରାଜ୍ୟମଧ୍ୟରେ ଅବସ୍ଥାନ କରି ତାହାଙ୍କୁ ସର୍ବତୋଭାବରେ ଉତ୍ପୀଡ଼ିତ କରିବେ । ଶସ୍ତ୍ର, ଅଗ୍ନି, ଏବଂ ବିଷଦ୍ୱାରା ପ୍ରଜାବର୍ଗଙ୍କୁ ବିମୋହିତ କରି ତାହାଙ୍କର ରାଜ୍ୟକୁ ପୀଡ଼ିତ କରିବ । ନିଜର ଭୃତ୍ୟବର୍ଗଙ୍କ ଦ୍ୱାରା ତାହାଙ୍କର ଅମାତ୍ୟ ଓ ବଲ୍ଲଭଗଣଙ୍କ ମଧ୍ୟରେ ଭେଦ ଜନ୍ମାଇ ଦେବେ ।୨୨।

ବୃହସ୍ପତି କହିଅଛନ୍ତି ଯେ ଧୀମାନ୍ ରାଜ୍ୟକାମ ନରପତି ଯୁଦ୍ଧରେ ପ୍ରବୃତ୍ତ ନ ହୋଇ ସନ୍ଧିପ୍ରଭୃତି ଅପର ବିବିଧ ଉପାୟ ଦ୍ୱାରା ଅର୍ଥ ସଂଗ୍ରହ କରିବେ ।୨୩। ପଣ୍ଡିତ ନରପତି ସାମ, ଦାନ ଏବଂ ଭେଦ ଏହି ତ୍ରିବିଧ

ଉପାୟ ଦ୍ୱାରା ଯେଉଁ ଅର୍ଥ ଲାଭ କରିପାରନ୍ତି, ତହିଁରେ ସନ୍ତୁଷ୍ଟହୋଇ ରହିବେ ।୨୪। ହେ କୁରୁନନ୍ଦନ ! ପ୍ରଜାବର୍ଗଙ୍କର ରକ୍ଷା ନିମିତ୍ତ ସେମାନଙ୍କ ନିକଟରୁ ଉତ୍ପନ୍ନ ହୋଇଥିବା ଦ୍ରବ୍ୟର ଷଷ୍ଠାଂଶ ରୂପ କର ଗ୍ରହଣ କରିବେ ।୨୫। ପୁରବାସିମାନଙ୍କର ରକ୍ଷା ନିମିତ୍ତ ମତ୍ତ ଓ ଉନ୍ମତ୍ତ ପ୍ରଭୃତି ଦଣ୍ଡଧର୍ମ୍ମଗତ ଲୋକମାନଙ୍କର ଦଣ୍ଡଦ୍ୱାରା ବହୁ ଅଥବା ଅଳ୍ପ ଧନ ଗ୍ରହଣ କରିବେ । କାରଣ ସେମାନଙ୍କର ଦଣ୍ଡ ନ କଲେ ସେମାନେ ପୌରଗଣଙ୍କର ପୀଡ଼ାକର ହୁଅନ୍ତି । ୨୬ ।

ପୁରବାସିଗଣଙ୍କୁ ପୁତ୍ର ନିର୍ବିଶେଷରେ ପ୍ରତିପାଳନ କରିବେ । କିନ୍ତୁ ବିଚାର କାର୍ଯ୍ୟରେ ପ୍ରବୃତ୍ତ ହୋଇ ସ୍ୱଜନ ବୋଲି ସେମାନଙ୍କ ପ୍ରତି ସ୍ନେହ ପ୍ରକାଶ କରିବେ ନାହିଁ । ୨୭ । ନୃପତି ଅର୍ଥି ଓ ପ୍ରତ୍ୟର୍ଥି ଗଣଙ୍କର ବାକ୍ୟ ସମୂହର ବିଚାର କାର୍ଯ୍ୟକୁ ଗ୍ରହଣ କରିବା ନିମିତ୍ତ ନିୟତ ସର୍ବାର୍ଥ ଦର୍ଶୀ ପଣ୍ଡିତ ମାନଙ୍କୁ ନିଯୁକ୍ତ କରିବେ । କାରଣ ସେମାନଙ୍କ ଦ୍ୱାରା ରାଜ୍ୟ ସୁପ୍ରତିଷ୍ଠିତ ହୋଇଥାଏ । ୨୮ । ଭୂପତି ସୁବର୍ଣ୍ଣାଦିର ଆକର, ଲବଣୋତ୍ପତ୍ତିର ସ୍ଥାନ, ଧାନ୍ୟାଦିର କ୍ରୟବିକ୍ରୟ ସ୍ଥାନ, ନଦୀ ସନ୍ତରଣ ଏବଂ ନାଗବଳ ଏହି ସମସ୍ତ ସ୍ଥାନ ମାନଙ୍କରେ ଆୟ ବ୍ୟୟ ବିଚାର କରିବା ନିମିତ୍ତ ସ୍ୱକୀୟ ଆତ୍ମୀୟ ହିତକାରୀ ପୁରୁଷଙ୍କୁ ନିଯୁକ୍ତ କରିବେ । ୨୯ । ନିୟତ ଯଥା ବିହିତ ଦଣ୍ଡଧାରୀ ନରପତି ଧର୍ମ୍ମଜନିତ ଫଳକୁ ଲାଭ କରନ୍ତି । କାରଣ ସମୟୋଚିତ ଦଣ୍ଡ ବିଧାନ କେବଳ ନୃପତିଙ୍କର ପରମ ଧର୍ମ୍ମ ବୋଲି ପ୍ରଶସ୍ତ ହୋଇଅଛି । ୩୦ ।

ହେ ଭାରତ ! ନୃପତିଙ୍କର ବେଦ ଓ ବେଦାଙ୍ଗ ସବୁ ଅଧ୍ୟୟନ କରିବା ଏବଂ ପ୍ରାଜ୍ଞ, ତପସ୍ୟା ରତ, ନିୟତ ଦାନଶୀଳ ଓ ଯଜ୍ଞଶୀଳ, ହେବା କର୍ତ୍ତବ୍ୟ । ୩୧ । ନୃପତିଙ୍କର ଏହି ସବୁ ଗୁଣ ସର୍ବଦା ସ୍ଥିର ଥିବା କର୍ତ୍ତବ୍ୟ; କାରଣ ବ୍ୟବହାର ଲୋପ ହେଲେ ତାହାଙ୍କର ସ୍ୱର୍ଗଲାଭ ବା କେଉଁଠାରେ ଏବଂ ଯଶ ବା କେଉଁଠାରେ ? । ୩୨ । ଅପର ବଳବାନ ଭୂପତିଙ୍କ କର୍ତ୍ତୃକ ପୀଡ଼ିତ ହେଲେ, ବୁଦ୍ଧିମାନ ନରପତି ଦୁର୍ଗ ମଧ୍ୟରେ ଆଶ୍ରୟ ଗ୍ରହଣ ଏବଂ ସମୟାନୁସାରେ ମିତ୍ରଗଣଙ୍କୁ ଆହ୍ୱାନ କରି ସେମାନଙ୍କ ସହିତ ଭେଦ ଅଥବା ବିଗ୍ରହ ବିଷୟକ ଯୁକ୍ତିସବୁ କଳ୍ପନା କରିବେ । ବନ ପଥ ମାନଙ୍କରେ ଘୋଷ ସବୁ ସନ୍ନିବେଶିତ କରିବେ । ଆବଶ୍ୟକ ହେଲେ ଗ୍ରାମ ମାନଙ୍କୁ ଏକ ସ୍ଥାନରୁ ଉଠାଇ ସେମାନଙ୍କୁ ଉପନଗର ମଧ୍ୟରେ ପ୍ରବେଶିତ କରିବେ । ୩୫ ।

ରାଜ୍ୟ ମଧ୍ୟରେ ଯେଉଁସବୁ ଗୁପ୍ତ ଓ ଦୁର୍ଗମ ସ୍ଥାନ ଅଛି, ଯୁଦ୍ଧ ଉପସ୍ଥିତ ହେଲେ ଧନଶାଳୀ ଏବଂ ବଳମୁଖ୍ୟଗଣଙ୍କୁ ମିଷ୍ଟ ବାକ୍ୟଦ୍ୱାରା ଶାନ୍ତ୍ୱନା କରି ତାଦୃଶ ସ୍ଥାନକୁ ପ୍ରେରଣ କରିବେ । ୩୭ । ନୃପତି ସ୍ୱୟଂ ଉପସ୍ଥିତ ଥାଇ ନିଜ ରାଜ୍ୟର ଶସ୍ୟ ସବୁ ଆହରଣ କରିବେ ଏବଂ ତନ୍ମଧ୍ୟରେ ପ୍ରବେଶ କରି ନ ପାରିଲେ ତାହାର ଚତୁର୍ଦ୍ଦିଗରେ ଅଗ୍ନି ସଂଯୋଗ କରି ତତ୍ସମସ୍ତ ଭସ୍ମୀଭୂତ କରିବେ । ୩୭ । ଶତ୍ରୁର ମିତ୍ରଗଣଙ୍କ ମଧ୍ୟରେ ଭେଦ ଜନ୍ମାଇ କିମ୍ବା ସ୍ୱୀୟ ବଳଦ୍ୱାରା ଶତ୍ରୁର କ୍ଷେତ୍ରସ୍ଥିତ ଶସ୍ୟ-ସବୁ ନଷ୍ଟ କରିବେ । ୩୮ । ନୃପତି ନଦୀ ପଥସ୍ଥିତ ସଙ୍କ୍ରମ ସବୁ ଭଗ୍ନ କରିବେ । ଦୀର୍ଘିକାର ଜଳସବୁ ବାହାର କରିଦେବେ । ଏବଂ ଯାହାର ଜଳ ବାହାର କରିବାର ଉପାୟ ନାହିଁ, ତାଦୃଶ ପଲ୍ୱଳାଦିର ଜଳ ବିଷାଦି ଦ୍ୱାରା ଦୂଷିତ କରିଦେବେ । ୩୯ ।

ବିଶେଷ ମିତ୍ରକାର୍ଯ୍ୟ ଉପସ୍ଥିତ ହେଲେ ସୁଦ୍ଧା, ତାହାକୁ ପରିତ୍ୟାଗ କରି ଓ ବର୍ତ୍ତମାନ ଓ ଭବିଷ୍ୟତ କାର୍ଯ୍ୟ ସବୁ ଚିନ୍ତାପୂର୍ବକ ରଣ ଭୂମିରେ ଶତ୍ରୁର ପ୍ରତିଘାତ ସମର୍ଥ ଶତ୍ରୁବର୍ଗଙ୍କ ସହିତ ମିତ୍ରତା କରି ତାହାଙ୍କର ସୈନ୍ୟ ଦ୍ୱାରା ଶତ୍ରୁକୁ ନିଜ ଦେଶରୁ ଦୂରୀଭୂତ କରିବେ । ୪୦ । ଯହିଁରେ ଶତ୍ରୁମାନେ ଆଶ୍ରୟ ନେଇ ପାରନ୍ତି, ଏତାଦୃଶ କ୍ଷୁଦ୍ର ଦୁର୍ଗ ସବୁ ଭଗ୍ନ କରିଦେବେ । ଚୈତ୍ୟ ବୃକ୍ଷ ଭିନ୍ନ ଅପର କ୍ଷୁଦ୍ର ବୃକ୍ଷର ମୂଳ ଛେଦନ କରିବେ । ୪୧ । ପ୍ରବୃଦ୍ଧ ବୃକ୍ଷ ସବୁର ଶାଖା ଛେଦନ କରିବେ । କିନ୍ତୁ ଚୈତ୍ୟ ବୃକ୍ଷର ପତ୍ର ପର୍ଯ୍ୟନ୍ତ କୌଣସି ପ୍ରକାରେ ପାତିତ କରିବେ ନାହିଁ । ୪୨ । ଦୁର୍ଗ ପାଚୀରର ଭିତ୍ତିମାନଙ୍କରେ ଶୂରଗଣଙ୍କର ଉପବେଶନ ସ୍ଥାନ ସବୁ ପ୍ରସ୍ତୁତ କରିବେ । ବାୟୁ ସଞ୍ଚରଣ କରିବେ । ଦୁର୍ଗ ମଧ୍ୟରୁ ବହିଃସ୍ଥ ସୈନ୍ୟଗଣଙ୍କୁ ଦର୍ଶନ କରିବେ । ଏବଂ ସେମାନଙ୍କ ଉପରେ ଅସ୍ତ୍ରେସ୍ତ୍ରାସ୍ତ୍ର ଓ ଗୁଳିକା କ୍ଷେପଣ କରିବା ନିମିତ୍ତ ଭିତ୍ତି ମଧ୍ୟରେ କ୍ଷୁଦ୍ର କ୍ଷୁଦ୍ର ଛିଦ୍ର ସବୁ ପ୍ରସ୍ତୁତ କରିବେ । ପରିଖା ସବୁ ସଲିଳପୂର୍ଣ୍ଣ ଏବଂ ଶୂଳ, ନକ୍ର ଓ ଭୀମାକାର ମତ୍ସ୍ୟ ସମୂହ ଦ୍ୱାରା ପରିପୂରିତ କରିବେ । ୪୩ ।

ପୁର ମଧ୍ୟରୁ ବହିର୍ଗମନ ନିମିତ୍ତ କ୍ଷୁଦ୍ର ଦ୍ୱାର ସବୁ ପ୍ରସ୍ତୁତ କରି ଅନ୍ୟାନ୍ୟ ଦ୍ୱାର ପ୍ରାୟ ସେମାନଙ୍କର ମଧ୍ୟ ରକ୍ଷା ବିଧାନ କରିବେ । ୪୪ । ସମସ୍ତ ଦ୍ୱାରରେ ବୃହତ ବୃହତ ଯନ୍ତ୍ରମାନ ଏବଂ ଆବଶ୍ୟକ ହେଲେ କ୍ଷେପଣ କରିହେବ, ଏପରି ଶତଘ୍ନୀ ସବୁ ସ୍ଥାପନ କରିବେ । ପ୍ରଜ୍ୱଳିତ କାଷ୍ଠ

ଆହରଣ କରିବେ । ସ୍ଥାନେ ସ୍ଥାନେ କୂପ ଖନନ କରାଇବେ ଏବଂ ଯେଉଁ ସବୁ କୂପ ଅନ୍ୟ ସଲିଲାର୍ଥୀଗଣଙ୍କର କର୍ତ୍ତୃକ ପୂର୍ବରୁ ଖନିତ ହୋଇଅଛି, ସେହିସବୁ କୂପର ଜଳକୁ ବିଶୁଦ୍ଧ କରିବେ । ୪୬ ।

ଚୈତ୍ର ମାସରେ ତୃଣାଚ୍ଛାଦିତ ଗୃହ ମାନଙ୍କରେ ପଙ୍କ ଲେପନ କରିବେ ଏବଂ ଅପର ସ୍ଥାନର ଅରକ୍ଷିତ ତୃଣ ସମୂହ ମଧ୍ୟ ଅଗ୍ନି ଭୟ ହେତୁରୁ ଆହରଣ କରି ଆଣିବେ । ୪୭ । ସେହି ସମୟରେ ନରପତି ରାତ୍ରିରେ ଅନ୍ନାଦି ଭକ୍ଷ୍ୟଦ୍ରବ୍ୟ ସବୁ ପାକ କରାଇବେ ଏବଂ ଅଗ୍ନିହୋତ୍ର ଭିନ୍ନ ଅପର କୌଣସି କାର୍ଯ୍ୟ ନିମିତ୍ତ ଦିବା ଭାଗରେ ଅଗ୍ନି ପ୍ରଜ୍ୱଳିତ କରାଇବେ ନାହିଁ । ୪୮ । କର୍ମାର ଶାଳା ଏବଂ ସୂତିକା ଗୃହରେ ସୁରକ୍ଷିତ ଭାବରେ ଅଗ୍ନି ପ୍ରଜ୍ୱାଳିତ କରିବେ ଓ ସେହି ଅଗ୍ନିକୁ ଗୃହ ମଧ୍ୟରେ ପ୍ରବେଶିତ କରି ତାହାକୁ ପତ୍ରାଦି ଦ୍ୱାରା ସମାଚ୍ଛାଦିତ କରି ରଖିବେ ।୪୯। ପୁରୀର ରକ୍ଷା ନିମିତ୍ତ ଏହିପରି ଘୋଷଣା କରିଦେ । ଯେ ଦିବା ଭାଗରେ ଅଗ୍ନି ପ୍ରଜ୍ୱଳିତ କରିବ, ତାହାର ପ୍ରାଣଦଣ୍ଡ ହେବ । ୫୦ ।

ହେ ନରଶ୍ରେଷ୍ଠ । ସେହି ସମୟରେ ଭିକ୍ଷୁକ, ଶାକଟିକ, କ୍ଳୀବ, ଉନ୍ମତ୍ତ ଏବଂ କୁଶୀଳବମାନଙ୍କୁ ରାଜ୍ୟରୁ ବହିଷ୍କୃତ କରିବେ । କାରଣ ତତ୍କାଳରେ ସେମାନେ ରାଜ୍ୟ ମଧ୍ୟରେ ଥିଲେ ଅନେକ ଦୋଷ ଉପସ୍ଥିତ ହୁଏ । ୫୧ । ଚତ୍ୱରରେ ମନ୍ତ୍ରାଦି ଅଷ୍ଟାଦଶବିଧ ତୀର୍ଥସଭା ମାନଙ୍କର ଏବଂ ସାଧାରଣ ଲୋକମାନଙ୍କ ଗୃହରେ ଉପଯୁକ୍ତ ପ୍ରଣିଧି ନିଯୁକ୍ତ କରିବେ । ୫୨ । ନରପତି ସୁବିସ୍ତୃତ ରାଜମାର୍ଗଗୁଡ଼ିକ ପ୍ରସ୍ତୁତ କରାଇବେ ଏବଂ ପାନୀୟଶାଳା ଓ କ୍ରୟ ବିକ୍ରୟର ସ୍ଥାନ ନିର୍ଦ୍ଦେଶ କରିଦେବେ ।୫୩।

ହେ କୁରୁନନ୍ଦନ ଯୁଧିଷ୍ଠିର । ଭଣ୍ଡାଗାର, ଆୟୁଧାଗାର, ଯୋଧାଗାର, ଅଶ୍ୱାଗାର, ଗଜଶାଳା, ସୈନ୍ୟଗଣଙ୍କର ଆବାସ ସ୍ଥାନ, ପରିଖା, ଅଭ୍ୟନ୍ତର ମାର୍ଗ ଏବଂ ଅନ୍ତଃପୁରସ୍ଥ ଉଦ୍ୟାନ ସବୁ ନୃପତି ଏପରି ଗୋପନୀୟ ସ୍ଥାନରେ ନିର୍ମାଣ କରିବେ ଯେ ଅନ୍ୟ କେହି ସୁଦ୍ଧା କୌଣସି ପ୍ରକାରେ ତତ୍ସମସ୍ତ ଦେଖିବାକୁ ସମର୍ଥ ହେବେ ନାହିଁ । ୫୪ । ପରବଳ ପୀଡ଼ିତ ନରପତି ତୈଳ, ବସା, ମଧୁ, ଘୃତ, ବହୁବିଧ ଔଷଧ ଏବଂ ଅର୍ଥ ସବୁ ସଞ୍ଚୟ କରିବେ । ୫୫ । ଅଙ୍ଗାର, କୁଶ, କୁଞ୍ଜପତ୍ର, ଶର, ଲୋମିକ, ଅଥବା କପଟ ବୃଦ୍ଧରଶ୍ମି, ଘାସ, କାଷ୍ଠ, ଏବଂ ବିଷାକ୍ତ ବାଣ, ଟାଙ୍ଗି, ଋଷ୍ଟି, ପ୍ରାସ ପ୍ରଭୃତି ଅସ୍ତ୍ର ଓ ବର୍ମାଦି ସମସ୍ତ ଆବଶ୍ୟକୀୟ ଦ୍ରବ୍ୟ

ସଞ୍ଚୟ କରିବେ । ୫୮ । ସର୍ବ ପ୍ରକାର ଔଷଧ, ମୂଳ, ଫଳ ଏବଂ ବିଷ, ଶଲ୍ୟ, ରୋଗ ଓ କୃତ୍ୟା ଏହି ଚତୁର୍ବିଧ ଉତ୍ପାତର ଉପଶମକାରୀ ଚତୁର୍ବିଧ ବୈଦ୍ୟମାନଙ୍କୁ ସଂଗ୍ରହ କରିବେ । ୫୯ । ନଟ, ନର୍ତ୍ତକ, ମଲ୍ଲ ଓ ମାୟାବୀ ଦ୍ୱାରା ରାଜପୁରୀକୁ ଶୋଭିତ ଓ ଅନ୍ୟାନ୍ୟ ସମସ୍ତଙ୍କୁ ଆନନ୍ଦିତ କରିବେ ।୬୦। ଭୃତ୍ୟ, ମନ୍ତ୍ରୀ ଓ ପୁରବାସୀଗଣଙ୍କ ମଧ୍ୟରୁ ଯାହାଙ୍କଠାରେ ଅଥବା ନୃପତିଙ୍କ ଠାରେ ଶଙ୍କା ହେଲେ ସେମାନଙ୍କୁ ସ୍ୱାୟତ୍ତ କରି ରଖିବେ । ୬୧ ।

ହେ ରାଜେନ୍ଦ୍ର ! ନୃପତି କ୍ରୋଧବଶତଃ ଅକାରଣରେ ଅନ୍ୟ ବ୍ୟକ୍ତିଙ୍କର ଅବମାନନା ଓ ତାଡ଼ନା କଲେ ଶାସ୍ତ୍ର ନିର୍ଦ୍ଦିଷ୍ଟ ଯଥାର୍ହ ପ୍ରଭୃତି ଧନଦାନ ଏବଂ ବିବିଧ ସାନ୍ତ୍ୱବାକ୍ୟ ଦ୍ୱାରା ସେମାନଙ୍କୁ ପ୍ରୀତ କରି ସେମାନଙ୍କଠାରୁ ଅନୃଣ ହେବେ । ୬୨ । ଯେଉଁ ସାତଗୋଟି ରାଜାଙ୍କର ଅବଶ୍ୟ ରକ୍ଷଣୀୟ ତାହା ଶ୍ରବଣ କର । ହେ କୁରୁନନ୍ଦନ ! ନୃପତିଙ୍କର ଆତ୍ମା, ଅମାତ୍ୟ, କୋଷ, ଦଣ୍ଡ, ମିତ୍ର, ଜନପଦ ଓ ପୁର ଏହି ସପ୍ତାଙ୍ଗ ରାଜ୍ୟ ସର୍ବ ପ୍ରକାରରେ ପ୍ରତିପାଳନ କରିବା କର୍ତ୍ତବ୍ୟ । ୬୪ । ହେ ପୁରୁଷ-ଶାର୍ଦ୍ଦୂଳ ! ଯେଉଁ ନରପତି ଷାଡ଼ଗୁଣ୍ୟ ତ୍ରିବର୍ଗ ଏବଂ ପରମ ତ୍ରିବର୍ଗଙ୍କୁ ଅବଗତ ହୋଇଅଛନ୍ତି ସେ ଏହି ପୃଥିବୀକୁ ଭୋଗ କରିବାକୁ ସମର୍ଥ ଅଟନ୍ତି । ୬୬ ।

ହେ ଯୁଧିଷ୍ଠିର ! ଷାଡ଼୍ଗୁଣ୍ୟର କଥା ଯାହା କହିଲୁଁ, ତାହା ଶ୍ରବଣ କର । ଶତ୍ରୁ ସହିତ ସନ୍ଧି କରି ନିଃଶଙ୍କ ଚିତ୍ତରେ ଅବସ୍ଥାନ, ଶତ୍ରୁ ପ୍ରତିଯାନ, ଶତ୍ରୁ ସହିତ ବିରୋଧ କରି ଅବସ୍ଥାନ, ଶତ୍ରୁକୁ ଭୟ ପ୍ରଦର୍ଶନ କରିବା ନିମିତ୍ତ ଯାତ୍ରାଛଳରେ ସ୍ୱସ୍ଥାନରେ ଅବସ୍ଥାନ, ଦ୍ୱୈଧୀଭାବ ଅର୍ଥାତ୍ ଶତ୍ରୁ ଓ ଅନ୍ୟ ଏହି ଉଭୟ ସହିତ ସନ୍ଧିସ୍ଥାପନ ଏବଂ ଦୁର୍ଗ ଅଥବା ଅନ୍ୟ ପ୍ରବଳ ନରପତିଙ୍କର ଆଶ୍ରୟ ଗ୍ରହଣ, ଏହି ଛଅଗୋଟି ନୃପତିଙ୍କର ଷାଡ଼୍ଗୁଣ୍ୟ । ୬୮ । ତ୍ରିବର୍ଗ ବିଷୟ ଯାହା କହୁଅଛୁଁ ତାହା ଏକାଗ୍ରଚିତ୍ତରେ ଶ୍ରବଣ କର । କ୍ଷୟ, ସ୍ଥାନ ଏବଂ ବୃଦ୍ଧି ଏହି ତ୍ରିବର୍ଗ ଏବଂ ଧର୍ମ, ଅର୍ଥ, କାମ ଏହି ପରମ ତ୍ରିବର୍ଗକୁ ସମୟାନୁସାରେ ଆଚରଣ କରିବା କର୍ତ୍ତବ୍ୟ । ଏହି ପ୍ରକାରରେ ମନ୍ତ୍ରୀଗତ ଧର୍ମାନୁସାରେ ଚିରକାଳ ପୃଥିବୀ ପାଳନ କରନ୍ତି । ୭୦ ।

ହେ ଯାଦବୀ ନନ୍ଦନ ! ତୁମ୍ଭର ମଙ୍ଗଳ ହେଉ, ଏହି ଅର୍ଥରେ ସ୍ୱୟଂ ବୃହସ୍ପତିଙ୍କ କର୍ତ୍ତୃକ ଯେଉଁ ଦୁଇଗୋଟି ଶ୍ଳୋକ ଗୀତ ହୋଇଅଛି,

ସେହି ଦୁଇ ଶ୍ଳୋକକୁ ତୁମ୍ଭର ଶ୍ରବଣ କରିବା କର୍ତ୍ତବ୍ୟ । ୭୧ । ମେଦିନୀ ଏବଂ ପୁରବାସି ଗଣଙ୍କୁ ସମ୍ୟକ ପ୍ରକାରେ ପାଳନ ଏବଂ ଅନ୍ୟାନ୍ୟ ସର୍ବ-ପ୍ରକାର କାର୍ଯ୍ୟକରି ନରପତି ପରମ ସୁଖଲାଭ କରନ୍ତି । ୭୨ । ଯେ ପ୍ରକୃତି ବୃନ୍ଦଙ୍କୁ ଉତ୍ତମ ରୂପରେ ପାଳନ କରନ୍ତି ତାଦୃଶ ନରପତିଙ୍କର ତପସ୍ୟା କରିବାରେ ଫଳ କଣ ? ଏବଂ ତାହାଙ୍କର ଯଜ୍ଞରେ ବା ପ୍ରୟୋଜନ କଣ ? କାରଣ ସେ ସ୍ୱୟଂ ସର୍ବ ଧର୍ମ୍ମବିତ୍ ଅଟନ୍ତି ।

ଯୁଧିଷ୍ଠିର କହିଲେ—ହେ ପିତାମହ ! ଦଣ୍ଡନୀତି ଆଉ ନୃପତି ବ୍ୟସ୍ତ ଓ ସମସ୍ତ ଏହି ଉଭୟ ପ୍ରକାର ହୋଇଥାନ୍ତି । ତନ୍ମଧ୍ୟରେ କିଏ କି ପ୍ରକାର କାର୍ଯ୍ୟଦ୍ୱାରା କୀଦୃଶୀ ସିଦ୍ଧିଲାଭ କରନ୍ତି, ଆପଣ ଏହିସବୁ ଆମ୍ଭଠାରେ ବର୍ଣ୍ଣନ କରନ୍ତୁ । ୭୪ ।

ଭୀଷ୍ମ କହିଲେ—ହେ ମହାରାଜ ଭରତ ନନ୍ଦନ ! ଦଣ୍ଡନୀତିରୁ ନୃପତି ଓ ପ୍ରକୃତିବର୍ଗଙ୍କର ଯେଉଁ ମହାଭାଗ୍ୟ ହୋଇଥାଏ, ଆମ୍ଭେ ଯୁକ୍ତିଯୁକ୍ତ ସିଦ୍ଧ ବାକ୍ୟମାନଙ୍କ ଦ୍ୱାରା ତତ୍ସମସ୍ତ ବର୍ଣ୍ଣନ କରୁଅଛୁଁ, ଶ୍ରବଣ କର । ଭୂପତିଙ୍କ କର୍ତ୍ତୃକ ଯଥାବତ୍ ପ୍ରଯୁକ୍ତ ଦଣ୍ଡନୀତି, ଚତୁର୍ବର୍ଣ୍ଣ୍ୟ ପ୍ରଜାଗଣଙ୍କୁ ଅଧର୍ମରୁ ନିବୃତ୍ତ କରି ସ୍ୱଧର୍ମ୍ମରେ ସଂସ୍ଥାପିତ କରେ । ୭୬ । ଚତୁର୍ବର୍ଣ୍ଣ୍ୟ ପ୍ରକୃତିବୃନ୍ଦ ସ୍ୱକର୍ମ ନିରତ, ମର୍ଯ୍ୟାଦା ସମୂହର ଅସଙ୍କର ଏବଂ ଦଣ୍ଡନୀତି କୃତ ମଙ୍ଗଳ ଦ୍ୱାରା ଅକୁତୋଭୟ ହେଲେ ବ୍ରାହ୍ମଣାଦି ବର୍ଣ୍ଣତ୍ରୟ ସ୍ୱାସ୍ଥ୍ୟ ନିମିତ୍ତ ସାଧ୍ୟାନୁସାରେ ଯତ୍ନବାନ ହୁଅନ୍ତି ଏବଂ କ୍ଷମାଖ୍ୟ ଅସଙ୍କରରୁ ମନୁଜଗଣଙ୍କର ପରମ ସୁଖ ହୁଏ । ୭୮ । କାଳ ରାଜାଙ୍କର କାରଣ କିମ୍ବା ରାଜା କାଳର କାରଣ ଅଟନ୍ତି । ଏହି ଉଭୟ କଥାରେ ତୁମ୍ଭର ସଂଶୟ ଉପସ୍ଥିତ ନ ହେଉ । ରାଜା କାଳର କାରଣ ଅଟନ୍ତି, ଏହା କେବଳ ତୁମ୍ଭେ ନିଶ୍ଚୟ ଜାଣିବ । ୭୯ ।

ଯେତେବେଳେ ନରପତି ସମ୍ୟକ ରୂପରେ ଯଥାବିଧି ଦଣ୍ଡନୀତିକୁ ପ୍ରୟୋଗ କରନ୍ତି, ସେତେବେଳେ କାଳ କ୍ରମାଗତ ସତ୍ୟଯୁଗ ପ୍ରବର୍ତ୍ତିତ ହୋଇଥାଏ । ତଦନନ୍ତର ସେହି ସତ୍ୟଯୁଗରେ କେବଳମାତ୍ର ଧର୍ମ୍ମ ବିରାଜ କରୁଥାଏ, ଅଧର୍ମ୍ମ ଏକାବେଳକେ ଅନ୍ତର୍ହିତ ହୁଏ ଏବଂ ପ୍ରକୃତି-ବୃନ୍ଦଙ୍କର ମନ ଅଧର୍ମ୍ମରେ ଅନୁରକ୍ତ ହୁଏନାହିଁ । ପ୍ରଜାଗଣ ନିଃସଂଶୟରେ ଯୋଗକ୍ଷେମ ଆହରଣ କରନ୍ତି ଓ ତାହାଙ୍କର ବୈଦିକ କର୍ମ୍ମ ସମସ୍ତ ଗୁଣବନ୍ତ

ହୋଇ ପ୍ରାଦୁର୍ଭୂତ ହୁଏ । ୮୨ । ଋତୁ ସବୁ ନିରାମୟ ଓ ସୁଖାବହ ହୁଏ । ମନୁଷ୍ୟମାନଙ୍କର ସ୍ୱର, ବର୍ଣ୍ଣ ଓ ମନ ପ୍ରସନ୍ନ ହୋଇଥାଏ । ୮୩ । କେହି ସୁଦ୍ଧା ରୋଗାକ୍ରାନ୍ତ ହୁଅନ୍ତିନାହିଁ ଏବଂ କୌଣସି ମନୁଷ୍ୟ ସୁଦ୍ଧା ଅଳ୍ପାୟୁ ହୋଇ ଦୃଷ୍ଟ ହୁଅନ୍ତି ନାହିଁ । ଏହି ସତ୍ୟଯୁଗରେ କୌଣସି ରମଣୀ ସୁଦ୍ଧା ବିଧବା ଏବଂ କେହି ସୁଦ୍ଧା କୃପଣ ହୁଅନ୍ତି ନାହିଁ । ୮୪ ।

କର୍ଷଣାଦି ନୋହିଲେ ସୁଦ୍ଧା ପୃଥିବୀରେ ଔଷଧି ଓ ଶସ୍ୟ ସବୁ ଉତ୍ପନ୍ନ ହୁଏ, ତ୍ୱକ, ପତ୍ର ଫଳ ଏବଂ ମୂଳସବୁ ବୀର୍ଯ୍ୟଯୁକ୍ତ ହୁଅନ୍ତି । ସେହି କୃତ ଯୁଗରେ ଅଧର୍ମ ଅନ୍ତର୍ହିତ ହୁଏ ଓ କେବଳ ଧର୍ମ ମାତ୍ର ବିରାଜ କରିଥାନ୍ତି । ହେ ଯୁଧିଷ୍ଠିର ! ଏହିସବୁକୁ ସତ୍ୟଯୁଗର ଧର୍ମ ବୋଲି ଜାଣିବ । ୮୬ । ଯେତେବେଳେ ଭୂପତି ସମ୍ୟକ ପ୍ରକାରେ ପ୍ରବୃତ୍ତ ନ ହୋଇ ଦଣ୍ଡନୀତିର ଚତୁର୍ଥାଂଶକୁ ପରିତ୍ୟାଗ ପୂର୍ବକ ତାହାର ଭାଗ ତ୍ରୟରେ କେବଳ ଅନୁବର୍ତ୍ତୀ ହୁଅନ୍ତି, ତେତେବେଳେ ତ୍ରେତାଯୁଗ ପ୍ରବର୍ତ୍ତିତ ହୋଇଥାଏ । ସେହି ତ୍ରେତାଯୁଗରେ ତିନି ଅଂଶ ଧର୍ମ ଏବଂ ଏକ ଅଂଶ ଅଧର୍ମ ପ୍ରବର୍ତ୍ତିତ ହୁଏ । କର୍ଷଣ କଲେ ପୃଥିବୀରେ ଶସ୍ୟ ଏବଂ ଔଷଧି ଉତ୍ପନ୍ନ ହୁଏ । ୮୮ ।

ଯେତେବେଳେ ନରପତି ଦଣ୍ଡନୀତିର ଅର୍ଦ୍ଧାଂଶକୁ ପରିତ୍ୟାଗ କରି ଅର୍ଦ୍ଧାଂଶମାତ୍ରର ଅନୁବର୍ତ୍ତୀ ହୋଇ କାର୍ଯ୍ୟ କରନ୍ତି, ତେତେବେଳେ ଦ୍ୱାପର ନାମକ କାଳ ପ୍ରବର୍ତ୍ତିତ ହୁଏ । ୮୯ । ଦୁଇଭାଗ ଅଧର୍ମ ଦୁଇଭାଗ ଧର୍ମ ଅନୁବର୍ତ୍ତିତ ହୁଏ ଏବଂ ପୃଥିବୀ କର୍ଷିତା ହୋଇ ସୁଦ୍ଧା ଅର୍ଦ୍ଧମାତ୍ରଫଳ ପ୍ରଦାନ କରେ । ୯୦ । ଯେତେବେଳେ ନରପତି ଦଣ୍ଡନୀତିକୁ ପରିତ୍ୟାଗ କରି କେବଳ ମାତ୍ର ଅସଦୁପାୟ ଦ୍ୱାରା ପ୍ରକୃତିବର୍ଗଙ୍କୁ ପୀଡ଼ିତ କରନ୍ତି, ତେତେବେଳେ କଳିଯୁଗ ପ୍ରବର୍ତ୍ତିତ ହୁଏ । କଳିଯୁଗରେ କୁତ୍ରାପି ଧର୍ମ ଦୃଷ୍ଟ ହୁଏ ନାହିଁ, ସମସ୍ତ ଅଧର୍ମପୂର୍ଣ୍ଣ ହୁଏ ଏବଂ ସମସ୍ତ ବର୍ଣ୍ଣର ମନ ସ୍ୱଧର୍ମରୁ ବିଚ୍ୟୁତ ହୁଏ । ଶୂଦ୍ରମାନେ ଭିକ୍ଷାବୃତ୍ତି ଅବଲମ୍ବନ କରନ୍ତି ଏବଂ ବ୍ରାହ୍ମଣମାନେ ଅନ୍ୟର ପରିଚର୍ଯ୍ୟା ଦ୍ୱାରା ଜୀବିକା ନିର୍ବାହ କରନ୍ତି । ଯୋଗଶୀଳଗଣ ବିନାଶ ପ୍ରାପ୍ତ ହୁଅନ୍ତି ଏବଂ ବର୍ଣ୍ଣସଙ୍କରମାନଙ୍କର ବୃଦ୍ଧି ହୁଏ । ବୈଦିକ କର୍ମମାନଙ୍କ ଅନୁଷ୍ଠାନ କଲେ ତଦ୍ୱାରା କୌଣସି ଫଳ ହୁଏ ନାହିଁ ବରଂ ବିଗୁଣ ହୋଇଥାଏ । କୌଣସି ଋତୁ ସୁଦ୍ଧା ସୁଖ-ଦାୟକ ହୁଏ ନାହିଁ । ସମସ୍ତ ଋତୁରେ ପ୍ରଜାବର୍ଗ ରୋଗ ପୀଡ଼ିତ ହୋଇଥାନ୍ତି । ମନୁଷ୍ୟମାନଙ୍କର ସ୍ୱର, ବର୍ଣ୍ଣ ଓ ମନ ହ୍ରାସ ହୁଏ ଏବଂ

ସେମାନେ ବ୍ୟାଧି ପୀଡ଼ିତ ଓ ଅଳ୍ପାୟୁ ହୋଇ ଅକାଳରେ, କାଳ ଗ୍ରାସରେ ପତିତ ହୁଅନ୍ତି । ୯୫ ।

ହେ ଯୁଧିଷ୍ଠିର ! କଳିଯୁଗରେ ଅବଳାଗଣ ବିଧବା ହୁଅନ୍ତି ଏବଂ ପ୍ରଜାବୃନ୍ଦ ନୃଶଂସ ହୋଇଯାନ୍ତି । ପର୍ଜନ୍ୟ ସର୍ବଦା ବାରିବର୍ଷଣ କରନ୍ତି ନାହିଁ, ଶସ୍ୟାଦି ମଧ୍ୟ କଦାଚିତ୍ କ୍ୱଚିତ ଉତ୍ପନ୍ନ ହୁଅନ୍ତି । ୯୬ । ଯେତେବେଳେ ନରପତି ଦଣ୍ଡନୀତି ସମାହିତ ହୋଇ ପ୍ରଜାବର୍ଗଙ୍କୁ ରକ୍ଷା କରିବାକୁ ଇଚ୍ଛା କରନ୍ତି ନାହିଁ, ତେତେବେଳେ ଇଏ ସବୁ କ୍ଷୟ ପ୍ରାପ୍ତ ହୁଏ । ୯୭ । ରାଜା ସତ୍ୟ, ତ୍ରେତା, ଦ୍ୱାପର ଏ ଚତୁର୍ଥ କଳି ଏହି ଚାରି ଯୁଗର ପରିବର୍ତ୍ତନର କାରଣ ଅଟନ୍ତି । ୯୮ । ନୃପତି ସତ୍ୟ ଯୁଗରେ ଅଚରିତ କାର୍ଯ୍ୟମାନଙ୍କ ଦ୍ୱାରା ଅନନ୍ତ ସ୍ୱର୍ଗସୁଖ ଲାଭ କରନ୍ତି । ତ୍ରେତା ଯୁଗରେ ତଦପେକ୍ଷା ସ୍ୱର୍ଗରେ କିଞ୍ଚିତ ନ୍ୟୂନ ସୁଖ ଲାଭ କରନ୍ତି ଏବଂ ଦ୍ୱାପର ଯୁଗରେ ଆଚରିତ ଧର୍ମ୍ମ ଓ ଅଧର୍ମ୍ମର ସଙ୍ଖ୍ୟାନୁସାରେ ସ୍ୱର୍ଗସୁଖ ଲାଭ କରନ୍ତି, କିନ୍ତୁ ଯୁଗାଚରିତ କାର୍ଯ୍ୟଦ୍ୱାରା କେବଳ ପାପଜନିତ କଷ୍ଟ ଭୋଗ କରନ୍ତି । ୧୦୦ ।

ଅନନ୍ତର ପ୍ରଜାଗଣଙ୍କର ଆଚରିତ ପାପପଙ୍କରେ ନିମଗ୍ନ ସେହି ପାପାତ୍ମା ଦୁଷ୍କର୍ମ୍ମା ନରପତି ବହୁ ବର୍ଷର ପର୍ଯ୍ୟନ୍ତ ନରକରେ ବାସ କରନ୍ତି ଏବଂ ଅକୀର୍ତ୍ତି ଓ ପାପଭାଗୀ ହୁଅନ୍ତି । କ୍ଷତ୍ରିୟ ନିଖିଳ ଦଣ୍ଡନୀତିକୁ ଅବଗତ ହୋଇ ଏବଂ ତାହାକୁ ସମୁଖବର୍ତ୍ତିନୀ କରି ନିଯୁତ ଅଲବ୍ଧ ବସ୍ତୁଲାଭ ନିମିତ୍ତ ଯତ୍ନ ଏବଂ ଲବ୍ଧ ବସ୍ତୁର ରକ୍ଷା କରିବେ । ୧୦୨ । ଲୋକଙ୍କର ବ୍ୟବସ୍ଥାପିକା ମର୍ଯ୍ୟାଦା ଏବଂ ଲୋକ ଭାବନୀ ଏହି ଦଣ୍ଡନୀତି ସମ୍ୟକ ରୂପରେ ପ୍ରଯୁକ୍ତା ହେଲେ, ମାତା ଓ ପିତା ଶିଶୁଗଣଙ୍କୁ ରକ୍ଷା କଲା ପ୍ରାୟ, ଲୋକମାନଙ୍କୁ ରକ୍ଷା କରେ । ୧୦୩ ।

ମନୁଜର୍ଷଭ ! ରାଜାଙ୍କର ଦଣ୍ଡନୀତି ବିଶାରଦ ହେବା ହିଁ ପରମ ଧର୍ମ୍ମ; କାରଣ ଏହା ନିଶ୍ଚୟ ଜାଣିବ ଯେ ଲୋକମାନେ ସମସ୍ତେ ଦଣ୍ଡନୀତିରେ ସୁସ୍ଥାପିତ ହୋଇଅଛନ୍ତି । ୧୦୪ । ହେ କୁରୁନନ୍ଦନ ! ଏହି-ସବୁ କାରଣରୁ କହୁଁଅଛୁଁ ଯେ ତୁମ୍ଭେ ନୀତିନିପୁଣ ହୋଇ ଧର୍ମ୍ମାନୁସାରେ ପ୍ରଜାବର୍ଗଙ୍କୁ ପ୍ରତିପାଳନ କର । କାରଣ ପ୍ରଜାରକ୍ଷା କଲେ ଦୁର୍ଜ୍ଜୟ ସ୍ୱର୍ଗକୁ ଜୟ କରି ପାରନ୍ତି । ୧୦୫ ।

---

## ଅଧ୍ୟାୟ—୭୦

ଯୁଧିଷ୍ଠିର କହିଲେ—ହେ ବୃତ୍ତଜ୍ଞ ! ମହୀପତି କୀଦୃଶ କାର୍ଯ୍ୟଦ୍ୱାରା ଇହଲୋକରେ ଏବଂ ମୃତ୍ୟୁପରେ ପରଲୋକରେ ଉତ୍କୃଷ୍ଟ ସୁଖଦାୟକ ଅର୍ଥ ସବୁ ଅନାୟାସରେ ଲାଭ କରି ପାରନ୍ତି ? ୧ ।

ଭୀଷ୍ମ କହିଲେ—ଗୁଣୋପେତ ମନୁଷ୍ୟ ଯେଉଁ ସବୁ କର୍ମ ଆଚରଣ କରି କଲ୍ୟାଣ ଲାଭ କରନ୍ତି, ଅକପଟଭାବ ଷଟ୍‌ତ୍ରିଶ ଗୁଣ ସଂଯୁକ୍ତ ସେହି ଧର୍ମ ଷଟ୍‌ତ୍ରିଂଶଦ୍‌ବିଧା ରାଗ ଦ୍ୱେଷ ବିହୀନ ହୋଇ ଧର୍ମ କାର୍ଯ୍ୟ ସବୁ ଆଚରଣ କରିବା, ଲୋଭ ବଶୀଭୂତ ନ ହୋଇ ଅପର ଲୋକପ୍ରତି ଦୃଷ୍ଟିରଖି ସ୍ନେହ ପ୍ରକାଶ କରିବା, କୌଣସି ପ୍ରକାର ନିଷ୍ଠୁର ବ୍ୟବହାର ନ କରି ଅର୍ଥୋପାର୍ଜନ କରିବା ଏବଂ ଯହିଁରେ ଧର୍ମ ଓ ଅର୍ଥ ବିନଷ୍ଟ ନ ହୁଏ, ଏତାଦୃଶ ଅନୁଦ୍ଧତ ଭାବରେ ଇନ୍ଦ୍ରିୟମାନଙ୍କର ପ୍ରୀତିସାଧନ କରିବା କର୍ତ୍ତବ୍ୟ । ୩ । ଅଦୀନ ଭାବରେ ପ୍ରିୟବାକ୍ୟ କହିବ, ଶୂର ହୋଇ ଆତ୍ମଶ୍ଳାଘା ବିହୀନ ହେବ । ପ୍ରଗଲ୍‌ଭ ହୋଇ ସୁଦ୍ଧା ସଦୟ ହେବ ଏବଂ ଦାତା ହୋଇ ସୁଦ୍ଧା ଅପାତ୍ରରେ ଦାନ କରିବ ନାହିଁ । ୪ ।

ଅନାର୍ଯ୍ୟଗଣଙ୍କ ସହିତ ସନ୍ଧି କରିବା, ବନ୍ଧୁମାନଙ୍କ ସହିତ ବିଗ୍ରହ କରିବା ଓ ଅଲ୍ପଜ୍ଞ ବ୍ୟକ୍ତିକୁ ଚର କାର୍ଯ୍ୟରେ ନିଯୁକ୍ତ କରିବା କର୍ତ୍ତବ୍ୟ ନୁହେ ଏବଂ ଅନ୍ୟାନ୍ୟ ଲୋକମାନଙ୍କୁ ପୀଡ଼ିତ ନ କରି କାର୍ଯ୍ୟ କରିବା କର୍ତ୍ତବ୍ୟ । ୫ । ଅସତ୍ ଲୋକଙ୍କଠାରେ ଅର୍ଥ କଥନ, ସ୍ୱୟଂ ନିଜର ଗୁଣ ଗାନ, ସାଧୁମାନଙ୍କଠାରୁ ଧନ ହରଣ ଏବଂ ଅସତ୍ ପୁରୁଷର ଆଶ୍ରୟ ଗ୍ରହଣ କରିବା କର୍ତ୍ତବ୍ୟ ନୁହେଁ । ୬ । ପରୀକ୍ଷା ନ କରି ଦଣ୍ଡ ପ୍ରୟୋଗ କରିବା, ଅସ୍ଥିର ଲୋକଠାରେ ମନ୍ତ୍ରଣା ପ୍ରକାଶ କରିବା, ଲୁବ୍‌ଧଗଣଙ୍କୁ ଧନ ଦାନ କରିବା ଏବଂ ଅପକାରୀ ଲୋକମାନଙ୍କୁ ବିଶ୍ୱାସ କରିବା ବିଧେୟ ନୁହେଁ । ୭ । ନୃପତି ନିୟତ ଈର୍ଷା ବିରହିତ, ଗୁପ୍ତଦାର, ଶୁଦ୍ଧ ଓ ଘୃଣା ବିହୀନ ହେବେ । ଯହିଁରେ ଅନୁପକାର ହୁଏ, ତାଦୃଶ ଅଙ୍ଗ ପରିତ୍ୟାଗ କରି ବିଶୁଦ୍ଧ ଭକ୍ଷ୍ୟ ଦ୍ରବ୍ୟ ଭୋଜନ କରିବେ ଏବଂ କାନ୍ତାଠାରେ ଏକାନ୍ତ ସଙ୍ଗତ ହେବେ ନାହିଁ । ୮ ।

ଅସ୍ତବ୍‌ଧ ଭାବରେ ମାନ୍ୟଗଣଙ୍କର ସତ୍କାର କରିବା, ମାୟା ରହିତ ହୋଇ ଗୁରୁଜନଙ୍କର ସେବା କରିବା, ଦମ୍ଭ କପଟ ବିହୀନ ହୋଇ

ଦେବଗଣଙ୍କର ଅର୍ଚ୍ଚନା କରିବା ଏବଂ ଅନାସକ୍ତ ଲୋକଙ୍କଠାରୁ ଧନଗ୍ରହଣ କରିବା କର୍ତ୍ତବ୍ୟ । ୯ । ପ୍ରଣୟ ପରିତ୍ୟାଗ କରି ସେବା କରିବେ ଏବଂ ଦକ୍ଷ ହୋଇ ସୁଦ୍ଧା ସମୟ ପ୍ରତୀକ୍ଷା କରିବେ । ଧନ ଦେଇ ସନ୍ଧି କରିବା ଏବଂ ଅଶ୍ରଦ୍ଧ ଦାନ କରି ପରିତ୍ୟାଗ କରିବା କର୍ତ୍ତବ୍ୟ ନୁହେ । ୧୦ । ବିଶେଷ ରୂପରେ ଅବଗତ ନ ହୋଇ ପ୍ରହାର କରିବା, ଶତ୍ରୁକୁ ବିନାଶ କରି ଶୋକ କରିବା, ଅକସ୍ମାତ କ୍ରୋଧ ପ୍ରକାଶ କରିବା ଏବଂ ଅପକାରୀ-ଠାରେ ମୃଦୁତା ପ୍ରକାଶ କରିବା କର୍ତ୍ତବ୍ୟ ନୁହେଁ । ୧୧ ।

ହେ ଯୁଧିଷ୍ଠିର ! ତୁମ୍ଭେ ଯଦି ଶ୍ରେୟ ପ୍ରାପ୍ତିର ବାସନା କର, ତାହାହେଲେ ରାଜ୍ୟସ୍ଥ ହୋଇ ଏହିପରି ଆଚରଣ କରିବ । କାରଣ ଏହାର ଅନ୍ୟଥା କଲେ ନରପତି ମଙ୍ଗଳ ଲାଭ କରି ପାରନ୍ତି ନାହିଁ । ୧୨ । ଯେ ଯଥୋକ୍ତ ରୂପରେ ଏହିସବୁ ଗୁଣର ଅନୁବର୍ତ୍ତୀ ହୋଇ କାର୍ଯ୍ୟ କରନ୍ତି ସେ ଇହ ଲୋକରେ ଓ ପରଲୋକରେ ମଙ୍ଗଳ ଲାଭ କରନ୍ତି । ୧୩ । ବୈଶମ୍ପାୟନ କହିଲେ—ପାଣ୍ଡୁନନ୍ଦନ ଭୀମାଦିଙ୍କ ଦ୍ୱାରା ସଂବୃତ ବୁଦ୍ଧିମାନ ମହାରାଜ ଯୁଧିଷ୍ଠିର ଶାନ୍ତନୁତନୟ ଭୀଷ୍ମଙ୍କର ଏହି ବାକ୍ୟ ଶ୍ରବଣ କରି ତତ୍କାଳରେ ସେହି ପିତାମହଙ୍କୁ ବନ୍ଦନାପୂର୍ବକ ତଦ୍ରୂପ ଆଚରଣ କଲେ । ୧୪ ।

---

## ଅଧ୍ୟାୟ—୭୨

ଯୁଧିଷ୍ଠିର କହିଲେ—ହେ ପିତାମହ ! ନୃପତି କି ପ୍ରକାରେ ପ୍ରଜାପାଳନ କଲେ ମାନସୀ ବ୍ୟଥା ରୂପ ବନ୍ଧନରେ ଆବଦ୍ଧ ହୁଅନ୍ତି ନାହିଁ ଏବଂ ବ୍ୟବହାର ନିର୍ଣ୍ଣୟାଦି କାର୍ଯ୍ୟର ମଧ୍ୟ ଅନ୍ୟଥା ହୁଏ ନାହିଁ । ଆପଣ ତତ୍ସମସ୍ତ ଆମ୍ଭଠାରେ ବର୍ଣ୍ଣନ କରନ୍ତୁ ।

ଭୀଷ୍ମ କହିଲେ—ହେ ରାଜନ୍ ! ଅମ୍ଭେ ସେହି ଶାସ୍ତ୍ରଧର୍ମ ସବୁ ସଂକ୍ଷେପରେ ତୁମ୍ଭଠାରେ ବର୍ଣ୍ଣନ କରିବୁଁ । କାରଣ ସେହିସବୁ ଧର୍ମକୁ ବିସ୍ତୃତ ରୂପରେ ବର୍ଣ୍ଣନ କଲେ କଦାପି ଶେଷ ହେବ ନାହିଁ । ତୁମ୍ଭେ ଧର୍ମ ନିଷ୍ଠ, ବେଦଜ୍ଞ, ଦେବ ପୂଜାରତ, ବ୍ରତପରାୟଣ ଏବଂ ଗୁଣବାନ୍ ଗୃହାଗତ ବ୍ରାହ୍ମଣମାନଙ୍କୁ ନିଯୁତ ଅର୍ଚ୍ଚନା କରିବ । ବ୍ରାହ୍ମଣ ସମାଗତ

ହେଲେ ପ୍ରଥମତଃ ପ୍ରତ୍ୟୁତ୍‌ଥାନାଦି ଦ୍ୱାରା ସମ୍ମାନ ପ୍ରଦର୍ଶନ କରି ତାହାଙ୍କର ଚରଣଦ୍ୱୟ ବନ୍ଦନା କରିବ । ତଦନନ୍ତର ପୁରୋହିତଙ୍କ ସହିତ ଅନ୍ୟ ସବୁ କାର୍ଯ୍ୟ ନିର୍ବାହ କରିବ । ୪। ଏହି ପ୍ରକାରେ ଧର୍ମ୍ମ କାର୍ଯ୍ୟ ସବୁ ସମାପ୍ତ କରି, ବ୍ରାହ୍ମଣମାନଙ୍କୁ ଅନ୍ୟାନ୍ୟ ମଙ୍ଗଳଜନକ କାର୍ଯ୍ୟରେ ନିଯୁକ୍ତ କରି ସେମାନଙ୍କ ଦ୍ୱାରା ଅର୍ଥସିଦ୍ଧି ଏବଂ ବିଜୟ ନିମନ୍ତେ ତାଙ୍କର ଆଶୀର୍ବାଦ ଗ୍ରହଣ କର ।୫।

ହେ ଭାରତ ! ନୃପତି କାମ କ୍ରୋଧ ବର୍ଜ୍ଜନ ପୂର୍ବକ ସ୍ୱୀୟ ବୁଦ୍ଧି ପ୍ରଭାବ ଦ୍ୱାରା ଧୈର୍ଯ୍ୟ ଓ ସରଳ ଭାବ ଅବଲମ୍ବନ କରି ଯଥାର୍ଥ ପ୍ରାପ୍ୟ ବସ୍ତୁକୁ ପ୍ରତିଗ୍ରହ କରିବେ । ୬ । ଯେଉଁ ମୂଢ଼ ନରପତି କାମ କ୍ରୋଧର ବଶୀଭୂତ ହୋଇ ଅର୍ଥୋପାର୍ଜନ କରନ୍ତି, ସେ ଧର୍ମ କିମ୍ବା ଅର୍ଥ କିଛି ମଧ୍ୟ ଲାଭକରି ପାରନ୍ତି ନାହିଁ । ଲୁବ୍‌ଧ ଓ ମୂର୍ଖଗଣଙ୍କୁ ଲୋଭଜନକ ଅର୍ଥ ସମ୍ବନ୍ଧୀୟ କାର୍ଯ୍ୟରେ ନିଯୁକ୍ତ ନ କରି ଲୋଭଶୂନ୍ୟ ବୁଦ୍ଧିମାନ ଲୋକମାନଙ୍କୁ ତାଦୃଶ ସର୍ବ କାର୍ଯ୍ୟରେ ନିଯୁକ୍ତ କରିବା କର୍ତ୍ତବ୍ୟ । କାରଣ କାର୍ଯ୍ୟା-କାର୍ଯ୍ୟ ବିବେକହୀନ ମୂର୍ଖ ଅର୍ଥାଧିକାର ପ୍ରାପ୍ତ ହେଲେ, କାମ କ୍ରୋଧ ବଶୀଭୂତ ହୋଇ ପ୍ରକୃତି ବର୍ଗଙ୍କୁ ପୀଡ଼ିତ କରେ । ନୃପତି ଉତ୍ପନ୍ନ ଦ୍ରବ୍ୟର ଷଷ୍ଠାଂଶ ରୂପକର, ଶାସ୍ତ୍ରାନୁସାରେ ଅପରାଧୀଗଣଙ୍କର ଦଣ୍ଡ ଏବଂ ପଥମଧ୍ୟରେ ବଣିକମାନଙ୍କୁ ରକ୍ଷା କରି ଯେଉଁ ବେତନ ପ୍ରାପ୍ତ ହୁଅନ୍ତି, ତଦ୍ଦ୍ୱାରା କେବଳ ଧନ ସଞ୍ଚୟ କରିବ । ୧୦ ।

ନୃପତି ଏହିପରି ଭାବରେ ଧାନ୍ୟାଦିର ଷଷ୍ଠାଂଶ ରୂପ କର ଗ୍ରହଣ କରି ରାଜ୍ୟ ରକ୍ଷା କରିବେ । ପରନ୍ତୁ ଯଦ୍ୟପି ଏତଦ୍ଦ୍ୱାରା ପ୍ରଜା-ମାନଙ୍କର ବାର୍ଷିକ ଆହାର ଯୋଗ୍ୟ ଧାନ୍ୟାଦି ଅବଶିଷ୍ଟ ନ ଥାଏ, ତାହା ହେଲେ ସେମାନଙ୍କ ଆହାରର ଉପାୟ କଳ୍ପନା କରିଦେବେ । ୧୧ । ନରନାଥ ଯଦି ସୁରକ୍ଷକ, ଦାତା, ନିତ୍ୟଧର୍ମରତ, ଅନଳସ ଏବଂ କାମ ଦ୍ୱେଷ ବିହୀନ ହୁଅନ୍ତି, ମନୁଷ୍ୟମାନେ ତାହାଙ୍କର ଅନୁରକ୍ତ ହୁଅନ୍ତି । ୧୨ ।

ହେ ଯୁଧିଷ୍ଠିର ! ତୁମ୍ଭେ କଦାପି ଲୋଭପରବଶ ହୋଇ ଅଧର୍ମା-ଚରଣ ଦ୍ୱାରା ଅର୍ଥୋପାର୍ଜନ କରିବ ନାହିଁ । କାରଣ ଯେ ଶାସ୍ତ୍ରାନୁବର୍ତ୍ତୀ ହୋଇ କାର୍ଯ୍ୟ ନ କରନ୍ତି, ତାହାଙ୍କର ଧର୍ମ ଓ ଅର୍ଥ ସମସ୍ତ ଚିରସ୍ଥାୟୀ ହୁଏ ନାହିଁ । ୧୩ । ନୃପତି କେବଳ ଅର୍ଥ ଶାସ୍ତ୍ରର ବଶୀଭୂତ ହେଲେ କଦାଚ ଧର୍ମ ଓ ଅର୍ଥ ଲାଭ କରିବାକୁ ସମର୍ଥ ହୁଅନ୍ତି ନାହିଁ । ତାହାଙ୍କର ସେହି

ଅର୍ଥ ସବୁ ଅସ୍ଥାନରେ ବିନଷ୍ଟ ହୁଏ । ୧୪ । ଭୂପତି ଯେ ମୋହବଶତଃ ଅଶାସ୍ତ୍ରୀୟ କର ଗ୍ରହଣ ପୂର୍ବକ ପ୍ରକୃତି ବୃନ୍ଦଙ୍କୁ ପୀଡ଼ିତ କରି ସ୍ୱୟଂ ନିଜର ବିନାଶ ସାଧନ କରନ୍ତି, ଏହାର ମୂଳକାରଣ ଅର୍ଥ ଅଟେ । ୧୫ ।

ଯେପରି କ୍ଷୀରାର୍ଥୀ ବ୍ୟକ୍ତି ଗାଭୀର ଉଦ୍‌ଧୂଧ ଛେଦନ କଲେ ଦୁଗ୍ଧ ଲାଭ କରିପାରେ ନାହିଁ, ସେହିପରି ଅସଦୁପାୟ ଅବଲମ୍ବନ କରି ରାଜ୍ୟକୁ ପୀଡ଼ିତ କଲେ ତାହା କଦାପି ପରିବର୍ଦ୍ଧିତ ହୁଏ ନାହିଁ । ଯେପରି ପୟସ୍ୱିନୀ ଗାଭୀକୁ ନିୟତ ସେବା କଲେ ଦୁଗ୍ଧ ଲାଭ ହୁଏ, ସେହିପରି ନୃପତି ନିଜର ଉପାୟାନୁସାରେ ରାଜ୍ୟ ପାଳନ କଲେ ସୁଖ ଲାଭ କରନ୍ତି । ଯେପରି ମାତା ଶିଶୁକୁ ସ୍ତନ୍ୟ ଦାନ କରନ୍ତି, ତଦ୍ରୂପ ବସୁମତୀ ନରପତିଙ୍କ କର୍ତ୍ତୃକ ସୁରକ୍ଷିତା ହେଲେ ଦୋଗ୍‌ଧ୍ରୀପ୍ରାୟ ସମସ୍ତଙ୍କୁ ଧାନ୍ୟହିରଣ୍ୟାଦି ପ୍ରଦାନ କରନ୍ତି । ୨୯ ।

ହେ ରାଜନ୍ ! ତୁମ୍ଭେ ଅଙ୍ଗାରକ ପରି ମୂଳୋତ୍ପାଟନକାରୀ ନ ହୋଇ ପ୍ରସୂନ ସଞ୍ଚୟକାରୀ ମାଳାକାରର ବୃତ୍ତିକୁ ଅବଲମ୍ବନ ପୂର୍ବକ ରାଜ୍ୟରକ୍ଷା କରିବ । ତାହାହେଲେ ଚିରକାଳ ବସୁନ୍ଧରାକୁ ଭୋଗ କରିବାକୁ ସମର୍ଥ ହେବ । ପରଚକ୍ର ଦ୍ୱାରା ଯଦ୍ୟପି ତୁମ୍ଭର ଧନକ୍ଷୟ ହୁଏ, ତାହାହେଲେ ସାମରୂପ ଉପାୟ ଅବଲମ୍ବନ କରି ଅବ୍ରାହ୍ମଣମାନଙ୍କର ଧନ ଗ୍ରହଣ କରିବ । ୨୧ ।

ହେ ଭାରତ ! ଉନ୍ନତ ଅବସ୍ଥା କଥା କଣ କହିବୁଁ ? କିନ୍ତୁ ଅନ୍ତ୍ୟ ଅବସ୍ଥା ଉପସ୍ଥିତ ହେଲେ ସୁଦ୍ଧା ବ୍ରାହ୍ମଣଗଣଙ୍କୁ ଧନଶାଳୀ ଦେଖି ତୁମ୍ଭର ମନକୁ ବିଚଳିତ କରିବ ନାହିଁ । ୨୨ । ତୁମ୍ଭେ ନିୟତ ହ୍ୱସଦ ବ୍ରାହ୍ମଣ ମାନଙ୍କୁ ରକ୍ଷା କରିବ ଏବଂ ନିଜର ଶକ୍ତି ଅନୁସାରେ ଯଥାଯୋଗ୍ୟ ଧନ ଦାନ କରି ସେମାନଙ୍କର ସନ୍ତୋଷ ସାଧନ କରିବ । ତାହା ହେଲେ ଦୁର୍ଜୟ ସ୍ୱର୍ଗକୁ ଲାଭ କରି ପାରିବ । ୨୩ । ହେ କୁରୁନନ୍ଦନ ! ତୁମ୍ଭେ ଏହିପରି ଧର୍ମବୃତ୍ତି ଅବଲମ୍ବନ କରି ପ୍ରଜାପାଳନ କଲେ ପରିଣାମ ଶୁଭଜନକ ପୁଣ୍ୟ ଏବଂ ନିତ୍ୟ ଯଶପ୍ରାପ୍ତ ହେବ । ୨୪ ।

ହେ ପାଣ୍ଡୁନନ୍ଦନ ଯୁଧିଷ୍ଠିର ! ତୁମ୍ଭେ ଧର୍ମ ଓ ବ୍ୟବହାର ଅନୁସାରେ ଯଥା ନିୟମରେ ପ୍ରଜାପାଳନ କର । ତାହାହେଲେ କଦାପି

ଅଧର୍ମରୂପ ବନ୍ଧନରେ ଆବଦ୍ଧ ହେବ ନାହିଁ । ୨୫ । ଯେଉଁ ସ୍ଥଳେ ଚରାଚର ଭୂତ-ଗଣଙ୍କର ରକ୍ଷା ବିଧାନ ପରମ ଧର୍ମ ଓ ପରମ ଦୟା ବୋଲି ଉକ୍ତ ହୋଇ-ଅଛି, ସେ ସ୍ଥଳେ ନୃପତି ଯେ ପ୍ରଜାମାନଙ୍କ ରକ୍ଷା କରନ୍ତି, ତାହାହିଁ ତାଙ୍କର ସର୍ବୋତ୍କୃଷ୍ଟ ଧର୍ମ ଅଟେ । ରାଜା ରାଜ୍ୟ ରକ୍ଷାରେ ନିଯୁକ୍ତ ହୋଇ ଜୀବଗଣଙ୍କ ଉପରେ ଯେଉଁ ଦୟା ପ୍ରକାଶ କରନ୍ତି, ଧର୍ମତତ୍ତ୍ୱବିତ୍ ପଣ୍ଡିତମାନେ ତାହାକୁ ତାହାଙ୍କର ପରମ ଧର୍ମ ବୋଲି କହନ୍ତି । ୨୭ । ନୃପତି ଏକ ଦିନରେ ଭୟ ହେତୁ ପ୍ରଜାବର୍ଗଙ୍କର ରକ୍ଷା ବିଧାନ ନ କରି ଯେଉଁ ପାପ ସଞ୍ଚୟ କରନ୍ତି, ସହସ୍ର ବର୍ଷ ପରେ ସେହି ପାପରୁ ମୁକ୍ତି ଲାଭ କରନ୍ତି । ୨୮ । ପରନ୍ତୁ ପ୍ରକୃତି ବୃନ୍ଦଙ୍କୁ ଧର୍ମାନୁସାରେ ଦିନେ ମାତ୍ର ରକ୍ଷା କରି ଯେଉଁ ଧର୍ମ ଉପାର୍ଜନ କରନ୍ତି, ଦଶ ସହସ୍ର ବର୍ଷ ସ୍ୱର୍ଗଧାମରେ ତାହାର ଫଳ ଭୋଗ କରନ୍ତି । ୨୯ ।

ଯୋଗୀମାନେ ପର୍ଯ୍ୟାୟ କ୍ରମରେ ଗୃହସ୍ଥ, ବ୍ରହ୍ମଚାରୀ ଓ ବାନପ୍ରସ୍ଥ-ମାନଙ୍କର ଧର୍ମ ସବୁ ଆଚରଣ କରି ଯେଉଁ ସବୁ ଲୋକଙ୍କୁ ଜୟ କରନ୍ତି, ନୃପତି ଧର୍ମାନୁସାରେ ପ୍ରଜାପାଳନ କରି କ୍ଷଣକାଳ ମଧ୍ୟରେ ତତ୍ସମସ୍ତ ଲୋକ ପ୍ରାପ୍ତ ହୁଅନ୍ତି । ୩୦ । ହେ କୁନ୍ତୀ ନନ୍ଦନ । ତୁମ୍ଭେ ଏହିପରି ଯତ୍ନ ସହକାରେ ଧର୍ମକୁ ପାଳନ କର, ତାହାହେଲେ ସେହି ପୁଣ୍ୟ ଫଳରେ ତୁମ୍ଭେ କଦାପି ଅଧର୍ମରୂପ ବନ୍ଧରେ ବନ୍ଧ ହେବ ନାହିଁ । ୩୧ । ନିଶ୍ଚୟ ଅମର ଧାମରେ ମହତୀ ସମ୍ପତ୍ତି ଲାଭ କରିବ । ରାଜା ରାଜ୍ୟ ବିହୀନ ହେଲେ ଈଦୃଶ ଧର୍ମ ସବୁ କଦାପି ଆଚରିତ ହୁଏ ନାହିଁ । ସୁତରାଂ ରାଜା କେବଳ ସେହି ସବୁ ଧର୍ମର ଫଳ ଭୋଗ କରନ୍ତି । ହେ ଯୁଧିଷ୍ଠିର । ତୁମ୍ଭେ ମଧ୍ୟ ଏହି ସୁରକ୍ଷିତ ରାଜ୍ୟକୁ ପ୍ରାପ୍ତ ହୋଇ ଧୈର୍ଯ୍ୟାବଲମ୍ବନ ପୂର୍ବକ ଧର୍ମାନୁସାରେ ପ୍ରଜାବୃନ୍ଦଙ୍କୁ ପ୍ରତିପାଳନ କର ଏବଂ ସୋମରସାଦି ଦ୍ୱାରା ଇନ୍ଦ୍ରଙ୍କର ଅଭିଳାଷକୁ ମଧ୍ୟ ପୂରଣ କରି ସୁହୃଦଗଣଙ୍କର ସନ୍ତୋଷ ସାଧନ କରିବେ । ୩୩ ।

---

# ଅଧ୍ୟାୟ—୭୨

ଭୀଷ୍ମ କହିଲେ—ହେ ମହାରାଜ ! ଯେ ସାଧୁଗଣଙ୍କୁ ରକ୍ଷା କରନ୍ତି ଏବଂ ଅସାଧୁଗଣଙ୍କୁ ରାଜ୍ୟ ମଧ୍ୟରୁ ବହିଷ୍କୃତ କରନ୍ତି ତାହାଙ୍କୁ କେବଳ ରାଜ ପୁରୋହିତ କରିବା ରାଜାଙ୍କର କର୍ତ୍ତବ୍ୟ । ଏହି ସମ୍ବନ୍ଧରେ ପୁରୁରବା ପୁନଃ ଐଲଙ୍କ ସହିତ ବାୟୁଙ୍କର ଯେଉଁ କଥୋପକଥନ ହୋଇଥିଲା, ପଣ୍ଡିତମାନେ ଏହି ପ୍ରସଙ୍ଗରେ ସେହି ପ୍ରାଚୀନ ଇତିହାସକୁ ଉଦାହରଣ ରୂପରେ ବ୍ୟବହାର କରନ୍ତି । ୨ ।

ଐଲ କହିଲେ—କାହାଠାରୁ ବ୍ରାହ୍ମଣମାନେ ଉତ୍ପନ୍ନ ହୋଇ ଅଛନ୍ତି, କ୍ଷତ୍ରିୟାଦି ଅପରବର୍ଣ୍ଣ ତ୍ରୟ ଅବା କାହାଠାରୁ ଉତ୍ପନ୍ନ ହୋଇ ଅଛନ୍ତି ଏବଂ କି କାରଣରୁ ବ୍ରାହ୍ମଣମାନେ ସର୍ବାପେକ୍ଷା ଶ୍ରେଷ୍ଠ ହୋଇ ଅଛନ୍ତି, ଆପଣ ଏହିସବୁ ଯଥାର୍ଥରେ ବର୍ଣ୍ଣନ କରନ୍ତୁ । ୩ । ମାତରିଶ୍ୱା କହିଲେ—ହେ ଭରତର୍ଷଭ ରାଜସତ୍ତମ ! ବ୍ରହ୍ମାଙ୍କର ମୁଖରୁ ବ୍ରାହ୍ମଣ, ବାହୁ ଦ୍ୱୟରୁ କ୍ଷତ୍ରିୟ ଓ ଉରୁ ଦ୍ୱୟରୁ ବୈଶ୍ୟ ଉତ୍ପନ୍ନ ହୋଇ ଅଛନ୍ତି ।୪। ଏହି ବର୍ଣ୍ଣ ତ୍ରୟର ପରିଚର୍ଯ୍ୟା ନିମିତ୍ତ ପଦ ଦ୍ୱୟରୁ ଶୂଦ୍ର ନାମକ ଚତୁର୍ଥ ବର୍ଣ୍ଣ ଉତ୍ପନ୍ନ ହୋଇଅଛି । ୫ । ବ୍ରାହ୍ମଣ ଜାତ ହେବା ମାତ୍ରକେ ଧର୍ମରୂପ କୋଷର ରକ୍ଷା ନିମିତ୍ତ ସର୍ବଭୂତଙ୍କର ଈଶ୍ୱର ହୋଇ ପୃଥିବୀରେ ଜନ୍ମ ଗ୍ରହଣ କଲେ । ତାହା ଦେଖି ପିତାମହ ପ୍ରଜାବର୍ଗଙ୍କର ରକ୍ଷା ନିମିତ୍ତ ଦ୍ୱିତୀୟ ବର୍ଣ୍ଣ କ୍ଷତ୍ରିୟକୁ ଦଣ୍ଡ ଧାରଣରେ ନିଯୁକ୍ତ କରି ପୃଥିବୀର ଶାସନ କାର୍ଯ୍ୟରେ ନିୟୋଗ କଲେ ଏବଂ ବୈଶ୍ୟ ଧନଧାନ୍ୟ ଦ୍ୱାରା ବର୍ଣ୍ଣ ତ୍ରୟର ଭରଣ ଓ ଶୂଦ୍ର ବ୍ରାହ୍ମଣାଦି ବର୍ଣ୍ଣ ତ୍ରୟର ପରିଚର୍ଯ୍ୟା କରିବେ ବୋଲି ଅନୁମତି ପ୍ରଦାନ କଲେ । ୮ ।

ଐଲ୍ୟ କହିଲେ—ହେ ବାୟୋ ! ଏହି ବସୁମତୀ ଏବଂ ଏହାର ଯାବତୀୟ ଧନ ଧର୍ମାନୁସାରେ ବ୍ରାହ୍ମଣ ଓ କ୍ଷତ୍ରିୟ ଏହି ଉଭୟଙ୍କ ମଧ୍ୟରେ କାହାର ହୋଇପାରେ ? ଆପଣ ଏହି ବିଷୟକୁ ଯଥାର୍ଥରେ କୀର୍ତ୍ତନ କରନ୍ତୁ । ୯ ।

ବାୟୁ କହିଲେ—ଧର୍ମକୁଶଳ ଲୋକମାନେ କହନ୍ତି ଯେ ଏହି ପୃଥିବୀ ଏବଂ ଏହାର ସମସ୍ତ ଧନ ଜ୍ୟେଷ୍ଠତ୍ୱ ଏବଂ ଅଭିଜାତ୍ୟ ହେତୁ ବ୍ରାହ୍ମଣ ମାନଙ୍କର ହୋଇଥାଏ । ବ୍ରାହ୍ମଣ ସର୍ବ ବର୍ଣ୍ଣର ଗୁରୁ, ଶ୍ରେଷ୍ଠ

ଓ ଜ୍ୟେଷ୍ଠ ଅଟନ୍ତି; ଅତଏବ ସେ ଯାହା ଦାନ, ଭୋଜନ ଏବଂ ପରିଧାନ କରନ୍ତି ତତ୍ସମସ୍ତ ନିଜ ଧନରେ କରିଥାନ୍ତି । ୯ ।

ଯେପରି ରମଣୀମାନେ ପତ୍ୟଭାବରେ ଦେବରକୁ ପତି କରିଥାନ୍ତି, ତଦ୍ରୂପ ବ୍ରାହ୍ମଣମାନେ ରକ୍ଷା ନ କରିବାରୁ ବସୁମତୀ ଅନନ୍ୟର୍ଥ ହେତୁ କ୍ଷତ୍ରିୟମାନଙ୍କୁ ପତି କରି ଅଛନ୍ତି । ହେ ମହାରାଜ । ଏହା ପ୍ରଥମ କଳ୍ପ ଅଟେ । କିନ୍ତୁ ଆପତ୍କାଳରେ ଏହାର ବିପରୀତ ହୋଇଥାଏ । ଯଦି ତୁମ୍ଭର ସେହି ଉତ୍କୃଷ୍ଟସ୍ଥାନ ସ୍ୱର୍ଗକୁ ଏବଂ ସ୍ୱଧର୍ମକୁ ଉପାର୍ଜ୍ଜନ କରିବାର ଇଚ୍ଛାଥାଏ, ତେବେ ତୁମ୍ଭେ ଯେ କୌଣସି ଭୂମି ଜୟକର ତତ୍ସମସ୍ତ ବୈଦିକ କ୍ରିୟାରତ ଧର୍ମଜ୍ଞ, ତପସ୍ୱୀ ସ୍ୱଧର୍ମ୍ମ ନିରତ୍ତୃପ୍ତ, ଲୋଭ ବିହୀନ ବ୍ରାହ୍ମଣଙ୍କୁ ଦାନ କରିବ । ୧୪ ।

ଯେଉଁ କୃତପ୍ରଜ୍ଞ, ବିନୀତ ଓ ସତ୍କୂଳ ପ୍ରସୂତ ବ୍ରାହ୍ମଣ ନିଜର ପରିପୂର୍ଣ୍ଣ ବୁଦ୍ଧି ପ୍ରଭାବରେ ବଚନ ବାକ୍ୟଦ୍ୱାରା ନୃପତିଙ୍କୁ ସତ୍‌ପଥକୁ ଆନୟନ କରନ୍ତି, ସେହି ରାଜପୁରୋହିତ ତାଦୃଶ ଉପଦେଶ ଶୁଶ୍ରୂଷା, ଅହଙ୍କାରଶୂନ୍ୟ ଓ କ୍ଷତ୍ରିୟ ଧର୍ମ୍ମରତ ନରପତିଙ୍କର ଆଚରିତ ଧର୍ମ୍ମ ସକଳର ଅଂଶଭାଗୀ ହୁଅନ୍ତି ଏବଂ ସେହି ପ୍ରାଜ୍ଞ ଭୂପତି ମଧ୍ୟ ପ୍ରଜାମାନଙ୍କ ଠାରୁ ନିଜର କର୍ମ୍ମାନୁରୂପ ସତ୍କାର ଓ ମହତୀ ପ୍ରତିଷ୍ଠା ଲାଭକରନ୍ତି । ଏହିପରି ପ୍ରଜାମାନେ ନୃପତିଙ୍କର ଆଶ୍ରୟ ଗ୍ରହଣ କରି ଏବଂ ତାହାଙ୍କ କର୍ତ୍ତୃକ ସୁରକ୍ଷିତ ହୋଇ ସ୍ୱଧର୍ମ୍ମରେ ଅବସ୍ଥାନ ପୂର୍ବକ ସ୍ୱଚ୍ଛନ୍ଦରେ ଓ ଅକୁତ ଭୟରେ ଯେଉଁ ସବୁ ଧର୍ମ୍ମ ଆଚରଣ କରନ୍ତି, ନୃପତି ସେହି ସବୁ ଧର୍ମ୍ମର ଚତୁର୍ଥାଂଶ ଭାଗୀ ହୁଅନ୍ତି । ଦେବତା, ମନୁଷ୍ୟ, ପିତୃଲୋକ, ଗନ୍ଧର୍ବ, ଉରଗ ଏବଂ ରାକ୍ଷସଗଣ ଯଜ୍ଞ ଉପରେ ନିର୍ଭର କରିଥାନ୍ତି; କିନ୍ତୁ ଅରାଜକ ହେଲେ ଯଜ୍ଞାଦି କର୍ମ୍ମ ସବୁ ବିଲୁପ୍ତ ହୁଏ, ଦେବତା ଓ ପିତୃଗଣ ଯଜ୍ଞାଦିରେ ଦତ୍ତ ହେଉଥିବା ଘୃତାଦି ଦ୍ୱାରା ଜୀବନ ଧାରଣ କରନ୍ତି ।୨୧।

କିନ୍ତୁ ଯଜ୍ଞାଦି ସମସ୍ତ କର୍ମ୍ମ ନୃପତିଙ୍କ ଉପରେ ନିର୍ଭର କରେ । ରାଜ ଶାସନ ଥିଲେ ପ୍ରଜାମାନେ ଆପତ କାଳରେ ଛାୟା ଓ ଜଳଦ୍ୱାରା ଶୀତଳ ବାୟୁରେ ଓ ଶୀତ ଋତୁରେ ବସ୍ତ୍ର, ଅଗ୍ନି ଓ ସୂର୍ଯ୍ୟଙ୍କର ଉତ୍ତାପଦ୍ୱାରା ସୁଖାନୁଭବ କରନ୍ତି ଏବଂ ସେମାନଙ୍କର ମନ ମଧ୍ୟ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧରେ ରମଣ କରେ । ୨୩ । ପରନ୍ତୁ ଯେତେବେଳେ ସେମାନେ ରାଜ ବିହୀନ ହେବେ, ସେତେବେଳେ ସେମାନେ ଭୟ ପ୍ରଯୁକ୍ତ କୌଣସି

ଉପାୟରେ ସୁଦ୍ଧା ତାଦୃଶ ସୁଖାନୁଭବ କରିବା ପାଇଁ ନାହିଁ । ସେହିପରି ସମୟରେ ଯେ ଅଭୟ ଦାନ କରନ୍ତି ତାହାଙ୍କର ସୁମହତ ଫଳ ହୁଏ । ସେହି ସମୟରେ ପ୍ରାଣ ପର୍ଯ୍ୟନ୍ତ ସୁଦ୍ଧା ଦାନ କରିବାକୁ ସଙ୍କୋଚିତ ହେବ ନାହିଁ । କାରଣ କୌଣସି ଦାନ ସୁଦ୍ଧା ପ୍ରାଣଦାନ ତୁଲ୍ୟ ନୁହେ । ନୃପତି ସମସ୍ତଙ୍କର ଆଧାର ଅଟନ୍ତି ଏବଂ ସେ ସମୟାନୁସାରେ ଇନ୍ଦ୍ର, ଯମ ଓ ଧର୍ମ୍ମ ଇତ୍ୟାଦି ବିବିଧ ରୂପକୁ ଧାରଣ କରନ୍ତି । ୨୬ ।

---

## ଅଧ୍ୟାୟ—୭୩

ଭୀଷ୍ମ କହିଲେ—ନୃପତି ରାଜାସନରେ ପ୍ରତିଷ୍ଠିତ ହୋଇ ଧର୍ମ୍ମ ଓ ଅର୍ଥର ଗହନ ଗତିକି ପର୍ଯ୍ୟବେକ୍ଷଣ ପୂର୍ବକ ଅବଲମ୍ବରେ ବିଦ୍ୱାନ ଓ ବହୁଶ୍ରୁତ ବ୍ରାହ୍ମଣଙ୍କୁ ପୌରହିତ୍ୟ କାର୍ଯ୍ୟରେ ନିଯୁକ୍ତ କରିବେ । ୧ । ହେ ରାଜନ୍ । ଯେଉଁମାନଙ୍କର ରାଜ ପୁରୋହିତ ଧର୍ମ୍ମାତ୍ମା ଓ ମନ୍ତ୍ରବିତ୍ ଏବଂ ରାଜା ମଧ୍ୟ ତାଦୃଶ ଗୁଣ ଯୁକ୍ତ ସେହି ପ୍ରଜାମାନେ ସର୍ବତୋଭାବରେ ମଙ୍ଗଳ ଲାଭ କରନ୍ତି । ରାଜା ଏବଂ ରାଜପୁରୋହିତ ପରସ୍ପର ଅନୁବର୍ତ୍ତୀ ଓ ସମଚେତା ହୋଇ ସୌହୃଦ୍ୟ ଅବଲମ୍ବନ ପୂର୍ବକ ତପସ୍ୱୀମାନଙ୍କ ପ୍ରାୟ ଧର୍ମ୍ମରତ ଓ ଶ୍ରଦ୍ଧାବାନ୍ ହେଲେ ଦେବତା, ପିତୃଲୋକ, ପୁତ୍ର ଓ ପ୍ରଜାମାନଙ୍କର ଉନ୍ନତି ସାଧନ କରନ୍ତି । ପ୍ରଜାଗଣ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ସମ୍ମାନ କଲେ ସୁଖଲାଭ କରନ୍ତି । ୪ । କିନ୍ତୁ ସେମାନଙ୍କର ଅବମାନନା କଲେ ବିନଷ୍ଟ ହୁଅନ୍ତି । କାରଣ ପଣ୍ଡିତଗଣ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କୁ ସମସ୍ତ ବର୍ଣ୍ଣର ମୂଳ ବୋଲି କହନ୍ତି । ୫ ।

ହେ ଯୁଧିଷ୍ଠିର ! ଆର୍ଯ୍ୟଗଣ ଏହି ପ୍ରସ୍ତାବରେ ଐଲ ଓ କଶ୍ୟପଙ୍କର ସମ୍ବାଦ ରୂପ ଯେଉଁ ପ୍ରାଚୀନ ଇତିହାସକୁ ଉଦାହରଣ ରୂପରେ ବ୍ୟବହାର କରନ୍ତି, ତାହା ଶ୍ରବଣ କରନ୍ତୁ । ଐଲ କହିଲେ—ବ୍ରାହ୍ମଣ ଓ କ୍ଷତ୍ରିୟ ଏହି ଉଭୟ ତେଜରେ ରାଜା ପରିରକ୍ଷିତ ହୋଇଥାଏ; କିନ୍ତୁ ଏହି ଉଭୟର ଅନ୍ୟତର କେହି କାହାକୁ ପରିତ୍ୟାଗ କଲେ ବର୍ଣ୍ଣସବୁ କାହାର ଆଶ୍ରୟ ଗ୍ରହଣ କରନ୍ତି ଏବଂ କାହାଦ୍ୱାରା ବା ସେମାନେ ପରିରକ୍ଷିତ ହୁଅନ୍ତି । ୭ ।

କଶ୍ୟପ କହିଲେ—ବ୍ରାହ୍ମଣ କ୍ଷତ୍ରିୟଙ୍କୁ ପରିତ୍ୟାଗ କଲେ ତାହାଙ୍କର ସେହି ରାଜ୍ୟ ଉଚ୍ଛନ୍ନ ହୁଏ । ଦସ୍ୟୁଗଣ ରାଜ୍ୟ ମଧ୍ୟରେ ଉପଦ୍ରବ କରନ୍ତି ଏବଂ ପଣ୍ଡିତମାନେ ତାଦୃଶ କ୍ଷତ୍ରିୟଙ୍କୁ ମ୍ଳେଚ୍ଛ ଜାତି ବୋଲି ଅନୁମାନ କରନ୍ତି । ୮ । କ୍ଷତ୍ରିୟମାନେ ଯଦି ବ୍ରାହ୍ମଣମାନଙ୍କୁ ପରିତ୍ୟାଗ କରନ୍ତି, ତାହାହେଲେ ସେମାନଙ୍କର ବୃଷଗଣ ବର୍ଦ୍ଧିତ, ଗର୍ଗର ସବୁ ମଥିତ ଓ ନିତ୍ୟକର୍ମ ସବୁ ଆଚରିତ ହୁଏ ନାହିଁ ଏବଂ ସେମାନଙ୍କର ପୁତ୍ରମାନେ ମଧ୍ୟ ଯଥାବତ୍ ରକ୍ଷିତ ହୋଇ ବେଦାଧ୍ୟୟନ କରନ୍ତି ନାହିଁ । ୯ ।

କ୍ଷତ୍ରିୟମାନେ ଯଦି ବ୍ରାହ୍ମଣମାନଙ୍କୁ ପରିତ୍ୟାଗ କରନ୍ତି, ତାହାହେଲେ ସେମାନଙ୍କର ଗୃହଜାତ ଅର୍ଥସବୁ କଦାପି ପରିବର୍ଦ୍ଧିତ ହୁଏନାହିଁ । ସେମାନଙ୍କର ପୁତ୍ରମାନେ ଯଥାବତ୍ ବେଦାଧ୍ୟୟନ କରି ଯଜ୍ଞାଦି କ୍ରିୟାସବୁ ଆଚରଣ କରନ୍ତି ନାହିଁ । କିନ୍ତୁ ସଙ୍କର ଜାତି ଓ ଦସ୍ୟୁଗଣଙ୍କ ପ୍ରାୟ ବୃତ୍ତି ଅବଲମ୍ବନ କରନ୍ତି । କ୍ଷତ୍ରିୟଗଣ ବ୍ରାହ୍ମଣଙ୍କର ଓ ବ୍ରାହ୍ମଣଗଣ କ୍ଷତ୍ରିୟମାନଙ୍କର ଆଶ୍ରୟ ଅଟନ୍ତି । ସୁତରାଂ ସେମାନେ ଉଭୟରେ ସଂଯୁକ୍ତ ହୋଇ ପରସ୍ପରଙ୍କୁ ରକ୍ଷା କରିବାକୁ ସମର୍ଥ ହୁଅନ୍ତି । ୧୧ । ଏମାନେ ଉଭୟ ଉଭୟ ପରସ୍ପରକୁ ରକ୍ଷାକରି ମହତୀ ପ୍ରତିଷ୍ଠା ଲାଭ କରନ୍ତି ପରନ୍ତୁ ଯଦି କୌଣସି ପ୍ରକାରେ ସେମାନଙ୍କର ସେହି ପୁରାତନ ସନ୍ଧି ଭଙ୍ଗ ହୁଏ, ତାହାହେଲେ ଉଭୟ ବିନଷ୍ଟ ହୁଅନ୍ତି ଏବଂ ସାରାଜଗତ୍ ମୋହଗ୍ରସ୍ତ ଏବଂ କିଂକର୍ତ୍ତବ୍ୟବିମୂଢ଼ ହୋଇଯାନ୍ତି । ଯେପରି ଅଗାଧ ଜଳ ମଧ୍ୟରେ ବିପନ୍ନ ନୌକା କୌଣସି ପ୍ରକାରରେ ଅପର ତୀରକୁ ପ୍ରାପ୍ତ ହୁଏନାହିଁ, ସେହିପରି ବ୍ରହ୍ମ କ୍ଷତ୍ରିୟ ବିୟୋଗରେ ସେମାନେ ମଧ୍ୟ ବିଷୟରେ ପାରଦର୍ଶୀ ହୋଇ ପାରନ୍ତି ନାହିଁ । ବର୍ଣ୍ଣ ବିଗ୍ଭର ବିଲୁପ୍ତ ହୁଏ ଏବଂ ପ୍ରଜାମାନେ ସମସ୍ତେ ବିନାଶ ପ୍ରାପ୍ତ ହୁଅନ୍ତି । ୧୩ । ବ୍ରହ୍ମ ରୂପ ବୃକ୍ଷ ଯଥାବତ୍ ରକ୍ଷିତ ହେଲେ ସୁଖ ଓ ସୁବର୍ଣ୍ଣମୟ ଫଳ ବର୍ଷଣ କରେ କିନ୍ତୁ ତାହାକୁ ରକ୍ଷା ନ କଲେ ଦୁଃଖ ଏବଂ ନରକ ରୂପ ଫଳ ଉତ୍ପନ୍ନ ହୁଏ । ୧୪ ।

ଯେତେବେଳେ ବ୍ରହ୍ମଚାରୀ ବ୍ରାହ୍ମଣ ଦସ୍ୟୁଗଣଙ୍କ କର୍ତ୍ତୃକ ଉତ୍ପୀଡ଼ିତ ହୋଇ ସ୍ୱୀୟ ଅଧୀତ ଶାଖାକୁ ପରିତ୍ୟାଗ କରନ୍ତି ଏବଂ ବ୍ରାହ୍ମଣଗଣ ସ୍ୱୀୟ ଅଧ୍ୟେତବ୍ୟ ବେଦର ଆଶ୍ରୟ ପରିତ୍ୟାଗ କରନ୍ତି । ତତ୍କାଳରେ ଦେବରାଜ ଅଳ୍ପବାରି ବର୍ଷଣ କରନ୍ତି ଏବଂ ସେଠାରେ ସର୍ବଦା ବହୁବିଧ ଉତ୍ପାତ ସବୁ

ଉପସ୍ଥିତ ହୁଏ । ୧୫ । ଯେତେବେଳେ କୌଣସି ପାପାଶୟ ବ୍ୟକ୍ତି ସ୍ତ୍ରୀ କିମ୍ବା ବ୍ରାହ୍ମଣ ହତ୍ୟା କରି ସୁଦ୍ଧା ସଭା ମଧ୍ୟରେ ପ୍ରତିଷ୍ଠା ଲାଭ କରେ ଏବଂ ରାଜ ସନ୍ନିଧାନରେ ମଧ୍ୟ ଭୀତ ହୁଏ ନାହିଁ, ସେତେବେଳେ ତାହାଙ୍କ ଲୋକଙ୍କଠାରୁ ନୃପତିଙ୍କର ସୁମହତ ଭୟ ଉପସ୍ଥିତ ହୁଏ । ୧୬ ।

ହେ ଐଳ ! ପାପାଚାରୀମାନେ ପାପ କର୍ମ ଦ୍ୱାରା କଳିର ପ୍ରାଦୁର୍ଭାବକୁ ବୃଦ୍ଧି କରନ୍ତି । ନୃପତି ମଧ୍ୟ ନିରନ୍ତରଶଃ ରୁଦ୍ର ଅର୍ଥାତ ହିଂସ୍ର ହୋଇ ସାଧୁ ଓ ଅସାଧୁଗଣଙ୍କୁ ବିନଷ୍ଟ କରନ୍ତି । ୧୭ । ଐଳ ବୋଇଲେ ହେ କଶ୍ୟପ ! ଜୀବଗଣ ଯେଉଁ ଜୀବଦ୍ୱାରା ନିହତ ହୁଅନ୍ତି, ସେହି ରୁଦ୍ର କି ପ୍ରକାର ଓ କିପରି ଉତ୍ପନ୍ନ ହୁଏ ଏବଂ ନୃପତି ଅବା କି ନିମିତ୍ତ ରୁଦ୍ର ରୂପ ହୁଅନ୍ତି, ଆପଣ ଏହିତ ସମସ୍ତ ଆମ୍ଭଠାରେ ବର୍ଣ୍ଣନ କରନ୍ତୁ । ୧୮ ।

କଶ୍ୟପ ବୋଇଲେ ଆକାଶୋତ୍‌ଥିତ ଉତ୍ପାତ ବାତ ଆକାଶସ୍ଥ ମେଘ ଦେବତାଙ୍କୁ ଇତସ୍ତତଃ ସଞ୍ଚାଳିତ କଲେ, ତହିଁରୁ ବିଦ୍ୟୁତ ବଜ୍ର ଓ ଅନେକ ପ୍ରଭୃତି ଉତ୍ପାତ ସବୁ ଆବିର୍ଭୂତ ହୁଏ, ତଦ୍ରୂପ ମନୁଜଗଣଙ୍କର ହୃଦୟ ମଧ୍ୟରସ୍ଥ ଆତ୍ମା କେବଳ ରୁଦ୍ର କାରଣ । ସେ କାମ କ୍ରୋଧାଦିରେ ଗ୍ରସ୍ତ ହୋଇ ସ୍ୱକୀୟ ଏବଂ ଅପର ଦେହକୁ ନଷ୍ଟ କରେ । ଅତଏବ ବିବେକୀ-ମାନେ ଉତ୍ପାତ ବାୟୁ ସଦୃଶ ରୁଦ୍ର ଏବଂ ଜୀମୁତ ଦେବ ସଦୃଶ ଆତ୍ମା ବୋଲି କହନ୍ତି । ୧୯ ।

ଐଳ୍ୟ କହିଲେ—ବାୟୁ ସହିତ ଏହି ରୁଦ୍ରରୂପୀ ଆତ୍ମାର ଉପମା ହୋଇପାରେ ନାହିଁ କାରଣ ଧର୍ମୀରଣ ବହିଃସ୍ଥ ପଦାର୍ଥମାନଙ୍କୁ ବେଷ୍ଟନ କରେ । ପର୍ଜନ୍ୟ ବାରି ବର୍ଷଣ କରେ । ସୁତରାଂ ତା ସହିତ ମଧ୍ୟ ତୁଳନା ହୋଇ ପାରେ ନାହିଁ । ଏବଂ ଯେତେବେଳେ ମନୁଜଗଣଙ୍କ ମଧ୍ୟରେ ନିୟତ କାମ ଦ୍ୱେଷାଧୀନ, ହତ ଓ ମୋହିତ ହେବାର ଦେଖାଯାଉ ଅଛୁ; ତେତେବେଳେ ଏହା ଦେବ ରୂପରେ ମଧ୍ୟ ଉପମିତ ହୋଇ ନ ପାରେ ।୨୦। ଏବଂ ଯେପରି ଲୌହ ଦହନ କରୁଅଛୁ, କାଷ୍ଠମାନେ ପାକ କରୁ ଅଛନ୍ତି, ସେହିପରି ଅହଙ୍କାର କୃତ କର୍ମ ଆତ୍ମାରେ ଉପଚରିତ ହୁଏ, ଆତ୍ମା ଜଗତ ସହିତ ସଙ୍ଗତ ଥିଲେ ସୁଦ୍ଧା ଜଳଚନ୍ଦ୍ର ନ୍ୟାୟରେ ମୋହବଶତଃ ପୁଣ୍ୟ ପାପର ଭାଗୀ ହୁଅନ୍ତି ବାସ୍ତବ ଆତ୍ମା ଅଭାଗୀ । ୨୧ ।

କଶ୍ୟପ କହିଲେ—ଯେପରି ହୁତାଶନ ଏକ ଗୃହରେ ପ୍ରଦୀପ୍ତ ହୋଇ ସମଗ୍ର ଗ୍ରାମ କିମ୍ବା ଚତ୍ୱରକୁ ଭସ୍ମୀଭୂତ କରନ୍ତି, ସେହିପରି ଏହି

ଇନ୍ଦ୍ରଦେବ ମଧ୍ୟ ସମସ୍ତଙ୍କୁ ବିମୋହିତ କରନ୍ତି । ସୁତରାଂ ସମସ୍ତ ପ୍ରାଣୀ ମାତ୍ର ଜନକ ଶଙ୍କର କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି । ଅର୍ଥାତ୍ ଯେପରି କେବଳ କାଷ୍ଠର ଦାହକତ୍ୱ ଶକ୍ତି ନାହିଁ କିମ୍ବା କେବଳ ବହ୍ନିର ମଧ୍ୟ ଉକ୍ତ ଶକ୍ତି ନାହିଁ, କିନ୍ତୁ ଉଭୟର ମିଳନରେ ଉକ୍ତଶକ୍ତି ଉତ୍ପନ୍ନ ହୁଏ, ବାସ୍ତବରେ ବହ୍ନିର ଉପାଧି ବେଶ ଦ୍ୱାରା ଦାହକତ୍ୱ ଉତ୍ପନ୍ନ ହୁଏ, ସେହିପରି ଅହଙ୍କାର ରୂପ ବହ୍ନି ଅଥବା କାମ କ୍ରୋଧାଦି ଦ୍ୱାରା ଉଦ୍ଦୀପିତ ଆତ୍ମାର କର୍ତ୍ତୃତ୍ୱ ଉତ୍ପନ୍ନ ହୁଏ ।

ଐଳ କହିଲେ—ଯେଉଁସ୍ଥଳେ ପାପାଚାରୀମାନେ ବିଶେଷ ରୂପରେ ପାପ କର୍ମ କଲେ ସୁଦ୍ଧା ଦଣ୍ଡ ନୀତି ପ୍ରାଣୀ ଓ ପାପରୂପ ଉଭୟବିଧ କର୍ମ-କାରୀ ପ୍ରତି ପ୍ରଯୁକ୍ତ ହୁଏ, ସେ ସ୍ଥଳେ ଲୋକେ କି ନିମିତ୍ତ ସତ୍କର୍ମର ଅନୁଷ୍ଠାନ କରିବେ ଏବଂ ଅସତ୍ କର୍ମ କରିବେ ନାହିଁ ? ଅର୍ଥାତ୍ ବାସ୍ତବରେ ଆତ୍ମା ପାପ ପୁଣ୍ୟ ରହିତ କୌଣସି ବିଶେଷ ପ୍ରଯୁକ୍ତ ପାପ ପୁଣ୍ୟର ସଙ୍ଗୀ ହୁଅନ୍ତି, ଏହିରୂପ ଆପଣ ସିଦ୍ଧାନ୍ତ କଲେ ତାହାହେଲେ ଶାସ୍ତ୍ର ଚଳିହିତ ବିଧି ନିଷେଧ ବାକ୍ୟ ସବୁ ବିଫଳ କାରଣ ଆତ୍ମା ବାସ୍ତବରେ ପାପ ପୁଣ୍ୟର ଭାଗୀ ନୁହନ୍ତି । କଶ୍ୟପ କହିଲେ—ପାପାଚାରୀଗଣଙ୍କ ସହିତ କୌଣସି ପ୍ରକାର ସମ୍ବନ୍ଧ ନଥିଲେ ମନୁଷ୍ୟ ନିଷ୍ପାପ ହୁଏ । ସୁତରାଂ ଦଣ୍ଡନୀତିର ଅଧୀନ ହେବାକୁ ହୁଏ ନାହିଁ । ପରନ୍ତୁ ଯେପରି ଶୁଷ୍କ କାଷ୍ଠ ଯୋଗରେ ସରସ କାଷ୍ଠ ମଧ୍ୟ ଭସ୍ମୀଭୂତ ହୁଏ, ତଦ୍ରୂପ ପାପାଚାରୀ ଗଣଙ୍କର ସହବାସ ବଶତଃ ମିଶ୍ରଭାବ ହେଲେ କେବଳ ପାପ କର୍ମକାରୀ ସଦୃଶ ଦଣ୍ଡାର୍ହ ହେବାକୁ ହୁଏ, ଅତଏବ ପାପାଚାରୀଗଣଙ୍କ ସହିତ ସର୍ବ ପ୍ରକାର ସଂସ୍ରବ ପରିତ୍ୟାଗ କରିବା କର୍ତ୍ତବ୍ୟ । ୨୩ ।

ଐଳ କହିଲେ—କି କାରଣରୁ ବସୁନ୍ଧରା ସାଧୁ ଓ ଅସାଧୁ ଉଭୟ ବିଧ ଲୋକମାନଙ୍କୁ ଧାରଣ କରି ଅଛନ୍ତି ? କି ହେତୁରୁ ଦିବାକର ଉଭୟଙ୍କୁ ଉତ୍ତାପ ପ୍ରଦାନ କରନ୍ତି ? କି ନିମିତ୍ତ ସମୀରଣ ସମଭାବରେ ଉଭୟଙ୍କ ଠାରେ ବାହିତ ହୁଅନ୍ତି ? ଏବଂ କି ହେତୁରୁ ଅବା ପାନୀୟ ସାଧୁ ଓ ଅସାଧୁ ଉଭୟଙ୍କୁ ପବିତ୍ର କରନ୍ତି ? ୨୪ ।

କଶ୍ୟପ କହିଲେ—ହେ ରାଜପୁତ୍ର । ଏହି ସଂସାରରେ ଏହିପରି ହୋଇଥାଏ; କିନ୍ତୁ ପରଲୋକରେ ଏହିପରି ହୁଏ ନାହିଁ । ମନୁଷ୍ୟମାନେ

ଯେଉଁ ପୁଣ୍ୟ ସଞ୍ଚୟ କିମ୍ବା ପାପାଚରଣ କରନ୍ତି, ପରଲୋକକୁ ଗମନ କରି ତାର ଇତର ବିଶେଷ ଦେଖି ପାରନ୍ତି । ଯେଉଁମାନେ ସଂସାରରେ ପୁଣ୍ୟ କର୍ମ କରନ୍ତି, ସେହି ବ୍ରହ୍ମଚାରୀଗଣ ପରଲୋକରେ ମଧୁପାନ, ଘୃତାର୍ଚ୍ଚି. ସୁବର୍ଣ୍ଣ ସଦୃଶ ଜ୍ୟୋତିବିଶିଷ୍ଟ ଏବଂ ଅମୃତର ନାଭି ସ୍ୱରୂପ ପରମରମଣୀୟ ସ୍ଥାନରେ ବସତି ଲାଭ କରି ଦୁଃଖ ଓ ଜରାମରଣ ବିହୀନ ହୋଇ ନାନା ପ୍ରକାର ସୁଖ ଲାଭ କରନ୍ତି । ୨୬ । ପରନ୍ତୁ ଯେଉଁଠାରେ ପାପାଚାରୀଗଣଙ୍କ ନିମିତ୍ତ ଯେଉଁ ସ୍ଥାନ ନିର୍ଦ୍ଦିଷ୍ଟ ଅଛି, ସେହି ନରକ ନିୟତ ଦୁଃଖ ପୂର୍ଣ୍ଣ. ଶୋକଭୂୟିଷ୍ଠ ଏବଂ ଦୁଷ୍ପ୍ରକାଶ ଅଟେ । ନିନ୍ଦାସ୍ପଦ ପାପକର୍ମୀମାନେ ସେଠାକୁ ଗମନ କରି ବହୁ କାଳ ସନ୍ତାପିତ ହୋଇ ନିଜର କୁକର୍ମ ନିମିତ୍ତ ଶୋକ ପ୍ରକାଶ କରନ୍ତି । ୨୭ ।

ଏହି ପ୍ରକାରେ ବ୍ରାହ୍ମଣ ଓ କ୍ଷତ୍ରିୟଗଣଙ୍କ ମଧ୍ୟରେ ଭେଦ ଉପସ୍ଥିତ ହେଲେ ପ୍ରଜାଗଣ ଦୁଃସହ ଦୁଃଖକୁ ପ୍ରାପ୍ତ ହୁଅନ୍ତି, ସୁତରାଂ ଭୂପତିଙ୍କର ଏହି ସମସ୍ତ ଅବଗତ ହୋଇ ବହୁ ବିଦ୍ୟା ବିଶାରଦ ବ୍ରାହ୍ମଣଙ୍କୁ ପୌରୋହିତ କାର୍ଯ୍ୟରେ ନିଯୁକ୍ତ କରିବା କର୍ତ୍ତବ୍ୟ । ୨୮ । ନୃପତି ଅଗ୍ରେ ପୁରୋହିତଙ୍କୁ ଅଭିଷିକ୍ତ କରି ପଶ୍ଚାତ୍ ନିଜକୁ ରାଜ୍ୟ ମଧ୍ୟରେ ଅଭିଷିକ୍ତ କରିବେ, ତାହା-ହେଲେ ତାହାଙ୍କର ଧର୍ମ ସୁରକ୍ଷିତ ହେବ । କାରଣ ବ୍ରହ୍ମବିତ୍ ଗଣ କହନ୍ତି ଯେ ବ୍ରାହ୍ମଣମାନେ ପ୍ରଥମେ ସୃଷ୍ଟ ହୋଇ ଅଛନ୍ତି ଏବଂ ସେମାନେ କେବଳ ସମସ୍ତ ବସ୍ତୁର ଅଗ୍ରଭୁକ୍ ବୋଲି ଅଭିହିତ ହୁଅନ୍ତି । ପ୍ରସ୍ତାଗ୍ରଭୁକ୍ ବ୍ରାହ୍ମଣମାନେ ଯେ ଜ୍ୟେଷ୍ଠତା ଏବଂ ଅଭିଜାତ୍ୟ ହେତୁ କ୍ଷତ୍ରିୟଗଣଙ୍କର ମାନ୍ୟ ଓ ପୂଜ୍ୟ ଅଟନ୍ତି, ତଦ୍‌ବିଷୟରେ ତୁମ୍ଭଙ୍କୁ ପୂର୍ବେ ଉତ୍ତର ଦେଇ ଅଛୁ । ୩୦ । ବଳବାନ ନରପତିଙ୍କର ମଧ୍ୟ ବ୍ରାହ୍ମଣଙ୍କୁ ସର୍ବ ପ୍ରକାର ଶ୍ରେଷ୍ଠ ଓ ବିଶିଷ୍ଟ ବସ୍ତୁକୁ ପ୍ରଦାନ କରିବା କର୍ତ୍ତବ୍ୟ । ହେ ଯୁଧିଷ୍ଠିର । କ୍ଷତ୍ରିୟଗଣ ବ୍ରହ୍ମତେଜ ଦ୍ୱାରା ରକ୍ଷିତ ବ୍ରାହ୍ମଣମାନଙ୍କୁ ରକ୍ଷା କରନ୍ତି, ଅତଏବ ବ୍ରାହ୍ମଣ ଗଣଙ୍କୁ ବିଶେଷ ରୂପରେ ପୂଜା କରିବା ଭୂପତିଙ୍କର କର୍ତ୍ତବ୍ୟ । ୩୧ ।

———

## ଅଧ୍ୟାୟ—୭୪

ଭୀଷ୍ମ କହିଲେ—ରାଜ୍ୟର ମଙ୍ଗଳ ସମୂହ ଭୂପତିଙ୍କର ଆୟତ୍ତ, କିନ୍ତୁ ଭୂପତିଙ୍କର ମଙ୍ଗଳ ସମୂହ ପୁରୋହିତଙ୍କର ଆୟତ୍ତ । ୧ । ଯେଉଁ ରାଜ୍ୟରେ ପୁରୋହିତ ବ୍ରହ୍ମତେଜ ଦ୍ୱାରା ପ୍ରଜାବର୍ଗଙ୍କର ଅଦୃଷ୍ଟ ଭୟ ନିବାରଣ କରନ୍ତି ଏବଂ ରାଜା ବାହୁବଳ ଦ୍ୱାରା ଦୃଷ୍ଟଭୟ ନିବାରଣ କରନ୍ତି, ସେହି ରାଜ୍ୟ ସୁଖ ଲାଭ କରେ । ୨ । ଏହି ବିଷୟରେ କୁବେରଙ୍କ ସହିତ ଭୂପତି ମୁଚୁକୁନ୍ଦଙ୍କର ଯେଉଁ କଥୋପକଥନ ହୋଇଥିଲା, ପଣ୍ଡିତଗଣ ଏହି ପ୍ରସ୍ତାବରେ ସେହି ପ୍ରାଚୀନ ଇତିହାସକୁ ଉଦାହରଣ ଦିଅନ୍ତି । ୩ । ପୃଥିବୀ ପତି ମୁଚୁକୁନ୍ଦ ସମଗ୍ର ପୃଥିବୀକୁ ଜୟ କରି ନିଜର ବଳକୁ ଅବଗତ ହେବା ନିମିତ୍ତ ଅଳକାନାଥ କୁବେରଙ୍କ ନିକଟକୁ ଗମନ କଲେ । ୪ । ତାହା ଦେଖି ଯକ୍ଷରାଜ ବୈଶ୍ରବଣ ରାକ୍ଷସଗଣଙ୍କୁ ଆଦେଶ କରିବାରୁ ନୈର୍ଋତଗଣ ମୁଚୁକୁନ୍ଦଙ୍କର ସେନାମାନଙ୍କୁ ମର୍ଦ୍ଦନ କଲେ । ୫ ।

ହେ ଅରିନ୍ଦମ ! ନରନାଥ ମୁଚୁକୁନ୍ଦ ସ୍ୱକୀୟ ସୈନ୍ୟଗଣଙ୍କୁ ହନ୍ୟମାନ ଦେଖି ବଶିଷ୍ଠ ନ ପୁରୋହିତଙ୍କର ନିନ୍ଦା କରିବାରେ ପ୍ରବୃତ୍ତ ହେଲେ । ୬ । ତାହା ଶ୍ରବଣ କରି ଧର୍ମବିତ୍‌ମାନଙ୍କର ଅଗ୍ରଗଣ୍ୟ ବଶିଷ୍ଠ ଉଗ୍ର ତପସ୍ୟା ଦ୍ୱାରା ରାକ୍ଷସ ଗଣଙ୍କର ବଧ ସାଧନ କଲେ ଏବଂ ତଦ୍ୱାରା ମୁଚୁକୁନ୍ଦଙ୍କର ଗତିକୁ ମଧ୍ୟ ଅବଗତ ହେଲେ । ତଦନନ୍ତର ରାଜା ବୈଶ୍ରବଣ ସ୍ୱକୀୟ ସୈନ୍ୟଗଣଙ୍କୁ ବଧ୍ୟମାନ ହେବାର ଦେଖି ମୁଚୁକୁନ୍ଦଙ୍କର ସମ୍ମୁଖବର୍ତ୍ତୀ ହେଲେ ଓ କହିଲେ । ୮ । ଧନଦ କହିଲେ—ପୂର୍ବେ ଅନେକ ନରପତି ପୁରୋହିତଙ୍କ ବଳରେ ତୁମ୍ଭ ଅପେକ୍ଷା ଅଧିକ ବଳଶାଳୀ ହୋଇଥିଲେ; କିନ୍ତୁ ତୁମ୍ଭେ ଯେଉଁ ବୃତ୍ତି ଅବଲମ୍ବନ କରିଅଛ, ତାହାକୁ ସୁଦ୍ଧା ଏହିପରି ବୃତ୍ତି ଅବଲମ୍ବନ କରିବାର ଦେଖି ନାହିଁ । ୯ । ସେହି ଭୂପତିମାନେ କୃତାସ୍ତ୍ର ଏବଂ ବଳବାନ ହୋଇ ସୁଦ୍ଧା ଆମ୍ଭଠାକୁ ଆଗମନ ପୂର୍ବକ ସୁଖ ଦୁଃଖର ଅଧିପତି ବୋଲି ଆମ୍ଭଙ୍କୁ ଉପାସନା କରୁଥିଲେ । ୧୦ ତୁମ୍ଭେ କି ନିମନ୍ତେ ବ୍ରାହ୍ମଣଙ୍କ ବଳରେ ଗର୍ବିତ ହୋଇ ନୀତି ମାର୍ଗକୁ ଅତିକ୍ରମ କରୁଅଛ ? ଯଦି ତୁମ୍ଭର ବାହୁବୀର୍ଯ୍ୟ ଥାଏ, ତେବେ ତାହା ଦେଖାଅ । ୧୧ । ତଦନନ୍ତର ମୁଚୁକୁନ୍ଦ କ୍ରୁଦ୍ଧ ହୋଇ କୋଧବିହୀନ ଅସମ୍ଭ୍ରାନ୍ତ ଧନେଶ୍ୱରଙ୍କୁ ଏହି ନୀତିସଙ୍ଗତ ବାକ୍ୟ ଦ୍ୱାରା ପ୍ରତ୍ୟୁତ୍ତର ପ୍ରଦାନ କଲେ । ୧୨ ।

ବ୍ରହ୍ମ ଓ କ୍ଷତ୍ର ଏ ଦୁହେଁ ପ୍ରଜାପତିଙ୍କ କର୍ତ୍ତୃକ ଏକ ଯୋନି ରୂପରେ ସୃଷ୍ଟି ହୋଇ ଅଛନ୍ତି । ସୁତରାଂ ସେମାନଙ୍କର ବଳ ବିଧାନ ପରସ୍ପର ପୃଥକ୍‌ ବିଧ ହେଲେ ସେମାନେ କଦାଚ୍‌ ଲୋକମାନଙ୍କୁ ପ୍ରତିପାଳନ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୧୩ । ବ୍ରାହ୍ମଣମାନଙ୍କ ଠାରେ ଯେଉଁ ତପସ୍ୟା ଓ ମନ୍ତ୍ରବଳ ଏବଂ କ୍ଷତ୍ରିୟ ଶରୀରରେ ଯେଉଁ ଅସ୍ତ୍ର ଓ ବାହୁବଳ ସର୍ବଦା ସୁପ୍ରତିଷ୍ଠିତ ହୋଇଅଛି, ଏହି ଉଭୟ ବିଶିଷ୍ଟ ହୋଇ ପ୍ରଜାପାଳନ କରନ୍ତି । ହେ ଅଳକା ନାଥ ! ଆମ୍ଭେ ଏହି ନୀତି ଅନୁସାରେ କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛୁଁ । ତଥାପି ତୁମ୍ଭେ କି ନିମିତ୍ତ ଆମ୍ଭଙ୍କୁ ନିନ୍ଦା କରୁଅଛ ? ତଦନନ୍ତର ବିଶ୍ରବାନନ୍ଦନ ପୁରୋହିତ ସହାୟ ନୃପତି ମୁଚୁକୁନ୍ଦଙ୍କୁ କହିଲେ ହେ ପାର୍ଥିବ ! ତୁମ୍ଭେ ନିଶ୍ଚୟ ଜାଣିବ ଯେ ଆମ୍ଭେ ଈଶ୍ୱରଙ୍କ କର୍ତ୍ତୃକ ଅନୁଜ୍ଞାତ ନ ହେଲେ କାହାକୁ ସୁଦ୍ଧା ରାଜ୍ୟ ପ୍ରଦାନ କରୁନାହୁଁ ଏବଂ ଈଶ୍ୱରଙ୍କର ଅନୁମତି ନ ହେଲେ କାହାର ରାଜ୍ୟ ହରଣ କରୁନାହୁଁ ; ଅତଏବ ଆମ୍ଭେ ତୁମ୍ଭଙ୍କୁ ରାଜ୍ୟ ପ୍ରଦାନ କରିଅଛୁଁ, ତୁମ୍ଭେ ସମଗ୍ର ପୃଥିବୀକୁ ଶାସନ କର । ମହୀପତି ମୁଚୁକୁନ୍ଦ ଏହିପରି ଉକ୍ତ ହୋଇ ନିମ୍ନଲିଖିତ ପ୍ରତ୍ୟୁତ୍ତର ପ୍ରଦାନ କଲେ । ୧୭ ।

ମୁଚୁକୁନ୍ଦ କହିଲେ—ହେ ରାଜନ ! ଆମ୍ଭେ ଆପଣଙ୍କର ଦତ୍ତ-ରାଜ୍ୟକୁ ଭୋଗ କରିବାକୁ ଇଚ୍ଛା କରୁନାହୁଁ । ନିଜର ବାହୁବୀର୍ଯ୍ୟ ଦ୍ୱାରା ଯେଉଁ ରାଜ୍ୟକୁ ଉପାର୍ଜନ କରିଅଛୁଁ ତାହାକୁ କେବଳ ଭୋଗ କରିବୁଁ । ୧୮ । ଭୀଷ୍ମ କହିଲେ—ତଦନନ୍ତର ରାଜା ବୈଶ୍ରବଣ ମୁଚୁକୁନ୍ଦଙ୍କୁ ଅସମ୍ଭ୍ରାନ୍ତ ଭାବରେ କ୍ଷାତ୍ର ଧର୍ମରେ ଅବସ୍ଥିତ ଦେଖି ନିତାନ୍ତ ବିସ୍ମିତ ହେଲେ । ୧୯ । ଅନନ୍ତର ମହୀପତି ମୁଚୁକୁନ୍ଦ ସର୍ବୋତ ଭାବରେ କ୍ଷାତ୍ର ଧର୍ମର ଅନୁବର୍ତ୍ତୀ ହୋଇ ସ୍ୱୀୟ ବାହୁବୀର୍ଯ୍ୟାର୍ଜିତ ବସୁନ୍ଧରାକୁ ଶାସନ କଲେ । ୨୦ । ହେ ଯୁଧିଷ୍ଠିର ! ଯେଉଁ ନରପତି ଏହିପରି ବ୍ରାହ୍ମଣଙ୍କ ପୁରୋବର୍ତ୍ତୀ କରି ରାଜ୍ୟ ଶାସନ କରନ୍ତି, ସେ ଅବିଜିତ ବସୁନ୍ଧରାକୁ ଜୟ କରନ୍ତି ଏବଂ ସୁମହତ ଯଶ ଲାଭ କରନ୍ତି । ବ୍ରାହ୍ମଣଙ୍କର ନିୟତ ଶୁଚି ହେବା ଏବଂ କ୍ଷତ୍ରିୟଙ୍କର ନିୟତ ଅସ୍ତ୍ରଧାରୀ ହେବା କର୍ତ୍ତବ୍ୟ । କାରଣ ଜଗତରେ ଯାହା କିଛି ଅଛି ତତ୍ସମସ୍ତ ସେ ଉଭୟଙ୍କର ଅଧୀନ ଅଟେ । ୨୨ ।

———

ଯୁଧିଷ୍ଠିର କହିଲେ, ହେ ପିତାମହ ! ନୃପତି ଯେଉଁ ବୃତ୍ତିକୁ ଅବଲମ୍ବନ କରି ପ୍ରକୃତି ବୃନ୍ଦଙ୍କ ଉନ୍ନତି ସାଧନ ଓ ପୁଣ୍ୟ ଲୋକ ସବୁ ଜୟ କରନ୍ତି, ଆପଣ ତତ୍ସମସ୍ତ ଆମ୍ଭଠାରେ ବର୍ଣ୍ଣନ କରନ୍ତୁ । ୧ ।

ଭୀଷ୍ମ କହିଲେ—ମହୀପତି ପ୍ରଜା ପାଳନରେ ପ୍ରବୃତ୍ତ ହୋଇ ଦାନଶୀଳ, ଉପବାସୀ, ତପସ୍ୟାରତ ଏବଂ ଯଜ୍ଞଶୀଳ ହେବେ । ୨ । ନୃପତି ଧର୍ମାନୁସାରେ ପ୍ରକୃତିବର୍ଗଙ୍କୁ ନିୟତ ପାଳନ କରି ନିତ୍ୟ ଉଦ୍ୟୋଗ ଏବଂ ବିବିଧ ଦାନ ଦ୍ୱାରା ଧାର୍ମିକ ଗଣଙ୍କୁ ପୂଜା କରିବେ । ସେ ଧାର୍ମିକଗଣଙ୍କୁ ପୂଜାକଲେ, ସେମାନେ ସର୍ବତ୍ର ପୂଜିତ ହୁଅନ୍ତି । କାରଣ ନୃପତି ଯେଉଁ ଆଚରଣ କରନ୍ତି, ତାହାହିଁ ପ୍ରଜାମାନଙ୍କର ଅନୁମତ ହୋଇଥାଏ । ୪ । ନରନାଥ ଯମଙ୍କ ପ୍ରାୟ ଶତ୍ରୁମାନଙ୍କ ପ୍ରତି ନିୟତ ଉଦ୍ୟତଦଣ୍ଡ ହେବେ ଏବଂ ସର୍ବତୋଭାବରେ ଦସ୍ୟୁଗଣଙ୍କର ବିନାଶ ସାଧନ କରିବେ । କଦାପି ଇଚ୍ଛାନୁସାରେ କାହାକୁ ସୁଦ୍ଧା କ୍ଷମା କରିବେ ନାହିଁ । ୫ ।

ହେ ଭାରତ ! ପ୍ରଜାଗଣ ଭୂପତିଙ୍କ କର୍ତ୍ତୃକ ସୁରକ୍ଷିତ ହୋଇ ଯେଉଁ ଧର୍ମ ଆଚରଣ କରନ୍ତି, ନୃପତି ତାହାର ଚତୁର୍ଥାଂଶ ଭାଗୀ ହୁଅନ୍ତି । ସେମାନେ ଯାହା ଦାନ, ହବନ, ଅଧ୍ୟୟନ ଏବଂ ଅର୍ଚ୍ଚନା କରନ୍ତି, ରାଜା ଧର୍ମାନୁସାରେ ପ୍ରଜାମାନଙ୍କୁ ପାଳନ କରି ତାହାର ଚତୁର୍ଥାଂଶ ଭାଗୀ ହୁଅନ୍ତି । ୭ ।

ହେ ଭାରତ ! ନୃପତି ପ୍ରଜାବୃନ୍ଦଙ୍କୁ ରକ୍ଷା ନ କଲେ ରାଜ୍ୟ ମଧ୍ୟରେ ଯେଉଁ ଅମଙ୍ଗଳ ଉପସ୍ଥିତ ହୁଏ, ରାଜା ସେହି ପାପର ମଧ୍ୟ ଚତୁର୍ଥାଂଶ ଭାଗୀ ହୁଅନ୍ତି । ୮ । ରାଜ୍ୟ ମଧ୍ୟରେ ନୃଶଂସ ଏବଂ ଅସତ୍ୟବାଦୀମାନେ ଯେଉଁ କର୍ମ କରନ୍ତି, ନୃପତି ନିଶ୍ଚୟ ସେହି ପାପର ଅର୍ଦ୍ଧାଂଶ ଭାଗୀ ହୁଅନ୍ତି । ହେ ପୃଥିବୀ ପାଳ ! କେହି କେହି କହନ୍ତି ଯେ ନୃପତି ତାଦୃଶ ପାପର ସମ୍ପୂର୍ଣ୍ଣ କିମ୍ବା ତଦପେକ୍ଷା ଅଧିକ ଫଳଭାଗୀ ହୁଅନ୍ତି । ହେ ଯୁଧିଷ୍ଠିର ! ନୃପତି ତାଦୃଶ ପାପରୁ ଯେପରି ମୁକ୍ତିଲାଭ କରିବେ, ତାହା ଶ୍ରବଣ କର । ଯେଉଁଧନ ଚୋର କର୍ତ୍ତୃକ ଅପହୃତ ହୋଇଅଛି, ତାହା ଯଦି ପ୍ରତ୍ୟାହୃତ

କରି ନ ପାରନ୍ତି, ତେବେ ତାଦୃଶ ଅଶକ୍ତ ଭୂପତିଙ୍କର ନିଜ କୋଷରୁ ସେହି ଧନ ପ୍ରଦାନ କରିବା କର୍ତ୍ତବ୍ୟ । ୧୦ ।

ଯେଉଁ ବର୍ଣ୍ଣର ବ୍ରାହ୍ମଣଗଣଙ୍କ ପ୍ରାୟ, ବ୍ରହ୍ମସ୍ୱକୁ ମଧ୍ୟ ରକ୍ଷା କରିବା କର୍ତ୍ତବ୍ୟ, ଏବଂ ଯେଉଁ ବ୍ୟକ୍ତି ବ୍ରାହ୍ମଣମାନଙ୍କର ଅପକାର କରେ, ତାହାକୁ ରାଜ୍ୟମଧ୍ୟରେ ସ୍ଥାନଦେବା ବିଧେୟ ନୁହେଁ । ୧୧ । ବ୍ରହ୍ମସ୍ୱ ରକ୍ଷିତ ହେଲେ ସମସ୍ତେ ସୁରକ୍ଷିତ ହୁଅନ୍ତି, ସୁତରାଂ ସେମାନଙ୍କ ପ୍ରସାଦରେ ନୃପତି କୃତକାର୍ଯ୍ୟ ହୁଅନ୍ତି । ୧୨ । ଯେପରି ଭୂତଗଣ ପର୍ଜ୍ଜନ୍ୟଙ୍କର ଏବଂ ବିହଙ୍ଗମ ଗଣ ମହାଦ୍ରୁମର ଆଶ୍ରୟ ଗ୍ରହଣ କରନ୍ତି, ତଦ୍ରୂପ ମନୁଜଗଣ ସର୍ବାର୍ଥସାଧକ ନୃପତିଙ୍କର ଆଶ୍ରୟ ଗ୍ରହଣ କରନ୍ତି । ୧୩ । ପରନ୍ତୁ କାମାତ୍ମା, ନିଷ୍ଠୁର କାମବୁଦ୍ଧି, ନୃଶଂସ ଓ ଅତିଲୁବ୍ଧ ନରପତି ପ୍ରଜାପାଳନ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୧୪ ।

ଯୁଧିଷ୍ଠିର କହିଲେ—ଆମ୍ଭେ ସୁଖାଭିଳାଷୀ ହୋଇ କ୍ଷଣକାଳସୁଦ୍ଧା ରାଜ୍ୟଲାଭର ବାସନା କରୁନାହୁଁ । ଆମ୍ଭେ ଯେଉଁ ଧର୍ମ ନିମିତ୍ତ ରାଜ୍ୟର ଆକାଙ୍କ୍ଷା କରିଥିଲୁଁ, ଯେତେବେଳେ ରାଜ୍ୟମଧ୍ୟରେ ସେହି ଧର୍ମନାହିଁ, ତେତେବେଳେ ତାଦୃଶ ଧର୍ମବିହୀନ ରାଜ୍ୟରେ ଆମ୍ଭର ପ୍ରୟୋଜନ କଣ ? ଆମ୍ଭେ ଧର୍ମ ସାଧନ ନିମିତ୍ତ ପୁନର୍ବାର ବନମଧ୍ୟକୁ ଗମନ କରିବୁଁ । ୧୬ । ସେହି ପବିତ୍ର ଅରଣ୍ୟମଧ୍ୟରେ ଫଳମୂଳଭୋଗୀ ମୁନିଙ୍କ ପ୍ରାୟ ନ୍ୟସ୍ତଦଣ୍ଡ ଓ ଜିତେନ୍ଦ୍ରିୟ ହୋଇ ଧର୍ମର ଆରାଧନା କରିବୁଁ । ୧୭ । ଭୀଷ୍ମ କହିଲେ, ତୁମ୍ଭର ବୁଦ୍ଧି ଯେ ପରଦୁଃଖଦାୟିନୀ ନୁହେଁ ତାହା ଆମ୍ଭେ ଜାଣୁ । କିନ୍ତୁ ରାଜଧର୍ମ ବିଷୟରେ ତାଦୃଶ ବୁଦ୍ଧିକି ନିତାନ୍ତ ଦୁର୍ଘ୍ରୃଣ ବୋଲି କହିବାକୁ ହେବ । କାରଣ ଶୁଦ୍ଧ ଅନୃଶଂସ ବୃତ୍ତିଦ୍ୱାରା ରାଜ୍ୟ କଦାପି ପରିରକ୍ଷିତ ହୁଏ ନାହିଁ । ୧୮ ।

ହେ ଯୁଧିଷ୍ଠିର ! ଯଦି ତୁମ୍ଭେ ଏକାନ୍ତ ମୃଦୁ, କୃପାଳୁ ଓ ନିରତିଶୟ ଧାର୍ମିକ ହୋଇ ଆର୍ଯ୍ୟଗଣଙ୍କର ପ୍ରଦର୍ଶିତ ପଥକୁ ଅତିକ୍ରମ କର, ତାହାହେଲେ ସମସ୍ତେ ତୁମ୍ଭଙ୍କୁ ଅସମର୍ଥ ବିବେଚନା କରିବେ ଏବଂ ତୁମ୍ଭେ କାହାରିସୁଦ୍ଧା ବହୁମତ ହେବନାହିଁ । ୧୯ । ତୁମ୍ଭେ ଯେପରି ଅବସ୍ଥାନ କରିବାକୁ ଇଚ୍ଛା କରୁଅଛ, ତାହା କ୍ଷତ୍ରିୟର ଧର୍ମ ନୁହେ, ଅତଏବ ତୁମ୍ଭର ପିତୃପିତାମହଗଣ ଯେଉଁ ବୃତ୍ତିକୁ ଅବଲମ୍ବନ କରିଅଛନ୍ତି, ତୁମ୍ଭେ ମଧ୍ୟ

ସେହି ବୃତ୍ତିର ଅନୁବର୍ତ୍ତୀ ହୁଅ । ୨୦ । ତୁମ୍ଭେ କ୍ଷୋଭବଶତଃ କେବଳ ଆନୃଶଂସ ବୃତ୍ତିକି ପରିତ୍ୟାଗ କଲେ ପ୍ରଜାପାଳନ ସମ୍ଭୂତ ଧର୍ମଫଳକୁ ପ୍ରାପ୍ତହେବ ନାହିଁ । ୨୧ ।

ହେ ବତ୍ସ ! ତୁମ୍ଭେ ଯେଉଁ ବୁଦ୍ଧିବୃତ୍ତିର ଅନୁବର୍ତ୍ତୀ ହେଉଅଛ, ତୁମ୍ଭର ଜନ୍ମ କାଳରେ କୁନ୍ତୀ କିମ୍ବା ପାଣ୍ଡୁ କେହି ସୁଦ୍ଧା ଈଦୃଶ ପ୍ରାର୍ଥନା କରି ନାହାନ୍ତି । ୨୨ । ତୁମ୍ଭର ପିତା ନିୟତ ତୁମ୍ଭର ଶୌର୍ଯ୍ୟବଳ ଓ ସତ୍ୟ ନିମିତ୍ତ ଏବଂ କୁନ୍ତୀ ଔଦାର୍ଯ୍ୟ ଓ ମାହାତ୍ମ୍ୟ ନିମିତ୍ତ ପ୍ରାର୍ଥନା କରୁଥିଲେ ।୨୩। ପୁତ୍ର ମନୋହର ଯଜ୍ଞାଦି ଦ୍ୱାରା ଦେବତାଙ୍କର ଏବଂ ଶ୍ରାଦ୍ଧାଦି ଦ୍ୱାରା ପିତୃଲୋକଙ୍କର ତୃପ୍ତି ସାଧନ କରନ୍ତୁ । ଏହା ଦେବଗଣ ଓ ପିତୃଲୋକ ପୁତ୍ରଠାରୁ କାମନା କରନ୍ତି । ୨୪ । ଦାନ, ଅଧ୍ୟୟନ, ଯଜ୍ଞ ଏବଂ ପ୍ରଜାପାଳନ କରିବା ଦ୍ୱାରା ଧର୍ମ ହେଉ, କିମ୍ବା ଅଧର୍ମ ହେଉ, ଏହି କେତୋଟି କର୍ମ କରିବା ନିମିତ୍ତ ତୁମ୍ଭର ଜନ୍ମ ହୋଇଅଛି । ୨୫ ।

ଯେ ଦୁର୍ବହଭାର ବହନରେ ନିଯୁକ୍ତ ହୋଇ ଯଥାସମୟରେ ସମାହିତ ଭାବରେ ବହନ କରନ୍ତି, ସେ ସ୍ୱୟଂ ଅବସନ୍ନ ହେଲେ ହେଁ ତାହାଙ୍କର କୀର୍ତ୍ତି ଅବସନ୍ନ ହୁଏ ନାହିଁ । ୨୬ । ମନୁଷ୍ୟର କଥା ଦୂରେ ଥାଉ, ଯେଉଁସ୍ଥଳେ ସୁଶିକ୍ଷିତ ଅଶ୍ୱସୁଦ୍ଧା ଅସ୍ଖଳିତ ଭାବରେ ଭାର ବହନ କରେ, ସେ ସ୍ଥଳେ ତୁମ୍ଭେ କର୍ମ ଓ ବାକ୍ୟଦ୍ୱାରା ସମସ୍ତଙ୍କଠାରେ ନିର୍ଦ୍ଦୋଷ ଥିଲେ ନିଜର ଆଚରିତ କର୍ମର ସିଦ୍ଧିଲାଭ କରିବ । ୨୭ । ଧାର୍ମିକ, ଗୃହସ୍ଥ ରାଜା ଅଥବା ବ୍ରହ୍ମଚାରୀ କେହି କଦାପି ଏକାନ୍ତ ଅଭିନିବେଶ ସହକାରେ ଶୁଦ୍ଧଧର୍ମ ଆଚରଣ କରି ପାରନ୍ତି ନାହିଁ । ସୁତରାଂ ଆଚରିତ ସାମାନ୍ୟ କର୍ମ ଯଦି ସାରଗର୍ଭ ହୁଏ, ତାହା କୌଣସି କର୍ମ ନ କରିବା ଅପେକ୍ଷା ଶ୍ରେୟସ୍କର । କାରଣ କର୍ମ ନକଲେ ନିରନ୍ତରେ ପାପଭାଗୀ ହେବାକୁ ହୁଏ । ୨୮ । ଯେତେବେଳେ ସଦ୍‌ଗୁଣଶାଳୀ ଧାର୍ମିକ ମନୁଷ୍ୟମାନେ ରାଜସାଚିବ୍ୟାଦିରୂପ ଉତ୍କୃଷ୍ଟ ଐଶ୍ୱର୍ଯ୍ୟ ଲାଭ କରନ୍ତି, ସେତେବେଳେ ନୃପତିଙ୍କର ଅଲବ୍‌ଧ ବସ୍ତୁର ଲାଭ ଓ ଲବ୍‌ଧ ବସ୍ତୁର ପରିପାଳନ ରୂପ ଯୋଗକ୍ଷେମ କୁଶଳଦାୟକ ହୋଇଥାଏ । ୩୦ । ଧାର୍ମିକ ନରପତି ରାଜ୍ୟ ଲାଭ କରି କାହାକୁ ଦାନଦ୍ୱାରା, କାହାକୁ ବଳଦ୍ୱାରା ଏବଂ କାହାକୁ ଅବା ମଧୁର ବାକ୍ୟ ଦ୍ୱାରା ସର୍ବତୋଭାବରେ ନିଜର ବଶୀଭୂତ କରିବେ । ୩୧ । ସତ୍କୁଳଜାତ ପଣ୍ଡିତଗଣ ଯାହାଙ୍କର ଆଶ୍ରୟ ଲାଭରେ ପରିତୃପ୍ତ ହୋଇ

ନିର୍ଭୟରେ ଏବଂ ସ୍ୱଚ୍ଛନ୍ଦରେ ବାସ କରନ୍ତି, ସ୍ୱୟଂ ଧର୍ମକୁ ମଧ୍ୟ ତାଙ୍କ ଅପେକ୍ଷା ଶ୍ରେଷ୍ଠ ବୋଲି ବୋଧ କରାଯାଏ ନାହିଁ । ୩୨ ।

ଯୁଧିଷ୍ଠିର କହିଲେ—ହେ ତାତ ! ସ୍ୱର୍ଗଲାଭର ଉତ୍କୃଷ୍ଟ ଉପାୟ କଣ ତାହାଠାରୁ ଉତ୍ତମ ପ୍ରୀତି ଅବା କଣ ? ଏବଂ ତଦ୍‌ପେକ୍ଷା ଶ୍ରେଷ୍ଠ ଐଶ୍ୱର୍ଯ୍ୟ ବା କଣ ? ଯଦି ଏତତ୍ ସମସ୍ତ ଆପଣଙ୍କର ଜ୍ଞାତ ଥାଏ, ତାହାହେଲେ ଆମ୍ଭଠାରେ ଯଥାବତ୍ ବର୍ଣ୍ଣନ କରନ୍ତୁ । ୩୩ । ଭୀଷ୍ମ କହିଲେ—ହେ ନରନାଥ ! ଯେଉଁ ନୃପତି ଭୟପୀଡ଼ିତ ମନୁଷ୍ୟମାନଙ୍କୁ କିଛିକାଳମଧ୍ୟରେ ସେହି ଭୟରୁ ପରିତ୍ରାଣ କରି ସେମାନଙ୍କର ମଙ୍ଗଳ ବିଧାନ କରନ୍ତି, ସେହି ନୃପତି ଆମ୍ଭମାନଙ୍କ ମଧ୍ୟରେ ଅତିଶୟ ସ୍ୱର୍ଗଜିତ ଅଟନ୍ତି, ଏହା ଆମ୍ଭେ ତୁମ୍ଭଙ୍କୁ ସତ୍ୟ କହୁଅଛୁଁ । ୩୪ ।

ହେ କୁରୁସତ୍ତମ ! କୌରବମାନଙ୍କ ମଧ୍ୟରେ ତୁମ୍ଭେ ପ୍ରୀତିମାନ ଅଟ, ଅତଏବ ତୁମ୍ଭେ ରାଜା ହୋଇ ସ୍ୱର୍ଗକୁ ଜୟ, ସାଧୁ ଲୋକମାନଙ୍କୁ ପ୍ରତିପାଳନ ଓ ଅସାଧୁ ଲୋକମାନଙ୍କର ଶାସନ କର । ୩୫ । ହେ ତାତ ! ଯେପରି ପ୍ରାଣୀମାନେ ପର୍ଜନ୍ୟକୁ ଓ ପକ୍ଷୀଗଣ ସ୍ୱାଦୁଫଳଯୁକ୍ତ ପାଦପକୁ ଉପଜୀବ୍ୟ କରି ଜୀବନ ଧାରଣ କରନ୍ତି, ତଦ୍ରୂପ ସାଧୁସହ ସୁହୃଦଗଣ ତୁମ୍ଭଙ୍କୁ ଉପଜୀବ୍ୟ କରି ଜୀବନ ଧାରଣ କରନ୍ତୁ । ୩୬ । ଯେଉଁ ନୃପତି ଧୃଷ୍ଟ, ଶୂର ଓ ଦୁଷ୍ଟମାନଙ୍କର ପ୍ରହର୍ତ୍ତା, ଅନୃଶଂସ, ଜିତେନ୍ଦ୍ରିୟ, ପ୍ରଜାବତ୍ସଳ ଏବଂ ଅତିଥି ଓ ଅଧୀନସ୍ଥ ସେବାରବର୍ଗଙ୍କର ଭୋଜନାବସାନରେ ଭୋଜନ-କାରୀ ଅଟନ୍ତି, ମନୁଷ୍ୟମାନେ ସେହି ନୃପତିଙ୍କୁ ଆଶ୍ରୟ କରି ଜୀବନ ଯାତ୍ରା ନିର୍ବାହ କରନ୍ତୁ । ୩୭ ।

---

## ଅଧ୍ୟାୟ—୭୭

ଯୁଧିଷ୍ଠିର କହିଲେ—ହେ ପିତାମହ ! ଯେଉଁ ବ୍ରାହ୍ମଣମାନେ ସ୍ୱକର୍ମ ନିରତ ସେହି ଉଭୟବିଧ ବ୍ରାହ୍ମଣମାନଙ୍କ ମଧ୍ୟରେ ବିଶେଷ କ'ଣ ତାହା ଆମ୍ଭଠାରେ ବିସ୍ତାର କରି କହନ୍ତୁ । ୧ । ଭୀଷ୍ମ କହିଲେ—ହେ ରାଜନ ! ଯେଉଁମାନେ ବିଦ୍ୟା ଶମ ଦମାଦି ଲକ୍ଷଣସମ୍ପନ୍ନ ଏବଂ ସର୍ବତ୍ର ସମଦର୍ଶୀ ଅଟନ୍ତି, ସେହି ବ୍ରାହ୍ମଣମାନେ ବ୍ରହ୍ମତୁଲ୍ୟ ବୋଲି ପରିକୀର୍ତ୍ତିତ ହୁଅନ୍ତି । ୨ । ବ୍ରାହ୍ମଣମାନଙ୍କ ମଧ୍ୟରେ ଯେଉଁମାନେ ସ୍ୱକର୍ମରେ ନିରତ ଥାଇ ଋକ୍ ଯଜୁ ଓ ଶାମ ଏହି ବେଦତ୍ରୟକୁ ଅବଗତ

ହୁଅନ୍ତି, ସେମାନେ ଦେବତୁଲ୍ୟ ବୋଲି ପରିଗୃହୀତ ହୁଅନ୍ତି । ୩ । ହେ ରାଜନ ! ବ୍ରାହ୍ମଣଗଣଙ୍କ ମଧ୍ୟରେ ଯେଉଁମାନେ ଜନ୍ମୋଚିତ କର୍ମ ବିହୀନ, କୁତ୍ସିତ କର୍ମନିଷ୍ଠ ଏବଂ ବ୍ରହ୍ମବନ୍ଧୁ, ସେମାନେ ଶୂଦ୍ରତୁଲ୍ୟ ବୋଲି ପରିକୀର୍ତ୍ତିତ ହୁଅନ୍ତି । ୪ । ଯେଉଁସବୁ ବ୍ରାହ୍ମଣ ବେଦାଧ୍ୟୟନବିହୀନ ଓ ନିରଗ୍ନିକ, ଧାର୍ମିକ ନରପତି ସେମାନଙ୍କ ଠାରୁ କର ଗ୍ରହଣ କରିବେ ଏବଂ ବିନା ବେତନରେ ସେମାନଙ୍କୁ ରାଜପରିଚର୍ଯ୍ୟା କରାଇବେ । ୫ । ଯେଉଁମାନେ ଧର୍ମାଧିକାରରେ ନିଯୁକ୍ତ ଥାନ୍ତି ଏବଂ ବେତନ ଗ୍ରହଣ ପୂର୍ବକ ଦେବ ପୂଜା, ନକ୍ଷତ୍ରଗଣନା, ଗ୍ରାମଯାଜନ ଓ ମହାପଥ ଅର୍ଥାତ୍ ନୌକା ଦ୍ୱାରା ସମୁଦ୍ରକୁ ଗମନ କରନ୍ତି, ଶାସ୍ତ୍ରରେ ଏହି ପାଞ୍ଚଜଣଙ୍କୁ ବ୍ରାହ୍ମଣ ଚଣ୍ଡାଳ ବୋଲି କହନ୍ତି । ୬ ।

ଅପିଚ ବ୍ରାହ୍ମଣମାନଙ୍କ ମଧ୍ୟରେ ଯେଉଁମାନେ ଋତ୍ୱିକ, ପୁରୋହିତ, ମନ୍ତ୍ରୀ ଦୂତ, ଓ ବାର୍ତ୍ତାବହର କାର୍ଯ୍ୟ କରନ୍ତି, ସେମାନେ କ୍ଷତ୍ରିୟ ତୁଲ୍ୟ ହୁଅନ୍ତି । ୭ । ଯେଉଁମାନେ ଅଶ୍ୱାରୋହୀ, ରଥୀ ଓ ପଦାତିକ ସେମାନେ ବୈଶ୍ୟ ତୁଲ୍ୟ ହୁଅନ୍ତି । ୮ । ହେ ମହୀପାଳ ! ମହୀପତି ହୀନକୋଷ ହେଲେ ପୂର୍ବୋକ୍ତ ବ୍ରହ୍ମସମ ଓ ଦେବସମ ବ୍ରାହ୍ମଣଙ୍କ ବ୍ୟତିରେକେ ଏହି-ସବୁ ବ୍ରାହ୍ମଣଙ୍କଠାରୁ କର ଗ୍ରହଣ କରିବେ । ସେଥିରେ ତାହାଙ୍କର ଅଧର୍ମ ହେବ ନାହିଁ । ୯ । କିମ୍ପାଇଁକି ଏହିପରି ବୈଦିକ ଶାସନ ଅଛି ଯେ, ବ୍ରାହ୍ମଣମାନଙ୍କ ମଧ୍ୟରେ ଯେଉଁମାନେ ନିଷିଦ୍ଧ କର୍ମ ଆଚରଣ କରନ୍ତି, ସେମାନଙ୍କର ଓ ଅବ୍ରାହ୍ମଣମାନଙ୍କର ଧନ ସ୍ୱାମୀ ରଜା ହୁଅନ୍ତି । ମହୀପତି ବିକର୍ମସ୍ଥ ବିପ୍ରଗଣଙ୍କୁ କୌଣସି ପ୍ରକାରରେ ଉପେକ୍ଷା କରିବେ ନାହିଁ । ଧର୍ମାନୁସାରେ ଅନୁଗ୍ରହ କରି ସେମାନଙ୍କୁ ରାଜ-ନିୟମରେ ନିୟମିତ ଓ ସମ୍ୟକ ରୂପେ ବିଭକ୍ତ କରି ରଖିବେ । ୧୧ ।

ହେ ରାଜନ ! ଯେଉଁ ରାଜାଙ୍କର ରାଜ୍ୟରେ ବ୍ରାହ୍ମଣ ତସ୍କର ହୁଏ, ଧର୍ମଜ୍ଞ ମାନବଗଣ ସେହି ଅପରାଧକୁ ରାଜାଙ୍କ ଠାରେ ଆକ୍ଷେପ କରନ୍ତି । ଅତଏବ ହେ ରାଜନ ! ପଣ୍ଡିତମାନେ ଏହିପରି କହନ୍ତି ଯେ ଯେଉଁ ଜୀବିକା-ବିହୀନ ବେଦଜ୍ଞ, ସ୍ନାତକ ବ୍ରାହ୍ମଣ ରାଜ୍ୟ ମଧ୍ୟରେ ତସ୍କର ହେବ, ରାଜାଙ୍କୁ ତାହାର ଭରଣପୋଷଣ କରିବାକୁ ହେବ । ୧୩ । ଯଦ୍ୟପି ସେହି ବ୍ରାହ୍ମଣ ରାଜାଙ୍କଠାରୁ ବୃତ୍ତି ପ୍ରାପ୍ତ ହୋଇ ସୁଦ୍ଧା ଚୌର୍ଯ୍ୟବୃତ୍ତିରୁ

ନିବୃତ୍ତ ନ ହୁଏ, ତାହାହେଲେ ନରପତି ତାହାକୁ ବାନ୍ଧବବର୍ଗଙ୍କ ସହିତ ସେହି ଦେଶରୁ ନିର୍ବାସିତ କରିବେ । ୧୪ ।

---

## ଅଧ୍ୟାୟ—୭୭

ଯୁଧିଷ୍ଠିର କହିଲେ—ହେ ଭରତଶ୍ରେଷ୍ଠ ପିତାମହ ! ନରପତି କେଉଁମାନଙ୍କର ଧନାଧିକାରରେ ପ୍ରଭୁ ହେବେ ଏବଂ କିପ୍ରକାର ବୃତ୍ତି ଅବଲମ୍ବନ କରିବେ, ତାହା ଆମ୍ଭଠାରେ କୀର୍ତ୍ତନ କରନ୍ତୁ । ୧ ।

ଭୀଷ୍ମ କହିଲେ—ହେ ରାଜନ୍ ! ଏପ୍ରକାର ଶ୍ରୁତି ଅଛି ଯେ ବ୍ରାହ୍ମଣମାନଙ୍କ ମଧ୍ୟରେ ଯେଉଁମାନେ କୁକର୍ମାନ୍ୱିତ ଅଟନ୍ତି, ସେମାନଙ୍କର ଏବଂ ଅବ୍ରାହ୍ମଣମାନଙ୍କର ଧନସ୍ୱାମୀ ରାଜା ହେବେ । ୨ । ସାଧୁମାନେ ମହୀପତିଗଣଙ୍କ ସମ୍ବନ୍ଧରେ ଏପ୍ରକାର ପୁରାବୃତ୍ତ କହନ୍ତି ଯେ ବିପ୍ରମାନେ ବିକର୍ମସ୍ଥ ହେଲେ ନରପତି ସେମାନଙ୍କୁ କଦାପି ଉପେକ୍ଷା କରିବେ ନାହିଁ । ଯେଉଁ ରାଜାଙ୍କର ରାଜ୍ୟ ମଧ୍ୟରେ ବ୍ରାହ୍ମଣ ତସ୍କର ହୁଏ, ପଣ୍ଡିତଗଣ ତାହାର ଦୋଷ ରାଜାଙ୍କ ପ୍ରତି ଆରୋପ କରନ୍ତି । ସୁତରାଂ ରାଜର୍ଷିଗଣ ବ୍ରାହ୍ମଣମାନଙ୍କର ସେହି କର୍ମରେ ନିଜକୁ ଅଭିପ୍ରେତ ବୋଧ କରି ବୃତ୍ତି ଦ୍ୱାରା ସେମାନଙ୍କୁ ପ୍ରତିପାଳନ କରିଥାନ୍ତି ।

କେକୟରାଜ ରାକ୍ଷସ କର୍ତ୍ତୃକ ଅରଣ୍ୟ ମଧ୍ୟରେ ଅପହୃତ ହୋଇ ଯାହା କହିଥିଲେ, ପଣ୍ଡିତମାନେ ଏହି ସ୍ଥଳରେ ସେହି ପ୍ରାଚୀନ ଇତିହାସକୁ ଉଦାହରଣ ସ୍ୱରୂପରେ ବର୍ଣ୍ଣନ କରନ୍ତି । ୬ । କୌଣସି ରାକ୍ଷସ ବନ-ମଧ୍ୟରେ ସ୍ୱାଧ୍ୟାୟନିରତ ସଂଶିତବ୍ରତ ଭୀମକର୍ମା କେକୟାଧିପତିଙ୍କୁ ଗ୍ରହଣ କରିବାରୁ କେକୟରାଜା ତାହାକୁ କହିଲେ ଯେ ଆମ୍ଭ ରାଜ୍ୟରେ ତସ୍କରରେ କଦର୍ଯ୍ୟ, ମଦ୍ୟପ, ନିରଗ୍ନିକ କିମ୍ବା ଅଯାଜ୍ଞିକ କେହି ନାହାନ୍ତି । ଅତଏବ ତୁମ୍ଭେ ଆମ୍ଭଙ୍କ ଦେହର ସ୍ପର୍ଶ କରିବ, ଆମ୍ଭଠାରୁ ଦୂରୀଭୂତ ହୁଅ । ୯ । ଆମ୍ଭ ରାଜ୍ୟରେ ଅଦକ୍ଷିଣ ଯଜ୍ଞ ନାହିଁ । କୌଣସି ବ୍ରତବିହୀନ ବ୍ୟକ୍ତି ବେଦାଧ୍ୟୟନ କରେ ନାହିଁ. ଅଧ୍ୟାପନା, ଅଧ୍ୟୟନ, ଯଜନ, ଯାଜନ, ଦାନ, ପ୍ରତିଗ୍ରହ ଏହି ଷଟ୍‌କର୍ମ୍ମ ନିଯୁକ୍ତ ବିଦ୍ୟମାନ ଅଛି । ୧୧ । ସ୍ୱକର୍ମସ୍ଥ, ସତ୍ୟବାଦୀ, ଶାନ୍ତ ବ୍ରାହ୍ମଣଗଣ ଆମ୍ଭ ରାଜ୍ୟରେ ସତତ ସମ୍ମାନିତ ଓ

ସଂବଦ୍ଧ ହୋଇ ଅଛନ୍ତି । ଅତଏବ ତୁମ୍ଭେ ଆମ୍ଭଙ୍କୁ ସ୍ପର୍ଶ କର ନାହିଁ । ଆମ୍ଭଠାରୁ ଦୂରୀଭୂତ ହୁଅ । ୧୨ । ଆମ୍ଭର ରାଜ୍ୟ ମଧ୍ୟରେ ସତ୍ୟ, ଧର୍ମ, ବିଶାରଦ କ୍ଷତ୍ରିୟମାନେ କାହାରିଠାରୁ ଯାଚଞ୍ଚା କରନ୍ତି ନାହିଁ । ସମସ୍ତେ ଦାନ କରନ୍ତି । ଅଧ୍ୟାପନା କରନ୍ତି ନାହିଁ, ଅଧ୍ୟୟନ କରନ୍ତି, ଯଜ୍ଞ କରାନ୍ତି ନାହିଁ ଯଜ୍ଞ କରନ୍ତି ଏବଂ ସେମାନେ ବ୍ରାହ୍ମଣ ପ୍ରତିପାଳକ, ସଂଗ୍ରାମରେ ଅପ୍ରତି ନିବୃତ୍ତ ଓ ସ୍ୱକର୍ମ ନିରତ ଅଟନ୍ତି । ଅତଏବ ତୁମ୍ଭେ ଆମ୍ଭଙ୍କୁ ସ୍ପର୍ଶ କର ନାହିଁ । ଆମ୍ଭଠାରୁ ଦୂରୀଭୂତ ହୁଅ । ୧୪ । ଆମ୍ଭର ରାଜ୍ୟ ମଧ୍ୟରେ ବୈଶ୍ୟଗଣ ଅକପଟରେ କୃଷି, ଗୋରକ୍ଷା ଓ ବାଣିଜ୍ୟ ବୃତ୍ତି ଅବଲମ୍ବନ ପୂର୍ବକ ଜୀବିକା ନିର୍ବାହ କରନ୍ତି । ସେମାନେ ସମସ୍ତେ ଅପ୍ରମତ୍ତ, କ୍ରିୟାବାନ୍, ସୁବ୍ରତ, ସତ୍ୟବାଦୀ, ସ୍ୱକର୍ମସ୍ଥ ଏବଂ ପରସ୍ପର ସଂବିଭାଗ, ଦମ, ଶୌଚ ଓ ସୌହୃଦ୍ୟ ଅବଲମ୍ବନ କରିଥାନ୍ତି । ଅତଏବ ତୁମ୍ଭେ ଆମ୍ଭଙ୍କୁ ସ୍ପର୍ଶ କର ନାହିଁ । ଆମ୍ଭଠାରୁ ଦୂରୀଭୂତ ହୁଅ । ୧୬ । ଆମ୍ଭର ରାଜ୍ୟ ମଧ୍ୟରେ ଶୂଦ୍ରମାନେ ଅସୂୟାଶୂନ୍ୟ ସ୍ୱକର୍ମସ୍ଥ ଅଟନ୍ତି ଏବଂ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ବର୍ଣ୍ଣତ୍ରୟଙ୍କୁ ଅବଲମ୍ବନ କରି ଯଥାବତ୍ ଜୀବିକା ନିର୍ବାହ କରନ୍ତି, ଅତଏବ ତୁମ୍ଭେ ଆମ୍ଭଙ୍କୁ ସ୍ପର୍ଶ କର ନାହିଁ । ଆମ୍ଭଠାରୁ ଦୂରୀଭୂତ ହୁଅ । ୧୭ ।

ଆମ୍ଭେ କୃପଣ, ଅନାଥ, ବୃଦ୍ଧ, ଦୁର୍ବଳ, ଆତୁର ଓ ଯୋଷିଦ୍‌ଗଣଙ୍କର ସର୍ବତୋଭାବରେ ସେବା କରୁଁ, କୁଳଧର୍ମ ଓ ଦେଶଧର୍ମର ଯଥାବିଧି ସଂସ୍ଥାପନ କରୁଁ । କାହାରିକି ଉଚ୍ଛେଦ କରୁ ନାହୁଁ । ଆମ୍ଭଠାରେ ତପସ୍ୱିଗଣ ସତ୍କାର ସହିତ ପୂଜିତ, ପରିପାଳିତ ଓ ସଂବିଭକ୍ତ ହୁଅନ୍ତି । ଆମ୍ଭେ ସମସ୍ତଙ୍କୁ ଭୋଜନ ନ କରାଇ ଭୋଜନ କରୁନାହୁଁ, ପର ସ୍ତ୍ରୀକୁ ସ୍ପର୍ଶ କରୁନାହୁଁ, ଏବଂ ସ୍ୱତନ୍ତ୍ର କଦାପି କ୍ରୀଡ଼ା କରୁନାହୁଁ । ଅତଏବ ଆମ୍ଭଙ୍କୁ ଗ୍ରହଣ କରିବାର ତୁମ୍ଭର ଅଧିକାର ନାହିଁ । ଆମ୍ଭଠାରୁ ଦୂରୀଭୂତ ହୁଅ । ୨୧ । ଆମ୍ଭର ରାଜ୍ୟ ମଧ୍ୟରେ ଅବ୍ରହ୍ମଚାରୀ ଭିକ୍ଷାବୃତ୍ତି କରନ୍ତି ନାହିଁ । ଭିକ୍ଷୁମାନେ ବ୍ରହ୍ମଚର୍ଯ୍ୟ କରନ୍ତି ନାହିଁ ଏବଂ ଋତ୍ୱିକ ଭିନ୍ନ ଅନ୍ୟଦ୍ୱାରା ଦେବତାମାନଙ୍କୁ ଆହୁତି ପ୍ରଦତ୍ତ ହୁଏ ନାହିଁ । ଅତଏବ ତୁମ୍ଭେ ଆମ୍ଭଠାରୁ ଦୂରୀଭୂତ ହୁଅ । ୨୨ ।

ଆମ୍ଭେ ବୈଦ୍ୟ, ବୃଦ୍ଧ ଓ ତପସ୍ୱିଗଣଙ୍କୁ ଅବଜ୍ଞା କରୁ ନାହୁଁ ଏବଂ ସମସ୍ତ ଜନପଦବାସୀ ଲୋକମାନେ ସୁପ୍ତ ହେଲେ ଆମ୍ଭେ ଜାଗ୍ରତ ଥାଉଁ ।

ଆମ୍ଭର ପୁରୋହିତ ଆତ୍ମଜ୍ଞାନ, ବିଜ୍ଞାନ ସମ୍ପନ୍ନ, ତପସ୍ୱୀ, ସର୍ବଧର୍ମବେତ୍ତା-ଧୀମାନ୍ ଓ ସମୁଦାୟ ରାଜ୍ୟର ସ୍ୱାମୀ ଅଟନ୍ତି । ୨୪ । ଆମ୍ଭେ ଦାନଦ୍ୱାରା ବିଦ୍ୟା ବ୍ରାହ୍ମଣରକ୍ଷା ଓ ସତ୍ୟଦ୍ୱାରା ସ୍ୱର୍ଗାଦିଲୋକ ସବୁ ବାଞ୍ଛା କରୁଁ ଏବଂ ଶୁଶ୍ରୂଷାଦ୍ୱାରା ଗୁରୁଜନଙ୍କର ଅନୁଗତ ହେଉଁ । ଅତଏବ ରାକ୍ଷସଠାରୁ ଆମ୍ଭର ଭୟ ନାହିଁ । ୨୫ । ଆମ୍ଭ ରାଜ୍ୟରେ କୌଣସି ରମଣୀ ବିଧବା ହୋଇ ନାହାନ୍ତି ଏବଂ ବ୍ରାହ୍ମଣମାନେ ବ୍ରହ୍ମ ବନ୍ଧୁ, ଶଠ, ଚୌର, ଅଯାଜୀ ପାପକର୍ମା ନୁହନ୍ତି, ଅତଏବ ତୁମ୍ଭେ ଆମ୍ଭଙ୍କୁ କିପରି ସ୍ପର୍ଶ କରିବ । ୨୬ । ଆମ୍ଭେ ଧର୍ମାର୍ଥରେ ଯୁଦ୍ଧ କରୁଁ । ସୁତରାଂ ଆମ୍ଭର ଗାଏ ଅଙ୍ଗୁଳିଦ୍ୱୟର ଅନ୍ତରରେ ମଧ୍ୟ ଶସ୍ତ୍ରଦ୍ୱାରା ନିର୍ଭିନ୍ନ ହୁଏ ନାହିଁ । ଅପିଚ ଆମ୍ଭର ରାଜ୍ୟରେ ପ୍ରଜାମାନେ ଗୋ ବ୍ରାହ୍ମଣର ରକ୍ଷା ଓ ଯଜ୍ଞ ନିମିତ୍ତ ଆମ୍ଭର ମଙ୍ଗଳ ଆକାଂକ୍ଷା କରନ୍ତି, ଅତଏବ ତୁମ୍ଭେ ଆମ୍ଭଙ୍କୁ ସ୍ପର୍ଶ କର ନାହିଁ । ଆମ୍ଭ ନିକଟରୁ ଦୂରୀଭୂତ ହୁଅ । ୨୮ ।

ରାକ୍ଷସ କହିଲା—ହେ କେକୟରାଜ ! ଆପଣ ସର୍ବାବସ୍ଥାରେ ଧର୍ମର ପର୍ଯ୍ୟାଲୋଚନା କରନ୍ତି ବୋଲି ଆମ୍ଭେ ଆପଣଙ୍କୁ ପରିତ୍ୟାଗ କଲୁଁ । ଅତଏବ ଆପଣଙ୍କର ମଙ୍ଗଳ ହେଉ । ଆପଣ ନିଜ ଗୃହକୁ ଗମନ କରନ୍ତୁ । ଆମ୍ଭେ ମଧ୍ୟ ସ୍ୱସ୍ଥାନକୁ ଗମନ କରୁଅଛୁଁ । ୨୯ ।

ହେ କେକୟ ! ଯେଉଁମାନେ ଗୋ, ବ୍ରାହ୍ମଣ ଓ ପ୍ରଜାଗଣଙ୍କୁ ଆପଦରୁ ରକ୍ଷା କରନ୍ତି, ସେମାନଙ୍କର ରାକ୍ଷସ କିମ୍ବା ପାତକରୁ ଭୟ ନାହିଁ । ଅପିଚ ବିପ୍ରଗଣ ଯେଉଁମାନଙ୍କର ଅଗ୍ରଗାମୀ, ଯାହାଙ୍କର ବଳ ବ୍ରହ୍ମପର ଏବଂ ଯେଉଁମାନେ ଅତିଥିପ୍ରିୟ, ସେହି ନରପତିମାନେ ସମସ୍ତ ସ୍ୱର୍ଗକୁ ଜୟ କରନ୍ତି । ୩୧ ।

ଭୀଷ୍ମ କହିଲେ—ହେ ରାଜନ ! ଏହି ନିମିତ୍ତ ବ୍ରାହ୍ମଣମାନଙ୍କୁ ପାଳନ କରିବା ନୃପତିଙ୍କର ଅବଶ୍ୟ ବିଧେୟ । କାହିଁକି ସେମାନେ ନୃପତିଙ୍କ କର୍ତ୍ତୃକ ରକ୍ଷିତ ହେଲେ, ସେହି ନୃପତିଙ୍କୁ ଏତାଦୃଶ ଆପଦରୁ ରକ୍ଷା କରନ୍ତି ଏବଂ ରାଜାମାନଙ୍କୁ ସଦାତୋଭାବରେ ବୃଦ୍ଧିସୂଚକ ଆଶୀର୍ବାଦ କରନ୍ତି । ୩୨ । ତନ୍ନିମିତ୍ତ ବିଶେଷ ଭାବରେ ବିକର୍ମସ୍ଥ ବ୍ରାହ୍ମଣଗଣଙ୍କୁ ନୃପତିମାନେ ସେମାନଙ୍କର ଅନୁଗ୍ରହପ୍ରାର୍ଥୀ ହୋଇ ନିୟମିତ ଓ ସମ୍ୟକ୍ ପ୍ରକାରେ ବିଭକ୍ତ କରି ରଖିବେ । ୩୩ । ଯେଉଁ ନୃପତି ପୁରବାସୀ

ପ୍ରଜାବର୍ଗଙ୍କ ପ୍ରତି ଏହିପରି ଆଚରଣ କରନ୍ତି, ସେ ଇହଲୋକରେ ସମସ୍ତ ସୁଖ ଅନୁଭବ କରି ପରଲୋକରେ ଇନ୍ଦ୍ରଲୋକ ସଦୃଶ ସ୍ଥାନକୁ ଲାଭ କରନ୍ତି । ୩୪ ।

---

## ଅଧ୍ୟାୟ—୭୮

ଯୁଧିଷ୍ଠିର କହିଲେ—ହେ ଭାରତ ! ଆପଣ କହୁଅଛନ୍ତି ଯେ ଆପତ୍କାଳରେ ବ୍ରାହ୍ମଣମାନେ ରାଜଧର୍ମ ଅର୍ଥାତ୍ ଶସ୍ତ୍ରଧାରଣାଦି କାର୍ଯ୍ୟଦ୍ୱାରା ଜୀବିକା ନିର୍ବାହ କରିପାରନ୍ତି । ପରନ୍ତୁ ସେମାନେ ବୈଶ୍ୟଧର୍ମ ଅର୍ଥାତ୍ ବ୍ୟବସାୟ ଦ୍ୱାରା ଜୀବନୋପାୟ ସାଧନ କରି ପାରନ୍ତି କି ?

ଭୀଷ୍ମ କହିଲେ—କ୍ଷତ୍ରଧର୍ମରେ ଅଶକ୍ତ ବ୍ରାହ୍ମଣ ବୃତ୍ତି କ୍ଷୟରୂପ ବ୍ୟସନ ଉପସ୍ଥିତ ହେଲେ କୃଷି ଓ ଗୋରକ୍ଷା ବ୍ୟବସାୟ ଅବଲମ୍ବନ କରି ବୈଶ୍ୟ ଧର୍ମ ଦ୍ୱାରା ଜୀବିକା ନିର୍ବାହ କରିବେ । ୨ ।

ଯୁଧିଷ୍ଠିର କହିଲେ—ହେ ଭରତର୍ଷଭ ! ବୈଶ୍ୟଧର୍ମାବଲମ୍ବୀ ବ୍ରାହ୍ମଣ କେଉଁ କେଉଁ ଦ୍ରବ୍ୟ ବିକ୍ରୟ କଲେ ସ୍ୱର୍ଗଚ୍ୟୁତ ହେବେ ନାହିଁ ।୩। ଭୀଷ୍ମ କହିଲେ—ହେ ତାତ ଯୁଧିଷ୍ଠିର ! ବ୍ରାହ୍ମଣ ସର୍ବପ୍ରକାର ଅବସ୍ଥାରେ ସୁରା, ଲବଣ, ତିଳ, ଅଶ୍ୱ, ଗୋ ମହିଷାଦି ପଶୁ ଋଷଭ, ମାଂସ ଓ ପକ୍ୱ ଅନ୍ନ ଏହିସବୁ ପଦାର୍ଥ ବିକ୍ରୟ କରିବେ ନାହିଁ । କାରଣ ଏହିସବୁ ଦ୍ରବ୍ୟ ବିକ୍ରୟ କଲେ ବ୍ରାହ୍ମଣ ନରକଗାମୀ ହେବେ । ୫ । ଅଜ, ଅଗ୍ନି, ବରୁଣ, ମେଷ, ସୂର୍ଯ୍ୟ, ଅଶ୍ୱ, ପୃଥିବୀ, ଅନ୍ନ, ଧେନୁ, ଯଜ୍ଞ ଓ ସୋମ ଏହି ସବୁ ଦ୍ରବ୍ୟ ବ୍ରାହ୍ମଣଙ୍କର କଦାଚ ବିକ୍ରେୟ ନୁହେଁ । ୬ ।

ହେ ଭାରତ ! ସାଧୁଗଣ ପକ୍ୱାନ୍ନ ସହିତ ଆମାନ୍ନର ବିନିମୟକୁ ନିନ୍ଦା କରନ୍ତି, କିନ୍ତୁ ଭୋଜନ ନିମିତ୍ତ ଆମାନ୍ନ ପକ୍ୱାନ୍ନର ସହିତ ବିନିମୟ କଲେ ତାହା ନିନ୍ଦା କରନ୍ତି ନାହିଁ ।୭। ଯଦି କେହି କାହାକୁ "ଆମ୍ଭେମାନେ ସିଦ୍ଧାନ୍ନ ଭୋଜନ କରିବୁ, ଆପଣ ଆମାନ୍ନ ଗ୍ରହଣ କରନ୍ତୁ", ଏହିକଥା କହି ଆମାନ୍ନ ସହିତ ସିଦ୍ଧାନ୍ନର ବିନିମୟ କରନ୍ତି, ତାହା ହେଲେ ଉକ୍ତ ବିନିମୟରେ କୌଣସି ପ୍ରକାର ଅଧର୍ମ ସଞ୍ଚାର ହୋଇ ନ ପାରେ । ୮ ।

ହେ ଯୁଧିଷ୍ଠିର ! ଏ ବିଷୟରେ ବ୍ୟବହାର ପ୍ରବୃତ୍ତ ବ୍ୟକ୍ତିମାନଙ୍କର ଯେଉଁ ପୂର୍ବତନ ସନାତନ ଧର୍ମ ଅଛି, ତାହା ତୁମ୍ଭଙ୍କୁ କହୁଅଛୁ, ଶ୍ରବଣ କର । ୯ । ଯଦି କେହି କୌଣସି ବ୍ୟକ୍ତିକୁ "ଆମ୍ଭେ ତୁମ୍ଭଙ୍କୁ ସେହି ବସ୍ତୁ ଦାନ କରୁଅଛୁଁ ତୁମ୍ଭେ ଆମ୍ଭଙ୍କୁ ଏହି ବସ୍ତୁ ପ୍ରଦାନ କର ।" ଏହିକଥା ସ୍ୱେଚ୍ଛାପୂର୍ବକ ବିନିମୟ କରନ୍ତି, ତାହା ହେଲେ ତଦ୍ୱାରା ଧର୍ମ ହୁଏ । ପରନ୍ତୁ ବଳପୂର୍ବକ ବିନିମୟ କଲେ ତଦ୍ୱାରା ଧର୍ମ ହେବ ନାହିଁ । ଋଷି ଓ ଇତର ଲୋକମାନଙ୍କର ଏହିପରି ପ୍ରବର୍ତ୍ତନ ବ୍ୟବହାର ପ୍ରଚଳିତ ହୁଏ । ଏହାହିଁ ସାଧୁ ଅଟେ ଏଥିରେ ସଂଶୟ ନାହିଁ । ୧୧ । ଯୁଧିଷ୍ଠିର କହିଲେ— ହେ ତାତ ! ଯେତେବେଳେ ବୈଶ୍ୟ, ଶୂଦ୍ର ଓ ଅନ୍ତ୍ୟଜ ପ୍ରଭୃତି ପ୍ରଜାମାନେ ସ୍ୱଧର୍ମକୁ ଉଲ୍ଲଂଘନ କରି ଶସ୍ତ୍ର ଗ୍ରହଣ କରିବେ, କ୍ଷତ୍ରିୟ ବଳ-କ୍ଷୀଣ ହେବେ । ୧୨ ।

ହେ ନରାଧିପ ! ତତ୍କାଳରେ କ୍ଷୀଣବଳ ନରପତି କି ପ୍ରକାରେ ଲୋକପ୍ରତି ଓ ଲୋକମାନଙ୍କର ପରମ ଆଶ୍ରୟ ହେବେ ? ଆମ୍ଭର ଏହି ସଂଶୟ ହେଉଅଛି । ଆପଣ ଏ ବିଷୟ ଆମ୍ଭଙ୍କୁ ବିସ୍ତାର କରି କହନ୍ତୁ ।୧୩। ଭୀଷ୍ମ କହିଲେ, ବ୍ରାହ୍ମଣ ପ୍ରଭୃତି ବର୍ଣ୍ଣମାନେ ଦାନ, ତପସ୍ୟା, ଯଜ୍ଞ, ଅହିଂସା ଓ ଇନ୍ଦ୍ରିୟ ଦମନ ଦ୍ୱାରା ନିଜ ନିଜ କୁଶଳ ଆକାଂକ୍ଷା କରିବେ । ପରନ୍ତୁ ସେମାନଙ୍କ ମଧ୍ୟରେ ଯେଉଁ ବ୍ରାହ୍ମଣମାନେ ବେଦ ବଳଶାଳୀ ଅଟନ୍ତି, ସେମାନେ ସର୍ବତୋଭାବରେ ଅଭ୍ୟୁତ୍ଥିତ ହୋଇ ଦେବତାଗଣ ମହେନ୍ଦ୍ରଙ୍କ ବଳବର୍ଦ୍ଧନ କଲ୍ପପ୍ରାୟ, ରାଜାଙ୍କର ବଳବର୍ଦ୍ଧନ କରିବେ । ୧୫ । ପଣ୍ଡିତମାନେ କହନ୍ତି ଯେ ବ୍ରାହ୍ମଣ କ୍ଷୀୟମାଣ ମହୀପାଳଙ୍କର ପରମ ଆଶ୍ରୟ ଅଟନ୍ତି । ଅତଏବ ବିଜ୍ଞ ମହୀପାଳ ବ୍ରହ୍ମବଳକୁ ଅବଲମ୍ବନ କରି ସମୁତ୍ଥିତ ହୁଅନ୍ତି । ୧୬ । ପରନ୍ତୁ ଜୟଶୀଳ ରାଜା ଯେତେବେଳେ ରାଷ୍ଟ୍ରମଧ୍ୟରେ କୁଶଳାନୁସନ୍ଧାନ କରିବେ, ତେତେବେଳେ ବର୍ଣ୍ଣ ସମସ୍ତ କୌଣସି ପ୍ରକାରରେ ନିଜନିଜ ଧର୍ମରେ ବିନିଷ୍ଟ ହେବେ । ୧୭ ।

ହେ ଯୁଧିଷ୍ଠିର ! ଯେତେବେଳେ ଦସ୍ୟୁଗଣ ପ୍ରଜାମାନଙ୍କର ମର୍ଯ୍ୟାଦା ଓ ଜାତିନାଶ କରିବାରେ ପ୍ରବୃତ୍ତ ହେବେ, ତେତେବେଳେ ସମସ୍ତ ବର୍ଣ୍ଣ ଶସ୍ତ୍ର ଗ୍ରହଣ କଲେ ତାହା ଦୂଷଣାବହ ହେବ ନାହିଁ । ୧୮ ।

ଯୁଧିଷ୍ଠିର କହିଲେ—ହେ ପିତାମହ । ଯଦି କ୍ଷତ୍ରିୟ ବ୍ରାହ୍ମଣଙ୍କ ଦୋଷଦର୍ଶୀ ହୋଇ ବିରୁଦ୍ଧାଚରଣ କରନ୍ତି, ତାହାହେଲେ ସେହି ବ୍ରାହ୍ମଣ କେଉଁ ଧର୍ମ ଅବଲମ୍ବନ କରିବେ ଏବଂ ତାହାଙ୍କର ଆଶ୍ରୟ ଓ ପରିତ୍ରାତା କିଏ ହେବେ । ୧୯ । ଭୀଷ୍ମ କହିଲେ—ତତ୍କାଳରେ ବ୍ରାହ୍ମଣ ତପସ୍ୟା, ବ୍ରହ୍ମଚର୍ଯ୍ୟ, ଶଠତା କିମ୍ବା ସରଳତାଦ୍ୱାରା ଯେ କୌଣସି ଉପାୟରେ କ୍ଷତ୍ରିୟକୁ ଶାସିତ କରିବେ । ୨୦ । ବିଶେଷତଃ ବ୍ରାହ୍ମଣଙ୍କଠାରୁ କ୍ଷତ୍ରିୟ ଉତ୍ଥିତ ହୋଇଅଛି । ଅତଏବ ଯଦି କ୍ଷତ୍ରିୟ ବ୍ରାହ୍ମଣଙ୍କ ଅନୁବର୍ତ୍ତନ କରିବାକୁ ପ୍ରବୃତ୍ତ ହୁଅନ୍ତି, ତାହାହେଲେ ବ୍ରାହ୍ମଣ ତାହାଙ୍କର ନିୟନ୍ତା ହେବେ । ୨୧ । ସଲିଳରୁ ଅନଳ, ବ୍ରାହ୍ମଣଠାରୁ କ୍ଷତ୍ରିୟ ଓ ପ୍ରସ୍ତରରୁ ଲୌହ ଉତ୍ଥିତ ହୋଇଅଛି । ସୁତରାଂ ସେମାନଙ୍କର ସର୍ବତ୍ରଗାମୀ ତେଜ ନିଜନିଜ ଯୋନିରେ ଶାନ୍ତିହୁଏ । ୨୨ । ଯେତେବେଳେ ଲୌହ ପ୍ରସ୍ତରକୁ ଭେଦକରେ, ଅଗ୍ନି ସଲିଳକୁ ମନ୍ଥନ କରେ ଓ କ୍ଷତ୍ରିୟ ବ୍ରାହ୍ମଣଙ୍କୁ ଦ୍ୱେଷକରେ, ସେତେବେଳେ ସେହି ଲୌହ ଅଗ୍ନି ଓ କ୍ଷତ୍ରିୟ ସ୍ୱୟଂ ନଷ୍ଟ ହୁଅନ୍ତି । ୨୩ ।

ଅତଏବ ହେ ଯୁଧିଷ୍ଠିର! କ୍ଷତ୍ରିୟମାନଙ୍କର ପ୍ରଭୂତ ଅଜେୟ ତେଜ ଓ ବଳ ବ୍ରାହ୍ମଣଙ୍କଠାରେ ପ୍ରଶମିତ ହୁଏ । ୨୪ । ବ୍ରହ୍ମଚର୍ଯ୍ୟ ମୃଦୁ ହେଲେ, କ୍ଷତ୍ରିୟବଳ ଦୁର୍ବଳ ହେଲେ ଓ ସମସ୍ତ ବର୍ଣ୍ଣ ବ୍ରାହ୍ମଣଙ୍କ ପ୍ରତି ବିରୁଦ୍ଧ ହେଲେ, ଯେଉଁମାନେ ବ୍ରାହ୍ମଣଙ୍କୁ ରକ୍ଷା କରିବା ନିମିତ୍ତ ଓ ଆତ୍ମରକ୍ଷାର୍ଥ ଜୀବନର ଆଶା ପରିତ୍ୟାଗ ପୂର୍ବକ ଶସ୍ତ୍ର ଗ୍ରହଣ କରି ଯୁଦ୍ଧ କରିବାକୁ ଉଦ୍ୟତ ହୁଅନ୍ତି, ସେହି ମନସ୍ୱୀ ମନ୍ୟୁବନ୍ତ ମନୁଷ୍ୟମାନେ ପୁଣ୍ୟଧାମକୁ ପ୍ରାପ୍ତ ହୁଅନ୍ତି । କାରଣ ବ୍ରାହ୍ମଣଙ୍କ ନିମିତ୍ତ ସମସ୍ତଙ୍କର ଅସ୍ତ୍ରଗ୍ରହଣ କରିବା ବିହିତ ଅଛି । ୨୭ ।

ହେ ଯୁଧିଷ୍ଠିର ! ଯଜ୍ଞ, ବେଦାଧ୍ୟୟନ, ତପସ୍ୟା, ଅନଶନ ଓ ଅଗ୍ନିପ୍ରବେଶକାରୀ ପୁରୁଷଙ୍କ ଅପେକ୍ଷା ବ୍ରାହ୍ମଣ ହିତୈଷୀ ଶୂରବରମାନେ ଉତ୍କୃଷ୍ଟ ଗତି ଲାଭ କରନ୍ତି । ୨୮ । ଏହି ପ୍ରକାରେ ବ୍ରାହ୍ମଣମାନେ କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ତିନିବର୍ଣ୍ଣ ନିମିତ୍ତ ଶସ୍ତ୍ର ଗ୍ରହଣ କଲେ ତାହା ଦୋଷାବହ ହୁଏ ନାହିଁ ଏବଂ ତନ୍ନିମିତ୍ତ ଆତ୍ମତ୍ୟାଗୀ ହେଲେ ତଦପେକ୍ଷା ଅନ୍ୟ ଉତ୍କୃଷ୍ଟ ଧର୍ମ କିଛି ହୋଇ ନ ପାରେ । ଏହିପରି ବଲ୍ଲକେ ବିବେଚନା କରନ୍ତି । ୨୯ ।

ମନୁ କହିଅଛନ୍ତି ଯେ ଯେଉଁମାନେ ସାଧାରଣଙ୍କ ରକ୍ଷାନିମନ୍ତେ ଯୁଦ୍ଧରୂପ ଅନଳରେ ନିଜ ନିଜ ଶରୀରକୁ ଆହୁତି ପ୍ରଦାନ କରନ୍ତି ଏବଂ ବ୍ରାହ୍ମଣଦ୍ୱେଷୀ ଲୋକମାନଙ୍କୁ ଦମନ କରନ୍ତି, ସେମାନଙ୍କୁ ନମସ୍କାର । କାରଣ ସେମାନେ ଏତାଦୃଶ କାର୍ଯ୍ୟଦ୍ୱାରା ନିଜର ମଙ୍ଗଳ ଓ ଆମ୍ଭମାନଙ୍କର ସଲୋକତା ଲାଭ କରିବାକୁ ଏବଂ ବ୍ରହ୍ମଲୋକ ଓ ସ୍ୱର୍ଗଲୋକ ଜୟ କରିବାକୁ ସମର୍ଥ ହୁଅନ୍ତି । ଅପିଚ ଯେପରି ମାନବଗଣ ଅଶ୍ୱମେଧ ଯଜ୍ଞର ଅବଭୃଥ ସ୍ନାନରେ ସ୍ନାତ ହୋଇ ପବିତ୍ର ହୁଅନ୍ତି ଏବଂ ସେମାନଙ୍କର ଦୁଷ୍କୃତ ସବୁ ଦୂରୀଭୂତ ହୁଏ, ତଦ୍ରୂପ ସମରରେ ଶସ୍ତ୍ରହତ ପୁରୁଷମାନେ ମଧ୍ୟ ପବିତ୍ର ହୁଅନ୍ତି ଏବଂ ସେମାନଙ୍କର ଦୁଷ୍କୃତମାନ ଦୂରୀଭୂତ ହୁଏ । ୩୧ ।

ହେ ରାଜନ ! ଦେଶକାଳର ବ୍ୟତିକ୍ରମ ହେଲେ, ସେହି ଦେଶକାଳ ଅନୁସାରେ ଧର୍ମାଧର୍ମର ମଧ୍ୟ ବ୍ୟତିକ୍ରମ ହୁଏ । ଅର୍ଥାତ୍ ଧର୍ମ ଅଧର୍ମ ଓ ଅଧର୍ମ ମଧ୍ୟ ଧର୍ମ ହୋଇଥାଏ । ୩୨ । ଦେଖ ଉତ୍ତଙ୍କ ଓ ଚରଣର ପ୍ରଭୃତି ମହର୍ଷିଗଣ ସର୍ପ ରାକ୍ଷସାଦି ଯଜ୍ଞାଦି କ୍ରୂର କର୍ମ କରି ସୁଦ୍ଧା ଅନୁତ୍ତମ ସ୍ୱର୍ଗଧାମ ଜୟ କରିଅଛନ୍ତି ଏବଂ ଧର୍ମଶୀଳ କ୍ଷତ୍ରିୟମାନେ ମଧ୍ୟ ପରଦ୍ରୋହାଦୋଷାଦି ପାପ କାର୍ଯ୍ୟକରି ପରମ ଗତି ପ୍ରାପ୍ତ ହୋଇଅଛନ୍ତି । ଆତ୍ମନାଶ, ବର୍ଣ୍ଣଦୋଷ, ଅର୍ଥାତ୍ କ୍ଷତ୍ରିୟାଦିମାନେ ଉତ୍ପଥଗାମୀ ହେଲେ ଓ ଦୁର୍ଦମ୍ୟ ଦସ୍ୟୁର ଦମନ ବିଷୟରେ ବ୍ରାହ୍ମଣ ସର୍ବଦା ଶସ୍ତ୍ର ଗ୍ରହଣ କଲେ ସୁଦ୍ଧା ତାହା ଦୋଷାବହ ହୁଏ ନାହିଁ । ୩୪ ।

ଯୁଧିଷ୍ଠିର କହିଲେ—ହେ ରାଜସତ୍ତମ ! ଦସ୍ୟୁବଳ ପ୍ରଜାପାଳନ ସକାଶେ ଅଭ୍ୟୁତ୍ଥିତ ହେଲେ, ବର୍ଣ୍ଣସଙ୍କରରେ ଅର୍ଥାତ୍ ପରସ୍ପର ଦାର ହରଣାଦି ବିଷୟରେ ପ୍ରବୃତ୍ତ ହେଲେ ଏବଂ ଲୋକମାନେ ସମ୍ପୂର୍ଣ୍ଣରୂପେ ମୂଢ଼ ହେଲେ ଯଦି କୌଣସି ବଳବାନ୍ ଅକ୍ଷତ୍ରିୟ ଦସ୍ୟୁବର୍ଗଙ୍କୁ ଅଭିଭବ କରନ୍ତି ଓ ବ୍ରାହ୍ମଣ, ବୈଶ୍ୟ ଓ ଶୂଦ୍ରଙ୍କ ମଧ୍ୟରେ କେହି ରାଜଧର୍ମାନୁସାରେ ଦଣ୍ଡଧାରଣ ପୂର୍ବକ ପ୍ରଜାଗଣଙ୍କ ରକ୍ଷା କରନ୍ତି, ତାହାହେଲେ ସେହିବ୍ୟକ୍ତି ରାଜକାର୍ଯ୍ୟ କରିବା ନିମିତ୍ତ ସମସ୍ତଙ୍କର ସ୍ୱାମୀ ହୋଇ ପାରନ୍ତି କି ନାହିଁ ଏବଂ ତନ୍ନିମିତ୍ତ କ୍ଷତ୍ରବନ୍ଧୁ ବ୍ୟତିରେକେ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କର ଶସ୍ତ୍ର ଗ୍ରହଣ କରିବା ଉଚିତ କି ନା ? । ୩୬ । ଭୀଷ୍ମ କହିଲେ—ଯେ ଅପାର ସମୁଦ୍ରର ପାର ଅର୍ଥାତ୍ ତୀର ସ୍ୱରୂପ ଏବଂ ପ୍ଲବବିହୀନ ବାରିଧି ମଧ୍ୟରେ ପ୍ଲବ ସ୍ୱରୂପ ଅଟନ୍ତି ସେ ଶୂଦ୍ର କିମ୍ବା ଯେ କୌଣସି ବର୍ଣ୍ଣ ହେଉନ୍ତୁ,

ଜନ ସମାଜରେ ସର୍ବଥା ସମ୍ମାନ ଭାଜନ ହୁଅନ୍ତି । ୩୮ । ହେ ରାଜନ୍ । ଯେଉଁ ଅନାଥ ମନୁଷ୍ୟମାନେ ଦସ୍ୟୁକର୍ତ୍ତୃକ ତାଡ଼ିତ ଓ ପରିପୀଡ଼ିତ ହୋଇ ଯାହାଙ୍କର ଆଶ୍ରୟ ଗ୍ରହଣ ପୂର୍ବକ ସୁଖରେ ଅବସ୍ଥାନ କରନ୍ତି, ସେମାନେ ସ୍ୱକୀୟ ବାନ୍ଧବ ପ୍ରାୟ ସେହି ରକ୍ଷା କର୍ତ୍ତାଙ୍କୁ ପ୍ରୀତ ସହକାରେ ପୂଜା କରନ୍ତି, କାରଣ ନିର୍ଭୀକ କର୍ତ୍ତା ଅନାଥ ବ୍ୟକ୍ତିମାନଙ୍କର ସର୍ବଦା ସମ୍ମାନନୀୟ ହୁଅନ୍ତି । ୪୦ । ଯେଉଁ ବୃଷଭ ଭାର ବହନରେ ଅସମର୍ଥ, ଯେଉଁ ଧେନୁ ଦୁଗ୍ଧ ଦାନରେ ବିମୁଖ, ଯେଉଁ ପତ୍ନୀ ପୁତ୍ର ପ୍ରସବରେ ପରାଙ୍ମୁଖୀ ଓ ଯେଉଁ ରାଜା, ପ୍ରଜା ପାଳନରେ ଅକ୍ଷମ ହୁଅନ୍ତି, ସେମାନଙ୍କ ଦ୍ୱାରା କୌଣସି ପ୍ରୟୋଜନ ସମ୍ପନ୍ନ ହୁଏ ନାହିଁ । ୪୧ ।

ହେ ପାର୍ଥ । ଦାରୁମୟ ହସ୍ତୀ, ଚର୍ମମୟ ମୃଗ, କ୍ଳୀବ ଜୀବ ଓ ଊଷର କ୍ଷେତ୍ର ଯେପରି ବିଫଳ ଅଟନ୍ତି, ଯେଉଁ ବ୍ରାହ୍ମଣ ବେଦାଧ୍ୟୟନ କରନ୍ତି ନାହିଁ, ଯେଉଁ ରାଜା ପ୍ରଜାପାଳନ କରନ୍ତି ନାହିଁ ଏବଂ ଯେଉଁ ମେଘ ବାରିବର୍ଷଣ କରନ୍ତି ନାହିଁ, ସେମାନଙ୍କୁ ମଧ୍ୟ ତଦ୍ରୂପ ବିଫଳ ବୋଲି ଜାଣିବ । ୪୨ । ଯେ ସତତ ସାଧୁମାନଙ୍କୁ ରକ୍ଷା କରନ୍ତି ଏବଂ ଅସତ୍ ଲୋକମାନଙ୍କୁ ଦମନ କରନ୍ତି, ତାହାଙ୍କୁ ରାଜା କରିବା କର୍ତ୍ତବ୍ୟ; କାରଣ ତାଦୃଶ ବ୍ୟକ୍ତି ଏହି ସମଗ୍ର ପୃଥିବୀକୁ ଧାରଣ କରିବାରେ ସମର୍ଥ ହୁଅନ୍ତି । ୪୪ ।

---

## ଅଧ୍ୟାୟ—୭୯

ଯୁଧିଷ୍ଠିର କହିଲେ—ହେ ବକ୍ତୃପ୍ରବର ପିତାମହ । ଋତ୍ୱିକମାନଙ୍କର କର୍ତ୍ତବ୍ୟ କର୍ମ କଣ ଏବଂ ସେମାନଙ୍କର ସ୍ୱଭାବ ଓ ଗୁଣ କିପରି ହେବା ଉଚିତ, ତାହାଁ ବିସ୍ତାର କରି କହନ୍ତୁ । ୧ ।

ଭୀଷ୍ମ କହିଲେ—ଛନ୍ଦ, ଋକ୍, ଯଜୁ, ସାମ ଓ ଶ୍ରୁତ ଅର୍ଥାତ୍ ମୀମାଂସା ଶାସ୍ତ୍ରବିତ୍ ଋତ୍ୱିକ ବ୍ରାହ୍ମଣମାନେ ରାଜାମାନଙ୍କର ପ୍ରତିକର୍ମ, ଅର୍ଥାତ୍ ଶାନ୍ତିକ, ପୌଷ୍ଟିକାଦି କର୍ମ କରିବେ । ଏହାହିଁ ସେମାନଙ୍କର କର୍ତ୍ତବ୍ୟ କର୍ମ । ୨ । ପୁନଶ୍ଚ ସେମାନଙ୍କର କିଦୃଶ ସ୍ୱଭାବ ହେବା ଉଚିତ ଯେ ସେମାନେ ରାଜବଂଶଙ୍କ ପ୍ରତି ନିୟତ ଏକମାତ୍ର ଅନୁରାଗୀ ହୋଇ, ପ୍ରିୟ ବାକ୍ୟ କେତେବେଳେ ପରସ୍ପର ପ୍ରତି ସୌହୃଦ୍ୟାଚରଣ ଓ ସମସ୍ତଙ୍କୁ

ସମଭାବରେ ଦର୍ଶନ କରିବେ । ୭ । ଅପିଚ ଋତ୍ୱିକମାନେ ଅନୃଶଂସ, ସତ୍ୟବାଦୀ ଅର୍ଥ ପ୍ରୟୋଗ ବିହୀନ, ସରଳ, ପରୋପକାର ଶୂନ୍ୟ, ଅନଭିମାନୀ ଲଜ୍ଜା, ତିତିକ୍ଷା, ଦମ ଓ ଶମଗୁଣ ସମ୍ପନ୍ନ, ଧୀମାନ୍ ସତ୍ୟବ୍ରତ ନିଷ୍ଠ, ଦାନ୍ତ, ପ୍ରାଣି ହିଂସାରହିତ, କାମ ଓ ଦ୍ୱେଷ ବିହୀନ, ନିର୍ଦ୍ଦୋଷ ଶ୍ରୁତ ବୃତ୍ତ ଓ ବଂଶ ସମନ୍ୱିତ ଅହିଂସକ ଓ ଜ୍ଞାନତୃପ୍ତ ହେଲେ, ସେମାନେ ବ୍ରହ୍ମାସନ ଲାଭ କରିବାକୁ ସମର୍ଥ ହେବେ ଏବଂ ଯଥା ଯୋଗ୍ୟରେ ମାନନୀୟ ଅର୍ଥାତ୍ ଧନାଦିଦ୍ୱାରା ଆରାଧନୀୟ ହେବେ । ୮ ।

ଯୁଧିଷ୍ଠିର ବୋଇଲେ—ଯଜ୍ଞରେ ଦକ୍ଷିଣା ଦେବା ବିଷୟରେ ଯେଉଁ ବେଦବାକ୍ୟ ବିହିତ ହୋଇଅଛି, ତହିଁରେ କେତେ ପରିମାଣରେ ଦକ୍ଷିଣା ଦେବା ଉଚିତ, ତାଦୃଶ କୌଣସି ନିୟମ ଅବଧାରିତ ହୋଇ ନାହିଁ । ୭ । ଡଳିମିତ୍ତ ଦ୍ୱାଦଶଶତ ଦକ୍ଷିଣା ବିଧାୟକ ଶାସ୍ତ୍ର ଧନ ବିଭାଗାଭିପ୍ରାୟରେ ବିହିତ ହୋଇ ନାହିଁ । କିନ୍ତୁ ଆପଦ୍ଧର୍ମ୍ମାନୁସାରେ ସର୍ବସ୍ୱ ଦକ୍ଷିଣା ବିହିତ ହୋଇଅଛି । ଏପରି ଅବସ୍ଥାରେ ଶାସ୍ତ୍ରର ଏହି ଶାସନ ଭୟଙ୍କର ଅଟେ । ତହିଁରେ ସମର୍ଥା ସମର୍ଥ ଅପେକ୍ଷିତ ହେବାର ସମ୍ଭାବନା ନାହିଁ । ସୁତରାଂ ଦରିଦ୍ର ବ୍ୟକ୍ତିର ମଧ୍ୟ ଯଜ୍ଞାଦି ହୁଅନ୍ତା ନାହିଁ । ୮ । ବୈଦିକରେ ଶ୍ରୁତ ଅଛି ଯେ ଶ୍ରଦ୍ଧାବାନ୍ ବ୍ୟକ୍ତି ଯଜ୍ଞ କରିବେ, ପରନ୍ତୁ ପ୍ରକୃତ ଦକ୍ଷିଣା ଗୋ ପରିବର୍ତ୍ତିରେ ଅନୁକଳ୍ପ ଚରୁଦାନ କଲେ ତାହା ମିଥ୍ୟା ହୁଏ । ତାଦୃଶ ମିଥ୍ୟା ଦକ୍ଷିଣାଯୁକ୍ତ ଯଜ୍ଞରେ ଶ୍ରଦ୍ଧା କରିବ କାହିଁକି ? ୯ ।

ଭୀଷ୍ମ କହିଲେ—ବେଦ ବାକ୍ୟରେ ଅବଜ୍ଞା, ଶଠତା ଓ ମାୟାଦ୍ୱାରା କେହି କଦାପି ପରମ ପଦ ପ୍ରାପ୍ତ ହୁଅନ୍ତି ନାହିଁ । ଅତଏବ ତୁମ୍ଭର ଏପରି ବୁଦ୍ଧି ନ ହେଉ । ୧୦ । ହେ ତାତ । ଦକ୍ଷିଣା ଯଜ୍ଞର ଅଙ୍ଗ ଓ ବେଦ-ମାନଙ୍କର ପୁଷ୍ଟି କାରକ । ଅତଏବ ଅଦକ୍ଷିଣ ଯଜ୍ଞ କଦାପି ଉଦ୍ଧାର କରିବାକୁ ସମର୍ଥ ହୁଅନ୍ତି ନାହିଁ । ୧୧ ।

ହେ ତାତ । ଦରିଦ୍ରମାନଙ୍କର ପୂର୍ଣ୍ଣପାତ୍ର ଦକ୍ଷିଣା ଦ୍ୱାଦଶଶତ ଦକ୍ଷିଣାଠାରୁ ସମଧିକ ଫଳଦାୟକ ଅଟେ । ଅତଏବ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନିବର୍ଣ୍ଣର ଯଥାବିଧି ଯାଗ କରିବା ଅବଶ୍ୟ କର୍ତ୍ତବ୍ୟ ।୧୨ । ବେଦରେ ଏହିପରି ସ୍ଥିତ ଅଛି ଯେ ସୋମ ବ୍ରାହ୍ମଣମାନଙ୍କର ଅତ୍ୟନ୍ତ

ଶ୍ରେଷ୍ଠ ପଦାର୍ଥ । ପରନ୍ତୁ ସେମାନେ ଯଜ୍ଞାଦି ନିମିତ୍ତ ତାହା ସୁଦ୍ଧା ବିକ୍ରୟ କରିବାକୁ ବାଞ୍ଛା କରନ୍ତି । ଅକାରଣ ବିକ୍ରୟରେ ସେମାନଙ୍କର ପ୍ରବୃତ୍ତି ହୋଇନଥାଏ ନାହିଁ । ଧର୍ମଶୀଳ ଋଷିମାନେ ଧର୍ମତଃ ଏହିପରି ଧ୍ୟାନ କରନ୍ତି ଯେ ସୋମ ବିକ୍ରୟ ଲବ୍‌ଧ ଧନଦ୍ୱାରା, ଯେଉଁ ସୋମ ଯଜ୍ଞ କ୍ରୀତ ହୁଏ, ତାହା କ୍ରମଶଃ ବିସ୍ତୃତ ହେଉଥାଏ । ପୁରୁଷ ନ୍ୟାୟବୃତ୍ତି, ଅର୍ଥାତ୍ ଚେଷ୍ଟା-ଶୂନ୍ୟ ହେଲେ, ତାହାଙ୍କର ସୋମ ଓ ଯଜ୍ଞ ସମ୍ପନ୍ନ ହୁଏ. କିନ୍ତୁ ଅନ୍ୟାୟ ବୃତ୍ତି ହେଲେ ତାହାଙ୍କର ଐହିକ କିମ୍ବା ପାରତ୍ରିକ କୌଣସି କାର୍ଯ୍ୟକୁ ସୁଦ୍ଧା ସିଦ୍ଧ ହୁଏ ନାହିଁ । ୧୫ ।

ଆମ୍ଭେମାନେ ଏହିପରି ଶ୍ରୁତି ଶ୍ରବଣ କରିଅଛୁ ଯେ ତପସ୍ୟା, ଯଜ୍ଞ ଅପେକ୍ଷା ଶ୍ରେଷ୍ଠ ଅଟେ । ଅତଏବ ସେହି ତପସ୍ୟାର ବିବରଣ କହୁଅଛୁଁ, ତାହା ଶ୍ରବଣ କର । ୧୭ । ପଣ୍ଡିତମାନେ ଅହିଂସା, ସତ୍ୟବଚନ, ଆନୃଶଂସ୍ୟ ଦମ ଓ ଘୃଣା ଏହି ସମସ୍ତଙ୍କୁ ତପସ୍ୟା ବୋଲି ବୋଧ କରନ୍ତି । ଉପବାସ ଦ୍ୱାରା ଶରୀର ଶୋଷଣ କରିବାକୁ ସେମାନେ ତପସ୍ୟା ରୂପରେ ଗଣନା କରନ୍ତି ନାହିଁ । ୧୮ । ବେଦ ବାକ୍ୟରେ ଅପ୍ରାମାଣ୍ୟ ଶାସ୍ତ୍ର ସମୂହର ଲଙ୍ଘନ ଓ ସର୍ବବିଷୟ ଅବ୍ୟବସ୍ଥା କଲେ ତଦ୍ଦ୍ୱାରା ଆତ୍ମାର ନାଶ ହୁଏ । ୧୯ ।

ହେ ପାର୍ଥ ! ଯଜ୍ଞରେ ସ୍ରୁକ୍ ଓ ଆଦ୍ୟ ପ୍ରଭୃତି ଯେପରି ବାହ୍ୟ ଉପକରଣ ସବୁ ବିହିତ ଅଛି, ଅନ୍ତରରେ ମଧ୍ୟ ସେହିପରି ଚିତ୍ତ ଅର୍ଥାତ୍ ଜୀବ ବ୍ରହ୍ମର ଏକୀକରଣ ସାଧନ ଯୋଗକୁ ସ୍ରୁକ୍ ଓ ଚିତ୍ତକୁ ଆଦ୍ୟ ରୂପରେ ଜ୍ଞାନ କରିବା ହୁଏ, ଏହି ଜ୍ଞାନକୁ ଅତି ପବିତ୍ର ବୋଲି ବୋଧ କରିବ । ୨୦ । ସର୍ବ ପ୍ରକାର ଶଠତା ମୃତ୍ୟୁର ଆସ୍ପଦ ଅର୍ଥାତ୍ ଅନିତ୍ୟ ଅଟେ ଏବଂ ସରଳତା ବ୍ରହ୍ମପଦ ଅର୍ଥାତ୍ ନିତ୍ୟ ଅଟେ । ଏହାହିଁ ଜ୍ଞାନର ବିଷୟ ଅଟେ । ଏଥିରେ ପ୍ରଳାପ କିଛି ସୁଦ୍ଧା କରି ପାରେ ନାହିଁ । ୨୧ ।

---

## ଅଧ୍ୟାୟ—୮୦

ଯୁଧିଷ୍ଠିର କହିଲେ—ହେ ପିତାମହ ! ଯେତେବେଳେ ଅଳ୍ପତର କର୍ମ୍ମ ସୁଦ୍ଧା ଏକାକୀ ଅସହାୟ ପୁରୁଷ ଦ୍ୱାରା ସମ୍ପନ୍ନ ହେବା ଦୁଷ୍କର ଅଟେ, ସେତେବେଳେ ଏକାକୀ ନୃପତି ଦ୍ୱାରା ସମୁଦାୟ କାର୍ଯ୍ୟ କୌଣସି ଉପାୟରେ ସୁଦ୍ଧା ନିର୍ବାହ ହୋଇ ନ ପାରେ, ଅତଏବ ନୃପତି କି ପ୍ରକାର ଆଚାର ଓ କୀଦୃଶ ସ୍ୱଭାବାପନ୍ନ ପୁରୁଷଙ୍କୁ ସଚିବ ପଦରେ ନିଯୁକ୍ତ କରିବେ ଓ କିପରି ଲୋକ ପ୍ରତି ବିଶ୍ୱାସ କରିବେ ଏବଂ କିପରି ଲୋକଙ୍କୁ ଅବିଶ୍ୱାସ କରିବେ ? ୨ ।

ଭୀଷ୍ମ କହିଲେ—ହେ ରାଜନ୍ ! ରାଜାମାନଙ୍କର ସହାର୍ଥ, ଭଜମାନ, ସହଜ ଓ କୃତ୍ରିମ ଏହି ଚତୁର୍ବିଧ ମିତ୍ର ଅଛନ୍ତି; ତନ୍ମଧ୍ୟରେ ଯେ ରାଜାଙ୍କ-ଠାରେ ଏହିପରି ସ୍ୱୀକୃତ ହୁଅନ୍ତି ଯେ ଏହି ଶତ୍ରୁକୁ ଆମ୍ଭେ ଦୁହେଁ ଉନ୍ମୂଳିତ କରିବା ଓ ଏହି ଶତ୍ରୁରାଜ୍ୟକୁ ଆମ୍ଭେ ଦୁହେଁ ବିଭାଗ କରି ଗ୍ରହଣ କରିବା, ସେହି ସେ ସହାର୍ଥ ମିତ୍ର ଅଟନ୍ତି । ଯେ ପିତୃ ପୈତାମହ କ୍ରମରେ ବିଦ୍ୟମାନ ଥାନ୍ତି ସେ ଭଜମାନ ଅଟନ୍ତି । ମାତୃସ୍ୱସ୍ରାଦି ସହଜ ମିତ୍ର ଅଟନ୍ତି ଏବଂ ଯେ ଧନାଦି ଦ୍ୱାରା ଆବର୍ଜିତ ସେ କୃତ୍ରିମ ମିତ୍ର ଅଟନ୍ତି ।୩। ଅପିଚ ଯେ ଧର୍ମ୍ମାତ୍ମା, ଅପକ୍ଷପାତୀ, ଉଭୟଙ୍କଠାରୁ ବେତନ ଗ୍ରହଣ କରିବା ଅଭିପ୍ରାୟରେ କପଟତା ନ କରନ୍ତି ଏବଂ ଧର୍ମ୍ମର ପକ୍ଷପାତୀ ହୋଇ ତଦନୁ-ସାରେ ଧର୍ମ୍ମ ପଥରେ ବିଦ୍ୟମାନଥାନ୍ତି, ସେ ରାଜାମାନଙ୍କର ପଞ୍ଚମ ମିତ୍ର ଅଟନ୍ତି । ୪ । ଯେଉଁ ବିଷୟ ରାଜାଙ୍କର ଅଭିଳଷିତ ନୁହେ, ମିତ୍ରମାନେ ତାହାଙ୍କଠାରେ କଦାପି ତାହା ପ୍ରକାଶ କରିବେ ନାହିଁ, କାରଣ ବିଜିଗୀଷୁ ନୃପତିଗଣ ଧର୍ମ ଓ ଅଧର୍ମ୍ମ ସହିତ ବିଚରଣ କରନ୍ତି । ୫ । ପୂର୍ବୋକ୍ତ ମିତ୍ର ଚତୁଷ୍ଟୟଙ୍କ ମଧ୍ୟରେ ଭଜମାନ ଓ ସହଜ ମିତ୍ର ଶ୍ରେଷ୍ଠ ଅଟନ୍ତି, ଏମାନେ କାର୍ଯ୍ୟ ବିଷୟରେ ଶଙ୍କାସ୍ପଦ ହୁଅନ୍ତି କିନ୍ତୁ ସହାର୍ଥ ଓ କୃତ୍ରିମ ମିତ୍ରଙ୍କୁ ସତତ ଶଙ୍କା କରିବା କର୍ତ୍ତବ୍ୟ । କାରଣ ସହାର୍ଥ ବଳମାନ ଯେବେ ହୋଇଥାଏ ତାହାହେଲେ ସମସ୍ତ ଅପହରଣ କରିବା ଇଚ୍ଛା କରେ, କୃତ୍ରିମ ବିଶେଷ ଧନ ଲାଭ ହେଲେ ପରକୀୟ ହୋଇଯାଏ । ବିଶେଷତଃ ଦୁଷ୍ଟ ଅମାତ୍ୟ ବର୍ଗଙ୍କର ନିଗ୍ରହାଦି କାର୍ଯ୍ୟ ସମସ୍ତ ଏମାନଙ୍କ ସମକ୍ଷରେ ନ କରି ସ୍ୱୟଂ ସମ୍ପାଦନ କରିବେ । ୬ ।

ରାଜା ମିତ୍ର ରକ୍ଷଣରେ କଦାପି ଅନବଧାନ କରିବେ ନାହିଁ, କାରଣ ଲୋକେ ଅନବହିତ ରାଜା ନରପତିଙ୍କୁ ପରାଭବ କରନ୍ତି । ଅପିଚ ରାଜା ଅନବହିତ ରାଜା ହେଲେ, ଅସାଧୁ ଲୋକେ ସାଧୁ, ସାଧୁଲୋକେ ଅସାଧୁ, ଶତ୍ରୁମାନେ ମିତ୍ର ଓ ମିତ୍ରମାନେ ଶତ୍ରୁ ହୋଇଥାନ୍ତି । ୮ । ଅନବସ୍ଥିତ ଚିତ୍ତ ପୁରୁଷଙ୍କୁ କେହି କଦାପି ବିଶ୍ୱାସ କରେନାହିଁ । ଅତଏବ ଯେଉଁ ପ୍ରଧାନ କାର୍ଯ୍ୟ ତାହାକୁ ପ୍ରତ୍ୟକ୍ଷରେ ସମ୍ପାଦନ କରିବ । ୯ । ସମସ୍ତଙ୍କ ପ୍ରତି ଏକାନ୍ତ ବିଶ୍ୱାସକଲେ ଧର୍ମ ଓ ଅର୍ଥର ନାଶହୁଏ ଏବଂ ସର୍ବତ୍ର ଅବିଶ୍ୱାସ କରିବା ମଧ୍ୟ ମୃତ୍ୟୁ ତୁଲ୍ୟହୁଏ ।୧୦। ଅତିଶୟ ବିଶ୍ୱାସ ଅକାଳ-ମୃତ୍ୟୁର କାରଣ ଅଟେ । ଅତିଶୟ ବିଶ୍ୱାସକଲେ ବିପଦଗ୍ରସ୍ତ ହେବାକୁ ହୁଏ ଯେଣୁ ଯାହାକୁ ଅତିଶୟ ବିଶ୍ୱାସ କରିବ, ସେ ଇଚ୍ଛା କଲେ ଜୀବନ ବିନାଶକରେ ନତୁବା ଜୀବିତ ଥିବାର ପ୍ରତ୍ୟାଶା ଥାଏନାହିଁ ।୧୧।

ଅତଏବ ହେ ତାତ ! ବ୍ୟକ୍ତି ବିଶେଷରେ ବିଶ୍ୱାସ ଓ ବ୍ୟକ୍ତି ବିଶେଷରେ ଅବିଶ୍ୱାସ କରିବ । ଏହାହିଁ ନୀତିର ଗତି ଏବଂ ଏହାକୁ ସର୍ବଦା ଲକ୍ଷ୍ୟ କରିବା କର୍ତ୍ତବ୍ୟ । ୧୨ । ଯାହାଙ୍କୁ ଦେଖିବ ଯେ ଆପଣର ଅବିଦ୍ୟମାନରେ ସେହି ରାଜା ହେବେ, ସେ ପ୍ରତିବେଶୀ ଭ୍ରାତା କିମ୍ବା ପୁତ୍ରହେଲେ ସୁଦ୍ଧା ତାହାଙ୍କୁ ସର୍ବଦା ଭୟ କରିବା କର୍ତ୍ତବ୍ୟ, କାରଣ ପଣ୍ଡିତଗଣ ତାଦୃଶ ଲୋକମାନଙ୍କୁ ଅମିତ୍ରବୋଲି ବୋଧ କରନ୍ତି । ୧୩ । ଯେଉଁ ବ୍ୟକ୍ତି ନିଜ କ୍ଷେତ୍ରର ଜଳ ଅପରବ୍ୟକ୍ତିର କ୍ଷେତ୍ରକୁ ଗମନ କରିବ ବୋଲି ଇଚ୍ଛାପୂର୍ବକ ସେତୁ ସମସ୍ତ ଦୃଢ଼ରୂପରେ ବନ୍ଧକରି ଜଳାଭାବରେ ଅନ୍ୟବ୍ୟକ୍ତିର ଅନିଷ୍ଟ ହେଲେ ସୁଦ୍ଧା କଦାଚ ଜଳ ବହିର୍ଗତ ହେବାକୁ ଦିଏନାହିଁ ଏବଂ ପୁନଶ୍ଚ କ୍ରମଶଃ ଜଳବୃଦ୍ଧି ହେଲେ ଅତିଶୟ ଜଳଦ୍ୱାରା ନିଜର ଅନିଷ୍ଟ ହେବା ଆଶଙ୍କାରେ ସେତୁଭେଦ କରିବାକୁ ଇଚ୍ଛାକରେ, ତାଦୃଶ ଲକ୍ଷଣଯୁକ୍ତ ବ୍ୟକ୍ତିକୁ ଅମିତ୍ର ବୋଲି ଜାଣିବ । ଅର୍ଥାତ୍ ମହାନ୍ ଶତ୍ରୁ ବିଷୟରେ ଯେ ଉତ୍ତମ ରୂପରେ ସୀମାକୁ ପାଳନ କରିବ ସେପରି ବ୍ୟକ୍ତିକୁ ନିଯୁକ୍ତ କରିଯାଏ । ସେ ଯେବେ ପରକୀୟ ରାଷ୍ଟ୍ରରୁ ଉତ୍ତମ ପଣ୍ୟପଦାର୍ଥ ଲାଭଦ୍ୱାରା ନିଜ ରାଜ୍ୟକୁ ସୁଖଭୁକ୍ କରି ସୀମା ତ୍ୟାଗକରେ; ତାହାହେଲେ ଶତ୍ରୁ ପ୍ରବେଶ ଦ୍ୱାରା ନିଜରାଜ୍ୟ ନଷ୍ଟହୁଏ । ଅତଏବ ସେହି ସୀମାନ୍ତ ରକ୍ଷକ ମଧ୍ୟ ଶତ୍ରୁ ।୧୪।

ଯେଉଁ ପୁରୁଷ ରାଜାଙ୍କର ଅର୍ଥ ବୃଦ୍ଧିରେ ପରିତୃପ୍ତ ହୁଅନ୍ତିନାହିଁ, ଅଥଚ କ୍ଷୟହେଲେ ଅତିଶୟ ଦୁଃଖିତ ହୁଅନ୍ତି, ପଣ୍ଡିତମାନେ ତାହାଙ୍କୁ ଉତ୍ତମ ମିତ୍ରବୋଲି କହନ୍ତି ।୧୬। ଯାହାକୁ ଜାଣିବ ଯେ ନିଜର ଅଭାବହେଲେ, ସେହି ବ୍ୟକ୍ତିର ମଧ୍ୟ ଅଭାବହେବ, ତାହାଙ୍କୁ ପିତାସଦୃଶ ବିଶ୍ୱାସ କରିବ ଏବଂ ସ୍ୱୟଂ ବର୍ଦ୍ଧମାନ ହୋଇ ସାମର୍ଥ୍ୟ ଅନୁସାରେ ତାହାଙ୍କୁ ମଧ୍ୟ ସର୍ବୋତୋଭାବରେ ବର୍ଦ୍ଧିତ କରିବ । ଯେଉଁ ବ୍ୟକ୍ତି ଧର୍ମକର୍ମର କ୍ଷୟକୁ ନିତ୍ୟ ନିବାରଣ କରେ, ସେହି କ୍ଷୟଭୀତ ବ୍ୟକ୍ତିଙ୍କୁ ଉତ୍ତମ ମିତ୍ରବୋଲି ଜ୍ଞାନ କରିବ ଏବଂ ଯେଉଁମାନେ ତାହାଙ୍କର କ୍ଷୟକୁ ଇଚ୍ଛାକରନ୍ତି, ସେମାନେ ତାହାଙ୍କର ଶତ୍ରୁରୂପରେ ପରିଗଣିତ ହୁଅନ୍ତି । ୧୯ । ଯେଉଁ ମାନବ ବ୍ୟସନରୁ ନିତ୍ୟ ଭୀତହୁଏ ଏବଂ ଧନଦ୍ୱାରା କାହାର ସୃଦ୍ଧା ଅନିଷ୍ଟ କରେନାହିଁ, ତାଦୃଶ ଲୋକ ମିତ୍ରହେଲେ ତାହାଙ୍କୁ ଆତ୍ମତୁଲ୍ୟ ଜ୍ଞାନ କରିବ ।୨୦।

ଯେଉଁ ବ୍ୟକ୍ତି ରୂପ, ବର୍ଣ୍ଣ ଓ ସ୍ୱର ସମନ୍ୱିତ, ତିତିକ୍ଷୁ, ଅସୂୟାଶୂନ୍ୟ ସତ୍କୁଳ ସମ୍ଭୂତ ଓ କୁଳସମ୍ପନ୍ନ ଅଟନ୍ତି, ତାହାଙ୍କୁ ପୂର୍ବୋକ୍ତ ମିତ୍ର ଅପେକ୍ଷା ପ୍ରଧାନ ବୋଲି ଜାଣିବ ।୨୧। ଯେ ମେଧାବୀ, ସ୍ମୃତିମାନ୍, ଦକ୍ଷ, ସ୍ୱଭାବତଃ ଅନୃଶଂସ ଏବଂ ସମ୍ମାନିତ କିମ୍ବା ଅବମାନିତ ହେଲେ କଦାଚ କାହାର ଅପକାର କରନ୍ତି ନାହିଁ, ସେ ଋତ୍ୱିକ, ଆଚାର୍ଯ୍ୟ, କିମ୍ବା ଅତ୍ୟନ୍ତ ସଂସ୍କୃତ ସଖା ହେଲେ ହେଁ ଅମାତ୍ୟ ହୋଇ ତୁମ୍ଭ ଗୃହରେ ବାସ କଲେ ତାହାଙ୍କୁ ସମଧିକ ସମ୍ମାନ କରିବାକୁ ହେବ । ୨୩ । ସେ ତୁମ୍ଭର ପରମ ମନ୍ତ୍ର ଓ ଧର୍ମ୍ମ ଅର୍ଥର ପ୍ରକୃତ ବୋଲି ଜାଣିବ ଏବଂ ତୁମ୍ଭେ ମଧ୍ୟ ତାହାଙ୍କୁ ପିତୃତୁଲ୍ୟ ବିଶ୍ୱାସ କରିବ ।୨୪। ଏକ କାର୍ଯ୍ୟରେ ଦୁଇ କିମ୍ବା ତିନିଜଣ ଅଧ୍ୟକ୍ଷ ହେଲେ, ସେମାନେ ପରସ୍ପର ପରସ୍ପରର ଦୋଷକୁ କ୍ଷମା କରନ୍ତି ନାହିଁ; ସୁତରାଂ ଏକ କାର୍ଯ୍ୟରେ ଅଧିକ ଅଧ୍ୟକ୍ଷ ନିଯୁକ୍ତ କରିବା କର୍ତ୍ତବ୍ୟ ନୁହେଁ । କାରଣ ପ୍ରାଣି ମାନଙ୍କର ପରସ୍ପର ସର୍ବଦା ବିଭିନ୍ନତା ହୋଇଥାଏ । ୨୫ । ଯେଉଁ ବ୍ୟକ୍ତି ସତ୍କୀର୍ତ୍ତିମାନଙ୍କରେ ଅଗ୍ରଗଣ୍ୟ ହୋଇ ଅଛନ୍ତି, ଯେ ନୀତିର ବହିର୍ଭୂତ ନୁହନ୍ତି, ଯେ ସମର୍ଥ ମାନବଗଣଙ୍କର ଦ୍ୱେଷ ଓ ଅନର୍ଥାଚରଣ କରନ୍ତି ନାହିଁ; ଯେ କାମ, କ୍ରୋଧ, ଭୟ ଓ ଲୋଭବଶତଃ ସ୍ୱଧର୍ମକୁ ପରିତ୍ୟାଗ କରନ୍ତି ନାହିଁ, ଏବଂ ଯେ ସର୍ବକାର୍ଯ୍ୟରେ ଦକ୍ଷତା ପର୍ଯ୍ୟାପ୍ତ ବାଗ୍ମୀ ଅଟନ୍ତି, ସେ ତୁମ୍ଭର ପ୍ରଧାନ ମିତ୍ର ହେବେ । ୨୬ । ଅପିଚ ଯେଉଁମାନେ କୁଳୀନ, ସତ୍ ସ୍ୱଭାବାପନ୍ନ, କ୍ଷମାବାନ୍, ଆତ୍ମଶ୍ଲାଘା ବିରହିତ, ଶୂର, ଆର୍ଯ୍ୟ, ବିଦ୍ୱାନ,

କାର୍ଯ୍ୟା କାର୍ଯ୍ୟ ବିବେକ କୁଶଳ, ସର୍ବ କର୍ମରେ ଅବସ୍ଥିତ, ହିସ୍ଥାନଜ୍ଞ, ହିତଭକ୍ତ, ସୁପ୍ରଜ୍ଞାଯୁକ୍ତ ସମ୍ପନ୍ନ ଓ ସତ୍କର୍ମଶାଳୀ ଅଟନ୍ତି, ସେମାନଙ୍କୁ ଅମାତ୍ୟ ପଦରେ ନିଯୁକ୍ତ କରିବା କର୍ତ୍ତବ୍ୟ । ୨୯ ।

ହେ ରାଜନ୍ ! ଏତାଦୃଶ ଲୋକମାନେ ପ୍ରତିରୂପ ଅର୍ଥାତ୍ ଆୟବ୍ୟୟ ସଂକଳନାଦି କାର୍ଯ୍ୟରେ ଓ ଯାବତୀୟ ପ୍ରଧାନ ରାଜକାର୍ଯ୍ୟରେ ଅଧିକୃତ ହେଲେ ଶ୍ରେୟୋବର୍ଦ୍ଧନ କରନ୍ତି । ୩୦ । ଏମାନେ ସତତ ସ୍ପର୍ଦ୍ଧାମାନ ହୋଇ ନିର୍ଜ୍ଜନରେ ସମସ୍ତ କାର୍ଯ୍ୟ ସମ୍ପାଦନ କରନ୍ତି ଏବଂ ପରସ୍ପର କଥୋପ-କଥନ କରି ପ୍ରୟୋଜନ ସବୁ ସିଦ୍ଧ କରନ୍ତି । ୩୦ ।

ହେ ମହାବାହୋ ! ମୃତ୍ୟୁ ସଦୃଶ ଜ୍ଞାତିଗଣଙ୍କୁ ସର୍ବଦା ଭୟ କରିବ । ଯେ ହେତୁ ଜ୍ଞାତିମାନେ ସମୀପବର୍ତ୍ତୀ ସାମନ୍ତଙ୍କ ପ୍ରାୟ ରାଜଋଦ୍ଧିକୁ ସର୍ବଦା ସହ୍ୟ କରନ୍ତି ନାହିଁ, ପରନ୍ତୁ ଜ୍ଞାତି ସରଳ, ମୃଦୁ, ବଦାନ୍ୟ, ଲଜ୍ଜାଶୀଳ ଓ ସତ୍ୟବାଦୀ ହେଲେ, କେହି ତାହାଙ୍କର ବିନାଶାଭିଳାଷ କରନ୍ତି ନାହିଁ ।୩୩। ଜ୍ଞାତିହୀନ ମନୁଷ୍ୟମାନଙ୍କର ସୁଖହିଁ ନାହିଁ । ଜ୍ଞାତିହୀନ ମନୁଷ୍ୟ ସମସ୍ତଙ୍କର ଅବଜ୍ଞାସ୍ପଦ ହୁଅନ୍ତି ଏବଂ ଅଜ୍ଞାତିମନ୍ତ ପୁରୁଷମାନଙ୍କୁ ଶତ୍ରୁମାନେ ପରାଭବ କରନ୍ତି । ୩୪ । କେହି ଅନ୍ୟ ବ୍ୟକ୍ତି କର୍ତ୍ତୃକ ଅବମାନିତ ହେଲେ ଜ୍ଞାତି ତାହାଙ୍କର ଆଶ୍ରୟ ହୁଅନ୍ତି ଏବଂ ଜ୍ଞାତି ଜ୍ଞାତିଙ୍କର ଅନାକୃତ ପରାଭବକୁ କଦାପି ସହ୍ୟ କରନ୍ତି ନାହିଁ । ୩୫ । କୌଣସି ପୁରୁଷ ବନ୍ଧୁଗଣ କର୍ତ୍ତୃକ ଅବମାନିତ ହେଲେ ତାହାଙ୍କର ଜ୍ଞାତିମାନେ ନିଜକୁ ଅବମାନିତ ବିବେଚନା କରନ୍ତି ଏବଂ ବନ୍ଧୁବର୍ଗ ଶତଗୁଣରେ ବର୍ଦ୍ଧିତ ହେଲେ ହେଁ ସେମାନଙ୍କୁ ଅଳ୍ପଗୁଣ ବିବେଚନା କରି ନିଜକୁ ତଦପେକ୍ଷା ବହୁଗୁଣରେ ବର୍ଦ୍ଧିତ ବୋଲି ବୋଧ କରନ୍ତି । ୩୬ । ଜ୍ଞାତିହୀନମାନବ ତାହାକୁ ସ୍ନେହ ଅନୁଗ୍ରହ କରନ୍ତି ନାହିଁ । ଜ୍ଞାତିବିହୀନ ମନୁଷ୍ୟ କାହାରିଠାରେ ନତ ହୁଅନ୍ତି ନାହିଁ, ଜ୍ଞାତି ବୃନ୍ଦଙ୍କ ମଧ୍ୟରେ ସାଧୁ ଓ ଅସାଧୁ ଉଭୟ ଦୃଷ୍ଟ ହୁଏ ! ୩୭ ।

ଅତଏବ ବାକ୍ୟ ଓ କର୍ମଦ୍ୱାରା ସର୍ବଦା ଜ୍ଞାତିବର୍ଗଙ୍କର ସମ୍ମାନ, ପୂଜା ଓ ପ୍ରିୟ କାର୍ଯ୍ୟ କରିବ । କଦାପି ଅନିଷ୍ଟାଚରଣ କରିବ ନାହିଁ ।୩୮। ସେମାନଙ୍କୁ ସତତ ବିଶ୍ୱାସ ଦେଖାଇ ନିଜେ ଅବିଶ୍ୱାସ ଭାବରେ ଥିବ ଏବଂ ତାହାଙ୍କର ସାମାନ୍ୟ ଦୋଷ ଗୁଣ ନିରୂପଣ କରି ଦେଖିବ ନାହିଁ । ହେ ରାଜନ୍ ! ଯେଉଁ ପୁରୁଷ ପ୍ରମାଦବିହୀନ ହୋଇ ଏହିପରି ଅବସ୍ଥାନ କରନ୍ତି,

ତାହାଙ୍କର ଶତ୍ରୁମାନେ ପ୍ରସନ୍ନ ହୋଇ ମିତ୍ରବତ୍ ବ୍ୟବହାର କରନ୍ତି । ଯେଉଁ ପୁରୁଷ ଜ୍ଞାତି ଏବଂ ସମ୍ବନ୍ଧ ମଣ୍ଡଳରେ ଏହିପରି ଭାବରେ ଅବସ୍ଥାନ କରନ୍ତି, ସେ ମିତ୍ର, ଅମିତ୍ର ଓ ମଧ୍ୟସ୍ଥଙ୍କଠାରେ ଯଶସ୍ୱୀ ହୋଇ ଚିରକାଳ ଅବସ୍ଥାନ କରିବାକୁ ସମର୍ଥ ହୁଅନ୍ତି । ୪୧ ।

---

## ଅଧ୍ୟାୟ—୮୧

ଯୁଧିଷ୍ଠିର କହିଲେ— ଜ୍ଞାତି ସମ୍ବନ୍ଧ ମଣ୍ଡଳରେ ପରସ୍ପର ସ୍ପର୍ଦ୍ଧମାନ ଦୁହିଙ୍କ ମଧ୍ୟରୁ ଏକକୁ ଆଦର କଲେ ଅପର କ୍ରୋଧବଶତଃ ମିତ୍ର ହେଲେ ସୁଦ୍ଧା ଅମିତ୍ର ହୋଇଯିବ । ଅତଏବ ଏପରି ସ୍ଥଳେ ସମସ୍ତଙ୍କର ଚିତ୍ତ କି ପ୍ରକାରେ ବଶୀଭୂତ ହେବ । ୧ ।

ଭୀଷ୍ମ କହିଲେ—ଏପରି ସ୍ଥଳରେ ପଣ୍ଡିତମାନେ ଯେଉଁ ବାସୁଦେବ ଓ ଦେବର୍ଷି ନାରଦଙ୍କର ସମ୍ବାଦ ସମ୍ବଳିତ ପୁରାତନ ଇତିହାସକୁ ଉଦାହରଣ ଦିଅନ୍ତି, ତାହା କହୁଅଛୁଁ, ଶ୍ରବଣ କର । ୨ ।

ବାସୁଦେବ କହିଲେ—ହେ ନାରଦ । ଅସୁହୃତ ବ୍ୟକ୍ତିଠାରେ ପରମ ମନ୍ତ୍ର ପ୍ରକାଶ କରିବା କର୍ତ୍ତବ୍ୟ ନୁହେ । ପଣ୍ଡିତ ଅପଣ୍ଡିତ ଅଥବା ଅନାତ୍ମବାନ୍ ହେଲେ ସୁଦ୍ଧା ସୁହୃଦଙ୍କଠାରେ ପରମ ମନ୍ତ୍ର ପ୍ରକାଶ କରିବା କର୍ତ୍ତବ୍ୟ । ଅତଏବ ହେ ବିଦ୍ୱଙ୍ଗମ ! ଆମ୍ଭେ ତୁମ୍ଭର ସମୁଦାୟ ବଳ ଓ ବୁଦ୍ଧି ଅବଲୋକନ କରି ତୁମ୍ଭଙ୍କୁ ଉତ୍ତମ ସୁହୃତ ବିବେଚନାପୂର୍ବକ କୌଣସି ବିଷୟ କହୁଅଛୁଁ ଏବଂ ପ୍ରଶ୍ନ କରୁଅଛୁଁ । ୪ । ଐଶ୍ୱର୍ଯ୍ୟବାଦବଶତଃ ଜ୍ଞାତିମାନଙ୍କୁ ଯେଉଁ ଅର୍ଜିତ ଭୋଗ୍ୟ ବସ୍ତୁର ଅର୍ଦ୍ଧେକ ଦେବାକୁ ହେବ ଏବଂ ସେମାନଙ୍କର ଯେଉଁ ଦୁରୁକ୍ତ ବାକ୍ୟସବୁ ସହ୍ୟ କରିବାକୁ ହେବ ଏପରି ଯେଉଁ ଜ୍ଞାତି ଦାସ୍ୟ ତାହା ଆମ୍ଭେ କଦାପି କରିବାକୁ ଇଚ୍ଛୁକ ନାହୁଁ । ତଥାପି ଯେପରି ପୁରୁଷ ଅଗ୍ନି କାମନାରେ ଅରଣୀ କାଷ୍ଠକୁ ମନ୍ଥନ କରେ ତଦ୍ରୂପ ସେମାନଙ୍କର ଦୁରୁକ୍ତ ବାକ୍ୟସବୁ ଆମ୍ଭର ହୃଦୟକୁ ସର୍ବଦା ଦଗ୍ଧ କରୁଅଛି । ୬ । ସଙ୍କର୍ଷଣ ବଳରେ ଗଜ ସୌକୁମାର୍ଯ୍ୟରେ ଏବଂ ପ୍ରଦ୍ୟୁମ୍ନ ରୂପରେ ପ୍ରମତ୍ତ ହୋଇ ଅଛନ୍ତି, ସୁତରାଂ ଆମ୍ଭେ ଅହୁକ ଓ ଅକ୍ରୁରଙ୍କର ସାନ୍ତ୍ୱନାରେ ଅସହାୟ ହୋଇଅଛୁଁ । ୭ ।

ଅନ୍ୟ ଯେଉଁସବୁ ମହାଭାଗ ବଳବାନ ଦୁରୁତ୍ସାହସମ୍ପନ୍ନ ନିତ୍ୟ ଉତ୍ଥାନଶାଳୀ ଅନ୍ଧକ ଓ ବୃଷ୍ଣିକୁଳ ବିଦ୍ୟମାନ ଅଛନ୍ତି, ସେମାନେ ମନେ କରନ୍ତି ଯେ ସେମାନେ ଯେଉଁ ପକ୍ଷର ସହାୟ କରିବେ, ସେହି ପକ୍ଷ ସବଳ ହେବ ଏବଂ ସେମାନେ ଯେଉଁ ମାନଙ୍କର ବିପକ୍ଷ ହେବେ, ସେହିପକ୍ଷ ଦୁର୍ବଳ ହେବ । ଆହୁକ ଏବଂ ଅକ୍ରୂର ଦୁହେଁଯାକ ଆମ୍ଭଙ୍କୁ ନିବାରଣ କରି ଅଛନ୍ତି । ସୁତରାଂ ଆମ୍ଭେ ଏକପକ୍ଷ ବରଣ କରିପାରୁ ନାହୁଁ । ପୁନଶ୍ଚ ଆହୁକ ଓ ଅକ୍ରୂର ଉଭୟ ପରାକ୍ରାନ୍ତ ଓ ଦୁର୍ଦ୍ଧାନ୍ତ ଅଟନ୍ତି, ସୁତରାଂ ସେମାନେ ଯେଉଁ ପକ୍ଷରେ ଥିବେ ତଦପେକ୍ଷା ଦୁଃଖିତର ଆଉ କିଛି ନୁହେ ଏବଂ ଯାହାର ବିପକ୍ଷ ହେବେ ସେମାନଙ୍କର ମଧ୍ୟ ଆଉ ଦୁଃଖିତର କିଛି ହେବ ନାହିଁ । ୧୦ ।

ହେ ମହାମତେ ! କିତବ ଅର୍ଥାତ୍ ଦ୍ୟୁତକାରୀ ପୁରୁଷ ଦ୍ୱୟର ମାତାଙ୍କପ୍ରାୟ ଆମ୍ଭେ ଜଣଙ୍କର ଜୟ ଓ ଅନ୍ୟର ପରାଜୟ ଆକାଙ୍କ୍ଷା କରୁଅଛୁଁ, ହେ ନାରଦ ! ଆମ୍ଭେ ଉଭୟ ପକ୍ଷରୁ ସର୍ବଦା ଭିନ୍ନ ଭିନ୍ନ କ୍ଲେଶ ଅନୁଭବ କରୁଅଛୁଁ । ଅତଏବ ଏ ବିଷୟରେ ଆମ୍ଭର ଜ୍ଞାତିଗଣଙ୍କର ଯଦ୍ଦ୍ୱାରା ଶ୍ରେୟ ହୁଏ, ତାହା ତୁମ୍ଭର କହିବା ଉଚିତ ହେଉଅଛି । ୧୨ ।

ନାରଦ କହିଲେ—ହେ ବୃଷ୍ଣିବଂଶସମ୍ଭୂତ କୃଷ୍ଣ ! ଆପଦ ସବୁ ବାହ୍ୟ ଓ ଅଭ୍ୟନ୍ତର ରୂପରେ ଦ୍ୱିବିଧ ଅଟେ । ତାହା ସ୍ୱଭାବତଃ କିମ୍ବା ଅନ୍ୟଠାରୁ ପ୍ରାଦୁର୍ଭୂତ ହୋଇଥାଏ । ଅର୍ଥ, କାମ ଓ ବିଭିନ୍ନ ବଚନ ହେତୁରୁ ଅକ୍ରୂର ଓ ଭୋଜ ପ୍ରଭୃ ସଙ୍କର୍ଷଣ ପ୍ରଭୃତି ସମସ୍ତେ ଅକ୍ରୂରର ଅନୁଗତ ହେବାରୁ ଏହି ଅଭ୍ୟନ୍ତର ଆପଦ ତୁମ୍ଭର କ୍ଲେଶକର ହୋଇଅଛି । ଅଚିର ତୁମ୍ଭେ ତୁମ୍ଭର ନିଜର ଐଶ୍ୱର୍ଯ୍ୟକୁ ପ୍ରଦାନ କରିବାରୁ ସମ୍ଭୃତ ଜ୍ଞାତି ଶବ୍ଦ କୃତମୂଳ ହୋଇ ପଡ଼ିଅଛି । ବାନ୍ତ ଅନ୍ନପ୍ରାୟ ତାହା ମଧ୍ୟ ତୁମ୍ଭେ ପୁନର୍ବାର ଗ୍ରହଣ କରିପାରୁ ନାହିଁ । ସୁତରାଂ ନିଜର କର୍ମ ଦୋଷରୁ ଏହି ଆପଦ୍ ଉତ୍ପନ୍ନ ହୋଇଅଛି । ବିଶେଷତଃ ଜ୍ଞାତିଭେଦ ଭୟରେ ତୁମ୍ଭେ ଆଉ ବଭ୍ରୁ ଓ ଉଗ୍ରସେନଙ୍କର ରାଜ୍ୟକୁ କୌଣସି ପ୍ରକାରରେ ଗ୍ରହଣ କରି ପାରୁନାହିଁ । କାରଣ ଦାରାପହାର ମହତ୍ତ୍ୱମାନଙ୍କର ଅନୁଚିତ । ଯଦି ତୁମ୍ଭେ ପ୍ରଯତ୍ନ ସହକାରେ ବହୁତର ଦୁଷ୍କର କାର୍ଯ୍ୟକରି ପୁନଶ୍ଚ ସେହି ରାଜ୍ୟର ଆଦାନ କର, ତାହାହେଲେ ପୁନର୍ବାର ମହାକ୍ଷୟ, ବ୍ୟୟ ଓ ବିନାଶ ଉପସ୍ଥିତ ହେବ । ୧୮ ।

ଅତଏବ ତତକ୍ଷା ଋଜୁତା ଓ ମୃଦୁତା ଦ୍ୱାରା ଦୋଷାପନୟନ କରି ଏବଂ ଯଥା ଯୋଗ୍ୟ ପୂଜନାଦି ଦ୍ୱାରା ପ୍ରୀତିଗୁଣାଧାନ କରି ଅନାୟାସ, ମୃଦୁ ଓ ମର୍ମଚ୍ଛେଦ ଶସ୍ତ୍ରଦ୍ୱାରା ସମସ୍ତଙ୍କର ଜିହ୍ୱାକୁ ଉଦ୍ଧାର କର । ଅର୍ଥାତ୍ ଯେଉଁ ଦ୍ୱାରା କଳହ ହେବ ନାହିଁ ସେହିପରି କାର୍ଯ୍ୟ କରି ସେମାନଙ୍କର ମୂକତା ସାଧନ କର । ୧୯ ।

ବାସୁଦେବ କହିଲେ—ହେ ମୁନେ ! ତତକ୍ଷାଦି ଦ୍ୱାରା ଦୋଷାପନୟନ ଓ ଯଥାଯୋଗ୍ୟ ପୂଜନାଦି ଦ୍ୱାରା ପ୍ରୀତିଗୁଣାଧାନ ପୂର୍ବକ ଯେଉଁମାନଙ୍କ ଦ୍ୱାରା ଏହି ଜ୍ଞାତିମାନଙ୍କର ଜିହ୍ୱା ଉଦ୍ଧାର କରିବାକୁ ହୁଏ, ସେହି ମୃଦୁ, ଅନାୟାସ ଶସ୍ତ୍ର କଣ ? ତାହା ଅମ୍ଭେ କିପରି ଜାଣିବୁଁ ।୨୦। ନାରଦ କହିଲେ—ସାମର୍ଥ୍ୟ ଅନୁସାରେ ସତତ ଅନ୍ନଦାନ, ତିତିକ୍ଷା, ଋଜୁତା, ମୃଦୁତା ଓ ଯଥାଯୋଗ୍ୟ ପ୍ରତିପୂଜା ଏହି ସବୁକୁ ଅନାୟାସ ଶସ୍ତ୍ର ବୋଲି ଜାଣିବ ।୨୧। ତୁମ୍ଭେ ମଧୁର ବଚନ ଦ୍ୱାରା ଲଘୁ ଓ କଟୁବାଦୀ ଜ୍ଞାତିମାନଙ୍କର କୁଟିଳ ଅଭିପ୍ରାୟ, କୁବାକ୍ୟ ଓ କୁସଂକଳ୍ପ ସବୁକୁ ପ୍ରଶମିତ କର । ୨୨ । ମହା ପୁରୁଷ ଭିନ୍ନ କୌଣସି ଅଜିତ ଚିତ୍ତ ଅସହାୟବାନ ବ୍ୟକ୍ତି ଉଦ୍ୟୋଗୀ ହୋଇ ଗୁରୁତର ଭାର ବହନରେ ସମର୍ଥ ହୁଏ ନାହିଁ, ଅତଏବ ତୁମ୍ଭେ ନିଜର ବକ୍ଷସ୍ଥଳ ଦ୍ୱାରା ଅର୍ଥାତ୍ କ୍ଷମା ଦ୍ୱାରା ସେହି ଭାରକୁ ବହନ କର । ଦେଖ, ସମତଳ ପ୍ରଦେଶରେ ସବୁ ଅନଡ୍ୱାନମାନେ ଗୁରୁଭାର ବହନ କରି ପାରନ୍ତି । ପରନ୍ତୁ ଦୁର୍ଗମ ପ୍ରଦେଶରେ ସୁଦୃଢ଼ ଅଙ୍ଗସମ୍ପନ୍ନ ଅନଡ୍ୱାନଙ୍କ ବ୍ୟତୀତ ସମସ୍ତେ ଦୁର୍ବହ ଭାର ବହନ କରି ପାରନ୍ତି ନାହିଁ । ୨୪ ।

ହେ କେଶବ ! ତୁମ୍ଭେ ସମସ୍ତଙ୍କ ମଧ୍ୟରେ ପ୍ରଧାନ ଅଟ । ଜ୍ଞାତିଭେଦ ହେଲେଁ ସମସ୍ତଙ୍କର ବିନାଶ ହେବ, ଅତଏବ ଏହି ଜ୍ଞାତିଗଣ ତୁମ୍ଭଙ୍କୁ ଆଶ୍ରୟ କରି ଯେପରି ଉଚ୍ଛିନ୍ନ ନ ହୁଅନ୍ତି, ତାହାର ଉପାୟ କର । ୨୫ । ବୁଦ୍ଧି, କ୍ଷାନ୍ତି, ଇନ୍ଦ୍ରିୟ ନିଗ୍ରହ ଓ ଧନ ତ୍ୟାଗ ଭିନ୍ନ ପ୍ରାଜ୍ଞ ପୁରୁଷଙ୍କର କୌଣସି ଗୁଣ ସୁଦ୍ଧା ଥାଏ ନାହିଁ । ଅତଏବ ହେ କୃଷ୍ଣ ! ଧନ୍ୟ, ଯଶସ୍ୟ, ଆୟୁଷ୍ୟ, ସତତ ସ୍ୱପକ୍ଷୋଦ୍ଭାବନ ଏବଂ ଜ୍ଞାତି ଯଦ୍ୱାରା ବର୍ଗଙ୍କର ଅବିନାଶ ହୁଏ, ତାହା କର । ୨୭ ।

ହେ ପ୍ରଭୋ ! ଆଯୁକ୍ତ ତନ୍ତ୍ରୀପାଳ, ଯାନ ଓ ଯାନବାଧିରେ ଷାଡ୍‌ଗୁଣ୍ୟ ବିଧାନ ହେତୁ ତୁମ୍ଭର କିଛିମାତ୍ର ଅବିଦିତ ନାହିଁ । ହେ ମହାବାହୁ ମାଧବ ! ମାଦବ, କୁକ୍‌କୁର, ଭୋଜ, ଅନ୍ଧକ, ବୃଷ୍ଣି, ଅନ୍ୟାନ୍ୟ ଲୋକପାଳ ଓ ଋଷିମାନେ ତୁମ୍ଭଠାରେ ଅନୁରକ୍ତ ହୋଇ ତୁମ୍ଭର ବୃଦ୍ଧିର ଆକାଙ୍‌କ୍ଷା କରୁଅଛନ୍ତି । ତୁମ୍ଭେ ସମସ୍ତ ପ୍ରାଣିଙ୍କର ଗୁରୁ ଅଟ । ତୁମ୍ଭେ ପ୍ରାଣି ମାନଙ୍କର ଗତାଗତ ସମସ୍ତ ବିଷୟ ଅବଗତ ଅଛ । ତୁମ୍ଭେ ଯଦୁକୁଳଶ୍ରେଷ୍ଠ ଅଟ, ସୁତରାଂ ଯଦୁବଂଶୀୟ ମାନେ ତୁମ୍ଭଙ୍କୁ ଲାଭ କରି ସୁଖ ଭୋଗ କରନ୍ତି । ୩୧ ।

---

## ଅଧ୍ୟାୟ—୮୨

ଭୀଷ୍ମ କହିଲେ—ହେ ଭାରତ ! ଅମ୍ଭେ ଯାହା କହିଲୁଁ, ତାହା ରାଜାମାନଙ୍କର ପ୍ରଥମ ବୃତ୍ତି ଅଟେ । ଅନନ୍ତର ଦ୍ୱିତୀୟ ବୃତ୍ତି କହୁଅଛୁଁ ଶ୍ରବଣ କର । ହେ ଯୁଧିଷ୍ଠିର ! ଯେ କୌଣସି ମାନବ ଅର୍ଥ ଉପାର୍ଜ୍ଜନ କଲେ, ରାଜା ତାହାକୁ ସର୍ବଦା ରକ୍ଷା କରିବେ । ଅମାତ୍ୟଗଣ ରାଜକୋଷକୁ ଅପହରଣ କିମ୍ବା ନଷ୍ଟ କଲେ, ତଦ୍‌ବିଷୟ ଯଦି ଭୃତ୍ୟ କିମ୍ବା ଅଭୃତମାନବ ରାଜାଙ୍କଠାରେ ନିବେଦନ କରେ, ତେବେ ରାଜା ତାହାର ସେହି ବାକ୍ୟକୁ ନିର୍ଜନରେ ଶ୍ରବଣ କରିବେ ଏବଂ ଅମାତ୍ୟବୃନ୍ଦଙ୍କଠାରୁ ତାହାଙ୍କୁ ରକ୍ଷା କରିବେ । କାରଣ ଅପହର୍ତ୍ତା ଅମାତ୍ୟମାନେ ସମସ୍ତଙ୍କୁ ବିନାଶ କରନ୍ତି ।୩। ଯେଉଁ ପୁରୁଷ ରାଜକୋଷ ରକ୍ଷକ ଅଟେ, ରାଜା ତାହାଙ୍କୁ ରକ୍ଷା ନ କଲେ, ରାଜକୋଷାପହାରୀ ଅମାତ୍ୟ ସମୂହ ସମବେତ ହୋଇ ତାହାକୁ ବିନଷ୍ଟ କରନ୍ତି । ୪। କାଳକବୃକ୍ଷୀୟ ମୁନି କୌଶଲ୍ୟଙ୍କୁ ଯାହା କହିଥିଲେ, ପଣ୍ଡିତମାନେ ଉଦାହରଣ ସ୍ୱରୂପରେ ସେହି ପୁରାତନ ଇତିହାସକୁ ବର୍ତ୍ତନ କରନ୍ତି । ୫ ।

ଅମ୍ଭେମାନେ ଏହିପରି ଶୁଣିଅଛୁଁ ଯେ କାଳକବୃକ୍ଷୀୟମୁନି କୋଶଳାଧିପତିଙ୍କ ଅମାତ୍ୟ ଦୋଷ ଦର୍ଶନ କରିବା ନିମିତ୍ତ ପୁନଃ ପୁନଃ ପ୍ରବର୍ତ୍ତିତ କରିବାର ଇଚ୍ଛାକରି ପଞ୍ଜର ମଧ୍ୟରେ ଗୋଟିଏ କାକ ବନ୍ଧି କଲେ ଓ କ୍ଷେମଦର୍ଶୀ କୋଶଳାଧିପତିଙ୍କର ସମୁଦାୟ ରାଜ୍ୟ ପର୍ଯ୍ୟଟନ ପୂର୍ବକ ରାଜ ସମୀପକୁ ଆଗମନ କରି କହିଲେ, ଆମ୍ଭର ବାୟସମାନେ ସମସ୍ତ

ବିଦ୍ୟା ଅଧ୍ୟୟନ କରି ଅଛନ୍ତି, ଅତଏବ ଏମାନେ ଅନାଗତ, ଅତୀତ ଓ ବର୍ତ୍ତମାନ ସମସ୍ତ ବିଷୟ କହିପାରନ୍ତି । ୮ । ସେ ଏହି କଥା କହି ଅନେକ ଲୋକଙ୍କ ସହିତ ରାଷ୍ଟ୍ରମଧ୍ୟରେ ପରିଭ୍ରମଣ ପୂର୍ବକ ରାଜ କାର୍ଯ୍ୟରେ ନିଯୁକ୍ତ ଅମାତ୍ୟ ବୃନ୍ଦଙ୍କର ସ୍ୱାମିଦ୍ରବ୍ୟ ଅପହରଣ ରୂପ ପାପକୁ ଦର୍ଶନ କଲେ ।୯। ତତ୍ପରେ ସେ ସେହି ରାଷ୍ଟ୍ରର ସମୁଦାୟ ବ୍ୟବସାୟ ଓ ରାଜ କାର୍ଯ୍ୟରେ ନିଯୁକ୍ତ ଯାବତୀୟ ଅମାତ୍ୟ ଗଣଙ୍କୁ ସ୍ୱାମିଦ୍ରବ୍ୟାପହାରୀ ବୋଲି ଜାଣି, "ଆମ୍ଭେ ସମସ୍ତ ଜାଣି ପାରିଅଛୁଁ", ଏହି କଥା କହୁକହୁ ରାଜାଙ୍କ ସହିତ ସାକ୍ଷାତ କରିବା ନିମିତ୍ତ କାକ ଘେନି ତାହାଙ୍କ ନିକଟକୁ ଆଗମନ କଲେ । ୧୧ ।

ମୁନି କ୍ଷେମଦର୍ଶୀ କୌଶଲ୍ୟାଙ୍କ ନିକଟକୁ ଅଗମନପୂର୍ବକ ତାହାଙ୍କ ସମକ୍ଷରେ କାକର ବଚନାନୁସାରେ ଅଲଙ୍କୃତ ରାଜମନ୍ତ୍ରୀଙ୍କୁ କହିଲେ—ତୁମ୍ଭେ ଅମୁକସ୍ଥାନରେ ଏତେ ଧନ ଅପହରଣ କରିଅଛ ଏବଂ ଯେଉଁ ରାଜକୋଷରୁ ହରଣ କରୁଅଛ, ତାହା ଏହି ଏହି ବ୍ୟକ୍ତିମାନେ ଜାଣନ୍ତି, କାକ ଏହିକଥା କହୁଅଛି, ଅତଏବ ତୁମ୍ଭେ ଶୀଘ୍ର ତାହା ବିବେଚନା କରି ଦେଖ । ୧୩ ।

ଅନନ୍ତର ମୁନିବର ମନ୍ତ୍ରୀବୃନ୍ଦଙ୍କୁ ଏହିପରି କହି ତଦନ୍ତ୍ୟ ଅପରାପର ରାଜପୁରୁଷମାନଙ୍କୁ କହିଲେ, ତୁମ୍ଭେମାନେ ମଧ୍ୟ ରାଜକୋଷାପହାରୀ ଅଟ, ଆମ୍ଭେ ବାୟସର ବଚନାନୁସାରେ ଏହା ବିଶେଷ ରୂପରେ ବିଦିତ ହୋଇ ଅଛୁଁ, ଯେଣୁ ଏହି ବାୟସର ମିଥ୍ୟାବାକ୍ୟ କଦାପି ଶ୍ରବଣ କରିନାହୁଁ । ୧୪ । ହେ କୁରୁନନ୍ଦନ ଧୂର୍ଜ୍ଜିର ! କାଳକବୃକ୍ଷୀୟମୁନି କୌଶଲ୍ୟଙ୍କର ଅମାତ୍ୟବୃନ୍ଦଙ୍କୁ ଏହିପରି ଯଥାଶକ୍ତି ତିରସ୍କାର କରି ନିଶାକାଳରେ ନିହିତ ହୁଅନ୍ତେ, ରାଜପୁରୁଷଗଣ ସମସ୍ତେ ସମବେତ ହୋଇ ବାଣଦ୍ୱାରା ତାହାଙ୍କର ବାୟସକୁ ବିଦ୍ଧ କଲେ । ୧୫ । ପ୍ରାତଃ କାଳରେ ପଞ୍ଜରସ୍ଥ ବାୟସକୁ ବାଣ ବିଦ୍ଧ ଦେଖି ବ୍ରାହ୍ମଣ କ୍ଷେମଦର୍ଶୀ କୌଶଲ୍ୟଙ୍କୁ କହିଲେ—ହେ ରାଜନ୍ ! ଆପଣ ପ୍ରଭୁ ଓ ପ୍ରାଣଧନର ଈଶ୍ୱର ଅଟନ୍ତି, ଅତଏବ ଆପଣଙ୍କଠାରେ ଆମ୍ଭେ ଅଭୟ ପ୍ରାର୍ଥନା କରୁଅଛୁଁ ।

ହେ ମହାରାଜ ! ଆପଣଙ୍କର ଆଦେଶ ବଶତଃ ଆମ୍ଭେ ସର୍ବପ୍ରକାର ଶକ୍ତି ଓ ଯତ୍ନ ସହିତ ଆପଣଙ୍କଠାକୁ ଆଗମନ-ପୂର୍ବକ ଆପଣଙ୍କର ହିତକର

ବାକ୍ୟ କହିଥିଲୁଁ, କିନ୍ତୁ ତନ୍ନିମିତ୍ତ ଆମ୍ଭର ମିତ୍ରନଷ୍ଟ ହେବାରୁ ଆମ୍ଭେ ଅତିଶୟ ସନ୍ତପ୍ତ ହେଉଅଛୁଁ ।୧୭। ସତ୍ ଅସତ୍ର ଶିକ୍ଷାଦାତା ସାରଥି ପ୍ରାୟ ଯଦି କେହି ମିତ୍ରଙ୍କୁ ପ୍ରବୋଧିତ କରିବା ଅଭିଳାଷରେ ଅପମାନିତ ହୋଇ, ତୁମ୍ଭର ଏହି ଅର୍ଥ ଅପହୃତ ହୋଇଅଛି, ଏହାପରି କଥା କହନ୍ତି, ଏବଂ ମିତ୍ରଙ୍କର ହିତ ସାଧନାର୍ଥ ଅତିଶୟ କୋଧାନ୍ୱିତ ହୋଇ ହିତ-ସାଧନରେ ପ୍ରବୃତ୍ତ ହୁଅନ୍ତି, ତାହାହେଲେ ନିତ୍ୟ ଐଶ୍ୱର୍ଯ୍ୟାଭିଳାଷୀ ସ୍ୱଜନଙ୍କ ସୁହୃଦ୍‌ଙ୍କର ତାଦୃଶ ମିତ୍ରକୁ ଓ ତାହାର ସେହି ବାକ୍ୟକୁ କ୍ଷମା କରିବା ଉଚିତ । କିନ୍ତୁ ଅନବହିତ ଚିତ୍ତ ହୋଇ ପରଦ୍ୱାରା ତାଦୃଶ ମିତ୍ରକୁ ନଷ୍ଟ କରିବା ଉଚିତ ନୁହେ । ୧୯ । କ୍ଷେମଦର୍ଶୀ କାଳକ ବୃକ୍ଷୀୟଙ୍କର ଏହି କଥା ଶୁଣି ତାହାଙ୍କୁ କହିଲେ—ଆମ୍ଭେ ନିଜର ହିତାକାଂକ୍ଷୀ କରୁଁ, ଅତଏବ ଆପଣ ଆମ୍ଭର ହିତାର୍ଥ ଯାହା କହିବେ, ଆମ୍ଭେ ତାହା କାହିଁକି କ୍ଷମା ନ କରିବୁଁ । ୨୦ ।

ହେ ବ୍ରାହ୍ମଣ ! ଆପଣ ଏ ବିଷୟରେ ଯାହା କହିବାକୁ ଇଚ୍ଛା କରନ୍ତି, ତାହା କହନ୍ତୁ । ହେ ବିପ୍ର ! ଆମ୍ଭେ ଆପଣଙ୍କଠାରେ ଏହି ପ୍ରତିଜ୍ଞା କରୁଅଛୁଁ ଯେ, ଆପଣ ଆମ୍ଭଙ୍କୁ ଯାହା କହିବେ, ଆମ୍ଭେ ଆପଣଙ୍କର ତାହା ସଫଳ କରିବୁଁ । ୨୧ ।

ମୁନି କହିଲେ ହେ ମହାରାଜ ! ଆମ୍ଭେ ଆପଣଙ୍କର ଭୃତ୍ୟମାନଙ୍କର ଦୋଷାଦୋଷ ଏବଂ ଭୃତ୍ୟଙ୍କଠାରୁ ଆପଣଙ୍କର ଭୟ ଅବଗତ ହୋଇ ସେମାନଙ୍କର ବ୍ୟବହାର ଆପଣଙ୍କୁ କହିବା ନିମିତ୍ତ ଭକ୍ତିପୂର୍ବକ ଆପଣଙ୍କ-ଠାକୁ ଆଗମନ କରିଥିଲୁଁ । କିନ୍ତୁ ଏହା କରିବା ଆମ୍ଭର ଅକର୍ତ୍ତବ୍ୟ ହୋଇଅଛି ! କାରଣ ଏହି ନିମିତ୍ତ ପୂର୍ବକାଳରେ ପୂର୍ବାଚାର୍ଯ୍ୟଗଣ ନୃପସେବୀ ବ୍ୟକ୍ତିମାନଙ୍କର ଏହିପରି ଦୋଷ କହିଅଛନ୍ତି ଯେ, ଯେଉଁମାନେ ରାଜସେବା କରନ୍ତି, ସେମାନଙ୍କର ଏତାଦୃଶ ପାପଜନକ ଅଗତିକ ଗତି. ଅର୍ଥାତ୍ ଅନୁପାୟ ମନୁଷ୍ୟମାନଙ୍କ ପ୍ରାପ୍ୟ ଗତି ହୁଏ । ୨୩ । ଅପିଚ ପଣ୍ଡିତମାନେ କହନ୍ତି ଯେ, ରାଜାମାନଙ୍କ ସହିତ ଯେଉଁମାନେ ସଙ୍ଗତ ହୁଅନ୍ତି, ସେମାନେ ଆଶୀବିଷ ସହିତ ସଙ୍ଗତ ହୋଇଥାନ୍ତି, ଯେହେତୁ ବହୁମିତ୍ର ଓ ବହୁ ଅମିତ୍ର ରାଜାଙ୍କଠାରେ ବିଦ୍ୟମାନ ଥାନ୍ତି । ୨୪ ।

ଅତଏବ ହେ ରାଜନ ! ରାଜସେବୀ ପୁରୁଷମାନେ ରାଜାଙ୍କର ମିତ୍ର ଅମିତ୍ର ଓ ରାଜାଙ୍କୁ ସତତ ଭୟ କରିବେ । ମହୀପତିଙ୍କ ଠାରେ ଐଶ୍ୱର୍ଯ୍ୟ-କାମୀ ମାନବର କଦାଚ ପ୍ରମାଦ କରିବା କର୍ତ୍ତବ୍ୟ ନୁହେଁ । ଯେହେତୁ ଭୃତ୍ୟ କୃତ ପ୍ରମାଦରୁ ରାଜା ସ୍ଖଳିତ ହୁଅନ୍ତି । ରାଜା ସ୍ଖଳିତ ହେଲେ ତାହାଙ୍କର ଜୀବନ ସଂଶୟ ହୋଇପଡ଼େ । ପ୍ରଦୀପ୍ତ ଅନଳରେ ଅର୍ପିତ ପୁରୁଷପ୍ରାୟ, ରାଜ ସମୀପରେ ଶିକ୍ଷିତ ମାନବର ଜୀବନ ନଷ୍ଟ ହୁଏ । ୨୭ ।

ଅତଏବ ପୁରୁଷ ଜୀବିତାଶା ପରିତ୍ୟାଗ ପୂର୍ବକ କ୍ରୁଦ୍ଧ ଆଶୀବିଷ ପ୍ରାୟ, ପ୍ରାଣଧନର ଈଶ୍ୱର ପ୍ରଭୁ ମହୀପତିଙ୍କଠାରୁ ସତତ ଯତ୍ନ ସହକାରେ ଗମନ କରିବେ । ଏବଂ ନୃପତିଙ୍କଠାରେ ଦୁର୍ବାକ୍ୟ କଥନ, ଦୁଃଖିତ ଭାବରେ ଅବସ୍ଥାନ, ଦୁଷ୍ଟ ସ୍ଥାନରେ ଅବସ୍ଥାନ, ନିନ୍ଦିତ ଭାବରେ ଉପବେଶନ, କୁତ୍ସିତାକାରରେ ଗମନ, ଇଙ୍ଗିତ ଓ ଅଙ୍ଗ ଚେଷ୍ଟିତ ଏହି ସମସ୍ତ କାର୍ଯ୍ୟ କରିବାକୁ ଶଙ୍କା କରିବେ । ୨୯ । ଯମ ଏହିପରି କହି ଅଛନ୍ତି ଯେ, ମହୀପତି ପ୍ରସାଦିତ ହେଲେ ଦେବତାଙ୍କ ପ୍ରାୟ, ସମସ୍ତ ଅର୍ଥ ସମ୍ପାଦନ କରନ୍ତି, ଏବଂ କ୍ରୁଦ୍ଧ ହେଲେ ଅନଳପ୍ରାୟ ସମୂଳରେ ଦଗ୍ଧ ହୁଅନ୍ତି । ଅତଏବ ଯେଉଁ ବ୍ୟକ୍ତି ନୃପତିଙ୍କଠାରେ ଯଥା ନିୟମରେ ଅବସ୍ଥାନ କରିବେ, ଆମ୍ଭେ ଉତ୍ତରୋତ୍ତର ତାହାଙ୍କର ସମୃଦ୍ଧିବର୍ଦ୍ଧନ କରିବୁଁ । ୩୧ ।

ହେ ରାଜନ୍ ! ମଦ୍‌ବିଧ ଅମାତ୍ୟ ଆପତ୍କାଳରେ ବୁଦ୍ଧି ସାହାଯ୍ୟ ପ୍ରଦାନ କରନ୍ତି, ଆମ୍ଭର ବାୟସ ଯେପରି କାର୍ଯ୍ୟକାରୀ, ଆମ୍ଭେ ମଧ୍ୟ ତଦ୍ରୂପ କାର୍ଯ୍ୟ କରିପାରୁଁ, ପରନ୍ତୁ ଆପଣଙ୍କର ଅମାତ୍ୟ ବୃନ୍ଦ ବାୟସପ୍ରାୟ ଆମ୍ଭଙ୍କୁ ମଧ୍ୟ ନଷ୍ଟ କରିବେ । ଏହା ଆମ୍ଭର ଆଶଙ୍କା ହେଉଅଛି । ଆମ୍ଭେ ଏ ବିଷୟରେ ଆପଣଙ୍କୁ ନିନ୍ଦା କରୁନାହୁଁ ପରନ୍ତୁ ଆପଣ ଯେ ଅମାତ୍ୟ ଗଣଙ୍କର ପ୍ରିୟ ପାତ୍ର ନୁହନ୍ତି, ତାହା କହୁଅଛୁଁ, ଅତଃପର ଆପଣ ହିତାହିତ ବିବେଚନା କରି ଆପଣଙ୍କ ସମକ୍ଷରେ ସମସ୍ତ କାର୍ଯ୍ୟ ସମ୍ପାଦନ କରିବେ । ୩୩ ।

ହେ ରାଜନ ! ଆପଣଙ୍କ ଗୃହରେ କୋଷାପହାରୀ ଯେଉଁସବୁ ଅମାତ୍ୟମାନେ ବାସ କରୁଅଛନ୍ତି, ପ୍ରଜାମାନଙ୍କର ଅମଙ୍ଗଳାଭିଳାଷୀ ସେହି

ଅମାତ୍ୟମାନେ ଆମ୍ଭପ୍ରତି ଶତ୍ରୁତାଚରଣ କରୁଅଛନ୍ତି ଏବଂ ଯେଉଁମାନେ ଆପଣଙ୍କ ଅନ୍ତେ ରାଜ୍ୟ ଲାଭ କରିବେ ବୋଲି ଆପଣଙ୍କ ବିନାଶ ନିମିତ୍ତ ଅପକାରମାନଙ୍କ ଦ୍ୱାରା ଅନ୍ଧାଦରେ ବିଷ ପ୍ରକ୍ଷେପ କରିବାର ଅଭିସନ୍ଧି କରୁଅଛନ୍ତି, ଆପଣ ସତର୍କ ନ ହେଲେ ସେମାନଙ୍କର ସେହି ଅଭିସନ୍ଧି ସିଦ୍ଧ ହେବ । ୩୫ ।

ହେ ମହାରାଜ ! ଆମ୍ଭେ ସେମାନଙ୍କ ଭୟରେ ଆଶ୍ରମକୁ ଯିବାର ଇଚ୍ଛା କରୁଅଛୁଁ, ସେମାନେ ଆମ୍ଭଙ୍କୁ ଯେଉଁ ବାଣ ସନ୍ଧାନ କରିଥିଲେ, ତାହା ଆମ୍ଭର ବାୟସ ଉପରେ ନିପତିତ ହୋଇଅଛି । ୩୬ । ଆମ୍ଭେ ନିଷ୍କାମୀ ଏବଂ ସେମାନେ ଛଦ୍ମକାମୀ ଅଟନ୍ତି, ସୁତରାଂ ସେମାନେ ଯେ ଆମ୍ଭର ବାୟସକୁ ନିହତ କରୁଅଛନ୍ତି, ତାହା ଆମ୍ଭେ ତପୋମୟ ଦୀର୍ଘ ଚକ୍ଷୁଦ୍ୱାରା ସୁସ୍ପଷ୍ଟଭାବରେ ଦେଖିଅଛୁଁ । ୩୭ । ସ୍ଥାଣୁ, ଅଶ୍ମ ଓ କଣ୍ଟକ ବିଶିଷ୍ଟ ସିଂହ ଏବଂ ବ୍ୟାଘ୍ର ସମୂହ ସମାକୁଳ ଦୁରାସଦ ଓ ଦୁସ୍ପ୍ରସହ ହୈମବତୀ ଗୁହାପ୍ରାପ୍ୟ, ବହୁଳ କୁମ୍ଭୀର, ମତ୍ସ୍ୟ ଓ ଗ୍ରାହ ସମୂହଦ୍ୱାରା ପରିବୃତ, ତମିଙ୍ଗିଳ ରାଶି ସମାବୃତ ଓ ରାଜନୀତି ରୂପ ମହାନଦୀକୁ ଆମ୍ଭେ ବାଳଣ ବାୟସଦ୍ୱାରା ଉତ୍ତୀର୍ଣ୍ଣ ହୋଇଅଛୁଁ । ଦୀପଦ୍ୱାରା ଅନ୍ଧକାର ଦୁର୍ଗ ଓ ନୌକାଦ୍ୱାରା ଜଳଦୁର୍ଗ ଉତ୍ତୀର୍ଣ୍ଣ ହେବାକୁ ସମର୍ଥ ହୁଅନ୍ତି, ପରନ୍ତୁ ପଣ୍ଡିତମାନେ ରାଜ ଦୁର୍ଗଣର ତରଣର ଉପାୟକୁ ଅବଧାରଣ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୪୦ ।

ଆପଣଙ୍କର ରାଜ୍ୟ ଅନ୍ଧକାର ସଦୃଶ୍ୟ ତମୋଯୁକ୍ତ, ଅର୍ଥାତ୍ ଧର୍ମ୍ମା-ଧର୍ମ୍ମ ଶୂନ୍ୟ ଓ ଅତି ଗହନ ଅଟେ । ଅତଏବ ଆପଣ ଯେତେବେଳେ ଏଥିରେ ବିଶ୍ୱାସ କରିବାକୁ ସମର୍ଥ ହୁଅନ୍ତି ନାହିଁ, ତେତେବେଳେ ଆମ୍ଭେ କି ପ୍ରକାର ଏଥିରେ ବିଶ୍ୱାସ କରିବୁଁ । ଏହି ରାଜ୍ୟରେ ପାପ ଓ ପୁଣ୍ୟ ଉଭୟ ସମାନ ହୋଇଥିବା ସ୍ଥଳେ, ଏଠାରେ ଅବସ୍ଥାନ କରିବା କଲ୍ୟାଣ କର ହେବନାହିଁ । କାରଣ ଏଠାରେ ସୁକୃତ ଓ ଦୁଷ୍କୃତ ଉଭୟ ପୁରୁଷର ନିଶ୍ଚୟ ବିନାଶ ହେବ । ୪୨ । ଦୁଷ୍କୃତର ବିନାଶ ହେବା ନ୍ୟାଯ୍ୟ, କିନ୍ତୁ ସୁକୃତରେ ବିନାଶ ନ୍ୟାଯ୍ୟନୁହେଁ, ସୁତରାଂ ଏଠାରେ ସ୍ଥିରଭାବରେ ଅବସ୍ଥାନ କରିବା ଯୁକ୍ତିଯୁକ୍ତ ନୁହେ, ଅତଏବ ଯେ ପଣ୍ଡିତ ସେ ଏଠାରୁ ଶୀଘ୍ର ପଳାୟନ କରିବେ ।୪୩।

ହେ ରାଜନ ! ଯହିଁରେ ନୌକାସବୁ ନିମଗ୍ନ ହୁଅନ୍ତି, ସେହି ସୀତା ନାମ୍ନୀ ନଦୀପ୍ରାୟ ଆପଣଙ୍କର ଏହି ରାଜନୀତକୁ ସର୍ବଘାତନୀ ବାଗୁରା ବୋଲି ଆମ୍ଭର ବୋଧ ହେଉଅଛି । ୪୪ । ହେ ପାର୍ଥିବ ! ଆପଣ ମଧୁପ୍ରାୟ ତୁଲ୍ୟ ଅଟନ୍ତି, କିନ୍ତୁ ଭୋଜନରେ ବିଷବତ, ଆପଣଙ୍କର ଅଭିପ୍ରାୟ ଅସତ୍ୟ ଲୋକର ଅଭିପ୍ରାୟ ସଦୃଶ୍ୟ ଓ ଆପଣଙ୍କଠାରେ ସଦଭିପ୍ରାୟ କିଛିମାତ୍ର ନାହିଁ । ସୁତରାଂ ଆପଣଙ୍କୁ ଆଶୀବିଷ ପରିବୃତ କୂପପ୍ରାୟ ଆମ୍ଭଙ୍କୁ ବୋଧ ହେଉଅଛି । ହେ ପାର୍ଥିବ ! ଆପଣ ଦୁର୍ଗମ ତୀର୍ଥ ସମନ୍ୱିତ ବୃହତ୍କୂଳ ସମ୍ପନ୍ନ କାଶର ଓ ବେତସଂଯୁକ୍ତ ମଧୁର ପାଣୀୟଦ୍ୱାରା ପରିପୂର୍ଣ୍ଣ ନଦୀ ସଦୃଶ ଏବଂ କୁକ୍କୁର, ଗୃଧ୍ର ଓ ଗୋମାୟୁ ମାନଙ୍କରେ ପରିବୃତ୍ତ ରାଜହଂସ ସଦୃଶ ପ୍ରତିଭାତ ହେଉଅଛନ୍ତି । ୪୭ ।

ହେ ମହାରାଜ ! କକ୍ଷ, ଅର୍ଥାତ୍ ତୃଣ ଲତାଦିମାନେ ମହାବୃକ୍ଷର ଆଶ୍ରୟ ଗ୍ରହଣ ପୂର୍ବକ ବୃହଦାକାରରେ ବର୍ଦ୍ଧିତ ହୋଇ ତାହାକୁ ଆବରଣ ପୂର୍ବକ କ୍ରମଶଃ ସେହି ବୃକ୍ଷକୁ ଅତିକ୍ରମକରି ବର୍ଦ୍ଧିତ ହେଲେ ସୁଦ୍ଧା ଦାରୁଣ ଦାବାନଳ କର୍ତ୍ତୃକ ମହାକକ୍ଷ ସହିତ ସେହିବୃକ୍ଷ ଯେପରି ଦଗ୍ଧ ହୁଏ, ତଦ୍ରୂପ କକ୍ଷତୁଲ୍ୟ ଅମାତ୍ୟଗଣଙ୍କ ସହିତ ଆପଣ ମଧ୍ୟ ବିନଷ୍ଟ ହେବେ । ଅତଏବ ଆପଣ ସେହି ଅମାତ୍ୟ ବୃନ୍ଦଙ୍କୁ ପରିଶୋଧିତ କରନ୍ତୁ । ୪୯ । ଆପଣ ସେମାନଙ୍କୁ ଅମାତ୍ୟ ପଦରେ ଅଭିଷିକ୍ତ କରି ପ୍ରତିପାଳନ କରୁଅଛନ୍ତି, କିନ୍ତୁ ସେମାନେ ଆପଣଙ୍କୁ ଅଭିସନ୍ଧାନ କରି ଆପଣଙ୍କର ଇଷ୍ଟ ସମୁଦାୟ ବିନାଶ କରିବାର ଇଚ୍ଛା କରୁଅଛନ୍ତି, ଏହି ନିମିତ୍ତ ଆମ୍ଭେ ରାଜାଙ୍କର ଓ ତାହାଙ୍କର ସହଜୀବି ମାନଙ୍କର ସ୍ୱଭାବ ସମୁଦାୟ ଜାଣିବା ନିମିତ୍ତ ଅଭିଳାଷୀ ହୋଇ ପ୍ରମାଦକୁ ସର୍ବତୋଭାବରେ ରକ୍ଷାକରି ସମର୍ଥଗୃହ ଓ ବୀରପତ୍ନୀର ଆଳୟ ପ୍ରାୟ, ଏହି ରାଜ୍ୟରେ ଶଙ୍କିତ ଚିତ୍ତରେ ଅବସ୍ଥାନ କରୁଅଛୁଁ । ୫୧ ।

ହେ ରାଜସତ୍ତମ ! ରାଜା ଜିତେନ୍ଦ୍ରିୟ କିନା, ଏହାଙ୍କର କାମାଦି ସବୁ ଜୟ ହୋଇଅଛି କିନା, ଯେ ଅମାତ୍ୟ ମାନଙ୍କର ପ୍ରିୟ କିନା, ଏବଂ ପ୍ରଜାମାନେ ଏହାଙ୍କର ପ୍ରିୟ କି ନା, ଏହିସବୁ ଜାଣିବା ନିମିତ୍ତ ଆମ୍ଭେ ଆପଣଙ୍କ ନିକଟକୁ ଆଗମନ କରିଅଛୁଁ ।

ହେ ରାଜନ୍ ! ବୁଭୁକ୍ଷିତ ବ୍ୟକ୍ତିର ଭୋଜନୀୟ ଦ୍ରବ୍ୟ ପ୍ରାୟ, ଆପଣ ଆମ୍ଭର ଅଭିଳଷିତ ହୋଇ ଅଛନ୍ତି । କିନ୍ତୁ ଆପଣଙ୍କର ଅମାତ୍ୟଗଣ ବିତୃପ୍ତ ବ୍ୟକ୍ତିର ଉଦକ ପ୍ରାୟ, ଆମ୍ଭର ଅନଭିଳଷିତ ହୋଇଅଛନ୍ତି । ଆପଣ ଏହା ନିଶ୍ଚୟ ଜାଣିବେ ଯେ. ଆମ୍ଭେ ଆପଣଙ୍କର ଅର୍ଥକାଂକ୍ଷୀ ଏହି କାରଣରୁ ସେମାନେ ଏହିପରି ଦୋଷ ଆମ୍ଭଠାରେ ଆରୋପ କରୁଅଛନ୍ତି, କିନ୍ତୁ କୌଣସି କାରଣ ଆମ୍ଭଠାରେ ବିଦ୍ୟମାନ ନାହିଁ । ଆମ୍ଭେ ସେମାନଙ୍କର କୌଣସି ଅନିଷ୍ଟାଚରଣ କରିନାହୁଁ । ତଥା ଯେତେବେଳେ ସେମାନେ ଦୋଷଦର୍ଶୀ ହୋଇଅଛନ୍ତି, ତେତେବେଳେ ଆମ୍ଭର ଆଉ ଏଠାରେ ଅବସ୍ଥାନ କରିବା ଉଚିତ ନୁହେ । କାରଣ ପୃଷ୍ଠଭଙ୍ଗ ଦ୍ୱାରା କୁପିତ ଉରଗ ପ୍ରାୟ ଦୁଷ୍ଟଚିତ୍ତ ଶତ୍ରୁଠାରୁ ସତତ ଶଙ୍କା କରିବା କର୍ତ୍ତବ୍ୟ ।୫୫।

ରାଜା କହିଲେ—ହେ ବ୍ରାହ୍ମଣ ଶ୍ରେଷ୍ଠ ! ଆମ୍ଭେ ଧୃତବ୍ରତ ପରିହାର ସ୍ୱୀକାର ପୂର୍ବକ ସମଧିକ ସତ୍କାର ଦ୍ୱାରା ଆପଣଙ୍କୁ ପୂଜା କରୁଅଛୁଁ, ଆପଣ ଆମ୍ଭର ଆବାସରେ ବହୁକାଳ ବାସ କରନ୍ତୁ ।୫୬।

ହେ ବ୍ରାହ୍ମଣ ! ଆମ୍ଭର ଅମାତ୍ୟ ଗଣଙ୍କ ମଧ୍ୟରେ ଯେଉଁମାନେ ଆପଣଙ୍କ ପ୍ରତି ଅନୁକୂଳ ଆଚରଣ ନ କରିବେ, ସେମାନେ ଆମ୍ଭ ଗୃହରେ ବାସ କରି ପାରିବେ ନାହିଁ । ଏବଂ ପରେ ସେମାନଙ୍କର ଯାହା ହେବ, ତାହା ଆପଣ ଜାଣି ପାରିବେ । ହେ ଭଗବନ୍ ! ଯଦ୍ୱାରା ଦଣ୍ଡ ସୁନ୍ଦର ରୂପରେ ଧୃତ ଏବଂ ସୁକୃତ କାର୍ଯ୍ୟ ସୁନ୍ଦର ରୂପରେ ସାଧନ ହେବ, ତଦ୍‌ବିଷୟରେ ବିଶେଷ ସମାଲୋଚନା କରି ମଙ୍ଗଳାର୍ଥ ଆମ୍ଭଙ୍କୁ ନିୟୋଗ କରନ୍ତୁ । ୫୮ ।

ମୁନି କହିଲେ—ପ୍ରଥମତଃ ବାୟସ ବଧ ଜନିତ ଦୋଷକୁ ପ୍ରଦର୍ଶନ କରି ଗୋଟିଏ ଗୋଟିଏ ଅମାତ୍ୟକୁ କ୍ରମଶଃ ଦୁର୍ବଳ ଅର୍ଥାତ୍ ଐଶ୍ୱର୍ଯ୍ୟଚ୍ୟୁତ କରନ୍ତୁ । ପରେ ବାୟସ ବଧର ବୃତ୍ତାନ୍ତ ବିଶେଷ ଭାବରେ ଜ୍ଞାତ ହୋଇ ସେମାନଙ୍କୁ ଏକ ଏକ କରି ବଧ କରନ୍ତୁ ।୫୯।

ହେ ରାଜନ୍ ! ବହୁଲୋକ ଏକ ଦୋଷରେ ଦୋଷୀ ହେଲେ ସମସ୍ତେ ସଙ୍ଗତ ହୋଇ ଅତିଶୟ ତୀକ୍ଷ୍ଣ କଣ୍ଟକକୁ ସୁଦ୍ଧା କୋମଳ କରନ୍ତି । ଅତଏବ ମନ୍ତ୍ରଭେଦ ହେବା ଭୟରେ ଆମ୍ଭେ ଆପଣଙ୍କୁ ଏହିପରି

କହୁଅଛୁଁ । ୬୦ । ଆମ୍ଭେମାନେ ବ୍ରାହ୍ମଣ ଜାତ, ସ୍ୱଭାବତଃ ଦୟାଳୁ ଅଟୁଁ । ସୁତରାଂ ଆମ୍ଭମାନଙ୍କର ଦଣ୍ଡ ଅତ୍ୟନ୍ତ କୋମଳ । ଆମ୍ଭେମାନେ ନିଜ ସଦୃଶ ପରର ଓ ନିଜର ମଙ୍ଗଳାକାଙ୍କ୍ଷା କରୁଁ । ୬୧ ।

ହେ ରାଜନ୍ ! ଆପଣଙ୍କ ସହିତ ଆମ୍ଭର ଯେଉଁ ସମ୍ବନ୍ଧ ଅଛି, ସେହି ନିଜ ପରିଚୟ ଆପଣଙ୍କୁ କହୁଅଛୁଁ । ଆମ୍ଭର ନାମ କାଳକ ବୃକ୍ଷୀୟ ବୋଲି ପ୍ରସିଦ୍ଧ । ୬୨ । ଆମ୍ଭେ ସତ୍ୟ-ପ୍ରତିଜ୍ଞ ବୋଲି ଆପଣଙ୍କର ପିତା ଆମ୍ଭଙ୍କୁ ସଖାସମ ସମ୍ମାନ କରୁଥିଲେ, ସୁତରାଂ ସେ ପରଲୋକ ପ୍ରାପ୍ତ ହେବାରୁ ଆମ୍ଭେ ତତ୍କାଳରେ ସମସ୍ତ କାମନା ପରିତ୍ୟାଗ କରି ତପସ୍ୟା କରୁଥିଲୁ । କିନ୍ତୁ ଆପଣଙ୍କର ରାଜ୍ୟ ବିପନ୍ନ ହେବାରୁ ଆମ୍ଭେ ଏଠାକୁ ଆସିଅଛୁଁ ଏବଂ ସେହି ସ୍ନେହ ବଶତଃ ଆପଣଙ୍କୁ ବାରମ୍ବାର ଏହିକଥା କହୁଅଛୁଁ । ଅତଏବ ଆପଣ ଅଜ୍ଞ ଅନାପ୍ତ ବ୍ୟକ୍ତିଠାରେ ଆସ୍ଥା ବୁଦ୍ଧି କରିବେ ନାହିଁ । ୬୪ । ଆପଣ ଯଦୃଚ୍ଛା କ୍ରମେ ରାଜ୍ୟଲାଭ କରିଅଛନ୍ତି ଏବଂ ସୁଖ ଦୁଃଖ ଉଭୟ ବିଦ୍ୟମାନ ଦେଖିଅଛନ୍ତି । ତଥାପି କାହିଁକି ଏତାଦୃଶ ଅମାତ୍ୟଗଣଙ୍କ ପ୍ରତି ରାଜ୍ୟଭାର ଅର୍ପଣକରି ପ୍ରମାଦଗ୍ରସ୍ତ ହୁଅନ୍ତି । ୬୫ । ପଣ୍ଡିତମାନେ କହନ୍ତି ଯେ ରାଜକୁଳ ଜାତ କ୍ଷତ୍ରିୟ ଅଥବା ପୁରୋହିତ କୁଳ ସମ୍ଭୂତ ଉତ୍କୃଷ୍ଟ ବ୍ରାହ୍ମଣଙ୍କୁ ଯତ୍ନ ସହକାରେ ଅମାତ୍ୟ ପଦରେ ନିଯୁକ୍ତ କରିବ । ୬୬ ।

ହେ ଯୁଧିଷ୍ଠିର ! କାଳକ ବୃକ୍ଷୀୟ ମୁନି ଏହିପରି ଯଶସ୍ୱୀ କୌଶଲ୍ୟଙ୍କର ଅସାଗର ବସୁନ୍ଧରାକୁ ଏକଛତ୍ରୀ କୃତ କରି ଅତ୍ୟୁତ୍କୃଷ୍ଟ ମଙ୍ଗଳ କାର୍ଯ୍ୟକଲେ ଏବଂ କୌଶଲ୍ୟରାଜ ତାହାଙ୍କର ତାଦୃଶ ହିତକର ବାକ୍ୟ ଶ୍ରବଣ ପୂର୍ବକ ପୃଥିବୀକୁ ଜୟକରି ତାହାଙ୍କର ଆଦେଶାନୁସାରେ କାର୍ଯ୍ୟ କଲେ । ୬୮ ।

## ଅଧ୍ୟାୟ—୮୩

ଯୁଧିଷ୍ଠିର କହିଲେ—ହେ ପିତାମହ ! କାଦୃଶ ବ୍ୟକ୍ତି ନୃପତିଙ୍କର ସଭାସଦ, ବ୍ୟବହାର ନିର୍ଣ୍ଣୟକ, ସହାୟ ଓ ଯୁଦ୍ଧାଦିର ଉପଯୋଗୀ, ସୁହୃଦ, ମନ୍ତ୍ରୀ, ସେନାନାୟକ ଓ ଅମାତ୍ୟ ହେବେ । ୧ ।

ଭୀଷ୍ମ କହିଲେ—ହେ ଭାରତ ! ଯେଉଁମାନେ ଲଜ୍ଜାଶୀଳ ଜିତେନ୍ଦ୍ରିୟ, ସତ୍ୟ ଓ ସରଳତା ସମ୍ପନ୍ନ ଅଟନ୍ତି ଏବଂ ପ୍ରିୟ ଓ ଅପ୍ରିୟ

ବାକ୍ୟ ସମ୍ୟକ ପ୍ରକାରରେ କହିବାକୁ ସମର୍ଥ ଅଟନ୍ତି, ତାଦୃଶ ଲୋକଙ୍କୁ ତୁମ୍ଭେ ସଭାସଦ୍ କରିବ । ୭ ।

ହେ କୌନ୍ତେୟ ! ଯେଉଁମାନେ ନିତ୍ୟ ସନ୍ନିହିତ, ଶୌର୍ଯ୍ୟଶାଳୀ, ସାତିଶୟ ଶ୍ରବଣ ଶକ୍ତି ସମ୍ପନ୍ନ ଓ ସ୍ୱଧର୍ମନିଷ୍ଠ ବ୍ରାହ୍ମଣ ଅଟନ୍ତି, ସେମାନଙ୍କୁ ଆପତ୍ସମୟରେ ସହାୟ କରିବ । ହେ ଭାରତ ! ଯେ କୁଳୀନ, ସତତ ସମ୍ମାନିତ ନିଜର ଶକ୍ତିକୁ ସଂଗୋପନ କରନ୍ତି ନାହିଁ, ଏବଂ ପ୍ରସନ୍ନ ଅପ୍ରସନ୍ନ, ପୀଡ଼ିତ କିମ୍ବା ହତ ଭୃତ୍ୟବର୍ଗଙ୍କୁ ସମ୍ପୂର୍ଣ୍ଣ ରୂପରେ ଆବର୍ଜିତ କରନ୍ତି, ତାହାଙ୍କୁ ସୁହୃଦ ବୋଲି ଜାଣିବ । ଯେଉଁମାନେ କୁଳୀନ, ସ୍ୱଦେଶଜ, ପ୍ରାଜ୍ଞ, ରୂପବାନ୍, ବହୁଶ୍ରୁତ, ପ୍ରଗଲ୍ଭ ଓ ଅନୁରକ୍ତ ସେମାନଙ୍କୁ ପରିଚ୍ଛଦ କରିବ । ୬ ।

ହେ ତାତ ! ଯେଉଁମାନେ ଦୁଷ୍କୁଳଜାତ, ଲୁବ୍‌ଧ, ନୃଶଂସ ଓ ନିର୍ଲ୍ଲଜ, ସେମାନେ ଯାବତ୍କାଳ ଅଦ୍ରହସ୍ତ ଅର୍ଥାତ୍ ଧନବାନ ଥିବେ, ତାବତ୍ କାଳ ତୁମର ସେବା କରିବେ । ଶୁଷ୍କ ଅର୍ଥାତ୍ ରିକ୍ତହସ୍ତ ହେଲେ ତତ୍କ୍ଷଣାତ୍ ବିରକ୍ତ ହୋଇ ଆଉ ସେବା କରିବେ ନାହିଁ । ଅତଏବ ସେମାନଙ୍କୁ ପରିଚ୍ଛେଦ କରିବା ଉଚିତ ନୁହେଁ; ଆଉ ଯେଉଁମାନେ କୁଳୀନ, ସତ୍ ସ୍ୱଭାବାପନ୍ନ, ଇଙ୍ଗିତଜ୍ଞ, ଅନିଷ୍ଠୁର, ଦେଶକାଳ ଓ ବିଧାନବିତ ଏବଂ ଭର୍ତ୍ତ୍ୟ କାର୍ଯ୍ୟ ହିତୈଷୀ, ସେମାନଙ୍କୁ ସତତ ସର୍ବକାର୍ଯ୍ୟରେ ଅମାତ୍ୟ କରିବ । ଯେଉଁମାନଙ୍କୁ ପ୍ରୟୋଜନ ବିବେଚନା କରି ଅର୍ଥ, ମାନ, ଦ୍ରବ୍ୟ ବସନ ଓ ତାମ୍ବୂଳାଦିଦାନ ଏବଂ ସତ୍କାର ପ୍ରଭୃତି ବହୁବିଧ ଉପାୟଦ୍ୱାରା ପ୍ରତିପାଳନ କରିବ, ସେମାନଙ୍କର ଅର୍ଥ ଓ ସୁଖଭାଗୀ ହେବ । ୯ । ଯେଉଁମାନଙ୍କର ଚରିତ୍ର କୌଣସି ପ୍ରକାରେ ବିଭିନ୍ନ ହୁଏ ନାହିଁ, ଏବଂ ଯେଉଁମାନେ ବିଦ୍ୱାନ, ସଦ୍‌ବୃତ୍ତ, ବ୍ରତାନୁଷ୍ଠାୟୀ, ସତ୍ୟବାଦୀ ଓ ଅକ୍ଷୁଦ୍ର ଅଟନ୍ତି, ସେମାନେ ନିତ୍ୟାର୍ଥୀ ଅର୍ଥାତ୍ ନିତ୍ୟ ସ୍ୱାମୀଙ୍କର ଅର୍ଥଚିନ୍ତା କରନ୍ତି ଏବଂ ଆପତ୍କାଳରେ ସ୍ୱାମୀଙ୍କୁ କଦାପି ପରିତ୍ୟାଗ କରନ୍ତି ନାହିଁ । ଆଉ ଯେଉଁମାନେ ଅନାର୍ଯ୍ୟ, ଅଧାର୍ମିକ, ମନ୍ଦବୁଦ୍ଧି ଓ ମର୍ଯ୍ୟାଦାବିହୀନ ଅଟନ୍ତି, ସେମାନଙ୍କଠାରୁ ସମସ୍ତ ଅର୍ଥାତ୍ ଧର୍ମାଧର୍ମର ମର୍ଯ୍ୟାଦାକୁ ସର୍ବତୋଭାବରେ ରକ୍ଷା କରିବ । ୧୧ ।

ସମସ୍ତଙ୍କ ମଧ୍ୟରେ ଅନ୍ୟରେ ଗ୍ରହଣ କରିବାକୁ ହେଲେ, ଗଣ ପରିତ୍ୟାଗ କରି ଏକବ୍ୟକ୍ତିକୁ ଗ୍ରହଣ କରିବାକୁ ଇଚ୍ଛା କରିବ ନାହିଁ, କିନ୍ତୁ

ଏକବ୍ୟକ୍ତି ଗଣ ଅର୍ଥାତ୍ ସମସ୍ତଙ୍କ ମଧ୍ୟରେ ପ୍ରଧାନ ହେଲେ, ଗଣ ପରିତ୍ୟାଗ କରିସୁଦ୍ଧା ଏକବ୍ୟକ୍ତିଙ୍କୁ ଗ୍ରହଣ କରିବା କର୍ତ୍ତବ୍ୟ । ୧୨ । ଯେଉଁ ଉତ୍ତମ କୀର୍ତ୍ତି ଓ ସମରରେ ଅବସ୍ଥିତ ହୋଇ ବିକ୍ରମ ପ୍ରଦର୍ଶନ କରନ୍ତି, ତାହା ତାଙ୍କର ସାଧୁ ଲକ୍ଷଣ ବୋଲି ବୋଧ କରିବ । ଆଉ ଯେ ସମର୍ଥ ବ୍ୟକ୍ତିଙ୍କୁ ସ୍ପର୍ଦ୍ଧା ନ କରନ୍ତି, ସ୍ପର୍ଦ୍ଧାହୀନ ପୁରୁଷଙ୍କ ପ୍ରତି ସ୍ପର୍ଦ୍ଧା କରନ୍ତି ନାହିଁ, କାମ କ୍ରୋଧ, ଭୟ ଓ ଲୋଭ ବଶତଃ ଧର୍ମ ତ୍ୟାଗ କରନ୍ତି ନାହିଁ ଏବଂ ଅଭିମାନ ଶୂନ୍ୟ, ସତ୍ୟବାଦୀ, କ୍ଷମାଶୀଳ, ଜିତାତ୍ମା, ମାନୀ ଓ ସର୍ବାବସ୍ଥାରେ ପରୀକ୍ଷିତ ଅଟନ୍ତି, ସେ ତୁମ୍ଭର ମନ୍ତ୍ର ସହାୟ ହେବେ । ୧୫ ।

ହେ ପାର୍ଥ ! ଯେ କୁଳୀନ, ସତ୍କୁଳ ସମ୍ଭୂତ, କ୍ଷମାବାନ, ପଟୁ, ପ୍ରଶସ୍ତଚିତ୍ତ, ଶୂର, କୃତଜ୍ଞ ଓ ସତ୍ୟଧର୍ମୀ ଅଟନ୍ତି, ସେ ସାଧୁ, କାରଣ ଏହି ଗୁଣସବୁ ସାଧୁଲୋକଙ୍କର ଲକ୍ଷଣ ବୋଲି ବିଖ୍ୟାତ ଅଛି । ୧୬ । ବିଦ୍ୱାନ ପ୍ରାଜ୍ଞ ପୁରୁଷ ନିକଟରେ ବିଦ୍ୟମାନ ଥିଲେ, ଅମିତ୍ରଗଣ ପ୍ରସନ୍ନ ହୋଇ ମିତ୍ରବତ୍ ବ୍ୟବହାର କରନ୍ତି, ଅତଏବ ସଂଯତାତ୍ମା କୃତପ୍ରଜ୍ଞ ଭୂତିକାମ ଭୂମିପତି ଏତାଦୃଶ ଅମାତ୍ୟଙ୍କ ଭିନ୍ନ ଅନ୍ୟ ଅମାତ୍ୟ ବୃନ୍ଦଙ୍କର ସମସ୍ତ ଦୋଷଗୁଣ ପରୀକ୍ଷା କରିବେ ।

ହେ ରାଜନ୍ ! ଉନ୍ନତିଶାଳୀ ଭୂତିକାମ ଭୂପତିଗଣ ଆତ୍ମୀୟ, କୁଳୀନ, ସ୍ୱଦେଶଜାତ, ଉତ୍କୋଚ ଚନ୍ଦନାଦି ବିଷୟଦ୍ୱାରା ଅବଶୀକୃତ, ବ୍ୟଭିଚାର ବିରହିତ ଓ ସୁନ୍ଦରରୂପେ ପରୀକ୍ଷିତ ପୁରୁଷମାନଙ୍କ ସହିତ ସମ୍ବନ୍ଧ ଏବଂ ଉତ୍କୃଷ୍ଟ ଯୋନିସମ୍ଭୂତ, ବେଦପାରଗ, ପରମ୍ପରାଗତ ଓ ଅନହଙ୍କୃତ ମାନବଗଣଙ୍କୁ ମନ୍ତ୍ରୀ କରିବେ । ୨୦ । ଯେଉଁମାନଙ୍କର ବିନୟପ୍ରବର୍ତ୍ତୀ ବୁଦ୍ଧି, ସୁଶୋଭନ ପ୍ରକୃତି, ତେଜ, ଧୈର୍ଯ୍ୟ, କ୍ଷମା, ଶୌଚ, ଅନୁରାଗ ମର୍ଯ୍ୟାଦା ଏବଂ ଧାରଣା ଏହି ସମସ୍ତଗୁଣ ବିଦ୍ୟମାନ ଅଛି, ରାଜା ସେମାନଙ୍କର ଉକ୍ତ ଗୁଣମାନ ସତତ ପରୀକ୍ଷା କରି ସେହି ପ୍ରୌଢ଼ଭାବ ଧୁରନ୍ଧର ଅକପଟ ପଞ୍ଚଜନ ପୁରୁଷଙ୍କୁ ଅର୍ଥକାର୍ଯ୍ୟରେ ନିଯୁକ୍ତ କରିବ । ୨୦ । ଯେଉଁମାନେ ପର୍ଯ୍ୟାପ୍ତବାଦୀ, ବୀର, ପ୍ରତିପତ୍ତି ବିଶାରଦ, କୁଳୀନ, ସତ୍ୟ-ସମ୍ପନ୍ନ, ଇଙ୍ଗିତଜ୍ଞ, ଅନିଷ୍ଠୁର, ଦେଶକାଳ ବିଧାନବିତ୍ ଏବଂ ସ୍ୱାମୀ-କାର୍ଯ୍ୟହିତୈଷୀ ଅଟନ୍ତି ରାଜା ସେମାନଙ୍କୁ ସମସ୍ତ ଅର୍ଥ କାର୍ଯ୍ୟରେ ମନ୍ତ୍ରୀ କରିବେ । ୨୪ ।

ହେ ରାଜନ୍ ! ଯେଉଁ ବ୍ୟକ୍ତି ଯେକୌଣସି ମିତ୍ରଙ୍କ ସହିତ ସଂସର୍ଗ କରେ ସେ କଦାଚ କର୍ତ୍ତବ୍ୟାକର୍ତ୍ତବ୍ୟ ବିଷୟ ନିଶ୍ଚୟ କରିବାକୁ ସମର୍ଥ ହୁଏନାହିଁ । ନିଶ୍ଚୟ ସମସ୍ତ କାର୍ଯ୍ୟରେ ସଂଶୟୋତ୍ପାଦନ କରେ ଅତଏବ ରାଜା ଏତାଦୃଶ ମାନବଙ୍କୁ କଦାପି ମନ୍ତ୍ରୀ କରିବେ ନାହିଁ । ଅପିଚ ଅଳ୍ପ ଶ୍ରୁତମାନବ ସଦ୍‌ବଂଶଜାତ ଏବଂ ଧର୍ମ, ଅର୍ଥ ଓ କାମ ଏହି ଏହି ତ୍ରିବର୍ଗ ସଂଯୁକ୍ତ ହେଲେ ହେଁ ମନ୍ତ୍ର ପରୀକ୍ଷା କରିବାକୁ ସମର୍ଥ ହୁଏ ନାହିଁ । ଅତଏବ ତାହାଙ୍କୁ ଅମାତ୍ୟପଦରେ ନିଯୁକ୍ତ କରିବା କର୍ତ୍ତବ୍ୟ ନୁହେଁ । ୨୭ । ଅଧିକନ୍ତୁ ଅସଦ୍‌ବଂଶଜାତ ମାନବ ଯଥେଷ୍ଟରୂପରେ ବହୁଶ୍ରୁତହେଲେ ସୁଦ୍ଧା, ଅନାୟକ ଅନ୍ଧପ୍ରାୟ, ସୂକ୍ଷ୍ମ କର୍ମରେ ମୁଗ୍ଧ ହୁଏ, ଅତଏବ ରାଜା ତାହାଙ୍କୁ ମନ୍ତ୍ରୀପଦରେ ନିଯୁକ୍ତ କରିବେ ନାହିଁ । ୨୮ ।

ଅସ୍ଥିର ସଙ୍କଳ୍ପ ପୁରୁଷ ବୁଦ୍ଧିମାନ, ଆଗମ ବିତ୍ ଓ ଉପାୟଜ୍ଞ ହେଲେ ହେଁ ସେ ବହୁ କାଳରେ କର୍ମ ସମାପନ କରିବାକୁ ସମର୍ଥ ହୁଏ ନାହିଁ । ଏହି ସଂସାରରେ ଯେଉଁ ଦୁର୍ବୃତ୍ତ ମାନବ କର୍ମର ବିଶେଷଫଳ ନଜାଣି କେବଳ କର୍ମ କରୁଥାଏ ତାହାର ପରାମର୍ଶ ଗ୍ରାହ୍ୟ ନୁହେଁ । ୨୯ । ଅନନୁରକ୍ତ ମନ୍ତ୍ରୀଙ୍କଠାରେ ବିଶ୍ୱାସ କରିବା ଯୁକ୍ତିଯୁକ୍ତ ନାହିଁ, ତନିମିତ୍ତ ଅନନୁରକ୍ତ ମନ୍ତ୍ରୀଙ୍କଠାରେ କଦାପି ମନ୍ତ୍ରଣା ପ୍ରକାଶ କରିବ ନାହିଁ । ୩୦ । କାରଣ ଅନଳ ଯେପରି ବୃକ୍ଷ ଛିଦ୍ରଦ୍ୱାରା ପ୍ରବିଷ୍ଟ ହୋଇ ଅନଳ ପ୍ରାୟ, ବୃକ୍ଷକୁ ଦଗ୍ଧ କରେ, ତଦ୍ରୂପ ସେହି ଅକପଟ ମନ୍ତ୍ରୀ ଅପର ମନ୍ତ୍ରୀଗଣଙ୍କ ସହିତ ମିଳିତ ହୋଇ ରାଜାଙ୍କୁ ବ୍ୟଥିତ କରେ । ୩୧ ।

ସ୍ୱାମୀ କଦାଚିତ୍ କ୍ରୁଦ୍ଧହେଲେ ମନ୍ତ୍ରୀଙ୍କୁ ସ୍ଥାନଚ୍ୟୁତ କରନ୍ତି କିମ୍ବା ବାକ୍ୟଦ୍ୱାରା ଭର୍ତ୍ସନା କରି ପୁନର୍ବାର ତାହାଙ୍କ ପ୍ରତି ପ୍ରସନ୍ନ ହୁଅନ୍ତି; କିନ୍ତୁ ଅନୁରକ୍ତ ମିତ୍ର କେବଳ ସ୍ୱାମୀଙ୍କର ତତ୍ସ୍ୱରୂପଦାୟି ଉପଦ୍ରବ୍ୟ ସହ୍ୟ କରନ୍ତି ଏବଂ ଅନନୁରକ୍ତ ମିତ୍ର ତାହା କଦାପି ସହ୍ୟ କରେନାହିଁ, ସେମାନଙ୍କର କ୍ରୋଧ ବଜ୍ରଶବ୍ଦ ସଦୃଶ ହୋଇଥାଏ ।୩୩ ଯେଉଁ ମନ୍ତ୍ରୀ ସ୍ୱାମୀଙ୍କର ପ୍ରିୟ କାମନାରେ ତାହାଙ୍କର ସେହି ଉପଦ୍ରବ୍ୟ ସବୁ ସହାର କରିପାରନ୍ତି, ରାଜା ସମାନ ସୁଖଦୁଃଖ ଭାଗୀ ସେହି ମାନବଙ୍କୁ ଅର୍ଥ ବିଷୟରେ ପରାମର୍ଶ ଜିଜ୍ଞାସା କରିବେ । ୩୪ । ଅନୃଜୁମାନବ ଇତରଗୁଣ ସମ୍ପନ୍ନ ଅନୁରକ୍ତ ଓ ପ୍ରଜ୍ଞା ସମ୍ପନ୍ନହେଲେ ସୁଦ୍ଧା ସେ ରାଜାଙ୍କର ମନ୍ତ୍ରଣା ଶ୍ରବଣ କରିବାକୁ ଉପଯୁକ୍ତ ନୁହନ୍ତି ।୩୫। ଯେଉଁ ମାନବ ଅମିତ୍ରଗଣଙ୍କ

ସହିତ ସମ୍ବନ୍ଧ ହୋଇ ପୁରବାସିମାନଙ୍କ ବହୁମାନ ନ କରନ୍ତି, ତାଦୃଶ ବ୍ୟକ୍ତି ଅସୁହୃତ ବୋଲି ପରିଗଣିତ ହୁଅନ୍ତି, ଏବଂ ସେ ମନ୍ତ୍ରଣା ଶ୍ରବଣ କରିବାର ଯୋଗ୍ୟ ନୁହନ୍ତି ।୩୦ ।

ଅବିଦ୍ୱାନ୍, ଅଶୁଚି, ସ୍ତବ୍ଧ, ଶତ୍ରୁସେବୀ, ଆତ୍ମଶ୍ଲାଘୀ ଅସୁହୃତ, କ୍ରୋଧନ ଓ ଲୁବ୍ଧ ଏମାନେ ରାଜାଙ୍କର ମନ୍ତ୍ରଣା ଶ୍ରବଣ କରିବାକୁ ଉପଯୁକ୍ତ ନୁହନ୍ତି । ୩୭। ଆଗନ୍ତୁକ ବ୍ୟକ୍ତି, ଅନୁରକ୍ତ, ବହୁଶ୍ରୁତ, ସତ୍କୃତ, ଓ ସମ୍ବିଭକ୍ତ ହେଲେହେଁ, ମନ୍ତ୍ରଣା ଶ୍ରବଣ କରିବାର ଉପଯୁକ୍ତ ନୁହନ୍ତି । ୩୮ ।

ପୂର୍ବେ ଯାହାର ପିତା ଅଧର୍ମାଚରଣ ବଶତଃ ବିପ୍ରକୃତ ହୋଇ ଅଛନ୍ତି, ସେହିବ୍ୟକ୍ତି ସତ୍କୃତ ଓ ସ୍ଥାପିତ ହେଲେ ସୁଦ୍ଧା ମନ୍ତ୍ରଣା ଶ୍ରବଣ କରିବାକୁ ଯୋଗ୍ୟନୁହେଁ । ୩୯ । ଯେଉଁ ବ୍ୟକ୍ତି ଯତ୍‌କିଞ୍ଚିତ୍ କାର୍ଯ୍ୟ ନିମନ୍ତେ ସୁହୃଦର ସର୍ବସ୍ୱ ହରଣକରି ତାହାଙ୍କୁ ନିର୍ଦ୍ଧନ କରନ୍ତି, ତାହାଙ୍କର ଅପରାପର ଗୁଣଥିଲେ ସୁଦ୍ଧା, ସେ ମନ୍ତ୍ରଣାଶ୍ରବଣ କରିବାର ଉପଯୁକ୍ତ ନୁହନ୍ତି । ୪୦ । ଯେଉଁମାନବ କୃତପ୍ରଜ୍ଞ, ମେଧାବୀ, ପଣ୍ଡିତ, ଜନପଦ-ବାସୀ, ପରମ ପବିତ୍ର ଓ ସମସ୍ତ କାର୍ଯ୍ୟରେ ବିଶୁଦ୍ଧ ଅଟନ୍ତି, ସେହିବ୍ୟକ୍ତି ରାଜାଙ୍କର ମନ୍ତ୍ରଣାଶ୍ରବଣ କରିବାକୁ ଯୋଗ୍ୟ ଅଟନ୍ତି । ୪୧ ।

ଯେଉଁ ବ୍ୟକ୍ତି ଜ୍ଞାନ ଓ ବିଜ୍ଞାନ ସମ୍ପନ୍ନ ଅଟନ୍ତି, ଶତ୍ରୁମାନଙ୍କର ଓ ନିଜର ପ୍ରକୃତିକୁ ଜାଣିବାକୁ ସମର୍ଥ ଅଟନ୍ତି, ଏବଂ ସୁହୃଦଗଣଙ୍କୁ ଆତ୍ମତୁଲ୍ୟ ଜ୍ଞାନ କରନ୍ତି, ସେହି ସେ ରାଜାଙ୍କର ମନ୍ତ୍ରଣାଶ୍ରବଣ କରିବାକୁ ଯୋଗ୍ୟ ଅଟନ୍ତି । ୪୨ । ଯେଉଁ ବ୍ୟକ୍ତି ସତ୍ୟବାଦୀ, ସୁଶୀଳ, ଗମ୍ଭୀର ଅର୍ଥାତ୍ ମନ୍ତ୍ରଗୋପନ କରିବାକୁ ସମର୍ଥ, ଲଜ୍ଜାଶୀଳ, ମୃଦୁ ଏବଂ ପିତୃ-ପିତାମହ କ୍ରମରେ ବିଦ୍ୟମାନ ଥାନ୍ତି, ସେହିବ୍ୟକ୍ତି ରାଜାଙ୍କର ମନ୍ତ୍ରଣା ଶ୍ରବଣ କରିବାକୁ ଯୋଗ୍ୟ ଅଟନ୍ତି । ୪୩ । ଯେଉଁ ବ୍ୟକ୍ତି ସନ୍ତୁଷ୍ଟ, ସର୍ବସମ୍ମତ, ସତ୍ୟପର, ପ୍ରଗଲ୍‌ଭ, ପାପଦ୍ୱେଷୀ, ମନ୍ତ୍ରବିତ୍ ଓ କାଳଜ୍ଞ, ଓ ଶୂର ଅଟନ୍ତି, ସେହିବ୍ୟକ୍ତି ମନ୍ତ୍ରଣାଶ୍ରବଣ କରିବାର ଉପଯୁକ୍ତ ଅଟନ୍ତି । ୪୪ ।

ହେ ନୃପ ! ଯେଉଁ ମାନବ ଶାନ୍ତ୍ୱ ବଚନଦ୍ୱାରା ସମସ୍ତଙ୍କୁ ବଶୀକୃତ କରିବାକୁ ସମର୍ଥ ହୁଅନ୍ତି, ଦଣ୍ଡଧାରୀ ନୃପତି ତାହାଙ୍କୁ ମନ୍ତ୍ର

ପ୍ରୟୋଗ କରିବେ । ୪୬ । ପୌର ଓ ଜନପଦ ବାସିମାନେ ଯାହାଙ୍କୁ ଧର୍ମତଃ ବିଶ୍ୱାସ କରନ୍ତି, ସେହି ଯୋଦ୍ଧା ମାନଙ୍କ, ପଣ୍ଡିତ ପୁରୁଷ ମନ୍ତ୍ରଣା ଶ୍ରବଣ କରିବାର ଉପଯୁକ୍ତ ଅଟନ୍ତି । ୪୭ ।

ଅତଏବ ହେ ରାଜନ ! ପୂର୍ବୋକ୍ତ ପ୍ରକୃତିଙ୍କ, ସହାୟେ ସମ୍ପନ୍ନ ପଞ୍ଚଜନ ମନ୍ତ୍ରୀ ଏତାଦୃଶ ଗୁଣଯୁକ୍ତ ହେଲେ ସମ୍ମାନସହିତ ସେମାନଙ୍କୁ ରାଜକାର୍ଯ୍ୟରେ ନିଯୁକ୍ତ କରିବ । ପରନ୍ତୁ ପଞ୍ଚଜନ ନ ପାଇଲେ ତିନିଜଣର ନ୍ୟୂନ ରଖିବ ନାହିଁ । ସ୍ୱାମୀ, ଅମାତ୍ୟାଦି ସ୍ୱକୀୟ ପ୍ରକୃତିଗଣଙ୍କ ମଧ୍ୟରେ ମନ୍ତ୍ରୀ ଗଣଙ୍କର ଶତ୍ରୁପକ୍ଷକୁ ଅବସର ରୂପ ଛିଦ୍ର ଏବଂ ପରର ଛିଦ୍ର, ସର୍ବଦା ଲକ୍ଷ କରିବେ । ଯେହେତୁ ରାଜାମାନଙ୍କର ମନ୍ତ୍ରମୂଳ ରାଷ୍ଟ୍ର ବିଶେଷ ରୂପରେ ବର୍ଦ୍ଧିତ ହୁଏ । ୪୮ ।

ନିଜର ଛିଦ୍ର ଶତ୍ରୁପକ୍ଷମାନେ ଯେପରି ଦେଖି ନ ପାରନ୍ତି, ସେପରି ଗୋପନକରି ଶତ୍ରୁମାନଙ୍କର ଛିଦ୍ର ଅନୁସନ୍ଧାନ କରିବ । କୂର୍ମ ଯେପରି ନିଜର ଅଙ୍ଗକୁ ସଂଗୋପନ କରେ, ତଦ୍ରୂପ ନିଜର ଛିଦ୍ରକୁ ସଂଗୋପନ କରିବ । ରାଜାଙ୍କର ମନୀଷି ମନ୍ତ୍ରୀଗଣ ମନ୍ତ୍ରସବୁ ଗୋପନ କରିବେ । ରାଜା ମନ୍ତ୍ରରୂପ କବଚ ଧାରଣ କରିବେ ଏବଂ ଶୂରଜନମାନେ ମନ୍ତ୍ରାଙ୍ଗ ସବୁ ରକ୍ଷାକରିବେ । ୫୦ । ପଣ୍ଡିତମାନେ ଚରକୁ ରାଜ୍ୟର ମୂଳ ଏବଂ ମନ୍ତ୍ରକୁ ରାଜ୍ୟର ସାରବୋଲି କହନ୍ତି । କିନ୍ତୁ ସ୍ୱାମୀ ଏବଂ ମନ୍ତ୍ରୀଗଣ ମଦ, କ୍ରୋଧ ଓ ମାନ ବିହୀନ ହୋଇ ବୃତ୍ତିନିମିତ୍ତ ଯଦି ପରସ୍ପର ପରସ୍ପରର ଅନୁବର୍ତ୍ତୀ ହୁଅନ୍ତି, ତାହାହେଲେ ସମସ୍ତେ ସୁଖୀହୁଅନ୍ତି । ପଞ୍ଚପ୍ରକାର ଛଳଶୂନ୍ୟ ଅମାତ୍ୟାଗଣଙ୍କ ସହିତ ସର୍ବଦା ମନ୍ତ୍ରଣା କରିବ । ୫୨ ।

ପୂର୍ବୋକ୍ତ ତିନିଜଣ ମନ୍ତ୍ରୀର ବିବିଧ ପରାମର୍ଶ ଓ ସେମାନଙ୍କର ଚିତ୍ତ ବିଶେଷ ରୂପରେ ବୋଧକରି ତହିଁରେ ନିଜର ଓ ସେମାଙ୍କର ଚିତ୍ତ ବିଶେଷରୂପରେ ବୋଧ କରି ତହିଁରେ ନିଜର ଓ ସେମାନଙ୍କର ନିଷ୍ଟପୁ ମତ ନିବେଶିତ କରି ଉତ୍ତର ମନ୍ତ୍ରକାଳରେ ତାହା ଶ୍ରବଣ କରିବ । ପରନ୍ତୁ ସ୍ୱୟଂ ଅଶକ୍ତ ହେଲେ ପରାମର୍ଶ ନିମିତ୍ତ ଧନ, ଅର୍ଥ ଓ କାମଜ୍ଞ ବ୍ରାହ୍ମଣ ଗୁରୁଙ୍କ ନିକଟକୁ ଗମନ କରି ତାହାଙ୍କୁ ତଦ୍‌ବିଷୟ ଜିଜ୍ଞାସା କଲେ ଯଦି ତାହଙ୍କ ସହିତ ମତର ଐକ୍ୟ ହୁଏ, ତେବେ ସେହି ମନ୍ତ୍ରଣାକୁ କାର୍ଯ୍ୟରେ ନିଯୋଜିତ କରିବ । ପଣ୍ଡିତମାନେ କହନ୍ତି ଯେ, ଏହିପରି ଯେଉଁମାନେ

ମନ୍ତ୍ରର ଯଥାର୍ଥ ଅର୍ଥ ଓ ନିଷ୍ଟମ୍ଭକୁ ବିଶେଷ ଭାବରେ ଅବଗତ ଅଛନ୍ତି, ସେମାନଙ୍କ ସହିତ ସର୍ବଦା ମନ୍ତ୍ରଣା କରି ପ୍ରଜା ସଂଗ୍ରହ ସମର୍ଥ ସେହି ମନ୍ତ୍ରକୁ ସର୍ବଦା ପ୍ରଶସ୍ତନ କାର୍ଯ୍ୟରେ ନିଯୋଜିତ କରିବା କର୍ତ୍ତବ୍ୟ । ୫୫ ।

ଯେଉଁ ସ୍ଥାନରେ ମନ୍ତ୍ରଣା କରିବ, ତାହାର ଅଗ୍ର, ପଶ୍ଚାତ୍, ଊର୍ଦ୍ଧ୍ୱ, ଅଧ ଓ ତିର୍ଯ୍ୟକ ପ୍ରଦେଶରେ ବାମନ, କୁବ୍‌ଜ, କୃଶ, ଖଞ୍ଜ, ଅନ୍ଧ, ଜଡ଼ ସ୍ତ୍ରୀ ଏବଂ ନପୁଂସକ ଏମାନେ କୌଣସି ପ୍ରକାରରେ ଯାତାୟତ କରି ପାରିବେ ନାହିଁ । ୫୬ । ନୌକାରେ ଆରୋହଣ କରି କୁଶକାଶ ବିହୀନ ସୁପ୍ରକାଶିତ ଶୂନ୍ୟସ୍ଥଳକୁ ଗମନପୂର୍ବକ ସେଠାରେ ଜନିନ୍ଦା ରୂପ ବାକ୍ୟଦୋଷ ଏବଂ ନେତ୍ର ଓ ବକ୍ତ୍ରବିକାରାଦି ରୂପ ଅଙ୍ଗଦୋଷ ସବୁ ପରିହାର କରି, ଯେପରି କାର୍ଯ୍ୟର କାଳ ଅତିବାହିତ ନ ହୁଏ, ତଦ୍ରୂପ ମନ୍ତ୍ରଣା କରିବ । ୫୭ ।

## ଅଧ୍ୟାୟ—୮୪

ଭୀଷ୍ମ କହିଲେ—ହେ ଯୁଧିଷ୍ଠିର । ଏହି ମନ୍ତ୍ରମୂଳ ପ୍ରଜା ସଂଗ୍ରହ ବିଷୟରେ ପଣ୍ଡିତମାନେ ବୃହସ୍ପତି ଓ ଇନ୍ଦ୍ରଙ୍କର ସମ୍ବାଦ ସମ୍ବଳିତ ଯେଉଁ ପୁରାତନ ଇତିହାସ ବର୍ଣ୍ଣନା କରନ୍ତି, ତାହା କହୁଅଛୁଁ ଶ୍ରବଣ କର । ୧ ।

ଶକ୍ର କହିଲେ—ହେ ବ୍ରହ୍ମନ୍ । ଯହିଁରେ ସମସ୍ତ ଗୁଣ ଅନ୍ତର୍ଭୂତ ହୁଏ, ତାଦୃଶ କର୍ତ୍ତବ୍ୟ କାର୍ଯ୍ୟକୁ ସମ୍ୟକ ପ୍ରକାରରେ ଆଚରଣ କଲେ ପୁରୁଷ ସର୍ବପ୍ରାଣି ସମ୍ମତ ସୁମହତ ଯଶୋଲାଭ କରିପାରେ ? ସେହିପରି କାର୍ଯ୍ୟ କଣ ? ୨ ।

ବୃହସ୍ପତି କହିଲେ—ହେ ସୁରରାଜ । ପୁରୁଷ ଶାନ୍ତ୍ୱ ଅର୍ଥାତ୍ ସର୍ବଗୁଣାଶ୍ରୟ ପ୍ରିୟ ବଚନକୁ ସମ୍ୟକ୍ ଆଚରଣ କଲେ ସର୍ବଭୂତ ସମ୍ମତ ସୁମହତ୍ ଯଶୋଲାଭ କରନ୍ତି । ୩ । ପୁରୁଷ ସର୍ବଲୋକ ସୁଖାବହ ଏହି ସର୍ବଗୁଣାବଲମ୍ବନ ପ୍ରିୟ ବଚନକୁ ଆଚରଣ କଲେ ସର୍ବଦା ସର୍ବପ୍ରାଣିଙ୍କର ପ୍ରିୟପାତ୍ର ହୁଅନ୍ତି । ୪ । ଯେଉଁ ମାନବ ଏହି ସଂସାରରେ ଶାନ୍ତ୍ୱବଚନ

ଆଚରଣ ନ କରି ସର୍ବଦା ଭ୍ରୂ କୁଟୀମୁଖରେ ଅବସ୍ଥାନ ପୂର୍ବକ କାହାରି ସଙ୍ଗରେ କୌଣସି ସମ୍ଭାଷଣ ନ କରନ୍ତି, ସେ ସମସ୍ତ ପ୍ରାଣୀଙ୍କର ଦ୍ୱେଷ୍ୟ ହୁଅନ୍ତି । ୫ ।

ଯେଉଁ ରାଜା ସମସ୍ତ ବିଷୟ ସନ୍ଦର୍ଶନ କରି କୌଣସି ବ୍ୟକ୍ତି ନିଜର ଦୁଃଖ ନିବେଦନ କଲା ପୂର୍ବରୁ "ତୁମ୍ଭେ କି ନିମିତ୍ତ ଆସିଅଛ" ଏହାପରି ପ୍ରଶ୍ନ କରନ୍ତି, ଏବଂ ସହାସ୍ୟ ବଦନରେ ତାହାଙ୍କ ସହିତ କଥୋପକଥନ କରନ୍ତି, ତାହାଙ୍କ ପ୍ରତି ସମସ୍ତ ଲୋକେ ପ୍ରସନ୍ନ ହୋଇଥାନ୍ତି । ୬ । ସର୍ବଦ ସାନ୍ତ୍ୱ ବଚନ ବିହୀନ ଦାନ ନିର୍ବ୍ୟଞ୍ଜନ ଭୋଜନ ପ୍ରାୟ, ପ୍ରାଣିଗଣଙ୍କୁ ପରିତୃପ୍ତ କରିପାରେ ନାହିଁ । ୭ । ମଧୁର ବାକ୍ୟ କହି ପ୍ରଜାମାନଙ୍କର ସର୍ବସ୍ୱ ହରଣ କଲେ ସୁଦ୍ଧା ସେମାନେ ରୁଷ୍ଟ ହୁଅନ୍ତି ନାହିଁ । ଯେଣୁ ଶାନ୍ତ୍ୱ ଦ୍ୱାରା ସମସ୍ତେ ବଶୀଭୂତ ହୁଅନ୍ତି । ୮ ।

ଅତଏବ ଦଣ୍ଡଧାରୀ ନୃପତି ସର୍ବଦା ସାନ୍ତ୍ୱବାକ୍ୟ ପ୍ରୟୋଗ କରିବେ । କାରଣ ସାନ୍ତ୍ୱ କେବଳ ଫଳ ଉତ୍ପାଦନ କରେ । ତଦ୍ଦ୍ୱାରା କେହି କଦାପି ଉଦ୍‌ବେଜିତ ହୁଅନ୍ତି ନାହିଁ । ୯ । ସୁକୃତ ପୁରୁଷ କର୍ତ୍ତୃକ ସେବ୍ୟମାନ ସାନ୍ତ୍ୱ, ଶ୍ଲକ୍ଷ୍ଣ ଓ ମଧୁର ବଚନ ସଦୃଶ କିଛି ନାହିଁ । ୧୦ । ଭୀଷ୍ମ କହିଲେ—ହେ କୁନ୍ତୀ ନନ୍ଦନ ! ଇନ୍ଦ୍ର ଯେପରି ପୁରୋଧା ବୃହସ୍ପତିଙ୍କ କର୍ତ୍ତୃକ ଏହିପରି ଉକ୍ତ ହୋଇ ତାହାଙ୍କର ବଚନାନୁସାରେ ସମୁଦାୟ କାର୍ଯ୍ୟ କରିଥିଲେ, ତଦ୍ରୂପ ତୁମ୍ଭେ ମଧ୍ୟ ଏହି ସମସ୍ତ ସମ୍ୟକ ପ୍ରକାରେ ଆଚରଣ କର । ୧୧ ।

## ଅଧ୍ୟାୟ—୮୫

ଯୁଧିଷ୍ଠିର କହିଲେ—ହେ ରାଜେନ୍ଦ୍ର ! ଇହ ଲୋକରେ ରାଜା କି ପ୍ରକାରେ ପ୍ରଜାପାଳନ କଲେ ଧର୍ମ ବିଶେଷ ଦ୍ୱାରା ପ୍ରୀତ ଅର୍ଥାତ୍ ସ୍ୱର୍ଗ ଓ ଶାଶ୍ୱତୀ କୀର୍ତ୍ତିକୁ ଲାଭ କରିପାରନ୍ତି ।୧।

ଭୀଷ୍ମ କହିଲେ—ରାଜା ବିଶୁଦ୍ଧ ବ୍ୟବହାର ଦ୍ୱାରା ମନ୍ତ୍ରପୂତ ବହିତ ନ ହୋଇ ପ୍ରଜାପାଳନରେ ତତ୍ପର ହେଲେ ଧର୍ମ ଓ ଶାଶ୍ୱତୀ କୀର୍ତ୍ତି ଲାଭ ପୂର୍ବକ ଶୁଚି ହୋଇ ଉଭୟ ଲୋକକୁ ପ୍ରାପ୍ତ ହୋଇ ପାରନ୍ତି । ୨ ।

ଯୁଧିଷ୍ଠିର କହିଲେ—ହେ ମହାପ୍ରାଜ୍ଞ ନୃପତି କୀଦୃଶ ବ୍ୟବହାର ଦ୍ୱାରା କି ପ୍ରକାରେ ଲୋକ ସହିତ ବ୍ୟବହାର କରିବେ ? ଏହି ଜିଜ୍ଞାସିତ ବିଷୟକୁ ଯଥାବତ୍ ବର୍ଣ୍ଣନା କରିବା ଆପଣଙ୍କର ଉଚିତ ହେଉଅଛି । ଆପଣ ପୂର୍ବେ ପୁରୁଷଙ୍କର ଯେଉଁସବୁ ଗୁଣ ବର୍ଣ୍ଣନ କରିଅଛନ୍ତି, ସେହିସବୁ ଗୁଣ ଏକ ବ୍ୟକ୍ତି ଠାରେ ବିଦ୍ୟମାନ ରହି ନ ପାରେ, ଆମ୍ଭର ଏହିପରି ବୋଧ ହେଉଅଛି । ୪ ।

ଭୀଷ୍ମ କହିଲେ—ହେ ମହାପ୍ରାଜ୍ଞ ! ତୁମ୍ଭଙ୍କୁ ବୁଦ୍ଧିମାନ ବୋଲି ଆମ୍ଭର ବୋଧ ହେଉଅଛି, ତୁମ୍ଭେ ଯେଉଁ ବାକ୍ୟ କହିଲ, ତାହା ସେହିପରି; ଯଦିଚ ଏତାଦୃଶ ଶୁଭ ଗୁଣ ସମୂହ କୌଣସି ଏକ ବ୍ୟକ୍ତିଠାରେ ବିଦ୍ୟମାନ ଥିବା ଅତି ଅସମ୍ଭବ ଏବଂ ଇହଲୋକରେ ଅତି ଯତ୍ନରେ ସୁଦ୍ଧା ସଦ୍ବୃତ୍ତ ଦୁଷ୍ପ୍ରାପ୍ୟ, ତଥାପି ତୁମ୍ଭଙ୍କୁ ଯାଦୃଶ ଅମାତ୍ୟ କରିବାକୁ ହେବ ତାହା ସଂକ୍ଷେପରେ କହୁଅଛୁ । ୬ ।

ବେଦଜ୍ଞ, ପ୍ରଗଲ୍ଭ, ସ୍ନାତକ ଓ ପବିତ୍ର ବ୍ରାହ୍ମଣ ଚାରିଜଣ, ଶସ୍ତ୍ରପାଣି ବଳବାନ କ୍ଷତ୍ରିୟ ଅଠଜଣ, ବିତ୍ତ ସମ୍ପନ୍ନ ବୈଶ୍ୟ ଏକବିଂଶତି ଜଣ, ନିତ୍ୟ କର୍ମ ନିରତ ପବିତ୍ର ବିନୀତ ଶୂଦ୍ର ତିନିଜଣ, ଶୁଶ୍ରୂଷା ଶ୍ରବଣ, ଗ୍ରହଣ, ଧାରଣ, ଊହନ, ଅପୋହନ, ବିଜ୍ଞାନ ଓ ତତ୍ତ୍ୱଜ୍ଞାନ, ଏହି ଅଷ୍ଟଗୁଣ ଯୁକ୍ତ, ପ୍ରଗଲ୍ଭ, ଅନସୂୟକ, ପଞ୍ଚାଶତ ବର୍ଷୀୟ, ଶ୍ରୁତି ଓ ସ୍ମୃତି ସମାଯୁକ୍ତ ବିନୀତ, ସମଦର୍ଶୀ, କାର୍ଯ୍ୟରେ ବିବଦମାନ ବ୍ୟକ୍ତିମାନଙ୍କ ମଧ୍ୟରେ ସମର୍ଥ, ଅର୍ଥରେ ଅଲୋଲୁପ ଏବଂ ମୃଗୟା, ଅକ୍ଷ, ସ୍ତ୍ରୀ, ପାନ, ଦଣ୍ଡପାତନ, ବାକ୍ପାରୁଷ୍ୟ ଓ ଅର୍ଥ ଦୂଷଣ ପ୍ରଭୃତି ସପ୍ତ ପ୍ରକାର ଘୋରତର ବ୍ୟସନ ବର୍ଜିତ ପୌରାଣିକ ସୂତ ଏକଜଣ, ଏମାନଙ୍କୁ ଅମାତ୍ୟ କରିବ । ପରନ୍ତୁ ରାଜା ବ୍ରାହ୍ମଣ ଚତୁଷ୍ଟୟ, ଶୂଦ୍ର ତ୍ରୟ ଓ ଏକଜଣ ସୂତ ଏହି ଅଷ୍ଟ ମନ୍ତ୍ରୀ-ମାନଙ୍କର ମଧ୍ୟବର୍ତ୍ତୀ ହୋଇ ମନ୍ତ୍ରଣା ସ୍ଥିର କରିବ । ୧୧ । ତତ୍ପରେ ସେହି ମନ୍ତ୍ରଣାକୁ ରାଷ୍ଟ୍ରମଧ୍ୟରେ ପ୍ରଚାର କରି ରାଷ୍ଟ୍ରୀୟ ବ୍ୟକ୍ତିମାନଙ୍କୁ ପ୍ରଦର୍ଶନ କରିବ । ଏହି ବ୍ୟବହାର ଦ୍ୱାରା ତୁମ୍ଭେ ସର୍ବଦା ପ୍ରଜାମାନଙ୍କୁ ଦର୍ଶନ କରିବ । ୧୨ । ତୁମ୍ଭେ କଦାପି କାର୍ଯ୍ୟୋପଘାତକ ଗୂଢ଼ କାର୍ଯ୍ୟକୁ ଅର୍ଥାତ କୌଣସି ବ୍ୟକ୍ତିର ନ୍ୟସ୍ତ ବିଷୟକୁ ରାଜକୀୟ ବୋଲି ଗ୍ରହଣ କରିବ ନାହିଁ । ଯେଣୁ କାର୍ଯ୍ୟ ବ୍ୟାହତ ହେଲେ, ସେହି ଅଧର୍ମ ନିଶ୍ଚୟ ତୁମ୍ଭଙ୍କୁ ଓ ତୁମ୍ଭର ମନ୍ତ୍ରିଗଣଙ୍କୁ ପୀଡ଼ିତ କରିବ ଏବଂ ତୁମ୍ଭର ରାଷ୍ଟ୍ର, ସାଗରସ୍ଥିତ ବର୍ଣ୍ଣାର୍ତ୍ତ

ନୌକା ଓ ଶ୍ୟେନଠାରୁ ପଳାୟମାନ ପକ୍ଷିଗଣଙ୍କ ପ୍ରାୟ ତୁମ୍ଭ ନିକଟରୁ ଅନ୍ୟତ୍ର ଗମନ କରିବ । ୧୪ ।

ହେ ଭୂପତେ ! ଯେଉଁ ନରପତି ଅଧର୍ମାଚରଣପୂର୍ବକ ସମ୍ୟକ ପ୍ରକାରେ ପ୍ରଜାପାଳନ ନ କରନ୍ତି, ତାହାଙ୍କର ହୃଦୟରେ ଭୟ ଉପସ୍ଥିତ ହୁଏ ଏବଂ ତାହାଙ୍କର ସ୍ୱର୍ଗଲୋକ ରୁଦ୍ଧ ହୋଇଯାଏ । ୧୫ । ହେ ନରର୍ଷଭ ! ଧର୍ମମୂଳ ରାଜ୍ୟ ମଧ୍ୟରେ ଯେଉଁ ରାଜା ଅମାତ୍ୟ କିମ୍ବା ରାଜପୁତ୍ର ଧର୍ମାସନରେ ନିଯୁକ୍ତ ହୋଇ ଅଧର୍ମାନୁସାରେ ପ୍ରଜାପାଳନ କରନ୍ତି, କାର୍ଯ୍ୟମାନଙ୍କରେ ଅଙ୍ଗୀକୃତ ଅବଶ୍ୟକାରୀ ଅର୍ଥାତ୍ ଯେଉଁମାନେ ପରୀକ୍ଷା ନ କରି କାର୍ଯ୍ୟ କରନ୍ତି, ସେହି ନୃପାନୁଗାମୀ ପୁରୁଷମାନେ ସ୍ୱୟଂ ଅଗ୍ରସର ହୋଇ ରାଜାଙ୍କ ସହିତ ଅଧୋଗାମୀ ହୁଅନ୍ତି । ୧୭ ।

ହେ ରାଜେନ୍ଦ୍ର ! ବଳବାନ ବ୍ୟକ୍ତି କର୍ତ୍ତୃକ ଆକ୍ରାନ୍ତ ଦୀନ ବ୍ୟକ୍ତି ପ୍ରାୟ, ବହୁଭାଷୀ ଅନାଥ ବ୍ୟକ୍ତି ଓ ମନୁଷ୍ୟମାନଙ୍କୁ ରାଜା ନିତ୍ୟ ପାଳନ କରିବେ । ଯେତେବେଳେ ପରୀକ୍ଷାମୂଳକ କାର୍ଯ୍ୟ ନ କଲେ, ଅମାତ୍ୟ ସହ ରାଜାଙ୍କର ଅଧୋଗତି ହୁଏ, ସେତେବେଳେ ସେହି ବ୍ୟବହାର ସବୁ ବିଶେଷ କରି ପରୀକ୍ଷା କରିବା ଉଚିତ, ଅପିଚ ଉଭୟଙ୍କର ବିରୁଦ୍ଧବାଦ୍ ଅର୍ଥାତ୍ ବିବାଦାସ୍ପଦ ଦ୍ରବ୍ୟ ଅସାକ୍ଷିକ ଓ ଅସ୍ୱାମୀକ ହେଲେ ତହିଁରେ ସାକ୍ଷିବଳ ସାଧୁ ପ୍ରମାଣ ହେବ । ୧୯ । ପରୀକ୍ଷାରେ ପାପ ଗ୍ରହଣ କଲେ ଅପରାଧ ଅନୁସାରେ ପାପର ଦଣ୍ଡ ଦେବ । ଯଦି ଧନୀ ବ୍ୟକ୍ତି ପାପୀ ହୁଏ, ତାହାହେଲେ ତାହାକୁ ଧନରୁ ବିଯୁକ୍ତ କରିବ ଏବଂ ନିର୍ଦ୍ଧନ ବ୍ୟକ୍ତି ପାପୀ ହେଲେ ତାହାକୁ ବନ୍ଧନ କରିବ । ୨୦ । ରାଜା ଦୁର୍ବୃତ୍ତ ମାନବଗଣଙ୍କୁ ପ୍ରହାର ଦ୍ୱାରା ଶିକ୍ଷିତ କରିବେ ଏବଂ ଶିଷ୍ଟଲୋକମାନଙ୍କୁ ସାନ୍ତ୍ୱ ବଚନ ଦ୍ୱାରା ପାଳନ କରିବେ । ୨୧ ।

ଯେଉଁ ମାନବ ରାଜବଧ ଚିକୀର୍ଷୁ, ଗୃହ ଦାହକ, ତସ୍କର ଓ ବର୍ଣ୍ଣସଙ୍କର କାରକ, ତାହାକୁ ବିଚିତ୍ର ଭାବରେ ଅର୍ଥାତ୍ ନାନାପ୍ରକାରରେ ବଧ କରିବ । ୨୨ । ଶାସ୍ତ୍ରାନୁସାରେ ଅବହିତ ଭୂମିପତି ବିଚିତ୍ର ବଧରୂପ ଦଣ୍ଡକୁ ବିଧାନ କଲେଁ, ତହିଁରେ ତାହାଙ୍କର ଶାଶ୍ୱତ ଧର୍ମ ହେବ । ୨୩ । ଯେଉଁ ଅବିଚକ୍ଷଣ ଭୂପତି ଇଚ୍ଛାନୁସାରେ ଦଣ୍ଡ ଦାନ କରନ୍ତି, ସେ ଇହଲୋକରେ ଅପଶୋଭଜନ, ହୋଇ ମରଣାନ୍ତରେ ନରକକୁ ଲାଭ

କରନ୍ତି ।୨୪। ଅତଏବ ପରର ପ୍ରବାଦରେ ପରପ୍ରତି ଦଣ୍ଡ ଅର୍ପଣ କରିବ ନାହିଁ । ଶାସ୍ତ୍ର ଓ ଯୁକ୍ତି ଅବଲମ୍ବନ ପୂର୍ବକ ବନ୍ଧନ ଓ ମୁକ୍ତ କରିବ ।୨୫। ନୃପତି କୌଣସି ଆପଦରେ ସୁଦ୍ଧା ଦୂତକୁ ବଧ କରିବେ ନାହିଁ । କାରଣ ଦୂତ ହନ୍ତା ନରପତି ସଚିବଗଣଙ୍କ ସହିତ ନରକଗାମୀ ହୁଅନ୍ତି ।୨୬। ଯେଉଁ କ୍ଷତ୍ରିୟ ଧର୍ମ୍ମ ନିରତ ନରପତି ଯଥୋକ୍ତବାଦୀ ଦୂତକୁ ବଧ କରନ୍ତି, ତାହାଙ୍କର ପିତୃଲୋକ ଭ୍ରୂଣହତ୍ୟାର ପାପଭାଗୀ ହୁଅନ୍ତି ।୨୭। ଯେଉଁ ବ୍ୟକ୍ତି କୁଳୀନ କୁଳସମ୍ପନ୍ନ, ବାଗ୍ମୀ, ଦକ୍ଷ, ପ୍ରିୟମ୍ବଦ, ଯଥୋକ୍ତବାଦୀ ଓ ଓ ସ୍ମୃତିମାନ୍, ସେହି ବ୍ୟକ୍ତି ଦୂତ ହେବ ଏବଂ ତାହାଠାରେ ଏହି ସାତଗୋଟି ଗୁଣ ବିଦ୍ୟମାନ ଥିବ ।୨୮। ଅପିଚ ପ୍ରତିହାର, ଅର୍ଥାତ୍ ଦ୍ୱାରପାଳ ଓ ଶିରୋରକ୍ଷକ, ଅର୍ଥାତ୍ ଦୁର୍ଗ ଓ ନଗର ରକ୍ଷକ, ଏ ଦୁହିଁଙ୍କର ମଧ୍ୟ ଉକ୍ତ ସାତଗୋଟି ଗୁଣଥିବା ଉଚିତ ।୨୯। ଯେଉଁ ବ୍ୟକ୍ତି ଧର୍ମ୍ମ ଶାସ୍ତ୍ରର ଯଥାବତ୍ ଅର୍ଥ ଓ ସନ୍ଧିବିଗ୍ରହ ବିଶେଷ ରୂପରେ ଅବଗତ ଅଛନ୍ତି ଏବଂ ମତିମାନ୍ ଧୈର୍ଯ୍ୟଶାଳୀ, ଲଜ୍ଜାଶୀଳ, ରହସ୍ୟ ବିଷୟ ଗୋପନକାରୀ, କୁଳୀନ ଓ ସତ୍ତ୍ୱସମ୍ପନ୍ନ ଅଟନ୍ତି, ସେହି ବ୍ୟକ୍ତି ପ୍ରଶଂସନୀୟ ଅମାତ୍ୟ ବୋଲି ପରିଗଣିତ ହେବେ । ଏତାଦୃଶ ଗୁଣଯୁକ୍ତ, ବ୍ୟୂହଯନ୍ତ୍ର ଓ ଆୟୁଧ ତତ୍ତ୍ୱଜ୍ଞ, ବିକ୍ରମ ସମ୍ପନ୍ନ, ବର୍ଷା, ଶୀତ, ଉଷ୍ମ ଓ ବାତ ସହିଷ୍ଣୁ ଏବଂ ପରରନ୍ଧ୍ରବିତ୍ ବ୍ୟକ୍ତି ସେନାପତି ହେବେ ।୩୨।

ହେ ରାଜେନ୍ଦ୍ର ! ସ୍ୱୟଂ ଅନ୍ୟଲୋକର ବିଶ୍ୱାସ ଭାଜନ ହେବ; କିନ୍ତୁ ପରକୁ କଦାପି ବିଶ୍ୱାସ କରିବ ନାହିଁ, ପୁତ୍ର ପର୍ଯ୍ୟନ୍ତ ସୁଦ୍ଧା ବିଶ୍ୱାସ କରିବା ପ୍ରଶସ୍ତ ନୁହେ ।୩୩। ହେ ଅନଘ ! ଆମ୍ଭେ ଶାସ୍ତ୍ରର ଏହି ଯଥାର୍ଥ ତତ୍ତ୍ୱକୁ ତୁମ୍ଭଠାରେ କୀର୍ତ୍ତନ କଲୁଁ । ଶାସ୍ତ୍ରରେ ରାଜାମାନଙ୍କର ଅବିଶ୍ୱାସ ପରମ ଗୁହ୍ୟ ବୋଲି ଉକ୍ତ ହୋଇ ଅଛି ।୩୪।

## ଅଧ୍ୟାୟ—୮୬

ଯୁଧିଷ୍ଠିର କହିଲେ—ହେ ପିତାମହ ! ରାଜାମାନଙ୍କର କିପ୍ରକାର ପୁରରେ ବାସ କରିବା କର୍ତ୍ତବ୍ୟ ? ସେମାନେ ପୂର୍ବକୃତ କିମ୍ବା ସ୍ୱୟଂ-କୃତ ପୁରରେ ବାସ କରିବେ, ତାହା ଆମ୍ଭଙ୍କୁ ବିସ୍ତାର କରି କହନ୍ତୁ ।୧।

ଭୀଷ୍ମ କହିଲେ— ହେ କୌନ୍ତେୟ ! ନୃପତିଗଣ ପୁତ୍ର, ଜ୍ଞାତି ଓ ବନ୍ଧୁବର୍ଗଙ୍କ ସହିତ ଯେଉଁ ସ୍ଥାନରେ ବାସ କରିବେ, ତଦ୍‌ବିଷୟ ବ୍ୟବହାର

ଓ ରକ୍ଷା ବିଧାନ ପ୍ରଶ୍ନ କରିବା ନ୍ୟାଯ୍ୟ, ଅତଏବ ତୁମ୍ଭଙ୍କୁ ଯାଦୃଶ ଦୁର୍ଗ ବିଷୟ ବିଶେଷ କରି କହିଲୁଁ, ତାହା ଶ୍ରବଣ କରି ଯତ୍ନ ସହକାରେ ତାଦୃଶ ବିଧାନ ଓ ଅନୁଷ୍ଠାନ କରିବା ତୁମ୍ଭର କର୍ତ୍ତବ୍ୟ । ୩ ।

ହେ ରାଜନ୍ ! ନୃପତିଗଣ ଧନ୍ୱ ଅର୍ଥାତ୍ ମରୁଭୂମି ବେଷ୍ଟିତ ଦୁର୍ଗ, ମହୀ ଦୁର୍ଗ, ଗିରିଦୁର୍ଗ, ମନୁଷ୍ୟ ଦୁର୍ଗ, ମୃତ୍ତିକା ଦୁର୍ଗ ଓ ବନ ଦୁର୍ଗ ପ୍ରଭୃତି ଷଡ଼୍‌ବିଧ ସର୍ବ ସମ୍ପଦ ପ୍ରଧାନ ଦୁର୍ଗ ଅବଲମ୍ବନ କରି ଯହିଁରେ ବହୁଳ ରୂପରେ ପଦାର୍ଥ ରହିବା ସମ୍ଭବ ସେହି ପ୍ରକାର ପୁର ସମୂହ ନିବେଶିତ କରିବେ । ୫ ।

ହେ ନରନାଥ ! ଯେଉଁ ପୁର ଦୁର୍ଗ ସମ୍ପନ୍ନ, ଧାନ୍ୟ ଓ ଆୟୁଧ ସମନ୍ୱିତ, ଦୃଢ଼ତର ପ୍ରାକାର ଓ ପରିଖା ଦ୍ୱାରା ପରିବେଷ୍ଟିତ, ହସ୍ତି, ଅଶ୍ୱ ଓ ରଥ ସମୂହ ସମାକୁଳ, ବିଦ୍ୱାନ ଶିଳ୍ପୀମାନଙ୍କ ଦ୍ୱାରା ଅଧିଷ୍ଠିତ ଧାନ୍ୟାଦି ଦ୍ରବ୍ୟ ସମୂହ ଦ୍ୱାରା ପରିପୂର୍ଣ୍ଣ, ଦକ୍ଷ ଧାର୍ମିକ ବ୍ୟକ୍ତିମାନଙ୍କ ଦ୍ୱାରା ପ୍ରତିଷ୍ଠିତ, ବଳବାନ ନର ନାଗ ଓ ଅଶ୍ୱ ସମନ୍ୱିତ, ଚତ୍ୱର ଓ ଆପଣ ଦ୍ୱାରା ସୁଶୋଭିତ, ପ୍ରସିଦ୍ଧ ବ୍ୟବହାର ବିଶିଷ୍ଟ, ପ୍ରଶାନ୍ତ, ଅକୁତୋଭୟ, ସୁନ୍ଦର, ପ୍ରଭାଯୁକ୍ତ ଗୀତ ବାଦନ ଧ୍ୱନି ସମନ୍ୱିତ, ସୁପ୍ରଶସ୍ତ ଗୃହ ସଂଯୁକ୍ତ, ଶୂର ଓ ଆଢ଼୍ୟଜନ ସମ୍ପନ୍ନ, ବେଦଧ୍ୱନିଦ୍ୱାରା ଅନୁନାଦିତ, ସାମାଜିକ ଉତ୍ସବ ସମ୍ପନ୍ନ ଏବଂ ସର୍ବଦା ପୂଜିତ ଦେବଗଣଙ୍କ ଦ୍ୱାରା ଅଧିଷ୍ଠିତ ଅଟେ, ତାଦୃଶ ପୁର ମଧ୍ୟରେ ବଶୀକୃତ ଅମାତ୍ୟବଳସମ୍ପନ୍ନ ରାଜା ସ୍ୱୟଂ ଅଧିଷ୍ଠାନ କରିବେ । ୧୦ ।

ରାଜା ସେହି ପୁର ମଧ୍ୟରେ ବାସ କରି ସେଠାରେ କୋଷ, ବଳ, ମିତ୍ର ଓ ବ୍ୟବହାରିଁ ସର୍ବଦା ବର୍ଦ୍ଧନ କରିବେ ଏବଂ ପୁର ଓ ଜନପଦ-ସ୍ଥିତ ଦୋଷ ସବୁ ନିବର୍ତ୍ତିନ କରିବେ । ୧୧ । ଭଣ୍ଡାଗାର ଆୟୁଧାଗାର ଧାନ୍ୟାଦି ସଂଗ୍ରହ ସବୁ ଯତ୍ନ ସହକାରେ ବର୍ଦ୍ଧନ କରିବେ । ୧୨ । କାଷ୍ଠ, ଲୌହ, ତୁଷ, ଅଙ୍ଗାର, ଦେବଦାରୁ କାଷ୍ଠ, ଶୃଙ୍ଗ, ଅସ୍ଥି, ବଂଶ, ମଜ୍ଜା, ସ୍ନେହ, ବସା, ମଧୁ, ନାନାବିଧ ଔଷଧ, ଶଣ, ସର୍ଜରସ, ଅର୍ଥାତ୍ ଝୁଣା, ଧାନ୍ୟ, ଆୟୁଧ, ଶର, ଚର୍ମ୍ମ, ସ୍ନାୟୁ, ବେତ, ମୁଞ୍ଜ ଓ ବଲ୍ୱଜ ବନ୍ଧନ, କୂପ ସନ୍ନିହିତ ଜଳାଧାର, ଉଦପାନ ପ୍ରଭୃତି ଜଳାଶୟ ଏବଂ କ୍ଷୀରବୃକ୍ଷ ଏହି-ସବୁ ସାମଗ୍ରୀ ରାଜା ସତତ ନିଜପୁରରେ ରକ୍ଷା କରିବେ । ୧୫ । ଅଗ୍ନିର୍ଯ୍ୟ,

ଋତ୍ୱିକ, ପୁରୋହିତ, ମହା ଧନ୍ୱୀଯୋଦ୍ଧା, ଇଷ୍ଟକାଦି ଗୃହ ନିର୍ମାଣ କର୍ତ୍ତା, ଶାବତ୍ସରିକ ଅର୍ଥାତ୍ ଜ୍ୟୋତିଷିକ ଓ ଚିକିତ୍ସକମାନଙ୍କୁ ଯତ୍ନ ସହକାରେ ସତ୍କାର କରିବ । ୧୬ ।

ପ୍ରାଜ୍ଞ, ମେଧାବୀ, ଦାନ୍ତ, ଦକ୍ଷ, ଶୂର, ବହୁଶ୍ରୁତ, କୁଳୀନ ଓ ସତ୍ତ୍ୱସମ୍ପନ୍ନ ପୁରୁଷମାନଙ୍କୁ ସମୁଦାୟ କାର୍ଯ୍ୟରେ ନିଯୁକ୍ତ କରିବେ ।୧୭। ଧାର୍ମିକ ମନୁଷ୍ୟମାନଙ୍କୁ ପୂଜା କରିବେ, ଅଧାର୍ମିକମାନଙ୍କୁ ନିଗ୍ରହ କରିବେ, ଯତ୍ନ ସହିତ ସମସ୍ତ ବର୍ଣ୍ଣଙ୍କୁ ନିଜ ନିଜ କାର୍ଯ୍ୟରେ ନିଯୁକ୍ତ କରିବେ । ବାହ୍ୟ ଓ ଆଭ୍ୟନ୍ତର ପୌର ଏବଂ ଜନପଦବାସୀ ଲୋକଙ୍କୁ ଯେଉଁ କାର୍ଯ୍ୟ କରାଇବାକୁ ହେବ, ତାହା ଅଗ୍ରେ ଚର ଦ୍ୱାରା ସୁବିଦିତ କରି ପରେ କାର୍ଯ୍ୟ ପ୍ରୟୋଗ କରିବେ । ୧୮ ।

ରାଜା ସ୍ୱୟଂ ଚର, ମନ୍ତ୍ର, କୋଷ ଓ ଦଣ୍ଡ ଏହିମାନଙ୍କର ବିଶେଷରେ ଆଲୋଚନା କରିବେ । କାରଣ ରାଜା ମଧ୍ୟରେ ଏହିସବୁ ପ୍ରତିଷ୍ଠିତ ହୁଅନ୍ତି ।୨୦। ରାଜା ଚର ଚକ୍ଷୁ ଦ୍ୱାରା ପୁର ଓ ଜନପଦ ବାସୀ ଅରି ଏବଂ ମିତ୍ର ସମସ୍ତଙ୍କର ଚେଷ୍ଟିତ ବିଷୟକୁ ଜ୍ଞାତ ହେବେ । ୨୧ । ପରେ ନିଯୁକ୍ତ ଭକ୍ତଜନ ସେବକ ଶତ୍ରୁ ନିଗ୍ରହକାରୀ ସେହି ନରପତି ପ୍ରମାଦ ବର୍ଜ୍ଜିତ ହୋଇ ସେମାନଙ୍କର ତଦ୍‌ବିଷୟରେ ପ୍ରତିକାର କରିବେ, ରାଜା ନିଯୁକ୍ତ ନାନାବିଧ ଯଜ୍ଞ ଦ୍ୱାରା ଯାଗ, ଅକ୍ଲେଶରେ ଦାନ, ଏବଂ ପ୍ରଜାରକ୍ଷଣ କରିବେ । କିନ୍ତୁ ଧର୍ମ୍ମ ବାଧକ କୌଣସି କାର୍ଯ୍ୟ କରିବେ ନାହିଁ । ୨୩ । କୃପଣ, ଅନାଥ, ବୃଦ୍ଧ, ବିଧବା ସ୍ତ୍ରୀମାନଙ୍କର ବୃତ୍ତି, ସ୍ୱରାଷ୍ଟ୍ରପାଳନ ଓ ପରରାଷ୍ଟ୍ର ଚିନ୍ତନ ରୂପ ଯୋଗକ୍ଷେମ ସତତ ସମ୍ପାଦନ କରିବେ । ୨୪ । ରାଜା ଆଶ୍ରମ ବାସିମାନଙ୍କୁ ସତ୍କାର, ସମ୍ମାନ ଓ ଅଭ୍ୟର୍ଚ୍ଚନ ପୂର୍ବକ ଯଥାକାଳରେ ଅନ୍ନ ବସ୍ତ୍ର ଓ ପାତ୍ର ସହିତ ଉପହାର ଦେବେ ।୨୫। ରାଜା ଯତ୍ନ ସହକାରେ ତପସ୍ୱିଗଣଙ୍କୁ ରାଷ୍ଟ୍ରର ସମୁଦାୟ କାର୍ଯ୍ୟ ଓ ନିଜ ଦେହର ବୃତ୍ତାନ୍ତ ନିବେଦନ କରିବେ ଏବଂ ସେମାନଙ୍କଠାରେ ସର୍ବଦା ନତ ହୋଇ ଅବସ୍ଥାନ କରିବେ । ୨୬ ।

ନରପତି ସର୍ବାର୍ଥ ତ୍ୟାଗୀ ସତ୍କୁଳଜାତ ଓ ବହୁଶ୍ରୁତ ତପସ୍ୱୀମାନଙ୍କୁ ଦର୍ଶନ କଲେ । ଶୟନ, ଆସନ ଓ ଭୋଜନ ଦ୍ୱାରା ତାହାଙ୍କର ପୂଜା କରିବେ । ରାଜା ସମସ୍ତ ଆପଦରେ, ତପସ୍ୱୀଙ୍କ ପ୍ରତି ଅବିଶ୍ୱାସ

କରିବେ ନାହିଁ । କାରଣ ଦସ୍ୟୁମାନେ ମଧ୍ୟ ତାପସଗଣଙ୍କୁ ସତତ ବିଶ୍ୱାସ କରନ୍ତି । ନରପତି ତପସ୍ୱୀମାନଙ୍କଠାରେ ନିଜ ସମ୍ପଦାୟ ସଂସ୍ଥାପନ କରିବେ ଏବଂ ସେମାନଙ୍କଠାରୁ ପ୍ରଜ୍ଞା ଗ୍ରହଣ କରିବେ । ପରନ୍ତୁ ପୁନଃ ପୁନଃ ସେମାନଙ୍କର ସେବା କିମ୍ବା ଅତିଶୟ ପୂଜା କରିବେ ନାହିଁ । କାରଣ ସେମାନଙ୍କ ତପସ୍ୟା ନଷ୍ଟ ହୁଏ । ୨୯ । ନିଜର ରାଷ୍ଟ୍ର, ପରରାଷ୍ଟ୍ର ଅଥବା ଓ ସାମନ୍ତ ନଗରରେ ଭିନ୍ନ ଭିନ୍ନ ତପସ୍ୱୀମାନଙ୍କୁ ରକ୍ଷା କରିବେ । ଏବଂ ସ୍ୱରାଷ୍ଟ୍ରସ୍ଥ ତପସ୍ୱୀ ପ୍ରାୟ, ପରରାଷ୍ଟ୍ର ସ୍ଥିତ ଓ ଅଟବୀସ୍ଥିତ ତପସ୍ୱୀଗଣଙ୍କୁ ସତ୍କାର ଓ ସମ୍ମାନପୂର୍ବକ ଧନାଦି ଦାନ କରିବେ । କାରଣ ନରପତି କୌଣସି ଅବସ୍ଥାରେ ତପସ୍ୱିଗଣଙ୍କର ଶରଣାଗତ ହେଲେ, ସେହି ସଂଶିତବ୍ରତ ତାପସମାନେ ଇଚ୍ଛାନୁସାରେ ରାଜାଙ୍କୁ ଆଶ୍ରୟ ପ୍ରଦାନ କରନ୍ତି । ୩୨ ।

ହେ ଯୁଧିଷ୍ଠିର ! ଯାଦୃଶ ନଗରରେ ରାଜାଙ୍କର ସ୍ୱୟଂ ବାସ କରିବା ଉଚିତ, ତାହାର ଏହି ଲକ୍ଷଣ ଓ ଉଦ୍ଦେଶ ଅମ୍ଭେ ସଂକ୍ଷେପରେ ତୁମ୍ଭଠାରେ କୀର୍ତ୍ତନ କଲୁଁ । ୩୩ ।

## ଅଧ୍ୟାୟ—୮୭

ଯୁଧିଷ୍ଠିର କହିଲେ—ହେ ଭରତଶ୍ରେଷ୍ଠ ! ଯେଉଁପରି ରାଷ୍ଟ୍ରରକ୍ଷା ଓ ରାଷ୍ଟ୍ରସଂସ୍ଥାପନ କରିବାକୁ ହୁଏ, ତାହା ସମ୍ୟକ ପ୍ରକାରରେ ଜାଣିବାକୁ ଇଚ୍ଛା କରୁଅଛୁଁ । ଅତଏବ ଉତ୍ତମ ରୂପରେ ବିସ୍ତାର କରି ଅମ୍ଭଙ୍କୁ ତାହା କହନ୍ତୁ । ୧ ।

ଭୀଷ୍ମ କହିଲେ—ରାଷ୍ଟ୍ରରକ୍ଷା ଓ ରାଷ୍ଟ୍ର ସଂଗ୍ରହ ଯେଉଁପରି କହିବାକୁ ହୁଏ, ସେ ସମସ୍ତ ଅମ୍ଭେ ତୁମ୍ଭଙ୍କୁ ସମ୍ୟକ ପ୍ରକାରରେ କହୁଅଛୁଁ, ଏକମନା ହୋଇ ଶ୍ରବଣ କର । ୨ । ମହୀପତି ପ୍ରତ୍ୟେକ ଗ୍ରାମରେ ଏକ ଏକ ଜଣଙ୍କୁ ଅଧିପତି କରିବେ, ପରେ କାହାକୁ ଦଶଗ୍ରାମ, କାହାକୁ ବିଂଶତି ଗ୍ରାମ, କାହାକୁ ଶତଗ୍ରାମ ଓ କାହାକୁ ସହସ୍ର ଗ୍ରାମର ଆଧିପତ୍ୟ ଅର୍ପଣ କରିବେ । ୩ । ସେହି ଏକ ଗ୍ରାମାଧିପତି ଗ୍ରାମର ଦୋଷ ଗୁଣ ବିଚାର କରି ଦଶ ଗ୍ରାମାଧିପତିଙ୍କୁ କହିବେ ଏବଂ ଦଶଗ୍ରାମାଧିପତି ତାହା ବିଂଶତି ଗ୍ରାମାଧିପତିଙ୍କୁ କହିବେ । ସେହି ବିଂଶତି ଗ୍ରାମାଧିପତି ମଧ୍ୟ ଜନପଦରେ ଯେଉଁ ଯେଉଁ କାର୍ଯ୍ୟ ସମ୍ପାଦନ କରିବେ,

ତତ୍ସମୁଦାୟ ତାହାଙ୍କୁ ଶତଗ୍ରାମାଧିପତିଙ୍କଠାରେ ନିବେଦନ କରିବାକୁ ହେବ । ୫ । ଗ୍ରାମରେ ଯେଉଁସବୁ ଭୋଜ୍ୟ ବସ୍ତୁ ଉତ୍ପନ୍ନ ହେବ, ଏକ ଗ୍ରାମ ଧିପତି ସେହି ବସ୍ତୁ ସବୁ ଉପଭୋଗ କରିବେ ଏବଂ ସେ ଦଶଗ୍ରାମାଧି ପତିଙ୍କୁ ଭରଣ କରିବେ । ୬ ।

ହେ ଭରତଶ୍ରେଷ୍ଠ ! ଯେଉଁ ଗ୍ରାମ ଅତ୍ୟନ୍ତ ବୃହତ୍, ଉନ୍ନତ ଓ ଜନ ସମୂହରେ ସମାକୁଳ, ଶତ ଗ୍ରାମାଧ୍ୟକ୍ଷ ସହାୟ ସହକାରେ ତାହାକୁ ଭୋଗ କରିବାକୁ ସମର୍ଥ ହେବେ । କିନ୍ତୁ ଶତାଧିପତି ଯେଉଁ ଗ୍ରାମକୁ ଭୋଗ କରିବେ, ସେହି ଗ୍ରାମ, ସେହି ରାଷ୍ଟ୍ରର ଅନେକାଧିପତିଙ୍କ ଅଧୀନ ଥିବ । ସର୍ବାଧିକ ସହସ୍ର ଗ୍ରାମାଧିପତି ରାଷ୍ଟ୍ରୀୟ ଲୋକଙ୍କ ସହିତ ସଙ୍ଗତ ହୋଇ ଶାଖା ନଗର ଏବଂ ତଦନ୍ତ୍ୟ ଧାନ୍ୟ ହିରଣ୍ୟାଦି ଭୋଗ୍ୟ ବସ୍ତୁ ସମୁଦାୟ ନିଜ ବେତନ ସ୍ୱରୂପରେ ଭୋଗ କରିବାକୁ ସମର୍ଥ ହେବେ । ସେମାନଙ୍କର ସଂଗ୍ରାମକୃତ୍ୟ ଓ ଗ୍ରାମକୃତ୍ୟ ଉପସ୍ଥିତ ହେଲେ କୌଣସି ଧର୍ମଜ୍ଞ ଅନଳସ ସଚିବ ତାହାକୁ ପ୍ରତ୍ୟକ୍ଷ ରୂପରେ ଦର୍ଶନ କରିବେ ଏବଂ ସମୁଦାୟ ନଗରରେ ଜଣେ ଜଣେ ସର୍ବାର୍ଥ ଚିନ୍ତକ ସଚିବ ଉପସ୍ଥିତ ଥାଇ ସମସ୍ତ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବେ । ଯେପରି ଘୋରରୂପ ପ୍ରବଳ ଗ୍ରହ ନକ୍ଷତ୍ର ଚନ୍ଦ୍ରଙ୍କର ଉଚ୍ଚସ୍ଥାନରେ ପରିଭ୍ରମଣ କରନ୍ତି, ତଦ୍ରୂପ ସେହି ସର୍ବାର୍ଥ ସଚିବ ସଭାସଦ ସମସ୍ତଙ୍କ ଉପରେ ପରିଭ୍ରମଣ କରି ସେମାନଙ୍କର କାର୍ଯ୍ୟ ସମୂହ ପରିଦର୍ଶନ କରିବେ । ୧୧ ।

ଅପିଚ ତାହାଙ୍କର କୌଣସି ଚର ରାଷ୍ଟ୍ର ମଧ୍ୟରେ ସଭାସଦ୍‌ଗଣଙ୍କର ବ୍ୟବହାର ଗୋପନରେ ଅବଗତ ହେବେ । ସେହି ସଚିବ ରାଷ୍ଟ୍ର ମଧ୍ୟରେ ଜିଘାଂସୁ ପାପାତ୍ମା ପରସ୍ୱାପହାରୀ ଶଠ ଓ ରକ୍ଷାଧିକୃତ ନାମକ ମନୁଷ୍ୟଙ୍କଠାରୁ ଏହି ପ୍ରଜାଗଣଙ୍କୁ ରକ୍ଷା କରିବେ । ସେ ରାଷ୍ଟ୍ର ମଧ୍ୟରେ ବିକ୍ରୟ, କ୍ରୟ, ପଥ, ଭକ୍ତ, ପରିଚ୍ଛଦ ଓ ଯୋଗକ୍ଷେମ ସନ୍ଦର୍ଶନ କରି ବଣିକବର୍ଗଙ୍କ ପ୍ରତି କରଧାର୍ଯ୍ୟ କରିବେ । ଏବଂ ଉତ୍ପତ୍ତି ଦାନ ବୃତ୍ତି ଏବଂ ଶିଳ୍ପ କାର୍ଯ୍ୟକୁ ବାରମ୍ବାର ଦେଖି ଶିଳ୍ପ କାର୍ଯ୍ୟ ଓ ଶିଳ୍ପୀମାନଙ୍କ ପ୍ରତି ତଦ୍ରୂପ କର ଅବଧାରଣ କରିବେ । ହେ ଯୁଧିଷ୍ଠିର ! ପ୍ରଜାମାନେ ଯହିଁରେ ଅବସନ୍ନ ନ ହେବେ, ସେହିପରି ବିବେଚନା କରି ମହୀପତି ପ୍ରଜାମାନଙ୍କ ପ୍ରତି ଉଚିତ କର ସଂସ୍ଥାପନ କରିବେ ।

ହେ ରାଜନ୍ ! ଫଳ ଅର୍ଥାତ୍ ଧନଧାନ୍ୟ ଏବଂ କର୍ମ୍ମ ଅର୍ଥାତ୍ କୃଷ୍ୟାଦି କାର୍ଯ୍ୟ ଏହା ସମ୍ୟକ ଅବଲୋକନ କରି ତହିଁରେ କର କଳ୍ପନା କରିବେ । କାରଣ ଫଳ ଓ କର୍ମ୍ମରେ ଲୋକର ସ୍ୱାର୍ଥ ନଥିଲେ ସେ କଦାପି ତହିଁରେ ପ୍ରବୃତ୍ତ ହୁଅନ୍ତିନାହିଁ । ଯହିଁରେ ରାଜା କୃଷ୍ୟାଦି କର୍ତ୍ତା ଉଭୟେ କର୍ମ୍ମଭାଗୀ ହେବେ, ସେହିପରି ପର୍ଯ୍ୟାଲୋଚନା କରି ରାଜା ସତତ କରସବୁ ପ୍ରଣୟନ କରିବେ । ଆଉ ଯେପରି ଅତିଶୟ ତୃଷ୍ଣାବଶତଃ ଆତ୍ମମୂଳ ରାଷ୍ଟ୍ର ଓ ପରମୂଳ କୃଷ୍ୟାଦି କାର୍ଯ୍ୟ ଉଚ୍ଛିନ୍ନ ନ ହୁଏ, ସେହିପରି ରାଜା ଲୋଭ ସମ୍ବରଣ କରି ପ୍ରଜାମାନଙ୍କଠାରେ ପ୍ରିୟ-ଦର୍ଶନ ହେବେ । ରାଜା ଅତିଖାଦୀ ଅର୍ଥାତ୍ ବହୁଭକ୍ଷ ବୋଲି ବିଖ୍ୟାତ ହେଲେ ତାହାଙ୍କୁ ସମସ୍ତେ ଦ୍ୱେଷ କରନ୍ତି ।୧୯। ରାଜା ପ୍ରଜାଗଣଙ୍କ କର୍ତ୍ତୃକ ପ୍ରଦ୍ୱିଷ୍ଟ ହେଲେ କିପରି ତାହାଙ୍କର ଶ୍ରେୟୋଲାଭ ହେବ ? ଅତଏବ ଅପ୍ରିୟ ରାଜା କୌଣସି ପ୍ରକାରେ ଫଳଲାଭ କରିପାରନ୍ତି ନାହିଁ । ସୁତରାଂ ହେ ଭାରତ ! ଯେପରି ଲୋକେ ବତ୍ସକୁ କ୍ଷୁଧାର୍ତ୍ତ ନ କରି ଗାଭୀଦୋହନ କରନ୍ତି, ସେହିପରି ଅକ୍ଷୀଣ ବୁଦ୍ଧି ରାଜା ରାଷ୍ଟ୍ରକୁ ଦୋହନ କରିବେ । କାରଣ ବତ୍ସ ବଳବାନ୍ ହେଲେ ପୀଡ଼ା ସହ୍ୟକରନ୍ତି ।

ହେ ଯୁଧିଷ୍ଠିର ! ଯେପରି ଅତିଶୟ ଦୋହନ କଲେ, ବତ୍ସ କର୍ମ୍ମ କରିବାକୁ ସମର୍ଥ ହୁଅନ୍ତିନାହିଁ, ତଦ୍ରୂପ ଅତ୍ୟନ୍ତ ଦୋହନ କଲେ ରାଷ୍ଟ୍ର ମଧ୍ୟ ମହତ୍ କର୍ମ୍ମ କରି ପାରେନାହିଁ । ଯେଉଁ ନୃପତି ସ୍ୱୟଂ ଅନୁଗ୍ରହ କରି ରାଷ୍ଟ୍ରକୁ ସର୍ବତୋଭାବରେ ରକ୍ଷା କରନ୍ତି, ସେ ବହୁକାଳ ଜୀବିତ ଥାଇ ବହୁଳ ଫଳଲାଭ କରନ୍ତି । ଆପତ୍ କାଳରେ ଯଦି ପ୍ରଜାଗଣ ରାଜାଙ୍କୁ ସାହାଯ୍ୟାର୍ଥ ଧନ ଦାନ ନ କରନ୍ତି, ତାହାହେଲେ ରାଜା ରାଷ୍ଟ୍ରକୁ କୋଷଭୂତ କରି କୋଷକୁ ଗୃହଗତ କରିବେ । ପୌର ଓ ଜନପଦ ବା ସବୁ ଆଶ୍ରିତ, ଉପାଶ୍ରିତ କିମ୍ବା ସ୍ୱଳ୍ପଧନ ହେଲେହେଁ ରାଜା ସାମର୍ଥ୍ୟ ଅନୁସାରେ ସେମାନଙ୍କ ପ୍ରତି କୃପା କରିବେ ।୨୪। ବାହ୍ୟ ଅର୍ଥାତ୍ ଆଟବିକ ଦସ୍ୟୁମାନଙ୍କୁ ରାଷ୍ଟ୍ରମଧ୍ୟରୁ ପ୍ରତ୍ୟାଖ୍ୟାନ କରି ମଧ୍ୟ ଅର୍ଥାତ୍ ଗ୍ରାମ୍ୟ ଲୋକଙ୍କ ନିକଟରୁ ସୁଖରେ ଧନ ଗ୍ରହଣ କରିବେ । ତାହାହେଲେ ସୁଖିତ କିମ୍ବା ଦୁଃଖିତ ଲୋକମାନେ ତାହାଙ୍କ ପ୍ରତି କୁପିତ ହେବେ ନାହିଁ ।୨୫।

ରାଜାଙ୍କର ଅର୍ଥ ଗ୍ରହଣ କରିବା ଆବଶ୍ୟକ, ଏହିକଥା ପ୍ରଥମତଃ ନିଜର ରାଷ୍ଟ୍ରମଧ୍ୟରେ ସୂଚନା କରି ତପ୍ରରେ ଅଭିଳଷିତ ଗ୍ରାମକୁ ଗମନପୂର୍ବକ ପ୍ରଜାଗଣଙ୍କୁ ଏହିକଥା କହି ଭୟ ପ୍ରଦର୍ଶନ କରିବ ଯେ ପରଚକ୍ରର ମହତ୍ ଭୟରୂପ ଗୋଟିଏ ଅପଦ୍ ଉତ୍ପନ୍ନ ହୋଇଅଛି । ବଂଶ ଫଳାଗମ ପ୍ରାୟ ଭକ୍ତ ଅପଦ୍ ସମସ୍ତଙ୍କର ଅନ୍ତକର ହେବ ଯଦିଚ ଆମ୍ଭର ଶତ୍ରୁମାନେ ଆତ୍ମବିନାଶ ନିମିତ୍ତ ଦସ୍ୟୁଗଣଙ୍କ ସହିତ ଉଦ୍ଧତ ହୋଇ, ଏହି ରାଷ୍ଟ୍ରକୁ ବାଧ କରିବାର ଅଭିଳାଷ କରୁଅଛନ୍ତି, ତଥାପି ଉପସ୍ଥିତ ଦାରୁଣ ଭୟ ଏବଂ ଏହି ଘୋରତର ଆପତ୍କାଳରୁ ଆମ୍ଭେ ତୁମ୍ଭମାନଙ୍କୁ ପରିତ୍ରାଣ କରିବୁଁ ବୋଲି ତୁମ୍ଭମାନଙ୍କଠାରୁ ଧନ ପ୍ରାର୍ଥନା କରୁଅଛୁ । ୨୯ । ଉପସ୍ଥିତ ଭୟ କ୍ଷୟ ହେଲେ ତୁମ୍ଭେମାନେ ଆମ୍ଭଠାରୁ ସେହିସବୁ ଅର୍ଥ ପୁନର୍ବାର ପ୍ରାପ୍ତହେବ; ପରନ୍ତୁ ଶତ୍ରୁମାନେ ବଳପୂର୍ବକ ଏହି ରାଷ୍ଟ୍ର ମଧ୍ୟରୁ ଯେଉଁ ଅର୍ଥ ହରଣ କରିବେ, ତାହା ପୁନର୍ବାର ପାଇବ ନାହିଁ । ୩୦ ।

ଏ ସମୟରେ ଯଦି ତୁମ୍ଭେମାନେ ଭାର୍ଯ୍ୟା ଓ ପୁତ୍ର ନିମିତ୍ତ ସଞ୍ଚୟ ବୋଲି, ସାଧାରଣଙ୍କର ସାହାଯ୍ୟ ସକାଶେ ଅର୍ଥଦାନ ବିଷୟରେ ଆତ୍ମପ୍ରତି ବିମୁଖ ହୁଅ, ତାହାହେଲେ ବିପକ୍ଷଙ୍କଠାରେ ଭାର୍ଯ୍ୟା ଓ ପୁତ୍ରଙ୍କର ପଶ୍ଚାତ୍ ତୁମ୍ଭମାନଙ୍କର ପ୍ରାଣନାଶ ହେବ । ଆଜ୍ ଏମନ୍ତ ସମୟରେ ଯଦି ତୁମ୍ଭେମାନେ ଆମ୍ଭର ସହକାରୀ ହୋଇ ଆମ୍ଭର ସାହାଯ୍ୟ କର, ତା ହେଲେ ଅମ୍ଭେ ଏହି ରାଷ୍ଟ୍ରକୁ ନିରୁପଦ୍ରବ କରି ପୁନଃପ୍ରାପ୍ତ, ତୁମ୍ଭମାନଙ୍କୁ ନେଇ ଆନନ୍ଦ ଅନୁଭବ କରିବୁଁ ଏବଂ ସାମର୍ଥ୍ୟ ଅନୁସାରେ ତୁମ୍ଭମାନଙ୍କର ସାହାଯ୍ୟ କରିବୁଁ । ଯେପରି ଭାର ବହନ କାଳରେ ଗୁରୁତର ଭାର ବହୁପୁଙ୍ଗବ ଦ୍ୱାରା ବାହିତ ହୁଏ, ତଦ୍ରୂପ ଆମ୍ଭଙ୍କୁ ତୁମ୍ଭମାନଙ୍କ ସହିତ ଏହି ଆପଦ୍ କାଳରେ ଭାର ବହନ କରିବାକୁ ହେବ । କୌଣସି ଆପଦ୍ ଉପସ୍ଥିତ ହେଲେ ତତ୍କାଳରେ ଧନକୁ ଅତ୍ୟନ୍ତ ପ୍ରିୟ ବିବେଚନା କରିବା କର୍ତ୍ତବ୍ୟ ନୁହେଁ ।

ଅନନ୍ତର କାଳବିତ୍ ମହୀପତି ଯେତେବେଳେ ଏହିପରି ଉପଯୁକ୍ତ ସମନ୍ୱିତ ଶ୍ଳକ୍ଷ୍ଣ ଓ ମଧୁର ବଚନଦ୍ୱାରା ପ୍ରଜାଗଣଙ୍କଠାରୁ କର ସ୍ୱରୂପ ଧନ ଗ୍ରହଣକରି ପାରିବେ ନାହିଁ, ସେତେବେଳେ ସେ ଯୋଗ ଅର୍ଥାତ୍ ଧନଗ୍ରହଣ ଉପାୟ ଅବଲମ୍ବନ ପୂର୍ବକ ତଦନୁସାରେ ନିଜର ଯୋଗୋଭୂତ ପଦାତି ସମୂହଦ୍ୱାରା ପ୍ରଜାଗଣଙ୍କଠାରୁ ଧନ ଗ୍ରହଣ କରିବେ । ନରପତି

ପ୍ରାକାର ଓ ଭୃତ୍ୟ ଭରଣାର୍ଥ ବ୍ୟୟ, ସଂଗ୍ରାମର ଭୟ ଓ ଯୋଗକ୍ଷେମ ସନ୍ଦର୍ଶନ କରି ଗୋମୀ ଅର୍ଥାତ୍ ବୈଶ୍ୟବର୍ଗଙ୍କ ପ୍ରତି କରଧାର୍ଯ୍ୟ କରିବେ । ଅରଣ୍ୟବାସୀ ଗୋମିଗଣ ରାଜାଙ୍କ କର୍ତ୍ତୃକ ଉପେକ୍ଷିତ ହେଲେ ବିନଷ୍ଟ ହୁଅନ୍ତି, ତନ୍ନିମିତ୍ତ ବିଶେଷକରି ସେମାନଙ୍କ ପ୍ରତି ମୃଦୁତାଚରଣ କରିବ । ୩୬ ।

ହେ ପାର୍ଥ ! ନିୟତ ଗୋମିଗଣଙ୍କର ସାନ୍ତ୍ୱନା, ପାଳନ, ଦାନ, ଉତ୍ତମାବସ୍ଥା, ସଂବିଭାଗ ଓ ପ୍ରିୟାଚରଣ କରିବା କର୍ତ୍ତବ୍ୟ । ୩୭ । ହେ ଭାରତ ! ଗୋମିଗଣଙ୍କ ନିରନ୍ତର ଫଳବାନ୍ କରିବା କର୍ତ୍ତବ୍ୟ, କାରଣ ସେମାନେ କୃଷି ଓ ବାଣିଜ୍ୟ ବ୍ୟବସାୟ ଦ୍ୱାରା ରାଷ୍ଟ୍ରକୁ ବର୍ଦ୍ଧିତ କରନ୍ତି, ସେହି ହେତୁରୁ ବିଚକ୍ଷଣ ମାନବମାନେ ଗୋମୀମାନଙ୍କର ପ୍ରୀତି କରିଥାନ୍ତି ଏବଂ ଦୟାବାନ୍ ଓ ଅପ୍ରମତ୍ତ ହୋଇ ସେମାନଙ୍କ ପ୍ରତି ମୃଦୁଭାବରେ କର ପ୍ରଣୟନ କରନ୍ତି । ୩୯ ।

ହେ ଯୁଧିଷ୍ଠିର ! ଏହି ନିମିତ୍ତ ସର୍ବଦା ଗୋମୀମାନଙ୍କର ମଙ୍ଗଳ ଚରଣ ସୁଲଭ ହୋଇଥାଏ । ଏବଂ ଏହି କାର୍ଯ୍ୟସଦୃଶ କୌଣସି ଉତ୍କୃଷ୍ଟ କାର୍ଯ୍ୟ ଦେଖାଯାଏ ନାହିଁ । ୪୦ ।

---

## ଅଧ୍ୟାୟ—୮୮

ଯୁଧିଷ୍ଠିର ବୋଇଲେ—ହେ ମହାମତି ପିତାମହ ! ରାଜା ସମର୍ଥ ହୋଇ ସୁଦ୍ଧା ଯଦି କୋଷାଭିଳାଷୀ ହୁଅନ୍ତି, ତେବେ କି ପ୍ରକାରେ ତଦ୍‌ବିଷୟରେ ପ୍ରବୃତ୍ତ ହେବେ, ତାହା ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ ।୧।

ଭୀଷ୍ମ କହିଲେ—ଧର୍ମଶୀଳ ନରପତି ପ୍ରଜା ହିତୈଷୀ ହୋଇ ଦେଶ, କାଳ, ବୁଦ୍ଧି ଓ ବଳଅନୁସାରେ ପ୍ରଜାଗଣଙ୍କୁ ଅନୁଶାସନ କରିବେ । ୨ । ଆପଣମାନେ ଏବଂ ପ୍ରଜାବୃନ୍ଦର ଯେପରି ନିୟତ ମଙ୍ଗଳ କାମନା କରିବାକୁ ହୁଏ, ତଦ୍ରୂପ ରାଷ୍ଟ୍ରର ସମୁଦାୟ କର୍ମ ସୁନ୍ଦରରୂପେ ସମ୍ପାଦନ କରିବ । ୩ । ଯେପରି ବତ୍ସମାନେ ମାତୃସ୍ତନକୁ ବିଚ୍ଛିନ୍ନ ନ କରି ସ୍ତନରୁ ଦୁଗ୍ଧ ଦୋହନ କରନ୍ତି, ଏବଂ ଅଳିସମୂହ ପାଦପକୁ ପୀଡ଼ିତ

ନକରି ମଧୁପାନ କରନ୍ତି, ସେହିପରି ରାଜା ରାଷ୍ଟ୍ରରୁ ଧନ ଦୋହନ କରିବେ । ୪ । ବ୍ୟାଘ୍ରୀ ଯେପରି ପୁତ୍ରମାନଙ୍କୁ ସମ୍ୟକପ୍ରକାରେ ଦଂଶନ ପୂର୍ବକ ପୀଡ଼ିତ ନକରି ହରଣ କରେ ଏବଂ ଜଳୌକା ଯେପରି ମୃଦୁ ଭାବରେ ରୁଧିର ପାନକରେ, ରାଜା ସେହିପରି ରାଜ୍ୟଭୋଗ କରିବେ ।୫ । ଯେପରି ଶଲ୍ୟଶାଳୀ ଅର୍ଥାତ୍ ତୀକ୍ଷ୍ଣତୁଣ୍ଡ ଆଖୁ ଅତୀକ୍ଷ୍ଣ ଉପାୟ ଦ୍ୱାରା ନିଦ୍ରିତ ମାନବର ପଦତଳସ୍ଥ ମାଂସକୁ ଏପରିଭାବରେ ଭକ୍ଷଣ କରନ୍ତି ଯେ ତଦ୍ୱାରା ଶୟାନବ୍ୟକ୍ତିର କିଞ୍ଚିତ ବେଦନାବଶତଃ ଈଷତ୍ ପାଦ ସଞ୍ଚାଳନ ଦ୍ୱାରା ସୁଦ୍ଧା ମୂଷିକକୁ ଭକ୍ଷଣକାର୍ଯ୍ୟରୁ ବିରତ ହେବାକୁ ହୁଏନାହିଁ । ମହୀପତି ମଧ ସେହିପରି ଭାବରେ ରାଜ୍ୟଭୋଗ କରିବେ । ୬। ପ୍ରଜାପାଳକ ନରପତି ପ୍ରଥମତଃ ପ୍ରଜାମାନଙ୍କଠାରୁ ଅଳ୍ପ ଅଳ୍ପ କର ଆଦାୟକରି ବର୍ଦ୍ଧିତ ପୂର୍ବକ ପରପର ବର୍ଷରେ ଅଧିକ ଗ୍ରହଣ ପୂର୍ବକ କ୍ରମଶଃ ବୃଦ୍ଧି କରିବେ । ୭ ।

ଯେପରି ବତ୍ସଗଣଙ୍କ ଅତିଯତ୍ନରେ ମୃଦୁପୂର୍ବକ କ୍ରମଶଃ ପାଟେଗ୍ରହଣ କରାଇ ଉତରୋତ୍ତର ଭାରର ବର୍ଦ୍ଧନ ପୂର୍ବକ ଦମନ କରିବାକୁ ହୁଏ, ପ୍ରଜାଗଣଙ୍କୁ ମଧ ସେହିପରି ଦମନ କରିବେ । ୮ । ଯେପରି ବତ୍ସସମୂହ ସର୍ବଦା ପାଶବଦ୍ଧ ହେଲେ ଦୁର୍ଦ୍ଦମ ହୋଇ ପ୍ରାଣ ପରିତ୍ୟାଗ କରନ୍ତି, ସେହି ପ୍ରଜାବର୍ଗ ମଧ ଏକକାଳରେ ଅତିଶୟ କର ଭାରାକ୍ରାନ୍ତ ହେଲେ ଦୁର୍ଦ୍ଦମ ହୋଇ ପ୍ରାଣ ପରିତ୍ୟାଗ କରନ୍ତି । ଅତଏବ ରାଜା ବତ୍ସତୁଲ୍ୟ ପ୍ରଜାଗଣଙ୍କୁ ଅତି ଯତ୍ନ ସହକାରେ କ୍ରମଶଃ ଦମନ କରିବେ, ତାହା ନ ହେଲେ ପ୍ରଜାରକ୍ଷା ହେବନାହିଁ । ପ୍ରତି ପୁରୁଷଙ୍କଠାରେ ସମସ୍ତ କାର୍ଯ୍ୟ ସୁଲଭ ରୂପେ ନିଯୁକ୍ତ ହୋଇପାରେ ନାହିଁ, ତନିମିତ୍ତ ମୁଖ୍ୟବ୍ୟକ୍ତି ମାନଙ୍କୁ ସାନ୍ତ୍ୱନା କରି ଇତର ଲୋକମାନଙ୍କୁ ଦମନ କରିବେ ।

ତଦନନ୍ତର ନରପତି ମୁଖ୍ୟବ୍ୟକ୍ତିମାନଙ୍କ ଦ୍ୱାରା ସେହି କରଭାର ବହନେଚ୍ଛୁ ଇତର ପ୍ରଜାମାନଙ୍କର ପରସ୍ପର ଭେଦ କରାଇ ସ୍ୱୟଂ ସେମାନଙ୍କୁ ସାନ୍ତ୍ୱନାପୂର୍ବକ ଅଯତ୍ନ ସହକାରେ ସୁଖଭୋଗ କରିବେ । ୧୧ । ଅସ୍ଥାନରେ କିମ୍ବା ଅକାଳରେ ସେମାନଙ୍କ ପ୍ରତି କରଭାର ଅର୍ପଣ କରିବେ ନାହିଁ । କିନ୍ତୁ ସମୟ ଓ ନିୟମ ଅନୁସାରେ ସାନ୍ତ୍ୱବାକ୍ୟ ଦ୍ୱାରା କ୍ରମେ କ୍ରମେ କରଭାର ଅର୍ପଣ କରିବେ । ୧୨ । ଅମ୍ଭେ ଏହି ଉପାୟମାନ କହିଲୁଁ,

ପରନ୍ତୁ ମାୟା ଅମୂଳ ଶରଷେଚ୍ଛା ନୁହନ୍ତି । ଦେଖ, ରାଜାମାନଙ୍କ ଅନୁପାୟରେ ଦମନ କଲେ ସେମାନେ ଅତିଶୟ ହୁଅନ୍ତି । ୧୩ ।

ଅପିଚ ରାଷ୍ଟ୍ରମଧ୍ୟରେ ମଦ୍ୟଶାଳା ଏବଂ ରାଷ୍ଟ୍ରର ଉପଘାତକ ବେଶ୍ୟା, କୁଟ୍ଟିନୀ, କୁଶୀଳବ, ଶଠ, କିତବ, ଦ୍ୟୂତକାର ଓ ଅନ୍ୟାନ୍ୟ ଈଦୃଶ ଯେ କୌଣସି ମାନବ ଅବସ୍ଥାନ କରିବେ, ରାଜା ସେ ସମସ୍ତଙ୍କୁ ଶାସନ କରିବେ । କାରଣ ସେମାନେ ଶାସିତ ନ ହେଲେ, ଭଦ୍ରଶୀଳ ପ୍ରଜାଗଣ ଅତିଶୟ କ୍ଳେଶ ପାଇବେ । ୧୫ । କୌଣସି ଆପଦ୍‌କାଳ ଉପସ୍ଥିତ ହେଲେ କେହି କାହାଠାରୁ ଦତ୍ତଧନ କିମ୍ବା କର ଯାଚନା କରିବେ ନାହିଁ । ମନୁ ପୂର୍ବେ ପ୍ରାଣିଗଣଙ୍କର ଏହିପରି ବ୍ୟବସ୍ଥା ସଂସ୍ଥାପନ କରି ଅଛନ୍ତି । ୧୬ ।

ଅତଏବ ସମସ୍ତେ ସେହି ବ୍ୟବସ୍ଥାର ଅନୁଗାମୀ ହେବେ । ଯଦ୍ୟପି ବର୍ତ୍ତମାନ ତାହାର ଅନ୍ୟଥା ହୁଏ, ତାହାହେଲେ ଏହି ଲୋକମାନେ ନିଶ୍ଚୟ ନିହତ ହେବେ । ରାଜା ପ୍ରଜାକୃତ ପାପ ଓ ପୁଣ୍ୟ ଉଭୟର ଫଳଭୋଗ କରୁଥିବା ସ୍ଥଳେ ଯେଉଁମାନେ ପାପୀହେବେ, ସେମାନଙ୍କୁ ସତତ ଶାସନ କରିବା ରାଜାଙ୍କର ଅବଶ୍ୟ ବିଧେୟ । ପରନ୍ତୁ ଯେଉଁରାଜା ଏହି ପାପୀ ଲୋକମାନଙ୍କୁ ଦମନ ନ କରନ୍ତି, ତାହାଙ୍କୁ ଯେପରି ପ୍ରଜାକୃତ ଧର୍ମର ଚତୁର୍ଥଭାଗ ଭୋଗ କରିବାକୁ ହୁଏ, ସେହିପରି ପାପର ମଧ୍ୟ ଫଳଭୋଗ କରିବାକୁ ହୁଏ । ୨୦ ।

ରାଜା ବକ୍ଷ୍ୟମାଣ ବାଦ୍ୟାଦି ସ୍ଥାନସବୁ ସଂଯତ କରି ରଖିବେ ନତୁବା ସ୍ୱୟଂ ସେଥିରେ ପ୍ରସକ୍ତ ହୋଇ ଐଶ୍ୱର୍ଯ୍ୟ ନାଶ କରିବେ । କାରଣ ପୁରୁଷ କାମାସକ୍ତ ହେଲେ କୌଣସି ଅକାର୍ଯ୍ୟ କାର୍ଯ୍ୟ ବର୍ଜନ କରିପାରେ ନାହିଁ । ଅନାୟାସରେ ସମସ୍ତ କାର୍ଯ୍ୟ କରିପାରେ । ମଦ୍ୟ, ମାଂସ, ପରଦାର ଓ ପରଧନ ଅପହରଣ କରି ଲୋକଙ୍କଠାରେ ଶାସ୍ତ୍ର ପ୍ରଦର୍ଶନ କରେ । ୨୨ । ଯେଉଁମାନଙ୍କର ପରିଗ୍ରହ ନାହିଁ, ଆପଦ୍ କାଳରେ ସେମାନେ ଯାଚନାକଲେ ରାଜା ସେମାନଙ୍କ ପ୍ରତି କୃପାକରି ଧର୍ମତଃ ସେମାନଙ୍କୁ ଅର୍ଥଦାନ କରିବେ । କିନ୍ତୁ ଭୟକରି ଦାନ କରିବେ ନାହିଁ । ୨୩ । ତୁମ୍ଭେ ତୁମ୍ଭର ରାଜ୍ୟରେ ଯାଚକ କିମ୍ବା ଦସ୍ୟୁମାନଙ୍କୁ କଦାପି ବାସ କରିବାକୁ ଦେବ ନାହିଁ । ଯେଣୁ ଏମାନେ ପ୍ରାଣିଗଣଙ୍କର ଇଷ୍ଟଚିନ୍ତା ନ କରି କେବଳମାତ୍ର

ଅନିଷ୍ଟ ଚରଣ କରନ୍ତି । ଯେଉଁମାନେ ପ୍ରାଣିଗଣଙ୍କ ପ୍ରତି ଅନୁଗ୍ରହ କରନ୍ତି ଏବଂ ଯେଉଁମାନେ ପ୍ରଜାମାନଙ୍କୁ ବର୍ଦ୍ଧିତ କରନ୍ତି, ସେହି ସେହି ବ୍ୟକ୍ତିମାନେ ତୁମ୍ଭରାଜ୍ୟରେ ବାସ କରିବେ । ପ୍ରାଣିନାଶକ ବ୍ୟକ୍ତିମାନେ ବାସ କରି ପାରିବେ ନାହିଁ ।

ହେ ମହାରାଜ ! ଯେଉଁ ଅଧିକାରୀ ପୁରୁଷମାନେ ନିର୍ଦ୍ଦିଷ୍ଟ କରର ଅତିରିକ୍ତ ଧନ ଆଦାୟ କରିବେ, ସେମାନେ ରାଜାଙ୍କଠାରେ ଦଣ୍ଡନୀୟ ହେବେ । ପରେ ଅନ୍ୟାନ୍ୟ ଅଧିକାରୀ ପୁରୁଷମାନେ ଯଥାବତ୍ କର ଆଦାୟ କରିବା ନିମିତ୍ତ ସେମାନଙ୍କୁ ପୁନର୍ବାର ନିଯୁକ୍ତ କରିବେ ।୨୬। କୃଷି, ଗୋରକ୍ଷଣ, ବାଣିଜ୍ୟ ଏବଂ ଈଦୃଶ ଅନ୍ୟାନ୍ୟ ଯେଉଁସବୁ କର୍ମ ଉପସ୍ଥିତ ହେବ, ତାହା ବହୁ ପୁରୁଷଦ୍ୱାରା ସମ୍ପାଦନ କରିବାକୁ ହେବ । ତାହା ନ ହେଲେ କର୍ମନାଶ ହେବ । ୨୭ । ଯଦି ମନୁଷ୍ୟ କୃଷି, ଗୋରକ୍ଷଣ ଓ ବାଣିଜ୍ୟ କାର୍ଯ୍ୟ ଅନୁଷ୍ଠାନ କରି ଚୌର କିମ୍ବା ରାଜକୀୟ ଲୋକଙ୍କଠାରୁ କଣ୍ଟିତ ସଂଶୟ ପ୍ରାପ୍ତ ହୁଏ, ତାହାହେଲେ ତନ୍ନିମିତ୍ତ ରାଜାଙ୍କୁ ଲୋକଙ୍କଠାରେ ନିନ୍ଦିତ ହେବାକୁ ହୁଏ । ଅତଏବ ରାଜା ପାନ, ଆଚ୍ଛାଦନ ଓ ଭୋଜନଦ୍ୱାରା ଧନବାନ୍ ବ୍ୟକ୍ତିଙ୍କର ନିୟତ ସମ୍ମାନ କରିବେ ଏବଂ ସେମାନଙ୍କୁ "ଆମ୍ଭସହିତ ପ୍ରଜାମାନଙ୍କୁ ଅନୁଗ୍ରହ କରନ୍ତୁ" ଏହିକଥା କହିବେ ।୨୯ ।

ହେ ଭାରତ ! ଧନବାନ୍ ବ୍ୟକ୍ତିମାନେ ରାଜ୍ୟର ମହତ ଅଙ୍ଗ ଓ ସମସ୍ତ ପ୍ରାଣିଙ୍କମଧ୍ୟରେ ଶ୍ରେଷ୍ଠ, ଏଥିରେ ସନ୍ଦେହ ନାହିଁ ।୩୦। ପ୍ରାଜ୍ଞ, ଶୂର, ଧନସ୍ଥ, ସ୍ୱାମୀ, ଧାର୍ମିକ, ତପସ୍ୱୀ, ସତ୍ୟବାଦୀ ଓ ବୁଦ୍ଧିମାନ ମାନବଗଣ ରାଜ୍ୟକୁ ରକ୍ଷା କରନ୍ତି । ଅତଏବ ହେ ପାର୍ଥିବ, ତୁମ୍ଭେ ସର୍ବଭୂତଙ୍କଠାରେ ପ୍ରୀତିମାନ ହୋଇ ସତ୍ୟ, ସରଳତା, ଅକ୍ରୋଧ, ଆନୃଶଂସ୍ୟ ପାଳନ କର । ୩୨ । ହେ ରାଜନ୍ ! ତୁମ୍ଭେ ସତ୍ୟ ଓ ସରଳତା ସହକାରେ ମିତ୍ର, କୋଷ ଓ ବଳ ସମନ୍ୱିତ ହେଲେ ନିଶ୍ଚୟ ଦଣ୍ଡ କୋଷ ଓ ଭୂମିଲାଭ କରିବାକୁ ସମର୍ଥ ହେବ । ୩୩ ।

———

## ଅଧ୍ୟାୟ—୮୯

ଭୀଷ୍ମ କହିଲେ—ହେ ଯୁଧିଷ୍ଠିର ! ଯେଉଁମାନଙ୍କର ଫଳ ଭକ୍ଷଣ କରାଯାଏ, ତୁମ୍ଭର ରାଜ୍ୟସ୍ଥିତ ସେହି ବନସ୍ପତି ସମୂହକୁ କେହି ଯେପରି ଛେଦନ ନ କରନ୍ତି, ମନୀଷୀଗଣ ଫଳମୂଳକୁ ବ୍ରାହ୍ମଣମାନଙ୍କର ଧନ ଓ ଧର୍ମ୍ମ ବୋଲି କହନ୍ତି । ଅନ୍ୟଲୋକେ ବ୍ରାହ୍ମଣମାନଙ୍କ ଅପେକ୍ଷା ଅତିରିକ୍ତ ଭୋଗ କରନ୍ତି । ଅତଏବ ବ୍ରାହ୍ମଣମାନଙ୍କର ଭୋଗ ବସ୍ତୁକୁ ଅପର ଲୋକେ ଯେପରି କୌଣସି ପ୍ରକାରେ ଗ୍ରହଣ ନ କରନ୍ତି ।୨।

ହେ ନରାଧିପ ! ଯଦି ବ୍ରାହ୍ମଣ ବୃତ୍ତିଦ୍ୱାରା କର୍ଷିତ ହୋଇ ଅନ୍ନ-ବାଣାର୍ଥ ରାଜ୍ୟତ୍ୟାଗ ପୂର୍ବକ ଅନ୍ୟତ୍ର ଗମନ କରିବାକୁ ଇଚ୍ଛୁକ ହୁଅନ୍ତି, ତାହାହେଲେ ରାଜା ପରିବାରବର୍ଗ ସହିତ ତାହାଙ୍କର ବୃତ୍ତି କରିଦେବେ । ଯଦି ସେ ତହିଁରେ ସୁଦ୍ଧା ନିବୃତ୍ତ ନ ହୁଅନ୍ତି, ତାହାହେଲେ ବ୍ରାହ୍ମଣ ସଭା ମଣ୍ଡଳୀରେ ସେ ଏହିପରି ନିନ୍ଦ୍ୟ ହେବେ ଯେ "ଯଦି ସେ ନିବୃତ୍ତ ନ ହୁଅନ୍ତି, ତାହାହେଲେ ଲୋକେ କାହାର ମର୍ଯ୍ୟାଦା କରିବେ ;" ୪ ।

ହେ କୌନ୍ତେୟ ! ଅତଃପର ଯଦ୍ୟପି କେହି ତାହାଙ୍କୁ କୌଣସି କଥା ନ କହନ୍ତି ଏବଂ ସମସ୍ତଙ୍କର ପୂର୍ବ ବିବରଣ ବିସ୍ମରଣ ହୋଇଯାଏ, ତାହାହେଲେ ସେ ନିଶ୍ଚୟ ନିବୃତ୍ତ ହୁଅନ୍ତି ।

ଲୋକେ ତାହାଙ୍କୁ ଏହି କଥା କହନ୍ତି ଯେ—ହେ ବ୍ରହ୍ମନ୍ ! ଯେ ଭୋଗାର୍ଥୀ ହୋଇ ଭୋଗାଭାବରେ ରାଜ୍ୟ ପରିତ୍ୟାଗ କରିବେ, ତାହାଙ୍କୁ ଭୋଗଦ୍ୱାରା ଏବଂ ବୃତ୍ତ୍ୟର୍ଥୀ ହୋଇ ବୃତ୍ତ୍ୟଭାବରେ ରାଜ୍ୟ ତ୍ୟାଗ କଲେ ତାହାଙ୍କୁ ଯେ ବୃତ୍ତିଦ୍ୱାରା ନିମନ୍ତ୍ରଣ କରିବାକୁ ହେବ । ଏହା ଆମ୍ଭେ ଶୁଣିଥାଉଁ ନାହିଁ ।୬। କୃଷି, ଗୋରକ୍ଷଣ ଓ ବାଣିଜ୍ୟ ପ୍ରଭୃତି କର୍ମଦ୍ୱାରା ଇହଲୋକରେ ପ୍ରାଣିଗଣଙ୍କର ଜୀବିକା ନିର୍ବାହ ହୁଏ ଏବଂ ବେଦବିଦ୍ୟା ପ୍ରାଣିଗଣଙ୍କୁ ଊର୍ଦ୍ଧ୍ୱଗାମୀ କରେ ।୭। ଏହି ସଂସାରରେ ପ୍ରବର୍ତ୍ତିମାନା ସେହି ବେଦ ବିଦ୍ୟା ପ୍ରତି ଯେଉଁ ଦସ୍ୟୁମାନେ ପରିପନ୍ଥୀ ହୁଅନ୍ତି, ସେମାନଙ୍କର ବିନାଶାର୍ଥ ବ୍ରହ୍ମା କ୍ଷତ୍ରିୟ ଜାତିକୁ ସର୍ଜ୍ଜନ କରିଅଛନ୍ତି ।୮। ଅତଏବ ହେ କୁରୁନନ୍ଦନ ! ବୀର ହୋଇ ଶତ୍ରୁଜୟ, ପ୍ରଜାପାଳନ, ବହୁ କ୍ରତୁ ଦ୍ୱାରା ଯାଗ ଓ ସମରରେ ଯୁଦ୍ଧ କର ।୯। ଯେଉଁ ରାଜା ପ୍ରତିପାଲ୍ୟ ପ୍ରାଣିଗଣଙ୍କୁ ସତତ ପାଳନ କରନ୍ତି, ସେହି ସେ ରାଜସତ୍ତମ ଅଟନ୍ତି ! ଏବଂ ଯେ ସେମାନଙ୍କୁ ରକ୍ଷା କରନ୍ତି ନାହିଁ ସେମାନଙ୍କ ଦ୍ୱାରା କୌଣସି ଅର୍ଥ ସିଦ୍ଧ ହୁଏନାହିଁ ।୧୦।

ହେ ଯୁଧିଷ୍ଠିର ! ରାଜା ସର୍ବଦା ଲୋକରକ୍ଷାର୍ଥ ଯୁଦ୍ଧ କରିବେ ଏବଂ ତନିମିତ୍ତ ମନୁଷ୍ୟମାନଙ୍କୁ ନିଯୁକ୍ତ କରିବେ । ଅତଏବ ତୁମ୍ଭେ ଆତ୍ମୀୟଙ୍କ-ଠାରୁ ପରଲୁ, ପରଠାରୁ ଆତ୍ମୀୟଙ୍କୁ ଏବଂ ପରଠାରୁ ପରଲୁ ଓ ଆତ୍ମୀୟଙ୍କଠାରୁ ଆତ୍ମୀୟଙ୍କୁ ସର୍ବଦା ପାଳନ କର । ୧୨ । ରାଜା ନିଜକୁ ସର୍ବତୋଭାବରେ ରକ୍ଷାକରି ପୃଥିବୀକୁ ରକ୍ଷା କରିବେ, କାରଣ ପଣ୍ଡିତଗଣ ସମସ୍ତ ଆତ୍ମମୂଳ ବୋଲି କହନ୍ତି ।୧୩। ଆମ୍ଭର ଛିଦ୍ର କଣ, ବ୍ୟସନ କଣ, ଅଭିନିପାତିତ କଣ, ଯେ ହେତୁରୁ ଅବା ଆମ୍ଭଙ୍କୁ ଦୋଷ ଆଶ୍ରୟ କରୁଅଛି, ଏହିସବୁ ବିଷୟ ରାଜା ସତତ ଚିନ୍ତା କରିବେ । ୧୪ । ଗତ ଦିବସରେ ଯେଉଁ କାର୍ଯ୍ୟ କରିଅଛୁଁ, ପ୍ରଜାମାନେ ସେହି କାର୍ଯ୍ୟକୁ ପୁନର୍ବାର ପ୍ରଶଂସା କରୁଅଛନ୍ତି କି ନା, ଆମ୍ଭର ଏହି କାର୍ଯ୍ୟକୁ ପ୍ରଜାମାନେ ଯଦି ଜାଣିଥାନ୍ତି, ତେବେ ତାହାକୁ ପୁଣି ପ୍ରଶଂସା କରୁଅଛନ୍ତି କି ନା ଏବଂ ଜନପଦ ଓ ରାଷ୍ଟ୍ର ମଧ୍ୟରେ ଆମ୍ଭର ଯଶ ପ୍ରଜାବୃନ୍ଦ-ଙ୍କର ଅଭିଳଷିତ ହୋଇଅଛି କି ନା, ଏହି ସବୁ ବିଷୟ ଅନୁସନ୍ଧାନ କରିବା ନିମିତ୍ତ ଅନୁଗତ ଗୁପ୍ତଚରମାନଙ୍କୁ ପ୍ରେରଣ କରିବ । ୧୫ ।

ଅପିଚ ଧର୍ମଜ୍ଞ, ଧୈର୍ଯ୍ୟଶାଳୀ ଓ ସଂଗ୍ରାମରେ ଅପଳାୟିତ ମାନବ-ଗଣଙ୍କ ମଧ୍ୟରେ ଯେଉଁମାନେ ରାଜ୍ୟକୁ ଉପଜୀବ୍ୟ କରି ନ ଥାନ୍ତି, ଏବଂ ଯେଉଁମାନେ ରାଜାଙ୍କୁ ଉପଜୀବ୍ୟ କରି ନ ଥାନ୍ତି, ସେମାନେ ଏବଂ କେଉଁ କେଉଁ ଅମାତ୍ୟ ଓ କେଉଁ କେଉଁ ମଧ୍ୟସ୍ଥ ବ୍ୟକ୍ତି ପ୍ରଶଂସା ଓ ନିନ୍ଦା କରନ୍ତି, ସମସ୍ତଙ୍କୁ ସୁନ୍ଦର ରୂପେ ଜାଣିବ । ୧୮ । ହେ ତାତ ! ସାଧାରଣଙ୍କର ଏକାନ୍ତ ରୁଚିକର ହେବା ଅତି ସୁକଠିନ, କାରଣ ସର୍ବଭୂତଙ୍କ ମଧ୍ୟରେ ମିତ୍ର ଅମିତ୍ର ଓ ମଧ୍ୟମ ବିଦ୍ୟମାନ ଅଛନ୍ତି । ୧୯ ।

ଯୁଧିଷ୍ଠିର କହିଲେ—ତୁଲ୍ୟ ବାହୁ ବଳଶାଳୀ ଓ ତୁଲ୍ୟ ଗୁଣଶାଳୀ ମାନବଗଣଙ୍କ ମଧ୍ୟରେ ଯେଉଁ ନର କି କାରଣରୁ ସମସ୍ତଙ୍କ ଅପେକ୍ଷା ପ୍ରବଳ ହୁଏ ଏବଂ ସେହି ବ୍ୟକ୍ତି କି ନିମିତ୍ତ ଅବା ସେମାନଙ୍କର ଭକ୍ଷକ ହୁଏ । ୨୦ ।

ଭୀଷ୍ମ କହିଲେ—ଯେପରି କ୍ରୁଦ୍ଧ ଆଶୀବିଷ ପ୍ରବଳ ଭୁଜଙ୍ଗମ ଗଣ ଦୁର୍ବଳ ଭୁଜଙ୍ଗମମାନଙ୍କୁ ଭକ୍ଷଣ କରନ୍ତି, ତଦ୍ରୂପ ଚରଗଣ ଅଚର ଗଣଙ୍କୁ ଦଂଷ୍ଟ୍ରୀ ସମୂହ ଅଦଂଷ୍ଟ୍ରୀମାନଙ୍କୁ ଭକ୍ଷଣ କରନ୍ତି, ଅତଏବ ହେ ଯୁଧିଷ୍ଠିର ! ଏହି ସବୁ ପ୍ରାଣୀ ଓ ଶତ୍ରୁମାନଙ୍କଠାରେ ସତତ ଅପ୍ରମତ୍ତ ହୋଇ ରହିବ ।

କାରଣ ପ୍ରମାଦ ଉପସ୍ଥିତ ହେଲେ ଏମାନେ ଗୃଧ୍ର ସଦୃଶ ନିପତିତ ହୁଅନ୍ତି । ୨୨ ।

ହେ ରାଜନ୍ ! ତୁମ୍ଭର ରାଜ୍ୟ ମଧ୍ୟରେ ଅଳ୍ପ ଓ ବହୁମୂଲ୍ୟ ବାଣିଜ୍ୟ-କାର୍ଯ୍ୟ, କାନ୍ତାରରେ ବାଣିଜ୍ୟଶୀଳ ବଣିକମାନେ କରଭାରରେ ପୀଡ଼ିତ ହୋଇ ଉଦ୍ବେଳିତ ହୁଅନ୍ତି ନାହିଁ ତ ? ଯେଉଁମାନେ ରାଜାମାନଙ୍କର ଦୁର୍ବହଭାର ବହନ କରନ୍ତି ଏବଂ ଇତର ଲୋକମାନଙ୍କ ଉଦ୍ଧାର କରନ୍ତି, ସେହି କୃଷିମାନେ କର ପୀଡ଼ିତ ହୋଇ ରାଜ୍ୟ ପରିତ୍ୟାଗ କରୁ ନାହାନ୍ତି ତ ? ୨୪ । ତୁମ୍ଭେ ଇହଲୋକରେ ଦତ୍ତ ଭୋଗ୍ୟ ବସ୍ତୁ ଦ୍ୱାରା, ଦେବଗଣ, ପିତୃଗଣ, ମାନୁଷ, ଉରଗ, ରକ୍ଷ, ପଶୁ ଓ ପକ୍ଷିମାନଙ୍କ ପୋଷଣ କରୁଅଛ ତ ? ହେ ଭାରତ ! ତୁମ୍ଭର ରାଷ୍ଟ୍ର ବ୍ୟବହାର ଓ ରାଜ୍ୟଗୁପ୍ତି କଥା କହିଲି । ହେ ପାଣ୍ଡବ ! ଏହି ଅର୍ଥକୁ ଅବଲମ୍ବନ କରି ପୁନର୍ବାର କହିବି । ୨୬ ।

---

## ଅଧ୍ୟାୟ—୯୦

ଭୀଷ୍ମ କହିଲେ—ହେ ରାଜନ୍ ! ବ୍ରହ୍ମବେତ୍ତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଙ୍ଗିରାପୁତ୍ର ଉତଥ୍ୟ, ଯୁବନାଶ୍ୱପୁତ୍ର ମାନ୍ଧାତାଙ୍କୁ ଯେଉଁ କ୍ଷତ୍ରିୟ ଧର୍ମର ଉପଦେଶ ଦେଇଥିଲେ, ତାହା ଶୁଣ । ୧ । ଯୁଧିଷ୍ଠିର ! ଉତ୍ତମ ବ୍ରହ୍ମଜ୍ଞାନୀ ଉତଥ୍ୟ ଯେପରି ଭାବରେ ତାଙ୍କୁ ଉପଦେଶ ଦେଇଥିଲେ, ତାହା ସମ୍ପୂର୍ଣ୍ଣଭାବେ ମୁଁ କହୁଛି, ତୁମେ ଶ୍ରବଣକର । ୨ । ଉତଥ୍ୟ କହିଲେ—ମାନ୍ଧାତଃ ! ରାଜ ଧର୍ମର ପ୍ରଚାର ଓ ପାଳନ କରିବା, ବିଷୟ ସୁଖର ଉପଭୋଗ କରିବା ନୁହେଁ । ତୁମକୁ ମନେରଖିବା ଉଚିତ ଯେ ରାଜା ସମ୍ପୂର୍ଣ୍ଣ ଜଗତର ରକ୍ଷକ । ୩ । ରାଜା ଯଦି ଧର୍ମାଚରଣ କରେ ତେବେ ଦେବତା ହୁଏ ଓ ଅଧର୍ମାଚରଣ କଲେ ନରକଗାମୀ ହୁଏ । ୪ । ସମସ୍ତ ପ୍ରାଣୀ ଧର୍ମରେ ସ୍ଥିତ ଓ ଧର୍ମ ରାଜାଙ୍କ ଉପରେ ପ୍ରତିଷ୍ଠିତ । ଯେଉଁ ରାଜା ଉତ୍ତମଭାବେ ଧର୍ମର ପାଳନ ଓ ତଦନୁକୂଳ ଶାସନ କରେ, ସେ ଦୀର୍ଘକାଳ ପର୍ଯ୍ୟନ୍ତ ପୃଥିବୀର ସ୍ୱାମୀହୁଏ । ୫ । ପରମଧର୍ମାତ୍ମା ଓ ଶ୍ରୀସମ୍ପନ୍ନ ରାଜା ସାକ୍ଷାତ୍ ଧର୍ମ-ସ୍ୱରୂପ । ଯଦି ସେ ଧର୍ମର ପାଳନ ନ କରେ, ତେବେ ଜନତା ଦେବ-ନିନ୍ଦା କରନ୍ତି ଓ ସେ ରାଜା ଧର୍ମାତ୍ମା ନ ହୋଇ ପାପାତ୍ମା ହୁଏ । ୬ ।

ଯେ ସ୍ୱ-ଧର୍ମ ପାଳନରେ ତତ୍ପର, ସେମାନଙ୍କର ଅଭୀଷ୍ଟ ସିଦ୍ଧି ଦେଖାଯାଏ । ସଂସାର ସେହି ମଙ୍ଗଳମୟ ଧର୍ମର ଅନୁସରଣ କରେ ।୭। ଯେତେବେଳେ ପାପର ଅବରୋଧ ନ ହୁଏ, ସେତେବେଳେ ଜଗତର ଧାର୍ମିକ ବ୍ୟବହାରର ଉଚ୍ଛେଦ ହୁଏ ଓ ଅଧର୍ମର ପ୍ରସାର ହୁଏ, ଯାହା ଦ୍ୱାରା ପ୍ରଜାଗଣଙ୍କ ମନରେ ସର୍ବଦା ଭୟ ହେଉଥାଏ । ୮ ।

ତାତ ! ଯଦି ପାପ-ପ୍ରବୃତ୍ତିର ନିବାରଣ ନ କରାଯାଏ, ତେବେ 'ଏହା ମୋର' ଏପରି କହିବା ମଧ୍ୟ ଅସମ୍ଭବ ହୋଇପଡ଼େ, ତଥା କୌଣସି ଧାର୍ମିକ ବ୍ୟବସ୍ଥା ରହେ ନାହିଁ । ୯ । ଯେତେବେଳେ ଜଗତରେ ପାପର ଭାର ବଢ଼ିଯାଏ, ସେତେବେଳେ ମନୁଷ୍ୟମାନଙ୍କ ନିମନ୍ତେ ନିଜ ସ୍ତ୍ରୀ, ପଶୁ, ଘର ଓ କ୍ଷେତବାଡ଼ିର ଦେଖା ଶୁଣାର ଅବସର ନଥାଏ ।୧୦। ଯେତେ-ବେଳେ ପାପକୁ ନିବାରଣ କରି ହୁଏନା, ସେତେବେଳେ ଦେବତା ପୂଜା ପାଇ ପାରନ୍ତି ନାହିଁ, ପିତୃ ପୁରୁଷ ଶ୍ରାଦ୍ଧ ପାଇ ପାରନ୍ତି ନାହିଁ ଏବଂ ଅତିଥିମାନେ କେଉଁଠି ପୂଜା ମଧ୍ୟ ପାଇ ପାରନ୍ତି ନାହିଁ ।୧୧।

ଯେତେବେଳେ ପାପକୁ ନିବାରଣ କରାଯାଇ ପାରୁନି, ସେତେ-ବେଳେ ବ୍ରହ୍ମଚର୍ଯ୍ୟବ୍ରତ ପାଳନ କରୁଥିବା ଦ୍ୱିଜ ବେଦର ଅଧ୍ୟୟନ ଛାଡ଼ି ଦଅନ୍ତି ଏବଂ ବ୍ରାହ୍ମଣମାନେ ଯଜ୍ଞାଦିର ଅନୁଷ୍ଠାନ କରି ପାରନ୍ତି ନାହିଁ ।୧୨। ମହାରାଜ ଯେତେବେଳେ ପାପକୁ ନିବାରଣ କରି ହେଉନି, ସେତେବେଳେ ବୁଢ଼ା ଜନ୍ତୁମାନଙ୍କ ପରି ମନୁଷ୍ୟର ମନ ବିଚଳିତ ହୁଏ ।୧୩।

ଲୋକ ଏବଂ ପରଲୋକ ଦୁଇଟିକୁ ଦୃଷ୍ଟି ପଥରେ ରଖି ମହର୍ଷି-ମାନେ 'ରାଜା' ନାମକ ମହାନ ଶକ୍ତିଶାଳୀ ମନୁଷ୍ୟର ସୃଷ୍ଟି କଲେ । ସେମାନେ ଭାବିଥିଲେ 'ସେ ସାକ୍ଷାତ୍ ଧର୍ମ ସ୍ୱରୂପ ହେବେ' ।୧୪। ଅର୍ଥାତ୍ ଯେଉଁଥିରେ ଧର୍ମ ବିରାଜ କରେ, ତାକୁହିଁ ରାଜା କହନ୍ତି ଏବଂ ଯେଉଁଥିରେ ଧର୍ମର ଲୟ ହୋଇଯାଏ ତାକୁ ଦେବତାମାନେ 'ବୃଷଳ' ବୋଲି କହନ୍ତି । ବୃଷନାମ ଭଗବାନ ଧର୍ମଙ୍କ ଅଟେ । ଯେ ଧର୍ମ ବିଷୟରେ 'ଅଲମ୍' କହି ଦଅନ୍ତି, ତାକୁ ଦେବତାମାନେ 'ବୃଷଳ' ବୋଲି ବୁଝନ୍ତି, ତେଣୁ ଧର୍ମର ସର୍ବଦା ବୃଦ୍ଧି କରିବା ଉଚିତ ।୧୫। ଧର୍ମର ବୃଦ୍ଧି ହେଲେ ସମସ୍ତ ପ୍ରାଣିଙ୍କର ଅଭ୍ୟୁଦୟ ହୁଏ ଏବଂ ତାର ହ୍ରାସ ହେଲେ ସମସ୍ତଙ୍କର ହ୍ରାସ ମଧ୍ୟ ହୁଏ; ତେଣୁ ଧର୍ମର ଲୋପ ନ ହେବାକୁ ଦେବା ଉଚିତ ।୧୬।

ନରେନ୍ଦ୍ର ! ଧନରୁ ଧର୍ମର ଉତ୍ପତ୍ତି ହୁଏ, ସମସ୍ତଙ୍କୁ ଧାରଣ କରିଥିବା ହେତୁ ତାକୁ ନିଶ୍ଚିତ ରୂପରେ ଧର୍ମ କୁହାଯାଏ । ସେହି ଧର୍ମ ଅକର୍ତ୍ତବ୍ୟ (ପାପ)ର ସୀମାକୁ ଶେଷ କରିପାରେ ବୋଲି ଧରାଯାଏ ।୧୮। ବ୍ରହ୍ମା ପ୍ରାଣିମାନଙ୍କ କଲ୍ୟାଣ ନିମନ୍ତେ ଧର୍ମର ସୃଷ୍ଟି କରି ଅଛନ୍ତି, ତେଣୁ ରାଜାଙ୍କ କର୍ତ୍ତବ୍ୟ କି ନିଜ ଦେଶରେ ପ୍ରଜାମାନଙ୍କ ଉପରେ ଅନୁଗ୍ରହ କରିବା ଲାଗି ଧର୍ମର ପ୍ରଚାର କରିବା ।୧୯।

ହେ ଭରତ ସତ୍ତମ ! ଧର୍ମ୍ମ ରାଜାମାନଙ୍କର ଅତୀବ ଶ୍ରେୟସ୍କର । ଅତଏବ ତୁମ୍ଭେ କାମ ଓ କ୍ରୋଧକୁ ଅନାଦର କରି କେବଳ ଧର୍ମ୍ମ ପାଳନ କର । ୨୦ । ହେ ମାନ୍ଧାତଃ ! ବ୍ରାହ୍ମଣ ଧର୍ମ୍ମର ଯୋନି ଅଟନ୍ତି, ଅତଏବ ସେହି ବ୍ରାହ୍ମଣ ଗଣଙ୍କୁ ସର୍ବଦା ପୂଜା କରିବ ଏବଂ ମତ୍ସର ବିହୀନ ହୋଇ ସେମାନଙ୍କର କାମନା ପୂରଣ କରିବ । ୨୧ । ସେମାନଙ୍କର ଅହିତାଚରଣ କଲେ ରାଜାମାନଙ୍କର ଭୟ ଉପସ୍ଥିତ ହୁଏ, ଏବଂ ମିତ୍ରହୀନ ହୋଇ ଅମିତ୍ର ସବୁ ପ୍ରାଦୁର୍ଭୂତ ହୁଅନ୍ତି । ବିରୋଚନ ପୁତ୍ର ବଳି ସତତ ବ୍ରାହ୍ମଣମାନଙ୍କର ଅସୂୟା କରୁଥିଲେ ବୋଲି ଶ୍ରୀଦେବୀ ତାହାଙ୍କ ପ୍ରତି ପ୍ରତାପିନୀ ହୋଇ ତାହାଙ୍କୁ ପରିତ୍ୟାଗପୂର୍ବକ ପାକଶାସନ ଇନ୍ଦ୍ରଙ୍କ ନିକଟକୁ ଗମନ କରିଥିଲେ ପରେ ବଳି ଶ୍ରୀଙ୍କୁ ପୁରନ୍ଦରଙ୍କ ନିକଟକୁ ଗମନ କରିଥିବାର ଦେଖି ଅତିଶୟ ଅନୁତପ୍ତ ହେଲେ । ୨୪ ।

ହେ ବିଭୋ ମାନ୍ଧାତଃ ! ତୁମ୍ଭେ ଅସୂୟା ଓ ଅଭିମାନର ଏହି ଫଳକୁ ବିବେଚନା କର । ଶ୍ରୀ ଯେପରି ତୁମ୍ଭପ୍ରତି ପ୍ରତାପିନୀ ହୋଇ ତୁମ୍ଭଙ୍କୁ ପରିତ୍ୟାଗ ନ କରନ୍ତି ତଦ୍‌ବିଷୟରେ ସାବଧାନ ହୁଅ । ୨୫ । ଏହିପରି ଶ୍ରୁତ ହୋଇଅଛି ଯେ ଶ୍ରୀଙ୍କର ପୁତ୍ର ଦର୍ପ ଅଧର୍ମରୁ ଉତ୍ପନ୍ନ ହୋଇଥିଲେ, ତୁମ୍ଭେ ଏହା ନିଶ୍ଚୟ ଜାଣିବ ଯେ ଅନେକାନେକ ଲୋକ ଦେବାସୁର ଓ ରାଜର୍ଷିମାନେ ତଲ୍ଲୁଁକ କ୍ଷୟ ପ୍ରାପ୍ତ ହୁଅନ୍ତି । ତାହାଙ୍କୁ ଜୟ କରି ପାରିଲେ ରାଜା ହୁଅନ୍ତି ଓ ତାହାଙ୍କଠାରେ ପରାଜିତ ହେଲେ ଦାସ ହୁଅନ୍ତି । ୨୬ ।

ହେ ମାନ୍ଧାତଃ ! ଯଦି ତୁମ୍ଭେ ଚିରଜୀବୀ ହେବାକୁ ଇଚ୍ଛାକର, ତାହା ହେଲେ ରାଜା ଯେପରି ଦର୍ପ ସହିତ ଅଧର୍ମ୍ମର ସେବା ପରିତ୍ୟାଗ କରନ୍ତି, ତୁମ୍ଭେ ମଧ୍ୟ ତଦ୍ରୂପ କର । ୨୮ । ମତ୍ତ, ପ୍ରମତ୍ତ ପାଷଣ୍ଡ ଓ ଉନ୍ମତ୍ତମାନଙ୍କ ନିକଟକୁ ଯିବ ନାହିଁ । ସେମାନଙ୍କ ସହିତ ପରିଚୟ କରିବ

ନାହିଁ । ୨୯ । ନିରନ୍ତ୍ରିତ ଅମାତ୍ୟ, ସ୍ତ୍ରୀ, ବିଷଯୁ ଏବଂ ଦୁର୍ଗମ ପର୍ବତ, ହସ୍ତୀ ଅଶ୍ୱ ଓ ସରୀସୃପ ଏମାନଙ୍କଠାରୁ ନିବୃତ୍ତ ହେବ । ୩୦ । ଯଦିଓ ଏମାନଙ୍କଠାରେ ନିତ୍ୟ ଯୁକ୍ତ ଥିବାକୁ ହୁଏ, ତଥାପି ରାତ୍ରି କାଳରେ ଏମାନଙ୍କ ସହିତ ବ୍ୟବହାର ପରିତ୍ୟାଗ କରିବ ଏବଂ ବନ୍ଧ ମୁଷ୍ଟିତା, ଅଭିମାନ, ଦମ୍ଭ ଓ କ୍ରୋଧ ବର୍ଜନ କରିବ । ୩୧ ।

ହେ ନୃପ । ଅବିଜ୍ଞାତ ସ୍ତ୍ରୀ, କ୍ଲୀବ, ସ୍ୱୈରିଣୀ, ପରଭାର୍ଯ୍ୟା ଓ କନ୍ୟା ଏମାନଙ୍କ ସହିତ ମିଥୁନ ଭାବ ପରିତ୍ୟାଗ କରିବ । ୩୨ । ବର୍ଣ୍ଣସଙ୍କର ହେଲେ କୁଳରେ ପାପରାକ୍ଷସ, କ୍ଲୀବ, ଅଙ୍ଗହୀନ, ସ୍ଥୂଳଜିହ୍ୱ ଓ ଶକ୍ତିହୀନ ପୁରୁଷସବୁ ଉତ୍ପନ୍ନ ହୁଅନ୍ତି । ୩୩ । ରାଜା ପ୍ରମାଦଗ୍ରସ୍ତ ହେଲେ ଏହିମାନେ ଜନ୍ମନ୍ତି, ଅତଏବ ରାଜା ବିଶେଷ କରି ପ୍ରଜାହିତରେ ଅନୁରକ୍ତ ଥିବେ । ୩୪। ପ୍ରମତ୍ତ କ୍ଷତ୍ରିୟଙ୍କର ମହାନ ଦୋଷ ଉତ୍ପନ୍ନ ହୁଏ ଏବଂ ପ୍ରଜା ସଙ୍କର କାରକ ଅଧର୍ମସବୁ ବର୍ଦ୍ଧିତ ହୁଏ । ୩୫ । ଗ୍ରୀଷ୍ମକାଳରେ ଶୀତ ହୁଏ, ଶୀତ କାଳରେ ଶୀତ ଥାଏ ନାହିଁ । ଅତିବୃଷ୍ଟି, ଅନାବୃଷ୍ଟି ବ୍ୟାଧି ପ୍ରଜାଗଣଙ୍କୁ ଆକ୍ରମଣ କରେ । ୩୬ । ନକ୍ଷତ୍ର ଓ ଧୂମକେତୁ ପ୍ରଭୃତି ଭୟଙ୍କର ଗ୍ରହମାନେ ଉତ୍ଥିତ ହୁଅନ୍ତି ଓ ରାଜ୍ୟନାଶନ ବହୁଳ ଉତ୍ପାତ ସବୁ ଦୃଷ୍ଟ ହୁଏ ।୩୭।

ଯେଉଁ ରାଜା ନିଜକୁ ଓ ପ୍ରଜାଗଣଙ୍କୁ ରକ୍ଷା କରିବାକୁ ଅକ୍ଷମ ଅଟନ୍ତି, ତାହାଙ୍କର ପ୍ରଜାକ୍ଷୟ ହୁଏ, ପଶ୍ଚାତ ସେ ମଧ୍ୟ ବିନଷ୍ଟ ହୁଅନ୍ତି ।୩୮। ଯେତେବେଳେ ଏକବ୍ୟକ୍ତିର ଧନ ଦୁଇଜଣ ଗ୍ରହଣ କରନ୍ତି ଏବଂ କୁମାରୀମାନେ ସମ୍ୟକ୍ ପ୍ରକାରେ ଲୁପ୍ତ ହୁଅନ୍ତି, ସେତେବେଳେ ପଣ୍ଡିତମାନେ ରାଜାଙ୍କର ଦୋଷ ଧରନ୍ତି । ୩୯ । ଯେତେବେଳେ ରାଜା ପ୍ରମାଦଗ୍ରସ୍ତ ହୋଇ ଧର୍ମ ପରିତ୍ୟାଗ ପୂର୍ବକ "ଏହିଧନ ଆମ୍ଭର, ଏହା ଅନ୍ୟ କାହାର ନୁହେଁ" ଏହିପରି ଆଚରଣ କରି ଜନ ସମାଜରେ ଅବସ୍ଥାନ କରନ୍ତି, ସେତେବେଳେ ଲୋକେ ତାଦୃଶ ନରପତିଙ୍କୁ ଦୁଷ୍ଟ ବୋଲି କହନ୍ତି । ୪୦ ।



## ଅଧ୍ୟାୟ—୯୧

ଉତଥ୍ୟ କହିଲେ—ଯେତେବେଳେ ମେଘ କାଳବର୍ଷୀ ଓ ରାଜା ଧର୍ମ୍ମଗୁପ୍ତ ହେଲେ ସମ୍ପଦ ବର୍ଦ୍ଧିତ ହୁଏ, ତେତେବେଳେ ସେହି ସମ୍ପଦ ପ୍ରଜାମାନଙ୍କୁ ସୁଖରେ ଭରଣ ପୋଷଣ କରେ । ୧ । ଯେଉଁ ରଜକ ବସ୍ତ୍ର-ମାନଙ୍କର ରଙ୍ଗ ଓ ମଳ ମଧ୍ୟ ହରିବାକୁ ବାଉଳାଡ଼ ଜାଣେ ନାହିଁ, ଧର୍ମ୍ମହୀନ ରଜା ସେହି ରଜକବତ୍ । ୨ । ଏହି ପ୍ରକାରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, ଏହି ଚତୁର୍ବର୍ଣ୍ଣ ମଧ୍ୟରେ ଯେଉଁ ଶୂଦ୍ର ସ୍ୱଧର୍ମ୍ମଚ୍ୟୁତ ହୋଇ ନାନା ଧର୍ମ୍ମରେ ନିରତ ଥାଏ, ତାହାକୁ ରଜକତୁଲ୍ୟ ଜ୍ଞାନ କରିବ । ୩ । ଶୂଦ୍ରଠାରେ କର୍ମ୍ମ ବୈଶ୍ୟଠାରେ କୃଷି, କ୍ଷତ୍ରିୟଙ୍କଠାରେ ଦଣ୍ଡନୀତି ଓ ବ୍ରାହ୍ମଣଙ୍କଠାରେ ବ୍ରହ୍ମଚର୍ଯ୍ୟ, ତପସ୍ୟା, ମନ୍ତ୍ର ଓ ସତ୍ୟ ପ୍ରତିଷ୍ଠିତ ରହିଅଛି । ୪ । ତନ୍ମଧ୍ୟରେ ଯେ କ୍ଷତ୍ରିୟ, ରଜକର ବସ୍ତ୍ର ଶୋଧନ, ନ୍ୟାୟ, ଶୀଳ ଦୋଷ ନିଃଶେଷରେ ଦୂରୀକୃତ କରି ଜାଣନ୍ତି, ସେ ସମସ୍ତଙ୍କର ପିତା ଓ ପ୍ରଜାପତି ହୁଅନ୍ତି । ୫ ।

ହେ ଭରତର୍ଷଭ । ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଏହି ସମୁଦାୟ ରାଜବୃତ୍ତି, ଅତଏବ ରାଜା ଯୁଗ ରୂପରେ ଉକ୍ତ ହୁଅନ୍ତି । ୬ । ଯେତେ-ବେଳେ ରାଜା ପ୍ରମାଦଗ୍ରସ୍ତ ହୁଅନ୍ତି, ତେତେବେଳେ ଚତୁର୍ବର୍ଣ୍ଣ, ବେଦ ଚତୁଷ୍ଟୟ ଓ ଆଶ୍ରମ ଚତୁଷ୍ଟୟ ମୁଗ୍ଧ ହୁଅନ୍ତି । ୭ । ଯେତେବେଳେ ପ୍ରମତ୍ତ ହୁଅନ୍ତି, ତେତେବେଳେ ଗାର୍ହପତ୍ୟ, ଦକ୍ଷିଣାଗ୍ନି ଓ ଆହବନୀୟ ଏହି ଅଗ୍ନିତ୍ରୟ ଋକ, ଯଜୁ ଓ ସାମ ଏହି ତ୍ରୟୀ ବିଦ୍ୟା ଏବଂ ଦକ୍ଷିଣା ଯଜ୍ଞ ସବୁ ପ୍ରମାଦଗ୍ରସ୍ତ ହୁଅନ୍ତି । ୮ । ରାଜା ପ୍ରାଣିମାନଙ୍କର ହର୍ତ୍ତା ଓ କର୍ତ୍ତା ଅଟନ୍ତି । ପରନ୍ତୁ ଯେଉଁ ରାଜା ଧର୍ମ୍ମାତ୍ମା ସେ କର୍ତ୍ତା ଓ ଯେ ଅଧର୍ମାତ୍ମା ସେ ହର୍ତ୍ତା ଅଟନ୍ତି । ୯ । ଯେତେବେଳେ ରାଜା ପ୍ରମାଦଗ୍ରସ୍ତ ହୁଅନ୍ତି, ତେତେବେଳେ ତାହାଙ୍କର ଭାର୍ଯ୍ୟା, ପୁତ୍ର, ବାନ୍ଧବ ଓ ସୁହୃଦଗଣ ସମସ୍ତେ ସବୁକାଳରେ ଶୋକଗ୍ରସ୍ତ ହୁଅନ୍ତି । ୧୦ । ନରପତି ଅଧାର୍ମିକ ହେଲେ, ହସ୍ତୀ, ଅଶ୍ୱ, ଗୋ, ଉଷ୍ଟ୍ର, ଅଶ୍ୱତର ଓ ଗର୍ଦ୍ଦଭ ପ୍ରଭୃତି ସମସ୍ତ ଜନ୍ତୁ ଅବସନ୍ନ ହୋଇଯାନ୍ତି । ୧୧ ।

ହେ ମାନ୍ଧାତଃ । ବିଧାତା ଦୁର୍ବଳ ପ୍ରାଣିମାନଙ୍କର ରକ୍ଷାର୍ଥ ବଳବାନର ସୃଷ୍ଟି କରିଅଛନ୍ତି । କାରଣ ତହିଁରେ ଦୁର୍ବଳ ପ୍ରାଣିଗଣ ପ୍ରତିଷ୍ଠିତ ଥାନ୍ତି । ୧୨ । ହେ ପାର୍ଥିବ । ରାଜା ଅଧର୍ମିଷ୍ଠ ହେଲେ ରାଜ-ସେବକ ଓ ରାଜବଂଶୀୟ ପ୍ରାଣିମାନେ ସମସ୍ତେ ଶୋକ କରନ୍ତି । ୧୩ । ଦୁର୍ବଳ, ମୁନି ଓ ଆଶୀବିଷର ଚକ୍ଷୁକୁ ଆମ୍ଭେ ଅତ୍ୟନ୍ତ ଅବିସହ୍ୟ

ବିବେଚନା କରୁ, ଅତଏବ ତୁମ୍ଭେ ଦୁର୍ବଳକୁ ଅବସନ୍ନ କରିବ ନାହିଁ । ୧୪ ।

ହେ ତାତ ! ତୁମ୍ଭେ ଦୁର୍ବଳ ବ୍ୟକ୍ତିମାନଙ୍କୁ ନିୟତ ଅବମାନିତ କରିବ ନାହିଁ । ଦୁର୍ବଳର ଚକ୍ଷୁମାନ ତୁମ୍ଭଙ୍କୁ ଯେପରି ସବାନ୍ଧବରେ ଦଗ୍ଧ ନ କରେ, କାରଣ ଯେଉଁ ବ୍ୟକ୍ତି ଦୁର୍ବଳକର୍ତ୍ତୃକ ଦଗ୍ଧ ହୁଏ, ତାହାର କୁଳରେ କିଛି ସୁଦ୍ଧା ଅଙ୍କୁରିତ ହୁଏ ନାହିଁ । ସମସ୍ତେ ସମୂଳରେ ଦଗ୍ଧ ହୋଇଯାନ୍ତି, ଅତଏବ ତୁମ୍ଭେ ଦୁର୍ବଳକୁ କଦାପି ପୀଡ଼ନ କରିବ ନାହିଁ । ୧୬ । ଅତଏବ ବଳବାନ ବ୍ୟକ୍ତିଠାରେ ମଧ୍ୟ ବଳହୀନ ବ୍ୟକ୍ତି ଶ୍ରେଷ୍ଠ ହୋଇଥାଏ, କାରଣ ବଳବାନ ବ୍ୟକ୍ତି ଦୁର୍ବଳ କର୍ତ୍ତୃକ ଦଗ୍ଧ ହେଲେ ତାହାର କିଛିମାତ୍ର ଅବଶିଷ୍ଟ ଥାଏନାହିଁ । ୧୭ । ଯଦି ବିମାନିତ, ହତ କିମ୍ବା ଉତ୍କୃଷ୍ଟ ବ୍ୟକ୍ତି କୌଣସି ତ୍ରାଣ କର୍ତ୍ତାଙ୍କୁ ଲାଭ କରି ନ ପାରେ, ତାହାହେଲେ ଅମାନୁଷ କୃତଦଣ୍ଡ ନୃପତିଙ୍କୁ ନଷ୍ଟ କରେ । ୧୮ ।

ହେ ତାତ ! ତୁମ୍ଭେ ନିଜବଳରେ ଅବସ୍ଥାନ ପୂର୍ବକ ପ୍ରତିପକ୍ଷ ହୋଇ ଦୁର୍ବଳ ବ୍ୟକ୍ତିଙ୍କୁ ଭୋଗ କରିବ ନାହିଁ । ଅଗ୍ନି ନିବାସୀ ବହ୍ନି ପ୍ରାୟ ଦୁର୍ବଳର ଚକ୍ଷୁ ଯେପରି ତୁମ୍ଭଙ୍କୁ ଦଗ୍ଧ ନ କରେ । ୧୯ । ମନୁଷ୍ୟ କୌଣସି ବ୍ୟକ୍ତି କର୍ତ୍ତୃକ ମିଥ୍ୟା ଅଭିଶକ୍ତ ହୋଇ ରୋଦନ କଲେ, ତାହାର ଚକ୍ଷୁରୁ ଯେଉଁସବୁ ଅଶ୍ରୁ ପତିତ ହୁଏ, ସେହି ଅଶ୍ରୁସବୁ ଉକ୍ତ ବ୍ୟକ୍ତିର ମିଥ୍ୟାବାଦ ବଶତଃ ତାହାର ପୁତ୍ର ଓ ପଶୁବୃନ୍ଦଙ୍କୁ ବିନଷ୍ଟ କରେ । ୨୦ । ଗୋ ଯେପରି ସଦ୍ୟଫଳ ଦାୟକ ହୁଏ ନାହିଁ, ସେହିପରି ପାପ କର୍ମ୍ମ ଯଦି ସଦ୍ୟ ନିଜଠାରେ ନ ଫଳେ, ତାହାହେଲେ ପୁତ୍ରଠାରେ ଫଳେ, ପୁତ୍ରଠାରେ ନ ଫଳିଲେ ପୌତ୍ର ଓ ଦୌହିତ୍ରଙ୍କ ଠାରେ ଫଳେ । ୨୧ । ଯେଉଁସ୍ଥଳରେ ଦୁର୍ବଳ ବ୍ୟକ୍ତି ବଳବାନ କର୍ତ୍ତୃକ ବଧ୍ୟମାନ ହୋଇ କୌଣସି ପରିତ୍ରାଣ ପ୍ରାପ୍ତ ହୁଏ ନାହିଁ, ସେହି ସ୍ଥଳରେ ଦୈବକୃତ ମହାନ ଦାରୁଣ ଦଣ୍ଡ ପତିତ ହୁଏ । ୨୨ ।

ଜନପଦ ବାସିମାନେ ସମସ୍ତେ ଏକତ୍ରିତ ହୋଇ ବ୍ରାହ୍ମଣମାନଙ୍କ ପ୍ରାୟ ଭିକ୍ଷା କଲେ, ସେମାନେ ଭିକ୍ଷୁ ରୂପରେ ନିରନ୍ତର ନରପତିଙ୍କୁ ନିହତ କରନ୍ତି । ୨୩ । ଯଦି ଜନପଦ ମଧ୍ୟରେ ରାଜାଙ୍କର ସମସ୍ତ ରାଜପୁରୁଷ ରାଜ କାର୍ଯ୍ୟରେ ନିଯୁକ୍ତ ହୋଇ ନୀତିବିରୁଦ୍ଧ କାର୍ଯ୍ୟ କରିବାରେ ପ୍ରବୃତ୍ତ ହୁଅନ୍ତି, ତାହାହେଲେ ନରପତିଙ୍କର ପ୍ରଚୁର ପରିମାଣରେ ପାପ

ହୁଏ । ୨୪ । ଆଉ ଯଦି ସେମାନେ କାମ ଓ ଅର୍ଥର ବଶୀଭୂତ ହୋଇ ଅଯୁକ୍ତ ଅନୁସାରେ ଦରିଦ୍ର ବ୍ୟକ୍ତିମାନଙ୍କର ଧନ ହରଣ କରନ୍ତି, ତାହା ହେଲେ ତଦ୍ଦ୍ୱାରା ରାଜାଙ୍କର ଏକାନ୍ତ ବିନାଶ ହୁଏ । ୨୫ ।

ଯେପରି ବୃକ୍ଷ ଜନ୍ମ ହୋଇ ଅତିଶୟ ବର୍ଦ୍ଧିତ ହେଲେ, ପ୍ରାଣିଗଣ ତାହାକୁ ଆଶ୍ରୟ କରନ୍ତି । ଏବଂ ସେହି ବୃକ୍ଷ ଛିନ୍ନ ବା ଦଗ୍ଧ ହେଲେ, ସେମାନେ ଆଶ୍ରୟବିହୀନ ହୁଅନ୍ତି । ରାଜା ବର୍ଦ୍ଧିତ କିମ୍ବା ବିନଷ୍ଟ ହେଲେ, ପ୍ରଜାମାନଙ୍କର ମଧ୍ୟ ତଦ୍ରୂପ ଘଟିଥାଏ । ୨୬ । ଯଦି ରାଜପୁରୁଷମାନେ ରାଷ୍ଟ୍ର ମଧ୍ୟରେ ରାଜାଙ୍କର ଗୁଣ ଓ ମାନସ ଧର୍ମ ବ୍ୟକ୍ତ କରି ଉତ୍କୃଷ୍ଟ ଧର୍ମ ଆଚରଣ କରନ୍ତି, ତାହାହେଲେ ତତ୍କ୍ଷଣାତ୍ ସେମାନଙ୍କର ଦୁଷ୍କୃତ ନିରାକୃତ ହୁଏ । ଆଉ ଯଦି ଧର୍ମ ଭ୍ରମରେ ଅଧର୍ମ ଆଚରଣ କରନ୍ତି, ତାହା ହେଲେ ତାହାଁଙ୍କ ସୁକୃତ ଦୂରୀଭୂତ ହୋଇଯାଏ । ୨୭ । ଯଦି ରାଷ୍ଟ୍ରମଧ୍ୟରେ ପାପୀ ପୁରୁଷମାନେ ରାଜାଙ୍କର ବିଜ୍ଞାତ ହୋଇ ସାଧୁ ଲୋକମାନଙ୍କ ନିକଟରେ ବିଚରଣ କରନ୍ତି, ତାହାହେଲେ କଳି ସେହି ରାଜାଙ୍କୁ ଆଶ୍ରୟ କରନ୍ତି । ପରନ୍ତୁ ଯଦି ରାଜା ଅଶିଷ୍ଟ ମାନବ ଗଣଙ୍କୁ ଶାସନ କରନ୍ତି, ତାହାହେଲେ ତାହାଙ୍କର ରାଜ୍ୟ ବର୍ଦ୍ଧିତ ହୁଏ । ୨୮ ।

ଯେଉଁ ନୃପତି ଅମାତ୍ୟ ଗଣଙ୍କୁ ଯଥା ସମ୍ଭବ ସମ୍ମାନ କରି ଯୁଦ୍ଧ ଓ ମନ୍ତ୍ରଣା କାର୍ଯ୍ୟରେ ନିଯୁକ୍ତ କରନ୍ତି, ସେହି ନୃପତିଙ୍କର ରାଜ୍ୟ ବିଶେଷ ରୂପରେ ବର୍ଦ୍ଧିତ ହୁଏ, ଏବଂ ସେ ଚିରକାଳ ସମୁଦାୟ ପୃଥିବୀକୁ ଭୋଗ କରନ୍ତି । ୨୯ । ରାଜା ସମସ୍ତ ବ୍ୟକ୍ତିଙ୍କର ସୁଭାଷିତ ବାକ୍ୟକୁ ଶ୍ରବଣ କରି ଓ ସୁକୃତ କର୍ମ ସନ୍ଦର୍ଶନ କରି ତାହାର ସମ୍ମାନନା କଲେ ଅନୁତ୍ତମ ଧର୍ମ ଲାଭ କରନ୍ତି । ୩୦ । ଯଦି ନରପତି ଯଥା ନିୟମରେ ସଂବିଭାଗ କରି ଭୋଗ କରନ୍ତି, ଅମାତ୍ୟ ବୃନ୍ଦଙ୍କର ଅବମାନନା କରନ୍ତି ନାହିଁ ଏବଂ ବଳ-ଦର୍ପିତ ବ୍ୟକ୍ତିଙ୍କର ଦମନ କରନ୍ତି, ତାହାହେଲେ ତାହା ରାଜାଙ୍କର ଧର୍ମ ବୋଲି କୀର୍ତ୍ତିତ ହୁଏ । ୩୧ । ଯେତେବେଳେ ନୃପତି କାୟ, ବାକ୍ୟ ଓ କର୍ମ ଦ୍ୱାରା ସମସ୍ତଙ୍କୁ ପରିତ୍ରାଣ କରନ୍ତି, ପୁତ୍ରଙ୍କ ପ୍ରତି କ୍ଷମା କରନ୍ତି ନାହିଁ, ସେତେବେଳେ ତାହାଙ୍କର ତାହା ଧର୍ମରୂପରେ କୀର୍ତ୍ତିତ ହୁଏ ।୩୨। ମହୀପତି ଦୁର୍ବଳ ପ୍ରାଣିଗଣଙ୍କୁ ଭୋଜନ କରାଇ ସ୍ୱୟଂ ଭୋଜନ କଲେ ତଦ୍ଦ୍ୱାରା ସେମାନଙ୍କର ବଳାଧାନ ହେବାରୁ, ରାଜାଙ୍କର ପରମ ଧର୍ମ ହୁଏ । ୩୩ । ଯେତେବେଳେ ରାଜା ରାଜ୍ୟରକ୍ଷା, ଦସ୍ୟୁଦଳନ ଓ ସଂଗ୍ରାମରେ ଜୟଲାଭ

କରନ୍ତି, ସେତେବେଳେ ତାହାଙ୍କର ସେହି ଧର୍ମ ଜନସମାଜରେ କୀର୍ତ୍ତିତ ହୁଏ । ୩୪ । ପ୍ରିୟଜନ ସୁଦ୍ଧା ବାକ୍ୟ କିମ୍ବା କର୍ମଦ୍ୱାରା ପାପାଚରଣ କଲେ, ନୃପତି ତାହାଙ୍କ ପ୍ରତି ଯଦି କ୍ଷମା ନ କରନ୍ତି, ତାହାହେଲେ ରାଜାଙ୍କର ତାହା ଧର୍ମ ବୋଲି କୀର୍ତ୍ତିତ ହୁଏ । ୩୫ । ଯେତେବେଳେ ଶରଣାଗତ ରାଜାମାନବର୍ଗଙ୍କର ମର୍ଯ୍ୟାଦା ଭେଦ ନ କରି ସେମାନଙ୍କୁ ପୂର୍ବବତ୍ ପ୍ରତିପାଳନ କରନ୍ତି, ସେତେବେଳେ ନୃପତିଙ୍କର ତାହା ପରମ ଧର୍ମ ରୂପରେ କୀର୍ତ୍ତିତ ହୁଏ । ୩୬ ।

ଯଦି ନୃପତି କାମ ଓ ଦ୍ୱେଷକୁ ଅନାଦର କରି ଶ୍ରଦ୍ଧା ସହକାରେ ସଦକ୍ଷିଣ ଯଜ୍ଞଦ୍ୱାରା ଯାଗ କରନ୍ତି, ତାହାହେଲେ ତାହାଙ୍କର ପରମ ଧର୍ମ ହୁଏ ।୩୭। ଯଦି ମହୀପତି କୃପଣ, ଅନାଥ ଓ ବୃଦ୍ଧ ମାନବଗଣଙ୍କର କ୍ଳେଶ ନିମିତ୍ତ ଅଶ୍ରୁଜଳ ମାର୍ଜନ ପୂର୍ବକ ହର୍ଷ ଉତ୍ପାଦନ କରନ୍ତି, ତାହାହେଲେ ତନ୍ନିମିତ୍ତ ତାହାଙ୍କର ଅତିଶୟ ଧର୍ମ ହୁଏ ।୩୮। ଯେଉଁ ରାଜା ମିତ୍ରଗଣଙ୍କୁ ଉନ୍ନତ, ଶତ୍ରୁଗଣଙ୍କୁ ଅବନତ ଓ ସାଧୁଗଣଙ୍କୁ ସମ୍ମାନିତ କରନ୍ତି, ସେ ଧାର୍ମିକ ବୋଲି ଉକ୍ତ ହୁଅନ୍ତି ।୩୯। ଯେଉଁ ନୃପତି ସତ୍ୟ ପାଳନ, ପ୍ରୀତି ସହକାରେ ନିତ୍ୟ ଭୂମିଦାନ, ଅତିଥି ସତ୍କାର ଓ ଭୃତ୍ୟ ବର୍ଗଙ୍କର ଭରଣ ପୋଷଣ କରନ୍ତି, ଲୋକେ ତାଦୃଶ ନରପତିଙ୍କୁ ଧାର୍ମିକ ବୋଲି କହନ୍ତି ।୪୦। ଯାହାଙ୍କଠାରେ ନିଗ୍ରହ ଓ ଅନୁଗ୍ରହ ଉଭୟ ପ୍ରତିଷ୍ଠିତ ଅଛି, ସେହି ନରପତି ଇହଲୋକ ଓ ପରଲୋକରେ ଉତ୍କୃଷ୍ଟ ଫଳଲାଭ କରନ୍ତି । ୪୧ । ହେ ମାନ୍ଧାତଃ ! ଧାର୍ମିକ ମାନଙ୍କର ଇନ୍ଦ୍ରିୟ ସଂଯମ ଅତ୍ୟୁତ୍କୃଷ୍ଟ କାର୍ଯ୍ୟ, କାରଣ ସେମାନେ ପ୍ରାଣ ଓ ଇନ୍ଦ୍ରିୟ ସଂଯମ କଲେ ଈଶ୍ୱରତ୍ୱ ଲଭିବାରେ ସମର୍ଥ ହୁଅନ୍ତି, ପରନ୍ତୁ ଇନ୍ଦ୍ରିୟ ସଂଯମ କରି ନପାରିଲେ ପାପକ ସଦୃଶ ହୋଇଥାନ୍ତି ।୪୨। ଯେଉଁ ରାଜା ଋତ୍ୱିକ୍, ପୁରୋହିତ ଓ ଆଚାର୍ଯ୍ୟ ଏମାନଙ୍କୁ ସମ୍ୟକ ପ୍ରକାରେ ସତ୍କାର ଓ ସମାଦର କରନ୍ତି, ସେହି ସେ ଧାର୍ମିକ ବୋଲି ଉକ୍ତ ହୁଅନ୍ତି । ୪୩ । ଯେପରି ଯମ ଅର୍ଥାତ୍ ବିରତି ସମସ୍ତ ପ୍ରାଣିଗଣଙ୍କୁ ନିର୍ବିଶେଷରେ ସଂଯତ କରେ, ସେହିପରି ରାଜା ପ୍ରଜାଗଣଙ୍କୁ ଯଥାବିଧି ସଂଯତ କରି ରଖିବେ । ୪୪ ।

ହେ ପୁରୁଷପ୍ରବର ! ଯେତେବେଳେ ଲୋକେ ସହସ୍ରଲୋଚନ ଇନ୍ଦ୍ରଙ୍କ ସହିତ ରାଜାର ତୁଳନା କରନ୍ତି, ସେତେବେଳେ ରାଜା ଯାହାଙ୍କୁ ଧର୍ମ ରୂପରେ ଦର୍ଶନ କରିବେ, ତାହାହିଁ ଧର୍ମ ବୋଲି ପରିଗଣିତ

ହେବ । ୪୫ । ହେ ରାଜନ୍ ! ତୁମ୍ଭେ ସତତ ପ୍ରମାଦଶୂନ୍ୟ ହୋଇ କ୍ଷମା, ବୁଦ୍ଧି, ଧୃତି, ପ୍ରାଣିଗଣଙ୍କର ସତ୍ତ୍ୱ ଜିଜ୍ଞାସା, ସାଧୁ ଓ ଅସାଧୁ ଏହିସବୁ ଶିକ୍ଷା କରିବ । ୪୬ । ସୈନ୍ୟ ସଂଗ୍ରହ କରିବ ଓ ସମସ୍ତଙ୍କୁ ଦାନ କରିବ ଓ ସମସ୍ତଙ୍କୁ ମଧୁର କଥା କହିବ ଏବଂ ପୌର ଓ ଜନପଦ ବାସିମାନଙ୍କୁ ଯଥାସୁଖରେ ପାଳନ କରିବ । ୪୭ ।

ହେ ତାତ ! ଅପଟୁ ନୃପତି କଦାଚ ପ୍ରଜାପାଳନରେ ସମର୍ଥ ହୁଅନ୍ତି ନାହିଁ, କାରଣ ରାଜ୍ୟରୂପ ମହାଭାର ବହନ କରିବା ଅତି ଦୁଷ୍କର । ୪୮ । ଯେଉଁ ନୃପତି ଦଣ୍ଡବିତ୍, ପ୍ରାଜ୍ଞ ଓ ଶୂର, ସେ ରାଜ୍ୟରକ୍ଷା କରିବାକୁ ସକ୍ଷମ ହୁଅନ୍ତି । ପରନ୍ତୁ ଦଣ୍ଡଜ୍ଞାନ ଶୂନ୍ୟ, କ୍ଲୀବ, ବୁଦ୍ଧିହୀନ ନରପତି ତାହା କଦାପି ରକ୍ଷା କରିବାକୁ ସମର୍ଥ ହୁଅନ୍ତି ନାହିଁ । ୪୯ । ତୁମ୍ଭେ ସତ୍‌କୁଳ ଜାତ, ଭକ୍ତ, ବହୁଶ୍ରୁତ, ଦକ୍ଷ ଓ ଅଭିରୂପ ଅମାତ୍ୟ ଗଣଙ୍କ ସହିତ ତାପସାଶ୍ରମିମାନଙ୍କର ସର୍ବପ୍ରକାର ବୁଦ୍ଧି ପରୀକ୍ଷା କରିବ । ୫୦ । ଯଦି ତୁମ୍ଭେ ଏହିପରି ସର୍ବପ୍ରାଣିଙ୍କର ପରମଧର୍ମକୁ ଅବଗତ ହୋଇପାର, ତାହାହେଲେ ସ୍ୱଦେଶରେ କିମ୍ବା ବିଦେଶରେ କୁତ୍ରାପି ତୁମ୍ଭର ଧର୍ମ ବିନଷ୍ଟ ହେବନାହିଁ । ୫୧ ।

ହେ ରାଜନ୍ ! ଏହି କାରଣରୁ ଅର୍ଥ ଓ କାମ ଅପେକ୍ଷା ଧର୍ମ ଉତ୍କୃଷ୍ଟ ଅଟେ ଏବଂ ଧର୍ମାତ୍ମା ମାନବ ଇହଲୋକରେ ଓ ପରଲୋକରେ ସୁଖଭୋଗ କରନ୍ତି । ୫୨ । ଯେଉଁ ମନୁଷ୍ୟମାନେ ଦାର ଓ ପୁତ୍ର ପରିତ୍ୟାଗ କରିପାରନ୍ତି, ସେମାନେ ସମସ୍ତଙ୍କଠାରେ ପୂଜିତ ହୁଅନ୍ତି । ହେ ମାନ୍ଧାତଃ ! ସୈନ୍ୟ ସଂଗ୍ରହ, ଦାନ, ମଧୁର ବାକ୍ୟ, ଅପ୍ରମାଦ ଓ ଶୌଚ ଏହି ସବୁ ରାଜାଙ୍କର ଅତିଶୟ ଐଶ୍ୱର୍ଯ୍ୟକର ଅଟେ । ଅତଏବ ଏହି ସବୁ ବିଷୟରେ ସର୍ବଦା ଅପ୍ରମତ୍ତ ହେବ । ୫୪ । ରାଜା ଅପ୍ରମତ୍ତ ହୋଇ ନିଜର ଓ ପରର ଛିଦ୍ର ଅନୁସନ୍ଧାନ କରିବେ; କିନ୍ତୁ ଅନ୍ୟଲୋକେ ରାଜାଙ୍କର ଛିଦ୍ର ଦର୍ଶନ କରି ପାରିବେ ନାହିଁ, କାରଣ ଆତ୍ମଛିଦ୍ର ସଂଗୋପନ ପୂର୍ବକ ପରଛିଦ୍ର ଦର୍ଶନ କରିବା ରାଜାମାନଙ୍କର କର୍ତ୍ତବ୍ୟ । ୫୫ ।

ହେ ମହାରାଜ ! ଇନ୍ଦ୍ର, ଯମ, ବରୁଣ ଓ ରାଜର୍ଷିଗଣଙ୍କର ବୃତ୍ତି ଏହିପରି, ତୁମ୍ଭେ ମଧ୍ୟ ସଯତ୍ନ ହୋଇ ଏହା ପାଳନ କର । ହେ ଭରତର୍ଷଭ ! ରାଜର୍ଷିଗଣ ଯେଉଁ ଧର୍ମ ସେବା କରନ୍ତି, ତୁମ୍ଭେ ମଧ୍ୟ ତାହା

ସେବାକର । ଏବଂ ସତ୍ତ୍ୱର ଦିବ୍ୟପଥ ଅବଲମ୍ବନ କର । ୫୭ । ହେ ଭାରତ । ମହା ତେଜସ୍ୱୀ ଦେବର୍ଷି ପିତୃଗଣ ଓ ଗନ୍ଧର୍ବଗଣ ମଧ୍ୟ ଇହଲୋକ ଓ ପରଲୋକରେ ଧର୍ମବୃତ୍ତ ରାଜାଙ୍କର ଯଶ କୀର୍ତ୍ତନ କରନ୍ତି । ୫୮ ।

ଭୀଷ୍ମ କହିଲେ—ହେ ଭରତବଂଶ ପ୍ରବୀର ଯୁଧିଷ୍ଠିର । ମାନ୍ଧାତା ଉତଥ୍ୟଙ୍କ କର୍ତ୍ତୃକ ଏହିପରି ଉକ୍ତ ହୋଇ ଅଶଙ୍କିତ ଚିତ୍ତରେ ସେହିପରି ଧର୍ମାଚରଣ କରିଥିଲେ ବୋଲି ଏକାକୀ ପୃଥିବୀ ଲାଭ କରିଥିଲେ । ତୁମ୍ଭେ ମଧ୍ୟ ମାନ୍ଧାତାଙ୍କ ପ୍ରାୟ ସେହିପରି ଧର୍ମାଚରଣ କଲେ ଇହଲୋକରେ ପୃଥିବୀ ପାଳନ କରି ଅବସାନରେ ସ୍ୱର୍ଗଲୋକରେ ସ୍ଥାନ ଲାଭ କରିବ ।୬୦।

## ଅଧ୍ୟାୟ—୯୨

ଯୁଧିଷ୍ଠିର କହିଲେ—ହେ ପିତାମହ । ରାଜା ଧର୍ମମାର୍ଗରେ ଅବସ୍ଥାନ କରିବାର ଅଭିଳାଷୀ ହେଲେ, କି ପ୍ରକାର ଧାର୍ମିକ ହେବେ, ତାହା ଆମ୍ଭେ ଆପଣଙ୍କଠାରୁ ଜାଣିବାକୁ ଇଚ୍ଛା କରୁଅଛୁଁ, ଆପଣ ବିସ୍ତାର କରି କହନ୍ତୁ । ୧ ।

ଭୀଷ୍ମ କହିଲେ—ତତ୍ତ୍ୱାର୍ଥଦର୍ଶୀ ମତିମାନ୍ ବାମଦେବ ବସୁଧାଧିପତି ବସୁମନାଙ୍କୁ ଯାହା କହିଥିଲେ, ସେହି ପୁରାତନ ଇତିହାସକୁ ପଣ୍ଡିତମାନେ ଏପରି ସ୍ଥଳରେ ଉଦାହରଣ ଦେଇଥାନ୍ତି, ଆମ୍ଭେ ମଧ୍ୟ ତାହା କହୁଅଛୁଁ, ଶ୍ରବଣ କର । ୨ । ଜ୍ଞାନବାନ୍, ଧୃତିବାନ୍, ପବିତ୍ରମନା ବସୁଧାଧିପତି ବସୁମନା ମହାତପସ୍ୱୀ ମହର୍ଷି ବାମଦେବଙ୍କୁ ଧର୍ମ ଓ ଅର୍ଥଯୁକ୍ତ ବାକ୍ୟଦ୍ୱାରା ଜିଜ୍ଞାସା କଲେ—ହେ ଭଗବନ୍ । ଯେପରି ଆଚରଣ କଲେ, ଧର୍ମଚ୍ୟୁତ ନ ହୋଇ, ସ୍ୱଧର୍ମରେ ରହିବାକୁ ହୁଏ, ଆପଣ ଆମ୍ଭଙ୍କୁ ସେହି ଉପଦେଶ ପ୍ରଦାନ କରନ୍ତୁ । ୪ । ପରମ ତପସ୍ୱୀ ତେଜସ୍ୱୀ ବାମଦେବ, ନହୁଷପୁତ୍ର ଯଯାତିଙ୍କ ପ୍ରାୟ, ସୁଖାସୀନ ହେମବର୍ଣ୍ଣ ବସୁମନାଙ୍କୁ କହିଲେ । ୫ ।

ବାମଦେବ କହିଲେ—ହେ ମହାରାଜ । ଆପଣ କେବଳ ଧର୍ମର ଅନୁବର୍ତ୍ତୀ ହୁଅନ୍ତୁ । ଧର୍ମଠାରୁ ଉତ୍କୃଷ୍ଟ ଆଉ କିଛି ନାହିଁ । ନୃପତିମାନେ କେବଳ ଧର୍ମରେ ରହି ଏହି ପୃଥିବୀକୁ ଜୟ କରନ୍ତି । ୬ । ଯେଉଁ ମହୀପତି ଅର୍ଥସିଦ୍ଧି ଅପେକ୍ଷା ଧର୍ମକୁ ଉତ୍କୃଷ୍ଟ ବୋଲି ବିବେଚନା କରି

ନିଜ ବୁଦ୍ଧିକୁ ଧର୍ମ ବର୍ଦ୍ଧନରେ ପ୍ରବର୍ତ୍ତିତ କରନ୍ତି, ସେ ଧର୍ମଦ୍ୱାରା ବର୍ଦ୍ଧିତ ହୋଇଥାନ୍ତି । ୭ । ଯେଉଁ ରାଜା ଅଧର୍ମଦର୍ଶୀ ହୋଇ ବଳପୂର୍ବକ ଅଧର୍ମାଚରଣରେ ପ୍ରବୃତ୍ତ ହୁଅନ୍ତି, ସେ ଶୀଘ୍ର ଧର୍ମରୁ ଅପଗତ ହୁଅନ୍ତି ଏବଂ ଧର୍ମ ଓ ଅର୍ଥ ଉଭୟ ତାଙ୍କଠାରୁ ଅପଚିତ ହୋଇଥାଏ । ୮ । ଯାହାଙ୍କର ସଚିବ ସବୁ ଦୁଷ୍ଟ ଓ ପାପିଷ୍ଠ ଏବଂ ଯେ ସ୍ୱୟଂ ଧର୍ମହୀନ କରନ୍ତି, ସେ ସତ୍ୱର ସପରିବାରରେ ଅବସନ୍ନ ହୁଅନ୍ତି । ୯ । ଯେଉଁ ରାଜା ଅର୍ଥାନୁଷ୍ଠାନ ଶୂନ୍ୟ, କାମଗୃଧ୍ର ଓ ଆତ୍ମଶ୍ଳାଘୀ ଅଟନ୍ତି, ସେ ସମୁଦାୟ ପୃଥିବୀକି ଲାଭକରି ସୁଦ୍ଧା ସତ୍ୱର ବିନଷ୍ଟ ହୁଅନ୍ତି । ୧୦ ।

ଅପିଚ ଯେଉଁ ରାଜା କଲ୍ୟାଣଗ୍ରାହୀ, ଅସୂୟା ବିହୀନ, ଜିତେନ୍ଦ୍ରିୟ ଓ ମତିମାନ୍ ଅଟନ୍ତି, ସେ ସ୍ରୋତଦ୍ୱାରା ପ୍ରବୃଦ୍ଧ ସାଗର ଦ୍ୱାରା ବର୍ଦ୍ଧିତ ହୁଅନ୍ତି । ୧୧ । ଯେଉଁ ବସୁଧାଧିପତି ଏହିପରି ଜ୍ଞାନ କରନ୍ତି ଯେ, ଅମ୍ଭେ ଧର୍ମ, ଅର୍ଥ, କାମ, ବୁଦ୍ଧି ଓ ମିତ୍ର କୌଣସିରେ ସୁଦ୍ଧା ପରିପୂର୍ଣ୍ଣ ନୋହୁଁ । ଏହି ସବୁରେ ଲୋକଯାତ୍ରା ପ୍ରତିଷ୍ଠିତ ଅଛି, ସେ ଏହି ସମସ୍ତ ଶ୍ରବଣ କରି ଯଶ, କୀର୍ତ୍ତି, ଶ୍ରୀ ଓ ପ୍ରଜାଲାଭ କରିପାରନ୍ତି । ୧୩ । ଯେଉଁ ରାଜା ଧର୍ମାର୍ଥ ପରିଚିନ୍ତକ ଓ ଧର୍ମ ତତ୍ପର ହୋଇ ଏହି ପ୍ରକାରେ ଅର୍ଥ ଚିନ୍ତା କରିବାକୁ ଆରମ୍ଭ କରନ୍ତି, ସେ ନିଶ୍ଚୟ ବିପୁଳ ଅର୍ଥ ଭୋଗ କରନ୍ତି । ୧୪ । ଯେଉଁ ନୃପତି କୃପଣ, ସ୍ନେହହୀନ ଓ ସାହସ ରହିତ ହୋଇ ପ୍ରଜାଗଣଙ୍କ ପ୍ରତି ପ୍ରକୃତ ଦଣ୍ଡବିଧାନ କରନ୍ତି ନାହିଁ, ସେ ଅଚିରକାଳରେ ବିନଷ୍ଟ ହୁଅନ୍ତି । ୧୫ । ଯେଉଁ ବୁଦ୍ଧିହୀନ ନରପତି ଜ୍ଞାନପୂର୍ବକ ପାପକାରୀ ପୁରୁଷକୁ ଉପେକ୍ଷା କରି ତାହା ପ୍ରତି ଦୃଷ୍ଟି ରଖନ୍ତି ନାହିଁ, ସେ ଅକୀର୍ତ୍ତିନିଚୟରେ ସଂଯୁକ୍ତ ହୋଇ ବାରମ୍ବାର ନରକ ଭୋଗ କରନ୍ତି । ୧୬ । ଯେଉଁ ରାଜା ଦାତା, ଶ୍ଳକ୍ଷ୍ଣ, ବଶବର୍ତ୍ତୀ ଓ ସମସ୍ତଙ୍କର ସମ୍ମାନକାରୀ ଅଟନ୍ତି, ତାହାଙ୍କର ବିପଦ୍ ଉପସ୍ଥିତ ହେଲେ ମାନବଗଣ, ଅଳ୍ପ ବିପତ୍ତି ପ୍ରାୟ, ସେହି ବିପଦକୁ ବିନାଶ କରିବାର ଇଚ୍ଛା କରନ୍ତି । ୧୭ । ଯାହାଙ୍କର ଧର୍ମୋପଦେଶକ ଗୁରୁ ନାହାନ୍ତି ଏବଂ ଯେ ଅର୍ଥ ଲାଭରେ ସୁଖପରନ୍ତ ହୋଇ ଅନ୍ୟ କାହାରିକି ଧର୍ମ ବିଷୟ ପ୍ରଶ୍ନ ନ କରନ୍ତି, ସେ ଚିରକାଳ ସୁଖଭୋଗ କରିପାରନ୍ତି ନାହିଁ । ୧୮ । ଏବଂ ଯାହାଙ୍କର ଧର୍ମୋପଦେଶକ ପ୍ରଧାନ ଗୁରୁ ଅଛନ୍ତି, ଯେ ସ୍ୱୟଂ ଅର୍ଥର ଅଲୋଚନା କରନ୍ତି, ଯେ ସ୍ୱୟଂ ଅର୍ଥର ଆଲୋଚନା କରନ୍ତି ଏବଂ ଅର୍ଥ ଲାଭରେ ଧର୍ମ ପରତନ୍ତ୍ର ହୁଅନ୍ତି, ସେହି ସେ ଚିର ସୁଖକୁ ଭୋଗ କରନ୍ତି । ୧୯ ।

## ଅଧ୍ୟାୟ—୯୩

ବାମଦେବ କହିଲେ— ଯେଉଁ ରାଷ୍ଟ୍ରରେ ବଳବାନ୍ ନୃପତି ଦୁର୍ବଳ ବ୍ୟକ୍ତିପ୍ରତି ଅଧର୍ମ ଆରୋପ କରନ୍ତି, ତଦ୍ବଂଶୀୟ ଯେଉଁସବୁ ଲୋକେ ସେହି ବୃତ୍ତିକି ଉପଜୀବ୍ୟ କରନ୍ତି, ଏବଂ ଅନ୍ୟ ଯେଉଁସବୁ ମନୁଷ୍ୟମାନେ ସେହି ପାପପ୍ରବର୍ତ୍ତିକ ନରପତିଙ୍କର ଅନୁବର୍ତ୍ତୀ ହୁଅନ୍ତି, ସେହି ଅବନୀତ ମନୁଷ୍ୟ ସମନ୍ୱିତ ରାଷ୍ଟ୍ର ଶୀଘ୍ର ବିନଷ୍ଟ ହୋଇଯାଏ । ୨ । ରାଜା ପ୍ରକୃତିସ୍ଥ ଅର୍ଥାତ୍ ସ୍ୱଧର୍ମାବଲମ୍ବୀ ହେଲେ ସେ ଯେପରି ବ୍ୟବହାର କରନ୍ତି, ସାଧାରଣ ଲୋକେ ସେହି ବ୍ୟବହାରର ଅନୁଗାମୀ ହୁଅନ୍ତି । ପରନ୍ତୁ ନୃପତି ବିଷମସ୍ଥ, ଅର୍ଥାତ୍ ବିଧର୍ମାବଲମ୍ବୀ ହୋଇ ଯେପରି ବ୍ୟବହାର କରିବେ, ସ୍ୱଜନ ବ୍ୟକ୍ତିମାନେ ସେହି ବ୍ୟବହାରକୁ ସହନ କରନ୍ତି ନାହିଁ । ୩ ।

ଯେଉଁ ରାଜ୍ୟରେ ସାହାସ ପ୍ରକୃତି ନରପତି ଶାସ୍ତ୍ର ଲକ୍ଷଣର ବିପରୀତ କାର୍ଯ୍ୟ କରନ୍ତି, ସେହି ରାଷ୍ଟ୍ରରେ ସେ ତତ୍କ୍ଷଣାତ୍ ବିନଷ୍ଟପ୍ରାପ୍ତ ହୁଅନ୍ତି । ୪ । ଯେ କ୍ଷତ୍ରିୟଜାତି, ଅର୍ଥାତ୍ ଆଚାର୍ଯ୍ୟ ଓ ଅଜାତ୍ ଅର୍ଥାତ୍ ସୁସ୍ଥବ୍ୟକ୍ତି ମାନଙ୍କର ଅତ୍ୟନ୍ତାଚରିତ ବୃତ୍ତିର ଅନୁବର୍ତ୍ତୀ ହୁଅନ୍ତି ନାହିଁ, ସେ କ୍ଷତ୍ରିୟ ଧର୍ମରୁ ବହିଷ୍କୃତ ହୁଅନ୍ତି । ଯେଉଁ କ୍ଷତ୍ରିୟ କୃତାପକାରଦ୍ୱେଷୀ ନରପତିଙ୍କ ସମରାଙ୍ଗନରେ ପ୍ରାପ୍ତ ହୋଇ ଦ୍ୱେଷ ବଶତଃ ତାହାଙ୍କର ସମ୍ମାନ ନ କରନ୍ତି, ସେ କ୍ଷତ୍ରିୟ ଧର୍ମରୁ ବହିଷ୍କୃତ ହୁଅନ୍ତି ।୬। ଯେଉଁ ରାଜା ଆପଦ୍ କାଳରେ ସୁଖଭୋଗ ସମର୍ଥ ହୋଇ ସୁଖ ଦୁଃଖ ଭୋଗପୂର୍ବକ ପ୍ରଜାମାନଙ୍କର ଆପଦ୍ ନିବାରଣ କରନ୍ତି, ସେ ପ୍ରଜାବୃନ୍ଦଙ୍କର ପ୍ରିୟ ହୁଅନ୍ତି । ରାଜଲକ୍ଷ୍ମୀ ତାଦୃଶ ରାଜାଙ୍କୁ କଦାପି ପରିତ୍ୟାଗ କରନ୍ତି ନାହିଁ । ୭ ।

ହେ ରାଜନ୍ ! ଯାହାଙ୍କର ଅନିଷ୍ଟ କରିବ, ପୁନର୍ବାର ତାହାଙ୍କର ଇଷ୍ଟ କରିବ, କାରଣ ଅନିଷ୍ଟକାରୀ ପୁରୁଷ ପୁନର୍ବାର ଇଷ୍ଟାଚରଣ କଲେ, ଅଚିର କାଳ ମଧ୍ୟରେ ପ୍ରିୟ ହୋଇଥାଏ । ୮ । ମିଥ୍ୟା ବାକ୍ୟକୁ ପରିହାର କରିବ, ଅଯାଚିତ ହୋଇ ଲୋକଙ୍କର ପ୍ରିୟ ହେବ । କାମ କ୍ରୋଧ ଓ ଦ୍ୱେଷବଶତଃ କଦାପି ଧର୍ମ ପରିତ୍ୟାଗ କରିବ ନାହିଁ । ୯ । କେହି ପ୍ରଶ୍ନ କଲେ ତାହାକୁ ନିଷ୍ଠୁର ଉତ୍ତର ପ୍ରଦାନ କରିବ ନାହିଁ । ଅଗମ୍ଭୀର ବାକ୍ୟ ପ୍ରୟୋଗ କରିବ ନାହିଁ । କୌଣସି କାର୍ଯ୍ୟରେ ତ୍ୱରା କରିବ ନାହିଁ । ତାହାର ଅସୂୟା କରିବ ନାହିଁ । ଏବଂ ଶତ୍ରୁଙ୍କୁ ସଂଗ୍ରହ କରିବ ନାହିଁ ।୧୦।

ପ୍ରିୟ ହେଲେ ଯାହାଙ୍କରେ ଅତିଶୟ ହୃଷ୍ଟ ହେବ ନାହିଁ, ଅପ୍ରିୟ ହେଲେ ମଧ୍ୟ ତାହାଙ୍କରେ ଦୁଃଖିତ ହେବ ନାହିଁ ଏବଂ ପ୍ରଜାହିତ ଅନୁସରଣ ପୂର୍ବକ ଅତିଶୟ ଅର୍ଥରେ ତୃପ୍ତ ହେବ ନାହିଁ । ୧୧ । ଯେଉଁ ବସୁଧାପତି ଅର୍ଥ ଅନୁସାରେ ଭୃତ୍ୟବର୍ଗଙ୍କର ନିୟତ ପ୍ରିୟ କାର୍ଯ୍ୟ କରନ୍ତି, ତାହାଙ୍କର ସମସ୍ତ କାର୍ଯ୍ୟ ସିଦ୍ଧ ହୁଏ, ଏବଂ ରାଜଶ୍ରୀ ତାହାଙ୍କୁ କଦାପି ପରିତ୍ୟାଗ କରନ୍ତି ନାହିଁ ।୧୨। ନୃପତି ସର୍ବଦା ସମାହିତ ହୋଇ ପ୍ରତିକୂଳନିବୃତ୍ତ ଓ ଅନୁକୂଳ ନିରତ ଭକ୍ତଙ୍କୁ ଭଜନା କରିବେ । ୧୩ । ଯେଉଁ ଭୃତ୍ୟ ଦୃଢ଼ ଇନ୍ଦ୍ରିୟ ଗ୍ରାମ ସମ୍ପନ୍ନ ଅତ୍ୟନ୍ତ ଅନୁଗତ ପବିତ୍ର ଶକ୍ତ, ଅନୁରକ୍ତ ଓ ସର୍ବ କାର୍ଯ୍ୟରେ ସମର୍ଥ ଅଟନ୍ତି, ତାହାଙ୍କୁ ମହୀପତି ମହତ୍ କାର୍ଯ୍ୟରେ ନିଯୁକ୍ତ କରିବେ । ୧୪ । ଯେଉଁ ଭୃତ୍ୟ ଏତାଦୃଶ ଗୁଣଯୁକ୍ତ ପ୍ରଭୁଙ୍କର କାମାର୍ଥ ଅପ୍ରମତ୍ତ ହୋଇ ପ୍ରଭୁଙ୍କୁ ଅନୁରକ୍ତ କରି ପାରନ୍ତି, ତାଦୃଶ ଭୃତ୍ୟଙ୍କୁ ମହୀପତି ଅର୍ଥକାର୍ଯ୍ୟରେ ନିଯୁକ୍ତ କରିବେ । ୧୫ ।

ଯେଉଁ ନୃପତି ମୂଢ଼ ଇନ୍ଦ୍ରିୟ ପରାୟଣ, ଲୁବ୍ଧ, ଅନାର୍ଯ୍ୟ ଚରିତ କର୍ମକାରୀ, ଶଠ ସକପଟ, ହିଂସ୍ର, ଦୁର୍ବୁଦ୍ଧି, ଅବହୁଶ୍ରୁତ ଉଦାର କର୍ମତ୍ୟାଗୀ, ମଦ୍ୟରତ ଓ ଦ୍ୟୂତ, ସ୍ତ୍ରୀ ଓ ମୃଗୟା ପରତନ୍ତ୍ର ଭୃତ୍ୟଙ୍କୁ ମହତ କାର୍ଯ୍ୟରେ ନିଯୁକ୍ତ କରନ୍ତି, ସେହି ନୃପତି ଶ୍ରୀଭ୍ରଷ୍ଟ ହୁଅନ୍ତି । ୧୭ । ଯେଉଁ ରାଜା ଆପଣାଙ୍କୁ ରକ୍ଷା କରି ପ୍ରତିପାଲ୍ୟ ଭୃତ୍ୟଗଣଙ୍କୁ ରକ୍ଷା କରନ୍ତି, ତାହାଙ୍କର ପ୍ରଜାସବୁ ବର୍ଦ୍ଧିତ ହୁଅନ୍ତି ଏବଂ ସେ ନିଶ୍ଚୟ ବିପୁଳ ଅର୍ଥ ଭୋଗ କରନ୍ତି । ୧୮ । ଯେଉଁ ନୃପତି ଗୁପ୍ତଚର ଦ୍ୱାରା ଅଧୀନସ୍ଥ ଭୂମିପତିମାନଙ୍କର କାର୍ଯ୍ୟ ପର୍ଯ୍ୟବେକ୍ଷଣ କରନ୍ତି, ସେ ସର୍ବାପେକ୍ଷା ପ୍ରଧାନ ହୁଅନ୍ତି । ୧୯ । ରାଜା ବଳବାନ ବ୍ୟକ୍ତିର ଅପକାର କରି ଆମ୍ଭେ ଦୂରରେ ଅଛୁଁ ବୋଲି, ଏହିପରି ଆଶ୍ୱାସ ପୂର୍ବକ ଉପେକ୍ଷା କରି ରହିବେ ନାହିଁ । କାରଣ, ଛିନ୍ନ ଶ୍ୟେନାଭିପତନ ପ୍ରାୟ, ପ୍ରମାଦଯୁକ୍ତ ଅପକାରୀ ନୃପତିଙ୍କ-ଠାରେ ନିପତିତ ହୁଅନ୍ତି । ୨୦ । ଦୃଢ଼ମୂଳ ଅଦୁଷ୍ଟାତ୍ମା ନରପତି ନିଜର ବଳକୁ ବିଦିତ ହୋଇ ଦୁର୍ବଳ ବ୍ୟକ୍ତି ପ୍ରତି ଅଭିଯୋଗ କରନ୍ତି, ପରନ୍ତୁ ଯେଉଁମାନେ ବଳବାନ୍ ସେମାନଙ୍କ ପ୍ରତି ଅଭିଯୋଗ କରିବେ ନାହିଁ ।୨୧। ଧର୍ମ ପରାୟଣ ମହୀପାଳ ବିକ୍ରମ ଦ୍ୱାରା ପୃଥିବୀକୁ ଲାଭ କରି ଧର୍ମତଃ ପ୍ରଜାପାଳନ ଓ ସଂଗ୍ରାମରେ ନିଧନ କରିବେ । ୨୨ । ଇହଲୋକରେ ପ୍ରଜାପାଳନାଦି କାର୍ଯ୍ୟ ସବୁ ମରଣାନ୍ତ ହେଲେ ହେଁ ସ୍ୱର୍ଗ ହେତୁରୁ ନିମିତ୍ତ ଅନାମୟ ଅର୍ଥାତ୍ କୁଶଳ ଜନକ ହୋଇଥାଏ, ଅତଏବ ରାଜା ସ୍ୱଧର୍ମରେ ଥାଇ ଧର୍ମତଃ ପ୍ରଜା ପାଳନ କରିବେ । ୨୩ ।

ସମରରେ ରକ୍ଷାଧିକରଣ, ଅର୍ଥାତ୍ ଦୁର୍ଗାଦିର ଦୃଢ଼ତ୍ୱ ସମ୍ପାଦନ-ଯୁଦ୍ଧ, ଧର୍ମାନୁଶାସନ, ମନ୍ତ୍ର, ଚିନ୍ତା ଓ ପ୍ରଜାମାନଙ୍କ ସୁଖପ୍ରଦାନ ଏହି ପଞ୍ଚବିଧ କାର୍ଯ୍ୟ ଦ୍ୱାରା ପୃଥିବୀ ବିଶେଷ ଭାବରେ ବର୍ଦ୍ଧିତ ହୁଏ । ୨୪ । ଯେଉଁ ରାଜା ଏହି ସବୁକୁ ସୁନ୍ଦର ରୂପରେ ରକ୍ଷା କରନ୍ତି, ସେ ରାଜେନ୍ଦ୍ର ହୁଅନ୍ତି ଏବଂ ସେ ଇହଲୋକରେ ସତତ ବର୍ତ୍ତମାନ ଥାଇ, ଏହି ମହୀ-ମଣ୍ଡଳକୁ ଧାରଣ କରନ୍ତି । ୨୫ । ଏକାକୀ ନୃପତି ଦ୍ୱାରା ଏହିସବୁ ବିଷୟ ସମ୍ପୂର୍ଣ୍ଣରୂପେ ସମ୍ପାଦିତ ହେବା ସୁକଠିନ; ଅତଏବ ନରପତି ସେହି ଦୁର୍ଗାଦିର ଅଧିଷ୍ଠାତା ପଞ୍ଚ ମନ୍ତ୍ରୀ ପ୍ରତି ସମୁଦାୟ କାର୍ଯ୍ୟଭାର ଅର୍ପଣ କଲେ ଚିରକାଳ ପୃଥିବୀ ଭୋଗ କରିବାକୁ ସମର୍ଥ ହୁଅନ୍ତି । ୨୬ ।

ହେ ରାଜନ୍ ! ଯେଉଁ ବ୍ୟକ୍ତି ଦାତା, ସଂବିଭକ୍ତା, ମୃଦୁ ସ୍ୱଭାବ, ଶୁଚି ଏବଂ ଅବିରକ୍ତ ଅଟନ୍ତି, ତାହାଙ୍କୁ ଲୋକେ ନୃପତି କରିଥାନ୍ତି । ୨୭ । ଯେ ନିଃଶ୍ରେୟସ ବିଷୟ ଶ୍ରବଣ କରି ଆତ୍ମମତ ପରିତ୍ୟାଗ ପୂର୍ବକ ସେହି ନିଃଶ୍ରେୟସ ଜ୍ଞାନକୁ ପ୍ରତିପନ୍ନ କରନ୍ତି, ଲୋକେ ତାହାଙ୍କୁ ନୃପ ରୂପରେ ବିଧାନ କରିଥାନ୍ତି । ୨୮ ।

ଯେ ଦ୍ୱେଷ ବଶତଃ ଅର୍ଥକାମ ବ୍ୟକ୍ତିର ବାକ୍ୟକୁ କ୍ଷମା ନ କରି ତାହାଠାରୁ ବିମନା ପ୍ରାୟ ସର୍ବଦା ପ୍ରତିକୂଳ ବାକ୍ୟ ଶ୍ରବଣ କରନ୍ତି ଏବଂ ଯେଜିତ ଅର୍ଥାତ୍ ଆପନ୍ନ ଓ ଅଜିତ, ଅର୍ଥାତ୍ ସ୍ୱସ୍ଥ ବ୍ୟକ୍ତିମାନଙ୍କର ଅଗ୍ରାମ୍ୟ ଅର୍ଥାତ୍ ବୁଦ୍ଧିମାନ ବ୍ୟକ୍ତିର ଆଚରିତ ବୃତ୍ତିକି ନିଯୁକ୍ତି ସେବା କରନ୍ତି ନାହିଁ, ସେ କ୍ଷତ୍ର ଧର୍ମରୁ ବହିଷ୍କୃତ ହୁଅନ୍ତି । ୩୦ । ନିଗୃହୀତ ଅମାତ୍ୟ, ସ୍ତ୍ରୀ, ବିଷମ ଓ ଦୁର୍ଗମ ପର୍ବତ, ହସ୍ତୀ, ଅଶ୍ୱ, ଏବଂ ସରୀସୃପ ଏହିମାନଙ୍କରୁ ନିବୃତ୍ତ ହୋଇସତତ ଆତ୍ମରକ୍ଷା କରିବ । ୩୧ । ପରନ୍ତୁ ଯେଉଁବ୍ୟକ୍ତି ଏହି ମାନଙ୍କରେ ନିଯୁକ୍ତ ଥାଇ ଆତ୍ମ ରକ୍ଷା କରେ ଏବଂ ମୁଖ୍ୟ ଅମାତ୍ୟବର୍ଗଙ୍କୁ ପରିତ୍ୟାଗ କରି ଅତ୍ୟନ୍ତ ହୀନ ପ୍ରକୃତି ମାନବଗଣଙ୍କୁ ପ୍ରିୟ ଜ୍ଞାନ କରେ, ସେହି ବ୍ୟକ୍ତି ବ୍ୟସନ ପ୍ରାପ୍ତ ଓ ଆର୍ତ୍ତ ହୋଇ କାର୍ଯ୍ୟର ଅନ୍ତଲାଭ କରିପାରେ ନାହିଁ । ଯେଉଁ ନୃପ ଦ୍ୱେଷ ବଶତଃ କଲ୍ୟାଣ ଗୁଣ ସମ୍ପନ୍ନ ଜ୍ଞାତିଗଣଙ୍କଠାରେ ବାସ କରିବାକୁ ଇଚ୍ଛା ନ କରନ୍ତି, ସେହି ଅଦୃଢ଼ାତ୍ମା କ୍ରୋଧ ସମନ୍ୱିତ ନୃପତି ମୃତ୍ୟୁ ନିକଟରେ ବାସ କରି ଥାଏ । ୩୨ । ଗୁଣବାନ ବ୍ୟକ୍ତିଗଣ ହୃଦୟର ଅପ୍ରିୟ ହେଲେ ହେଁ ଯେଉଁ

ରାଜା ସେମାନଙ୍କୁ ପ୍ରିୟ ବାକ୍ୟଦ୍ୱାରା ବଶୀଭୂତ କରି ପାରନ୍ତି, ତସେ ଚିରକାଳ ଭୂମଣ୍ଡଳରେ ଯଶସ୍ୱୀ ହୋଇ ଅବସ୍ଥାନ କରନ୍ତି । ୩୦ ।

ନରପତି ଅକାଳରେ ଅର୍ଥ ପ୍ରଣୟନ କରିବେ ନାହିଁ, ଅନିଷ୍ଟ ହେଲେ ତହିଁରେ କଦାପି ଅତ୍ୟନ୍ତ ସନ୍ତପ୍ତ ହେବେ ନାହିଁ । ପ୍ରିୟକାର୍ଯ୍ୟରେ ଅତିଶୟ ତୁଷ୍ଟ ହେବେ ନାହିଁ ଏବଂ ଶୁଭ କର୍ମରେ ସତତ ସଂଯୁକ୍ତ ଥିବେ । ୩୫ । କେଉଁ ନୃପତିମାନେ ଅନୁରକ୍ତ, କେଉଁମାନେ ଅବା ଭୟବଶତଃ ଅନୁଗତ ଓ କେଉଁମାନେ ନିର୍ଦ୍ଦୋଷୀ ଏହା ନିୟତ ଚିନ୍ତା କରିବେ । ୩୬ । ନୃପତି ବଳବାନ୍ ହୋଇ ସୁଦ୍ଧା ଦୁର୍ବଳପ୍ରତି କଦାଚ ବିଶ୍ୱାସ କରିବେ ନାହିଁ । କାରଣ ସେମାନେ ଅନବଧାନତା ରୂପ ଅବକାଶ ହେଲେ, ଗୃଧ୍ର ପ୍ରାୟ ନିପତିତ ହୁଅନ୍ତି । ୩୭ । ପ୍ରଭୁ ପ୍ରିୟବାଦୀ ଓ ସର୍ବଗୁଣାନ୍ୱିତ ହେଲେ ହେଁ ପାପାତ୍ମା ଭୃତ୍ୟ ତାହାଙ୍କର ଅପକାର କରେ, ଅତଏବ ତାଦୃଶ ମାନବକୁ କଦାପି ବିଶ୍ୱାସ କରିବ ନାହିଁ । ୩୮ ।

ନହୁଷ ନନ୍ଦନ ଯଯାତି ଏହି ପ୍ରକାରେ ରାଜୋପନିଷଦ୍ ଅର୍ଥାତ୍ ନରପତିମାନଙ୍କର ରହସ୍ୟ ବିଦ୍ୟା କହିଅଛନ୍ତି, ଅତଏବ ଯେ ଏହି ରହସ୍ୟ ବିଦ୍ୟା ଅନୁସାରେ ମନୁଷ୍ୟ ରାଜ୍ୟରେ ନିଯୁକ୍ତ ହୁଅନ୍ତି, ସେ ମହାନ୍ ଶତ୍ରୁ ନିପାତ କରି ପାରନ୍ତି । ୩୯ ।

## ଅଧ୍ୟାୟ—୯୪

ଭୀଷ୍ମଦେବ କହିଲେ—ହେ ନରାଧିପ ! ନରପତି ବିନା ଯୁଦ୍ଧରେ ବିଜୟ ବର୍ଦ୍ଧନ କରିବେ । ଯୁଦ୍ଧ ଦ୍ୱାରା ଯେଉଁ ବିଜୟ ହୁଏ, ପଣ୍ଡିତମାନେ ତାହାକୁ ଜଘନ୍ୟ ବୋଲି କହନ୍ତି ।୧। ମୂଳ ଅତିଶୟ ଦୃଢ଼ ନ ହେଲେ ନୃପତି ଅଲବ୍ଧ ବସ୍ତୁରେ କଦାପି ଲିପ୍ସା କରିବେ ନାହିଁ, ଯେ ହେତୁ ଦୁର୍ବଳମୂଳ ମହୀପତିଙ୍କର ଲାଭ ବିହିତ ହୁଏ ନାହିଁ । ଯାହାଙ୍କର ଜନପଦ ଉନ୍ନତ ଓ ସମ୍ପଦଯୁକ୍ତ, ରାଜପ୍ରିୟ, ସନ୍ତୁଷ୍ଟ ଏବଂ ସଚିବ, ସମନ୍ୱିତ, ସେହି ପୃଥିବୀ ପତିଙ୍କୁ ଦୃଢ଼ମୂଳ ବୋଲି ଜାଣିବ । ଯାହାଙ୍କର ସେନା ସବୁ ସୁସନ୍ତୁଷ୍ଟ ସାନ୍ତ୍ୱିତ ଏବଂ ପରବଞ୍ଚନାରେ ନିଷ୍ଠାବନ୍ତ, ସେହି ପାର୍ଥିବ, ଅଳ୍ପ ସୈନ୍ୟ ଦ୍ୱାରା ପୃଥିବୀକୁ ଜୟ କରି ପାରନ୍ତି । ୪ । ଯାହାଙ୍କର ପୁରବାସୀ ଓ

ଜନପଦବାସୀ ଲୋକମାନେ ଦୟାଳୁ, ଧନଶାଳୀ ଓ ଧାନ୍ୟବାନ ଅଟନ୍ତି, ସେହି ମହୀପତିଙ୍କ ଦୃଢ଼ମୂଳ ବୋଲି ଜାଣିବ ।୫।

ହେ ରାଜନ୍ ! ମେଧାବୀ ମହୀପତି ଯେତେବେଳେ ନିଜର ପ୍ରତାପ-କାଳକୁ ସର୍ବାପେକ୍ଷା ଅଧିକ ବିବେଚନା କରିବେ, ସେତେବେଳେ ପରଭୂମି ଓ ପର ଧନରେ ଲିପ୍ସା କରିବେ ।୬। ଯେ ହେତୁ ଭୋଗ ସମୂହରେ ଉଦୟମାନ, ସର୍ବଭୂତଙ୍କ ଠାରେ ଦୟାବାନ, ଉପମାଣି ଏବଂ ଅଙ୍ଗରକ୍ଷାରେ ସମର୍ଥ ନରପତିଙ୍କର ବିଷୟ ବର୍ଦ୍ଧିତ ହୁଏ ।୭। ଯେଉଁ ରାଜା ବିଦ୍ୟମାନ୍, ଅମାତ୍ୟଜନଙ୍କ ପ୍ରତି ସମ୍ପୂର୍ଣ୍ଣ ରୂପରେ ମିଥ୍ୟାଚରଣ କରନ୍ତି, ସେ ପରଶୁଦ୍ୱାରା ବିଚ୍ଛିନ୍ନ ହୁଅନ୍ତି ।୮।

ଯେଉଁ ନୃପତି ମାୟିକ ନୁହନ୍ତି, ଶତ୍ରୁଗଣ ତାହାଙ୍କ ପ୍ରତି ଦ୍ୱେଷ କରନ୍ତି ନାହିଁ, ଯେଣୁ ଯେଉଁ ବ୍ୟକ୍ତି କୋଧକୁ ନିହତ କରିପାରନ୍ତି କେହି ସୁଦ୍ଧା ତାହାଙ୍କର ଦ୍ୱେଷ୍ଟା କରନ୍ତି ନାହିଁ । ୯ । ଆର୍ଯ୍ୟମାନେ ଯେଉଁ କର୍ମରେ ବିଦ୍ୱେଷ ପ୍ରକାଶ କରନ୍ତି, ବିଦ୍ୱାନ ନରପତି ସେହି କର୍ମ କଦାପି କରିବେ ନାହିଁ ଏବଂ ସେମାନଙ୍କର କଲ୍ୟାଣକର ବାକ୍ୟରେ ହେଳା କରିବେ ନାହିଁ । ଯେଉଁ ରାଜା କର୍ତ୍ତବ୍ୟ କର୍ମସବୁ ସମ୍ପାଦନ କରି ଅବଶେଷରେ ସୁଖାନୁଭବ କରିବାକୁ ଅଭିଳାଷ କରନ୍ତି, ତାଦୃଶ ନରପତିଙ୍କୁ ଅନ୍ୟ କେହି ଅବଜ୍ଞା କରନ୍ତି ନାହିଁ । ଏବଂ ତାହାଙ୍କୁ ମଧ୍ୟ ପଶ୍ଚାତାପ ଭୋଗ କରିବାକୁ ହୁଏ ନାହିଁ । ୧୧ । ଯେଉଁ ମହୀପତି ମାନୁଷ ଲୋକଂରେ ଏହିପରି ବ୍ୟବହାର କରନ୍ତି, ସେ ଉଭୟ ଲୋକକୁ ଜୟକରି ବିଜୟ ପଥରେ ପ୍ରତିଷ୍ଠିତ ହୁଅନ୍ତି ।

ଭୀଷ୍ମ କହିଲେ—ନରପତି ବସୁମନା ମହର୍ଷି ବାମଦେବଙ୍କ କର୍ତ୍ତୃକ ଏହିପରି ଉକ୍ତ ହୋଇ ତଦନୁସାରେ ସମସ୍ତ କାର୍ଯ୍ୟ କରିଥିଲେ, ତୁମ୍ଭେ ମଧ୍ୟ ତଦ୍ରୂପ ଆଚରଣ କଲେ ଉଭୟ ଲୋକକୁ ନିଶ୍ଚୟ ଜୟ କରିବ । ୧୩ ।

———

## ଅଧ୍ୟାୟ—୯୬

ଯୁଧିଷ୍ଠିର କହିଲେ—ଯଦି କୌଣସି କ୍ଷତ୍ରିୟ ସମରରେ ଅପର କ୍ଷତ୍ରିୟଙ୍କୁ ଜୟ କରିବାର ଇଚ୍ଛା କରନ୍ତି, ତେବେ ସେ ବିଜୟ ବିଷୟରେ କେଉଁ ଧର୍ମ ଆଚରଣ କରିବେ । ଏହାହିଁ ଆମ୍ଭେ ଆପଣଙ୍କୁ ପ୍ରଶ୍ନ କରୁଅଛୁଁ, ଆପଣ ଏହା ବର୍ଣ୍ଣନ କରନ୍ତୁ । ୧ ।

ଭୀଷ୍ମ କହିଲେ— ଭୂପତି ସସହାୟ କିମ୍ବା ଅସହାୟ ହୋଇ ଅକସ୍ମାତ ପରକୀୟ ରାଜ୍ୟକୁ ଆଗମନ କରି ପ୍ରଜାଗଣଙ୍କୁ ଏହି କଥା କହିବେ ଯେ, ଆମ୍ଭେ ତୁମ୍ଭମାନଙ୍କୁ ସର୍ବଦା ରକ୍ଷା କରିବୁଁ । ଅତଏବ ତୁମ୍ଭେମାନେ ଆମ୍ଭଙ୍କୁ ରାଜା ବୋଲି ବୋଧ କର । ଏହି କଥାରେ ଯଦି ପ୍ରଜାମାନେ ସେହି ସମାଗତ ନୃପତିଙ୍କୁ ରାଜ୍ୟମଧ୍ୟରେ ବରଣ କରନ୍ତି, ତାହାହେଲେ ସେମାନଙ୍କର କୁଶଳ ହୁଏ, ପରନ୍ତୁ ହେ ନରନାଥ । ଯଦି ସେମାନେ ଅକ୍ଷତ୍ରିୟ ହୋଇ ରାଜାଙ୍କ ପ୍ରତି କୌଣସି ପ୍ରକାର ବିରୁଦ୍ଧାଚରଣ କରନ୍ତି, ତାହା ହେଲେ ସେହି ବିକର୍ମସ୍ଥ ପ୍ରଜାଗଣଙ୍କୁ ସର୍ବ ପ୍ରକାର ଉପାୟଦ୍ୱାରା ଶାସନ କରିବା କର୍ତ୍ତବ୍ୟ । ୪ । ଅପର ଅର୍ଥାତ୍ ହୀନ କ୍ଷତ୍ରିୟ ମଧ୍ୟପର ଉତ୍କୃଷ୍ଟ ଜ୍ଞାନକାରୀ ଉତ୍ତମ କ୍ଷତ୍ରିୟଙ୍କୁ ଆତ୍ମତ୍ରାଣରେ ଅସମର୍ଥ ଓ ଅମସ୍ତ ଦେଖି ଶସ୍ତ୍ର ଗ୍ରହଣ କରନ୍ତି । ଅତଏବ ରାଜା ନିଜର ଶସ୍ତ୍ର ବଳଦ୍ୱାରା ବିଜିତ ଗ୍ରାମାଦି ସବୁ ସାମାଦି ଦ୍ୱାରା ଆକ୍ରମଣ କରି ତହିଁରେ ଅଧିପତି ହୋଇ ସୁଖରେ ଅବସ୍ଥାନ କରିବେ । ୫ । ଯୁଧିଷ୍ଠିର କହିଲେ—ହେ ପିତାମହ ! ଯଦି କୌଣସି କ୍ଷତ୍ରିୟ ନରପତି ଯୁଦ୍ଧାର୍ଥ ଅପର କ୍ଷତ୍ରିୟଙ୍କଠାରେ ଉପସ୍ଥିତ ହୁଅନ୍ତି, ତାହା ହେଲେ ସେହି କ୍ଷତ୍ରିୟ ରାଜାଙ୍କ ସହିତ କି ପ୍ରକାର ଯୁଦ୍ଧ କରିବେ, ତାହା ଆମ୍ଭଙ୍କୁ କହନ୍ତୁ । ୬ ।

ଭୀଷ୍ମ କହିଲେ—ସମରରେ ଅସନ୍ନଦ୍ଧ କ୍ଷତ୍ରିୟ ଅକବଚୀ କ୍ଷତ୍ରିୟଙ୍କ ସହିତ ଯୁଦ୍ଧ କରିବେ । କାରଣ ଏକ ବ୍ୟକ୍ତି ଏକଜଣ ସହିତ ଯୁଦ୍ଧ କଲେ କ୍ରମଶଃ ଅକ୍ଷମ ହୋଇ ଯୁଦ୍ଧ ପରିତ୍ୟାଗ କରନ୍ତି ।୭। ଯଦି ରାଜା ସନ୍ନଦ୍ଧ ହୋଇ ଆଗମନ କରନ୍ତି, ତାହାହେଲେ ସନ୍ନଦ୍ଧ ହେବେ ଏବଂ ସେ ସସୈନ୍ୟରେ ଆଗମନ କଲେ ସସୈନ୍ୟରେ ତାହାଙ୍କୁ ଆହ୍ୱାନ କରିବେ । ଅପିଚ ରାଜା ଯଦି ଶଠତା ସହକାରେ ଯୁଦ୍ଧ କରନ୍ତି, ତାହେଲେ ଶଠତା ସହକାରେ ପ୍ରତିଯୁଦ୍ଧ କରିବେ ଏବଂ ଧର୍ମ-ଯୁଦ୍ଧ କଲେ ଧର୍ମ-ଯୁଦ୍ଧ ଦ୍ୱାରା

ତାହାଙ୍କୁ ନିବାରଣ କରିବେ ।୯। ଅଶ୍ୱାରୂଢ଼ ହୋଇ ରଥୀ ନିକଟକୁ ଗମନ କରିବେ ନାହିଁ, ରଥାରୂଢ଼ ହୋଇ ରଥୀ ନିକଟକୁ ଗମନ କରିବେ । ଏବଂ ବ୍ୟସନାର୍ତ୍ତ, ଭୀତ ଓ ପରାଜିତ ବ୍ୟକ୍ତିଙ୍କୁ ପ୍ରହାର କରିବେ ନାହିଁ । ବିଷଦଗ୍ଧ ବାଣ ଅସତ୍ ବ୍ୟକ୍ତିମାନଙ୍କର ଅସ୍ତ୍ର ହୁଏ, କ୍ଷତ୍ରୀ ସେମାନଙ୍କର ଅସ୍ତ୍ର ହୁଏ ନାହିଁ । ଅତଏବ ଯଥାର୍ଥ ଯୁଦ୍ଧ କରିବେ । ଜିଘାଂସୁବ୍ୟକ୍ତିଙ୍କ ପ୍ରତି କ୍ରୋଧ କରିବେ ନାହିଁ ।୧୧।

ନିଷ୍ପ୍ରାଣ, ଅନପତ୍ୟ, ଭଗ୍ନ, ଶସ୍ତ୍ର ବିପନ୍ନ ଏବଂ ହତବାହନ ବ୍ୟକ୍ତି-ମାନଙ୍କୁ କୌଣସି ପ୍ରକାରରେ ଅବହିତ କରିବେ ନାହିଁ । ସେମାନେ ନିଜ ଗୃହରେ କିମ୍ବା ନିଜ ରାଷ୍ଟ୍ରରେ ଉପସ୍ଥିତ ହେଲେ ସେମାନଙ୍କର ଚିକିତ୍ସା କରିବେ । ସାଧୁମାନଙ୍କ ମଧ୍ୟରେ ଯଦି କୌଣସି ସାଧୁ ଭେଦବଶତଃ ବ୍ୟାଧନାପନ୍ନ ହୁଅନ୍ତି, ତା ହେଲେ ତାହାଙ୍କୁ କ୍ଷତ ନକରି ମୁକ୍ତ କରିବେ ଏହାହିଁ ରାଜାମାନଙ୍କର ସନାତନ ଧର୍ମ । ତନିମିତ୍ତ ସ୍ୱାୟମ୍ଭୁବ ପୁତ୍ର ମନୁ କହିଅଛନ୍ତି ଯେ ସାଧୁମାନଙ୍କ ସହିତ ଧର୍ମ-ଯୁଦ୍ଧ କରିବା କର୍ତ୍ତବ୍ୟ, ସାଧୁ-ମାନଙ୍କର ସନାତନ ଧର୍ମକୁ ଅବଲମ୍ବନ କରିବା ଉଚିତ, କଦାପି ତାହା ନଷ୍ଟ କରିବା କର୍ତ୍ତବ୍ୟ ନୁହେଁ । ଯେଉଁ ଧର୍ମ ଲୋପକର, କ୍ଷତ୍ରିୟ ନରପତି ଅଧର୍ମାଚରଣ ଦ୍ୱାରା ଜୟ ଲାଭ କରନ୍ତି, ସେହି ଶଠଜୀବୀ ପାପାତ୍ମା ନରପତି ସ୍ୱୟଂ ବିନଷ୍ଟ ହୁଅନ୍ତି । ଅସାଧୁ ଲୋକମାନେ ଏତାଦୃଶ ଧର୍ମ କରନ୍ତି । ପରନ୍ତୁ ସାଧୁ ପୁରୁଷମାନେ ସାଧୁ ବ୍ୟବହାର ଦ୍ୱାରା ସାଧୁମାନଙ୍କୁ ଜୟ କରନ୍ତି । ଯେଣୁ ଧର୍ମ ଦ୍ୱାରା ନିଧନ ହେଲେ ହେଁ ତାହା ଶ୍ରେୟସ୍କର ହୁଏ କିନ୍ତୁ ପାପ କର୍ମ ଦ୍ୱାରା ଜୟ ହେଲେ ସୁଦ୍ଧା ତାହା ଶ୍ରେୟସ୍କର ହୁଏ ନାହିଁ ।

ହେ ରାଜନ୍ । ଅଧର୍ମ ଆଚରଣ କର୍ତ୍ତବ୍ୟ ନୁହେଁ କାରଣ ତାହା ବଜ୍ରପାତ ନ୍ୟାୟ ତତ୍‌କ୍ଷଣାତ୍ ଫଳ ପ୍ରଦାନ କରେ, କିନ୍ତୁ ସେହି ଫଳ ଶାଖା ଓ ମୂଳ ପର୍ଯ୍ୟନ୍ତ ସମୁଦାୟ ଦଗ୍ଧ କରି ଲୋକର ହସ୍ତଗତ ହୁଏ । ପାପାତ୍ମା ପୁରୁଷ ପାପକର୍ମ ଦ୍ୱାରା ଅର୍ଥ ଲାଭ କରି ଅତିଶୟ ତୃପ୍ତ ହୁଏ ଏବଂ ତଦ୍ୱାରା ବର୍ଦ୍ଧମାନ ହୋଇ ସେହି ପାପ କର୍ମରେ ପ୍ରସକ୍ତ ଥାଏ । ଯେଉଁ ପାପାତ୍ମା ନିର୍ବୋଧ ବ୍ୟକ୍ତିମାନଙ୍କୁ ଉପହାସପୂର୍ବକ ଧର୍ମର ଅବିଦ୍ୟମାନତା ବୋଧ କରେ, ସେହି ଧର୍ମ ବିଷୟରେ ଶ୍ରଦ୍ଧାହୀନ ମନୁଷ୍ୟ ବିନଷ୍ଟ ହୁଏ ଏବଂ ନିଜେ ବରୁଣ ପାଶରେ ବଦ୍ଧ ହୋଇ ନିଜକୁ ଅମର୍ତ୍ତ୍ୟ ପ୍ରାପ୍ତ ବୋଧ

କରେ ।୨୦। ବାୟୁ ପୂରିତ ମହାନ୍ ଚର୍ମକୋଷ ପ୍ରାୟ, ସତ୍‌କର୍ମରୁ ନିବୃତ୍ତ ଥାଏ ଏବଂ ଅବଶେଷରେ ନଦୀକୂଳସ୍ଥିତ ବୃକ୍ଷପ୍ରାୟ ସମୂଳରେ ହତ ହୁଏ ।୨୧। ଅପିଚ ସେହି ପାପାତ୍ମା ନିହତ ହେଲେ ଲୋକେ ତାହାକୁ, ପାଷାଣରେ ଭଗ୍ନ କୁମ୍ଭ ପ୍ରାୟ ଅଭିନନ୍ଦନ କରନ୍ତି, ଅତଏବ ଭୂମିପତି ଧର୍ମଦ୍ୱାରା ବିଜୟ ଓ କୋଷ ଲାଭ କରିବାକୁ ଇଚ୍ଛା କରିବେ ।୨୨।

## ଅଧ୍ୟାୟ—୯୬

ଭୀଷ୍ମ କହିଲେ—ଜଗତିପତି ଅଧର୍ମାନୁସାରେ ଜଗତ ଜୟକରିବାର ଇଚ୍ଛା କରିବେ ନାହିଁ । କାରଣ କୌଣସି ଭୂମିପତି ଅଧର୍ମାନୁସାରେ ବିଜୟ ଲାଭ କରିବାକୁ ସମ୍ମତ ନୁହନ୍ତି ।୧। ହେ ଭରତଶ୍ରେଷ୍ଠ । ଅଧର୍ମଯୁକ୍ତ ବିଜୟ ଅନିତ୍ୟ ଅଟେ । ତଦ୍ଦ୍ୱାରା ସ୍ୱର୍ଗଲାଭ ହୁଏ ନାହିଁ । ତାଦୃଶ ବିଜୟ ମହୀ ଓ ମହୀପତି ଉଭୟଙ୍କୁ ନଷ୍ଟ କରେ ।୨। ଅତଏବ ଯେଉଁ ବ୍ୟକ୍ତି ଯୁଦ୍ଧରେ ବିଶୀର୍ଣ୍ଣ କବଚ ହୋଇ କୃତାଞ୍ଜଳି ସହକାରେ "ଅମ୍ଭେ ଆପଣଙ୍କର ଶରଣାଗତ ହେଲୁ" ଏହିକଥା କହି ଶସ୍ତ୍ର ପରିତ୍ୟାଗ କରନ୍ତି, ମହୀପତି ତାଦୃଶ ମାନବଙ୍କୁ ଯୁଦ୍ଧରେ ହିଂସା କରିବେ ନାହିଁ ।୩। ଯେଉଁ ବ୍ୟକ୍ତି ବଳ ଦ୍ୱାରା ବିଜିତ ହେବେ ମହୀପତି ତାହାଙ୍କ ସହିତ ଯୁଦ୍ଧ ନକରି ସମ୍ବତ୍ସର କାଳ "ଅମ୍ଭେ ଆପଣଙ୍କର ଦାସ ହେଲୁଁ" ଏହିପରି ଶିକ୍ଷା ତାଙ୍କୁ ଦାନ କରିବେ । ସମ୍ବତ୍ସରାନ୍ତେ ସେ ଏହିପରି ଶିକ୍ଷିତ ହେଲେ ତାଙ୍କୁ ପୁତ୍ରବତ୍ ପାଳନ କରିବେ ।୪।

ଯେଉଁ କନ୍ୟା ବିଜୟ ଦ୍ୱାରା ହୃତ ହେବେ, ମହୀପତି ତାହାଙ୍କୁ "ତୁମ୍ଭେ ଅମ୍ଭଙ୍କୁ କି ଅନ୍ୟକୁ ବରଣ କରିବ ?" ସମ୍ବତ୍ସର କାଳ ମଧ୍ୟରେ ଏହିପରି ପ୍ରଶ୍ନ କରିବେ । ତତ୍ପରେ ସେହି କନ୍ୟା ଏହି ପ୍ରକାରେ କାଙ୍କ୍ଷିତ ହୋଇ ଯଦି ଅନ୍ୟାର୍ଥିନୀ ହୁଏ, ତାହାହେଲେ ତାହାକୁ ପରିତ୍ୟାଗ କରିବ ଏବଂ ଏହିପରି ଭାବରେ ଛଳଦ୍ୱାରା ଦାସ ଦାସୀ ପ୍ରଭୃତି ଯାହା କିଛି ଧନହୃତ ହେବ, ତାହା ମଧ୍ୟ ପ୍ରତ୍ୟର୍ପଣ କରିବ ।୫। ବଧ ଅର୍ଥାତ୍ ତସ୍କର ପ୍ରଭୃତି ଦୁଷ୍ଟମାନଙ୍କ ଠାରୁ ଯେଉଁ ଧନ ହୃତ ହୁଏ, ତାହା ସ୍ଥାୟୀ ହୁଏ ନାହିଁ । ଅତଏବ ତାହା ବ୍ୟୟ କରିବା ଉଚିତ୍ ଏବଂ ସେମାନଙ୍କର ଗାଭୀ ସବୁ ବ୍ରାହ୍ମଣମାନଙ୍କୁ ଦୁଗ୍ଧ ପାନାର୍ଥ ପ୍ରଦତ୍ତ ହେବ । ବୃଷ ସମସ୍ତ ପ୍ରକାର ଭାର ବହନରେ ନିଯୁକ୍ତ ହେବ, ପରନ୍ତୁ ସେମାନେ ଶରଣାଗତ ହେଲେ ସେମାନଙ୍କୁ କ୍ଷମା କରିବା ଉଚିତ୍ ।୬।

ରାଜା ରାଜାଙ୍କ ସହିତ ଯୁଦ୍ଧ କରିବେ । ତଦ୍ଭିନ୍ନ ଧର୍ମ ହୁଏ, ଅତଏବ ଅନ୍ୟ ଅରାଜନ୍ୟ କ୍ଷତ୍ରିୟ ରାଜାଙ୍କ ଅଭିମୁଖକୁ କଦାପି ଶସ୍ତ୍ର ନିକ୍ଷେପ କରିବେ ନାହିଁ ।୭। ଉଭୟ ପକ୍ଷୀୟ ସୈନ୍ୟ ସହିତ ହେଲେ ଯଦି ବ୍ରାହ୍ମଣ ସେମାନଙ୍କର ମଧ୍ୟବର୍ତ୍ତୀ ହୁଅନ୍ତି, ତାହାହେଲେ ତତ୍କାଳରେ ଉଭୟ ପକ୍ଷଙ୍କର ଶାନ୍ତି ଅବଲମ୍ବନ ପୂର୍ବକ ଯୁଦ୍ଧରୁ ନିବୃତ୍ତ ହେବା ଉଚିତ ।୮। ଯେଉଁମାନେ ବ୍ରାହ୍ମଣଙ୍କୁ ଲଙ୍ଘନ କରନ୍ତି, ସେମାନେ ନିତ୍ୟ ମର୍ଯ୍ୟାଦାକୁ ଭେଦ କରନ୍ତି, କିନ୍ତୁ ଯେଉଁମାନେ ଏହି ମର୍ଯ୍ୟାଦାକୁ ଲଙ୍ଘନ କରନ୍ତି ସେମାନେ ଅଧମ କ୍ଷତ୍ରିୟ ବୋଲି ପରିଗଣିତ ହୁଅନ୍ତି ।୯। ଯେ କ୍ଷତ୍ରିୟ ଧର୍ମକୁ ବିଲୋପ ଓ ମର୍ଯ୍ୟାଦା ଭେଦ କରେ, ସେହି କ୍ଷତ୍ରିୟ ବ୍ୟକ୍ତି ସଭାରେ ଅଗ୍ରାହ୍ୟ ହୁଏ ଏବଂ କ୍ଷତ୍ରିୟ ବୋଲି ଗଣ୍ୟ ହୁଏ ନାହିଁ ।୧୦। ବିଜୟାର୍ଥୀ ମହୀପତି କଦାପି ସେହି ବୃତ୍ତିର ଅନୁବର୍ତ୍ତୀ ହେବେ ନାହିଁ । ଯେଣୁ ଧର୍ମଲବ୍ଧ ବିଜୟ ଅପେକ୍ଷା କେତେବେଳେ ଅନ୍ୟ ଅଧିକ ଲଭ ହୋଇ ପାରେ ନାହିଁ ।୧୧।

ସହସା ଅନାର୍ଯ୍ୟ ଭୂତ ପ୍ରାଣିମାନଙ୍କୁ ଶୀଘ୍ର ଶାନ୍ତ୍ୱବାଦ ଓ ଭୋଗଦାନ ଦ୍ୱାରା ପ୍ରସନ୍ନ କରିବା ରାଜାମାନଙ୍କର ପରମ ନୀତି, ଯେ ହେତୁ ସେମାନେ ଅସାନ୍ତ୍ୱ ବଚନପୂର୍ବକ ବଳସହକାରେ ଭୁଜ୍ୟମାନ ହେଲେ ଅତିଶୟ ତାପିତ ହୋଇ ରାଜାଙ୍କର ବ୍ୟସନ ସମୂହକୁ ପ୍ରତୀକ୍ଷାପୂର୍ବକ ସ୍ୱୀୟ ରାଷ୍ଟ୍ରମଧ୍ୟରୁ ପଳାୟନ କରନ୍ତି ଓ ଶତ୍ରୁମାନଙ୍କର ସମ୍ପୂର୍ଣ୍ଣ ରୂପରେ ଉପାସନା କରନ୍ତି । ହେ ରାଜନ୍ ! ସେମାନେ ଅସନ୍ତୁଷ୍ଟ ହେଲେ ସର୍ବତୋଭାବରେ ରାଜାଙ୍କର ବ୍ୟସନାକାଙ୍କ୍ଷୀ ହୋଇ ଆପତ୍କାଳରେ ରାଜାଙ୍କର ଅମିତ୍ରମାନଙ୍କ ପ୍ରତି ଆନୁକୂଲ୍ୟ ପ୍ରଦର୍ଶନ କରନ୍ତି । ଅତଏବ ରାଜା ଲୌକିକସି କ୍ଷମରେ ଶତ୍ରୁଗଣଙ୍କୁ ଛଳଦ୍ୱାରା ବଞ୍ଚନା ଓ ଅତିଶୟ ଉଚ୍ଛେଦ କରିବେ ନାହିଁ । କାରଣ ସେମାନେ ଯେତେଦୂର ଉଚ୍ଛେଦ୍ୟ ହେଲେ ହେଁ ସେମାନଙ୍କର ଜୀବନ କଦାପି ପରିତ୍ୟକ୍ତ ହୁଏ ନାହିଁ ।୧୫। ଏହି ନିମିତ୍ତ ମହୀପତି ଅଳ୍ପରେ ସନ୍ତୁଷ୍ଟ ହୋଇ ଶୁଦ୍ଧ ଜୀବନକୁ ବହୁଜ୍ଞାନ କରିବେ ।୧୬। ଯାହାଙ୍କର ଜନପଦ ଉନ୍ନତ ସମୃଦ୍ଧ ଯୁକ୍ତ, ରାଜପ୍ରିୟ ଏବଂ ସନ୍ତୁଷ୍ଟ ଭୃତ୍ୟ ଓ ସଚିବ ସମନ୍ୱିତ ଅଟେ, ସେହି ପୃଥିବୀ ପତି ଦୃଢ଼ମୂଳ ହୋଇ ରହନ୍ତି ।୧୭। ସେ ଋତ୍ୱିକ, ପୁରୋହିତ, ଆଚାର୍ଯ୍ୟ ଏବଂ ଅନ୍ୟାନ୍ୟ ପୂଜନୀୟ ଶ୍ରୁତସତ୍ତମ ବ୍ରାହ୍ମଣମାନଙ୍କର ପୂଜା ଓ ସମ୍ମାନିତ

ସମ୍ମାନ କରନ୍ତି ସେ ଲୋକମଧ୍ୟରେ ଲୋକବିତ୍ ବୋଲି କଥିତ ହୁଅନ୍ତି । ୧୮ ।

ହେ ରାଜନ୍ ! ସୁରପତି ଇନ୍ଦ୍ର ଏତାଦୃଶ ବ୍ୟବହାର ଦ୍ୱାରା ମହୀମଣ୍ଡଳକୁ ଲାଭ କରିଅଛନ୍ତି । ଅତଏବ ପାର୍ଥିବଗଣ ସେହିପରି ବ୍ୟବହାରାନୁସାରେ ଇନ୍ଦ୍ରଙ୍କର ବିଷୟକୁ ଜୟ କରିବାର ଇଚ୍ଛା କରନ୍ତି । ମହୀପତି ପ୍ରତର୍ଦ୍ଦନ ମହାଯୁଦ୍ଧରେ ପ୍ରଜାଗଣଙ୍କର ଭୂମି ଭିନ୍ନ ଯାବତୀୟ ଧନ, ଅନ୍ନ ଓ ଔଷଧି ସବୁ ହରଣ କରିଥିଲେ ଏବଂ ମହୀପତି ଦିବୋଦାସ ଅଗ୍ନିହୋତ୍ରଙ୍କର ଅଗ୍ନିଶେଷ ହବି ଓ ଭୋଜନୀୟ ସିଦ୍ଧାନ୍ନ ହରଣ କରିଥିଲେ ବୋଲି ବିପ୍ରକୃତ ଅର୍ଥାତ୍ ବଞ୍ଚିତ ହୋଇଥିଲେ । ହେ ଭାରତ ! ନରନାଥ ନାଭାଗ ଶ୍ରୋତ୍ରିୟାର୍ଥ ଓ ତାପସାର୍ଥ ଭିନ୍ନ ଅନ୍ୟ ସ୍ଥାନରେ ସରାଜକ ରାଷ୍ଟ୍ର ସବୁ ଦାନ କରିଥିଲେ । ୨୨ ।

ହେ ଯୁଧିଷ୍ଠିର ! ଧର୍ମଜ୍ଞ ପୁରାତନ ନରପତିମାନଙ୍କର ଯେଉଁସବୁ ଉତ୍କୃଷ୍ଟ ବ୍ୟବହାର ବିଦ୍ୟମାନ ଥିଲା, ତତ୍ସମୁଦାୟ ଆମ୍ଭର ଅଭିଲଷିତ ହେଉଅଛି । ମହୀପତି ଅତିରିକ୍ତ ସର୍ବପ୍ରକାର ବିଦ୍ୟା ଦ୍ୱାରା ଜୟେଚ୍ଛା କରିବେ । ପରନ୍ତୁ ମାୟା ଓ ଦମ୍ଭଦ୍ୱାରା ନିଜର ଐଶ୍ୱର୍ଯ୍ୟ ବାଞ୍ଛା କରିବେ ନାହିଁ । ୨୪ ।

## ଅଧ୍ୟାୟ—୯୭

ଯୁଧିଷ୍ଠିର ବୋଇଲେ—ହେ ନରାଧିପ ! କ୍ଷତ୍ରଧର୍ମ ଅପେକ୍ଷା ପାପଯୁକ୍ତ ଧର୍ମ ଆଉ ନାହିଁ । କାରଣ ନୃପତି ଯୁଦ୍ଧରେ ପରାଙ୍ମୁଖ ହୋଇ ସ୍ୱୟଂ ପଳାୟନପୂର୍ବକ କଷ୍ଟକାଶ୍ରିତ ମହାଜନ ବୈଶ୍ୟମାନଙ୍କୁ କାଳଗ୍ରାସରେ ନିପାତିତ କରନ୍ତି । ୧ । ଅତଏବ ହେ ବିଦ୍ୱନ୍ ! ନରପତି କେଉଁ କର୍ମ ଦ୍ୱାରା ତଦ୍ବିଧ ପ୍ରାୟଶ୍ଚିତ୍ତ କରି ଲୋକମାନଙ୍କ ଜୟ କରିବେ ତାହା ଆମ୍ଭେ ଜାଣିବାକୁ ଇଚ୍ଛା କରୁଅଛୁଁ, ଆପଣ ଆମ୍ଭଙ୍କୁ ବିସ୍ତର କରି କହନ୍ତୁ । ୨ ।

ଭୀଷ୍ମ କହିଲେ—ନୃପତି ଗଣ ପାପୀଗଣଙ୍କର ନିଗ୍ରହ, ସାଧୁ ସଂଗ୍ରହ, ଯଜ୍ଞ ଏବଂ ଦାନ ଦ୍ୱାରା ନିର୍ମଳ ଓ ଅତିଶୟ ଶୁଚି ହୁଅନ୍ତି । ୩ । ଯେଉଁ ନୃପତିଗଣ ବିଜୟାର୍ଥୀ ହୋଇ ପ୍ରାଣିମାନଙ୍କୁ ପୀଡ଼ନ କରନ୍ତି, ସେମାନେ ବିଜୟ ଲାଭ କରି ପୁନର୍ବାର ପ୍ରଜାବୃନ୍ଦଙ୍କୁ ବର୍ଦ୍ଧିତ କରନ୍ତି । ୪ ।

ସେମାନେ ଦାନ, ଯଜ୍ଞ ଓ ତପୋବଳ ଦ୍ୱାରା ଦୁରିତ ସମସ୍ତ ଦୂର କରନ୍ତି ଓ ପ୍ରାଣିବର୍ଗଙ୍କ ପ୍ରତି ଅନୁଗ୍ରହ କରନ୍ତି ବୋଲି ସେମାନଙ୍କର ପୁଣ୍ୟ ବିଶେଷ ରୂପରେ ବର୍ଦ୍ଧିତ ହୁଏ । ୫ । ଯେପରି କ୍ଷେତ୍ର ପରିଷ୍କାର କର୍ତ୍ତା କୃଷକ କ୍ଷେତ୍ର ପରିଷ୍କାର କରିବା ନିମିତ୍ତ ତୃଣ ଓ ଧାନ୍ୟ ଉଭୟଙ୍କୁ ଛେଦନ କଲେ, ତଦ୍ଦ୍ୱାରା ଧାନ୍ୟ ସବୁ ବିନଷ୍ଟ ହୁଏ ନାହିଁ । ପ୍ରକୃତରେ କ୍ଷେତ୍ର ସମ୍ପୂର୍ଣ୍ଣ ରୂପେ ପରିଷ୍କୃତ ହେବାରୁ ପୁନର୍ବାର ଧାନ୍ୟ ଅତିଶୟ ବର୍ଦ୍ଧିତ ହୁଏ । ୬ । ଏହି ପ୍ରକାରେ ଯେଉଁ ନୃପତିମାନେ ଶସ୍ତ୍ର ଦ୍ୱାରା ତସ୍କର ପ୍ରଭୃତି ବଧମାନଙ୍କୁ ବଧ କରନ୍ତି, ସେହି ତସ୍କର ବିନାଶ ଦ୍ୱାରା ସେମାନଙ୍କର ପ୍ରଜାଗଣ ପୁନଃ ପୁନଃ ବର୍ଦ୍ଧିତ ହୁଅନ୍ତି । ୭ ।

ଦସ୍ୟୁମାନେ ପ୍ରଜାମାନଙ୍କର ଧନାପହରଣ ଓ ପ୍ରାଣବଧପୂର୍ବକ ସେମାନଙ୍କୁ ନାନାବିଧ କ୍ଳେଶ ପ୍ରଦାନ କରୁଥିଲେ, ଯେଉଁ ରାଜା ସେହି ପ୍ରଜାମାନଙ୍କୁ ଦସ୍ୟୁଦଳରୁ ରକ୍ଷା କରନ୍ତି, ତାଦୃଶ ନରପତି ପ୍ରଜାବୃନ୍ଦଙ୍କ ମଧ୍ୟରେ ଧନଦ ଓ ସୁଖଦ ହୋଇ ବିରାଜିତ ହୁଅନ୍ତି । ୮ । ତତ୍ପରେ ସେ ଅଭୟ ଦକ୍ଷିଣାଯୁକ୍ତ ଯଜ୍ଞଦ୍ୱାରା ଯାଗ କରି ଇହଲୋକରେ ନାନାବିଧ ସୁଖଭୋଗ କରି ଇନ୍ଦ୍ରଲୋକ ତୁଲ୍ୟ ସ୍ଥାନ ପ୍ରାପ୍ତ ହୁଅନ୍ତି । ୯ । ଶତ୍ରୁମାନେ ଯୁଦ୍ଧରେ ବ୍ରାହ୍ମଣ ବଧାର୍ଥ ଉଦ୍ୟତ ହେଲେ ଯେଉଁ ମହୀପତି ଯୁଦ୍ଧ ଯଜ୍ଞକୁ ଗମନ ପୂର୍ବକ ଯୂପସ୍ୱରୂପ ନିଜ ଦେହକୁ ବିସର୍ଜନ କରି ସେହି ଶତ୍ରୁ ନିଚୟ ସହିତ ସଂଗ୍ରାମ କରନ୍ତି । ସେ ଅନନ୍ତ ଦକ୍ଷିଣାଯୁକ୍ତ ଯଜ୍ଞ ରୂପରେ କୀର୍ତ୍ତିତ ହୁଅନ୍ତି । ଅପିଚ ସେ ଯୁଦ୍ଧରେ ଭୟଶୂନ୍ୟ ହୋଇ ଶତ୍ରୁମାନଙ୍କ ପ୍ରତି ଶର ନିକ୍ଷେପ କଲେ ଦେବଗଣ ତଦପେକ୍ଷା ଭୂମଣ୍ଡଳରେ ଅନ୍ୟ କିଛି ଶ୍ରେୟ ଦର୍ଶନ କରନ୍ତି ନାହିଁ । ୧୧ । ଯୁଦ୍ଧ କ୍ଷେତ୍ରରେ ଯେତେଗୁଡ଼ିଏ ଶର ତାହାଙ୍କର ତ୍ୱକ ଭେଦ କରେ ସେହି ପରିମାଣରେ ସେ ସର୍ବ କାମପ୍ରଦ ଅକ୍ଷୟ ଲୋକସବୁ ଭୋଗ କରନ୍ତି ଏବଂ ଯୁଦ୍ଧରେ ତାହାଙ୍କର ଗାତ୍ରରୁ ଯେଉଁ ରୁଧିର ନିର୍ଗତ ହୁଏ, ସେହି ରୁଧିର କ୍ଷରଣଜନିତ ଦୁଃଖ ସହିତ ସମୁଦାୟ ପାପରୁ ମୁକ୍ତ ହୁଅନ୍ତି । ୧୩ ।

ଧର୍ମ୍ମ ବିତ ବ୍ୟକ୍ତିଗଣ ଏହିପରି କହନ୍ତି ଯେ କ୍ଷତ୍ରିୟମାନେ ସମରରେ ଶରାଘାତ ଦ୍ୱାରା ସନ୍ତୁଷ୍ଟ ହୋଇ ଯେଉଁସବୁ ଦୁଃଖ ସହ୍ୟ କରନ୍ତି, ସେହି ଦୁଃଖ ଭୋଗ ଦ୍ୱାରା ସେମାନଙ୍କର ପ୍ରଭୂତ ତପସ୍ୟା ହୁଏ । ୧୪ । ଯେପରି ପ୍ରାଣିମାନେ ପର୍ଜନ୍ୟଙ୍କଠାରୁ ପୟଃ ପ୍ରାର୍ଥନା କରନ୍ତି,

ଉଦ୍ରୂପ ଭୟଶୀଳ ଧାର୍ମିକ ପୁରୁଷମାନେ ଯୁଦ୍ଧରେ ଶତ୍ରୁମାନଙ୍କର ପଶ୍ଚାତ ଭାଗରେ ଥାଇ ଶୂରମାନଙ୍କଠାରୁ ଆପଣାର ଶରୀର ରକ୍ଷା ଇଚ୍ଛା କରନ୍ତି । ୧୫ । ଯଦି ଶୂରଗଣ କ୍ଷେମକାଳ ପ୍ରାପ୍ତ ଭୟ କାଳରେ ସେହି ପୃଷ୍ଠଦେଶ ସ୍ଥିତ ଭୀରୁ ମାନବଗଣଙ୍କୁ ରକ୍ଷାକରି ସେମାନଙ୍କୁ କଦାପି ଯୁଦ୍ଧାଭିମୁଖୀ ହେବାକୁ ଦିଅନ୍ତି ନାହିଁ, ତାହାହେଲେ ସେମାନଙ୍କର ସେହି ପୁଣ୍ୟ ବର୍ଦ୍ଧମାନ ଥାଏ । ୧୬ । ଆଉ ଯଦି ଭୀରୁ ମାନବମାନେ ଯୁଦ୍ଧରେ ଶୂରଗଣଙ୍କ କର୍ତ୍ତୃକ ରକ୍ଷିତ ହୋଇ ସର୍ବଦା ସେମାନଙ୍କୁ ନମସ୍କାର କରନ୍ତି, ତାହାହେଲେ ସେମାନେ ନ୍ୟାଯ୍ୟ କାର୍ଯ୍ୟ କରନ୍ତି, ନତୁବା ସେମାନଙ୍କର ସେହି ଭୟ ବର୍ଦ୍ଧମାନ ଥାଏ । ୧୭ ।

ହେ ରାଜନ୍ ! ସଂଗ୍ରାମରେ ତୁଲ୍ୟବଳ ପୁରୁଷମାନଙ୍କ ମଧ୍ୟରେ ମହତ ଅନ୍ତର ଦେଖାଯାଏ, ଯେହେତୁ ସେମାନଙ୍କର ସଙ୍ଘଟନ କାଳରେ ଯେଉଁ ପୁରୁଷ ଉତ୍କଣ୍ଠ ହୋଇ ପଡ଼େ, ତାହାର ଅଭିମୁଖକୁ କେହି ଯୁଦ୍ଧା ଗମନ କରିପାରନ୍ତି ନାହିଁ । ସେହି ବିଷମ ସମରରେ ଶୂର ପୁରୁଷମାନେ ସ୍ୱର୍ଗୀୟ ପଥାବଲମ୍ବନ ପୂର୍ବକ ଶତ୍ରୁବର୍ଗଙ୍କ ଅଭିମୁଖୀନ ହୋଇ ସ୍ୱକୀୟ ପରିତ୍ୟାଗ କରନ୍ତି, ପରନ୍ତୁ ଭୀରୁମାନବ ତତ୍କାଳରେ ସହାୟମାନଙ୍କୁ ପରିତ୍ୟାଗପୂର୍ବକ ପଳାୟନ କରନ୍ତି । ୧୯ । ହେ ତାତ । ଯେଉଁମାନେ ଯୁଦ୍ଧରେ ସହାୟମାନଙ୍କୁ ପରିତ୍ୟାଗପୂର୍ବକ ନିଜର ମଙ୍ଗଳ ଲାଭକରି ଗୃହକୁ ପଳାୟନ କରନ୍ତି, ତୁମ୍ଭେ ତାଦୃଶ ପୁରୁଷାଧ ମାନବଗଣଙ୍କୁ ଉତ୍ପାଦନ କରିବ ନାହିଁ । ଯେଉଁମାନେ ସହାୟ ପରିତ୍ୟାଗପୂର୍ବକ ନିଜର ପ୍ରାଣରକ୍ଷା ଅଭିଳାଷ କରନ୍ତି, ଇନ୍ଦ୍ରାଦି ଦେବଗଣ ସେମାନଙ୍କର ଅମଙ୍ଗଳ କରନ୍ତି ।

ଅତଏବ ଶୂରଶ୍ରେଷ୍ଠ କ୍ଷତ୍ରିୟମାନେ ତାଦୃଶ ପୁରୁଷାଧମାନଙ୍କୁ କାଷ୍ଠ କିମ୍ବା ଲୋଷ୍ଟ୍ରଦ୍ୱାରା ନିହତ କରିବେ ଅଥବା କଣ୍ଠାଗ୍ନି ଦ୍ୱାରା ଅର୍ଥାତ୍ କଣ୍ଠରେ ବନ୍ଧନ କରି ଅଗ୍ନି ଦ୍ୱାରା ଦଗ୍ଧ କରିବେ କିମ୍ବା ପଶୁମାରଣ ନ୍ୟାୟ ସେମାନଙ୍କୁ ମାରିବେ । ୨୨ । ଶୂରବର କ୍ଷତ୍ରିୟ ଶଯ୍ୟାଗତ ହୋଇ ଶ୍ଳେଷ୍ମା ଓ ମୂତ୍ର ପରିତ୍ୟାଗପୂର୍ବକ କୃପଣ ଭାବରେ ରୋଦନ କରି ମୃତ ହେଲେ ତାହାଙ୍କର ଅଯଶ ହୁଏ । ୨୩ । ଯେଉଁ କ୍ଷତ୍ରିୟ ଅବିକ୍ଷତ ଶରୀରରେ ନିଧନ ପ୍ରାପ୍ତ ହୁଅନ୍ତି, ପୁରାବିତ୍ ପଣ୍ଡିତମାନେ ତାହାଙ୍କର ପ୍ରଶଂସା କରନ୍ତି ନାହିଁ ।

ଅତଏବ ହେ ତାତ ! କ୍ଷତ୍ରିୟମାନଙ୍କର ଗୃହମରଣ ପ୍ରଶସ୍ତ ନୁହେଁ । କାରଣ ଶୂରତ୍ୱାଭିମାନୀ ପୁରୁଷର ଶୂରତ୍ୱ ବିନଷ୍ଟ ହେଲେ ତାହା ଅତ୍ୟନ୍ତ ଅଧର୍ମ୍ମ- କର ଓ ନିନ୍ଦାକର ହୁଏ । ଆଉ ଆମ୍ଭର ଏହି ଦୁଃଖ ହୋଇଅଛି, ଆମ୍ଭେ ଅତିଶୟ କଷ୍ଟ ପାଉଅଛୁଁ ଏବଂ ଆମ୍ଭେ ପାପାତ୍ମା ଏହି କଥା ଲୋକଙ୍କ- ଠାରେ ପ୍ରକାଶ ପୂର୍ବକ ପ୍ରତିହତ ମୁଖୀ ଓ ପୂତିଗନ୍ଧଯୁକ୍ତ ହୋଇ ପୁନ ଦ୍ରଷ୍ଟିତ ଅମାତ୍ୟବର୍ଗଙ୍କୁ ଅନୁଶୋଚନ କରେ । ୨୭ । ଶୂରତ୍ୱବିହୀନ କ୍ଷତ୍ରିୟ ରୋଗାକ୍ରାନ୍ତ ହୋଇ ଆରୋଗ୍ୟ ସ୍ପୃହା କରେ ଏବଂ ଆରୋଗ୍ୟ ନ ହେଲେ ମୁହୂର୍ତ୍ତ ମୃତ୍ୟୁ ଇଚ୍ଛା କରେ । ପରନ୍ତୁ ଦର୍ପିତ ଶୂରତ୍ୱ ଭିମାନୀ ବୀରବର କ୍ଷତ୍ରିୟ ଏତାଦୃଶ ମୃତ୍ୟୁକୁ ଆକାଙ୍କ୍ଷା କରନ୍ତି ନାହିଁ । ସେମାନେ ଜ୍ଞାତିୟ ପରିବାରବର୍ଗଙ୍କ ଦ୍ୱାରା ପରିବୃତ୍ତ ହୋଇ ସମରରେ ଯୁଦ୍ଧକରି ଶାଣିତ ଶସ୍ତ୍ରଦ୍ୱାରା ଆହତ ହୋଇ ମୃତ୍ୟୁଲାଭ କରନ୍ତି । ୨୮ । ଶୂର ପୁରୁଷ କାମ ଓ କ୍ରୋଧାବିଷ୍ଟ ହୋଇ ଅତିଶୟ ଯୁଦ୍ଧକରି ଶତ୍ରୁ ଙ୍କର ଦ୍ୱାରା ଗାତ୍ରସବୁ ଆହତ ହେଲେ ତାହାକୁ ଆଘାତ ବୋଲି ବୋଧ କରନ୍ତି ନାହିଁ । ୨୯ । ସେହି ଶୂର କ୍ଷତ୍ରିୟ ସମରରେ ସ୍ୱଧର୍ମ୍ମାର୍ଜିତ ବିପୁଳ ଲୋକ ପୂଜିତ ପ୍ରଶସ୍ତ ନିଧନ ଲାଭକରି ଶକ୍ରଙ୍କର ସଲୋକତାକୁ ପ୍ରାପ୍ତ ହୁଅନ୍ତି । ୩୦ । ଯେଉଁ ଶୂରବ୍ୟକ୍ତି ଜୀବିତ ହୋଇ ସର୍ବପ୍ରକାର ଉପାୟ ସହିତ ରଣମୁଖରେ ଅବସ୍ଥାନପୂର୍ବକ ପୃଷ୍ଠ ପ୍ରଦର୍ଶକ ଅର୍ଥାତ୍ ପରାଙ୍ମୁଖ ହୁଅନ୍ତି ନାହିଁ, ସେ ଇନ୍ଦ୍ରଙ୍କର ସଲୋକତାକୁ ପ୍ରାପ୍ତ ହୁଅନ୍ତି । ୩୧ । ଶୂରବର କ୍ଷତ୍ରିୟ ଶତ୍ରୁଦ୍ୱାରା ପରିବାରିତ ଓ ହତ ହୋଇ ଯଦି ଦୀନଭାବାପନ୍ନ ନ ହୁଅନ୍ତି, ତାହା- ହେଲେ ସେ ଅକ୍ଷୟ ଲୋକ ଲାଭ କରନ୍ତି । ୩୨ ।

## ଅଧ୍ୟାୟ—୯୮

ଯୁଧିଷ୍ଠିର କହିଲେ—ହେ ପିତାମହ ! ସମରରେ ଅପରାଙ୍ମୁଖ ଯୁଧୀମାନ ଶୂର କ୍ଷତ୍ରିୟଗଣ ରଣସ୍ଥଳରେ ନିହତ ହୋଇ କେଉଁ ଲୋକକୁ ଗମନ କରନ୍ତି, ତାହା ଆମ୍ଭଙ୍କୁ ବିଶେଷ କରି କହନ୍ତୁ ।

ଭୀଷ୍ମ କହିଲେ—ହେ ଯୁଧିଷ୍ଠିର ! ଏପରି ସ୍ଥଳରେ ପଣ୍ଡିତମାନେ ଅମ୍ବରୀଷ ଓ ଇନ୍ଦ୍ରଙ୍କର ସମ୍ବାଦ ସମ୍ବଳିତ ଦୃଷ୍ଟାନ୍ତ ସ୍ୱରୂପ ଏହି ପ୍ରାଚୀନ ଇତିହାସକୁ ବର୍ଣ୍ଣନ କରନ୍ତି । ୨ । ନାଭାଗପୁତ୍ର ଉଦାରମତି ଅମ୍ବରୀଷ

ସୁଦୁର୍ଲ୍ଲଭ ସୁରଲୋକକୁ ଗମନପୂର୍ବକ ତତ୍ରସ୍ଥ ଶକ୍ର ସହିତ ସଚିବଙ୍କୁ ଦର୍ଶନ କଲେ । ପରେ ତେଜୋମୟ ବିମାନ ବରରେ ଅବସ୍ଥିତ ଜୟଶ୍ରୀ ପୁରଗାମୀ ନିଜ ସେନାପତି ସୁଦେବଙ୍କର ସମୃଦ୍ଧି ଦର୍ଶନରେ ଅତିଶୟ ବିସ୍ମିତ ହୋଇ ବାସବଙ୍କୁ କହିଲେ—ହେ ସୁରନାଥ ! ଆମ୍ଭେ ସମୁଦାୟ ସସାଗରା ବସୁନ୍ଧରାକୁ ଯଥାବିଧି ଅନୁଶାସନ କରି ଧର୍ମ୍ମ କାମନାରେ ଯଥାଶାସ୍ତ୍ର ଚାତୁର୍ବର୍ଣ୍ଣ୍ୟ ଧର୍ମ୍ମରେ ପ୍ରବୃତ୍ତ ହୋଇ ଅଛୁଁ । ୭ । ଆମ୍ଭେ ମଧ୍ୟ ଘୋରତର ବ୍ରହ୍ମଚର୍ଯ୍ୟ ଓ ଗୁରୁ ଶୁଶ୍ରୂଷାଦ୍ୱାରା ଧର୍ମ୍ମତଃ ସମସ୍ତ ବେଦ ଓ ସମସ୍ତ ରାଜଶାସ୍ତ୍ର ଅଧ୍ୟୟନ କରିଅଛୁଁ । ଅନ୍ନଦାନ ଦ୍ୱାରା ଅତିଥିମାନଙ୍କର ସ୍ୱଧାମନ୍ତ୍ର ଦ୍ୱାରା ପିତୃଗଣଙ୍କର, ସ୍ୱଶାଖୋକ୍ତ ବେଦାଧ୍ୟୟନ ଓ ଦୀକ୍ଷା ଦ୍ୱାରା ଋଷିମାନଙ୍କୁ ଏବଂ ଅନୁତ୍ତମ ଯଜ୍ଞଦ୍ୱାରା ଦେବଗଣଙ୍କର ତୃପ୍ତି ସମ୍ପାଦନ କରିଅଛୁଁ । ଏବଂ କ୍ଷତ୍ର ଧର୍ମ୍ମରେ ଅବସ୍ଥିତ ହୋଇ ସମରରେ ଯଥାବିଧି ଓ ଯଥାଶାସ୍ତ୍ର ଦୃଷ୍ଟି ନିକ୍ଷେପପୂର୍ବକ ଶତ୍ରୁ ସୈନ୍ୟଙ୍କୁ ଜୟ କରିଅଛୁଁ । ୯ ।

ହେ ଦେବରାଜ ! ଏହି ପ୍ରଶାନ୍ତାତ୍ମା ସୁଦେବ ପୂର୍ବେ ଆମ୍ଭର ସେନାପତି ଥିଲେ । ସେ ମୁଖ୍ୟ କ୍ରତୁଦ୍ୱାରା ଯଜନ ଓ ଦ୍ୱିଜମାନଙ୍କର ଯଥାବିଧି ତୁଷ୍ଟି ସମ୍ପାଦନ କରି ନାହାନ୍ତି, ଅଥଚ ସେ କି ପ୍ରକାରେ ଆମ୍ଭଙ୍କୁ ଅତିକ୍ରମ କଲେ । ୧୧ । ଇନ୍ଦ୍ର ବୋଇଲେ—ହେ ତାତ ! ପୂର୍ବେ ଏହି ସୁଦେବ ଅନେକାନେକ ସୁମହାନ୍ ସଂଗ୍ରାମ ଯଜ୍ଞ ବିସ୍ତାର କରିଥିଲେ; ଅଦ୍ୟାପି ଅନ୍ୟ ଯେ କୌଣସି କ୍ଷତ୍ରିୟ ଯୁଦ୍ଧ କରନ୍ତି, ତାହାଙ୍କର ମଧ୍ୟ ଏହି ଯୁଦ୍ଧ ଯଜ୍ଞ ବିସ୍ତୃତ ଥାଏ । ଏହିପରି ନିଷ୍ଠୟ ଅଛି ଯେ ଯୋଦ୍ଧାମାନେ ଚମୂମୁଖକୁ ପ୍ରାପ୍ତ ହୋଇ ସନ୍ନଦ୍ଧ ଓ ଦୀକ୍ଷିତ ହେଲେ ସେମାନେ ଯୁଦ୍ଧ ଯଜ୍ଞରେ ଅଧିକାରୀ ହୁଅନ୍ତି । ୧୩ ।

ଅମ୍ବରୀଷ କହିଲେ—ହେ ଶତକ୍ରତୋ ! ସଂଗ୍ରାମ ଯଜ୍ଞ ହବି କଣ ? ଆଜ୍ୟ କଣ ? ଦକ୍ଷିଣା କଣ ? ଏବଂ ଋତ୍ୱିକ କାହାକୁ କହନ୍ତି, ତାହା ଆମ୍ଭଙ୍କୁ କହନ୍ତୁ । ୧୪ । ଇନ୍ଦ୍ର କହିଲେ—ସେହି ଯଜ୍ଞରେ କୁଞ୍ଜରମାନେ ଋତ୍ୱିକ, ବାଜିଗଣ ଅଧ୍ୱର୍ଯ୍ୟୁ, ପର ମାଂସ ସବୁ ହବି, ଏବଂ ରୁଧିର ଆଜ୍ୟ ରୂପରେ କଥିତ ହୁଏ । ୧୫ । ଶୃଗାଳ ଗୃଧ୍ର, କାକୋଳ ଏବଂ ବାଣ ସବୁ ସେହି ଯଜ୍ଞର ସଦସ୍ୟ ଅଟନ୍ତି । ସେମାନେ ଯଜ୍ଞରେ ଆଜ୍ୟ ଶେଷ ଓ ହବି ଭୋଜନ କରନ୍ତି । ଜ୍ୱଳନ୍ତ ଶାଣିତ କ୍ଷାର ସଳିଳ ଦ୍ୱାରା ପୀତପ୍ରାସ ତୋମର ଖଡ୍ଗ, ଶକ୍ତି ଓ ପରଶ୍ୱଧ ଏହିସବୁ ଯଜ୍ଞକର୍ତ୍ତାଙ୍କର ସ୍ରୁକ୍ ସ୍ୱରୂପ

ଅଟେ । ୧୭ । ଗୃପବେଗରେ ଅଯୁତ, ତୀକ୍ଷ୍ଣ, ପରକାୟାବଭେଦୀ, ଋଜୁ, ଶାଣିତ ଓ ପୀତ ମହାନ ସାୟକ ସବୁ ତାହାର ସ୍ରୁବ ଅଟେ । ୧୮ । ଦ୍ୱିପି ଚର୍ମ ଦ୍ୱାରା ଅବନଦ୍ଧ, ନାଗଦନ୍ତ ନିର୍ମିତ ମୁଷ୍ଟିଯୁକ୍ତ, ହସ୍ତିହସ୍ତ ବଦୀର୍ଘ ଖଡ଼୍ଗ ସେହି ଯୁଦ୍ଧ ଯଜ୍ଞରେ ରେଖା କରିବାର ଖଡ଼୍ଗାକାର କାଷ୍ଠ, ନର୍ମିକାୟସ ସମସ୍ତ, ସୁତୀକ୍ଷ୍ଣ ଜ୍ୱଳନ୍ତ, ଶାଣିତ ପ୍ରାସ ଶକ୍ତି, ଋଷ୍ଟି ଓ ପରଶ୍ୱଧ ସମୂହର ଯେଉଁ ଅଭିଘାତ ହୁଏ, ତାହା ସେହି ଯଜ୍ଞର ସଂଖ୍ୟା ଓ ସମସ୍ତ ଦ୍ୱାରା ବସ୍ତୀର୍ଣ୍ଣ ଅଭିଜାତ ଜନଦ୍ୱାରା ଉତ୍ପାଦିତ ବହୁଳ ବସ୍ତୁ ଅର୍ଥାତ୍ ଯଜ୍ଞୀୟ ଦ୍ରବ୍ୟ ସ୍ୱରୂପ ଅଟେ । ସଂଗ୍ରାମରେ ଆବେଶବଶତଃ ଗାତ୍ରରୁ ଭୂମିରେ ଯେଉଁ ରୁଧିର ପତିତ ହୁଏ, ତାହା ହୋମ କାର୍ଯ୍ୟରେ ସେହି ଯଜ୍ଞକର୍ତ୍ତାଙ୍କର ସର୍ବକାମଦ ସମୃଦ୍ଧିସମ୍ପନ୍ନ ପୂର୍ଣ୍ଣାହୁତି ଅଟେ । ଛେଦକର, ଭେଦକର, ଏହିପରି ଯେଉଁ ଶବ୍ଦ ସବୁ ସେନାଗଣଙ୍କ ମଧ୍ୟରେ ଶ୍ରୁତ ହୁଏ, ତାହା ଯଜ୍ଞର ସାମଗମାନଙ୍କର ଯମ ସଦନରେ ସାମଗାନ ସ୍ୱରୂପ ଅଟେ । ସେହି ଯଜ୍ଞରେ ଶତ୍ରୁମାନଙ୍କର ବାହିନୀମୁଖ, ହବିସ୍ଥାପନର ପାତ୍ର ଅଟେ ଏବଂ ହସ୍ତ, ହସ୍ତୀ, ଚର୍ମୀ ଏମାନଙ୍କର ସମୁଚ୍ଚୟ ଶ୍ୟେନଚିତନାମକ ଅଗ୍ନି ବୋଲି କଥିତ ହୁଏ । ୨୪ । ସେହି ଯଜ୍ଞରେ ସହସ୍ର ସହସ୍ର ନିହତ ହେଲେ ଯେଉଁସବୁ କବନ୍ଧ ହୁଏ, ତତ୍ସମସ୍ତ ଯଜ୍ଞୀକ ଶୂରଙ୍କର ଖଦିର ନିର୍ମିତ ଅଷ୍ଟକୋଣ ସମନ୍ୱିତ ଯୂପ ସ୍ୱରୂପ ବୋଲି ଉକ୍ତ ହୁଏ ।୨୫।

ହେ ପାର୍ଥିବ ! କୁଞ୍ଜରମାନେ ଅଙ୍କୁଶ ଦ୍ୱାରା ତାଡ଼ିତ ହୋଇ ଯେଉଁ ଶବ୍ଦ କରନ୍ତି, ତାହାହିଁ ସେହି ଯଜ୍ଞର ଇଡ଼ୋପହୂତ ମନ୍ତ୍ର ଅଟେ । ଆଉ ବଷଟ୍କାର ରୂପ ତଳଧ୍ୱନି ସମନ୍ୱିତ ଦୁନ୍ଦୁଭି, ସେହି ଯଜ୍ଞରେ ତ୍ରୈସାମା-ନାମକ ଉଦ୍ଗୀତ ହୁଏ ।

ହେ ରାଜନ୍ ! ସମରରେ ବ୍ରହ୍ମସ୍ୱ ହୃତ ହେଲେ ଯେଉଁ କ୍ଷତ୍ରିୟ ପ୍ରିୟ ଶରୀରକୁ ପରିତ୍ୟାଗ ପୂର୍ବକ ନିଜ ଦେହକୁ ଯୂପରୂପରେ ବିସର୍ଜନ ନ କରନ୍ତି, ସେ ଅନନ୍ତ ଦକ୍ଷିଣ ଯଜ୍ଞ ରୂପରେ ବିସର୍ଜିତ ହୁଅନ୍ତି । ଯେଉଁ ଶୂର ସମରରେ ସ୍ୱାମୀଙ୍କର ହିତାର୍ଥ ସେନା ସମ୍ମୁଖରେ ବିକ୍ରମ ପ୍ରକାଶ କରି ଭୟବଶତଃ ନିବୃତ୍ତ ହୁଅନ୍ତି ନାହିଁ, ସେ ଆମ୍ଭର ତୁଲ୍ୟ ସ୍ଥାନରେ ବାସ କରନ୍ତି । ଯାହାଙ୍କର ବେଦି ଅର୍ଥାତ୍ ଯୁଦ୍ଧ ଯଜ୍ଞ ଭୂମି ନୀଳଚର୍ମାବୃତ ଖଡ଼୍ଗ ଓ ପରିଘ ସଦୃଶ ବାହୁ ଦ୍ୱାରା ବିସ୍ତୃତ ହୁଏ, ସେ ଆମ୍ଭ ସ୍ଥାନର ତୁଲ୍ୟ ସ୍ଥାନରେ ବାସ କରନ୍ତି । ବିଜୟାଭିଳାଷୀ ଯେଉଁ ଶୂର ବାହିନୀ ମଧ୍ୟରେ

ଅବଗାହନ କର କୌଣସି ସହାୟର ଅପେକ୍ଷା ନ କରନ୍ତି, ସେ ଅମର ତୁଲ୍ୟ ସ୍ଥାନରେ ବାସ କରନ୍ତି । ଯାହାଙ୍କର ସଂଗ୍ରାମସ୍ଥ ନଦୀର ଶୋଣିତ ପ୍ରବାହ ସ୍ୱରୂପ ବେଗ, ମଣ୍ଡୂକ ଓ କଚ୍ଛପ ସ୍ୱରୂପ, ବିଘସ୍ଥି ସର୍କର ସ୍ୱରୂପ, ମାଂସ ମିଶ୍ରିତ ଶୋଣିତ କର୍ଦ୍ଦମ ସ୍ୱରୂପ, ଅସି ଚର୍ମ ପ୍ଲବ ସ୍ୱରୂପ, କେଶ ଓ ଶୈବାଳ ଶାଦ୍ୱଳ ସ୍ୱରୂପ, ସଂଛିନ୍ନ ରଥ, ହସ୍ତୀ ଓ ଅଶ୍ୱ ସେତୁ ସ୍ୱରୂପ, ପତାକା ଓ ଧ୍ୱଜ ବେତସ ବୃକ୍ଷ ସ୍ୱରୂପ, ହତ ବାରଣ ବାହିନୀ ସ୍ୱରୂପ, ଶୋଣିତ ସଲିଳ ସ୍ୱରୂପ,ହତନାଗ ମହାନକ୍ର ସ୍ୱରୂପ, ଋଷ୍ଟି ଓ ଖଡ୍ଗ ମହାନୌକା ସ୍ୱରୂପ, ଗୃଧ୍ର ଓ କଙ୍କ ପ୍ଲବ ସ୍ୱରୂପ ଅଟେ ଏବଂ ସେହି ନଦୀ ପାରଗାମୀ ଲୋକଙ୍କର ଦୁସ୍ତର, ପୁରୁଷାଦ ରାକ୍ଷସ ସମୂହ ଦ୍ୱାରା ଅନୁଚରିତା ଓ ଭୀରୁ ଲୋକଙ୍କର ପାପବାହିନୀ ଅଟେ । ସେହି ସରିତ ତାହାଙ୍କର ସଂଗ୍ରାମ ଯଜ୍ଞର ଅବଭୃଥ ସ୍ନାନ ସ୍ଥାନ ଅଟେ ।

ଯାହାଙ୍କର ସମର ଯଜ୍ଞ ଭୂମି ଶତ୍ରୁଶିର, ଅଶ୍ୱ ସ୍କନ୍ଧ ଓ ଗଜସ୍କନ୍ଧଦ୍ୱାରା ବ୍ୟାପ୍ତ ଅଟେ, ସେ ମହାତ୍ମ୍ୟ ସ୍ଥାନ ସଦୃଶ ସ୍ଥାନରେ ବାସ କରନ୍ତି । ପଣ୍ଡିତମାନେ ଏହାପର କହନ୍ତି ଯେ ଯାହାଙ୍କର ଶତ୍ରୁ ବାହିନୀ ମୁଖ ପତ୍ନୀ ଶାଳା, ସ୍ୱୀୟ ବାହିନୀ ମୁଖ ହବିଃ ସ୍ଥାପନ ପାତ୍ର, ଦକ୍ଷିଣ ଦିକ୍ ସ୍ଥିତ ଯୋଦ୍ଧାମାନେ ସଦ୍ୟସ ଓ ଉତ୍ତର ଦିଗ୍ ସ୍ଥିତ ଯୋଧଗଣ ଆଗ୍ନୀଧ୍ର ଋତ୍ୱିକ୍ ଅଟନ୍ତି । ସେହି ଶତ୍ରୁ ସେନା ରୂପ ଭାର୍ଯ୍ୟା ସମ୍ପନ୍ନ ଯାଜ୍ଞିକ ପୁରୁଷଙ୍କର ଇନ୍ଦ୍ରଲୋକ ପ୍ରଭୃତି ସମୁଦାୟ ଲୋକ ନିକଟସ୍ଥ ହୋଇଥାଏ । ଯେତେବେଳେ ବ୍ୟୂହିତ ଉଭୟ ସୈନ୍ୟର ସମ୍ମୁଖବର୍ତ୍ତୀ ଶୂନ୍ୟ ପ୍ରଦେଶରେ ସଂଗ୍ରାମ କର୍ତ୍ତାଙ୍କର ବେଦି ହୁଏ, ତେତେବେଳେ ଯଜମାନ ଋକ୍, ଯଜୁ ଓ ସାମ ଏହି ବେଦ ତ୍ରୟକୁ ଅଗ୍ନିରୂପରେ କଳ୍ପନା କରି ନିତ୍ୟ ଯଜ୍ଞ ଦ୍ୱାରା ଯାଗ କରନ୍ତି । କିନ୍ତୁ ଯେଉଁ ଶୂର ଯୁଦ୍ଧରେ ଶତ୍ରୁକର୍ତ୍ତୃକ ଆହତ ହୋଇ ଭୟ-ବଶତଃ ପରାଙ୍ମୁଖ ହୁଅନ୍ତି, ସେହି ଶୂର ଅପ୍ରତିଷ୍ଠ ହୋଇ ନରକକୁ ଗମନ କରନ୍ତି, ଏଥିରେ ସଂଶୟ ନାହିଁ । ଯାହାଙ୍କର ବେଦି ଶୋଣିତ ବେଗ ଦ୍ୱାରା ପରିପ୍ଳୁତ ଏବଂ କେଶ, ମାଂସ ଓ ଅସ୍ଥି ଦ୍ୱାରା ପରିପୂରିତ ହୁଏ, ସେ ପରମ ଗତିକୁ ପ୍ରାପ୍ତ ହୁଅନ୍ତି । ଯେଉଁ ଶୂର ଯୁଦ୍ଧରେ ଶତ୍ରୁପକ୍ଷୀୟ ସେନାପତିଙ୍କୁ ସଂହାର କରି ତାହାଙ୍କ ଯାନରେ ଆରୋହଣ କରନ୍ତି, ବୃହସ୍ପତିସମ ବୁଦ୍ଧି-ସମ୍ପନ୍ନ, ବିଷ୍ଣୁଙ୍କ ସଦୃଶ ବିକ୍ରମଶାଳୀ, ସେହି ଶୂରବର ସମସ୍ତଙ୍କର ସ୍ୱାମୀ ହୁଅନ୍ତି ।

ଯେଉଁ ବ୍ୟକ୍ତି ସଂଗ୍ରାମରେ ସେନାପତି କିମ୍ବା ତତ୍ପୂର୍ବଙ୍କ ସାମାନ୍ୟ ଜୀବପ୍ରାୟ ଗ୍ରହଣ କରି ସେଠାରେ ସଙ୍କୁଚିତ ହୁଅନ୍ତି, ସେ ମତ୍ ସ୍ଥାନ ସଦୃଶ ସ୍ଥାନରେ ବାସ କରନ୍ତି । ଶୂରପୁରୁଷ ସଂଗ୍ରାମରେ ହତହେଲେ ତାଙ୍କପାଇଁ କଦାପି ଶୋକ କରିବ ନାହିଁ । ୪୪ । କାରଣ ସଂଗ୍ରାମ ହତ ଶୂର ଅଶୋଚ୍ୟ ହେଲେ ସ୍ୱର୍ଗ ଲୋକରେ ସମ୍ମାନ ଭାଜନ ହୁଅନ୍ତି । ସମରହତ ପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ, ଉଦକ କ୍ରିୟା, ସ୍ନାନ ଓ ଅଶୌଚର ବିଧିନାହିଁ । ସୁତରାଂ କେହି ତାହାଙ୍କର ପ୍ରଶଂସା କରିବାକୁ ଇଚ୍ଛା କରିବେ ନାହିଁ । ସମର ହତପୁରୁଷ ଯେଉଁ ଲୋକଙ୍କୁ ପ୍ରାପ୍ତ ହୁଅନ୍ତି, ତାହା ଅମ୍ଭଠାରୁ ଶ୍ରବଣ କର । ଯେଉଁ ଶୂର ସଂଗ୍ରାମରେ ନିହତ ହୁଅନ୍ତି, ସର୍ବୋତ୍କୃଷ୍ଟ ସହସ୍ର ଅପ୍ସରା କନ୍ୟା "ମୁଁ ଆମ୍ଭର ଭର୍ତ୍ତା ହେବେ" ଏହି କଥା କହି ତ୍ୱରା ସହକାରେ ତାଙ୍କ ନିକଟକୁ ଧାବମାନ ହୁଅନ୍ତି । ଯେଉଁ ଶୂର ଯୁଦ୍ଧକୁ ଅନୁପାଳନ କରନ୍ତି, ତାହାଙ୍କର ତାହାହିଁ ତପସ୍ୟା, ପୁଣ୍ୟ, ସନାତନ ଧର୍ମ୍ମ ଏବଂ ଆଶ୍ରମ ଚତୁଷ୍ଟୟ ସ୍ୱରୂପ ହୁଏ । ଯେଉଁ ବ୍ୟକ୍ତି ସଂଗ୍ରାମରେ ତୃଣଦନ୍ତ ମୁଖ ହୋଇ "ଅମ୍ଭେ ତୁମ୍ଭର ହେଲୁଁ" ଏହି କଥା କହନ୍ତି ତାହାଙ୍କୁ ଏବଂ ବୃଦ୍ଧ, ବାଳକ, ସ୍ତ୍ରୀ ଓ ପୃଷ୍ଠବର୍ତ୍ତୀ ମାନବଗଣଙ୍କୁ ହନନ କରିବା ଉଚିତ ନୁହେଁ । ଅମ୍ଭେ ଜମ୍ଭ, ବୃତ୍ର, ବଳ, ପାକ, ଶତମାୟ, ବିରୋଚନ ଦୁର୍ବାର୍ଯ୍ୟ, ନମୁଚି, ନୈକମାୟ, ଶମ୍ବର, ଦୈତେୟ, ବିପ୍ରଚିତ୍ତି, ସମସ୍ତ ଦନୁପୁତ୍ର ଓ ପ୍ରହ୍ଲାଦ ଏମାନଙ୍କୁ ଯୁଦ୍ଧରେ ନିହତ କରି ଦେବଗଣଙ୍କର ଅଧିପତି ହୋଇଅଛୁଁ । ଭୀଷ୍ମ କହିଲେ—ଯୋଦ୍ଧା ଅମ୍ବରୀଷ ଇନ୍ଦ୍ରଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ଓ ତାହାଙ୍କୁ ପ୍ରତିଗ୍ରହଣପୂର୍ବକ ସ୍ୱକୀୟ ସିଦ୍ଧିଲାଭ କରିଥିଲେ । ୫୧ ।

## ଅଧ୍ୟାୟ—୨୯

ଭୀଷ୍ମ କହିଲେ—ହେ ଯୁଧିଷ୍ଠିର । ନରପତି ପ୍ରତର୍ଦ୍ଦନ ଓ ମିଥିଳା ରାଜ ଜନକ ଏ ଦୁହେଁ ଯନ୍ନିମିତ୍ତ ଯୁଦ୍ଧ କରିଥିଲେ, ଏହି ଶୂରଗଣଙ୍କର ଉତ୍ସାହ ବିଷୟରେ ପଣ୍ଡିତମାନେ ସେହି ପୁରାତନ ଇତିହାସକୁ ଦୃଷ୍ଟାନ୍ତ ରୂପରେ ବର୍ଣ୍ଣନ କରନ୍ତି । ୧ । ସଂଗ୍ରାମ ଯଜ୍ଞରେ ଦୀକ୍ଷିତ ମିଥିଳାଧିପତି ଜନକ ଯେପରି ସ୍ୱୀୟ ସେନାଗଣଙ୍କର ହର୍ଷବର୍ଦ୍ଧନ କରିଥିଲେ, ତାହା କହୁଅଛୁଁ ଶ୍ରବଣ କର । ୨ । ସର୍ବତତ୍ତ୍ୱବିତ୍ ମହାତ୍ମା ମିଥିଳାଧିପତି ଜନକ

ନିଜର ଯୋଧଗଣଙ୍କୁ ସ୍ୱର୍ଗ ଓ ନରକ ପ୍ରଦର୍ଶନ ପୂର୍ବକ ସେମାନଙ୍କୁ କହିଥିଲେ ।

ହେ ଯୋଧଗଣ ! ତୁମ୍ଭେମାନେ ସମରରେ ଭୟଶୂନ୍ୟ ଶୂରବୃନ୍ଦଙ୍କର ଏହି ଭାସ୍ୱର ଲୋକକୁ ଅବଲୋକନ କର । ଏହି ସ୍ଥାନ ଗନ୍ଧର୍ବମାନଙ୍କ ଦ୍ୱାରା ପରିବୃତ, ସର୍ବକାମପ୍ରଦ ଏବଂ ଅକ୍ଷୟ ଅଟେ । ଆଉ ସଂଗ୍ରାମରେ ପଳାୟମାନ ପୁରୁଷମାନଙ୍କର ଏହି ନରକ ଉପସ୍ଥିତ ହୋଇଅଛି । ଏଥିରେ ପତିତ ହେଲେ ଶାଶ୍ୱତ ଅଯଶ ହୋଇଯାଏ । ୫ । ଅତଏବ ତୁମ୍ଭେମାନେ ସନ୍ନ୍ୟାସବୁଦ୍ଧି ଅବଲମ୍ବନ ପୂର୍ବକ ଶତ୍ରୁମାନଙ୍କୁ ଜୟ କର । ଅପ୍ରତିଷ୍ଠ ନରକର ବଶବର୍ତ୍ତୀ ହୁଅ ନାହିଁ ।

ହେ ପରପୁରଞ୍ଜୟ ! ଯୋଧଗଣ ନରପତି ଜନକଙ୍କ କଥିତ ଏହିପରି ଉକ୍ତି ହୋଇ ସମରରେ ନରନାଥ ଜନକଙ୍କୁ ହର୍ଷିତ ପୂର୍ବକ ଶତ୍ରୁମାନଙ୍କୁ ଜୟ କରିଥିଲେ । ଅତଏବ ପ୍ରଶସ୍ତମନା ଶୂରବର ମାନବ-ମାନଙ୍କର ନିତ୍ୟ ରଣାଗ୍ରରେ ଅବସ୍ଥାନ କରିବା ଅବଶ୍ୟ କର୍ତ୍ତବ୍ୟ । ୮ । ଗଜ ମଧ୍ୟରେ ରଥୀ, ରଥୀ ମଧ୍ୟରେ ସାଦୀ ଏବଂ ସାଦୀଗଣଙ୍କ ମଧ୍ୟରେ ପଦାତି ସ୍ଥାପନ କରିବ । ହେ ଯୁଧିଷ୍ଠିର ! ଯେଉଁ ରାଜା ଏହିପରି ବ୍ୟୂହ ରଚନା କରନ୍ତି, ସେ ଶତ୍ରୁବର୍ଗଙ୍କୁ ନିତ୍ୟ ଜୟ କରନ୍ତି । ଅତଏବ ରାଜା-ମାନଙ୍କର ନିତ୍ୟ, ଏତାଦୃଶ ବ୍ୟୂହ ରଚନା କରିବା କର୍ତ୍ତବ୍ୟ । ୧୦ । ଅତିଶୟ ମନ୍ୟୁଶାଳୀ ଶୂରଗଣ, ସାଗର କ୍ଷୋଭକାରୀ ମକର ପ୍ରାୟ, ସୁଯୁଦ୍ଧ ଦ୍ୱାରା ଶତ୍ରୁସୈନ୍ୟମାନଙ୍କୁ କ୍ଷୋଭିତ କରି ସ୍ୱର୍ଗାଦି ଲାଭ କରନ୍ତି । ୧୧ । ବିପକ୍ଷଗ୍ରସ୍ତ ଯୋଦ୍ଧାମାନଙ୍କୁ ପରସ୍ପର ଯଥାବତ୍ ବ୍ୟବସ୍ଥାପିତ କରି ହର୍ଷିତ କରିବ, ଜିତ ଭୂମିକୁ ରକ୍ଷା କରିବ ଏବଂ ଯେଉଁମାନେ ପ୍ରତ୍ୟାଗମନ ଭୟରେ ରଣରୁ ଭଗ୍ନ ହେବେ, ସେମାନଙ୍କ ପ୍ରତି ସ୍ୱକୀୟ ସେନାମାନଙ୍କୁ ଅତିଶୟ ଅନୁସରଣ କରାଇବ ନାହିଁ । ୧୨ ।

ହେ ରାଜନ୍ ! ଜୀବିତାଶାଶୂନ୍ୟ ପ୍ରତ୍ୟାଗତ ଶୂରବୃନ୍ଦଙ୍କର ବେଗ ଅତି ଦୁଃସହ ଅଟେ । ଅତଏବ ସେମାନଙ୍କର ଅତ୍ୟନ୍ତ ଅନୁସରଣ କରିବା କର୍ତ୍ତବ୍ୟ ନୁହେଁ । ୧୩ । ଶୂରମାନେ ଅତିଶୟ ପଳାୟନ ପୁରୁଷମାନଙ୍କୁ ପ୍ରହାର କରିବାର ଇଚ୍ଛା କରନ୍ତିନାହିଁ । ଅତଏବ ସ୍ୱକୀୟ ସୈନ୍ୟଗଣଙ୍କୁ ସେମାନଙ୍କ ପ୍ରତି ଅତିଶୟ ଅନୁସରଣ କରାଇବ ନାହିଁ । ୧୪ । ଅଚରଗଣ

ଚରମାନଙ୍କର ଅଦଂଷ୍ଟ୍ରିଗଣ ଦଂଷ୍ଟ୍ରୀମାନଙ୍କର ସକଳ ପିପାସିତ ମାନଙ୍କର ଓ କାତର ପୁରୁଷମାନେ ଶୂର ବୃନ୍ଦଙ୍କର ଅନ୍ନ ଅଟନ୍ତି । ୧୫ । ଭୀରୁମାନେ ସମାନ ପୃଷ୍ଠ, ସମାନୋଦର, ସମାନ ପାଣି ଓ ସମାନ ପାଦ ହେଲେହେଁ ମଧ୍ୟ ପରାଭବ ପ୍ରାପ୍ତ ହୁଅନ୍ତି । ଅତଏବ ଭୟାର୍ତ୍ତ ପୁରୁଷମାନେ ପ୍ରଣିପାତ ପୂର୍ବକ କୃତାଞ୍ଜଳିବଦ୍ଧ ହସ୍ତରେ ଶୂରଗଣଙ୍କର ଉପାସନା କରନ୍ତି । ୧୬ । ଶୂର-ଗଣଙ୍କର ବାହୁରେ ଏହିଲୋକ ସର୍ବଦା ପୁତ୍ରବତ୍ ଅବଲମ୍ବିତ ଥାନ୍ତି, ସୁତରାଂ ସର୍ବାବସ୍ଥାରେ ଶୂରମାନେ ସମ୍ମାନ ଭାଜନ ହୋଇଥାନ୍ତି । ୧୭ । ତ୍ରିଲୋକ ମଧ୍ୟରେ ଶୌର୍ଯ୍ୟ ଅପେକ୍ଷା ଶ୍ରେଷ୍ଠ ଆଉ କିଛି ନାହିଁ । ଯେ ହେତୁ ଶୂର ପୁରୁଷ ସମସ୍ତଙ୍କୁ ପାଳନ କରନ୍ତି ଏବଂ ଶୂର ପୁରୁଷଙ୍କଠାରେ ସମସ୍ତ ପ୍ରତିଷ୍ଠିତ ଅଛି । ୧୮ ।

## ଅଧ୍ୟାୟ—୧୦୦

ଯୁଧିଷ୍ଠିର କହିଲେ—ହେ ଭରତଶ୍ରେଷ୍ଠ ପିତାମହ ! ଜୟାର୍ଥୀ ନୃପତିଗଣ ଈଷତ୍ ଧର୍ମ୍ମପୀଡ଼ନ କରି ସୁଦ୍ଧା ଜୟଶୀଳ ସେନାମାନଙ୍କୁ ରାଜଭୟ ପ୍ରଦର୍ଶନ ପୂର୍ବକ କି ପ୍ରକାରେ ସମର ମୁଖକୁ ପ୍ରେରଣ କରିବେ, ତାହା ଆମ୍ଭଙ୍କୁ କହନ୍ତୁ । ୧ ।

ଭୀଷ୍ମ କହିଲେ—ସତ୍ୟ ଧର୍ମ୍ମ, ସରଳ ନିଷ୍ଠୁର, ଶିଷ୍ଟାଚାର ଏବଂ ରାଜଭୟ ପ୍ରଦର୍ଶନ ଜନିତ ପ୍ରବୃତ୍ତି ଏହି ଚତୁର୍ବିଧ କାରଣ ଦ୍ୱାରା ଯୁଦ୍ଧ ଧର୍ମ୍ମ ସ୍ଥିର ହୁଏ । ଆମ୍ଭେ ତୁମ୍ଭଙ୍କୁ ସଦ୍ୟଃଫଳପ୍ରଦ ଉପାୟ ଧର୍ମ୍ମସବୁ ପରେ କହିବୁଁ । ନିର୍ମର୍ଯ୍ୟାଦ ଦସ୍ୟୁଗଣ ଧର୍ମ୍ମ ଏବଂ ଅର୍ଥର ପରିପନ୍ଥୀ ଅଟନ୍ତି, ସେମାନଙ୍କର ବିନାଶାର୍ଥ ଓ କାର୍ଯ୍ୟମାନଙ୍କର ସୁସିଦ୍ଧି ନିମିତ୍ତ ଆମ୍ଭେ ତୁମ୍ଭଙ୍କୁ ସମ୍ପ୍ରତି ଆଗମୋକ୍ତ ଉପାୟ କହୁଅଛୁଁ, ଶ୍ରବଣ କର । ୪ ।

ହେ ଭାରତ ! ନୃପତିଗଣ ଋଜୁ ଓ ବକ୍ର ଉଭୟ ପ୍ରଜ୍ଞାକୁ ବିଦିତ ହେବେ; କିନ୍ତୁ ବକ୍ର ପ୍ରଜ୍ଞାକୁ ଅବଗତ ହୋଇ ତାହାର ସେବା କରିବେ ନାହିଁ । କାରଣ ବକ୍ରପ୍ରଜ୍ଞା ଅଗତ ବିଷୟରେ ବାଧା ଦିଏ । ୫ । ଅମିତ୍ରମାନେ ଭେଦଦ୍ୱାରା ରାଜାଙ୍କଠାରେ ଉପଗତ ହେଲେ ଯେପରି ରାଜା ସେମାନଙ୍କୁ ବାଧା ଦିଅନ୍ତି, ତଦ୍ରୂପ ସେହି ନିକୃତିକୁ ଅର୍ଥାତ୍ ତତ୍କୃତ ପରାଭବକୁ ବାଧ କରିବ । ୬ ।

ହେ ପାର୍ଥ । ଗଜ, ଚର୍ମ୍ମ, ଗୋ, ବୃଷ ଓ ଅଜଗର ଚର୍ମ୍ମ, ଶଙ୍ଖ, କଣ୍ଟକ, ଲୌହ, ତନୁତ୍ର ଚାମର, ଶାଣିତ ଓ ପୀତବସ୍ତ୍ର, ପୀତ ଓ ଲୋହିତ ସନ୍ନାହ, ନାନା ରାଗ ରଞ୍ଜିତ କେତୁ ଓ ପତାକା, ଋଷ୍ଟିତରଷ୍ଟି ତୋମର, ଖଡ୍ଗ ଓ ପରଶ୍ୱଧ ଏବଂ ଫଳକ ଚର୍ମ୍ମ ଏହିସବୁ ସାମଗ୍ରୀ ଯୁଦ୍ଧାର୍ଥ ଆହରଣ କରିବ । ଶସ୍ତ୍ରସବୁ ଶାଣିତ ଓ ଯୋଦ୍ଧାମାନଙ୍କ କ୍ଷତ ନିଷ୍ଟସ୍ଥ କରିବାକୁ ହେବ ।

ହେ ଭାରତ । ଚୈତ୍ର ଏବଂ ମାର୍ଗଶୀର୍ଷ ମାସ ସେନା ଯୋଗର ପ୍ରଶସ୍ତ ସମୟ ଅଟେ । ଅତଏବ ଯେତେବେଳେ ପୃଥିବୀ ପକ୍ୱଶସ୍ୟ ଶାଳିନୀ ଓ ଅମ୍ବୁମତୀ ହେବେ ଏବଂ ଯେତେବେଳେ ଅତିଶୟ ଶୀତ କିମ୍ବା ଅତିଶୟ ଉଷ୍ଣ ନ ହେବ, ସେତେବେଳେ ଶତ୍ରୁମାନଙ୍କର ବ୍ୟସନ ସମୟରେ ସେନାଗଣଙ୍କୁ ନିଯୋଜିତ କରିବ; କାରଣ ଶତ୍ରୁ ନିଗ୍ରହକରଣ ବିଷୟରେ ଏତାଦୃଶ ସେନା ନିୟୋଗ ପ୍ରଶସ୍ତ ଅଟେ । ୧୨ । ଜଳ ଓ ତୃଣଯୁକ୍ତ ସମତଳ ମାର୍ଗ ସୁଗମ୍ୟ ଅଟେ । ଅତଏବ ମାର୍ଗ କୁଶଳ ବନଗୋଚର ଚରମାନଙ୍କ ଦ୍ୱାରା ଉକ୍ତ ପଥକୁ ସୁନ୍ଦର ରୂପରେ ବାରମ୍ବାର ବିଦିତ ହେବ । ମୃଗକୁଳପ୍ରାୟ ଅରଣ୍ୟ ପଥରେ ଗମନ କରିବା ଦୁଃସାଧ୍ୟ ଅଟେ । ସୁତରାଂ ଜୟାର୍ଥୀ ନରପତିଗଣ ସେନାମାନଙ୍କୁ ଉକ୍ତ ସୁଗମ୍ୟ ପଥରେ ପ୍ରେରଣ କରନ୍ତି । ୧୪ । ସତ୍କୁଳସମ୍ଭୂତ ସାମର୍ଥ୍ୟବାନ୍ ପୁରୁଷ ସୈନ୍ୟ ସମ୍ମୁଖରେ ବିଦ୍ୟମାନ ଥିବେ ଏବଂ ଆବାସସ୍ଥାନ ଜଳଦୁର୍ଗ ଦ୍ୱାରା ବେଷ୍ଟିତ ଓ ଏକମାର୍ଗ ହେବ; ତାହା ହେଲେ ନିକଟସ୍ଥ ଶତ୍ରୁଗଣ କୌଣସି ଉପାୟରେ ଆକ୍ରମଣ କରିପାରିବେ ନାହିଁ । ଯେଉଁ ଆବାସ ସ୍ଥାନର ନିକଟବର୍ତ୍ତୀ ଭୂମିରେ ଶୂନ୍ୟ ପ୍ରଦେଶ ଥାଏ, ତଦପେକ୍ଷା ଯେଉଁଠାରେ ବନ ଥାଏ, ସେହି ସ୍ଥାନକୁ ନୃପତିମାନେ ଅଧିକ ଗୁଣଯୁକ୍ତ ବୋଲି ବୋଧ କରନ୍ତି । ୧୬ ।

ଅତଏବ ନିଜ ସୈନ୍ୟର ନିକଟବର୍ତ୍ତୀ ତାଦୃଶ ସ୍ଥାନରେ ବହୁ ଗୁଣଯୁକ୍ତ ଯୁଦ୍ଧକୌଶଳ ଲୋକମାନଙ୍କୁ ସଂସ୍ଥାପନ କରିବ । ବନ ନିକଟରେ ପୂର୍ବୋକ୍ତ ଲୋକମାନଙ୍କର ଅବସ୍ଥାନ, ପଦାତିସମୂହଙ୍କର ଅବତରଣ ଏବଂ ସଂଗୋପନ ଏହି ସବୁ କାର୍ଯ୍ୟ ଶତ୍ରୁବିଘାତର ପରମ ଉପାୟ ବୋଲି ଜାଣିବ । ଏହି ବିଧି ଅନୁସାରେ ଯୋଧୃଗଣ ସପ୍ତର୍ଷିମାନଙ୍କୁ

ପଶ୍ଚାତ୍ କରି ପର୍ବତ ସନ୍ନିହ ଅଚଳପ୍ରାୟ ଯୁଦ୍ଧ କଲେ, ଦୁର୍ଜୟ ଶତ୍ରୁବୃନ୍ଦଙ୍କୁ ଜୟ କରିବାକୁ ସମର୍ଥ ହୁଅନ୍ତି ।୧୯।

ହେ ଯୁଧିଷ୍ଠିର ! ଯେଉଁ ଯେଉଁ ଦିଗରେ ବାୟୁ, ସୂର୍ଯ୍ୟ କିମ୍ବା ଶୁକ୍ର ଥାନ୍ତି, ତଦଭିମୁଖରେ ଯୁଦ୍ଧ କଲେ ଜୟ ହୁଏ । କିନ୍ତୁ ଏମାନେ ସମସ୍ତେ ଏକ ଦିଗରେ ଥିଲେ, ଶୁକ୍ର ଅପେକ୍ଷା ସୂର୍ଯ୍ୟଙ୍କର ଓ ସୂର୍ଯ୍ୟଙ୍କ ଅପେକ୍ଷା ବାୟୁଙ୍କର ଅନୁକୂଳତା ଶ୍ରେଷ୍ଠ ହୁଏ ।୨୦। ଯୁଦ୍ଧକୁଶଳ ଲୋକମାନେ କର୍ଦ୍ଦମବିହୀନ, ସଲିଳଶୂନ୍ୟ, ଅମର୍ଯ୍ୟାଦା ଅର୍ଥାତ୍ ସେତୁ ଓ ପ୍ରାକାରାଦିର ସୀମାହୀନ ଓ ଲୋଷ୍ଟ୍ର ରହିତ ଅଶ୍ୱ ଭୂମିକୁ ପ୍ରଶଂସା କରନ୍ତି ।୨୧। ରଥ ଭୂମି ନିଷ୍ପଙ୍କ ଓ ଗର୍ତ୍ତ ରହିତ ହେଲେ ଏବଂ ହସ୍ତୀ ଓ ଯୋଦ୍ଧାମାନଙ୍କର ଭୂମି ନୀଚବୃକ୍ଷ, ମହାକକ୍ଷ ଓ ସଲିଳ ସମନ୍ୱିତ ହେଲେ ତାହା ପ୍ରଶଂସନୀୟ ହୁଏ । ପଦାତିମାନଙ୍କର ଆବାସ ଭୂମି ବହୁ ଦୁର୍ଗ ଦ୍ୱାରା ବେଷ୍ଟିତ, ମହାକକ୍ଷ ସମନ୍ୱିତ, ବେଣୁ ଓ ବେତ୍ର ସମୂହ ସମାକୁଳ ଏବଂ ପର୍ବତ ଓ ଉପବନଯୁକ୍ତ ହେଲେ ତାହା ପ୍ରଶଂସନୀୟ ହୁଏ ।୨୩।

ହେ ଭାରତ ! ବୃଷ୍ଟିବର୍ଜିତ ଦିବସରେ ବହୁ ପଦାତି, ରଥ ଓ ଅଶ୍ୱ ସମନ୍ୱିତ ସେନା ଦୃଢ଼ ଓ ପ୍ରଶଂସନୀୟ ହୁଅନ୍ତି । ପ୍ରାବୃଟକାଳରେ ବହୁଳ ନାଗ ଓ ପଦାତିଯୁକ୍ତା ସେନା ପ୍ରଶଂସନୀୟା, ଅତଏବ ନୃପତିଗଣ ଏହିସବୁ ଗୁଣ ଓ ଦେଶ କାଳକୁ ବିବେଚନା କରି ସେନା ପ୍ରୟୋଗ କରିବେ । ଯେଉଁ ନୃପତି ଏହିପରି ବିବେଚନା ପୂର୍ବକ ତିଥି ଓ ନକ୍ଷତ୍ର ନିଚୟ ଦ୍ୱାରା ଶୁଭାଶୀର୍ବାଦଯୁକ୍ତ ହୋଇ ସମ୍ୟକ ପ୍ରକାରେ ସୈନ୍ୟ ନିୟୋଗ କରନ୍ତି, ସେ ନିତ୍ୟ ଜୟ ଲାଭ କରନ୍ତି । ଯେଉଁମାନେ ମୋକ୍ଷମାର୍ଗ ଅବଲମ୍ବନ କରିବେ, ପଳାୟନ ଗମନ, ପାନ ଏବଂ ଭୋଜନ କରୁଥିବେ, ସେମାନଙ୍କୁ ଏବଂ ପ୍ରସୁପ୍ତ, ତୃଷିତ, ଶାନ୍ତ ଓ ବିକ୍ଷିପ୍ତ ବ୍ୟକ୍ତିମାନଙ୍କୁ ଆହତ କରିବ ନାହିଁ ।

ଯେଉଁମାନେ ଅତିକ୍ଷିପ୍ତ, ବ୍ୟତିକ୍ଷିପ୍ତ, ନିହତ, ପ୍ରତନୁକୃତ, ଅର୍ଥାତ୍ ଅତିକୃଶ, ଅବିଶ୍ରାନ୍ତ, କୃତାରମ୍ଭ, ସୁରୁଙ୍ଗାଦି ଗୁପ୍ତ ଉପାୟଜ୍ଞ, ପ୍ରତାପିତ, ତୃଣାଦି ଆହରଣାର୍ଥ ବହିର୍ଗତ, ତୃଣାଦି ଆହରଣ କାରୀ, ସ୍ୱକୃତ ଗୃହରୁ ଅନୁସାରେ ଏବଂ ରାଜଦ୍ୱାର କିମ୍ବା ଅମାତ୍ୟ ଦ୍ୱାରରେ ପରିଚର୍ଯ୍ୟା ନିରତ ଅନୁବର୍ତ୍ତୀ ଓ ବର୍ଗୀ ଅର୍ଥାତ୍ ସମୁଦାୟାଧିପତି ସେମାନଙ୍କୁ ନିହତ କରିବ

ନାହିଁ । ୨୯ । ଯେଉଁମାନେ ପରରାଜ୍ୟର ସୈନ୍ୟଙ୍କୁ ଭେଦକରି ସ୍ୱକୀୟ ସୈନ୍ୟଙ୍କୁ ସଂସ୍ଥାପନ କରନ୍ତି, ସେମାନଙ୍କୁ ନିଜତୁଲ୍ୟ ପାନ ଭୋଜନ ପ୍ରଦାନ କରିବ ଏବଂ ସେମାନଙ୍କର ଦ୍ୱିଗୁଣ ବେତନ କରିଦେବ ।୩୦। ଯେଉଁମାନେ ଦଶାଧିପତି, ସେମାନଙ୍କୁ ଶତାଧିପତି ଏବଂ ଶତାଧିପତିଙ୍କୁ ସହସ୍ରାଧିପତିକରି ଅତନ୍ଦ୍ରିତ ଭାବରେ ରାଜ୍ୟ ରକ୍ଷା କରିବ । ୩୧ ।

ପ୍ରଧାନ ସୈନ୍ୟମାନଙ୍କୁ ଏକତ୍ରିତ କରି ସେମାନଙ୍କୁ ଏହିପରି କହିବ ଯେ, ତୁମ୍ଭେମାନେ ଶପଥପୂର୍ବକ ଆମ୍ଭଠାରେ ଏହିପରି ସ୍ୱୀକାର କର ଯେ ଆମ୍ଭେମାନେ ସମସ୍ତେ ସମବେତ ହୋଇ ବିଜୟାର୍ଥ ସଂଗ୍ରାମରେ ପ୍ରବୃତ୍ତ ହେବୁଁ । ପରସ୍ପର କେହି କାହାକୁ ପରିତ୍ୟାଗ କରି ପଳାୟନ କରିବୁ ନାହିଁ ।୩୨। ଯେଉଁମାନେ ରଣକୁ ସଙ୍କୁଳ କରି ପ୍ରଧାନ ଯୋଦ୍ଧାଙ୍କୁ ଶସ୍ତ୍ରଦ୍ୱାରା ଘାତିତ କରିବେ ଏବଂ ଯେଉଁମାନେ ଭୀରୁ, ସେମାନେ ଏତିକି ବେଳୁ ନିଜେ ନିଜେ ଯୁଦ୍ଧରୁ ନିବୃତ୍ତ ହେଉନ୍ତୁ । ୩୩ । ଯେଉଁମାନେ ଶପଥ-ପୂର୍ବକ ଏତାଦୃଶ କାର୍ଯ୍ୟରେ ସ୍ୱୀକୃତ ହେବେ, ସେମାନେ ଯୁଦ୍ଧରେ ସେନା ସନ୍ନିପାତ ସମୟରେ ରଣଭଙ୍ଗ କିମ୍ବା ସ୍ୱପକ୍ଷୀୟ ପ୍ରଧାନ ସୈନ୍ୟ ବଧ କରିବେ ନାହିଁ, ପ୍ରକୃତରେ ସେମାନେ ନିଜକୁ ଏବଂ ସ୍ୱପକ୍ଷୀୟ ସୈନ୍ୟଗଣଙ୍କୁ ରକ୍ଷାକରି ଶତ୍ରୁପକ୍ଷୀୟ ସୈନ୍ୟଙ୍କୁ ନିହତ କରିବେ ।୩୪। ଯେଉଁ ପୁରୁଷ ସଂଗ୍ରାମରୁ ପଳାୟନ କରନ୍ତି, ତାହାଙ୍କର ଅର୍ଥନାଶ, ବଧ ଓ ଅକୀର୍ତ୍ତି ହୁଏ ଏବଂ ସେ ଲୋକଙ୍କଠାରୁ ଅମନୋଜ୍ଞ ଓ ଅସୁଖକର ବାକ୍ୟ ଶ୍ରବଣ କରନ୍ତି । ୩୫ । ଅତଏବ ଆମ୍ଭମାନଙ୍କର ଶତ୍ରୁପକ୍ଷୀୟ ପ୍ରତିଧ୍ୱସ୍ତ ଦନ୍ତୋଷ୍ଠ ସମନ୍ୱିତ ନ୍ୟସ୍ତ ଶସ୍ତ୍ର ଅମିତ୍ରମାନଙ୍କ ଦ୍ୱାରା ଅବରୁଦ୍ଧ ପୁରୁଷ-ମାନଙ୍କର ସତତ ଉକ୍ତ ଅର୍ଥନାଶାଦି ହେଉ । ୩୬ । ଯେଉଁ ପୁରୁଷମାନେ ସମରରେ ପରାଙ୍ମୁଖ ହୁଅନ୍ତି, ସେମାନେ ଅପକୃଷ୍ଟ ମନୁଷ୍ୟଙ୍କ ମଧ୍ୟରେ ପରିଗଣିତ ହୁଅନ୍ତି, ତାଦୃଶ ପୁରୁଷମାନେ ରାଶି ବର୍ଦ୍ଧନମାତ୍ର ଅଟନ୍ତି, ସେମାନେ ଇହ କିମ୍ବା ପରଲୋକରେ ସୁଖ ଭାଗୀ ହୁଅନ୍ତି ନାହିଁ ।୩୭।

ହେ ତାତ ! ବିଜୟୀ ଶତ୍ରୁମାନେ ହୃଷ୍ଟ ଚିତ୍ତରେ ପ୍ରଶଂସାବାଦ ସହକାରେ ଓ ମଣ୍ଡଳାକାର ଗତିରେ ପଳାୟମାନ ପୁରୁଷଙ୍କ ପ୍ରତି ଧାବିତ ହେଲେ ତାହା ଅତ୍ୟନ୍ତ ଅସହ୍ୟ ହୁଏ, ଏପରିକି ଶତ୍ରୁଗଣ କର୍ତ୍ତୃକ ଯାହାଙ୍କର ଯୁଦ୍ଧରେ ଯଶ ନଷ୍ଟ ହୁଏ, ତଦପେକ୍ଷା ଆମ୍ଭେ ମୃତ୍ୟୁକୁ ଅସହ୍ୟତର କିମ୍ବା ଦୁଃଖକର ବୋଲି ବୋଧ କରୁନାହୁଁ ।୩୮। ଅତଏବ ଜୟକୁ ଧର୍ମ

ଓ ସର୍ବପ୍ରକାର ସୁଖର ମୂଳବୋଲି ଜାଣିବ । କାରଣ ଜୟ ନ ହେଲେ ଶତ୍ରୁଗଣ ସ୍ୱଭା ଭୀରୁମାନଙ୍କ ପ୍ରାୟ ପରମ ଗ୍ଲାନି ପ୍ରାପ୍ତ ହୁଅନ୍ତି ।୪୦। ଆମ୍ଭେମାନେ ସ୍ୱର୍ଗ କାମନାରେ ସମରରେ ଜୀବନାଶା ପରିତ୍ୟାଗ ପୂର୍ବକ ଜୟୀ କିମ୍ବା ବଧ୍ୟମାନ ହୋଇ ସଦ୍ଗତି ଲାଭ କରିବୁଁ । ଏହିପରି ଶପଥ କରି ଯେଉଁ ବୀରମାନେ ଜୀବନାଶା ପରିତ୍ୟାଗପୂର୍ବକ ଯୁଦ୍ଧରେ ଶତ୍ରୁ-ସୈନ୍ୟଙ୍କୁ ସଂହାର କରନ୍ତି, ସେମାନେ କେବଳ ଅଭୀରୁ ବୋଲି ବିଖ୍ୟାତ ହୁଅନ୍ତି ।୪୨। ଶତ୍ରୁମାନଙ୍କର ପ୍ରତିଘାତାର୍ଥ ଅସି ଚର୍ମ୍ମଧାରୀ ପୁରୁଷ ସୈନ୍ୟ ଅଗ୍ରରେ, ଶକଟ ସୈନ୍ୟ ପୃଷ୍ଠରେ ଏବଂ ଦୁର୍ଗସ୍ଥିତ ସୈନ୍ୟ ମଧ୍ୟରେ ରହିବେ । ଆଉ ପୂର୍ବସ୍ଥିତ ଯେଉଁ ସବୁ ପ୍ରଧାନ ସୈନ୍ୟ-ମାନେ ପୁରୋଗାମୀ ହେବେ, ସେମାନେ ପଦାତିମାନଙ୍କୁ ରକ୍ଷା କରିବେ । ଯେଉଁସବୁ ଅପର ବଳବାନ୍ ମନସ୍ୱୀ ବୀର ପୁରୁଷମାନେ ଅଗ୍ରରେ ରହିବାର ଅଭିମତ ହେବେ, ସେମାନେ ପଦାତି ସମୂହକୁ ବେଷ୍ଟନ କରି ଅବସ୍ଥାନ କରିବେ । ଯତ୍ନ ସହକାରେ ଭୀରୁମାନଙ୍କର ଉତ୍ସାହବର୍ଦ୍ଧନ କରିବା ଉଚିତ, କାରଣ ସେମାନେ ଉତ୍ସାହିତ ହେଲେ, ସମସ୍ତେ ଦଳବଦ୍ଧ ହୋଇ ସମୀପରେ ଅବସ୍ଥାନ କରିବେ ।୪୩।

ସେନାପତି ଅଳ୍ପ ସୈନ୍ୟମାନଙ୍କୁ ମିଳିତ କରି ଶତ୍ରୁମାନଙ୍କ ସହିତ ଯୁଦ୍ଧ କରାଇବେ ଏବଂ ସେମାନଙ୍କୁ ଇଚ୍ଛାନୁସାରେ ବାହୁଲ୍ୟରୂପରେ ବିସ୍ତାରିତ କରିବେ । ଆଉ ଅନେକଙ୍କ ସହିତ ଅଳ୍ପ ସୈନ୍ୟର ଯୁଦ୍ଧ ହେଲେ ସେମାନଙ୍କର ସୂଚୀ ମୁଖ ହୋଇ ଯୁଦ୍ଧ କରିବା କର୍ତ୍ତବ୍ୟ, ଅତଏବ ତାହା ମଧ୍ୟ କରିବେ ।୪୭। ନିକୃଷ୍ଟ ସୈନ୍ୟ ଯୁଦ୍ଧାର୍ଥ ପ୍ରଯୁକ୍ତ ହୋଇ ବାହୁଯୁଦ୍ଧ କରୁଥିଲେ, ସେମାନଙ୍କର ଉତ୍ସାହ ବର୍ଦ୍ଧନାର୍ଥ ସତ୍ୟ ହେଉ କିମ୍ବା ମିଥ୍ୟା ହେଉ "ଆମ୍ଭମାନଙ୍କର ଅମିତ ବଳ ଆହତ ହୋଇ ଅଛନ୍ତି, ତୁମ୍ଭେମାନେ ନିର୍ଭୟରେ ପ୍ରହାର କର, ଶତ୍ରୁମାନେ ଭଗ୍ନ ହୋଇ ଅଛନ୍ତି" ଏହି କଥା କହି ଆକ୍ରୋଶ କରିବେ । ବଳବାନ୍ ବ୍ୟକ୍ତିମାନେ ଭୈରବ ରବ କରି ଶତ୍ରୁମାନଙ୍କ ପ୍ରତି ଧାବମାନ ହେବେ ।୪୯। ସେମାନେ କ୍ଷ୍ୱେଡ଼ା, କିଲକିଲା, କ୍ରକଚ ଓ ଗୋବିଷାଣିକ ପ୍ରଭୃତି ଶବ୍ଦ କରିବେ ଏବଂ ଅଗ୍ରସର ବ୍ୟକ୍ତିମାନଙ୍କ ଦ୍ୱାରା ଭେରୀ, ମୃଦଙ୍ଗ ଓ ପଣବ ବାଦ୍ୟସବୁ ନିନାଦିତ କରାଇବେ ।୫୦।

## ଅଧ୍ୟାୟ—୧୦୧

ଯୁଧିଷ୍ଠିର ବୋଇଲେ—ହେ ଭାରତ ! କୀଦୃଶ ରୂପ, କୀଦୃଶ ସ୍ୱଭାବ, କି ପ୍ରକାର ଆଚାର, କିଂବିଧ ସନ୍ନାହ ଓ କୀଦୃଶ ଶସ୍ତ୍ରଶାଳୀ ଶୂରମାନେ ସମରରେ କ୍ଷମ ହୁଅନ୍ତି ।୧। ଭୀଷ୍ମ କହିଲେ—ସମରରେ ବୀର ପୁରୁଷମାନେ ନିଜର ଦେଶାଚାର ଓ କୁଳାଚାର ଗତ ଯାଦୃଶ ଶସ୍ତ୍ର ଓ ବାହନ ପ୍ରଭୃତି ଉପକରଣ ସାମଗ୍ରୀ ସବୁ ସଂଗ୍ରହ କରି ଯୁଦ୍ଧକାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି, ତାହା ଶ୍ରବଣ କର । ୨ । ଗାନ୍ଧାର, ସିନ୍ଧୁ ଓ ସୌବୀର ଦେଶୀୟ ବୀରମାନେ ନଖର ଓ ପ୍ରାସ ଦ୍ୱାରା ଯୁଦ୍ଧ କରନ୍ତି । ସେମାନେ ଯୁଦ୍ଧରେ ଅଭୀରୁ ଏବଂ ଅତିଶୟ ବଳଶାଳୀ ଅଟନ୍ତି, ସେମାନଙ୍କର ବଳସବୁ ସର୍ବ ଯୁଦ୍ଧରେ ପାରଗ । ୩ । ଉଶୀନର ଦେଶୀୟ ଶୂରଗଣ ସର୍ବ ଶସ୍ତ୍ରରେ କୁଶଳ ଏବଂ ବଳବାନ୍ ଅଟନ୍ତି । ପ୍ରାଗ୍‌ଦେଶୀୟ ଯୋଦ୍ଧାମାନେ ମାତଙ୍ଗ ଯୁଦ୍ଧରେ କୁଶଳ ଏବଂ କୂଟ ଯୋଧୀ ଅଟନ୍ତି ।୪। କାମ୍ବୋଜ ଯବନ ଏବଂ ମଥୁରାବାସୀ ଶୂରମାନେ ପ୍ରାଗ୍‌ଦେଶୀୟ ଯୋଦ୍ଧାମାନଙ୍କ ପ୍ରାୟ ଯୁଦ୍ଧ କରନ୍ତି । ଦାକ୍ଷିଣାତ୍ୟମାନେ ଅସିପାଣି ଅଟନ୍ତି ଏବଂ ବାହୁଯୁଦ୍ଧରେ ଅତିଶୟ ନିପୁଣ ଅଟନ୍ତି । ୫ ।

ସର୍ବତ୍ର ଏହିପରି ମହାସତ୍ତ୍ୱ ଏବଂ ମହାବଳଶାଳୀ ଶୂରମାନେ ପ୍ରାୟ ଜନ୍ମଗ୍ରହଣ କରନ୍ତି, ଏବେ ସେମାନଙ୍କର ଯଥୋକ୍ତ ଲକ୍ଷଣ ଶ୍ରବଣ କର । ୬ । ସେମାନେ ସମସ୍ତେ ପ୍ରାଣିପୀଡ଼କ, ସେମାନଙ୍କର ବଚନ, ଗମନ ଏବଂ ଦର୍ଶନ ସିଂହ ଓ ଶାର୍ଦ୍ଦୂଳ ମାନଙ୍କର ବଚନାଦି ପ୍ରାୟ, ସେମାନଙ୍କର ନୟନ କୁଳିଙ୍ଗ (ସର୍ପ) ଓ ପାରାବତ ପକ୍ଷିଙ୍କର ନୟନ ସଦୃଶ । ସେମାନଙ୍କର ସ୍ୱର ମୃଗଧ୍ୱନି ପ୍ରାୟ, ନେତ୍ର ହସ୍ତୀ ଓ ଋଷଭଲ ନେତ୍ରତୁଲ୍ୟ ଅଟେ । ସେମାନେ ସମସ୍ତେ ପ୍ରମତ୍ତ, ମୂଢ଼, କ୍ରୋଧୀ, କ୍ରୋଧମୁଖୀ, କରଭ, କିଙ୍କିଣୀ ଓ ମେଘନ୍ୟାୟ ଶବ୍ଦକାରୀ, ଦୂରଗାମୀ ଓ ଦୂରପାତି ଅଟନ୍ତି । ସେମାନଙ୍କର ଜଙ୍ଘା ଓ ନାସାଗ୍ର ଜିହ୍ୱା, ଦେହ ବିଡ଼ାଳ ସଦୃଶ କୁବ୍‌ଜ, କେଶ ଓ ତ୍ୱକ ଅତିଶୟ ସୂକ୍ଷ୍ମ ଏବଂ ବୃତ୍ତ ଚପଳ ଓ ଶୀଘ୍ର ଅଟେ ଓ ସେମାନେ ଦୁରାସଦ ଅଟନ୍ତି । ୧୦ । ସେମାନଙ୍କ ମଧ୍ୟରେ କେହିକେହି ଗୋଧାପ୍ରାୟ ନିମୀଳିତ, ମୃଦୁସ୍ୱଭାବ, ତୁରଗ ସଦୃଶ ଗମନ ଓ ଶବ୍ଦକାରୀ ଓ ସର୍ବଯୁଦ୍ଧରେ ପାରଦର୍ଶୀ ଅଟନ୍ତି । ୧୧ । ଅପିଚ ସେମାନଙ୍କ ମଧ୍ୟରେ ଯେଉଁମାନେ ସୁସଂହତ, ସୁଶରୀର ସମ୍ପନ୍ନ, ସୁସଂସ୍ଥିତ

ଅବୟବଶାଳୀ ଓ ବିପୁଳ ବଳ ଅଟନ୍ତି, ସେମାନେ ପ୍ରବାଦ ସମୟରେ କୁପିତ ଏବଂ କଳହ କାଳରେ ହର୍ଷିତ ହୁଅନ୍ତି । ୧୭ ।

ଗମ୍ଭୀର ଲୋଚନ, ନିଃସୃତ ଦର୍ଶନ, ପିଙ୍ଗାକ୍ଷ, ଭ୍ରୂକୁଟୀମୁଖ, ନକୁଳ ନେତ୍ର, ସମରରେ ଶତ୍ରୁର ପରିହାସ୍ୟ, କୁଟିଳ ଦର୍ଶନ, ପୃଥୁଳ ଲଲାଟଶାଳୀ, ନିର୍ମାଂସ ହନୁ ସମନ୍ୱିତ, ବଜ୍ରତୁଲ୍ୟ ବାହୁ, ଅଙ୍ଗୁଳିଚକ୍ର-ସମ୍ପନ୍ନ, କୃଶ ଶିରାଳ ବିଶିଷ୍ଟ, ଏବଂ ଦ୍ରୁତଗାମୀ ଶୂରଗଣ ସଂଗ୍ରାମରେ ଉପସ୍ଥିତ ହେଲେ ମାତଙ୍ଗପ୍ରାୟ ମତ୍ତହୋଇ ବେଗରେ ଶତ୍ରୁଙ୍କୁ ପ୍ରବିଷ୍ଟ ହୁଅନ୍ତି । ୧୫ ।

ଯେଉଁମାନଙ୍କର କେଶାନ୍ତ ଦୀପ୍ତ ଓ ସ୍ଫୁଟିତ, ପାର୍ଶ୍ୱଦେଶ ସ୍ଥୂଳ, ମୁଖ ହନୁ ବିଶିଷ୍ଟ, ଅଂସସନ୍ଧି ଉନ୍ନତ, ଗ୍ରୀବା ଦେଶ ପୃଥୁ, ଆକାର ବିକଟ, ସ୍ଥୂଳ ଓ ପିଣ୍ଡିକାକାର, ସ୍ୱଭାବ ବାସୁଦେବାଶ୍ୱ ସୁଗ୍ରୀବାଦି ଓ ଗରୁଡ଼ଙ୍କ ପ୍ରାୟ ଉଦ୍ଧତ, ମସ୍ତକ ବର୍ତ୍ତୁଳାକାର, ମୁଖ ମାର୍ଜ୍ଜାର ସଦୃଶ ବିସ୍ତୃତ ଏବଂ ସ୍ୱର ଉଗ୍ର, ସେହି ଉଗ୍ରସ୍ୱରସମନ୍ୱିତ ମନୁଷ୍ୟମାନେ, ସମରରେ ଶବ୍ଦାନୁସାରେ ଶର ନିକ୍ଷେପକାରୀ, ଅଧାର୍ମିକ, ଗର୍ବିତ, ଭୟଙ୍କର, ରୌଦ୍ର ଦର୍ଶନ, ସମରରେ ଶତ୍ରୁର ପରିହାସ୍ୟ, ଅନ୍ତ୍ୟଜ ଜାତୀୟ ଅର୍ଥାତ୍ କୈବର୍ତ୍ତଭିଲ୍ଲାଦି ଯୋଦ୍ଧାମାନେ ସମରରେ ପରାଙ୍ମୁଖ ଅଟନ୍ତି । ଏତାଦୃଶ ବ୍ୟକ୍ତିମାନଙ୍କୁ ସର୍ବଦା ସୈନ୍ୟମାନଙ୍କର ପୁରୋବର୍ତ୍ତୀ କରିବା କର୍ତ୍ତବ୍ୟ । ଏମାନେ ବିପକ୍ଷ ସୈନ୍ୟମାନଙ୍କୁ ବିନଷ୍ଟ କରନ୍ତି ଏବଂ ନିଜର ପ୍ରାଣ ପରିତ୍ୟାଗରେ ସୁଦ୍ଧା ଭୀତ ହୁଅନ୍ତି ନାହିଁ । ୧୯ । ଅଧାର୍ମିକ ଉନ୍ନତ୍ତ ବ୍ୟକ୍ତିମାନେ ସାନ୍ତ୍ୱବାକ୍ୟରେ ବଶୀଭୂତ ହୁଅନ୍ତି ନାହିଁ । ସେମାନେ ସାନ୍ତ୍ୱ-ବାକ୍ୟରେ ରାଜାଙ୍କ ପ୍ରତି ଅତିଶୟ କୁପିତ ହୁଅନ୍ତି । ୨୦ ।



# ଅଧ୍ୟାୟ—୧୦୨

ଯୁଧିଷ୍ଠିର କହିଲେ—ହେ ଭରତର୍ଷଭ ! ଜୟଶୀଳ ସେନାର କେଉଁ ଲକ୍ଷଣମାନ ପ୍ରଶସ୍ତ ଅଟେ । ତାହା ଆମ୍ଭେ ସମ୍ପୂର୍ଣ୍ଣ ରୂପରେ ଜାଣିବାକୁ ଇଚ୍ଛା କରୁଅଛୁଁ । ୧ । ଭୀଷ୍ମ କହିଲେ—ହେ ଭରତଶ୍ରେଷ୍ଠ ! ଜୟଶୀଳ ଯେଉଁ ଲକ୍ଷଣସବୁ ପ୍ରଶସ୍ତ, ତାହା ସମ୍ପୂର୍ଣ୍ଣରୂପରେ କହୁଅଛୁଁ ।୨। ଦେବ ପ୍ରତିକୂଳ ଏବଂ ମନୁଷ୍ୟ କାଳପ୍ରେରିତ ହେଲେ ବିଦ୍ୱାନ ବ୍ୟକ୍ତିଗଣ ଜ୍ଞାନମୟ ଦିବ୍ୟ ଚକ୍ଷୁଦ୍ୱାରା ତାହା ଅନୁସନ୍ଧାନପୂର୍ବକ ବିଶେଷରୂପରେ ବିଦିତ ହୋଇ ତଦୁପଶମନାର୍ଥ ପ୍ରାୟଶ୍ଚିତ୍ତ, ଜପ ଏବଂ ହୋମ ପ୍ରଭୃତି ମଙ୍ଗଳ କାର୍ଯ୍ୟ ଅନୁଷ୍ଠାନ କରି ସେହି ଅହିତ ସମୂହର ଶାନ୍ତି କରିଥାନ୍ତି ।୪। ଯେଉଁ ସେନା ମଧ୍ୟରେ ଯୋଧଗଣ ଏବଂ ବାହନ ସବୁ ସତତ ଉତ୍ସାହ ଚିତ୍ତରେ ଅବସ୍ଥାନ କରନ୍ତି, ସେହି ସେନାର ନିଶ୍ଚୟ ଉତ୍କୃଷ୍ଟ ଜୟ ହୋଇଥାଏ । ୫ ।

ଯେତେବେଳେ ବାୟୁ, ଇନ୍ଦ୍ରଧନୁ, ମେଘ ଏବଂ ସୂର୍ଯ୍ୟ ରଶ୍ମି ସବୁ ସେନାଗଣଙ୍କର ଅନୁଗାମୀ ହୁଅନ୍ତି ଏବଂ ଗୋମାୟୁ ଓ ଗୃଧ୍ରଗଣ ଅନୁକୂଳ ହୋଇ ସେମାନଙ୍କୁ ଅର୍ଚ୍ଚନା କରନ୍ତି, ତେତେବେଳେ ସେମାନେ ଅନୁତ୍ତମ ସିଦ୍ଧିଲାଭ କରନ୍ତି । ୭ । ପାବକ ପ୍ରସନ୍ନ କିରଣ, ଊର୍ଦ୍ଧ୍ୱରଶ୍ମି, ଦକ୍ଷିଣାବର୍ତ୍ତି ଶିଖା ସମନ୍ୱିତ ଓ ବିଧୂମ ହେଲେ ଏବଂ ଆହୁତିର ପୁଣ୍ୟଗନ୍ଧ ହେଲେ, ପଣ୍ଡିତମାନେ ତାହାକୁ ଭାବୀଜୟର ଲକ୍ଷଣ ବୋଲି କହନ୍ତି । ୮ । ଗମ୍ଭୀର ରବ ବିଶିଷ୍ଟ ଓ ମହାସ୍ୱନ ଶଙ୍ଖସବୁ ନିନାଦିତ ହେଲେ ଏବଂ ଯୁଧ୍ୟମାନଗଣ ଅନୁକୂଳ ହେଲେ ପଣ୍ଡିତମାନେ ତାହାକୁ ଭାବୀଜୟର ରୂପବୋଲି କହନ୍ତି । ୯ । ମୃଗମାନେ ସମର ପ୍ରସ୍ତୁତ ପୁରୁଷଙ୍କର ପଶ୍ଚାତ୍ ଭାଗରେ ଥିଲେ ଇଷ୍ଟହୁଏ ଏବଂ ଯେ ସଂଗ୍ରାମକୁ ଗମନକରିବେ ତାହାଙ୍କର ବାମଭାଗରେ ଥିଲେ ଓ ଜିଘାଂସୁବ୍ୟକ୍ତିଙ୍କର ଦକ୍ଷିଣ ଭାଗରେ ଥିଲେ ଇଷ୍ଟସିଦ୍ଧି ସୂଚକ ହୁଏ । ଅଗ୍ରଭାଗରେ ଥିଲେ ଉପସ୍ଥିତ କାର୍ଯ୍ୟସମୂହ ପ୍ରତିରୋଧ କରେ ।୧୦। ଶକୁନ, ହଂସ, କ୍ରୌଞ୍ଚ, ସାରସ ଓ ସ୍ୱର୍ଣ୍ଣଚୂଡକ ପ୍ରଭୃତି ପକ୍ଷିମାନେ ମାଙ୍ଗଲ୍ୟ ଶବ୍ଦକଲେ ଏବଂ ବଳବନ୍ତ ଯୋଧାମାନେ ହୃଷ୍ଟହେଲେ, ପଣ୍ଡିତମାନେ ତାହାକୁ ଜୀଜୟର ଲକ୍ଷଣ ବୋଲି କହନ୍ତି ।୧୧।

ଯେଉଁମାନଙ୍କର ଚମୂମୁଖ ଶସ୍ତ୍ର, ଯନ୍ତ୍ର, କବଚ, କେତୁ ଓ ମୁଖମଣ୍ଡଳର ସମୁଜ୍ଜ୍ୱଳଦ୍ୱାରା ଦେଦୀପ୍ୟମାନ ହୋଇ ଶତ୍ରୁମାନଙ୍କର ଦୁର୍ଦ୍ଦର୍ଶନୀୟ ହୁଏ, ସେମାନେ ଅମିତ୍ରଗଣଙ୍କୁ ଅଭିଭବ କରନ୍ତି । ୧୨ । ଯୋଧଗଣ ସ୍ୱାମୀଶୁଶ୍ରୂଷାପରାୟଣ, ଅଭିମାନବର୍ଜ୍ଜିତ, ପରସ୍ପର ସୌହୃଦ୍ୟବନ୍ତ ଏବଂ ଶୌଚଶୂନ୍ୟ ହେଲେ ମନୀଷୀଗଣ ତାହାକୁ ଭାବୀ-ଜୟର ଲକ୍ଷଣବୋଲି କହନ୍ତି । ୧୩ । ମନଃପ୍ରିୟ, ଶବ୍ଦ, ସ୍ପର୍ଶ ଓ ଗନ୍ଧ ପ୍ରବାହିତ ହେଲେ ଏବଂ ଯୋଦ୍ଧାମାନେ ଧୈର୍ଯ୍ୟଶୀଳ ହେଲେ ପଣ୍ଡିତମାନେ ତାହାକୁ ବିଜୟର ମୁଖବୋଲି କହନ୍ତି । ୧୪ । ସଂଗ୍ରାମ ପ୍ରବିଷ୍ଟ ପୁରୁଷଙ୍କର ବାମଭାଗରେ କାକଥିଲେ ଏବଂ ଯେ ସଂଗ୍ରାମରେ ପ୍ରବେଶ କରିବେ, ତାହାଙ୍କର ଦକ୍ଷିଣ ପାର୍ଶ୍ୱରେ ଥିଲେ ଇଷ୍ଟସାଧନ କରେ । ଅଉ ପଶ୍ଚାତ୍ ଭାଗରେ ଥିଲେ ଅଥବାଧ ଓ ଅଗ୍ରଭାଗରେ ଥିଲେ ପ୍ରତିଷେଧ କରେ ।୧୫।

ହେ ଯୁଧିଷ୍ଠିର ! ପ୍ରଥମତଃ ମହତୀ ଚତୁରଙ୍ଗିଣୀ ସେନାସଂଗ୍ରହ କରି ତାହାକୁ ସାମଦ୍ୱାରା ସଂସ୍ଥାପନ କରିବ ଏବଂ ତଦନନ୍ତର ଯୁଦ୍ଧରେ ନିଯୁକ୍ତ କରିବ । ୧୬ । ହେ ଭାରତ । ସଂଗ୍ରାମରେ ଯୁଦ୍ଧ କରୁଁ କରୁଁ ଯଦୃଚ୍ଛାକ୍ରମରେ କିମ୍ବା ଦୈବବଶତଃ ଯେଉଁ ଜୟହୁଏ, ସେହି ଜୟ ଜଘନ୍ୟବୋଲି ପରିଗଣିତ ହୋଇଥାଏ ।୧୭। ପଳାୟମାନା ମହତୀଚମୂ ଜଳବେଗ ଓ ସନ୍ତ୍ରସ୍ତ ମହାମୃଗଗ୍ରାମ ଦୁର୍ନିବାର୍ଯ୍ୟ ଅଟେ ।୧୮।

ରୁରୁଜଙ୍ଘାସଦୃଶ ଉଦାର ସାର ସମନ୍ୱିତ ଭଗ୍ନଶୀଳ ମହତୀ ଚମୂ ବିଦ୍ରାନ ହେଲେହେଁ ରଣଭଙ୍ଗ କରନ୍ତି । ବିଦ୍ୟାଥିଲେ ଯେ ରଣଭଙ୍ଗ କରେନାହିଁ, ଏପରି କୌଣସି କାରଣନାହିଁ । ୧୯ । ପରସ୍ପର ପରିଚିତ, ହୃଷ୍ଟ, ତ୍ୟକ୍ତ ଜୀବିତ, ସୁନିଶ୍ଚିତ, ପଞ୍ଚାଶତ ଶୂରପୁରୁଷ, ସମରରେ ବହୁସଂଖ୍ୟକ, ଶତ୍ରୁସୈନ୍ୟକୁ ବିମର୍ଦ୍ଦିତ କରିବାକୁ ସମର୍ଥ ହୁଅନ୍ତି ।୨୦। ସମରରେ କୃତନିଶ୍ଚୟ, ସତ୍କୁଳ ସମ୍ଭୂତ, ସମ୍ମାନିତ ପାଞ୍ଚ, ଛଅ, କିମ୍ବା ସାତଜଣ ଶୂରପୁରୁଷ ଏକତ୍ରିତ ହୋଇ ଯୁଦ୍ଧକଲେ ଅନାୟାସରେ ବହୁଳ ଶତ୍ରୁସୈନ୍ୟ ଜୟ କରିପାରନ୍ତି । ୨୧ । ଅନ୍ୟବିଧ ଉପାୟ ଥିଲେହେଁ କୌଣସି ପ୍ରକାରରେ ଯୁଦ୍ଧ ଅଭିଳାଷ କରିବନାହିଁ, କାରଣ ସାନ୍ତ୍ୱ, ଭେଦ ଓ ଦାନ ଏହିମାନଙ୍କପରେ, ଯୁଦ୍ଧ ହୋଇଥାଏ ।୨୨। ଯେପରି ପ୍ରଜ୍ୱଳିତ ବଜ୍ରରୁ ବିଦ୍ୟୁତ୍ କେତେବେଳେ କେଉଁବେଳେ ପତିତ ହେବ, ଏହି ଭୟରେ ଭୀରୁବ୍ୟକ୍ତି ପ୍ରବାଧିତ ହୁଏ, ସେହିପରି ସମରରେ ସେନାମାନଙ୍କ

ପ୍ରଦର୍ଶନଜନିତ ଭୟ ଶତ୍ରୁମାନଙ୍କୁ ବାଧାଦିଏ । ୨୩ । ଶତ୍ରୁସେନାକୁ ସମରାଭିମୁଖୀ ହେବାର ଜାଣି ଯେଉଁମାନେ ସେମାନଙ୍କର ପ୍ରତିଗମନ କରନ୍ତି, ବିଜୟାର୍ଥ ସେହି ଯୋଦ୍ଧାମାନଙ୍କର ଗାତ୍ରସବୁ ସ୍ୱିନ୍ନ ହୋଇଥାଏ । ୨୪ ।

ହେ ରାଜନ୍ ! ସ୍ଥାଣୁ ଓ ଜଙ୍ଗମ ସହିତ ବିଷୟ ଅର୍ଥାତ୍ ସମୁଦାୟ ଦେଶ ଅସ୍ତ୍ର ତାପରେ ବ୍ୟଥିତ ହୁଏ ଏବଂ ଅସ୍ତ୍ରତାପରେ ତାପିତ ଦେହୀମାନଙ୍କର ମଜ୍ଜା ଅବସନ୍ନ ହୋଇଯାଏ । ୨୫ । ଯେଉଁମାନେ ଶତ୍ରୁକର୍ତ୍ତୃକ ପୀଡ଼ିତ ହୋଇ ସେମାନଙ୍କ ସହିତ ସମ୍ପୂର୍ଣ୍ଣରୂପରେ ସନ୍ଧି ବିଧାନ କରନ୍ତି, ସେମାନଙ୍କ ପ୍ରତି କ୍ରୂରମିଶ୍ରିତ ସାନ୍ତ୍ୱଭାବରେ ପୁନଃପୁନ ଧ୍ୱଂସାୟ କରିବା କର୍ତ୍ତବ୍ୟ । ୨୬ । ଅନ୍ତରଙ୍ଗ ଶତ୍ରୁମାନଙ୍କର ଭେଦାର୍ଥ ଚର ପ୍ରେରଣ କରିବ, ଶତ୍ରୁମାନଙ୍କ ମଧ୍ୟରେ ଯେ ପ୍ରଧାନ ହେବେ, ରାଜା ତାହାଙ୍କ ସହିତ ସନ୍ଧି କରିବେ ।୨୭। ଏପରି ନକଲେ ଯେପରି ଶତ୍ରୁ ସହିତ ସର୍ବତୋ ଭାବରେ ପ୍ରତିକୂଳତା ହେବ, ଶତ୍ରୁମାନଙ୍କୁ ତାଦୃଶ ପୀଡ଼ନ କରିବା ଅସାଧ୍ୟ ହୁଏ । ହେ ପାର୍ଥ ! କ୍ଷମା ସାଧୁମାନଙ୍କ ସମୀପରେ ସର୍ବଦା ସମାଗମ କରନ୍ତି । ଅସାଧୁ ଲୋକଙ୍କଠାରେ କଦାପି ସମାଗମ ହୁଅନ୍ତି ନାହିଁ । ଅତଏବ କ୍ଷମା ଓ ଅକ୍ଷମା ଉଭୟର ପ୍ରୟୋଜନକୁ ଅବଗତ ହୁଅ । ୨୮ । ଯେଉଁ ନୃପତି ଜୟଲାଭ କରି କ୍ଷମାଅବଲମ୍ବନ କରନ୍ତି, ତାହାଙ୍କର ଯଶ ବିଶେଷରୂପରେ ବର୍ଦ୍ଧିତ ହୁଏ, ଏବଂ ଶତ୍ରୁମାନେ ତାହାଙ୍କର ମହା ଅପରାଧୀ ଥିଲେମଧ୍ୟ ତାହାଙ୍କ ପ୍ରତି ବିଶ୍ୱାସ କରନ୍ତି । ୩୦ । ବୈତ୍ୟବର ଶମ୍ବର ଏହିପରି ମତ ସ୍ଥିରକରି ଅଛନ୍ତି ଯେ ପ୍ରଥମତଃ ଶତ୍ରୁକୁ ସନ୍ତପ୍ତକରି ପରେ କ୍ଷମାକରିବା ସାଧୁମାନଙ୍କର କାର୍ଯ୍ୟ, ଯେହେତୁ କୁଟିଳ ବଂଶାଦି ଦାରୁ ସମୂହକୁ ସନ୍ତପ୍ତ ନକରି ସରଳ କଲେ ତାହା ପୁନର୍ବାର ପ୍ରକୃତିସ୍ଥ ହୋଇଯାଏ । ୩୧ ।

ହେ ଯୁଧିଷ୍ଠିର ! ଆଚାର୍ଯ୍ୟମାନେ ଏହି ଶମ୍ବରଙ୍କ ମତକୁ ଏବଂ ସାଧୁ ନିଦର୍ଶନକୁ ପ୍ରଶଂସା କରନ୍ତି ନାହିଁ; କିନ୍ତୁ ସେମାନେ ଏହିପରି କହନ୍ତି ଯେ କ୍ରୋଧ ଏବଂ ବିନାଶ ନକରି ଶତ୍ରୁଗଣଙ୍କୁ ନିଜ ପୁତ୍ରମାନଙ୍କ ପ୍ରାୟ ପାଳନ କରିବା କର୍ତ୍ତବ୍ୟ । ରାଜା ଉଗ୍ରହେଲେ ସମସ୍ତ ପ୍ରାଣୀ ତାହାଙ୍କୁ ଦ୍ୱେଷ କରନ୍ତି ଏବଂ ମୃଦୁ ହେଲେ ସମସ୍ତେ ତାହାଙ୍କ ଅବଜ୍ଞା

କରନ୍ତି, ଅତଏବ ରାଜା ଉଗ୍ରତା ଓ ମୃଦୁତା ଉଭୟକୁ ଆଚରଣ କରିବେ । ୩୩ ।

ହେ ଭାରତ ! ଶତ୍ରୁମାନଙ୍କୁ ପ୍ରହାର କରିବା ପୂର୍ବରୁ ଓ ପ୍ରହାର କରିବା ସମୟରେ ପ୍ରିୟ ବାକ୍ୟ କହିବ ଏବଂ ପ୍ରହାର କରି ରୋଦନ ଓ ଶୋକ ପ୍ରକାଶ ପୂର୍ବକ ସେମାନଙ୍କ ପ୍ରତି କୃପା କରିବ । ୩୪ । ଆଉ ଆହତ ଓ ପ୍ରହର୍ତ୍ତା ପୁରୁଷମାନଙ୍କୁ ଗୋପନରେ ସମ୍ମାନପୂର୍ବକ ଏହି କଥା କହିବ ଯେ ମଦୀୟ ସୈନ୍ୟମାନେ ସଂଗ୍ରାମରେ ଶୂର ପୁରୁଷମାନଙ୍କୁ ନିହତକରି ଆମ୍ଭର ଅତିଶୟ ଅନିଷ୍ଟ କରିଅଛନ୍ତି । ଆମ୍ଭେ ବାରମ୍ବାର ସେମାନଙ୍କୁ କହିଥିଲୁଁ କିନ୍ତୁ ସେମାନେ ଆମ୍ଭର ବାକ୍ୟକୁ ରକ୍ଷାକରି ନାହାନ୍ତି । ୩୫ । ଆହା ସମରରେ ଅପରାଙ୍ମୁଖ ସୁପୁରୁଷ ଅତି ଦୁର୍ଲ୍ଲଭ । ଆମ୍ଭେ ତାଙ୍କର ଜୀବନକୁ ଆକାଙ୍କ୍ଷା କରୁଅଛୁଁ । ଈଦୃଶ ବଧ ଅତ୍ୟନ୍ତ ଅନୁପଯୁକ୍ତ ହୋଇଅଛି । ୩୬ । ଯେ ସଂଗ୍ରାମରେ ଏହି ଶୂରଙ୍କୁ ନିହତ କରିଅଛନ୍ତି, ସେ ଆମ୍ଭର ଅନିଷ୍ଟ ବ୍ୟତୀତ ଇଷ୍ଟ କରିନାହାନ୍ତି । ଏହି କଥା କହି ଗୋପନରେ ପ୍ରହର୍ତ୍ତାମାନଙ୍କୁ ସମ୍ମାନିତ କରିବେ । ୩୭ । ଜନ ସଂଗ୍ରହେଚ୍ଛୁକ ନରପତି ହତ ଓ ପ୍ରହର୍ତ୍ତା ପୁରୁଷମାନଙ୍କୁ ଏହିପରି କହି ଅପରାଧୀ ବ୍ୟକ୍ତିମାନଙ୍କର ବାହୁଯୁଗଳ ଗ୍ରହଣ ପୂର୍ବକ ସେମାନଙ୍କ ପ୍ରତି ଆକ୍ରୋଶ କରିବେ ।

ହେ ଭାରତ ! ନିର୍ଭୟ ଧର୍ମଜ୍ଞ ନୃପତି ଏହିପରି ସର୍ବାବସ୍ଥାରେ ସାନ୍ତ୍ୱନାପୂର୍ବକ କାର୍ଯ୍ୟ କଲେ ସମସ୍ତ ପ୍ରାଣିଙ୍କର ପ୍ରିୟ ହୁଅନ୍ତି ! ଇଚ୍ଛାନୁରୂପ ଭୋଗ କରିପାରନ୍ତି ଏବଂ ସମସ୍ତଙ୍କର ବିଶ୍ୱାସଭାଜନ ହୁଅନ୍ତି । ଅତଏବ ଯେଉଁ ରାଜା ପୃଥିବୀ ଭୋଗ କରିବାକୁ ଅଭିଳାଷୀ ହେବେ, ସେ ଅକପଟ ଭାବରେ ସମସ୍ତଙ୍କୁ ବିଶ୍ୱାସ କରିବେ ଏବଂ ସର୍ବତୋଭାବରେ ରକ୍ଷଣା-ବେକ୍ଷଣ କରିବେ । ୪୧ ।

———

## ଅଧ୍ୟାୟ—୨୦୩

ଯୁଧିଷ୍ଠିର କହିଲେ—ହେ ପିତାମହ ! ପ୍ରବଳ ପକ୍ଷ ଶତ୍ରୁ ମୃଦୁ କିମ୍ବା ତୀକ୍ଷ୍ଣ ହେଲେ, ନୃପତି ତାହାଙ୍କ ସହିତ ପ୍ରଥମତଃ କୀଦୃଶ ଆଚରଣ କରିବେ ? ତାହା ଆମ୍ଭଙ୍କୁ କହନ୍ତୁ । ୧ ।

ଭୀଷ୍ମ କହିଲେ—ହେ ଯୁଧିଷ୍ଠିର ! ଏପରି ସ୍ଥଳରେ ପଣ୍ଡିତମାନେ ବୃହସ୍ପତି ଓ ଇନ୍ଦ୍ରଙ୍କର ସମ୍ବାଦ ସମ୍ବଳିତ ପୁରାତନ ଇତିହାସକୁ ବର୍ଣ୍ଣନ କରନ୍ତି । ତାହା ଶ୍ରବଣ କର । ୨ । ପରବୀର ହନ୍ତା ସୁରରାଜ ଶଚୀପତି ବୃହସ୍ପତିଙ୍କୁ ଅଭିବାଦନପୂର୍ବକ କୃତାଞ୍ଜଳି ସହକାରେ ନିକଟବର୍ତ୍ତୀ ହୋଇ ପ୍ରଶ୍ନ କଲେ—ହେ ବ୍ରହ୍ମନ୍ ! ଆମ୍ଭେ ଅତନ୍ଦ୍ରିତ ହୋଇ ଅହିତ ବ୍ୟକ୍ତିମାନଙ୍କ ପ୍ରତି କିପରି ପ୍ରବୃତ୍ତ ହେବୁଁ ଏବଂ ସେମାନଙ୍କର ସମୁଚ୍ଛେଦ ନ କରି କି ଉପାୟରେ ସେମାନଙ୍କୁ ଦମନ କରିବୁଁ ? ଉଭୟ ସୈନ୍ୟ ସଂହତ ହୋଇ ସଂଗ୍ରାମ କଲେ ସାଧାରଣଙ୍କର ଜୟ ହୁଏ । ଅତଏବ ଆମ୍ଭେ କଣ କଲେ ଲକ୍ଷ୍ମୀ ଲଙ୍ଘିତା ଓ ସନ୍ତପ୍ତା ନ ହୋଇ ଆମ୍ଭଙ୍କୁ ପରିତ୍ୟାଗ କରିବେ ନାହିଁ ? ଧର୍ମ୍ମ, ଅର୍ଥ, କାମ ଏହି ତ୍ରିବର୍ଗ କୁଶଳ ପ୍ରତିଭାଶାଳୀ ରାଜଧର୍ମ୍ମ ବିଧାନବିତ୍ ବୃହସ୍ପତି ସୁରପତିଙ୍କୁ କହିଲେ । ୬ ।

ବୃହସ୍ପତି କହିଲେ—ରାଜା କଳହ ଦ୍ୱାରା କଦାଚ ଅହିତ ବ୍ୟକ୍ତିମାନଙ୍କୁ ଦମନ କରିବାକୁ ଅଭିଳାଷ କରିବେ ନାହିଁ । କାରଣ ବାଳକମାନେ ଅମର୍ଷ ଓ ଅକ୍ଷମାର ସେବା କରିଥାନ୍ତି । ୭ । ଶତ୍ରୁବଧାଭିଳାଷୀ ନୃପତି ଶତ୍ରୁମାନଙ୍କୁ ସାବଧାନ କରିବେ ନାହିଁ । କ୍ରୋଧ, ଭୟ ଓ ହର୍ଷକୁ ନିଜ ଶରୀରରେ ସଂଗୋପନ କରି ସେମାନଙ୍କୁ ବିଶ୍ୱାସ ନ କରି ବିଶ୍ୱସ୍ତ ପ୍ରାୟ ସେମାନଙ୍କ ସହିତ ବ୍ୟବହାର କରିବେ; ସେମାନଙ୍କୁ ନିତ୍ୟ ପ୍ରିୟ ବାକ୍ୟ କହିବେ । ସେମାନଙ୍କର କୌଣସି ଅପ୍ରିୟାଚରଣ କରିବେ ନାହିଁ । ଶୁଷ୍କ ବୈରରୁ ବିରତ ହେବେ ଏବଂ ମୁଖରତାକୁ ପରିତ୍ୟାଗ କରିବେ । ହେ ପୁରନ୍ଦର ! ଯେପରି ଉପଯୁକ୍ତ ମାଂସ ବିକ୍ରେତା ବ୍ୟାଧ ପକ୍ଷିବର ସଦୃଶ ଶବ୍ଦ କରି ବିହଙ୍ଗମାନଙ୍କୁ ବଶୀଭୂତ କରି ବଧ କରେ, ସେହିପରି ଉପଯୁକ୍ତ ମହୀପତି ଶତ୍ରୁମାନଙ୍କୁ ବଶୀଭୂତ କରି ସେମାନଙ୍କୁ ନିହତ କରିବେ । ୧୧ ।

ହେ ବାସବ ! ନରପତି ଶତ୍ରୁମାନଙ୍କୁ ପରାଭବ କରି ସତତ ସୁଖରେ ଶୟନ କରିବେ ନାହିଁ । ଦୁଷ୍ଟାତ୍ମା ଅମିତ୍ରଗଣ ଉତ୍ଥିତ ସଙ୍କର୍ଷାଗ୍ନି ପ୍ରାୟ, ସତତ ଜାଗରିତ ହେଉଥାନ୍ତି । ୧୨ । ଜୟର ନିଶ୍ଚୟ ନ ହେଲେ ଯୁଦ୍ଧ କରିବା କର୍ତ୍ତବ୍ୟ ନୁହେଁ । ସୁତରାଂ ସେମାନଙ୍କର ବିଶ୍ୱସ୍ତ ଓ ପ୍ରିୟ ହୋଇ ସେମାନଙ୍କୁ ବଶୀଭୂତ କରି ଅର୍ଥ ସାଧନରେ ପ୍ରବୃତ୍ତ ହେବେ ।୧୩। ଶତ୍ରୁମାନେ ଉପେକ୍ଷା କିମ୍ବା ଅବଜ୍ଞା କଲେ ସୁଦ୍ଧା ସ୍ୱୟଂ ମନେ ମନେ ପରିଜିତ ନ ହୋଇ ମହାତ୍ମା ମନ୍ତ୍ରବିତ୍ ଅମାତ୍ୟବୃନ୍ଦଙ୍କ ସହିତ ମନ୍ତ୍ରଣା ସ୍ଥିର କରିବେ । ପରେ ଶତ୍ରୁମାନେ କିଞ୍ଚିତ ବିଚଳିତ ହେଲେ ତତ୍କାଳରେ ସେମାନଙ୍କୁ ପ୍ରହାର କରିବେ ଏବଂ ଆପ୍ତକାରୀ ପୁରୁଷମାନଙ୍କ ଦ୍ୱାରା ସେମାନଙ୍କର ସେନା ଓ ଦଣ୍ଡକୁ ଦୂଷିତ କରିବେ ।୧୫। ନରପତି ଶତ୍ରୁମାନଙ୍କର ଆଦି ମଧ୍ୟ ଓ ଅନ୍ତକୁ ଅବଗତ ହୋଇ ପ୍ରଚ୍ଛନ୍ନ ଭାବରେ ମନୋମଧ୍ୟରେ ବିଷମଭାବ ଧାରଣ ପୂର୍ବକ ସେମାନଙ୍କର ବଳସବୁ ଜାଣି ଭେଦ, ଉତ୍କୋଚ କିମ୍ବା ଔଷଧଦ୍ୱାରା ସେମାନଙ୍କୁ ଦୂଷିତ କରିବେ । ପରନ୍ତୁ ଶତ୍ରୁମାନଙ୍କ ସହିତ କଦାପି ସଂସର୍ଗ କରିବାକୁ ଇଚ୍ଛା କରିବେ ନାହିଁ । ୧୬ । ନରପତି ଶତ୍ରୁମାନଙ୍କୁ ନିହତ କରିବା ନିମିତ୍ତ ବହୁକାଳ ଅପେକ୍ଷା କରିବେ । ସେମାନେ ଯହିଁରେ ବିଶ୍ୱାସ ଲାଭ କରିବେ, ତଦ୍ରୂପ କାର୍ଯ୍ୟ କରି ବହୁକାଳ ଆକାଙ୍କ୍ଷା କରି କାଳକ୍ଷେପଣ କରିବେ । ୧୮ । ସମୁଦାୟ ଶତ୍ରୁମାନଙ୍କୁ ବିନଷ୍ଟ ନ କରି ସେମାନଙ୍କୁ ବିଜୟ ପ୍ରଦର୍ଶନ କରିବେ । ନୃପତି ଶତ୍ରୁଙ୍କ ପ୍ରତି ଶଲ୍ୟ ନିକ୍ଷେପ କରିବେ ନାହିଁ ଏବଂ ବାକ୍ୟବାଣ ଦ୍ୱାରା ମଧ୍ୟ ସେମାନଙ୍କୁ କ୍ଷତ କରିବେ ନାହିଁ । ୧୯ । ଶତ୍ରୁ ବଧାଭିଳାଷୀ ପୁରୁଷଙ୍କର ଶତ୍ରୁବିନାଶ କାଳ ଗତ ହେଲେ ସେ ତାହାକୁ ପୁନଃପ୍ରାପ୍ତ ହୁଅନ୍ତି ନାହିଁ । ଅତଏବ ସମୟ ଉପସ୍ଥିତ ହେଲେ ନୃପତି ଶତ୍ରୁଗଣଙ୍କୁ ପ୍ରହାର କରିବେ, କଦାପି ସମୟାତିବାହିତ କରିବେ ନାହିଁ ।୨୦। ଯେଉଁ କାଳ କାଳାକାଙ୍କ୍ଷୀ ପୁରୁଷଙ୍କୁ ଅତିକ୍ରମ କରେ, କର୍ମ୍ମଚିକୀର୍ଷୁ ପୁରୁଷଙ୍କ ପକ୍ଷରେ ପୁନର୍ବାର ସେହିକାଳ ଲାଭ ହେବା ଦୁର୍ଘଟ ହୁଏ । ୨୧ । ଅକାଳରେ ଶତ୍ରୁପ୍ରାପ୍ତ ହେଲେ ନରପତି ସାଧୁସମ୍ମତ ସାମର୍ଥ୍ୟ ସଂଗ୍ରହ କରି ସେମାନଙ୍କୁ ଶିକ୍ଷିତ କରିବେ । ପରନ୍ତୁ ସେମାନଙ୍କୁ ପ୍ରାପ୍ତ ହୋଇ ସ୍ୱକାର୍ଯ୍ୟ ସାଧନ କିମ୍ବା ସେମାନଙ୍କୁ ପୀଡ଼ନ କରିବେ ନାହିଁ । ୨୨ । ଉପଯୁକ୍ତ ମହୀପତି କାମ କ୍ରୋଧ ଓ ଅହଂକାର ପରିତ୍ୟାଗ କରି ପୁନଃ ପୁନଃ ଅହିତମାନଙ୍କର ଛିଦ୍ର ଅନ୍ୱେଷଣ କରିବେ । ୨୩ ।

ହେ ସୁରୋତ୍ତମ ଶକ୍ର ! ମୃଦୁତା, ଦଣ୍ଡ, ଆଳସ୍ୟ ଓ ପ୍ରମାଦ ଏହି ଗୃହୋଟି ଏବଂ ମାୟା ସବୁ ସୁନ୍ଦର ରୂପରେ ବିହିତ ହୋଇଅଛି । ଏହି ସମସ୍ତ ଅବିଚକ୍ଷଣ ପୁରୁଷଙ୍କୁ ଅବସନ୍ନ କରେ, ଅତଏବ ମହୀପତି ମୃଦୁତାଦି ଉକ୍ତ ଗୃହୋଟି ଗୁଣକୁ ନିହତ କରେ ଏବଂ ମାୟା ସବୁକୁ ପରିତ୍ୟାଗ କଲେ ଶତ୍ରୁ ସଂହାରରେ ସମର୍ଥ ହୁଅନ୍ତି । ୨୫ । ନୃପତି ଏକାକୀ ଗୁପ୍ତ ମନ୍ତ୍ର ଯେତେଦୂର ଗୋପନ କରିବାକୁ ସମର୍ଥ ହେବେ, ତେତେଦୂର ଗୋପନ କରିବେ କାରଣ ସଚିବମାନେ ଗୁହ୍ୟ ମନ୍ତ୍ରକୁ ଗୋପନ କରନ୍ତି ଏବଂ ପରସ୍ପର ପ୍ରକାଶ ମଧ୍ୟ କରନ୍ତି । ୨୬ । ପରନ୍ତୁ ଏକାକୀ ମନ୍ତ୍ରଣା ବିଷୟରେ ଏକାନ୍ତ ଅସମର୍ଥ ହେଲେ ଅନ୍ୟ ସହିତ ମନ୍ତ୍ରଣା କରିବେ । ପରେ ଶତ୍ରୁମାନେ ଅଦୃଷ୍ଟ ଓ ଦୂରସ୍ଥ ହେଲେ ସେମାନଙ୍କ ପ୍ରତି ଚତୁରଙ୍ଗିଣୀ ସେନା ନିୟୋଗ କରିବେ । ୨୭ । ରାଜା ପ୍ରଥମତଃ ଅମିତ୍ରମାନଙ୍କ ପ୍ରତି ଭେଦ ଓ ସାମ ଉଭୟକୁ ପ୍ରୟୋଗ କରିବେ, ପରେ ସମୟ ଉପସ୍ଥିତ ହେଲେ, ସେହି ଶତ୍ରୁଗଣଙ୍କ ପ୍ରତି ସେନା ନିୟୋଗ କରିବାରେ ପ୍ରବୃତ୍ତ ହେବେ । ୨୮ ! ରାଜା କାଳକ୍ରମରେ ବଳବାନ୍ ଶତ୍ରୁଠାରେ ପ୍ରଣତ ହେବେ, ପରନ୍ତୁ ଶତ୍ରୁ ପ୍ରମତ୍ତ ହେଲେ ରାଜା ପ୍ରମତ୍ତ ହୋଇ ତାହାଙ୍କର ବଧ ଅନୁସନ୍ଧାନ କରିବେ । ୨୯ । ମହୀପତି ପ୍ରଣିପାତ, ଦାନ ଏବଂ ମଧୁର ବଚନ ଦ୍ୱାରା ଅମିତ୍ରଗଣଙ୍କର ତୁଷ୍ଟି ସମ୍ପାଦନ କରିବେ କିନ୍ତୁ କଦାପି ସେମାନଙ୍କୁ ଶଙ୍କିତ କରିବେ ନାହିଁ । ୩୦ । ଯେଉଁ ଶତ୍ରୁମାନେ ଶଙ୍କିତ ହୋଇ ଅଛନ୍ତି, ରାଜା ତାଦୃଶ ଶତ୍ରୁମାନଙ୍କର ସ୍ଥାନ ବର୍ଜନ କରିବେ, ସେମାନଙ୍କୁ କଦାପି ବିଶ୍ୱାସ କରିବେ ନାହିଁ । ଯେହେତୁ ସେମାନେ ନିରାକୃତ ହୋଇ ସତତ ସତର୍କ ଥାନ୍ତି । ୩୧ ।

ହେ ସୁରପତେ ! ନିରାକୃତ ଶତ୍ରୁମାନଙ୍କର ଦୁଷ୍କର କାର୍ଯ୍ୟ କିଛି ନାହିଁ । ଏହିପରି କଥିତ ଅଛି ଯେ, ବିବିଧ ବୃତ୍ତି ମାନବଗଣଙ୍କର ଐଶ୍ୱର୍ଯ୍ୟ ପ୍ରାୟ, ସେମାନେ ଯୋଗ ଅବଲମ୍ବନ କରି ପୁନର୍ବାର ମିଳିତ ହେବା ନିମିତ୍ତ ଯତ୍ନ କରନ୍ତି । ଅତଏବ ହେ ସୁରୋତ୍ତମ ! ମହୀପତି ମିତ୍ର ଓ ଅମିତ୍ର ବିଶେଷ କରି ବିଚାର କରିବେ ।୩୨ ।

ହେ ସୁରରାଜ ! ରାଜା ମୃଦୁ ସ୍ୱଭାବ ହେଲେ ପ୍ରଜାଗଣ ତାହାଙ୍କୁ ଅବଜ୍ଞା କରନ୍ତି ଏବଂ ଉଗ୍ର ସ୍ୱଭାବ ହେଲେ ତାଙ୍କଠାରୁ ଉଦ୍‌ବିଗ୍ନ ହୁଅନ୍ତି; ଅତଏବ ତୁମ୍ଭେ କେବଳ ମୃଦୁ ଓ ଉଗ୍ର ନହୋଇ ଉଗ୍ର ଏବଂ ମୃଦୁ ଉଭୟ

ମାବକୁ ଅବଲମ୍ବନ କର । ୩୪ । ଯେପରି ବେଗଶାଳୀ ସଲିଳ ଦ୍ୱାରା ସମ୍ପୂର୍ଣ୍ଣ ରୂପରେ ପରିପ୍ଲୁତ ତଟକୁ ନିଯୁତ ବିଦାରଣ କଲେ, ତାହାର ବାଧା ହୁଏ, ତଦ୍ରୂପ ନୃପତି ପ୍ରମତ୍ତ ହେଲେ ତାହାଙ୍କ ରାଜ୍ୟର ବାଧା ହୁଏ । ୩୫ ।

ହେ ପୁରନ୍ଦର ! ନୃପତି ସାମ, ଦାନ, ଦଣ୍ଡ, ଓ ଭେଦ ଏହିସବୁ ଉପାୟକୁ ଏକ କାଳରେ ଶତ୍ରୁପ୍ରତି ପ୍ରୟୋଗ କରିବେ ନାହିଁ, ପରନ୍ତୁ ମେଧାବୀ ମହୀପତି ସମୁଦାୟ ଉପାୟ ପ୍ରୟୋଗରେ ସମର୍ଥ ହେଲେ ହେଁ ତାହା ନ କରି ଶିଷ୍ଟମାନଙ୍କ ମଧ୍ୟରେ ଯେଉଁ ବ୍ୟକ୍ତି ନିପୁଣ, ତାହାଙ୍କ ପ୍ରତି ଏହି ଉପାୟମାନଙ୍କ ମଧ୍ୟରୁ ଗୋଟିଏ ଗୋଟିଏ ବଣ୍ଟନ କରି ପ୍ରୟୋଗ କରିବେ । ୩୭ । ଯେତେବେଳେ ଘୋଟକ, ହସ୍ତୀ ଓ ରଥ ସମୂହ ସମାକୁଳ ବହୁଳ ପଦାତି ଓ ଯନ୍ତ୍ର ଦ୍ୱାରା ପରିବୃତ୍ତ ଷଡ଼ଙ୍ଗିଣୀ ସେନା ଅନୁରକ୍ତ ହେବେ ଏବଂ ଯେତେବେଳେ ନୃପତି ଶତ୍ରୁ ଅପେକ୍ଷା ନିଜର ବହୁବିଧ ବୃଦ୍ଧି ବିବେଚନା କରିବେ, ତେତେବେଳେ ବିଚାର ନ କରି ପ୍ରକାଶ୍ୟ ରୂପରେ ଶତ୍ରୁମାନଙ୍କୁ ସଂହାର କରିବାରେ ପ୍ରବୃତ୍ତ ହେବେ ।୩୯। ଶତ୍ରୁମାନଙ୍କ ପ୍ରତି ସାମ ଉପାୟ ପ୍ରୟୋଗ ପ୍ରଶସ୍ତ ନୁହେ, ଅତଏବ ମହୀପତି ତାହା ନକରି ସେମାନଙ୍କ ପ୍ରତି ଦେହସ୍ୟ ଦଣ୍ଡ ବିଧାନ କରିବେ । ପରନ୍ତୁ ମୃଦୁ ଦଣ୍ଡ, ଯୁଦ୍ଧାର୍ଥ ଯାତ୍ରା, ଶସ୍ୟ ନାଶ, ବିଷାଦ ଦ୍ୱାରା ସଲିଳ ଦୂଷଣ ଓ ପୁନଃ ପୁନଃ ପ୍ରକୃତି ବିଚାର କରିବେ ନାହିଁ । ୪୦ । ପରନ୍ତୁ ସେମାନଙ୍କ ପ୍ରତି ନାନାବିଧ ମାୟା, ସେମାନଙ୍କର ପରସ୍ପର ଉତ୍‌ଥାପନାଦି ଏବଂ ଯହିଁରେ ନିଜର ଅପଯଶ ନହୁଏ, ତାଦୃଶ କପଟ ବିଧାନ କରିବେ । ପରେ ସେମାନେ ନିଜର ପୁର କିମ୍ବା ରାଷ୍ଟ୍ର ମଧ୍ୟରେ ପ୍ରବିଷ୍ଟ ହେଲେ ଆପ୍ତ ପୁରୁଷମାନଙ୍କୁ ସେମାନଙ୍କ ନିକଟରେ ରଖିବେ । ୪୧ । ହେ ବଳବୃତ୍ତସୂଦନ ! ଭୂପାଳମାନେ ଅମିତ୍ରଗଣଙ୍କର ଅନୁଗାମୀ ହୋଇ ସେମାନଙ୍କର ପୁର ଏବଂ ସ୍ୱଦିଷ୍ଟିତ ଯାବତୀୟ ଭୋଗ୍ୟବସ୍ତୁ ଜୟପୂର୍ବକ ନିଜ ପୁରରେ ଯଥାବିଧି ନୀତ ସଂସ୍ଥାପିତ କରିବେ । ୪୨ ।

ହେ ବଜ୍ରିନ୍ ! ନୃପତିଗଣ ଅମାତ୍ୟ ବର୍ଗଙ୍କୁ ଗୂଢ଼ଧନ ପ୍ରଦାନ କରି ନିଜର ଭୋଗ୍ୟବସ୍ତୁ ସବୁ ସଙ୍କୋଚ ପୂର୍ବକ "ଆମ୍ଭର ଅମାତ୍ୟଗଣ ଦୁଷ୍ଟ; ସେମାନେ ଆମ୍ଭକୁ ପରିତ୍ୟାଗ କରି ଅପର ରାଜାଙ୍କର ଶରଣାଗତ ହୋଇ ଅଛନ୍ତି । ଲୋକଙ୍କ ଠାରେ ସେମାନଙ୍କର ଏହିପରି ଦୋଷ କୀର୍ତ୍ତନ କରି

ପୁର ପୁରରେ ଓ ପର ରାଷ୍ଟ୍ରରେ ସେମାନଙ୍କୁ ନିଯୋଜିତ କରିବେ । ୪୩ । ଆଉ ଅପର ଶାସ୍ତ୍ରବିତ୍, ସୁସଜ୍ଜିତ, ଶାସ୍ତ୍ର ବିଧାନ ଦର୍ଶୀ, ସୁଶିକ୍ଷିତ ଓ ଭାଷ୍ୟ କଥା ବିଶାରଦ ଅମାତ୍ୟଗଣଙ୍କ ଦ୍ୱାରା ଶତ୍ରୁପୁର ମଧ୍ୟରେ ମୃତ୍ୟୁର ଅଧିଷ୍ଠାତ୍ରୀ ଦେବତାଙ୍କୁ ସଂସ୍ଥାପିତ କରିବେ । ୪୪ ।

ଇନ୍ଦ୍ର କହିଲେ—ହେ ଦ୍ୱିଜସତ୍ତମ ! ଦୁଷ୍ଟର ଚିହ୍ନ କ'ଣ ? ଦୁଷ୍ଟକୁ କି ପ୍ରକାର ଅବଗତ ହେବ ? ଏହା ପ୍ରଶ୍ନ କରୁଅଛୁଁ, ଆପଣ ବିସ୍ତାର କରି ବର୍ଣ୍ଣନ କରନ୍ତୁ । ୪୫ ।

ବୃହସ୍ପତି କହିଲେ—ଯେଉଁ ବ୍ୟକ୍ତି ପରୋକ୍ଷରେ ଲୋକର ଦୋଷ ପ୍ରକାଶ କରେ, ସଦ୍‌ଗୁଣ ସମ୍ପନ୍ନ ମନୁଷ୍ୟମାନଙ୍କର ଅସୂୟା କରେ ଏବଂ ଅନ୍ୟ ବ୍ୟକ୍ତି ତାହାର ଗୁଣ କୀର୍ତ୍ତନ କଲେ, ପରାଙ୍‌ମୁଖ ହୋଇ ତୂଷ୍ଣୀ ଭାବରେ ଅବସ୍ଥାନ କରେ, ତାହାକୁ ଦୁଷ୍ଟ ବିବେଚନା କରିବେ । ୪୬ । ତାଦୃଶ ବ୍ୟକ୍ତି ତୂଷ୍ଣୀ ଭାବରେ ଅବସ୍ଥାନ କଲେ ତାହାର ଦୁଷ୍ଟତାର କାରଣ ଜାଣି ହୁଏ ନାହିଁ, କିନ୍ତୁ ତତ୍କାଳରେ ସେହି ବ୍ୟକ୍ତି ଦୀର୍ଘ ନିଶ୍ୱାସ ପରିତ୍ୟାଗ ଓଷ୍ଠ ସଦଂଶନ, ଶିରଃ କମ୍ପନ ଓ ନିଯୃତ ସଂସର୍ଗ କରେ ଏବଂ ଅସ୍ପଷ୍ଟ ହୋଇ ସମ୍ଭାଷଣ କରେ ଓ ପରୋକ୍ଷରେ ସ୍ୱୀକୃତ କାର୍ଯ୍ୟ ସମ୍ପାଦନ କରେ ନାହିଁ, ମଧ୍ୟ ଅପରୋକ୍ଷ ହେଲେ ତଦ୍‌ବିଷୟରେ ଉଲ୍ଲେଖ କରେ ନାହିଁ । ୪୭ । ସ୍ୱୟଂ ପୃଥକ ଆସି ଭୋଜନାଦି କରେ ଏବଂ ଅଦ୍ୟ ଭୋଜନାଦି ଯଥାବିଧି ହୋଇନାହିଁ ବୋଲି ପରୋକ୍ଷରେ ତାହାର ନିନ୍ଦା କରେ, ଅତଏବ ଆସନ, ଶୟନ ଓ ଯାନାଦିରେ ଦୁଷ୍ଟମାନଙ୍କର ଅଭିପ୍ରାୟକୁ ଲକ୍ଷ୍ୟ କରିବା ଉଚିତ । ୪୯ । ହେ ରାଜନ୍ ! ଯେଉଁ ବ୍ୟକ୍ତି ଆର୍ତ୍ତ ପୁରୁଷଙ୍କ ଠାରେ ଆର୍ତ୍ତି ହୁଏ, ଏବଂ ପ୍ରିୟବ୍ୟକ୍ତି ହିତ ପ୍ରୀତ ହୁଏ, ତାହାକୁ ମିତ୍ର ବୋଲି ଜାଣିବ । ଏହାର ବିପରୀତ ହେଲେ ଶତ୍ରୁର ଲକ୍ଷଣ ବୋଲି ବିବେଚନା କରିବ । ୫୦ । ହେ ତ୍ରିଦଶନାଥ ! ଅମ୍ଭେ ଆପଣଙ୍କୁ ଏହିସବୁ ଲକ୍ଷଣ ଯେପରି କହିଲୁ, ତାହା ବିଶେଷ କରି ବୋଧ କରିବ । ଦୁଷ୍ଟ ପୁରୁଷମାନଙ୍କର ସ୍ୱଭାବ ଅତୀବ ବଳବତ୍ତର । ୫୧ ।

ହେ ସୁରସତ୍ତମ ! ମଦୁକ୍ତ ଏହି ଦୁଷ୍ଟର ବିଜ୍ଞାନ ଶ୍ରବଣ କରି ଶାସ୍ତ୍ରାନୁସାରେ ଏହାର ଯଥାବତ୍ ତତ୍ତ୍ୱକୁ ଅବଗତ ହେଉନ୍ତୁ । ୫୨ ।

ଭୀଷ୍ମ କହିଲେ—ବୃହସ୍ପତିଙ୍କର ତାଦୃଶ ବଚନାନୁସାରେ ଇନ୍ଦ୍ରଦେବ ଶତ୍ରୁ ନିବର୍ହଣରେ ରତ ହୋଇ ବିଜୟାର୍ଥ ତଦ୍ରୂପ ଆଚରଣ ପୂର୍ବକ ସମସ୍ତଙ୍କୁ ବଶୀଭୂତ କରିଥିଲେ । ୫୩ ।

## ଅଧ୍ୟାୟ—୧୦୪

ଯୁଧିଷ୍ଠିର କହିଲେ—ହେ ପିତାମହ ! ଧାର୍ମିକ ନୃପତି ଅମାତ୍ୟଗଣଙ୍କ କର୍ତ୍ତୃକ ପ୍ରବାଧିତ ହୋଇ, କୋଷ ଓ ଦଣ୍ଡରୁ ଚ୍ୟୁତ ହୋଇ ଏବଂ ଅର୍ଥ ଲାଭରେ ଅସମର୍ଥ ହୋଇ ସୁଖାଭିଳାଷୀ ହେଲେ କୀଦୃଶ ଆଚରଣ କରିବେ ? ୧ ।

ଭୀଷ୍ମ କହିଲେ—ହେ ଯୁଧିଷ୍ଠିର ! ଏହିପରି ସ୍ଥଳରେ ପଣ୍ଡିତମାନେ କ୍ଷେମଦର୍ଶୀ ନରପତିଙ୍କର ଯେଉଁ ଇତିହାସକୁ ବର୍ଣ୍ଣନ କରନ୍ତି ତାହା ଆମ୍ଭେ ତୁମ୍ଭଙ୍କୁ କହୁଅଛୁଁ ଶ୍ରବଣ କର । ୨ । ଆମ୍ଭେମାନେ ଶୁଣିଅଛୁଁ, ପୂର୍ବେ ନୃପସୁତ କ୍ଷେମଦର୍ଶୀ ଶତ୍ରୁମାନଙ୍କ କର୍ତ୍ତୃକ କ୍ଷୀଣବଳ ଓ ଘୋରତର ଆପଦରେ ପତିତ ହୋଇ କାଳକବୃକ୍ଷୀୟ ମୁନିଙ୍କ ନିକଟକୁ ଅଗମନ ପୂର୍ବକ ତାହାଙ୍କୁ ପ୍ରଶ୍ନ କଲେ ।୩। ରାଜା କହିଲେ—ହେ ବ୍ରହ୍ମନ୍ ! ମାଦୃଶ ଅର୍ଥଭାଗୀ ପୁରୁଷ ଅର୍ଥ ଲାଭରେ ବାରମ୍ବାର ଯତ୍ନବାନ ହୋଇ ରାଜ୍ୟ ଲାଭ କରି ନ ପାରିଲେ କିପରି ଆଚରଣ କରିବେ ? ୪ ।

ହେ ସତ୍ତମ ! ମାଦୃଶ ପୁରୁଷର ମରଣ, ଦୈନ୍ୟ, ପରସଂଶ୍ରୟ ଓ କ୍ଷୁଦ୍ରାଶ୍ରୟ ବ୍ୟତୀତ ଯାହା କର୍ତ୍ତବ୍ୟ, ତାହା ଆମ୍ଭଙ୍କୁ କହନ୍ତୁ । ୫ । ଭବାଦୃଶ ଧର୍ମଜ୍ଞ କୃତଜ୍ଞ ପୁରୁଷ ଶାରୀରିକ ଓ ମାନସିକ ବ୍ୟାଧିଯୁକ୍ତ ମନୁଷ୍ୟର ଆଶ୍ରୟ ଅଟନ୍ତି । ୬ । ପୁରୁଷ ବିଷୟଭୋଗରୁ ବିରତ ହୋଇ ଶକ୍ତି ଓ ପ୍ରୀତି ପରିତ୍ୟାଗ ପୂର୍ବକ ବୁଦ୍ଧିମୟ ବସ୍ତୁ ଲାଭ କଲେ ସୁଖ ଭୋଗ କରନ୍ତି । ୭ । ଯେଉଁମାନେ ସୁଖକୁ ଅର୍ଥାୟତ୍ତ ବୋଲି ବିବେଚନା କରନ୍ତି ସେମାନଙ୍କୁ ଆମ୍ଭେ ଅନୁଶୋଚନା କରୁଁ । ଯେ ହେତୁ ସ୍ୱପ୍ନଲବ୍ଧ ଧନପ୍ରାୟ ଆମ୍ଭର ବହୁଳ ଅର୍ଥ ନଷ୍ଟ ହୋଇଅଛି । ୮ । ଅହୋ ! ଆମ୍ଭେମାନେ ଏହି ଅବିଦ୍ୟମାନ ଧନର ଆଶା ପରିତ୍ୟାଗ କରି ନ ପାରୁଥିବା ସ୍ଥଳେ ଯେଉଁମାନେ ବିଦ୍ୟମାନ ବିପୁଳ ଅର୍ଥକୁ ପରିତ୍ୟାଗ କରନ୍ତି, ସେମାନେ କେତେ କଠିନ କରି ପାରନ୍ତି ? ୯ ।

ହେ ବ୍ରହ୍ମନ୍ ! ଅମ୍ଭେ ଶ୍ରୀଭ୍ରଷ୍ଟ ହୋଇ ଅତିଶୟ ଆର୍ତ୍ତ, ଦୀନ ଓ ଅଦ୍ଭୁତ ଅବସ୍ଥାକୁ ପ୍ରାପ୍ତ ହୋଇଅଛୁଁ, ବର୍ତ୍ତମାନ ଯଦ୍ଦ୍ୱାରା ସୁଖଲାଭ ହେବ, ତାହା ଆମ୍ଭଙ୍କୁ ଉପଦେଶ ପ୍ରଦାନ କରନ୍ତୁ । ୧୦ । ମହାଦ୍ୟୁତି କାଳକ-ବୃକ୍ଷୀୟ ମୁନି ରାଜନନ୍ଦନ ଧୀମାନ୍ କୌଶଲ୍ୟ କ୍ଷେମଦର୍ଶୀଙ୍କ କର୍ତ୍ତୃକ ଏହିପରି ଉକ୍ତ ହୋଇ ପ୍ରତ୍ୟୁତ୍ତର କଲେ । ୧୧ ।

ମୁନି କହିଲେ—ହେ ରାଜନ୍ ! ଯଦ୍ୟପି ଆପଣ "ଅମ୍ଭେ ଏବଂ ଅମ୍ଭର ଯାବତୀୟ ବସ୍ତୁ ବିଦ୍ୟମାନ ଅଛୁ", "ତତ୍ସମସ୍ତ ଅନିତ୍ୟ" ଏହିପରି ଜାଣି ଅଛନ୍ତି, ତେବେ ପୂର୍ବେ ଆପଣଙ୍କର ଈଦୃଶ ଜ୍ଞାନ କରିବା ଉଚିତ ଥିଲା । ୧୨ । ଆପଣ ଯେଉଁ ସବୁ ବସ୍ତୁ ବିଦ୍ୟମାନ ଅଛି ବୋଲି ମନେ କରୁ ଅଛନ୍ତି, ତତ୍ସମସ୍ତ ନାହିଁ, ଏପରି ବୋଧ କରନ୍ତୁ, କାରଣ ପ୍ରାଜ୍ଞ ପୁରୁଷ ଏହିପରି ଜ୍ଞାନକଲେ ଅତିଶୟ ଆପଦାପନ୍ନ ହୋଇସୁଦ୍ଧା ବ୍ୟଥିତ ହୁଅନ୍ତି ନାହିଁ । ୧୩ । ଯାହା ହୋଇ ଯାଇଅଛି ଏବଂ ଯାହା ହେବ, ତତ୍ସମସ୍ତ ଆଉ ହେବ ନାହିଁ । ଏହିପରି ନିଜର ବେଦ୍ୟ ବିଷୟକୁ ବିଦିତ ହେଲେ ଅଧର୍ମରୁ ମୁକ୍ତ ହେବେ । ୧୪ । ପୂର୍ବେ ପୂର୍ବତନ ରାଜାମାନଙ୍କର ଯେଉଁସବୁ ଧନାଦି ଥିଲା ଏବଂ ପରେ ମଧ୍ୟ ଯାହା ଥିଲା, ଆପଣାର ସେ ସବୁ କିଛି ନାହିଁ । ଅତଏବ ସେହିସବୁ ବିଷୟରୁ ମମତା ପରିତ୍ୟାଗ କରି ଶାନ୍ତ ହେଉନ୍ତୁ । ଏହା ଜାଣି କେଉଁ ପୁରୁଷ ଶୀର୍ଣ୍ଣ ହୁଏ ? । ୧୫ । ଯାହା ହୋଇଅଛି ତାହା ପୁନର୍ବାର ହୁଏ ନାହିଁ । ଯାହା ହୋଇ ନାହିଁ ତାହା ହୋଇଥାଏ । ଶୋକାର୍ତ୍ତ ପୁରୁଷଙ୍କଠାରେ ଧନୋପାର୍ଜ୍ଜନର ସମର୍ଥ ଥାଏ ନାହିଁ; ଅତଏବ ଆପଣ କୌଣସି ପ୍ରକାରରେ ଶୋକ କରନ୍ତୁ ନାହିଁ । ୧୬ ।

ହେ ରାଜନ୍ ! ଆଜି ଆପଣଙ୍କର ପିତା ଓ ପିତାମହ କେଉଁଠାରେ ଅଛନ୍ତି ? ଅଦ୍ୟ ଆପଣ ସେମାନଙ୍କୁ ଦେଖି ପାରୁ ନାହାନ୍ତି ଏବଂ ସେମାନେ ମଧ୍ୟ ଆପଣଙ୍କୁ ଦେଖି ପାରୁ ନାହାନ୍ତି । ୧୭ । ଆପଣ ନିଜ ଦେହର ଅନିତ୍ୟତାକୁ ଦର୍ଶନ କରି ସେମାନଙ୍କ ନିମିତ୍ତ କାହିଁକି ଅନୁଶୋଚନା କରୁ-ଅଛନ୍ତି । ବୁଦ୍ଧିଦ୍ୱାରା ଏହା ବିବେଚନା କରିବେ ଯେ କୌଣସି ବିଷୟ ସୁଦ୍ଧା ନିତ୍ୟ ହେବ ନାହିଁ । ୧୮ । ହେ ନୃପତେ ! ଅମ୍ଭେ ଆପଣ ଏବଂ ଆପଣଙ୍କର ସୁହୃଦଗଣ କେହି ରହିବେ ନାହିଁ । ସମସ୍ତେ ମୃତ୍ୟୁଗ୍ରାସରେ ପତିତ ହେବେ ଏବଂ ସମସ୍ତ ବସ୍ତୁ ମଧ୍ୟ ବିନଷ୍ଟ ହେବ । ୧୯ । ଯେଉଁ ମାନବ ଗଣ ବିଂଶ

କିମ୍ବା ଶତ ବର୍ଷ ଜୀବିତ ଅଛନ୍ତି, ସେମାନେ ଶତବର୍ଷ ମଧ୍ୟରେ ସମସ୍ତେ ମରିବେ । ଯଦ୍ୟପି ପୁରୁଷ ମହତ ବୃତ୍ତିରୁ ନିବୃତ୍ତ ନ ହୁଅନ୍ତି, ତାହା-ହେଲେ "ଏହା ଆମ୍ଭର ନୁହେଁ" ଏହିପରି ମନେକରି ନିଜର ଇଷ୍ଟସାଧନ କରିବେ । ୨୧ । ଲୋକେ ଯେଉଁ ଅନାଗତ ଓ ଅତୀତ ବସ୍ତୁକୁ ଆମ୍ଭର ନୁହେଁ ବୋଲି ଜ୍ଞାନ କରନ୍ତି ଏବଂ ଭାଗ୍ୟକୁ ବଳବତ୍ତର ବୋଲି ମନେ କରନ୍ତି, ପଣ୍ଡିତମାନେ ତାହାକୁ ନିର୍ମମତା ଓ ସଧର୍ମାନଙ୍କର ସ୍ଥାନବୋଲି କହନ୍ତି । ୨୨ । ଭବାଦୃଶ୍ୟ ଅନାଢ୍ୟ ଓ ବୁଦ୍ଧି ପୌରୁଷ ସମ୍ପନ୍ନ ଅଧିକତର ମାନବ ଜୀବିତ ଅଛନ୍ତି ଏବଂ ରାଜ୍ୟମଧ୍ୟ ଶାସନ କରନ୍ତି, ପରନ୍ତୁ, ଆପଣଙ୍କ ପ୍ରାୟ ସେମାନେ ଶୋକ କରନ୍ତି ନାହିଁ । ଅତଏବ ଆପଣ ମଧ୍ୟ ଶୋକ କରନ୍ତୁ ନାହିଁ । ଆପଣ କଣ ସେହି ବୁଦ୍ଧି ଓ ପୌରୁଷସମ୍ପନ୍ନ ପୁରୁଷଙ୍କ ଅପେକ୍ଷା ଶ୍ରେଷ୍ଠ କିମ୍ବା ସେମାନଙ୍କର ସମାନ ନୁହନ୍ତି । ୨୪ ।

ରାଜା କହିଲେ—ହେ ଦ୍ୱିଜ । ଯଦୃଚ୍ଛାବଶତଃ ଯେଉଁସବୁ ବସ୍ତୁ ଲବ୍ଧ ହୁଏ, ତାହାକୁ ଆମ୍ଭେ ରାଜ୍ୟବୋଲି ବୋଧ କରୁଁ ଏବଂ ସେହିସବୁ ମହାକାଳ କର୍ତ୍ତୃକ ହୃତ ହୋଇଥାଏ । ଅତଏବ ହେ ତପୋଧନ । ଆମ୍ଭେ ଯଥା ଲବ୍ଧ ଧନଦ୍ୱାରା ଜୀବିକା ନିର୍ବାହ ପୂର୍ବକ, ସ୍ରୋତପ୍ରାୟ ମହାକାଳ କର୍ତ୍ତୃକ ହ୍ରିୟମାଣ ସେହି ରାଜ୍ୟର ଏହି ଫଳ ଦେଖୁଅଛୁଁ ଯେ, ଯଦୃଚ୍ଛା ଲବ୍ଧ ରାଜ୍ୟାଦିର ନାଶ ହେଲେ, ଜୀବନ ନଷ୍ଟ ନ ହୋଇ କେବଳ ଶୋକ ବର୍ଦ୍ଧିତ ହୁଏ । ୨୬ ।

ମୁନି କହିଲେ—ହେ କୌଶଲ୍ୟ । ମାନବଗଣ ଯେପରି ଅନାଗତ ଓ ଅତୀତ ବସ୍ତୁକୁ ଯଥାତଥ ଭାବରେ ନିଶ୍ଚୟ କରି ସମସ୍ତ ଅର୍ଥରେ ଅନୁଶୋଚନା କରନ୍ତିନାହିଁ, ଆପଣମଧ୍ୟ ସେହିପରି ହୋଇନ୍ତୁ । ୨୭ । ହେ ରାଜନ୍ । ଆପଣ ପ୍ରାପ୍ୟ ଅର୍ଥର କାମନା କରିବେ । ଅପ୍ରାପ୍ୟ ଅର୍ଥର କଦାପି କାମନା କରିବେ ନାହିଁ ଏବଂ ପ୍ରତ୍ୟୁତ୍ପନ୍ନ ବିଷୟର ଅନୁଭବ କରିବେ । ଆଉ ଅନାଗତ ବିଷୟରେ ଶୋକ କରିବେ ନାହିଁ ।୨୮।

ହେ କୌଶଲ୍ୟ । ଆପଣ ଯଥାଲବ୍ଧ ଧନରେ ସନ୍ତୁଷ୍ଟ ଥିବେ । ଶ୍ରୀ ବିହୀନ ହେଲେ ଶୋକାର୍ତ୍ତ ହୋଇ କଦାଚ ବିଶୁଦ୍ଧ ସ୍ୱଭାବରୁ ବିଚଳିତ ହେବେ ନାହିଁ । ୨୯ । ପୁରୁଷ ପ୍ରାକ୍ତନ କର୍ମ୍ମ ଅନୁସାରେ ଭାଗ୍ୟହୀନ ଓ ଦୁର୍ମ୍ମତି ହୋଇ ନିୟତ ବିଧାତାଙ୍କ ନିନ୍ଦାକରନ୍ତି ଏବଂ ଯଥାଲବ୍ଧ ଧନ

ଦ୍ୱାରା ସନ୍ତୁଷ୍ଟ ହୁଅନ୍ତି ନାହିଁ । ୩୦ । ଅତଏ ଏହି କାରଣରୁ ଅନ୍ୟ ମ୍ଳେଚ୍ଛାଧି ଶ୍ରୀମାନ୍ ଲୋକମାନଙ୍କ ସମ୍ମାନ କରି ବାରମ୍ବାର ଏତାଦୃଶ ଦୁଃଖ ଅନୁଭବ କରନ୍ତି । ୩୧ । ଅତଏବ ହେ କୌଣ୍ଡିନ୍ୟ ! ଯେପରି ପୁରୁଷାଭିମାନୀ ମାନବଗଣ ଈର୍ଷା ଓ ଅଭିମାନ ବଶତଃ ଅନ୍ୟର ଅନିଷ୍ଟ କରିବାରେ ପ୍ରବୃତ୍ତ ହୁଅନ୍ତି, ଆପଣ ମତ୍ସର ସମ୍ପନ୍ନ ହୋଇ ସେପରି ହେଉନ୍ତୁ ନାହିଁ । ୩୨ । ଯଦ୍ୟପି ଆପଣଙ୍କଠାରେ ସେହି ଶ୍ରୀ ବିଦ୍ୟମାନ ନ ଥାଏ, ତାହାହେଲେ ମଧ୍ଯ ଆପଣ ଅନ୍ୟର ଶ୍ରୀ ସହ୍ୟ କରିବେ । କଦାପି ଦ୍ୱେଷ କରିବେ ନାହିଁ । କିଆଁକି ଯେଉଁ ମାନବ ମତ୍ସରୀ ହୋଇ ଲୋକଙ୍କ ଶ୍ରୀ ପ୍ରତି ଦ୍ୱେଷ କରନ୍ତି, ଲକ୍ଷ୍ମୀ ତାହାଙ୍କଠାରୁ ପଳାୟନ କରନ୍ତି, ଆଉ ଯେଉଁ ମାନବ ନିମ୍ନ ସ୍ତର ଅଟନ୍ତି, ସେହି ବ୍ୟକ୍ତି ଶତ୍ରୁ ନିକଟସ୍ଥ ଲକ୍ଷ୍ମୀଙ୍କ ସତତ ଭୋଗ କରନ୍ତି । ଯୋଗ ଧର୍ମବିତ ଧୀର ଧର୍ମଗୃହୀ ମାନବଗଣ ଶ୍ରୀ ପୁତ୍ର ଓ ପୌତ୍ରମାନଙ୍କ ସ୍ୱୟଂ ପରିତ୍ୟାଗ କରନ୍ତି । ୩୪ । ଅପର ପ୍ରକୃତ ପୁରୁଷମାନେ ବର୍ଦ୍ଧିଷ୍ଣୁ ଅର୍ଥାତ୍ କାର୍ଯ୍ୟମାନଙ୍କର ଅନୁପରମ ଏବଂ ଧନ ଏହି ଉଭୟକୁ ଅସ୍ଥିର ଅର୍ଥ ଏବଂ ପରମ ଦୁର୍ଲଭ ବୋଲି ଜ୍ଞାନ କରି ପରିତ୍ୟାଗ କରନ୍ତି । ୩୫ । ପରନ୍ତୁ ଆପଣ ପ୍ରାଜ୍ଞ ହୋଇ ସ୍ପୃହା ଅକାମ୍ୟ ପରାଧୀନ ଅସ୍ଥିର ଅର୍ଥ ସମୂହ କାମନା କରି କେବଳ, କୃପଣ ପ୍ରାୟ ଅନର୍ଥକ ପରିତପ୍ତ ହେଉଅଛନ୍ତି । ୩୬ ।

ଅତଏବ ଆପଣ ସେହି ବୁଦ୍ଧିକୁ ଅବଗତ ହେବାର ଅଭିଳାଷୀ ହୋଇ ଏହି ଅର୍ଥ ସବୁ ପରିତ୍ୟାଗ କରନ୍ତୁ । ଯେହେତୁ ଅର୍ଥସବୁ ଅନର୍ଥ ରୂପୀ ହୋଇ ଅର୍ଥ ରୂପରେ ଭାସମାନ ହେଉଅଛି । ୩୭ । କୌଣସି କୌଣସି ଲୋକଙ୍କର ଅର୍ଥ ନିମିତ୍ତ ଧନନାଶ ହୁଏ । କେହି ଅବା ତାହାକୁ ଅନନ୍ତ ସୁଖକର ମନେ କରି ସମ୍ପୂର୍ଣ୍ଣ ରୂପରେ ଶ୍ରୀ ଲାଭ କରିବାର ବାସନା କରେ । ୩୮ । ଯେଉଁ ବ୍ୟକ୍ତି ଶ୍ରୀ ଦ୍ୱାରା ରମମାଣ ହୋଇ ଅନ୍ୟ କିଛି ଶ୍ରେୟଜ୍ଞାନ ନ କରେ, ସେହି ଚେଷ୍ଟମାନ ପୁରୁଷଙ୍କଠାରେ ସମସ୍ତ କାର୍ଯ୍ୟ ବିନଷ୍ଟ ହୋଇଯାଏ । ୩୯ ।

ହେ କୌଶଲ୍ୟ ! ଯଦି କୌଣସି ପୁରୁଷର ଅଭିପ୍ରେତ କୃଚ୍ଛ୍ର-ଲବ୍ଧ-ଧନ ନଷ୍ଟ ହୁଏ, ତାହାହେଲେ ସେହି ପୁରୁଷ ଭଗ୍ନାଂଶ ହୋଇ ତହିଁରୁ ନିବୃତ୍ତ ହୁଏ । ୪୦ । ସତ୍କୁଳ ଜାତ ମାନବଗଣ ପାରଲୌକିକ ସୁଖକୁ ଇଚ୍ଛାକରି ଲୌକିକ କାର୍ଯ୍ୟରୁ ବିରତ ହୋଇ କେବଳ ଧର୍ମକାର୍ଯ୍ୟ

କରନ୍ତି । ଧନଲୋଭ ପରାୟଣ ଲୋକମାନେ ଧନ ନିମିତ୍ତ ଜୀବନ ପରିତ୍ୟାଗ କରନ୍ତି, ଏପରି କି ସେମାନେ ଧନଭିନ୍ନ ଜୀବନକୁ କାର୍ଯ୍ୟକାରୀ ବୋଲି ବିବେଚନା କରନ୍ତି ନାହିଁ ।୪୭। ସେମାନଙ୍କର ସେହି କୃପଣତା ଓ ନିର୍ବୁଦ୍ଧିତାକୁ ଦେଖନ୍ତୁ ଯେ ସେମାନେ ମୋହର ବଶୀଭୂତ ହୋଇ ଅନିତ୍ୟ ଜୀବନରେ ଅର୍ଥଦୃଷ୍ଟି ଅବଲମ୍ବନ କରିଥାନ୍ତି । ସେମାନଙ୍କ ମଧ୍ୟରେ କେହି ସୁଦ୍ଧା ବିନାଶାବସାନରେ ସଞ୍ଚୟ, ମରଣାବସାନରେ ଜୀବନ ଓ ବିୟୋଗାନ୍ତ ସଂଯୋଗ ପ୍ରତି ମନୋନିବେଶ କରନ୍ତି ନାହିଁ । ୪୮ ।

ହେ ରାଜନ୍ ! କେତେବେଳେ ପୁରୁଷଧନକୁ, କେତେବେଳେ ଅବା ଧନ ପୁରୁଷକୁ ଅବଶ୍ୟ ପରିହାର କରେ, ଅତଏବ ଯେ ତାହାକୁ ବିଶେଷ ରୂପରେ ବିଦିତ ହୁଅନ୍ତି ସେ ତଦ୍ ବିଷୟରେ କଦାପି ଶୀର୍ଣ୍ଣ ହୁଅନ୍ତି ନାହିଁ । କାରଣ ଏହିପରି ଅନ୍ୟବ୍ୟକ୍ତିର ମଧ୍ୟ ସୁହୃତ ଓ ଧନନଷ୍ଟ ହୋଇଯାନ୍ତି । ଆପଣ ବିବେଚନା କରି ଦେଖନ୍ତୁ ଯେ, ମନୁଷ୍ୟମାନେ ସ୍ୱକୀୟ ଏବଂ ପରକୀୟ ବୁଦ୍ଧିଦ୍ୱାରା ଆପଦରେ ପତିତ ହୁଅନ୍ତି । ଅତଏବ ଆପଣ ତାହାକୁ ବିଶେଷ ଭାବରେ ସନ୍ଦର୍ଶନ କରି ଇନ୍ଦ୍ରିୟ ନିରୋଧ, ମନୋନିଗ୍ରହ ଏବଂ ବାକ୍ୟ ସଂଯମ ନ କରନ୍ତୁ, କାରଣ ଅହିତକାରୀ ଇନ୍ଦ୍ରିୟ, ମନ ବାକ୍ୟ ଏମାନେ ଦୁର୍ବଳ ଓ ଦର୍ଶନ ମାତ୍ରୋତ୍ପନ୍ନ ବିଷୟରେ ଆସକ୍ତ ହେଲେ କେହି ସୁଦ୍ଧା ଏମାନଙ୍କୁ ପ୍ରତିଷେଧ କରିବାକୁ ସମର୍ଥ ହୁଅନ୍ତି ନାହିଁ, କିନ୍ତୁ ବିଷୟ ସନ୍ନିକୃଷ୍ଟ ହେଲେ ଏମାନେ ସ୍ୱୟଂ ପ୍ରତିଷିଦ୍ଧ ହୋଇଥାନ୍ତି, ଅତଏବ ଭବାଦୃଶ ପ୍ରଜ୍ଞାନତୃପ୍ତ ବିଦ୍ୱାନ୍ ପୁରୁଷ ଇନ୍ଦ୍ରିୟମାନଙ୍କୁ ଦମନ କରିଥାନ୍ତି । ସୁତରାଂ ସେମାନେ ଏ ବିଷୟରେ ଅନୁଶୋଚନା କରନ୍ତି ନାହିଁ । ୪୮ । ଅପିଚ ଭବାଦୃଶ ମୃଦୁ, ଦାନ୍ତ, ସୁନିଷ୍ଠିତ ବ୍ରହ୍ମଚର୍ଯ୍ୟସମ୍ପନ୍ନ ମାନବଗଣ ଅଳ୍ପ ବିଷୟ ବାସନାରେ ଚଞ୍ଚଳ ହୁଅନ୍ତି ନାହିଁ ଏବଂ ତନ୍ନିମିତ୍ତ ଅନୁଶୋଚନା କରନ୍ତି ନାହିଁ । ୪୯ । ଆଉ ସେମାନେ ଅବିବେଚନା ପୂର୍ବକ କାପାଳୀ ବୃତ୍ତି ଏବଂ ନୃଶଂସ, ପାପିଷ୍ଠ, ଦୁଷ୍ଟ ଓ କାପୁରୁଷୋଚିତାବୃତ୍ତିକୁ ଅବଲମ୍ବନ କରନ୍ତି ନାହିଁ । ୫୦ ।

ଅତଏବ ହେ ରାଜନ ! ଆପଣ ବାକ୍ୟ ଓ ମନକୁ ସଂଯତ କରି ସର୍ବଭୂତରେ ଦୟା ପ୍ରକାଶ ପୂର୍ବକ ମହାରଣ୍ୟରେ ଫଳ ମୂଳ ଦ୍ୱାରା ଜୀବିକା ନିର୍ବାହ କରନ୍ତୁ ଓ ଏକାକୀ ବିହାର କରନ୍ତୁ । ୫୧ । ଯେପରି ଈର୍ଷା ସମ ଦଶନ ସମ୍ପନ୍ନ ଦନ୍ତୀ ମହାରଣ୍ୟରେ ଏକାକୀ ବିହାର କରେ

ତଦ୍ରୂପ ବିହ୍ୱଳ ବ୍ୟକ୍ତି ଅବଶ୍ୟ ମଧ୍ୟରେ ଅରଣ୍ୟବୃତ୍ତି ଅବଲମ୍ବନ ପୂର୍ବକ ସନ୍ତୁଷ୍ଟ ଚିତ୍ତରେ ଏକାକୀ ବିହାର କରିବେ । ୫୨ । ଯେପରି ମହାହ୍ରଦ ସମ୍ୟକ୍ ପ୍ରକାରେ କ୍ଷୁଭିତ ହୋଇ ସ୍ୱୟଂ ପ୍ରସନ୍ନ ହୁଏ, ତଦ୍ରୂପ ପ୍ରାଜ୍ଞ ପୁରୁଷ କ୍ଷୁଭିତ ହୋଇ ସ୍ୱୟଂ ପ୍ରସନ୍ନ ହେବେ । ଅମ୍ଭେ ଏତାଦୃଶ ଅବସ୍ଥା-ପନ୍ନ ପୁରୁଷଙ୍କର ଏହିପରି ଭାବରେ ଜୀବିତ ଥିବା ସୁଖ ବୋଲି ବିବେଚନା କରୁଁ । ୫୩ । ହେ ରାଜନ୍ ! ସଚିବାଦି ବିହୀନ ମାନବଙ୍କର ଶ୍ରୀ ଅସମ୍ଭବ ଏବଂ କେବଳ ଦୈବ ପ୍ରତି ନିର୍ଭର କଲେ କିଶ୍ରେୟ ହେବ ବୋଲି ଜ୍ଞାନ କରୁଅଛନ୍ତି ? ୫୪ ।

## ଅଧ୍ୟାୟ—୧୦୫

ମୁନି କହିଲେ—ଯଦି ଆପଣ ନିଜ ଦେହରେ କିଞ୍ଚିତ ପୌରୁଷ ଅଛି ବୋଲି ବିବେଚନା କରନ୍ତି ତାହାହେଲେ ଯେପରି ଆପଣଙ୍କର ପୁନର୍ବାର ରାଜ୍ୟ ଲାଭ ହେବ, ଅମ୍ଭେ ଆପଣଙ୍କୁ ତାଦୃଶ ନୀତି କହୁଅଛୁଁ । ଆପଣ ଯଦି ସେହି ନୀତି ଅନୁଷ୍ଠାନ କରିବାକୁ ଏବଂ ତଦ୍ରୂପ କାର୍ଯ୍ୟ କରିବାକୁ ନିଜକୁ ସମର୍ଥ ବୋଧ କରନ୍ତି, ତେବେ ଅମ୍ଭେ ଆପଣଙ୍କୁ ଯାହା ଯଥାର୍ଥ କଥା କହିବୁଁ, ତାହା ଆପଣ ମନୋଯୋଗ ପୂର୍ବକ ଶ୍ରବଣ କରନ୍ତୁ । ୨ ।

ହେ ରାଜନ୍ ! ଅମ୍ଭେ ଯାହା କହିବୁଁ, ଯଦି ଆପଣ ତଦ୍ରୂପ ଆଚରଣ କରନ୍ତି, ତାହାହେଲେ ଆପଣ ନିଶ୍ଚୟ ସେହି ମହାନ୍ ଅର୍ଥ ସବୁ, ରାଜା, ରାଜାର ମନ୍ତ୍ର ଏବଂ ମହତୀ ଶ୍ରୀ ପୁନର୍ବାର ଲାଭ କରିବେ । ଅତଏବ ଅମ୍ଭେ ଆପଣଙ୍କୁ ପୁନର୍ବାର କହୁଅଛୁଁ, ଏହା ଆପଣଙ୍କର ଅଭିପ୍ରେତ ହେଉଅଛି କି ନା କହନ୍ତୁ । ରାଜା କହିଲେ—ହେ ଭଗବାନ୍ ! ଅମ୍ଭେ ପୌରୁଷସମ୍ପନ୍ନ ହୋଇଅଛୁଁ, ଆପଣ ଯେଉଁ ନୀତି କହିବେ, ତାହା କହନ୍ତୁ ।୪। ଆପଣଙ୍କ ସହିତ ଆମ୍ଭର ଏହି ସମାଗମ ସଫଳ ହେଉ ।

ମୁନି କହିଲେ—ଆପଣ ଦମ୍ଭ, କାମ, କ୍ରୋଧ, ହର୍ଷ ଓ ଭୟ ପରିହାର କରି କୃତାଞ୍ଜଳି ସହକାରେ ପ୍ରଣତ ହୋଇ ଅମିତ୍ର ଗଣଙ୍କୁ ସେବା କରନ୍ତୁ । ଆପଣ ସେହି ସତ୍ୟ ସଙ୍ଗର ବିଦେହରାଜଙ୍କୁ ବିଶୁଦ୍ଧି, ଉଦ୍ୟମ, କର୍ମ ଦ୍ୱାରା ଆରାଧନା କରନ୍ତୁ, ତାହାହେଲେ ସେ ଆପଣଙ୍କୁ ବେତନ ସ୍ୱରୂପ

ବିତ୍ତ ପ୍ରଦାନ କରିବେ । ଏହାପରି କ୍ରମଶଃ ସମସ୍ତଙ୍କର ବିଶ୍ୱାସ ଭାଜନ ହେଲେ, ଆପଣ ବିଦେହ ରାଜନଙ୍କର ବାହୁ ସ୍ୱରୂପ ହେବେ ।୭। ତତ୍ପରେ ବିଶୁଦ୍ଧି ସ୍ୱଭାବ ଉତ୍ସାହ ସମ୍ପନ୍ନ ବ୍ୟସନ ବିହୀନ ସହାୟମାନଙ୍କୁ ଲାଭକରି ପାରିବେ । ନୀତିଶାସ୍ତ୍ରାନୁସାରୀ ସଞ୍ଚିତଚିତ୍ତ ଜିତେନ୍ଦ୍ରିୟ ବିଦେହ ରାଜ ପ୍ରଜାଗଣଙ୍କ ପ୍ରସାଦିତ କରି ନିଜେ ଉଦ୍ଧାର ହୋଇଥିଲେ । ଶ୍ରୀମାନ୍ ପୈର୍ଯଶାଳୀ ସେହି ବିଦେହ ରାଜଙ୍କ କର୍ତ୍ତୃକ ଆପଣ ସତ୍କୃତ ହେଲେ ସମସ୍ତଙ୍କର ବିଶ୍ୱାସ ପାତ୍ର ହୋଇ ଅତିଶୟ ଆଦରଣୀୟ ହେବେ ।

ତଦନନ୍ତର ଆପଣ ସୁହୃଜ୍ଜ୍ୱଳ ଲାଭ କରି ସୁମନ୍ତ୍ରୀମାନଙ୍କ ସହିତ ମନ୍ତ୍ରଣା ପୂର୍ବକ, ବିଲ୍ୱଦ୍ୱାରା ବିଲ୍ୱଭେଦ କଲାପ୍ରାୟ, ଶତ୍ରୁପକ୍ଷୀୟ ଅନ୍ତରିକ ପୁରୁଷଦ୍ୱାରା ଶତ୍ରୁମାନଙ୍କର ଭେଦ କିମ୍ବା ଶତ୍ରୁମାନଙ୍କ ସହିତ ସନ୍ଧିକରି ବିଦେହ ରାଜଙ୍କର ବଳସବୁ ବିନାଶ କରିବେ । ୧୧ । ବିଶୁଦ୍ଧ ସ୍ୱଭାବପନ୍ନ ମାନବ, ସ୍ତ୍ରୀ, ଆଚ୍ଛାଦନ ବସ୍ତ୍ର, ଶଯ୍ୟା, ଆସନ, ମହା ମୂଲ୍ୟ ଯାନ, ଗୃହ, ପକ୍ଷୀ, ପଶୁ, ଗନ୍ଧ, ରସ ଓ ଫଳ ପ୍ରଭୃତି ଯେଉଁସବୁ ବସ୍ତୁ ଅଲଭ୍ୟ, ସେହି ସବୁ ବିଷୟ ଆପଣ ଏପରି ଭାବରେ ସୁସଜ୍ଜିତ କରାଇବେ, ଯେ ତଦ୍ଦ୍ୱାରା ଯେପରି ଶତ୍ରୁମାନେ ସ୍ୱୟଂ ବିନଷ୍ଟ ହୁଅନ୍ତି ।୧୩। ଆପଣ ସୁନୀତି ଅଭିଳାଷୀ ଅଟନ୍ତି, ଶତ୍ରୁମାନେ ଯଦି ଆପଣଙ୍କ କର୍ତ୍ତୃକ ଏହି ସବୁ ବିଷୟରେ ପ୍ରତିଷିଦ୍ଧ ହୋଇ, ତାହା ଉପେକ୍ଷା କରନ୍ତି, ତାହାହେଲେ ଆପଣ ସେମାନଙ୍କୁ କଦାପି ନିବୃତ୍ତ କରିବେ ନାହିଁ । ୧୪ ।

ହେ ରାଜେନ୍ଦ୍ର ! ଆପଣ ପ୍ରଜାଗଣଙ୍କର ସମ୍ମତ ହୋଇ ଅମିତ୍ରମାନ-ଙ୍କର ବିଷୟରେ ବିହାର କରନ୍ତୁ ଏବଂ ନିୟତ ଜାଗରୂକଭାବ ଓ ଭୟ ଚକିତଭାବ ପ୍ରଭୃତି ଶ୍ୱେତକାକୀୟ ଉପାୟଦ୍ୱାରା ମିତ୍ର ଧର୍ମ୍ମକୁ ଭଜନା କରନ୍ତୁ । ୧୫ । ଆପଣ ଏତାଦୃଶ ଉପାୟ ଅନୁସାରେ ବିଦେହରାଜଙ୍କର ଦୁଷ୍କର ମହାନ୍ ଆରମ୍ଭ ସବୁ ପ୍ରୟୋଜିତ କରନ୍ତୁ ଏବଂ ବଳବାନ୍ ସୈନ୍ୟ ଦ୍ୱାରା, ନଦୀପ୍ରାୟ, ବିରୋଧମାନଙ୍କୁ ବିଶେଷରେ ରୋଧ କରନ୍ତୁ । ୧୬ । ଆଉ ବିଦେହ ରାଜଙ୍କର ଉଦ୍ୟାନ, ବହୁମୂଲ୍ୟ ଶୟନ, ଆସନ ଏବଂ କୋଷ ଏହିସବୁ ଆପଣ ସୁଖରେ ଭୋଗକରି ତାହାଙ୍କର କୋଷଶୂନ୍ୟ କରନ୍ତୁ ।୧୭। ଆପଣ ବ୍ରାହ୍ମଣଗଣଙ୍କୁ ବିଦେହ ରାଜାର ଉଦ୍ଦେଶ୍ୟରେ ଯଜ୍ଞ ଓ ଦାନାଦି କାର୍ଯ୍ୟରେ ନିଯୁକ୍ତ କରି ପଶ୍ଚାତ୍ ନିଜର ମଙ୍ଗଳାର୍ଥ ଯଜ୍ଞାଦି କାର୍ଯ୍ୟ କରାଇବେ ତାହାହେଲେ ସେମାନେ ବୃକପ୍ରାୟ ତାହାଙ୍କୁ ଭକ୍ଷଣ କରି ଆପଣଙ୍କର

ମଙ୍ଗଳ କରିବେ । ୧୮ । ପୁଣ୍ୟଶୀଳ ପୁରୁଷ ନିଶ୍ଚୟ ପରମ ଗତିକି ପ୍ରାପ୍ତ ହୁଅନ୍ତି, ଏମାନଙ୍କ ଯେମାନେ ସ୍ୱର୍ଗ ମଧ୍ୟରେ ପୁଣ୍ୟତମ ସ୍ଥାନ ଲାଭ କରନ୍ତି । ୧୯ ।

ହେ କୌଶଲ୍ୟ ! ଧର୍ମ ଓ ଅଧର୍ମ ଦ୍ୱାରା ଶତ୍ରୁମାନଙ୍କର କୋଷକ୍ଷୟ କରିପାରିଲେ, ସେମାନେ ଧର୍ମ ଓ ଅଧର୍ମରେ ପ୍ରସକ୍ତ ପୁରୁଷମାନଙ୍କର ବଶୀଭୂତ ହୁଅନ୍ତି । ୨୦ । ଅମିତ୍ରଗଣ ସ୍ୱର୍ଗ ଓ ଜୟଦ୍ୱାରା ଆନନ୍ଦ ଅନୁଭବ କରନ୍ତି, ଅତଏବ ଆପଣ ତାହାଙ୍କର ସ୍ୱର୍ଗ ଓ ଜୟର ମୂଳରୂପ କୋଷକୁ ବିଶେଷରେ ଉଚ୍ଛେଦ କରିବେ । କିନ୍ତୁ ମନୁଷ୍ୟ କର୍ମ ପରିବର୍ତ୍ତିରେ ଦୈବକର୍ମ ଜୟାଦି ତାହାଙ୍କଠାରେ ବର୍ଣ୍ଣନ କରିବେ । ୨୧ । ଦୈବ ପରିପୂର୍ଣମାନବ ଶୀଘ୍ର ବିନଷ୍ଟ ହୁଅନ୍ତି, ଏହା ନିଶ୍ଚୟ ଅଟେ, ଅତଏବ ଆପଣ ତାହାଙ୍କୁ ସର୍ବସ୍ୱ ଦାନ ରୂପ ବିଶ୍ୱଜିତ୍ ଯଜ୍ଞଦ୍ୱାରା ଯାଗ କରାଇ ରାଜ୍ୟ ମଧ୍ୟରୁ ବିଯୁକ୍ତ କରନ୍ତୁ । ତହିଁରେ ସେ ସିଦ୍ଧାର୍ଥ ହୋଇ ଗମନ କରିବେ । ଅତଏବ ଆପଣ ସେହି ବିଦେହ ରାଜଙ୍କୁ ଯୋଗଧର୍ମବିତ୍ ମହାଜନଙ୍କର ପୀଡ଼ା ବୃତ୍ତାନ୍ତ ନିବେଦନ କରନ୍ତୁ । ଏବଂ କଳ୍ପିତ ପୁଣ୍ୟ ଉପଦେଶ ପ୍ରଦାନ କରନ୍ତୁ । ଯେ କୌଣସି ପ୍ରକାରରେ ମହାଜନମାନଙ୍କର ପୀଡ଼ା ବୃତ୍ତାନ୍ତ ଶ୍ରବଣ କଲେ ରାଜ୍ୟ ତ୍ୟାଗ କରିବେ, ଅତଏବ ଆପଣ ସର୍ବଶତ୍ରୁ ବିନାଶୀ ସିଦ୍ଧ ଓ ଔଷଧ ପ୍ରୟୋଗ ଦ୍ୱାରା ତାହାଙ୍କର ନାଗ, ଅଶ୍ୱ ଓ ମନୁଷ୍ୟମାନଙ୍କୁ ନିପାତିତ କରାଇବେ । ୨୦ । ଏବଂବିଧ ଏବଂ ଅନ୍ୟ ବହୁବିଧ ଦମ୍ଭ ଯୋଗ ନିର୍ଣ୍ଣିତ ଅଛି, କୃତାତ୍ମା ପୁରୁଷ ବିଷ ପ୍ରୟୋଗ ଦ୍ୱାରା ସମସ୍ତଙ୍କୁ ନିହତ କରିପାରନ୍ତି ।୨୫।

## ଅଧ୍ୟାୟ—୧୦୭

ରାଜା କହିଲେ—ହେ ବ୍ରହ୍ମନ୍ ! ଅମ୍ଭେ କପଟ ଏବଂ ଦମ୍ଭଦ୍ୱାରା ଜୀବିତଥିବାର ଇଚ୍ଛା କରୁନାହୁଁ ଏବଂ ଅଧର୍ମଯୁକ୍ତ ସୁମହତ ଅର୍ଥ ମଧ୍ୟ ଆକାଙ୍କ୍ଷା କରୁନାହୁଁ । ୧ ।

ହେ ଭଗବନ୍ ! କପଟତା ଏବଂ ଦମ୍ଭଥିଲେ କେହି ଆମ୍ଭଙ୍କୁ ଶଙ୍କା କରିବେ ବୋଲି ଏବଂ ତଦ୍ଦ୍ୱାରା ଆମ୍ଭର ଅନିଷ୍ଟ ହେବାର ସମ୍ଭାବନା ଦେଖି ଅଗ୍ରେ ତାହା ପରିତ୍ୟାଗ କରିଅଛୁଁ । ଅମ୍ଭେ ଇହଲୋକରେ ଆନୃଶଂସ୍ୟ ଧର୍ମଦ୍ୱାରା ଜୀବିତ ଥିବାର ବାସନା କରିଅଛୁଁ, ଅତଏବ ଅମ୍ଭେ ଏତାଦୃଶ

ଆଚରଣ କରି ପାରିବୁ ନାହିଁ । ଆଉ ଆପଣଙ୍କ ଠାରେ ମଧ୍ୟ ଏହା ଉତପନ୍ନ ହେବାର ଉପଯୁକ୍ତ ନୁହେ । ୩ ।

ମୁନି କହିଲେ—ହେ ରାଜନ୍ । ଆପଣ ଯେପରି କହିଲେ ସେଥିରୁ ଆପଣଙ୍କ ପ୍ରକୃତିସ୍ଥ ଓ ବୁଦ୍ଧିସ୍ଥ ଏବଂ ଅନୃଶଂସ୍ୟ ଧର୍ମଯୁକ୍ତ ବୋଲି ଆମ୍ଭର ବୋଧ ହେଉଅଛି । ୪ । ଆମ୍ଭେ ତୁମ୍ଭ ଦୁହିଁଙ୍କର ମଙ୍ଗଳ ନିମିତ୍ତ ଯତ୍ନ କରିବୁଁ ଏବଂ ଆପଣଙ୍କ ସହିତ ବିଦେହରାଜଙ୍କର ଯହିଁରେ ଶାଶ୍ୱତ କାଳ ଅକ୍ଷୟ ସନ୍ଧି ହେବ, ତାହା ବିଧାନ କରିବୁଁ । ୫ । ଭବାଦୃଶ ସତ୍କୁଳ ସମ୍ଭୂତ ବହୁଶ୍ରୁତ ଅନୃଶଂସ ରାଜ୍ୟ ପ୍ରଣୟନ କୁଶଳ ପୁରୁଷଙ୍କୁ ପ୍ରାପ୍ତ ହେଲେ କେଉଁ ନୃପତି ଅମାତ୍ୟ ପଦରେ ନିଯୁକ୍ତ ନ କରିବେ ? ୬ । ଆପଣ କ୍ଷତ୍ରିୟ କୁଳରେ ଜନ୍ମଗ୍ରହଣ କରି ରାଜ୍ୟଚ୍ୟୁତ ଓ ଅତିଶୟ ବିପଦଗ୍ରସ୍ତ ହୋଇ ସୁଦ୍ଧା ଯେତେବେଳେ ଅନୃଶଂସ୍ୟ ବୃତ୍ତି ଦ୍ୱାରା ଜୀବିକା ନିର୍ବାହ କରିବାକୁ ଇଚ୍ଛା କରୁଅଛନ୍ତି, ସେତେବେଳେ ଆମ୍ଭେ ଆପଣଙ୍କୁ ଧନ୍ୟବାଦ ଦେଉଅଛୁଁ । ୭ ।

ହେ ତାତ । ସତ୍ୟ ସଙ୍ଗର ବିଦେହରାଜ ଆମ୍ଭ ଗୃହକୁ ଆଗମନ କରିବେ, ଆମ୍ଭେ ତାହାଙ୍କୁ ଯହିଁରେ ନିଯୁକ୍ତ କରିବୁଁ, ସେ ତାହା କରିବେ, ଏଥିରେ ସଂଶୟ ନାହିଁ । ୮ । ଅନନ୍ତର ମୁନିବର ବିଦେହରାଜଙ୍କୁ ଆହ୍ୱାନ କରି କହିଲେ—ଏହି କ୍ଷେମଦର୍ଶୀ ରାଜକୁଳରେ ଜନ୍ମଗ୍ରହଣ କରିଅଛନ୍ତି । ଆମ୍ଭେ ଏହାଙ୍କର ଅନ୍ତଃକରଣକୁ ସମ୍ପୂର୍ଣ୍ଣ ରୂପେ ପରୀକ୍ଷା କରିଅଛୁଁ । ଏହାଙ୍କର ଚିତ୍ତ ଆଦର୍ଶ ଓ ଶରଚ୍ଚନ୍ଦ୍ରପ୍ରାୟ ବିଶୁଦ୍ଧ ଅଟେ । ଆମ୍ଭେ ଏହାଙ୍କର ଅନ୍ତଃକରଣରେ କିଛିମାତ୍ର କୁଟିଳତା ଦେଖୁନାହୁଁ ।୧୦। ଅତଏବ ଏହାଙ୍କ ସହିତ ଆପଣଙ୍କର ସନ୍ଧି ହେଉ । ଆପଣ ଆମ୍ଭଙ୍କୁ ଯେପରି ବିଶ୍ୱାସ କରନ୍ତି, ତଦ୍ରୂପ ଏହାଙ୍କୁ ମଧ୍ୟ ବିଶ୍ୱାସ କରନ୍ତୁ । ଯେଉଁ ରାଜାଙ୍କର ଅମାତ୍ୟ ନାହିଁ, ସେ ରାଜ୍ୟକୁ ତିନିଦିନ ସୁଦ୍ଧା ନିଜର ଶାସନରେ ରଖି ପାରନ୍ତି ନାହିଁ, ଅତଏବ ନୃପତି ଶୌର୍ଯ୍ୟ ଓ ବୁଦ୍ଧିସମ୍ପନ୍ନ ମାନବଙ୍କୁ ଅମାତ୍ୟ କରିବେ । ଦେଖନ୍ତୁ, ଶୌର୍ଯ୍ୟ ଏବଂ ବୁଦ୍ଧିବଳ ଦ୍ୱାରା ଉଭୟ ଲୋକ ଓ ରାଜ୍ୟର ପ୍ରୟୋଜନ ସାଧନ ହୁଏ ।୧୨। ଧର୍ମାତ୍ମା ମନୁଷ୍ୟମାନଙ୍କର ଈଦୃଶ ଅନ୍ୟଗତି କୁତ୍ରାପି ନାହିଁ । ଏହି ରାଜପୁତ୍ର କ୍ଷେମଦର୍ଶୀ ଅତିଶୟ ଧାର୍ମିକ ଅଟନ୍ତି, ବିଶେଷତଃ ସ୍ୱେ ସାଧୁମାନଙ୍କର ପଥକୁ ଅବଲମ୍ବନ କରିଅଛନ୍ତି । ୧୩ । ଏହି ଧାର୍ମିକ ରାଜପୁତ୍ରଙ୍କୁ ଆପଣ ସଂଗ୍ରହ କରି ସମ୍ୟକ ପ୍ରକାରେ

ସେବା କଲେ ସେ ଆପଣଙ୍କର ଶତ୍ରୁଗଣଙ୍କୁ ନିହତ କରିବେ । ଯଦି ସେ ପିତୃ ପିତାମହ ପଦନିମିତ୍ତ ସମରରେ ଜିଗୀଷମାଣ ହୋଇ ଆପଣଙ୍କ ସହିତ କ୍ଷତ୍ରିୟମାନଙ୍କର ସ୍ୱକାର୍ଯ୍ୟ ସଂଗ୍ରାମ କରନ୍ତି, ତାହାହେଲେ ଆପଣମଧ୍ୟ ବିଜିଗୀଷୁବୃତ୍ତି ଅବଲମ୍ବନ ପୂର୍ବକ ଏହାଙ୍କ ସହିତ ସଂଗ୍ରାମ କରିବେ । ପରନ୍ତୁ ତାହା ନ କରି ଅମ୍ଭର ଆଦେଶାନୁସାରେ ହିତୈଷୀ ହୋଇ ଏହାଙ୍କୁ ବଶୀଭୂତ କରନ୍ତୁ । ୧୬ । ଆପଣ ଧର୍ମ୍ମଦର୍ଶୀ ହୋଇ ଭବାଦୃଶ ଲୋକଙ୍କର ଅନୁଚିତ ଲୋଭ ପରିତ୍ୟାଗ ପୂର୍ବକ ଧର୍ମ୍ମରକ୍ଷା କରନ୍ତୁ । କାମ ଓ କ୍ରୋଧର ବଶୀଭୂତ ହୋଇ ସ୍ୱଧର୍ମ୍ମ ପରିହାର କରିବା ଆପଣଙ୍କର ଉଚିତ ନୁହେଁ । ୧୭ ।

ହେ ତାତ ! ଏକବ୍ୟକ୍ତିଙ୍କର ସର୍ବଦା ଜୟ ଏବଂ ଏକ ବ୍ୟକ୍ତିଙ୍କର ସର୍ବଦା ପରାଜୟ ହୁଏ ନାହିଁ । ଜୟ ପରାଜୟ ଉଭୟ ହୋଇଥାଏ, ଅତଏବ ଭୋଗ୍ୟ ବସ୍ତୁଦ୍ୱାରା ଶତ୍ରୁ ସହିତ ସନ୍ଧିକରିବା କର୍ତ୍ତବ୍ୟ । ୧୮ । ହେ ତାତ ! ଜୟ ଏବଂ ପରାଜୟ ଉଭୟ ନିଜଠାରେ ଦେଖାଯାଏ । ନିଃଶେଷ କାରୀମାନଙ୍କର ନିଃଶେଷକରଣ ହେତୁରୁ ଭୟ ହୁଏ । ୧୯ । ବିଦେହ ରାଜ ଜନକ କାଳକବୃକ୍ଷୀୟଙ୍କ କର୍ତ୍ତୃକ ଏହିପରି ଉକ୍ତ ହୋଇ ପ୍ରଜନୀୟ ବ୍ରାହ୍ମଣଶ୍ରେଷ୍ଠ ସେହି କାଳକବୃକ୍ଷୀୟ ମୁନିଙ୍କୁ ସତ୍କାର ଓ ସମ୍ମାନ କରି କହିଲେ—ହେ ବ୍ରହ୍ମନ୍ ! ଆପଣ ମହାପ୍ରାଜ୍ଞ ଓ ବହୁଶ୍ରୁତ ଅଟନ୍ତି, ଅତଏବ ଆପଣ ଅମ୍ଭ ଦୁହିଁଙ୍କର ମଙ୍ଗଳାକାଙ୍କ୍ଷୀ ହୋଇ ଯାହା କହିଲେ, ତାହା ଯୋଗ୍ୟ । ଆପଣ ଅମ୍ଭଙ୍କୁ ଯେପରି କହିଲେ, ଅମ୍ଭେ ତାହା ସେହିପରି କରିବୁଁ । କାରଣ ଅମ୍ଭେ ଏହାକୁ ପରମ ଶ୍ରେୟ ବୋଲି ବିବେ-ଚନା କରୁଅଛୁଁ । ଏ ବିଷୟରେ ଅମ୍ଭର ଆଉ କିଛିମାତ୍ର ବିଚାର କରିବାର ନାହିଁ । ୨୨ ।

ତଦନ୍ତରେ ମିଥିଳାରାଜ ଜନକ କୌଶଲ୍ୟ କ୍ଷେମଦର୍ଶୀଙ୍କୁ ଆହ୍ୱାନ କରି କହିଲେ—ହେ ପାର୍ଥିବ ସତ୍ତମ ! ଅମ୍ଭେ ଧର୍ମ ଏବଂ ନୀତିଦ୍ୱାରା ପୃଥିବୀକୁ ଜୟ କରିଅଛୁଁ । ପରନ୍ତୁ ଆପଣ ନିଜେ ନିଜକୁ ଅବଜ୍ଞା କରି ନିଜଗୁଣ ଦ୍ୱାରା ଅମ୍ଭଙ୍କୁ ଜୟ କଲେ, ଅତଏବ ଆପଣ ଜୟୀପ୍ରାପ୍ତ ବିରାଜିତ ହେଉନ୍ତୁ । ୨୪ । ଯଦିଚ ଅମ୍ଭେ ଆପଣଙ୍କୁ ଜୟ କରିଅଛୁଁ, ତଥାପି ଆପଣଙ୍କର ବୁଦ୍ଧି ଓ ପୌରୁଷକୁ ଅବଜ୍ଞା କରୁନାହୁଁ । ଅତଏବ ଆପଣ ଜୟୀପ୍ରାପ୍ତ ବିଦ୍ୟମାନ ହେଉନ୍ତୁ । ୨୫ ।

ହେ ରାଜନ୍ । ବର୍ତ୍ତମାନ ଆପଣ ଯଥାବତ୍ ପୂଜିତ ହୋଇ ଅମ୍ଭ ଗୃହକୁ ଆଗମନ କରନ୍ତୁ । ଅନନ୍ତର ମିଥିଳାରାଜା ଜନକ ଓ କୌଶଲ୍ୟ ଦୁହେଁ ବ୍ରାହ୍ମଣ ଶ୍ରେଷ୍ଠ ମୁନିଙ୍କୁ ପୂଜା କରି ବଶୀଭୂତ ହୋଇ ଗୃହକୁ ଗମନ କଲେ ।୨୭। ତତ୍ପରେ ବିଦେହ ରାଜ କୌଶଲ୍ୟଙ୍କ ଗୃହରେ ପ୍ରବେଶ କରାଇ ପାଦ୍ୟ, ଅର୍ଘ ଓ ମଧୁପର୍କ ଦ୍ୱାରା ପୂଜାକରି ତାହାଙ୍କୁ କନ୍ୟା ଓ ବିବିଧ ଦାନ କଲେ । ରାଜାମାନଙ୍କର ଏହାହିଁ ପରମ ଧର୍ମ, ଜୟ ଓ ପରାଜୟକୁ ଅନିତ୍ୟବୋଲି ଜାଣିବ ।୨୮।

## ଅଧ୍ୟାୟ—୨୦୭

ଯୁଧିଷ୍ଠିର ବୋଇଲେ—ହେ ପରନ୍ତପ । ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ, ଓ ଶୂଦ୍ର ମାନଙ୍କର ଧର୍ମବୃତ୍ତି ସାଧାରଣଙ୍କର ବ୍ୟବହାର, ଜୀବନୋପାୟ ଏବଂ ଫଳ, ରାଜାମାନଙ୍କର ବ୍ୟବହାର, କୋଷ, କୋଷସଞ୍ଚୟନ ଓ ଜୟ ଅମାତ୍ୟଗଣଙ୍କର ଗୁଣ, ବ୍ୟବହାର, ପ୍ରକୃତି ବର୍ଗଙ୍କର ବର୍ଦ୍ଧନ, ଷଡ୍‌ଗୁଣ୍ୟର ଗୁଣ କଳ୍ପନା, ସେନାଗଣଙ୍କର ବ୍ୟବହାର, ସତ୍ ଓ ଅସତ୍ ପୁରୁଷମାନଙ୍କର ଲକ୍ଷଣ ପରି ଜ୍ଞାନ, ସମକକ୍ଷ, ହୀନକକ୍ଷ ଓ ଅଧିକ କକ୍ଷ ବ୍ୟକ୍ତିମାନଙ୍କର ଯଥାବତ୍ ଲକ୍ଷଣ, ମଧ୍ୟବର୍ତ୍ତୀ ବ୍ୟକ୍ତିମାନଙ୍କର ତୁଷ୍ଟିନିମିତ୍ତ ବର୍ଦ୍ଧମାନ ମନୁଷ୍ୟକୁ ଯେପରି ରହିବାକୁ ହୁଏ, କ୍ଷୀଣମାନବର ଗ୍ରହଣ ଓ ଜୀବିକା, ଉପଦେଶାତ୍ମକ ସୁଗମ ଗ୍ରନ୍ଥଦ୍ୱାରା ଯେପରି ଧର୍ମ କୀର୍ତ୍ତିତ ଅଛି ଓ ବିଜିଗୀଷୁ ପୁରୁଷଙ୍କର ଯେପରି ବ୍ୟବହାର ତାହା ଆପଣ କହିଅଛନ୍ତି । ବର୍ତ୍ତମାନ ସେହି ବ୍ୟବହାର, ଶୂରଗଣଙ୍କର ବୃତ୍ତି, ଶୂରମାନେ ବିଭିନ୍ନ ନ ହୋଇ ଯେପରି ବର୍ଦ୍ଧିତ ହୁଅନ୍ତି, ଯେମନେ ଶତ୍ରୁମାନଙ୍କୁ ଜୟ କରିବାର ଅଭିଳାଷ କରି ଯେପରି ସୁହୃଦଗଣଙ୍କୁ ଲାଭ କରନ୍ତି, ତାହା କୀର୍ତ୍ତନ କରନ୍ତୁ ।

ହେ ମତିମତାମ୍ବର । ଆମ୍ଭର ବୋଧ ହେଉ ଅଛି ଯେ ଶୂରମାନଙ୍କର ପରସ୍ପର ଭେଦ ବିନାଶର କାରଣ ଅଟେ । ଅତଏବ ସେମାନଙ୍କର ଯେପରି ଭେଦ ନ ହୁଏ ଏବଂ ବହୁଲୋକଙ୍କ ଠାରେ ମନ୍ତ୍ର ସମ୍ବରଣ ଅତି ଦୁଃଖକର ଅଟେ । କିନ୍ତୁ ତାହାମଧ୍ୟ ଯେପରି କରିବାକୁ ହେବ, ତତ୍ସମସ୍ତର ଉପାୟ ଅମ୍ଭେ ଆପଣଙ୍କଠାରୁ ଶ୍ରବଣ କରିବାର ଇଚ୍ଛା କରୁଅଛୁଁ, ଆପଣ ଏହିସବୁ ବୃତ୍ତାନ୍ତ ବିସ୍ତର କରି ଆମ୍ଭଠାରେ କୀର୍ତ୍ତନ କରନ୍ତୁ । ୯ ।

ଭୀଷ୍ମ କହିଲେ—ହେ ଭରତସତ୍ତମ ! ରାଜକୁଳ ଓ ଗଣ ଅର୍ଥାତ୍ ଶୂରକୁ ଏହି ଉଭୟକୁଳ ବୈର ସନ୍ଦୀପକ ଏବଂ ଲୋଭ ଓ ଅମର୍ଷ ବଶତାପନ୍ନ ଅଟନ୍ତି ।୧୦। ରାଜା ଲୋଭ ପ୍ରାର୍ଥନା କଲେ ଶୂରଗଣ ଅମର୍ଷ ପ୍ରାର୍ଥନା କରନ୍ତି. ସୁତରାଂ ଉଭୟକୁଳ କ୍ଷୟ ଓ ବ୍ୟୟ ସଂଯୁକ୍ତ ହୋଇ ପରସ୍ପର ପରସ୍ପରର ବିନାଶକ ହୁଅନ୍ତି ।୧୧। ସେମାନେ ଚର, ମନ୍ତ୍ର, ବଳ, ଆଦାନ, ସାମ, ଦାନ, ଭେଦ, କ୍ଷୟ, ବ୍ୟୟ ଏବଂ ଭୟ ପ୍ରଭୃତି ଉପାୟ ଦ୍ୱାରା ପରସ୍ପର ପରସ୍ପରକୁ ଆକର୍ଷଣ କରନ୍ତି । ୧୨ । ତନ୍ମଧ୍ୟରେ ଏକମତାନୁଯାୟୀ ଶୂରଗଣଙ୍କ ମଧ୍ୟରେ ଭେଦ ହୁଏ, ସେମାନେ ଭିନ୍ନ ହେଲେ ପରସ୍ପର ଶତ୍ରୁର ଅଟନେକାବଶତଃ ସମସ୍ତେ ଭୀତ ହୋଇ ଅରମାନଙ୍କର ବଶବର୍ତ୍ତୀ ହୁଅନ୍ତି ।୧୩। ଯେତେବେଳେ ଶୂରମାନେ ବିଭିନ୍ନ ହେଲେ ବିନଷ୍ଟ ଓ ଶତ୍ରୁମାନଙ୍କ କର୍ତ୍ତୃକ ପୀଡ଼ିତ ହୁଅନ୍ତି, ତେତେବେଳେ ସେମାନଙ୍କର ସର୍ବଦା ଏକମତରେ ଥିବାପା... ଯତ୍ନ କରିବା କର୍ତ୍ତବ୍ୟ । ୧୪ । ଶୂରଗଣଙ୍କର ବଳ ଓ ପୌରୁଷ ଏକ ଯୋଗରେ ଥିଲେ, ସେମାନେ ଅର୍ଥ ଲାଭରେ ସକ୍ଷମ ହୁଅନ୍ତି, ଏପନ୍ତ କି ସେମାନଙ୍କର ବୃତ୍ତି ଏକ ପ୍ରକାର ହେଲେ ଭିନ୍ନ ଭିନ୍ନ ମତାବଲମ୍ବୀ ଶୂରମାନେ ମଧ୍ୟ ସେମାନଙ୍କର ସହିତ ମୈତ୍ରୀଭାବ କରନ୍ତି । ୧୫ । ଯେଉଁ ଶୂରମାନେ ପରସ୍ପର ଶୁଶ୍ରୂଷା କରନ୍ତି, ଜ୍ଞାନବୃଦ୍ଧ ମନୀଷିଗଣ ସେମାନଙ୍କୁ ପ୍ରଶଂସା କରନ୍ତି । କାରଣ ସେମାନଙ୍କର ଅଭିସନ୍ଧି ପୃଥକ ନ ହେଲେ ସେମାନେ ସମ୍ପୂର୍ଣ୍ଣ ରୂପରେ ସୁଖଭୋଗ କରିପାରନ୍ତି । ୧୬ । ଯେଉଁ ଶୂରଗଣ ଧର୍ମ୍ମ ବ୍ୟବହାରମାନ ଶାସ୍ତ୍ରାନୁସାରେ ସଂସ୍ଥାପନ ପୂର୍ବକ, ତତ୍ପ୍ରତି ଦୃଷ୍ଟି ରଖନ୍ତି, ସେମାନେ ଗଣମଧ୍ୟରେ ଉତ୍କୃଷ୍ଟ ହୋଇ ବର୍ଦ୍ଧିତ ହୁଅନ୍ତି । ୧୭ । ଶୂରଗଣ ପୁତ୍ର ଓ ଭ୍ରାତାମାନଙ୍କୁ ସର୍ବଦା ଯୁଦ୍ଧ କାର୍ଯ୍ୟରେ ବିଶେଷଭାବରେ ଶିକ୍ଷାଦେଇ ସେହି ଶିକ୍ଷିତ ପୁତ୍ର ଓ ଭ୍ରାତୃଗଣଙ୍କୁ ଗ୍ରହଣ କଲେ ସେମାନେ ସର୍ବଗୁଣରେ ବର୍ଦ୍ଧିତ ହୁଅନ୍ତି । ୧୮ ।

ହେ ମହାବାହୋ ! ଯେଉଁ ଶୂରମାନେ ଚର, ମନ୍ତ୍ରବିଧାନ ଓ କୋଷସମୂହରେ ସର୍ବଦା ନିରତ ଥାନ୍ତି, ସେମାନେ ସର୍ବତୋଭାବରେ ବର୍ଦ୍ଧିତ ହୁଅନ୍ତି ।୧୯ । ହେ ନୃପ ! ଯେଉଁ ଶୂରଗଣ ପ୍ରାଜ୍ଞ, ମହାନ୍ ଉତ୍ସାହ ସମ୍ପନ୍ନ ଓ କର୍ମରେ ସ୍ଥିର ପୌରୁଷ ଶୂରବୃନ୍ଦଙ୍କର ସର୍ବଦା ସମ୍ମାନ କରନ୍ତି. ସେମାନେ ବର୍ଦ୍ଧିତ ହୁଅନ୍ତି । ୨୦ । ଯେଉଁସବୁ ଶୂରମାନେ ଦ୍ରବ୍ୟବାନ ଶାସ୍ତ୍ରଜ୍ଞ ଓ ଶାସ୍ତ୍ର ପାରଗ ଅଟନ୍ତି, ସେମାନେ କଷ୍ଟକର ଓ ଘୋରତର ଆପଦରେ ବିମୋହିତ ମାନବଗଣଙ୍କୁ ପରିତ୍ରାଣ କରନ୍ତି । ୨୧ ।

ହେ ଭରତସତ୍ତମ ! କ୍ରୋଧ, ଭେଦ, ଭୟ, ଦଣ୍ଡ, କର୍ଷଣ, ନିଗ୍ରହ ଓ ବଧ ଏହି ସମସ୍ତ ଶୂରଗଣଙ୍କୁ ସଦ୍ୟ ଶତ୍ରୁର ବଶତାପନ୍ନ କରେ । ୨୨ । ଅତଏବ ହେ ପାର୍ଥିବ ! ସେହି ଗଣ ମୁଖ୍ୟ ପ୍ରଧାନ ଶୂରଗଣଙ୍କୁ ବିଶେଷ କରି ସମ୍ମାନ କରିବା କର୍ତ୍ତବ୍ୟ, କାରଣ ସମୁଦାୟ ଲୋକଯାତ୍ରା ସେହି ଶୂରଗଣଙ୍କର ସମାୟତ୍ତ ହୋଇଥାଏ ।୨୩। ହେ ଅମିତ୍ରକର୍ଷଣ ଭାରତ ! ପ୍ରଧାନ ଶୂରଗଣ ଗୁପ୍ତ ଓ ମନ୍ତ୍ରରକ୍ଷା କରନ୍ତି, ସୁତରାଂ ସେମାନେ ମନ୍ତ୍ରଣା ଶ୍ରବଣ କରିବାର ଯୋଗ୍ୟ ଅଟନ୍ତି । କିନ୍ତୁ ସମୁଦାୟ ଶୂର ମନ୍ତ୍ରଣା ଶୁଣିବେ ନାହିଁ । ଯେଉଁମାନେ ଗଣଙ୍କମଧ୍ୟରେ ପ୍ରଧାନ ଅଟନ୍ତି, ସେମାନେ ସମସ୍ତଙ୍କ ସହିତ ମିଳିତହୋଇ ଗୋପନରେ ଗଣଙ୍କର ହିତ କରନ୍ତି, ପରନ୍ତୁ ଗଣ ପୃଥକ୍ ଭିନ୍ନ, ଓ ବିତତ୍ ହେଲେ, ତାହାର ବିପରୀତ ହୁଏ । ୨୫ । ସ୍ୱୟଂ ଶକ୍ତିର ଅନୁଷ୍ଠାନକାରିଗଣଙ୍କର ଭେଦହେଲେ ଅର୍ଥସବୁ ଅବସନ୍ନ ହୁଏ ଏବଂ ଅନର୍ଥ ପ୍ରାଦୁର୍ଭୂତ ହୁଏ ।୨୬। ଅତଏବ କୁଳବୃଦ୍ଧ ପଣ୍ଡିତମାନେ ପ୍ରଧାନଗଣଙ୍କ ନିକଟରୁ ନିକୃଷ୍ଟଗଣଙ୍କୁ ସତ୍ୱର ଦୂରୀକୃତ କରିବେ । ସେମାନେ ଉପେକ୍ଷିତ ହେଲେ ନିଶ୍ଚିତ କୁଳରେ କଳହ କରନ୍ତି ଏବଂ ଗଣଭେଦ ହେତୁ ଭୂତହୋଇ ଗୋତ୍ର ନାଶ କରନ୍ତି ।

ଅତଏବ ହେ ରାଜନ୍ ! ଅଭ୍ୟନ୍ତର ଭୟକୁ ଯତ୍ନ ସହକାରେ ରକ୍ଷାକରି ଅସାର ବାହ୍ୟ ଭୟକୁ ତ୍ୟାଗ କରିବା କର୍ତ୍ତବ୍ୟ । କାରଣ ଅଭ୍ୟନ୍ତର ଭୟ ସଦ୍ୟ ମୂଳଚ୍ଛେଦନ କରେ, ଅକସ୍ମାତ କ୍ରୋଧ, ମୋହ ଏବଂ ସ୍ୱଭାବଜ ଲୋଭବଶତଃ ପରସ୍ପର ପରସ୍ପରକୁ ସମ୍ଭାଷଣ ନକଲେ ତାହା ପରାଭବର ଲକ୍ଷଣ ବୋଲି ବୋଧ କରିବେ । ସମସ୍ତେ ଶୌର୍ଯ୍ୟ, ବୁଦ୍ଧି, ରୂପ କିମ୍ବା ଧନରେ ତୁଲ୍ୟ ହେଉନ୍ତୁ ବା ନ ହେଉନ୍ତୁ, ଜାତି ଏବଂ କୁଳରେ ସମାନ ହେବେ । ରିପୁଗଣ ପ୍ରଧାନର ଭେଦ କରିପାରିଲେ ଗଣଭେଦ କରିପାରନ୍ତି, ଅତଏବ ପଣ୍ଡିତମାନେ ଗଣ ସଙ୍ଘାତକୁ ପରମ ଆଶ୍ରୟ ବୋଲି କହନ୍ତି । ୩୨ ।

---

## ଅଧ୍ୟାୟ—୧୦୮

ଯୁଧିଷ୍ଠିର କହିଲେ—ହେ ଭାରତ ! ଏହି ଧର୍ମମାର୍ଗ ଅତି ମହାନ୍ ଓ ବହୁଶାଖା ସମନ୍ୱିତଅଟେ । ଏହି ସବୁ ଧର୍ମମଧ୍ୟରେ କେଉଁ ଧର୍ମ ଅତିଶୟ ଅନୁଷ୍ଠେୟ ଓ ଗୁରୁତର ବୋଲି ଆପଣଙ୍କର ଅଭିମତ ? ଆମ୍ଭେ ଇହ ଓ ପରଲୋକରେ ଯେଉଁ ପରମଧର୍ମକୁ ଆଶ୍ରୟ କରିବୁଁ ଆପଣ ତାହା କୀର୍ତ୍ତନ କରନ୍ତୁ । ୨ ।

ଭୀଷ୍ମ କହିଲେ ପିତା, ମାତା ଓ ଗୁରୁଜନଙ୍କର ପୂଜା କରିବା ଆମ୍ଭର ବହୁମତ ଅଟେ, ମନୁଷ୍ୟ ଇହଲୋକରେ ଉକ୍ତ କର୍ମରେ ନିଯୁକ୍ତ ଥିଲେ ସମସ୍ତ ଲୋକକୁ ଜୟକରି ସୁମହତ ଯଶସ୍ୱୀ ହୁଅନ୍ତି ।୩।

ହେ ତାତ ଯୁଧିଷ୍ଠିର ! ସୁପୂଜିତ ପିତା, ମାତା ଓ ଗୁରୁମାନେ ଯେଉଁ କର୍ମ କରିବାକୁ ଅନୁମତି ଦେବେ, ତାହା ଧର୍ମ ହେଉ କିମ୍ବା ଧର୍ମ ବିରୁଦ୍ଧ ହେଉ, ଅବିଚଳିତ ଚିତ୍ତରେ କରିବା ଉଚିତ ।୪। ସେମାନଙ୍କର ଅନନୁଜ୍ଞାତ ହୋଇ ଅନ୍ୟ ଧର୍ମ ଆଚରଣ କରିବ ନାହିଁ । ସେମାନେ ଯାହା ଅନୁଜ୍ଞା କରିବେ, ତାହାହିଁ ଧର୍ମଅଟେ । ଏହା ନିଷ୍ଟୟ ଜାଣିବୁ, ପିତା, ମାତା ଓ ଗୁରୁ ଏହିତିନିଜଣ ଲୋକତ୍ରୟ ଓ ଆଶ୍ରମତ୍ରୟ ସ୍ୱରୂପ ଏବଂ ତିନିଜଣଙ୍କର ବେଦତ୍ରୟ ସ୍ୱରୂପ ଅଟନ୍ତି । ପିତା ଗାର୍ହପତ୍ୟ ଅଗ୍ନି, ମାତା ଦକ୍ଷିଣ ଅଗ୍ନି ଏବଂ ଗୁରୁ ଆହବନୀୟ ଅଗ୍ନି ଅଟନ୍ତି । ଏହି ଅଗ୍ନିତ୍ରୟ ଅତିଶୟ ଗୁରୁତମ ।୭। ପିତା, ମାତା ଓ ଗୁରୁ ଏହି ତିନିଜଣଙ୍କର ନିକଟରେ ଅପ୍ରମତ୍ତ ଥିଲେ ଲୋକତ୍ରୟକୁ ଜୟ କରିବ, ପିତୃ ପୂଜାଦ୍ୱାରା ଇହଲୋକରେ ମାତୃ ପୂଜାଦ୍ୱାରା ପରଲୋକରେ ଏବଂ ଗୁରୁପୂଜାଦ୍ୱାରା ଅବଶ୍ୟ ବ୍ରହ୍ମଲୋକରେ ଉତ୍ତୀର୍ଣ୍ଣ ହେବ ।

ହେ ଭାରତ ! ତ୍ରିଲୋକ ମଧ୍ୟରେ ଏମାନଙ୍କ ପ୍ରତି ସମ୍ମାନ କରିବ, ତୁମ୍ଭର ମଙ୍ଗଳ ହେଉ, ତୁମ୍ଭେ ସୁମହତଯଶ ଓ ଧର୍ମଫଳ ପ୍ରାପ୍ତ ହେବ । ପିତା, ମାତା ଓ ଗୁରୁଙ୍କ ନିକଟରେ କଦାପି ଭୋଗ କିମ୍ବା କାର୍ଯ୍ୟ ବିଷୟରେ ନିଜର ଆଧିକ୍ୟ ପ୍ରଦର୍ଶନ, ଅତିଭୋଜନ ଓ ଦୋଷ କୀର୍ତ୍ତନ କରିବ ନାହିଁ ।୧୦। ନିତ୍ୟତ ସେମାନଙ୍କର ପରିଚର୍ଯ୍ୟା କରିବ, ତାହାହିଁ ଉତ୍କୃଷ୍ଟ ସୁକୃତ ଅଟେ । ହେ ନୃପସତ୍ତମ ! ତୁମ୍ଭେ ଏହିପରି କଲେ କୀର୍ତ୍ତି, ପୁଣ୍ୟ, ଯଶ ଓ ପବିତ୍ର ଲୋକ ସବୁ ପ୍ରାପ୍ତ ହେବ ।୧୧। ପିତା, ମାତା ଓ ଗୁରୁଙ୍କୁ ଯେ ସମ୍ମାନ କରନ୍ତି, ସେ ସର୍ବଲୋକଙ୍କ ଦ୍ୱାରା ସମାଦୃତ ହୁଅନ୍ତି,

ଅତ୍ଵ ଯେ ସେମାନଙ୍କୁ ଅନାଦର କରନ୍ତି, ତାହାଙ୍କର ସମସ୍ତ କାର୍ଯ୍ୟ ବିଫଳ ହୁଏ । ୧୨ ।

ହେ ପରନ୍ତପ ! ତାହାଙ୍କର ଇହଲୋକ କିମ୍ବା ପରଲୋକ କିଛି ନାହିଁ; ଏହି ଗୁରୁତ୍ରୟ ଯାହାଙ୍କ କର୍ତ୍ତୃକ ନିୟତ ଅବମାନିତ ହୁଅନ୍ତି. ଇହଲୋକ ଓ ପରଲୋକରେ ତାହାଙ୍କର ଯଶ ପ୍ରକାଶିତ ହୁଏନାହିଁ ଏବଂ ପରଲୋକରେ ତାହାଙ୍କର କୌଣସି କଲ୍ୟାଣ ମଧ୍ୟ ଦୀପ୍ତିତ ହୁଏନାହିଁ । ପିତା ମାତା ଓ ଗୁରୁଙ୍କ ଉଦ୍ଦେଶ୍ୟରେ ଅମ୍ଭେ ଯେଉଁସବୁ ଅର୍ଥ ଆୟୋଜନ କରି ବିସର୍ଜନ କରୁଁ, ତାହା ଅମ୍ଭ ପକ୍ଷରେ ଶତ ଗୁଣ ଓ ସହସ୍ରଗୁଣ ହୁଏ ।୧୫।

ହେ ଯୁଧିଷ୍ଠିର ! ଏହି ନିମିତ୍ତ ଅମ୍ଭପାଇଁ ଲୋକତ୍ରୟ ପ୍ରକାଶିତ ହୋଇଅଛି । ଦଶଜଣ ଶ୍ରୋତ୍ରିୟ ଅପେକ୍ଷା ଜଣେ ସାଧୁ ଆଚାର୍ଯ୍ୟ ପ୍ରଧାନ ଅଟନ୍ତି, ଦଶ ଆଚାର୍ଯ୍ୟ ଅପେକ୍ଷା ଉପାଧ୍ୟାୟ ପ୍ରଧାନ, ଦଶ ଉପାଧ୍ୟାୟଙ୍କ ଅପେକ୍ଷା ପିତା ପ୍ରଧାନ ଅଟନ୍ତି, ଦଶ ପିତାଙ୍କ ଅପେକ୍ଷା ମାତା ପ୍ରଧାନ ଅଟନ୍ତି, ମଧ୍ୟ ମାତା ଗୌରବଦ୍ୱାରା ସମସ୍ତ ପୃଥିବୀକୁ ଅଭିଭବ କରନ୍ତି, ଅତଏବ ମାତାଙ୍କ ସମାନ ଗୁରୁ ନାହାନ୍ତି । ଅମ୍ଭ ମତରେ ପିତା ଏବଂ ମାତାଙ୍କଠାରୁ ଗୁରୁ ଗରୀୟାନ ଅଟନ୍ତି ।୧୮। ମାତା ପିତା ଉଭୟେ ଜନ୍ମପ୍ରତି କାରଣ ଅଟନ୍ତି ।

ହେ ଭାରତ ! ପିତା ଓ ମାତା ଉଭୟଙ୍କଠାରୁ ଏହି ଶରୀରର ସୃଷ୍ଟି ହୋଇଅଛି । ଅଜ ଆଚାର୍ଯ୍ୟଙ୍କ ଉପଦେଶାନୁସାରେ ଯେଉଁ ଜନ୍ମ ହୁଏ, ତାହା ଅଜର ଓ ଅମର ଅଟେ । ପିତା କିମ୍ବା ମାତା ଅପକାର କଲେ ସୁଦ୍ଧା ସେମାନେ ସର୍ବଦା ଅବଧ୍ୟ ଅଟନ୍ତି ।୨୦। ଅପରାଧ ବିଶିଷ୍ଟ ପିତା ମାତାଙ୍କର ବଧ ସାଧନ ନ କଲେ ଦୋଷୀ ହେବାକୁ ହୁଏ ନାହିଁ । ରାଜା ଯେପରି ବଧ୍ୟ ବ୍ୟକ୍ତିଙ୍କର ବଧ ନ କଲେ ଦୂଷିତ ହୁଅନ୍ତି, ତଦ୍ରୂପ ଅପରାଧୀ ଗୁରୁଜନଙ୍କର ବଧ ନ କଲେ ଦୂଷିତ ହୁଅନ୍ତି ନାହିଁ । ଧର୍ମ ନିମିତ୍ତ ଯତମାନ, ଅର୍ଥାତ୍ ଦୁଷ୍ଟ ପିତା ମାତାଙ୍କର ପ୍ରତିପାଳନାର୍ଥ ଯେଉଁମାନେ ଯତ୍ନ କରନ୍ତି, ମହର୍ଷିଗଣ ଓ ଦେବଗଣ ସେମାନଙ୍କୁ ଅନୁଗ୍ରହ ଭାଜନ ଜ୍ଞାନ କରନ୍ତି ।୨୧। ଯେ ସତ୍ୟ ବଚନ ଦ୍ୱାରା ବେଦ ପ୍ରତି ଅନୁଗ୍ରହ ପ୍ରକାଶ କରନ୍ତି ଏବଂ ଯେ ସତ୍ୟ କଥନ ଦ୍ୱାରା ଅମୃତ ସମ୍ପ୍ରଦାନ କରନ୍ତି, ତାହାଙ୍କୁ ପିତା ଓ ମାତା ଜ୍ଞାନ କରିବ । ଏବଂ ତାହାଙ୍କର କାର୍ଯ୍ୟକୁ ବିଦିତ ହୋଇ କଦାପି ତାହାଙ୍କ ପ୍ରତି ଅନିଷ୍ଟ ଆଚରଣ କରିବ ନାହିଁ ।୨୨। ଯେଉଁମାନେ

ବିଦ୍ୟାଶ୍ରବଣ କରି ପ୍ରତ୍ୟାସନ ହୋଇ ଗୁରୁଙ୍କ ପ୍ରତି କାର୍ଯ୍ୟଦ୍ୱାରା ମନେମନେ ସମାଦର କରନ୍ତିନାହିଁ, ସେମାନଙ୍କର ଭ୍ରୂଣହତ୍ୟା ଅପେକ୍ଷା ଅଧିକତର ପାପ ହୁଏ । ଇହଲୋକରେ ସେମାନଙ୍କ ଅପେକ୍ଷା ଅଧିକ ପାପୀ ଆଉ କେହି ନାହାନ୍ତି । ଗୁରୁଗଣ ଶିଷ୍ୟମାନଙ୍କୁ ଯେପରି ଭାବିବେ, ଶିଷ୍ୟମାନେ ମଧ୍ୟ ସେମାନଙ୍କୁ ତଦ୍ରୂପ ଅର୍ଚ୍ଚନା କରିବେ । ୨୩ ।

ଅତଏବ ଯେ ପୁରାତନ ଧର୍ମ୍ମ କାମନା କରନ୍ତି, ତାଙ୍କ ପକ୍ଷରେ ଗୁରୁମାନେ ପୂଜନୀୟ । ଯତ୍ନତଃ ସଂବିଭଜ୍ୟ ଓ ଅର୍ଚ୍ଚନୀୟ ହୁଅନ୍ତି । ୨୪ । ଯେଉଁ କର୍ମ୍ମଦ୍ୱାରା ପିତାଙ୍କୁ ପ୍ରୀତିଯୁକ୍ତ କରାଯାଏ, ସେହି କର୍ମ୍ମଦ୍ୱାରା ପ୍ରଜାପତି ପ୍ରୀତ ହୁଅନ୍ତି, ଆଉ ଯଦ୍ଦ୍ୱାରା ମାତାଙ୍କୁ ପ୍ରୀତ କରାଯାଏ, ତଦ୍ଦ୍ୱାରା ପୃଥିବୀ ପୂଜିତା ହୁଅନ୍ତି, ଏବଂ ଯେଉଁ କର୍ମ୍ମଦ୍ୱାରା ଉପାଧ୍ୟାୟଙ୍କୁ ପ୍ରୀତ କରାଯାଏ, ତଦ୍ଦ୍ୱାରା ବ୍ରହ୍ମ ପୂଜିତ ହୁଅନ୍ତି, ଅତଏବ ପିତା ଓ ମାତାଙ୍କ ଅପେକ୍ଷା ଗୁରୁ ପୂଜ୍ୟତମ ଅଟନ୍ତି । ୨୫ । ଗୁରୁଙ୍କୁ ପୂଜାକଲେ ଦେବତା ଋଷି ଓ ପିତୃଗଣ ସମ୍ୟକ ପରିତୁଷ୍ଟ ହୁଅନ୍ତି, ଅତଏବ ଗୁରୁ ସମସ୍ତଙ୍କ ଅପେକ୍ଷା ପୂଜ୍ୟତମ ଅଟନ୍ତି । ୨୭ ।

କୌଣସି ପ୍ରକାର ବ୍ୟାପାର ଦ୍ୱାରା ଗୁରୁ ଅବଜ୍ଞା ଭାଜନ ନୁହନ୍ତି । ଗୁରୁଙ୍କୁ ଯାଦୃଶ ମାନ୍ୟ କରିବାକୁ ହୁଏ ପିତାମାତା ତାଦୃଶ ନୁହନ୍ତି । ୨୮ । ପିତା, ମାତା ଓ ପୁରବାସୀ କଦାପି ଅବମାନ ଭାଜନ ହୋଇ ନ ପାରନ୍ତି । ସେମାନଙ୍କ କାର୍ଯ୍ୟରେ କୌଣସି ଦୋଷ ପ୍ରଦର୍ଶନ କରିବା ଉଚିତ ନୁହେ । ଗୁରୁମାନଙ୍କର ଯେପରି ସମ୍ମାନ କରିବାକୁ ହୁଏ, ତାହା ଦେବଗଣ ଓ ମହର୍ଷିଗଣ ବିଶେଷରୂପେ ବିଦିତ ଅଛନ୍ତି । ୨୯ । ଯେଉଁମାନେ କାର୍ଯ୍ୟ ବା ମନ ଦ୍ୱାରା ଉପାଧ୍ୟାୟ, ପିତା ଓ ମାତାଙ୍କର ଅନିଷ୍ଟ କରନ୍ତି, ଭ୍ରୂଣ-ହତ୍ୟା ଅପେକ୍ଷା ସେମାନଙ୍କର ପାପ ଅଧିକତର ପ୍ରବଳ ଅଟେ ଏବଂ ଇହଲୋକରେ ସେମାନଙ୍କ ଅପେକ୍ଷା ଅନ୍ୟକେହି ପାପୀ ନାହାନ୍ତି । ୩୦ । ଯେଉଁ ପୁତ୍ର ପିତୃମାତୃକର୍ତ୍ତୃକ ପାଳିତ ଓ ବର୍ଦ୍ଧିତ ହୋଇ ତାହାଙ୍କୁ ଭରଣ ପୋଷଣ ନକରେ, ଭ୍ରୂଣହତ୍ୟା ସମାନ ପାପୀ ଏବଂ ତାହାଠାରୁ ବଳି ଅନ୍ୟ କେହି ଅଧିକ ପାପୀ ନାହାନ୍ତି । ୩୧ । ମିତ୍ରଦ୍ରୋହୀ, କୃତଘ୍ନ, ସ୍ତ୍ରୀ ଘାତୀ ଓ ଗୁରୁଘାତୀ ଏହି ଚାରି ଜଣଙ୍କର ନିଷ୍କୃତିବିଷୟ ଆମ୍ଭେମାନେ କଦାପି ଶ୍ରବଣ କରିନାହୁଁ । ୩୨ । ଇହଲୋକରେ ପୁରୁଷର ଯାହା କର୍ତ୍ତବ୍ୟ ତତ୍ସମୁଦାୟ ବିସ୍ତାର ରୂପେ କଥିତ ହେଲା । ଏହାହିଁ ଶ୍ରେୟସ୍କର

ଏବଂ ଏତଦ୍‌ପେକ୍ଷା ଶ୍ରେଷ୍ଠତର ଆଉ କିଛି ନାହିଁ । ସମସ୍ତ ଧର୍ମକୁ ଏକତ୍ର କରି ଯାହା ସାର ସ୍ୱରୂପ ତାହା କୀର୍ତ୍ତିତ ହେଲା । ୨୬ ।

## ଅଧ୍ୟାୟ—୧୦୯

ଯୁଧିଷ୍ଠିର କହିଲେ—ହେ ଭାରତ ! ମନୁଷ୍ୟ ଧର୍ମ ପଥରେ ଅବସ୍ଥାନ କରିବାର ଇଚ୍ଛା କରି କି ପ୍ରକାରେ ରହିବ ! ହେ ଭରତର୍ଷଭ ! ଆପଣ ଏହି ଜିଜ୍ଞାସୁ ବ୍ୟକ୍ତିକୁ ତାହା ଉପଦେଶ କରନ୍ତୁ । ୧ ।

ହେ ରାଜନ ! ସତ୍ୟ ଓ ଅନୃତ ଏହି ଉଭୟ ସଂସାର ଲୋକମାନଙ୍କୁ ଆବରଣ କରି ବିଦ୍ୟମାନ ରହିଅଛି । ଏହି ଉଭୟଙ୍କୁ ତ୍ୟାଗ କରିବା ଅତି ଦୁଷ୍କର । ଅତଏବ ଧର୍ମ ନିଷ୍ଠିତ ମାନବ ତଦୁଭୟ ମଧ୍ୟରୁ କଣ ଆଚରଣ କରିବ ? ୨ । ସତ୍ୟ କଣ ? ଅନୃତ କଣ ? ଏବଂ ସନାତନ ଧର୍ମ ବା କଣ ? କେଉଁ ସମୟରେ ସତ୍ୟ କହିବ ଏବଂ କେଉଁ ସମୟରେ ଅବା ମିଥ୍ୟା କହିବ ? ୩ ।

ଭୀଷ୍ମ କହିଲେ ହେ ଭାରତ ! ସତ୍ୟ କଥନ ଉତ୍ତମ ଅଟେ । ସତ୍ୟ ଅପେକ୍ଷା ଶ୍ରେଷ୍ଠ ଆଉ କିଛି ନାହିଁ । ଲୋକ ମଧ୍ୟରେ ଯାହା ଦୁର୍ଜ୍ଞେୟ ତାହା କହୁଅଛୁଁ । କୌଣସି ସମୟରେ ସତ୍ୟ ଅବକ୍ତବ୍ୟ ହୁଏ, ତେତେବେଳେ ଅବା ଅନୃତ ବକ୍ତବ୍ୟ ହୁଏ । ଯହିଁରେ ମିଥ୍ୟା ସତ୍ୟ ହୁଏ, ଏବଂ ସତ୍ୟମଧ୍ୟ ମିଥ୍ୟା ହୁଏ । ଅତଏବ ଯାହାଠାରେ ସତ୍ୟ ନିଷ୍ଠାଯୁକ୍ତ ନୁହେ, ତଦ୍ଦ୍ୱାରା ବାଳକ ଅର୍ଥାତ ଅଜ୍ଞାନ ମାନବ ବଧ ହୁଏ । ସତ୍ୟ ଓ ମିଥ୍ୟାକୁ ବିଶେଷ ରୂପରେ ଚିନ୍ତା କରି ପାରିଲେ ମନୁଷ୍ୟ ଧର୍ମଜ୍ଞ ହୁଅନ୍ତି । ୪ । ବ୍ୟାଧ ଯେପରି ହିଂସ୍ର ସ୍ୱଭାବ ହୋଇ ସୁଦ୍ଧା ଅନ୍ଧ ବଧ ହେତୁରୁ ସ୍ୱର୍ଗ ଗମନ କରିଥିଲା, ତଦ୍ରୂପ ଅନାର୍ଯ୍ୟ, ଅକୃତଜ୍ଞ ଅତି ନିଷ୍ଠୁର ପୁରୁଷ ମଧ୍ୟ ସୁମହତ ପୁଣ୍ୟ ଲାଭ କରି ପାରନ୍ତି । ୫ । ଗଙ୍ଗା ତଟରେ ସର୍ପିଣୀ କର୍ତ୍ତୃକ ସ୍ଥାପିତ ସହସ୍ର ଅଣ୍ଡକୁ ଭେଦ କରି ଉଲୂକ ଯେପରି ମହତ୍ତ୍ୱପୂର୍ଣ୍ଣ ଲାଭ କରିଥିଲା, ତଦ୍ରୂପ ଅଧର୍ମଜ୍ଞ ମୂଢ଼ ମାନବ ଧର୍ମକାମ ହୋଇ ଯେ ସୁମହତ ପୁଣ୍ୟ ଲାଭ କରି ପାରିବ, ଏଥିରେ ଆଉ ଆଶ୍ଚର୍ଯ୍ୟ କଣ ? ୮ ।

ଯେଉଁ ବିଷୟରେ ଧର୍ମ ଅତ୍ୟନ୍ତ ଦୁର୍ଲ୍ଲଭ ଓ ଦୁର୍ଜ୍ଞେୟ, ଏହି ପ୍ରଶ୍ନ ତାଦୃଶ ହୋଇଅଛି । ଧର୍ମର ଲକ୍ଷଣ କଠିନ ଅତି ଦୁଷ୍କର, ଅତଏବ କିଏ ଏହା ନିଶ୍ଚୟ କରି କହିପାରେ ? ଜୀବଗଣଙ୍କର ଅଭ୍ୟୁଦୟ ନିମିତ୍ତ ଋଷିଗଣ ଧର୍ମର ପ୍ରବଚନ କରିଅଛନ୍ତି, ଅତଏବ ଯାହା ଅଭ୍ୟୁଦୟ ସମନ୍ୱିତ ତାହା ଧର୍ମ ଅଟେ । ଏହା ନିଶ୍ଚୟ ଅଛି । ୧୦ । ଜୀବଗଣଙ୍କର ଅହିଂସା ନିମିତ୍ତ ଧର୍ମ ପ୍ରବଚନ କୃତ ହୋଇଅଛି, ଅତଏବ ଯାହା ଅହିଂସା ସଂଯୁକ୍ତ, ତାହାହିଁ ଧର୍ମ ବୋଲି ନିଶ୍ଚୟ ଅଛି । ଯେ ଧାରଣା କରନ୍ତି, ମହର୍ଷିଗଣ ତାହାଙ୍କୁ ଧର୍ମ କହନ୍ତି । ଧର୍ମ କର୍ତ୍ତୃକ ପ୍ରଜାମାନେ ବିଧୃତ ହୋଇ ରହିଅଛନ୍ତି । ଅତଏବ ଯାହା ଧାରଣା ସଂଯୁକ୍ତ, ତାହା ଧର୍ମ ଅଟେ । ଏହା ନିଶ୍ଚୟ ଅଛି । କୌଣସି କୌଣସି ବ୍ୟକ୍ତି ଶ୍ରୁତିକୁ ଧର୍ମ କହନ୍ତି, କିନ୍ତୁ ଅନ୍ୟଲୋକେ ତାହା ଅଙ୍ଗୀକାର କରନ୍ତିନାହିଁ । ଆମ୍ଭେମାନେ ତତ୍ପ୍ରତି ଅସୂୟା କରୁନାହୁଁ । ସମସ୍ତ ବିହିତ ହୁଏ ନାହିଁ । ୧୩ । ଯେଉଁମାନେ ଅନ୍ୟାୟ ଦ୍ୱାରା କାହାର ଧନ ହରଣ କରିବାକୁ ଇଚ୍ଛା କରନ୍ତି, ସେମାନଙ୍କୁ ଧନୀଙ୍କର ସନ୍ଧାନଦେବା ଉଚିତ ନୁହେ । ଏହାହିଁ ଧର୍ମ ରୂପରେ ନିଶ୍ଚିତ । ୧୪ ।

ଚୌରମାନେ ଧନୀଙ୍କ କଥା ଜିଜ୍ଞାସା କଲେ ଯଦି ନ କହି ସେମାନଙ୍କଠାରୁ ମୁକ୍ତି ଲଭ ହୁଏ, ତେବେ ମୌନଭରେ ସୁଦ୍ଧା ତାହା କହିବ ନାହିଁ । ନ କହିଲେ ଯଦି ସେମାନଙ୍କ ହସ୍ତରୁ ନିଷ୍କୃତି ଲଭ ନହୁଏ, ତେବେ ଶପଥ ପୂର୍ବକ "ଆମ୍ଭେ ଜାଣୁନାହୁଁ" ଏହା କହିବ । ଏତାଦୃଶ ସ୍ଥଳରେ ମିଥ୍ୟା କହିଲେ ସୁଦ୍ଧା ଦୋଷ ନାହିଁ । ଅତଏବ ଏହି ସବୁ ସ୍ଥଳରେ ସତ୍ୟ ଅପେକ୍ଷା ମିଥ୍ୟା କଥନ ଶ୍ରେୟ; ଶପଥକରି ସୁଦ୍ଧା ଯଦି ପାପାତ୍ମର ମାନବଗଣଙ୍କ ହସ୍ତରୁ ନିଷ୍କୃତି ଲଭ ହୁଏ, ତାହା ମଧ୍ୟ ଉତ୍ତମ । ୧୬ । ସାମର୍ଥ୍ୟ ଥିଲେ କୌଣସି ପ୍ରକାରରେ ପାପାତ୍ମର ମାନବମାନଙ୍କୁ ଧନ ଦାନ କରିବ ନାହିଁ । ପାପାତ୍ମର ମନୁଷ୍ୟମାନଙ୍କୁ ଯେଉଁ ଧନ ପ୍ରଦତ୍ତ ହୁଏ, ତାହା ଦାତାଙ୍କୁ ମଧ୍ୟ ପୀଡ଼ିତ କରେ । ୧୭ । ଉତ୍ତମର୍ଣ୍ଣ ଯଦି ଅଧମର୍ଣ୍ଣଙ୍କର ଶରୀରକୁ ଦାସତ୍ୱରେ ନିଯୁକ୍ତ କରି ନିଜ ଧନ ଆଦାନ କରିବାକୁ ଅଭିଳାଷ କରନ୍ତି ଏବଂ ଉକ୍ତ ବିଷୟରେ ସତ୍ୟପ୍ରତି ଦାନାର୍ଥ ଆହୂତ ସାକ୍ଷୀମାନେ ଯାହା କହନ୍ତି ଓ ସେମାନଙ୍କର ତଦ୍‌ବିଷୟ ଯାହା କହିବା ଉଚିତ, ତାହା ଯଦି ନ କହନ୍ତି, ତାହା ହେଲେ ସେମାନେ ମିଥ୍ୟାବାଦୀ ହୁଅନ୍ତି । ପ୍ରାଣାତ୍ୟରେ ଓ ବିବାହ କାଳରେ ମିଥ୍ୟା କଥା

କହିଲେ ତାହା ଦୋଷାବହ ହୁଏ ନାହିଁ । ୧୯ । ଅନ୍ୟର ଧର୍ମ ହେତୁ ଅର୍ଥ ରକ୍ଷଣ ନିମିତ୍ତ ମିଥ୍ୟା କହିଲେ ଦୋଷ ହୁଏ ନାହିଁ । ପରର ସିଦ୍ଧି କାମନା କରି ନୀଚ ବ୍ୟକ୍ତି ଧର୍ମଭିକ୍ଷୁକ ହୁଏ । ୨୦ ।

ଦୁଇଜଣ ମିଳିତ ହୋଇ କୌଣସି କାର୍ଯ୍ୟ କରି "ଲଭ୍ୟାଂଶ ସମଭାଗରେ ବିଭାଗ କରି ନେବୁଁ" ଏହା ପ୍ରତିଶ୍ରୁତି ହେଲେ ପରିଶେଷରେ ଯଦି ଅଧର୍ମ ବଶତଃ ଅର୍ଥ ବିନଷ୍ଟ ହୁଏ, ତାହାହେଲେ ମଧ୍ୟ ଭାଗାନୁସାରେ ଉକ୍ତ ଅର୍ଥକୁ ପ୍ରଦାନ କରିବା ଉଚିତ । କୌଣସି ବ୍ୟକ୍ତି ଧର୍ମ-ବନ୍ଧନରୁ ଯଦି ପ୍ରଚ୍ୟୁତ ହୁଏ, କିମ୍ବା ଅଧର୍ମ ବଶତଃ ଯଦି ବଳତ୍କାର କରେ, ତେବେ ତାହାପ୍ରତି ଦଣ୍ଡ ବିଧାନ କରିବା କର୍ତ୍ତବ୍ୟ । ଅଥବା ଦାସତ୍ୱ ପ୍ରାପ୍ତ ହୋଇ ଯଦି କେହି କପଟତା ପ୍ରକାଶ କରେ ତାହାହେଲେ କପଟତା ଦ୍ୱାରା ତାହାର ଦଣ୍ଡ ବିଧେୟ ଅଟେ । ଯେଉଁ ବ୍ୟକ୍ତି ଅସୁର ଧର୍ମ ଆଶ୍ରୟ କରିଅଛି, ସେ ସର୍ବ ଧର୍ମରୁ ବିଚ୍ୟୁତ ଅଟେ । ୨୨ । ଠେ ଲୋକ ସ୍ୱଧର୍ମକୁ ପରିତ୍ୟାଗ ପୂର୍ବକ ଅସୁର ଧର୍ମ ଦ୍ୱାରା ଜୀବିକା ନିର୍ବାହ କରିବାକୁ ଇଚ୍ଛା କରେ । ଇହଲୋକରେ ଯେଉଁମାନେ ଧନକୁ ସର୍ବସ୍ୱ ରୂପରେ ନିଶ୍ଚୟ କରି ଅଛନ୍ତି, ସେମାନେ ପାପାତ୍ମା ଅଟନ୍ତି । ଧନ ଶ୍ରେୟ ଏବଂ ଧର୍ମ ଶ୍ରେୟ ନୁହେ, ଯେଉଁ ପାପାତ୍ମା ଏହିପରି ନିଶ୍ଚୟ କରିଅଛି, ତାହାକୁ ଯେ କୌଣସି ଉପାୟ ଦ୍ୱାରା ନିହତ କରିବା ବିଧେୟ ଅଟେ ।

ଯେଉଁମାନେ ଧର୍ମକର୍ମ ନିମିତ୍ତ କ୍ଲେଶ ସହ୍ୟ ନ କରି ଓ ଦୀନ ଦରିଦ୍ରମାନଙ୍କ ସହିତ ଧନ ବିଭାଗ କରି ଭୋଗ ନ କରେ ସେମାନେ ପାପର ଆୟତନ ଅଟନ୍ତି । ୨୪ । ସେମାନେ ଦେବ ମନୁଷ୍ୟଗଣଙ୍କଠାରୁ ପରିଭ୍ରଷ୍ଟ ପ୍ରେତ ସଦୃଶ ଅଟନ୍ତି । ଯେଉଁମାନେ ଯଜ୍ଞବିହୀନ ଓ ତପସ୍ୟା-ହୀନ ଅଟନ୍ତି, ସେମାନଙ୍କ ସହିତ ସହବାସ କରିବ ନାହିଁ । ୨୫ । କାରଣ ସେମାନଙ୍କର ବିତ୍ତ ବିନାଶ ନିମିତ୍ତ ଯେଉଁ ଦୁଃଖ ହୁଏ ତାହା ପ୍ରାଣ-ବିୟୋଗ ସଦୃଶ, ପାପାଚାରଗଣଙ୍କର ଧର୍ମ ବୋଲି କୌଣସି ବିଷୟ ନିଶ୍ଚୟ ନାହିଁ । ଅତଏବ ଏହି ଧର୍ମରେ ତୁମ୍ଭର ଅଭିରୁଚି ହେଉ, ଏପରି ଉପଦେଶ ସେମାନଙ୍କୁ ପ୍ରଯତ୍ନପୂର୍ବକ ପ୍ରଦାନ କରିବାକୁ କେହି ନାହିଁ । ୨୬ । ତଥାବିଧ ବ୍ୟକ୍ତିଙ୍କୁ ଯେ ନିହତ କରେ, ସେ ପାପଗ୍ରସ୍ତ ହୁଏ ନାହିଁ, ସେ ସ୍ୱକର୍ମ ଦ୍ୱାରା ନିହତ ବ୍ୟକ୍ତିଙ୍କୁ ହନନ କରେ । ଯେ ହତ ହୁଏ, ସେ

ଧର୍ମଦ୍ୱାରା ନିହତ ଅଟେ । ସେହି ହେତୁରୁ ପାପାଚାରମାନଙ୍କ ମଧ୍ୟରୁ ଏହି ମାନଙ୍କୁ ହନନ କରିବୁ, ଏପରି ନିୟମ ଯେଉଁ ବ୍ୟକ୍ତି କରେ ସେ କାକ ଓ ଗୃଧ୍ରପ୍ରାୟ କେବଳ କପଟଜୀବୀ ଅଟେ । ସେମାନେ ଦେହତ୍ୟାଗାନନ୍ତର ଏହିସବୁ ଯୋନିରେ ଜନ୍ମଗ୍ରହଣ କରନ୍ତି । ୨୯ । ଯେଉଁ ମନୁଷ୍ୟ ଯେଉଁ ବିଷୟରେ ଯେପରି ବ୍ୟବହାର କରେ, ତାହା ପ୍ରତି ତଦ୍ରୂପ ବ୍ୟବହାର କରିବା ଧର୍ମ । କପଟାଚାରକୁ କପଟ ବ୍ୟବହାର ଦ୍ୱାରା ବାଧିତ କରିବା ବିଧେୟ ଏବଂ ସାଧୁ ଆଚରଣଶୀଳ ମାନବଙ୍କ ଠାରେ ସଦାଚରଣ କରିବା ଉଚିତ । ୩୦ ।

## ଅଧ୍ୟାୟ—୧୧୦

ଯୁଧିଷ୍ଠିର କହିଲେ—ହେ ପିତାମହ ! ଜୀବଗଣ ଯେତେବେଳେ ଯେଉଁ ଅବସ୍ଥାରେ ଥାନ୍ତି, ସେହି ସେହି ଅବସ୍ଥା ଦ୍ୱାରା ଉତ୍ତରୋତ୍ତର କ୍ଳେଶ ମାନ ହେଲେ ଯେଉଁ ଉପାୟ ଦ୍ୱାରା ଦୁସ୍ତର ବିଷୟମାନଙ୍କୁ ଉତ୍ତୀର୍ଣ୍ଣ ହୋଇ ପାରନ୍ତି ଆପଣ ଆମ୍ଭଙ୍କୁ ତାହା କୀର୍ତ୍ତନ କରନ୍ତୁ । ୧ ।

ଭୀଷ୍ମ କହିଲେ, ଯେଉଁ ସବୁ ସଂଯତ ଶତ୍ରୁ ଦ୍ୱିଜାତିମାନେ ପୂର୍ବୋକ୍ତ ଆଶ୍ରମମାନଙ୍କରେ ଯଥୋକ୍ତ ଧର୍ମ ଆଚରଣ କରନ୍ତି; ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରିଥାନ୍ତି । ୨ । ଯେଉଁମାନେ ଦମ୍ଭ ଆଚରଣ ନକରନ୍ତି, ଯେଉଁମାନଙ୍କର ଶତ୍ରୁ ବୃତ୍ତି ସଂଯତ ଏବଂ ଯେଉଁମାନେ ଇନ୍ଦ୍ରିୟ-ମାନଙ୍କର ନିଗ୍ରହ କରନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ ନିନ୍ଦା କଲେ ମଧ୍ୟ ଯେଉଁମାନେ ପ୍ରତ୍ୟୁତ୍ତର କରନ୍ତି ନାହିଁ, ହିଂସିତ ହୋଇ ସୁଦ୍ଧା ଯେଉଁମାନେ ହିଂସା ନ କରନ୍ତି, ଦାନ କରନ୍ତି, କିନ୍ତୁ ଯାଚନା କରନ୍ତି ନାହିଁ, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୪ ।

ଯେଉଁମାନେ ପ୍ରତିଦିନ ଅତିଥିମାନଙ୍କୁ ଅନ୍ନପ୍ରଦାନ କରନ୍ତି, କଦାପି କାହାର ଅସୂୟା କରନ୍ତି ନାହିଁ ଏବଂ ନିୟତ ସ୍ୱାଧ୍ୟାୟଶୀଳ ଅର୍ଥାତ୍ ସ୍ୱଶାଖୋକ୍ତ ବେଦ ପାଠ କରନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୫ । ଯେଉଁ ସବୁ ଧର୍ମ କୋବିଦ ମାନବଗଣ ମାତା-ପିତାଙ୍କର ବୃତ୍ତିକୁ ଆଶ୍ରୟ କରନ୍ତି ଏବଂ ଦିବା ନିଦ୍ରା ପରିତ୍ୟାଗ କରନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୬ । ଯେଉଁମାନେ

ବାକ୍ୟ, ମନ ଓ କର୍ମ୍ମ ଦ୍ୱାରା କୌଣସି ପାପାଚରଣ ଓ ଜୀବଗଣଙ୍କ ପ୍ରତି ଦଣ୍ଡବିଧାନ କରନ୍ତି ନାହିଁ । ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୭। ଯେଉଁସବୁ ନୃପତିମାନେ ରଜୋଗୁଣାନ୍ୱିତ ନ ହୋଇ ଲୋଭବଶତଃ ଅର୍ଥ ଆହରଣ ନ କରନ୍ତି, ଅଥଚ ସମୁଦାୟ ବିଷୟକୁ ସର୍ବତୋଭାବରେ ରକ୍ଷା କରନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରି ପାରନ୍ତି । ୮ । ଯେଉଁ ସବୁ ଅଗ୍ନିହୋତ୍ର ପରାୟଣ ସାଧୁମାନେ ଋତୁ କାଳରେ ସ୍ୱଦାର ନିରତ ହୋଇ ଅନ୍ୟ ବୃତ୍ତିକୁ ଅବଲମ୍ବନ ନ କରନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୧୦ ।

ଏହି ସଂସାରରେ ପ୍ରାଣତ୍ୟାଗର ସମୟ ଉପସ୍ଥିତ ହେଲେ ମଧ୍ୟ ଯେଉଁମାନେ ସତ୍ୟ ବାକ୍ୟ କହନ୍ତି, ସେହି ଜୀବଗଣଙ୍କର ନିଦର୍ଶନ ସ୍ୱରୂପ ମନୁଷ୍ୟମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୧୧ । ଯେଉଁ-ମାନଙ୍କର କର୍ମ୍ମରେ କୌଣସି କପଟତା ନାହିଁ, ବାକ୍ୟ ସବୁ ସତ୍ୟ ଓ ପ୍ରିୟତର ଏବଂ ଅର୍ଥ ସମୁଦାୟ ସତ୍କାର୍ଯ୍ୟରେ ପରିଣତ ହୁଏ, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୧୨ । ଯେଉଁସବୁ ବିପ୍ରମାନେ ଅନଧ୍ୟାୟ ଦିବସରେ ବେଦ ପାଠ କରନ୍ତି ନାହିଁ, ସେହି ତପୋନିଷ୍ଠ ତାପସଗଣ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୧୩ । ଯେଉଁସବୁ କୌମାର ବ୍ରହ୍ମଚାରୀମାନେ ବିଦ୍ୟା, ବେଦ ଓ ବ୍ରତସ୍ନାନ ହୋଇ ତପସ୍ୟା କରନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୧୪ । ଯେଉଁସବୁ ମହାତ୍ମାମାନଙ୍କର ରଜୋ ଓ ତମୋଗୁଣ ଶାନ୍ତ ହୋଇଅଛି ଏବଂ ଯେଉଁମାନେ କେବଳ ସତ୍ତ୍ୱଗୁଣ ଅବଲମ୍ବନ କରି ଅଛନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୧୫ ।

ଯେଉଁମାନଙ୍କ ଠାରେ କେହି ତ୍ରସ୍ତ ହୁଅନ୍ତି ନାହିଁ, ଏବଂ ଯେଉଁମାନେ କାହାରି ଠାରେ ସୁଦ୍ଧା ତ୍ରସଯୁକ୍ତ ନ ହୁଅନ୍ତି, ଏବଂ ସମସ୍ତେ ଯେଉଁମାନଙ୍କର ଆତ୍ମତୁଲ୍ୟ ଅଟନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୧୬ । ଯେଉଁ ସବୁ ନରଶ୍ରେଷ୍ଠ ସାଧୁମାନେ ପରଶ୍ରୀ ଦର୍ଶନରେ ପରିତାପ ପ୍ରାପ୍ତ ହୁଅନ୍ତି ନାହିଁ ଏବଂ ଯେଉଁମାନେ ଗ୍ରାମ୍ୟ ବିଷୟରୁ ନିବୃତ୍ତ ଥାନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୧୭ । ଯେଉଁ ସବୁ ଶ୍ରଦ୍ଧାନ ଶାନ୍ତ ସ୍ୱଭାବ ମାନବଗଣ ସମସ୍ତ

ଦେବଗଣଙ୍କୁ ନମସ୍କାର କରନ୍ତି ଏବଂ ସମସ୍ତ ଧର୍ମକୁ ଶ୍ରବଣ କରନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୧୮ । ଯେଉଁମାନେ ନିଜର ମାନକୁ ଇଚ୍ଛା କରନ୍ତି ନାହିଁ, ଅଥଚ ଅପରକୁ ସମ୍ମାନ କରନ୍ତି, ଏବଂ ମାନନୀୟ ଲୋକମାନଙ୍କୁ ନମସ୍କାର କରନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୧୯ । ଯେଉଁମାନେ ପ୍ରଜାକାମ ହୋଇ ବିଶୁଦ୍ଧ ଚିତ୍ତରେ ପ୍ରତ୍ୟେକ ତିଥିରେ ଶ୍ରାଦ୍ଧ କରନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୨୦ । ଯେଉଁମାନେ କ୍ରୋଧକୁ ସଂଯତ କରନ୍ତି ଏବଂ କ୍ରୁଦ୍ଧ ବ୍ୟକ୍ତିମାନଙ୍କୁ ସମ୍ୟକ ପ୍ରକାରେ ଶାନ୍ତ କରନ୍ତି, ଆଉ କୌଣସି ଜୀବ ପ୍ରତି କୁପିତ ହୁଅନ୍ତି ନାହିଁ, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୨୧ ।

ଯେଉଁ ମାନବମାନେ ଇହଲୋକରେ ନିୟତ ମଧୁମାଂସ ଭୋଜନକୁ ପରିତ୍ୟାଗ କରନ୍ତି ଏବଂ ଆଜନ୍ମ ମଦ୍ୟପାନ ପରିହାର କରନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି । ୨୨ । ଯେଉଁମାନେ ପ୍ରାଣଯାତ୍ରା ନିର୍ବାହାର୍ଥ ମାତ୍ର ଭୋଜନ କରନ୍ତି, ସନ୍ତାନାର୍ଥ ବନିତା ସଙ୍ଗକରନ୍ତି, ସତ୍ୟ କହିବା ନିମିତ୍ତ ବାକ୍ୟୋଚ୍ଚାରଣ କରନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି ।୨୩। ସର୍ବଭୂତଙ୍କର ଈଶ୍ୱର, ଜଗତ୍ ଉତ୍ପତ୍ତି ପ୍ରଳୟର କାରଣ ନାରାୟଣ ଦେବଙ୍କୁ ଯେଉଁମାନେ ଭକ୍ତି କରନ୍ତି, ସେହିମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି ।୨୪। ଏହି ଯେଉଁ ପଦ୍ମତୁଲ୍ୟ ରକ୍ତଲୋଚନ ପୀତବାସ ମହାବାହୁ ଅଚ୍ୟୁତ, ଅର୍ଜୁନଙ୍କର ସୁହୃତ୍, ଭ୍ରାତା, ମିତ୍ର ଓ ସମ୍ବନ୍ଧୀ ଅଟନ୍ତି, ଯେଉଁ ଅଚିନ୍ତ୍ୟ ସ୍ୱଭାବ ପୁରୁଷଶ୍ରେଷ୍ଠ ପ୍ରଭୁଗୋବିନ୍ଦ ଇଚ୍ଛାକଲେ ଏହି ସମସ୍ତ ଲୋକକୁ ଚର୍ମପ୍ରାୟ ପରିବେଷ୍ଟନ କରନ୍ତି ଏବଂ ଯେ ଧନଞ୍ଜୟ ଓ ତୁମ୍ଭର ପ୍ରିୟ ଓ ହିତକର କାର୍ଯ୍ୟରେ ନିୟତ ଅବହିତ ରହିଅଛନ୍ତି ସେହି ଏହି ପୁରୁଷପ୍ରବର ଅନଭିଭବନୀୟ ବୈକୁଣ୍ଠ ପୁରୁଷୋତ୍ତମ ଅଟନ୍ତି ।୨୭।

ଯେଉଁ ଭକ୍ତମାନେ ଇହଲୋକରେ ଏହି ନାରାୟଣ ହରିଙ୍କୁ ଆଶ୍ରୟ କରନ୍ତି, ସେମାନେ ଦୁସ୍ତର ବିଷୟମାନଙ୍କୁ ଅତିକ୍ରମ କରନ୍ତି, ଏ ବିଷୟରେ କୌଣସି ବିଚାରଣା ନାହିଁ ।୨୮। ଯେଉଁମାନେ ଏହି ଦୁସ୍ତର ବିଷୟର ଅତିକ୍ରମ ବିବରଣକୁ ପାଠ କରନ୍ତି, ଶ୍ରବଣ କରନ୍ତି କିମ୍ବା ବିପ୍ରଗଣଙ୍କଠାରେ

କୀର୍ତ୍ତନ କରନ୍ତି, ସେମାନେ ମଧ୍ୟ ଦୁସ୍ତର ବିଷୟମାନଙ୍କରୁ ଉତ୍ତୀର୍ଣ୍ଣ ହୁଅନ୍ତି । ୨୯ ।

ହେ ଅନଘ ! ମାନବଗଣ ଇହ ଓ ପରଲୋକରେ ଯେପରି ଦୁସ୍ତର ବିଷୟମାନଙ୍କରୁ ଉତ୍ତୀର୍ଣ୍ଣ ହୁଅନ୍ତି, ସେହି କର୍ତ୍ତବ୍ୟ କାର୍ଯ୍ୟସବୁ ଆମ୍ଭେ ତୁମ୍ଭଠାରେ କୀର୍ତ୍ତନ କଲୁଁ । ୩୦ ।

## ଅଧ୍ୟାୟ—୧୧୧

ଯୁଧିଷ୍ଠିର କହିଲେ—ହେ ପିତାମହ ! ଯେଉଁମାନେ ପ୍ରିୟଦର୍ଶନ ନୁହନ୍ତି, ସେମାନେ ପ୍ରିୟଦର୍ଶନ ରୂପରେ ଆଉ ଯେଉଁମାନେ ପ୍ରିୟଦର୍ଶନ ଅଟନ୍ତି, ସେମାନେ ଅପ୍ରିୟ ଦର୍ଶନ ରୂପରେ ପ୍ରତିଭାତ ହୁଅନ୍ତି । ଅତଏବ ଈଦୃଶ ପୁରୁଷମାନଙ୍କୁ ଆମ୍ଭେମାନେ କି ପ୍ରକାରେ ଜାଣି ପାରିବୁଁ ?୧।

ଭୀଷ୍ମ କହିଲେ ହେ ଯୁଧିଷ୍ଠିର ! ଏହି ବିଷୟରେ ବ୍ୟାଘ୍ର, ଗୋମାୟୁ ସମ୍ବଳିତ ଏହି ପୁରାତନ ଇତିହାସକୁ ପ୍ରାଚୀନ ପଣ୍ଡିତମାନେ ଉଦାହରଣ ଦେଇଥାନ୍ତି । ତାହା ଶ୍ରବଣ କର ।୨।

ପୂର୍ବକାଳରେ ଶ୍ରୀମତୀ ପୁରିକାନାମ୍ନୀ ପୁରି ମଧ୍ୟରେ ପର ହିଂସାରତ କ୍ରୂର ସ୍ୱଭାବ ପୁରୁଷାଧମ ପୌରିକ ନାମରେ ଜଣେ ନୃପତି ଥିଲେ । ୩ । ତାହାର ପରମାୟୁ ପରିକ୍ଷୟ ହୁଅନ୍ତେ ସେ ଅନୀପ୍‌ସିତ ଗତି ପ୍ରାପ୍ତ ହେବାରୁ ପୂର୍ବ କର୍ମ ଦୋଷବଶତଃ ଜମ୍ବୁକ ହୋଇଥିଲା । ସେ ପୂର୍ବର ଐଶ୍ୱର୍ଯ୍ୟକୁ ସ୍ମରଣକରି ପରମ ନିର୍ବେଦକୁ ପ୍ରାପ୍ତ ହେଲା । ଅନ୍ୟଦ୍ୱାରା ଉପହୃତ ହେଲେ ସୁଦ୍ଧା ସେ ମାଂସ ଭକ୍ଷଣ କଲା ନାହିଁ । ୫ । ସେ ସର୍ବଭୂତଙ୍କ ମଧ୍ୟରେ ଅହିଂସ୍ର, ସତ୍ୟବାଦୀ ଓ ଦୃଢ଼ବ୍ରତ ହୋଇ ଯଥାକାଳରେ ସ୍ୱୟଂପତିତ ଫଳଦ୍ୱାରା ଆହାର ବୃତ୍ତି ନିର୍ବାହ କରୁଥିଲା । ୬ । ଶ୍ମଶାନ ମଧ୍ୟରେ ବାସ କରିବା ତାହାର ସମ୍ମତ ହୋଇଥିଲା । ଜନ୍ମଭୂମିର ଅନୁରୋଧ ବଶତଃ ଅନ୍ୟତ୍ର ବାସ କରିବାକୁ ତାହାର ଅଭିରୁଚି ହେଲାନାହିଁ ।୭। ସମାନ ଜାତୀୟ ଗୋମାୟୁଗଣ ତାହାର ଶୌଚକୁ ସହ୍ୟକରି ନପାରି ବିନୟଗର୍ଭ ବଚନଦ୍ୱାରା ତାହାର ବୁଦ୍ଧିକୁ ବିଚଳିତ କରିବାରେ ପ୍ରବୃତ୍ତ ହେଲେ ।୮। ସେମାନେ କହିଲେ—ତୁମ୍ଭେ ଭୟଙ୍କର ଶ୍ମଶାନରେ ବସତି କରି ଶୁଚ୍ଚାଗ୍ରହରେ ରହିବାକୁ ଅଭିଳାଷ କରୁଅଛ । ତୁମ୍ଭେ ମାଂସାଶୀ ହୋଇ

ତୁମ୍ଭର ଏପରେ ବିପରୀତ ବୁଦ୍ଧି କାହିଁକି ? ଅତଏବ ତୁମ୍ଭେ ଆମ୍ଭମାନଙ୍କର ସମାନ ହୁଅ । ଅମ୍ଭେମାନେ ତୁମ୍ଭଙ୍କୁ ଭକ୍ଷ୍ୟଦ୍ରବ୍ୟ ଦାନ କରିବୁଁ । ଶୁଦ୍ଧାଚାରକୁ ପରିତ୍ୟାଗକରି ଭୋଜନ କର । ଯାହା ଆମ୍ଭମାନଙ୍କର ଭୋଜ୍ୟ ତୁମ୍ଭର ମଧ୍ୟ ତାହା ହେଉ । ୧୦ ।

ଜମ୍ବୁକ ସ୍ୱଜାତୀୟ ଶୃଗାଳମାନଙ୍କର ଏହିକଥା ଶ୍ରବଣ କରି ସମାହିତ ହୋଇ ବିସ୍ତୃତ ଯୁକ୍ତିଯୁକ୍ତ ଅନିଷ୍ଠୁର ମଧୁର ବାକ୍ୟରେ ପ୍ରତ୍ୟୁତ୍ତର କଲା—ଆମ୍ଭର ଜନ୍ମର କୌଣସି ପ୍ରମାଣ ନାହିଁ । ସ୍ୱଭାବ ଅନୁସାରେ କୌଣସି କୁଳରେ ଉତ୍ପନ୍ନ ହୋଇଅଛୁ । ଅତଏବ ଯଦ୍ଦ୍ୱାରା ଯଶ ବିସ୍ତୀର୍ଣ୍ଣ ହୁଏ, ଆମ୍ଭେ ତାଦୃଶ କର୍ମ ପ୍ରାର୍ଥନା କରୁଅଛୁଁ । ୧୨ । ଯଦିଚ ଅମ୍ଭେ ଶ୍ମଶାନରେ ବାସ କରୁଅଛୁଁ, ତଥାପି ଆମ୍ଭର ନିୟମ ଶ୍ରବଣ କର । ଆତ୍ମା କର୍ମଫଳକୁ ଭୋଗକରେ । ଆଶ୍ରମ ଧର୍ମର କାରଣ ନୁହେ ।୧୩। ଆଶ୍ରମରେ ଥାଇ ଯେଉଁବ୍ୟକ୍ତି ବ୍ରହ୍ମହତ୍ୟା କରେ ଅଥବା ଅନାଶ୍ରମରେ ଥାଇ ଗୋଦାନ କରେ, ତହିଁରେ କି ସେମାନଙ୍କର ପାତକ ଓ ଦାନ ବୃଥା ହୁଏ ?।୧୪। ତୁମ୍ଭେମାନେ ସ୍ୱାର୍ଥ ଲୋଭବଶତଃ କେବଳ ଭକ୍ଷଣ କରିବାରେ ନିରତ ହେଉଅଛ । ପରିଣାମରେ ଯେଉଁ ଦୋଷସମୂହ ବର୍ତ୍ତମାନ ରହିଅଛି, ମୋହିତ ହୋଇ ତାହା ଦେଖିପାରୁ ନାହଁ । ୧୫ । ଅସନ୍ତୋଷକାରିଣୀ, ଗର୍ହଣୀୟା, ଧର୍ମହାନୀ ହେତୁ ଦୂଷିତା, ସୁତରାଂ ଇହ ଓ ପରଲୋକରେ ଅନିଷ୍ଟକାରିଣୀ ବୃତ୍ତିରେ ଆମ୍ଭର ଅଭିରୁଚି ନାହିଁ । ୧୬। କୌଣସି ବିଖ୍ୟାତ ବିକ୍ରମ ଶାର୍ଦ୍ଦୂଳ ଗୋମାୟୁକୁ ଶୁଚି ଓ ପଣ୍ଡିତ ଜାଣିକରି ସ୍ୱୟଂ ତାହାକୁ ଆତ୍ମା ସଦୃଶ ସମ୍ମାନପୂର୍ବକ ସଚିବକାର୍ଯ୍ୟରେ ବରଣ କଲା । ୧୭ ।

ଶାର୍ଦ୍ଦୂଳ କହିଲା ହେ ପ୍ରିୟଦର୍ଶନ । ତୁମ୍ଭର ସ୍ୱଭାବ ବିଜ୍ଞାତ ହେଲା । ତୁମ୍ଭେ ଆମ୍ଭ ସହିତ ରାଜକାର୍ଯ୍ୟ କରିବାକୁ ଗମନ କର । ଅଭିଲଷିତ ଭୋଗ ସମୁଦାୟ ପ୍ରାର୍ଥନା କରି ପ୍ରଚୁର ଭୋଗକୁ ପରିହାର କର । ଅମ୍ଭେମାନେ ତୀକ୍ଷ୍ଣରୂପରେ ଖ୍ୟାତ ଅଛୁଁ । ଅତଏବ ତୁମ୍ଭଙ୍କୁ ମୃଦୁପୂର୍ବକ ହିତବାକ୍ୟରେ ବିଜ୍ଞାପନ କରୁଅଛୁ । ତୁମ୍ଭର ଶ୍ରେୟ ହେବ ।୧୯। ଅନନ୍ତର ଜମ୍ବୁକ ସେହି ମହାନୁଭବ ମୃଗେନ୍ଦ୍ରର ବାକ୍ୟକୁ ସମ୍ମାନ କରି ଈଷତ୍ ଅନତ ହୋଇ ସବିନୟ ବଚନରେ କହିଲା । ୨୦ ।

ଗୋମାୟୁ କହିଲା ହେ ମୃଗରାଜ ! ତୁମ୍ଭେ ଅମ୍ଭ ନିମିତ୍ତ ଯେଉଁକଥା କହିଲ, ତାହା ତୁମ୍ଭର ଉପଯୁକ୍ତ । ତୁମ୍ଭେ ଯେଉଁ ଧର୍ମାର୍ଥକୁଶଳ ଓ ପବିତ୍ର ସହାୟ ଅନ୍ୱେଷଣ କରୁଅଛ, ତାହା ଉଚିତ ହେଉଅଛି ।୨୧। ହେ ବୀର ! ଅମାତ୍ୟ ବ୍ୟତିରେକେ କିମ୍ବା ଶତ୍ରୁର ପରିପନ୍ଥୀ ଦୁଷ୍ଟ ଅମାତ୍ୟ ଦ୍ୱାରା ମହତ୍ତ୍ୱ ରକ୍ଷା କରିବା ସୁକଠିନ ଅଟେ । ୨୨ ।

ହେ ମହାଭାଗ । ନୀତିଜ୍ଞ, ଅନୁରକ୍ତ, ସନ୍ଧିକୁଶଳ, ପରସ୍ପର ଅସଂସୃଷ୍ଟ ବିଜିଗୀଷୁ, ଅଲବ୍‌ଧ ଅକପଟ ବୁଦ୍ଧି ସମ୍ପନ୍ନ, ହିତ ନିରତ ଓ ପ୍ରଶସ୍ତ ଚିତ୍ତ ସହାୟମାନଙ୍କୁ, ଅଗ୍ରଜ ଓ ପିତୃଗଣଙ୍କ ପ୍ରାୟ ସମ୍ମାନ କରିବା ଉଚିତ । ୨୪ ।

ହେ ମୃଗାଧିପ । ଅମ୍ଭର ସନ୍ତୋଷବଶତଃ ଅନ୍ୟ ବିଷୟରେ ଅଭିରୁଚି ହୁଏ ନାହିଁ । ଅମ୍ଭେ ସୁଖଭୋଗ ଓ ତଦାଶ୍ରିତ ଐଶ୍ୱର୍ଯ୍ୟ କାମନା କରୁନାହୁଁ ।୨୫। ଅମ୍ଭର ଚରିତ୍ର ତୁମ୍ଭର ପୁରାତନ ଭୃତ୍ୟବର୍ଗଙ୍କ ସହିତ ମିଳିତ ହେବ ନାହିଁ । ସେହି ଦୁଃଶୀଳ ଭୃତ୍ୟବର୍ଗ ଅମ୍ଭର ନିମିତ୍ତ ତୁମ୍ଭଙ୍କୁ ବିଭିନ୍ନ କରିବେ । ଅନ୍ୟ କୌଣସି ତେଜସ୍ୱୀର ଆଶ୍ରୟ ମଧ୍ୟ ଶ୍ଳାଘନୀୟ ନୁହେ । ବିଶୁଦ୍ଧଚିତ୍ତ ମହାଭାଗ ବଂକ୍ରୁ ପାବକ ଅପେକ୍ଷା ସୁଦ୍ଧା ଦାରୁଣ ଅଟନ୍ତି । ୨୭ । ଆପଣ ଦୀର୍ଘଦର୍ଶୀ, ମହୋତ୍ସାହସମ୍ପନ୍ନ, ବଦାନ୍ୟ, ବହାବଳଶାଳୀ, କୃତୀ, ଅବ୍ୟର୍ଥକାରୀ ଏବଂ ବିବିଧ ଭୋଗ ଦ୍ୱାରା ଅଲଙ୍କୃତ ଥିଲ । ୨୮। ଅମ୍ଭେ ଅଳ୍ପରେ ସନ୍ତୁଷ୍ଟ ହୋଇ ନାହୁଁ ଏବଂ କେବେହେଁ ସେବାବୃତ୍ତି ଅନୁଷ୍ଠାନ କରିନାହୁଁ । ସୁତରାଂ ସେବାକାର୍ଯ୍ୟ ବିଷୟରେ ଅନଭିଜ୍ଞ ଅଟୁ । କେବଳ ସ୍ୱଚ୍ଛନ୍ଦରେ ବନମଧ୍ୟରେ ବିଚରଣ କରୁଁ ।୨୯ । ଯେଉଁମାନେ ଗୃହସ୍ଥାଶ୍ରମରେ ବାସ କରନ୍ତି, ସେମାନଙ୍କର ରାଜାଙ୍କଠାରେ ନିନ୍ଦାଜନିତ ଦୋଷହୁଏ । କିନ୍ତୁ ବନବାସିମାନଙ୍କର ବ୍ରତାଚରଣ ନିଃସଙ୍ଗ ଓ ନିର୍ଭୟ ହୁଏ । ୧୦ । ନୃପତିଙ୍କ କର୍ତ୍ତୃକ ଆହୂୟମାନ ମାନବଙ୍କର ଅନ୍ତଃକରଣରେ ଯେଉଁ ଭୟହୁଏ, ସନ୍ତୁଷ୍ଟଚିତ୍ତ ଫଳମୂଳାଶୀ ବନବାସି-ମାନଙ୍କ ମନରେ ସେହି ଭୟ ଥାଏ ନାହିଁ ।୩୧। ଅନାୟାସଲଭ୍ୟ ପାନୀୟ ଏବଂ ଭୟଯୁକ୍ତ ସ୍ୱାଦୁ ଅନ୍ନ, ଏହି ଉଭୟ ମଧ୍ୟରେ ବିଚାର କରି ଦେଖୁଅଛି ଯେ, ଯହିଁରେ ନିବୃତ୍ତି ଅଛି, ତାହାହିଁ ସୁଖ ଅଟେ । ନୃପତିଗଣ ଭୃତ୍ୟମାନଙ୍କର ପ୍ରକୃତ ଅପରାଧ ହେତୁ ଏପରି ଦଣ୍ଡବିଧାନ କରି ପାରନ୍ତି ନାହିଁ । ଯାଦୃଶ ଅପବାଦଦ୍ୱାରା ଦୂଷିତ ହୋଇ ସେମାନେ ନିଧନ ପ୍ରାପ୍ତ

ହୁଅନ୍ତି, ଅର୍ଥାତ୍ ଭୃତ୍ୟଗଣଙ୍କ ମଧ୍ୟରେ ଅଧିକାଂଶ ଲୋକେ ମିଥ୍ୟାପବାଦରେ ଦୂଷିତ ହୋଇ ପ୍ରାଣ ତ୍ୟାଗ କରନ୍ତି । ୩୩ ।

ହେ ମୃଗେନ୍ଦ୍ର ! ଯଦି ଆମ୍ଭଙ୍କୁ ଏହି ରାଜକାର୍ଯ୍ୟ କରିବାକୁ ହେବ, ତୁମ୍ଭେ ବିବେଚନା କର, ତାହାହେଲେ ଆମ୍ଭଙ୍କୁ ଯେଉଁପରି ରହିବାକୁ ହେବ, ତାହାର ଗୋଟିଏ ନିୟମ କରିବାକୁ ଇଚ୍ଛାକରୁଁ । ତୁମ୍ଭର ପ୍ରାଚୀନ ସଚିବମାନେ ଆମ୍ଭର ମାନନୀୟ ଅଟନ୍ତି, କିନ୍ତୁ ଆମ୍ଭର ହିତକର ବାକ୍ୟ ତୁମ୍ଭର ଶ୍ରୋତବ୍ୟ, ଆମ୍ଭଦ୍ୱାରା ଯେଉଁବୃତ୍ତି କଳ୍ପିତ ହେବ, ତାହା ତୁମ୍ଭଠାରେ ସ୍ଥିରତର ଥିବ । ୩୫ । ଆମ୍ଭେ କଦାପି ତୁମ୍ଭର ଅନ୍ୟ କୌଣସି ସଚିବଗଣଙ୍କ ସହିତ ମନ୍ତ୍ରଣା କରିବୁ ନାହିଁ, ତୁମ୍ଭର ପ୍ରାଚୀନ ମନ୍ତ୍ରୀମାନେ ନୀତିମନ୍ତ ହୋଇ ଯୁକ୍ତା ଆମ୍ଭ ବିଷୟରେ ବୃଥା କଥା କହିବେ ।୩୬। ଆମ୍ଭେ ଏକାକୀ ନିର୍ଜନରେ ଏକମାତ୍ର ତୁମ୍ଭ ସହିତ ମିଳିତ ହୋଇ ହିତକର ବାକ୍ୟ କହିବୁଁ । ଜ୍ଞାତି କାର୍ଯ୍ୟ ବିଷୟରେ ତୁମ୍ଭେ ଆମ୍ଭଙ୍କୁ ହିତାହିତ ଜିଜ୍ଞାସା କରିବ ନାହିଁ ।୩୭। ତୁମ୍ଭେ ଆମ୍ଭ ସହିତ ମନ୍ତ୍ରଣା କରି ପରେ ଅନ୍ୟ ମନ୍ତ୍ରିଗଣଙ୍କର ହିଂସା କରିବ ନାହିଁ ଏବଂ ମଦୀୟ ଆତ୍ମୀୟଗଣଙ୍କ ପ୍ରତି କୁପିତ ହୋଇ ତୁମ୍ଭେ ଦଣ୍ଡବିଧାନ କରିବ ନାହିଁ । ୩୮ ।

"ଏହିପରି ହେଉ" ମୃଗେନ୍ଦ୍ର ଏହିକଥା କହି ଜମ୍ବୁକର ସମ୍ମାନ କଲା । ଜମ୍ବୁକ ମଧ୍ୟ ସମ୍ମାନିତ ହୋଇ ବ୍ୟାଘ୍ରର ମନ୍ତ୍ରୀପଦକୁ ପ୍ରାପ୍ତ ହେଲା । ୩୯ । ବ୍ୟାଘ୍ରର ପୂର୍ବସ୍ଥିତ ଭୃତ୍ୟମାନେ ଶୃଗାଳକୁ ସ୍ୱକାର୍ଯ୍ୟ ବିଷୟରେ ସଲ୍ଲୁତ ଓ ପୂଜ୍ୟମାନ ହେବାର ଦେଖି ସମସ୍ତେ ଦଳବଦ୍ଧ ହୋଇ ବାରମ୍ବାର ତାହାପ୍ରତି ବିଦ୍ୱେଷ କଲେ ।୪୦। ଅଶୁଭ ବୁଦ୍ଧି ମନ୍ତ୍ରୀମାନେ ମିତ୍ରଜ୍ଞାନରେ ଗୋମାୟୁକୁ ସାନ୍ତ୍ୱନା ଓ ପ୍ରସନ୍ନ କରି ନିଜ ପ୍ରାୟ ତାହାକୁ ଦୋଷୀ କରିବାର ଇଚ୍ଛାକଲେ । ୪୧ । ତାହା ନକଲେ ପୂର୍ବେ ଯେଉଁମାନେ ପରଦ୍ରବ୍ୟ ହରଣ କରିଅଛନ୍ତି, ବର୍ତ୍ତମାନ ସେମାନେ ବାସ କରିପାରୁ ନାହାନ୍ତି ଏବଂ ଗୋମାୟୁ କର୍ତ୍ତୃକ ନିୟନ୍ତ୍ରିତ ହୋଇ କୌଣସି ଦ୍ରବ୍ୟ ଗ୍ରହଣ କରିବାକୁ ସମର୍ଥ ହେଉ ନାହାନ୍ତି । ୪୨ । ସେମାନେ ଅପରାର ଉନ୍ନତି କାମନା କରି ନାନାବିଧ ବାକ୍ୟ ଓ ବିପୁଳ ଶତ୍ରୁ ଦ୍ୱାରା ଗୋମାୟୁର ବୁଦ୍ଧିକୁ ବିଲୋଭିତ କଲେ । କିନ୍ତୁ ସେହି ମହାପ୍ରାଜ୍ଞ ଜମ୍ବୁକ କୌଣସି କ୍ରମରେ ଓ ଧୈର୍ଯ୍ୟରୁ ବିଚଳିତ

ହେଲ ନାହିଁ । ଅନନ୍ତରରେ ସମସ୍ତେ ଷଡ଼ଯନ୍ତ୍ର କରି ଶୃଗାଳର ବିନାଶ ନିମିତ୍ତ ବ୍ୟାଘ୍ରର ଅଭିଳଷିତ ମାଂସ ଯାହାକି ତାହାର ଗୃହରେ ସଂସ୍କୃତ ଥିଲା, ସେମାନେ ନିଜେ ସେଠାରୁ ସେହି ମାଂସ ନେଇ ଶୃଗାଳର ଗୃହରେ ରଖିଲେ । ୪ । ଉକ୍ତ ମାଂସ ଯେଉଁ ନିମିତ୍ତ ଯନ୍ତ୍ରୀଙ୍କ ଅପହୃତ ହୋଇଥିଲା ଏବଂ ଯେ ଏହି ବିଷୟକୁ ମନ୍ତ୍ରଣା କରିଥିଲା, ତତ୍ସମସ୍ତ ଶୃଗାଳ ବିଦିତ ଥିଲା । କେବଳ ସେ ନିଜର ବନ୍ଧୁ ବିଚ୍ଛେଦ ନିମିତ୍ତ କ୍ଷମା କରିଥିଲା । ୪୬ । ସେ ଯେତେବେଳେ ସଚିବ କାର୍ଯ୍ୟରେ ନିଯୁକ୍ତ ହୋଇଥିଲା, ତେତେବେଳେ ଏହି ନିୟମ କରିଥିଲା ଯେ ଇହଲୋକରେ ସର୍ବଭୂତଙ୍କର ବୃତ୍ତି ନିମିତ୍ତ କାହାର ପ୍ରତି ଆଘାତ କରିବା କର୍ତ୍ତବ୍ୟ ନୁହେ । ୪୭ ।

ଭୀଷ୍ମ କହିଲେ—କ୍ଷୁଧିତ ବ୍ୟାଘ୍ର ଭୋଜନ କରିବା ନିମିତ୍ତ ଉତ୍ଥିତ ହୋଇ ଭୋଜନର ଉପଯୁକ୍ତ ସେହି ମାଂସକୁ ଦେଖି ପାରିଲା ନାହିଁ । ତେତେବେଳେ ସେ ଆଜ୍ଞା କଲା ଯେ, ମାଂସ ଯେ ଅପହରଣ କରିଅଛି, ସେହି ଚୋରର ଅନୁସନ୍ଧାନ କର । କପଟାଚାର ଭୃତ୍ୟମାନେ ମୃଗେନ୍ଦ୍ରରେ ସେହି ମାଂସ ବିଷୟ ବର୍ଣ୍ଣନ କଲେ ଯେ, ତୁମ୍ଭର ପ୍ରାଜ୍ଞମାନୀ ପଣ୍ଡିତମନ୍ତ୍ରୀ ସେହି ମାଂସକୁ ହରଣ କରିଅଛି । ଅନନ୍ତରରେ ଶାର୍ଦ୍ଦୂଳରାଜ ଶୃଗାଳର ଚପଳତା ଶ୍ରବଣ କରି ରୋଷାବିଷ୍ଟ ହୋଇ ଅତ୍ୟନ୍ତ କ୍ରୋଧାକ୍ରାନ୍ତ ହେଲା ଏବଂ ତାହାକୁ ବଧ କରିବାର ବାସନା କଲା । ପୂର୍ବସ୍ଥିତ ମନ୍ତ୍ରୀମାନେ ତାହାର ସେହି ଛିଦ୍ର ଦର୍ଶନ କରି କହିଲେ ଯେ, ସେହି ଶୃଗାଳ ଆମ୍ଭମାନଙ୍କ ସମସ୍ତଙ୍କର ବୃତ୍ତି ଭଙ୍ଗରେ ପ୍ରବୃତ୍ତ ହୋଇଅଛି । ସେମାନେ ଏହିପରି ନିଶ୍ଚୟ କରି ପୁନର୍ବାର ସେହି ଶୃଗାଳର କର୍ମସବୁ ବର୍ଣ୍ଣନ କରିବାକୁ ଆରମ୍ଭ କଲେ । ୫୨ । ତାହାର କର୍ମ ଏପରି ହେବା ସ୍ଥଳେ, ସେ କଣ ନ କରି ପାରେ ? ଆପଣ ତାହାକୁ ପୂର୍ବେ ଯେପରି ଶୁଣିଥିଲେ, ସେ ତଦ୍ରୂପ ନୁହେ । ୫୩ । ସେ ବାକ୍ୟ ମାତ୍ରାରେ ଧର୍ମିଷ୍ଠ, କିନ୍ତୁ ତାହାର ସ୍ୱଭାବ ଅତି ଦାରୁଣ ଅଟେ । ଏହି ପାପାତ୍ମା କପଟ ଧର୍ମ୍ମ ଅବଲମ୍ବନପୂର୍ବକ ବୃଥା ଆଚାର ପରିଗ୍ରହ କରି ଅଛନ୍ତି । ୫୪ । କାର୍ଯ୍ୟ ବଶତଃ ଭୋଜନାର୍ଥ ବ୍ରତ ବିଷୟରେ ଶ୍ରମ କରିଅଛି । ଯଦି ଏ ବିଷୟରେ ଆପଣଙ୍କର ଅବିଶ୍ୱାସ ହୁଏ ତେବେ ଏହିକ୍ଷଣି ଆପଣଙ୍କୁ ଦେଖାଇ ଦେଉଅଛୁଁ । ସେହି ମାଂସ ଶୃଗାଳ ଗୃହରେ ପ୍ରବେଶିତ ହୋଇଅଛି । ମାଂସ ହରଣ ଓ ତାର ବୃତ୍ତାନ୍ତ ଶ୍ରବଣ କରି ବ୍ୟାଘ୍ର ତେତେବେଳେ ଗୋମାୟୁ ବଧକର ବୋଲି ଆଜ୍ଞା କଲା ।

ତଦନନ୍ତର ଶାର୍ଦ୍ଦୂଳର ଜନନୀ ଶାର୍ଦ୍ଦୂଳ-ବାକ୍ୟ ଶ୍ରବଣ କରି ହିତକଥା ଦ୍ୱାରା ତାହାକୁ ସାନ୍ତ୍ୱନା କରିବା ପାଇଁ ଆସିଲା । ସେ କହିଲା— ବତ୍ସ, କପଟକାର୍ଯ୍ୟ ସଂଯୁକ୍ତ ବାକ୍ୟକୁ ଗ୍ରାହ୍ୟ କରିବା ତୁମ୍ଭର ଉଚିତ ନୁହେ । ସ୍ପର୍ଦ୍ଧାହେତୁ ଉଗ୍ରତର ଅପରାଧ ଜନ ସଂସର୍ଗ ଜନିତ ଦୋଷ ଦ୍ୱାରା ନିର୍ଦ୍ଦୋଷ ବ୍ୟକ୍ତି ମଧ୍ୟ ଦୋଷୀ ହୁଏ । କୌଣସି ବ୍ୟକ୍ତି ଟବେଚିଲାରକ ସମ୍ବନ୍ଧିତ ପ୍ରକୃଷ୍ଟ କର୍ମ ସହ୍ୟ କରିପାରେ ନାହିଁ । ୬୯ । ନିର୍ଦ୍ଦୋଷ ବ୍ୟକ୍ତି ଅଭିଯୁକ୍ତ ହେଲେ ତାହାର ଦୋଷ ଘଟିଥାଏ । ସ୍ୱକର୍ମ ସାଧନକାରୀ ବନବାସୀ ମୁନିଙ୍କର ମଧ୍ୟ ଶତ୍ରୁମିତ୍ର ଉଦାସୀନ ଏହି ପକ୍ଷତ୍ରୟ ଉତ୍ପନ୍ନ ହୁଏ ।

ଲୁବ୍ଧଗଣଙ୍କର ବିଶୁଦ୍ଧ ଲୋକ ଦ୍ୱେଷ୍ୟ ହୁଏ । କାତରଗଣଙ୍କର ବଳବାନ ଦ୍ୱେଷ୍ୟ ହୁଏ । ମୂର୍ଖଗଣଙ୍କର ପଣ୍ଡିତ ଦ୍ୱେଷ ହୁଅନ୍ତି ଏବଂ ଦରିଦ୍ରଗଣଙ୍କର ମହା ଧନଶାଳୀ ମାନବମାନେ ଦ୍ୱେଷ୍ୟ ହୁଅନ୍ତି । ଅଧାର୍ମିକମାନଙ୍କର ଧାର୍ମିକ, ବିରୂପମାନଙ୍କର ସୁରୂପସମ୍ପନ୍ନ ମନୁଷ୍ୟମାନେ ଦ୍ୱେଷ୍ୟ ହୁଅନ୍ତି । ୭୨ ।

ଅନେକାନେକ ପଣ୍ଡିତ, ମୂର୍ଖ, ଲୁବ୍ଧ, ପରସ୍ୱାପଜୀବୀ ମାନବଗଣ ବୃହସ୍ପତିଙ୍କ ସଦୃଶ ମତିମାନ ନିର୍ଦ୍ଦୋଷ ମନୁଷ୍ୟଙ୍କର ଦୋଷ ସ୍ଥାପନ କରନ୍ତି । ୭୩ । ଯଦିଚ ତୁମ୍ଭର ଶୂନ୍ୟ ଗୃହରୁ ମାଂସ ଅପହୃତ ହୋଇଅଛି, କିନ୍ତୁ ଯେଉଁ ବ୍ୟକ୍ତି ଦାନ କଲେ ସୁଦ୍ଧା ଗ୍ରହଣ କରିବାକୁ ଇଚ୍ଛା କରେ ନାହିଁ ତାହା ସମ୍ବନ୍ଧରେ ଉକ୍ତ ରୂପ ବିବେଚନା କରିବା ଅବିଧେୟ ।୭୪। ଅସଭ୍ୟ ଲୋକେ ସଭ୍ୟ ସଦୃଶ ଓ ସଭ୍ୟଗଣ ମଧ୍ୟ ଅସଭ୍ୟ ସଦୃଶ୍ୟ ଦୃଶ୍ୟ ହୋଇଥାନ୍ତି; ଲୋକଙ୍କର ଭାବ ବିବିଧ ପ୍ରକାରରେ ବିଲୋକିତ ହୁଏ, ଅତଏବ ସେହି ବିଷୟମାନଙ୍କରେ ପରୀକ୍ଷା କରିବା ଯୁକ୍ତିଯୁକ୍ତ ଅଟେ ।୭୫। ବ୍ୟୋମମଣ୍ଡଳ ଅବାଙ୍ମୁଖ କଟାହଗର୍ଭବତ୍ ଦୃଶ୍ୟ ହୁଏ ଏବଂ ଖଦ୍ୟୋତକୁ ଅଗ୍ନି ସ୍ଫୁଲିଙ୍ଗବତ୍ ବିଲୋକନ କରାଯାଏ କିନ୍ତୁ ଆକାଶରେ ତଳ ନାହିଁ ଏବଂ ଖଦ୍ୟୋତରେ ମଧ୍ୟ ହୁତାଶନ ନାହିଁ । ଅତଏବ ପ୍ରତ୍ୟକ୍ଷ ଦୃଷ୍ଟ ବିଷୟରେ ପରୀକ୍ଷା କରିବା ବିଧେୟ । ପରୀକ୍ଷା କରି ବିଷୟ ଜ୍ଞାପନ କଲେ ପଶ୍ଚାତ୍ ପରିତାପ କରିବାକୁ ହୁଏ ନାହିଁ । ୭୬ ।

ହେ ପୁତ୍ର । ପ୍ରଭୁ ହୋଇ ସୁଦ୍ଧା ପରକୁ ବିନଷ୍ଟ କରିବା ଉଚିତ ନୁହେଁ, ଏହା କଷ୍ଟ ଦୁଷ୍କର ନୁହେଁ । କିନ୍ତୁ ଇହଲୋକରେ ପ୍ରଭାବସମ୍ପନ୍ନ

ବ୍ୟକ୍ତିମାନଙ୍କର କ୍ଷମା ଗୁଣ ଶ୍ଲାଘନୀୟ ଓ ଯଶସ୍ୟ ଅଟେ । ୬୮ । ହେ ପୁତ୍ର ! ତୁମ୍ଭେ ତାହାଙ୍କୁ ସାମନ୍ତମାନଙ୍କ ମଧ୍ୟରେ ସ୍ଥାପନ କରିଅଛ, ତଦ୍ଵାରା ସେ ବିଖ୍ୟାତ ହୋଇଅଛନ୍ତି । ମନ୍ତ୍ରଣା ପାତ୍ର ଅତି କଷ୍ଟରେ ପ୍ରାପ୍ତ ହୁଏ, ସେ ତୁମ୍ଭର ସହୃତ, ତୁମ୍ଭେ ତାହାକୁ ରକ୍ଷାକର । ୬୯ । ପରଦ୍ରୋହ ଦ୍ଵାରା ଦୂଷିତ ପବିତ୍ର ବ୍ୟକ୍ତିଙ୍କୁ ଯେ ଅନ୍ୟ ପ୍ରକାରେ ଜ୍ଞାନ କରନ୍ତି, ସେ ସ୍ଵୟଂ ଅମାତ୍ୟ ଗଣଙ୍କୁ ଦୂଷିତ କରି ଅବିଲମ୍ବରେ ବିନଷ୍ଟ ହୁଅନ୍ତି । ୭୦ । ଜମ୍ବୁକର ସେହି ଶତ୍ରୁ ସମୂହ ମଧ୍ୟରୁ କୌଣସି ଧର୍ମାତ୍ମା ଆଗମନ କରି ଯେପରି ଛଳ ଘଟିଥିଲା, ତତ୍ସମୁଦାୟ ପ୍ରକାଶ କରି କହିଲା । ୭୧ । ଅନନ୍ତର ଜମ୍ବୁକର ଚରିତ୍ର ବିଜ୍ଞାତ ହେବାରୁ ବ୍ୟାଘ୍ର ତାହାକୁ ସତ୍କାର କରି ବିମୋଚନ କଲା ଏବଂ ବାରମ୍ବାର ତାହାକୁ ସ୍ନେହ ସହିତ ଆଲିଙ୍ଗନ କଲା । ୭୨ । ନୀତି ଶାସ୍ତ୍ରଜ୍ଞ ଗୋମାୟୁ ମୃଗେନ୍ଦ୍ରର ଅନୁଜ୍ଞା ଗ୍ରହଣ ପୂର୍ବକ ସେହି ଅମର୍ଷରେ ସନ୍ତପ୍ତ ହୋଇ ପ୍ରାୟୋପବେଶନ କାମନା କଲା । ୭୩ । ଶାର୍ଦ୍ଦୂଳ ସ୍ନେହ ବଶତଃ ଉତ୍ଫୁଲ୍ଲଲୋଚନ ହୋଇ ସମ୍ମାନ ଦ୍ଵାରା ସେହି ଧର୍ମିଷ୍ଠ ଶୃଗାଳକୁ ଅତି ସମାଦର କରି ଅନଶନ ବ୍ରତ ଅବଲମ୍ବନ କରିବାକୁ ନିବାରଣ କଲା । ୭୪ ।

ଶୃଗାଳ ବ୍ୟାଘ୍ରକୁ ସ୍ନେହବଶତଃ ସମ୍ଭ୍ରାନ୍ତ୍ୟାବଲୋକନରେ ପ୍ରଣତ ହୋଇ ବାଷ୍ପ ଗଦଗଦ ବଚନରେ କହିଲା ଯେ ତୁମ୍ଭେ ପ୍ରଥମରେ ଆମ୍ଭଙ୍କୁ ପୂଜିତ କରି ପରିଶେଷରେ ଅବମାନିତ କଲ ଏବଂ ଆମ୍ଭର ଶତ୍ରୁଗଣଙ୍କର ଆଶ୍ରୟ ହେଲ, ଅତଏବ ଆମ୍ଭେ ତୁମ୍ଭଠାରେ ବାସ କରିପାରୁ ନାହୁଁ ।୭୫। ଯେଉଁସବୁ ଭୃତ୍ୟ ସ୍ଥାନଭ୍ରଷ୍ଟ ଓ ମାନରୁ ଅବରୋପିତ ସେମାନେ ସ୍ଵୟଂ ଅଗତ କିମ୍ବା ଅନ୍ୟ କର୍ତ୍ତୃକ ଅର୍ପିତ ହେଉନ୍ତୁ, ଯଦି ପରିକ୍ଷୀଣ, ଲବ୍ଧ, କ୍ରୁଦ୍ଧ, ଭୀତ, ପ୍ରତାରିତ ଓ ହୃତସର୍ବସ୍ଵ ହୁଅନ୍ତି, ଏବଂ ଯେଉଁମାନେ ମାନୀ ଓ ମହାର୍ଥଲାଭାର୍ଥୀ ହୋଇ ଆଦାନହୀନ ହୁଅନ୍ତି, ଯେଉଁମାନେ ସନ୍ତାପିତ ଓ ବ୍ୟସନ ସମୂହକୁ ପ୍ରତୀକ୍ଷା କରନ୍ତି, ସେମାନେ ସମସ୍ତେ ପ୍ରୀତିଶୂନ୍ୟ ଓ ନିର୍ଦ୍ଧନ ହୋଇ ଅନ୍ତର୍ହିତ ହୁଅନ୍ତି । ୭୯ ।

ଆମ୍ଭେ ଅବମାନ ଯୁକ୍ତ ଓ ସ୍ଥାନଭ୍ରଷ୍ଟ ହୋଇଅଛୁଁ, ଅତଏବ କି ପ୍ରକାରେ ତୁମ୍ଭର ବିଶ୍ଵାସ ଭାଜନ ହେବୁଁ ଏବଂ କିପରି ବା ତୁମ୍ଭଠାରେ ଅବସ୍ଥିତି କରିବୁଁ । ୮୦ । ଆମ୍ଭଙ୍କୁ ସମର୍ଥ ଜାଣି ତୁମ୍ଭେ ମନ୍ତ୍ରିପଦ ପ୍ରଦାନ ପୂର୍ବକ ପରୀକ୍ଷା କରିଅଛ ଏବଂ ନିଜକୃତ ନିୟମ ଭଙ୍ଗ କରି ଆମ୍ଭଙ୍କୁ

ଅବମାନିତ ଭଲ । ୮୧ । ସଭାମଧ୍ୟରେ ଶୀଳବାନ ବୋଲି ଯାହାକୁ ବିଖ୍ୟାତ କରିଥିଲ, ପ୍ରତିଜ୍ଞାଭଙ୍ଗ ପକ୍ଷରେ ତାହାର ବୈଗୁଣ୍ୟ କୀର୍ତ୍ତନ କରିବା ବିହିତ ନୁହେ । ୮୨ । ଆମ୍ଭେ ଯେତେବେଳେ ଏହିପରି ଅବଜ୍ଞାତ ହୋଇଅଛୁଁ, ତେତେବେଳେ ତୁମ୍ଭେ ଆମ୍ଭ ପ୍ରତି ବିଶ୍ୱାସ କରିବ ନାହିଁ । ତୁମ୍ଭେ ବିଶ୍ୱାସ ନକଲେ ଆମ୍ଭର ମଧ୍ୟ ମନରେ ଉଦ୍‌ବେଗ ହେବ । ୮୩ । ତୁମ୍ଭେ ଶଙ୍କିତ, ଆମ୍ଭେ ଭୀତ, ଏବଂ ଅପର ଲୋକେ ଛିଦ୍ରାନ୍ୱେଷୀ, ଅସ୍ନିଗ୍ଧ ଓ ଅସନ୍ତୁଷ୍ଟ ଥିବେ । ଅତଏବ ଏପରି ସ୍ଥଳରେ ବାସ କଲେ ବହୁତର ଛଳ ଘଟିପାରେ । ୮୪ । ଯେଉଁ ସ୍ଥାନରେ ପ୍ରଥମତଃ ସମ୍ମାନ ହୋଇ ପଶ୍ଚାତ ଅବମାନ ହୁଏ, ସେହି ସ୍ଥଳରେ ସମ୍ମାନିତ ଓ ଅବମାନିତ ହୋଇ-ଥିବା ବ୍ୟକ୍ତିଙ୍କୁ ପଣ୍ଡିତମାନେ ପ୍ରଶଂସା କରନ୍ତି ନାହିଁ । ୮୫ । ଭଗ୍ନ ବସ୍ତୁ ବହୁ କଷ୍ଟରେ ଶ୍ଳିଷ୍ଟ ହୁଏ ଏବଂ ଶ୍ଳିଷ୍ଟ ବସ୍ତୁ ମଧ୍ୟ ବହୁ ଦୁଃଖରେ ବିଭଗ୍ନ ହୁଏ । ଯେଉଁ ପ୍ରୀତି ବିଭଗ୍ନ ହୋଇ ପୁନର୍ବାର ସଂଶ୍ଳିଷ୍ଟ ହୁଏ, ତାହା ସ୍ନେହ ଦ୍ୱାରା ମିଶ୍ରିତ ଥାଏ ନାହିଁ । ୮୬ । କୌଣସି ବ୍ୟକ୍ତିଙ୍କୁ ଆତ୍ମପର ଉଭୟ ଭିନ୍ନ କେବଳ ପ୍ରଭୁଙ୍କ ହିତକର କାର୍ଯ୍ୟରେ ନିରତ ଥିବାର ଦେଖାଯାଏ ନାହିଁ । ସମସ୍ତେ ଈପ୍ସିତ କାର୍ଯ୍ୟର ଅପେକ୍ଷା କରିଥାନ୍ତି । ଅତଏବ ସ୍ନିଗ୍ଧ ବନ୍ଧୁ ଅତି ଦୁର୍ଲଭ । ୮୭ ।

ରାଜାମାନଙ୍କର ଚିତ୍ତ ଅତି ଚଞ୍ଚଳ, ଅତଏବ ତାହାଙ୍କ ମଧ୍ୟରେ ସୁପ୍ରକୃଷ୍ଟ ବିବେଚନା କରିବା ସୁଦୁର୍ଘଟ । ସମର୍ଥ କିମ୍ବା ଅଗଙ୍କ ପୁରୁଷ ଶତ ମଧ୍ୟରେ ଜଣେ ମିଳେ । ୮୮ । ମାନବଗଣଙ୍କର ଉତ୍କର୍ଷ କିମ୍ବା ଅପକର୍ଷ ଅକସ୍ମାତ୍ ଘଟିଥାଏ । ଶୁଭାଶୁଭ ଘଟଣା ମହତ୍ତ୍ୱ ଓ ତୁଚ୍ଛତ୍ୱ ଉତ୍ପାଦନ କରିବାକୁ ସମର୍ଥ ହୁଏ । ୮୯ ।

ଭୀଷ୍ମ କହିଲେ—ଜମ୍ବୁକ ଏବଂବିଧ ଧର୍ମକାମାର୍ଥ ଯୁକ୍ତିଯୁକ୍ତ ସାନ୍ତ୍ୱ ବଚନ କହି ବ୍ୟାଘ୍ରକୁ ପ୍ରସନ୍ନ କରି ବନକୁ ଗମନ କଲା । ବୁଦ୍ଧିମାନ ଗୋମାୟୁ ସେହି ଶାର୍ଦ୍ଦୂଳର ଅନୁନୟ ଗ୍ରହଣ ନ କରି ପ୍ରାୟୋପବେଶନପୂର୍ବକ ଦେହ ତ୍ୟାଗାନନ୍ତର ସ୍ୱର୍ଗଗମନ କରିଥିଲା । ୯୦ ।

---

## ଅଧ୍ୟାୟ—୧୧୬

ଯୁଧିଷ୍ଠିର କହିଲେ—ହେ ଧର୍ମଜ୍ଞ ପିତାମହ । ରାଜାଙ୍କର କଣ କର୍ତ୍ତବ୍ୟ ଏବଂ କଣ କଲେ ନୃପତି ସୁଖୀ ହୁଅନ୍ତି, ତାହା ଆପଣ ଯଥାର୍ଥ ରୂପରେ କୀର୍ତ୍ତନ କରନ୍ତୁ । ୧ ।

ଭୀଷ୍ମ କହିଲେ—ଆମ୍ଭେ ତୁମ୍ଭଙ୍କୁ କହୁଅଛୁଁ, ଇହଲୋକରେ ନୃପତି-ଙ୍କର ଯାହା କର୍ତ୍ତବ୍ୟ ଏବଂ ଯାହାକଲେ ସେ ସୁଖୀ ହୁଅନ୍ତି, ସେହି କାର୍ଯ୍ୟ ବିଷୟରେ ଏକମାତ୍ର ନିଶ୍ଚୟ ଶ୍ରବଣ କର ।୨।

ହେ ଯୁଧିଷ୍ଠିର । ଆମ୍ଭେମାନେ ଯେପରି କୌଣସି ଉଷ୍ଟ୍ରର ମହତ ବୃତ୍ତାନ୍ତକୁ ଶ୍ରବଣ କରିଅଛୁଁ, ତଦ୍ରୂପ ଅନୁଷ୍ଠାନ କରିବା କର୍ତ୍ତବ୍ୟ ନୁହେଁ । ଅତଏବ ତାହା ଶ୍ରବଣ କର ।୩। ପ୍ରାଜାପତ୍ୟ ଯୁଗରେ ଗୋଟିଏ ଜାତିସ୍ମର ଉଷ୍ଟ୍ର ଥିଲା । ସେ ଅରଣ୍ୟମଧ୍ୟରେ ବ୍ରତଧାରଣ ପୂର୍ବକ ସୁମହତ ତପସ୍ୟା କରିଥିଲା ।୪। ତାହାର ତପସ୍ୟା ସମାଧା ହୁଅନ୍ତେ, ସର୍ବ ଶକ୍ତିମାନ ପିତାମହ ପ୍ରୀତ ହୋଇ ତାହାକୁ ବର ପ୍ରାର୍ଥନା କରିବା ନିମିତ୍ତ କହିଲେ । ୫ ।

ଉଷ୍ଟ୍ର କହିଲା—ହେ ଭଗବନ୍ । ଆପଣଙ୍କ ପ୍ରସାଦରୁ ଆମ୍ଭର ଏହି ଗ୍ରୀବା ଦୀର୍ଘ ହେଉ । ହେ ବିଭୋ । ଆମ୍ଭେ ଯେପରି ସେହି ଦୀର୍ଘ ଗ୍ରୀବାଦ୍ୱାରା ଶତ ଯୋଜନରେ ଥିବା ଅଗ୍ରଭାଗରେ କଣ୍ଟକ ପତ୍ରାଦି ଆହାର କରିପାରୁଁ ।୬। ବରଦାତା ମହାତ୍ମା ପିତାମହ "ଏହାହେଉ" ଏହି କଥା କହିଲେ । ଉଷ୍ଟ୍ରମଧ୍ୟ ଉତ୍କୃଷ୍ଟ ବର ଲାଭକରି ସ୍ୱକୀୟ ବନକୁ ଗମନ କଲା । ୭ । ନିତାନ୍ତ ଦୁର୍ମତି ଉଷ୍ଟ୍ର ତପୃରେ ବରପ୍ରଭାବ ହେତୁରୁ ଆଳସ୍ୟ କଲା, ସେହି ଦୁରାତ୍ମା କାଳମୋହିତ ହୋଇ ଚରିବାକୁ ଗମନ କଲାନାହିଁ । ୮ । ଏକଦା ସେ ତାହାର ଶତ ଯୋଜନ ଦୀର୍ଘ ଗ୍ରୀବାକୁ ପ୍ରସାରଣ ପୂର୍ବକ ଅଶ୍ରାନ୍ତ ଚିତ୍ତରେ ଚରୁଥିଲା । ଇତ୍ୟବସରେ ଗୋଟିଏ ପ୍ରବଳ ବାୟୁ ପ୍ରବାହିତ ହେଲା । ୯ । ତତ୍କାଳରେ ଉଷ୍ଟ୍ର ତାହାର ମସ୍ତକ ଓ ଗ୍ରୀବାକୁ ଗୁହାମଧ୍ୟରେ ନିବିଷ୍ଟ କରି ରହିଲା । ତଦନନ୍ତର ସୁମହତ ବର୍ଷା ଆରମ୍ଭ ହୋଇ ଜଗତକୁ ପ୍ଲାବନ କଲା । ୧୦ । ଅନନ୍ତର କୌଣସି ଜମ୍ବୁକ ଜଳାର୍ଦ୍ଦିତ ଶୀତାର୍ତ୍ତି ସୁତରାଂ କଷ୍ଟରେ ପତିତ ହୋଇ ପତ୍ନୀ ସହିତ ଅବିଳମ୍ବରେ ଉକ୍ତ ଗୁହା ମଧ୍ୟରେ ପ୍ରବେଶ କଲା । ୧୧ ।

ହେ ଭରତର୍ଷଭ ! ସେହି ମାଂସଜୀବୀ ଜମ୍ବୁକ ନିତାନ୍ତ କ୍ଷୁଧା ଓ ଶ୍ରମାନ୍ୱିତ ହୋଇ ଉଷ୍ଟ୍ରର ଗ୍ରୀବାକୁ ଦର୍ଶନ କରି ତାହାକୁ ଭକ୍ଷଣ କରିବାରେ ପ୍ରବୃତ୍ତ ହେଲା । ୧୨ । ଉଷ୍ଟ୍ର ଯେତେବେଳେ ନିଜକୁ ଭକ୍ଷ୍ୟମାଣ ହେବାର ଜାଣିଲା ତେତେବେଳେ ସେ ନିତାନ୍ତ ଦୁଃଖିତ ହୋଇ ଗ୍ରୀବା ସଙ୍କୋଚ କରିବା ନିମିତ୍ତ ଯତ୍ନବାନ୍ ହେଲା । ୧୩ । ସେ ଊର୍ଦ୍ଧ୍ୱ ଓ ଅଧୋ-ଭାଗରେ ଗ୍ରୀବାକୁ ସଂକ୍ଷେପ କରୁଁ କରୁଁ ସପତ୍ନୀକ ଜମ୍ବୁକ ତାହାକୁ ଭକ୍ଷଣ କରିପକାଇଲା । ୧୪ । ଶୃଗାଳ ଉଷ୍ଟ୍ରକୁ ଭକ୍ଷଣପୂର୍ବକ ନିହତ କରି ବୃଷ୍ଟି ଓ ବାୟୁ ବିଗତ ହୁଅନ୍ତେ ଗୁହା ମୁଖରୁ ନିର୍ଗତ ହେଲା । ୧୫ । ଏହିପରି ଦୁର୍ବୁଦ୍ଧି ଉଷ୍ଟ୍ର ନିଧନ ଲାଭ କରିଥିଲା । ଦେଖ ! ଆଳସ୍ୟ ବଶତଃ ମହତ ଦୋଷ ଉପସ୍ଥିତ ହେଲା । ଅତଏବ ତୁମ୍ଭେ ଉପାୟ ଅବଲମ୍ବନ ଦ୍ୱାରା ଏବଂବିଧ ଆଳସ୍ୟ ପରିତ୍ୟାଗ ପୂର୍ବକ ଜିତେନ୍ଦ୍ରିୟ ହୋଇ ବୁଦ୍ଧିମୂଳକ ବିଷୟରେ ବର୍ତ୍ତମାନ ଥାଅ । ତାହାହେଲେ ବିଜୟ ହେବ । ହେ ଭାରତ ! ମନୁ କହିଅଛନ୍ତି ଯେ ବୁଦ୍ଧିମୂଳକ କର୍ମ ସମୁଦାୟ ଉତ୍କୃଷ୍ଟ, ବାହୁବଳ ଜନିତ କର୍ମ ସବୁ ମଧ୍ୟମ । ଆଉ ପାଦ ବିହରଣ ଓ ଭାର ବହନ ପ୍ରଭୃତି କର୍ମସବୁ ଜଘନ୍ୟ ଅଟେ । ୧୮ । ଯେ ଦକ୍ଷ ଏବଂ ଉତ୍ତମରୂପରେ ଇନ୍ଦ୍ରିୟମାନଙ୍କୁ ନିଗୃହୀତ କରିଅଛନ୍ତି, ସେହି ନୃପତିଙ୍କର ରାଜ୍ୟ ବର୍ତ୍ତମାନ ଥାଏ, ଆଉ ବୁଦ୍ଧିବଳରେ ଅର୍ତ୍ତିବ୍ୟକ୍ତିଙ୍କର ବିଜୟ ହୁଏ, ଏହା ମନୁ କହିଅଛନ୍ତି । ହେ ନିଷ୍ପାପ ଯୁଧିଷ୍ଠିର ! ଯେ ଗୁହ୍ୟମନ୍ତ୍ରଣା ଶ୍ରବଣ କରିଅଛନ୍ତି ଓ ସହାୟ ସମ୍ପନ୍ନ ଅଟନ୍ତି ଏବଂ ଯେ ପରୀକ୍ଷା କରି କାର୍ଯ୍ୟ କରନ୍ତି, ଇହ-ଲୋକରେ ତାହାଙ୍କର ଅର୍ଥସବୁ ବର୍ତ୍ତମାନ ରହେ । ସହାୟ ସମ୍ପନ୍ନ ନୃପତି ସମସ୍ତ ବସୁମତୀକୁ ଶାସନ କରିବାରେ ସମର୍ଥ ଅଟନ୍ତି । ୨୦ ।

ହେ ମହେନ୍ଦ୍ର ପ୍ରତିମ ପ୍ରଭାବ ସମ୍ପନ୍ନ ରାଜନ୍ ! ବିଧିଜ୍ଞ ସାଧୁଗଣ କର୍ତ୍ତୃକ ପୁରାକାଳରେ ଏହା କଥିତ ହୋଇଥିଲା । ଏବଂ ଆମ୍ଭେ ମଧ୍ୟ ତୁମ୍ଭଠାରେ ଶାସ୍ତ୍ରଦୃଷ୍ଟି ଅନୁସାରେ ଏହା କୀର୍ତ୍ତନ କଲୁଁ, ଅତଏବ ଯେପରି କହିଲୁଁ, ତଦନୁସାରେ ବୁଦ୍ଧି ଦ୍ୱାରା ଆଲୋଚନା କରି କାର୍ଯ୍ୟକର । ୨୧ ।

---

## ଅଧ୍ୟାୟ—୧୧୩

ଯୁଧିଷ୍ଠିର କହିଲେ—ହେ ଭରତର୍ଷଭ ! ରାଜା ଦୁର୍ଲଭ ରାଜ୍ୟ ଲାଭକରି ଅସହାୟ ହୋଇ ଅତି ବଳବାନ ଅମିତ୍ରଠାରେ କିପରି ଅବସ୍ଥାନ କରିବେ ? ୧ ।

ଭୀଷ୍ମ କହିଲେ—ହେ ଭରତ । ଏହି ବିଷୟରେ ପଣ୍ଡିତମାନେ ସାଗର ଓ ସରିତ୍ ସମୂହର ସମ୍ବାଦ ସମ୍ବଳିତ ଗୋଟିଏ ପୁରାତନ ଇତିହାସ ବର୍ଣ୍ଣନ କରନ୍ତି । ୨ । ସୁରାରି ନିଳୟ ସରିତ୍ପତି ସାଗର, ସମସ୍ତ ସରିତ-ମାନଙ୍କୁ ନିଜର ଯେଉଁ ସଂଶୟ ଜନ୍ମିଥିଲା ତଦ୍ବିଷୟ ପ୍ରଶ୍ନ କରିଥିଲେ । ୩ ।

ସାଗର କହିଲେ—ହେ ନିମ୍ନଗାମାନେ ! ତୁମ୍ଭେମାନେ ସମସ୍ତେ ଯେତେବେଳେ ଆମ୍ଭ ନିକଟକୁ ଆଗମନ କର । ସେତେବେଳେ ମୂଳ ଓ ଶାଖା ସହିତ ବୃହତ୍ ବୃହତ୍ ବୃକ୍ଷ ସମୂହକୁ ଉନ୍ମୂଳିତ ହୋଇଥିବାର ଦେଖୁଁ, କିନ୍ତୁ ତନ୍ମଧ୍ୟରେ ବେତସ ତରୁକୁ ଉନ୍ମୂଳିତ ଦେଖୁନାହୁଁ । ୪ । ବେତସତରୁ ଅଳ୍ପକାୟ ଓ ଅଳ୍ପସାର ଅଟେ । ତୁମ୍ଭମାନଙ୍କ କୂଳରେ ଜନ୍ମଗ୍ରହଣ କରେ, ଅତଏବ ତୁମ୍ଭେମାନେ ତାହାକୁ ଅବଜ୍ଞା ହେତୁ ଆନୟନ କର ନାହିଁ, କି ସେମାନେ ତୁମ୍ଭମାନଙ୍କର କୌଣସି ଉପକାର କରିଅଛନ୍ତି ? ୫ । ବେତସ ବୃକ୍ଷ ଯେ ତୁମ୍ଭମାନଙ୍କର ତଟ ପରିତ୍ୟାଗ କରି ଆଗମନ ନ କରେ, ତଦ୍ବିଷୟରେ ଆମ୍ଭେ ତୁମ୍ଭମାନଙ୍କର ମତ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ୬ । ଏ ବିଷୟରେ ସରିଦ୍ବରା ଗଙ୍ଗା ସରିତ୍ପତି ସାଗରକୁ ଅର୍ଥ ଓ ଯୁକ୍ତିଯୁକ୍ତ ହୃଦୟ ଗ୍ରାହକ ଉତ୍ତର ବାକ୍ୟ କହିଲେ । ୭ ।

ଗଙ୍ଗା କହିଲେ—ଏହିସବୁ ବୃକ୍ଷମାନେ ଯଥାସ୍ଥାନରେ ଥିବାରୁ ଧ୍ୱସ୍ତ ହୁଅନ୍ତି । ଏମାନେ ଆମ୍ଭମାନଙ୍କର ପ୍ରତିକୂଳାଚରଣ କରି ପରିଶେଷରେ ସ୍ଥାନଭ୍ରଷ୍ଟ ହୁଅନ୍ତି । ବେତସ ତାହା ନ କରିବାରୁ ସ୍ୱସ୍ଥାନରେ ଅବସ୍ଥାନ କରେ । ବେଗ ଆସୁଥିବାର ଦେଖି ବେତସ ନତ ହୁଏ, ଅନ୍ୟ ବୃକ୍ଷମାନେ ନତ ହୁଅନ୍ତି ନାହିଁ । ନଦୀର ବେଗ ଅତିକ୍ରାନ୍ତ ହେଲେ ବେତସ ନିଜ ସ୍ଥାନରେ ଅବସ୍ଥାନ କରେ । ୮ । ବେତସ ବୃକ୍ଷ କାଳଜ୍ଞ ସମୟଜ୍ଞ, ସତତ ବଶ୍ୟ, ଅନୁଲ୍ଲମ ଓ ସ୍ତବ୍ଧ ଅଟେ । ଏହି ନିମିତ୍ତ ଏ ସ୍ଥାନକୁ ଆସେ

ନାହିଁ । ୧୦ । ଯେଉଁସବୁ ଔଷଧି ପାଦପ ଓ ଗୁଳ୍ମଗଣ ବାୟୁ ଓ ଜଳବେଗବଶତଃ ନତ ଅଥବା ଉନ୍ନତ ହୁଅନ୍ତି, ସେମାନେ ପରାଭବ ପ୍ରାପ୍ତ ହୁଅନ୍ତି ନାହିଁ । ୧୧ ।

ଭୀଷ୍ମ କହିଲେ—ଯେଉଁ ବ୍ୟକ୍ତି ପ୍ରଥମତଃ ବଧ ଓ ବିନାଶ କରିବାକୁ ସମର୍ଥ, ଯେଉଁ ପ୍ରବଳ ବୈରୀର ବେଗ ତାକୁ ସହ୍ୟ ନ କରନ୍ତି, ସେହି ବ୍ୟକ୍ତି ଅବିଳମ୍ବରେ ବିନଷ୍ଟ ହୁଅନ୍ତି । ୧୨ । ଯେ ନିଜର ଓ ଶତ୍ରୁର ସାରାସାର ଓ ବଳବୀର୍ଯ୍ୟକୁ ବିଜ୍ଞାତ ହୋଇ ବିଚରଣ କରନ୍ତି, ସେହି ପ୍ରାଜ୍ଞ ବ୍ୟକ୍ତି ପରାଭବ ପ୍ରାପ୍ତ ହୁଅନ୍ତି ନାହିଁ । ୧୩ । ଏହି ପ୍ରକାରେ ଯେ ବିପକ୍ଷକୁ ପ୍ରବଳ ପରାକ୍ରାନ୍ତ ଜାଣି ବୈତସୀ ବୃତ୍ତି ଅବଲମ୍ବନ କରନ୍ତି, ସେ ପରାଭୂତ ହୁଅନ୍ତି ନାହିଁ । ଏହାହିଁ ପ୍ରକୃଷ୍ଟ ଜ୍ଞାନର ଲକ୍ଷଣ ଅଟେ । ୧୪ ।

## ଅଧ୍ୟାୟ—୨୧୪

ଯୁଧିଷ୍ଠିର କହିଲେ—ହେ ଅରିନ୍ଦମ ଭାରତ ! ବିଦ୍ୱାନ ବ୍ୟକ୍ତି ମୂର୍ଖ ଓ ପ୍ରଗଳ୍‌ଭ କର୍ତ୍ତୃକ ମୃଦୁ କିମ୍ବା ତୀକ୍ଷ୍ଣ ଭାବରେ ଆକ୍ରୁଶ୍ୟମାନ ହୋଇ ସଭା ମଧ୍ୟରେ କି ପ୍ରକାର ବ୍ୟବହାର କରିବେ ? ୧ ।

ଭୀଷ୍ମ କହିଲେ—ହେ ପୃଥିବୀପାଳ ! ଏ ବିଷୟରେ ଯେପରି କୀର୍ତ୍ତିତ ହୁଏ, ଅର୍ଥାତ୍ ଏହି ଜଗତରେ ସୁଚେତା ପୁରୁଷ ଅଳ୍ପମେଧା ମାନବର ଅତ୍ୟାଚାରକୁ ସତତ ଯେପରି ଭାବରେ ସହ୍ୟ କରନ୍ତି, ତାହା ଶ୍ରବଣ କର । ୨ । ଯେ ଆକ୍ରୋଶକାରୀ ବ୍ୟକ୍ତିଙ୍କ ପ୍ରତି ରୋଷ ପ୍ରକାଶ କରନ୍ତି ନାହିଁ ସେ ତାହାର ସୁକୃତ ଫଳ ଲାଭ କରନ୍ତି ଏବଂ ଯେ କ୍ରୋଧବାନ୍ ବ୍ୟକ୍ତିଙ୍କ ପ୍ରତି ତିତିକ୍ଷା କରନ୍ତି, ସେ ଆତ୍ମ ଦୁଷ୍କୃତକୁ ମାର୍ଜନା କରନ୍ତି । ୩ ।

ଟିଟ୍ଟିଭ ପକ୍ଷୀ ପ୍ରାୟ, ଶୁଭଙ୍କରୁ ଭାବରେ ଶବ୍ଦାୟମାନ କ୍ରୋଧାତୁର ବ୍ୟକ୍ତିକୁ ଉପେକ୍ଷା କରିବ । ଯେଉଁବ୍ୟକ୍ତି ଲୋକ ମଧ୍ୟରେ ବିଦ୍ୱେଷ ଭାଜନ ହୁଏ, ତାହାର ସମସ୍ତ ନିଷ୍ଫଳ ହୁଏ । ସେ ସେହି ପାପକର୍ମ ଦ୍ୱାରା ନିଯୁତ ଶ୍ଳାଘା କରେ "ଆମ୍ଭେ ଜନ ସମାଜରେ ସୁବିଖ୍ୟାତ କୌଣସି ବ୍ୟକ୍ତିଙ୍କୁ ଏହିକଥା କହିଥିଲୁଁ । ସେ ସଭାମଧ୍ୟରେ ଏହା ଶ୍ରବଣ କରି ମୃତକଳ୍ପ ହୋଇ ଅବସ୍ଥିତ ଥିଲେ ।" ଯେଉଁ ନିର୍ଲଜ୍ଜ ଲୋକ ଅଶ୍ଳାଘନୀୟ କର୍ମ

ଦ୍ୱାରା ଶ୍ଳାଘାକରେ, ତାଦୃଶ ପୁରୁଷାଧମ ଯତ୍ନତଃ ଉପେକ୍ଷିତବ୍ୟ । ଅଳ୍ପମତି ମାନବ ଯାହା କହେ, ବୁଦ୍ଧିମାନ ପୁରୁଷ ତାହା ସହ୍ୟ କରନ୍ତି । ୭ ।

ବନ ମଧ୍ୟରେ କାକପ୍ରାୟ ନିରର୍ଥକ ଚିତ୍କାର କରି ବୁଦ୍ଧିହୀନ ପ୍ରାକୃତ ମନୁଷ୍ୟ ପ୍ରଶଂସା କିମ୍ବା ନିନ୍ଦାକରି କଣ କରିପାରେ ? ପାପକର୍ମର ପ୍ରୟୋଗ ଯଦି ବାକ୍ୟଦ୍ୱାରା ଉଲ୍ଲେଖ ହୁଏ, ଅର୍ଥାତ୍ ଏହିବ୍ୟକ୍ତି ଏହି କର୍ମ କରିଅଛି, ଏହି ଶବ୍ଦ ଉଚ୍ଚାରିତ ହେଲେ ବାକ୍ୟ ମାନଦ୍ୱାରା ପରର ଦୋଷ ସିଦ୍ଧ ହୁଏ, ଜିଘାଂସୁ ବ୍ୟକ୍ତିର ପ୍ରୟୋଜନ ସିଦ୍ଧ ହୁଏ ନାହିଁ, ଅତଏବ ବାକ୍ୟଦ୍ୱାରା ଦୂଷିତ ବ୍ୟକ୍ତି କଦାପି ଦୋଷୀ ହୋଇ ନ ପାରେ । ୯ । ଦୁଷ୍ଟ ବ୍ୟକ୍ତି ଯଦି ବିକୃତ ବାକ୍ୟରେ କୌଣସି ବିପରୀତ କଥା କହେ, ଅର୍ଥାତ୍ ଜନସମାଜରେ କୌଣସି ବ୍ୟକ୍ତିକୁ କଟୁବାକ୍ୟ କହି ଭର୍ତ୍ସନା କରେ, ତାହା ହେଲେ ମୟୁର ଯେପରି ନିଜର ଗୁହ୍ୟ ଦେଶକୁ ପ୍ରଦର୍ଶନ କରି ନୃତ୍ୟ କରୁ କରୁ ଶ୍ଳାଘା କରେ, ଅର୍ଥାତ୍ ଆମ୍ଭେ ଉତ୍ତମ ନୃତ୍ୟ କରୁଅଛୁଁ ଏହି ଅଭିମାନରେ ମତ୍ତ ହୁଏ । ତଦ୍ରୂପ ନଷ୍ଟ ଖଳ-ଲୋକ "ଆମ୍ଭେ ସଭାମଧ୍ୟରେ ଅମୁକ ମହତ ବ୍ୟକ୍ତିଙ୍କୁ ଦୁରୁକ୍ତ ବାକ୍ୟ କହିଅଛୁ" ଏହିପରି ଶ୍ଳାଘା କରେ ଏବଂ ତନ୍ନିମିତ୍ତ ଲଜ୍ଜିତ ହୁଏ ନାହିଁ ।୧୦। ଲୋକ ମଧ୍ୟରେ ଯାହାଙ୍କର କିଛିମାତ୍ର ଅବାଚ୍ୟ କିମ୍ବା ଅକାର୍ଯ୍ୟ ନାହିଁ, ପବିତ୍ର ସ୍ୱଭାବ ସମ୍ପନ୍ନ ସେହି ବ୍ୟକ୍ତିଙ୍କର ଉକ୍ତ ଦୂଷିତ ଚିତ୍ତ ଖଳ ସହିତ ବାକ୍ୟାଳାପ କରିବା ବିଧେୟ ନୁହେ । ୧୧ । ଯେଉଁ ବ୍ୟକ୍ତି ସାକ୍ଷାତରେ ପ୍ରଶଂସା କରେ ଏବଂ ପରୋକ୍ଷରେ ନିନ୍ଦା କରେ, କୁକୁର ପ୍ରାୟ ସେହି ମାନବର ଜ୍ଞାନ ଓ ଧର୍ମ ନଷ୍ଟ ହୁଏ । ୧୨ । ପରୋକ୍ଷରେ ଅପବାଦକାରୀ ତାଦୃଶ ମାନବ ଯଦି ଶତ ଶତ ଜନକୁ ଦାନ କରେ ଓ ହୋମ କରେ ତାହା ହେଲେ ତତ୍କ୍ଷଣାତ୍ ତାହା ବିନଷ୍ଟ ହୋଇଯାଏ । ୧୩ ।

ଅତଏବ ପ୍ରାଜ୍ଞ ପୁରୁଷ ସଦ୍ୟ, ତାଦୃଶ ପାପଚେତା ସାଧୁବର୍ଜିତ ବ୍ୟକ୍ତିକୁ କୁକୁର ମାଂସ ପ୍ରାୟ ପରିତ୍ୟାଗ କରିବେ । ୧୪ । ଯେଉଁ ଦୁରାତ୍ମା ମହାଜନଙ୍କ ନିକଟରେ ଅନ୍ୟର ପରିବାଦ କରେ ସେ ସର୍ପର ଉନ୍ନତ ଫଣା ପ୍ରଦର୍ଶନ ପ୍ରାୟ ନିଜର ଦୋଷ ସବୁ ପ୍ରକାଶିତ କରେ । ୧୫ । ଯେଉଁ ନିର୍ବୁଦ୍ଧି ଲୋକ ସ୍ୱକର୍ମକାରୀ ଖଳର ପ୍ରତିକାର କରିବାକୁ ଇଚ୍ଛା କରେ ସେ ଖର ଯେପରି ଭସ୍ମରାଶି ମଧ୍ୟରେ ନିମଗ୍ନ ହୁଏ, ତଦ୍ରୂପ ଦୁଃଖରେ ପତିତ ହୋଇଥାଏ । ୧୬ । ଯେଉଁ ବ୍ୟକ୍ତି ଅନ୍ୟର ଅପବାଦ କରିବାରେ

ସହିତ ନିବଷ୍ଟ, ସେହି ବ୍ୟକ୍ତି ମାନୁଷାକୃତି କୁକ୍‌କୁର ସ୍ୱରୂପ ତାହାର ଭାଗୀ ଅଟେ । ଉନ୍ନତ ମାତଙ୍ଗ ଓ ଅତିଭୟଙ୍କର କୁକ୍‌କୁର ପ୍ରାୟ ସେହି ଅପ୍ରଶସ୍ତ ବ୍ୟକ୍ତିକୁ ପରିତ୍ୟାଗ କରିବ । ୧୭ । ଯେଉଁ ବ୍ୟକ୍ତି ଅଧୀର ସେବିତ ପଥରେ ଅଭିମାନ ଥାଏ ଏବଂ ଇନ୍ଦ୍ରିୟ ଦମନ ଓ ବିନୟରୁ ବିରତ ହୁଏ, ସେହି ଅବିବ୍ରତ ନିୟତ ଅନୈଶ୍ୱର୍ଯ୍ୟକାମ ପାପମତି ପାପାତ୍ମା ମାନବକୁ ଧିକ୍ । ୧୮ ।

ନୀଚବ୍ୟକ୍ତି କୌଣସି କଥା କହିଲେ, ସାଧୁଗଣ ଯଦି ତାହାକୁ ପ୍ରତ୍ୟୁତ୍ତର କରନ୍ତି, ତେବେ ସେମାନଙ୍କୁ ଉତ୍ତର କରିବାରୁ ନିବାରଣ କରିବା ଉଚିତ । କାରଣ ସେମାନଙ୍କ ପ୍ରତି ଉତ୍ତର କରିବାକୁ ଗଲେ ଆର୍ତ୍ତ ହେବାକୁ ହୁଏ । ସ୍ଥିର ବୁଦ୍ଧି ବ୍ୟକ୍ତିମାନେ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କର ନୀଚ ବ୍ୟକ୍ତିଙ୍କ ସହିତ ଆଳାପ କରିବାକୁ ନିନ୍ଦା କରନ୍ତି । ମୂଢ଼ମାନବ କ୍ରୁଦ୍ଧ ହେଲେ ଚପେଟାଘାତ କରେ କିମ୍ବା ଧୂଳି ଅଥବା ତୁଷ ଦ୍ୱାରା ବିକୀର୍ଣ୍ଣ କରେ, ଦନ୍ତ ବିସ୍ତାର ପୂର୍ବକ ବିଭୀଷିକା ପ୍ରଦର୍ଶନ କରେ । ନୃଶଂସ ମୂଢ଼ କୁପିତ ହେଲେ, ତାହାଠାରେ ଏହିଗୁଣମାନ ଲକ୍ଷିତ ହୁଏ । ୨୦ । ଯେଉଁମାନବ ସଭା ମଧ୍ୟରେ ଅତି ଦୁଷ୍ଟଚରିତ୍ର ଦୁର୍ଜନକୃତ ବିଗର୍ହଣୀକୁ ସହ୍ୟ କରନ୍ତି ଏବଂ ଏହି ନିଦର୍ଶନକୁ ସତତ ପାଠ କରନ୍ତି, ତାହାଙ୍କୁ କୌଣସି ଅପ୍ରିୟବାକ୍ୟ ପ୍ରାପ୍ତ ହେବାକୁ ହୁଏ ନାହିଁ । ୨୧ ।

## ଅଧ୍ୟାୟ—୧୧୪

ଯୁଧିଷ୍ଠିର କହିଲେ—ହେ ମହାପ୍ରାଜ୍ଞ ପିତାମହ ! ଆପଣଙ୍କୁ ଅମ୍ଭର ଏହି ମହତ୍‌ସଂଶୟ ଛେଦନ କରିବାକୁ ହେବ । ଆପଣ ଅମ୍ଭମାନଙ୍କର କୁଳସ୍ଥିତିକର ଅଟନ୍ତି । ୧ ।

ହେ ତାତ ! ଅପଣ ଦୁର୍ବୃତ୍ତ ଦୁରାତ୍ମା ପୁରୁଷମାନଙ୍କ ବିଷୟରେ ଏହି ବାକ୍ୟ କହିଲେ । ଏଥିପାଇଁ ବିଜ୍ଞାପନ କରୁଅଛୁଁ । ୨ । ଯାହା ରାଜତନ୍ତ୍ରର ହିତକର, ଏବଂ ଯଦ୍ୱାରା ବଂଶର ସୁଖୋଦୟ ହୁଏ ଓ ଯାହା ଉତ୍ତର କାଳରେ ଏବଂ ବର୍ତ୍ତମାନ କାଳରେ କ୍ଷେମବୃଦ୍ଧିକର ହୁଏ ଏବଂ ଯାହା ପୁତ୍ର ପୌତ୍ରାଦି କ୍ରମରେ ଅଭିରାମ ଓ ଯାହା ରାଷ୍ଟ୍ର ବୃଦ୍ଧିକର ହୁଏ, ଏବଂ ଅନ୍ନ, ପାନ, ଶରୀର ବିଷୟରେ ଯାହା ହିତକର ହୁଏ, ତାହା

ଅମ୍ଭଠାରେ କୀର୍ତ୍ତନ କରନ୍ତୁ । ୪ । ଯେଉଁ ରାଜା ଅଭିଷିକ୍ତ ହୋଇ ରାଜ୍ୟ ମଧ୍ୟରେ ମିତ୍ରଗଣଙ୍କ ଦ୍ୱାରା ପରିବୃତ୍ତ ଓ ସୁହୃଦଗଣ ଏବଂ ଶୌର୍ଯ୍ୟାଦି ସମନ୍ୱିତ ହେବେ, ସେ କିପ୍ରକାରେ ପ୍ରଜାରଞ୍ଜନ କରିବେ । ୫ । ଯାହାଙ୍କର ଅହିତ ବିଷୟରେ ଅନୁରାଗ, ସ୍ନେହ ଓ ରାଗରେ ପ୍ରବଳ ଆସକ୍ତି ଏବଂ ଇନ୍ଦ୍ରିୟମାନଙ୍କର ଅବଶୀକରଣ ହେତୁରୁ ଅସଜ୍ଜନ ଅଭିଳାଷ ହୁଏ, ତାହାଙ୍କର ସଦ୍‌ବଂଶ ସମ୍ଭୂତ ଭୃତ୍ୟମାନେ ବିଗୁଣି ହୋଇପଡ଼ନ୍ତି ଏବଂ ସେହି ନୃପତି ଭୃତ୍ୟବଳ ଲଭ୍ୟ ଅର୍ଥଦ୍ୱାରା ଫଳପ୍ରଯୁକ୍ତ ହୁଅନ୍ତିନାହିଁ ।୬। ଅମ୍ଭେ ଏହି ସଂଶୟାପନ୍ନ ହୋଇ ରହିଅଛୁଁ । ଆପଣ ବୁଦ୍ଧିରେ ବୃହସ୍ପତିଙ୍କ ସଦୃଶ ଅଟନ୍ତି, ଅତଏବ ଏହି ସୁଦୁର୍ଜ୍ଜେୟ ରାଜଧର୍ମ୍ମ ସବୁ ଅମ୍ଭ ନିକଟରେ କୀର୍ତ୍ତନ କରିବାକୁ ଆପଣ ଯୋଗ୍ୟ ଅଟନ୍ତି । ୮ ।

ହେ ପୁରୁଷପ୍ରବର । ଆପଣ ଅମ୍ଭମାନଙ୍କ ବଂଶର ହିତ କରିବାରେ ଅନୁରକ୍ତ, ଆପଣ ସେହିସବୁ ବିଷୟ କୀର୍ତ୍ତନ କରନ୍ତୁ ଏବଂ ମହାପ୍ରାଜ୍ଞ ଏବମାନ ବିଦୁର ମଧ୍ୟ ଅମ୍ଭମାନଙ୍କୁ ସତତ ସତ୍‌କଥା କହନ୍ତି । ୯ । ଆପଣଙ୍କଠାରୁ ବଂଶର ଓ ରାଜ୍ୟର ହିତକର ବାକ୍ୟ ଶ୍ରବଣକରି ଅମ୍ଭେ ଅମୃତ ପାନରେ ପରିତୃପ୍ତ ହେଲପ୍ରାୟ ସୁଖରେ ଶୟନ କରିବୁଁ । ୧୦ । ସନ୍ନିକୃଷ୍ଟ ଭୃତ୍ୟଗଣ କିପରି ସର୍ବଗୁଣାନ୍ୱିତ ହେବେ ଏବଂ କାହୁଁ ସତ୍‌କୁଳଜାତ ଭୃତ୍ୟମାନଙ୍କ ସହିତ ସଂସାରଯାତ୍ରା ବାହିତ ହେବ ।୧୧। ଭୃତ୍ୟ ରହିତ ନୃପତି ଏକାକୀ କେବେହେଁ ରାଜ୍ୟରକ୍ଷା କରିପାରନ୍ତି ନାହିଁ, ସଦ୍‌ବଂଶ ସମ୍ଭବ ଲୋକମାନେ ଏହି ରାଜ୍ୟ କାମନା କରନ୍ତି ।୧୨।

ଭୀଷ୍ମ କହିଲେ—ହେ ଭାରତ । ଏକାକୀ ରାଜ୍ୟ ଶାସନ କରିବାକୁ କେହି ସମର୍ଥ ନୁହନ୍ତି । ହେ ତାତ । ସହାୟହୀନ ନୃପତି ଅର୍ଥଲାଭ କରିବାକୁ କିମ୍ବା ଲବ୍‌ଧଅର୍ଥ ହେତ ରକ୍ଷା କରିବାକୁ ସମର୍ଥ ହୁଅନ୍ତି ନାହିଁ । ଯାହାଙ୍କର ଭୃତ୍ୟମାନେ ସମସ୍ତେ ଜ୍ଞାନ ବିଜ୍ଞାନ-କୋବିଦ, ହିତୈଷୀ, ସତ୍‌କୁଳ ପ୍ରସୂତ ଓ ସ୍ନିଗ୍‌ଧ ଅଟନ୍ତି, ସେ ରାଜ୍ୟ-ଫଳକୁ ଭୋଗ କରନ୍ତି । ୧୫ । ଯାହାଙ୍କର ମନ୍ତ୍ରୀମାନେ ସଦ୍‌ବଂଶସମ୍ଭୂତ, ଉତ୍କୋଚଦ୍ୱାରା ଅଭେଦ୍ୟ, ସହବାସ ନିଷ୍ଠ, ନୃପତିଙ୍କର ମତିପ୍ରଦ, ସାଧୁସମ୍ମନ୍ଧ, ଜ୍ଞାନ କୋବିଦ, ଅନାଗତ ବିଧାତା, କାଳଜ୍ଞାନ ବିଶାରଦ ଏବଂ ଅତୀତାର୍ଥ ବିଷୟ ନିମିତ୍ତ ଶୋକ କରନ୍ତିନାହିଁ ସେ ରାଜ୍ୟ ଫଳକୁ ଭୋଗ କରନ୍ତି । ୧୬ ।

ଯାହାଙ୍କର ଜନପଦ ଅନାଡ଼ି, ସତତ ସନ୍ନିକର୍ଷଗତ, ଅକ୍ଷୁଦ୍ର ଓ ସତପଥାବଲମ୍ବୀ ଅଟନ୍ତି, ସେହି ନୃପତି ରାଜ୍ୟଭୋଗୀ ହୁଅନ୍ତି । ଯାହାଙ୍କର ସହାୟ ଓ ପ୍ରିୟକାରୀମାନେ ସମଦୁଃଖ ସୁଖ ଓ ଅର୍ଥ ଚିନ୍ତାପର ଏବଂ ସତ୍ୟବାଦୀ ଅଟନ୍ତି, ସେହି ନୃପତି ରାଜ୍ୟଭୋଗୀ ହୁଅନ୍ତି । ୧୯ । ଆୟ ଓ କୋଷ ବୃଦ୍ଧିକର ଜନଗଣକର୍ତ୍ତୃକ ଯାହାଙ୍କର ଧନାଗାରମାନ ସତତ ଉପଚୟ ପ୍ରାପ୍ତ ହୁଅନ୍ତି, ସେ ନୃପୋତ୍ତମ ଅଟନ୍ତି । ୨୦ । ଅଗ୍ରରେ ସଞ୍ଚୟ ତତ୍ପର ଉତ୍କୋଚଦ୍ୱାରା ଅଭେଦ୍ୟ ଅଲବ୍ଧ ଓ ବିଶ୍ୱସ୍ତ ମନ୍ତ୍ରୀଗଣ କର୍ତ୍ତୃକ ଧାନ୍ୟାଦି ସାମଗ୍ରୀ ଦ୍ୱାରା ଯାହାଙ୍କର ଗୃହସବୁ ପ୍ରତିପାଳିତ ହୁଏ, ସେ ବହୁଗୁଣ ବିଶିଷ୍ଟ ହୁଅନ୍ତି । ୨୧ ।

ଯାହାଙ୍କର ନଗର ମଧ୍ୟରେ ବ୍ୟବହାର ଦର୍ଶୀ ଅର୍ଥାତ୍ ଅର୍ଥି-ପ୍ରତ୍ୟର୍ଥିମାନଙ୍କର ବିବାଦ ନିର୍ଣ୍ଣୟ ହୁଏ, ଏବଂ ସେମାନଙ୍କର ଅପରାଧ ଅନୁସାରେ ଦଣ୍ଡ ବିହିତ ହୁଏ, ଲିଖିତ ନିଦର୍ଶନ କ୍ରମରେ ସେହି ନୃପତି ଧର୍ମଫଳ ଭୋଗୀ ହୁଅନ୍ତି । ୨୨ । ରାଜଧର୍ମଜ୍ଞ ଯେଉଁ ନରପତି ବିବେଚନା ପୂର୍ବକ ମନୁଷ୍ୟସଂଗ୍ରହ କରନ୍ତି ଏବଂ ସନ୍ଧି, ବିଗ୍ରହ, ଯାନ, ଆସନ, ଦ୍ୱୈଧ ଓ ସମାଶ୍ରୟ ଏହି ଷଡ଼୍ବର୍ଗକୁ ପ୍ରତିଗ୍ରହ କରନ୍ତି, ସେ ଧର୍ମଫଳକୁ ଭୋଗ କରନ୍ତି । ୨୩ ।

## ଅଧ୍ୟାୟ—୧୧୬

ଭୀଷ୍ମ କହିଲେ—ଏ ବିଷୟରେ ପଣ୍ଡିତମାନେ ଏହି ପୁରାତନ ଇତିହାସକୁ ବର୍ଣ୍ଣନ କରନ୍ତି । ଏହା ସଜ୍ଜନ ଚରିତ, ଲୋକସମାଜରେ ସତତ ପରମ ନିଦର୍ଶନ ସ୍ୱରୂପ ଅଟେ । ୧ । ତପୋବନରେ ଜାମଦଗ୍ନ୍ୟ ରାମଙ୍କଠାରେ ଋଷିସତ୍ତମମାନେ ଯାହା କହିଥିଲେ, ତାହା ଏହି ବକ୍ଷ୍ୟମାଣ ବିଷୟର ସଦୃଶଭାବରେ ଆମ୍ଭେ ଶ୍ରବଣ କରିଥିଲୁଁ । ୨ । ମନୁଷ୍ୟ ସଞ୍ଚାର ବିରହିତ କୌଣସି ମହାବନ ମଧ୍ୟରେ ଗୋଟିଏ ଫଳମୂଳାହାରୀ ନିୟମନିଷ୍ଠ ଜିତେନ୍ଦ୍ରିୟ ଋଷି ବାସ କରୁଥିଲେ । ୩ । ସେ ଦକ୍ଷ, ଦମ ପରାୟଣ, ଶାନ୍ତ, ସ୍ୱାଧ୍ୟାୟରତ, ଶୁଚି, ଉପବାସବଶତଃ ବିଶୁଦ୍ଧ ଚିତ୍ତ ଓ ସତତ ସତ୍ୟଗୁଣ ଅବଲମ୍ବନ କରି ବାସ କରୁଥିଲେ । ସେହି ଧୀମାନ୍ ଉପବିଷ୍ଟ ଥିବାସମୟରେ ସମସ୍ତ ପ୍ରାଣିଗଣ ତାହାଙ୍କର ସନ୍ଦର୍ଶନ କରି ସମୀପସ୍ଥ ହୁଅନ୍ତି । ୫ । ସିଂହ, ବ୍ୟାଘ୍ର ପ୍ରଭୃତି କ୍ରୂର

ଜନ୍ତୁମାନେ, ମତ୍ତ ମହାମାତଙ୍ଗ ସମୂହ ଦ୍ୱୀପିନାମକ ବ୍ୟାଘ୍ର ବିଶେଷ, ଗଣ୍ଡାର, ଭଲ୍ଲୁକ ଏବଂ ଉଦ୍‌ଭିନ୍ନ ଯେଉଁସବୁ ଭୟଙ୍କରାକୃତ ଜନ୍ତୁ ଥିଲେ, ସେହି ରୁଧିରାଶନ ଜୀବଗଣ ସମସ୍ତେ ତାହାଙ୍କୁ ସୁଖପ୍ରଶ୍ନ କରନ୍ତି ଏବଂ ସେହି ଋଷିଙ୍କର ଶିଷ୍ୟପ୍ରାୟ, ନମ୍ରଭାବରେ ପ୍ରିୟକାର୍ଯ୍ୟ କରିବାରେ ପ୍ରବୃତ୍ତ ହୁଅନ୍ତି । ୭ । ସେହି ଜନ୍ତୁମାନେ ଋଷିଙ୍କୁ ସୁଖପ୍ରଶ୍ନ ପଚାରି ଯଥା ସ୍ଥାନକୁ ଗମନ କରନ୍ତି । ତନ୍ମଧ୍ୟରେ ଗୋଟିଏ ଗ୍ରାମ୍ୟପଶୁ କୁକ୍‌କୁର ସେହି ମହାମୁନିଙ୍କୁ ପରିତ୍ୟାଗ କରିଯାଏ ନାହିଁ । ୮ ।

ହେ ମହାପତେ ! ସତତ ଅନୁରକ୍ତ, ଉପବାସ ବଶତଃ କୃଶ, ଦୁର୍ବଳ, ଫଳମୂଳଜଳାହାର ଶାନ୍ତ ଓ ଶିଷ୍ଟାକୃତ ନ୍ୟାୟ, ସେହି ଭୟ କୁକ୍‌କୁର ସମାସୀନ ମହର୍ଷିଙ୍କର ଚରଣତଳରେ ମନୁଷ୍ୟ ପ୍ରାୟ ପତିତ ହେଲା ଏବଂ ଅତିଶୟ ସ୍ନେହବଦ୍ଧ ହେବାକୁ ଆରମ୍ଭ କଲା । ୧୦ । ଅନନ୍ତର କ୍ଷତଜ ଭୋଜୀ ମହାବୀର୍ଯ୍ୟଶାଳୀ ସ୍ୱାର୍ଥଲାଭାର୍ଥ ଅତ୍ୟନ୍ତ କ୍ରୂରସ୍ୱଭାବ ଶାର୍ଦ୍ଦୂଳ, ଅନ୍ତକ ପ୍ରାୟ ସେଠାକୁ ଆଗମନ କଲା । ୧୧ । ତୃଷିତ ଶାର୍ଦ୍ଦୂଳ ଜିହ୍ୱା ଲେହନ ଓ ପୁଚ୍ଛାସ୍ଫୋଟନ ପୂର୍ବକ କ୍ଷୁଧାରେ କାତର ହୋଇ ଉକ୍ତ କୁକ୍‌କୁରର ମାଂସ ଭକ୍ଷଣକରିବା ନିମିତ୍ତ ପ୍ରାର୍ଥନା କଲା ଏବଂ ମୁଖ ବ୍ୟାଦନ ପୂର୍ବକ ଆଗମନ କଲା । ୧୨ । ହେ ନରାଧିପ ! ଜୀବିତାର୍ଥୀ କୁକୁର ସେହି କ୍ରୂର ତରକ୍ଷୁକୁ ଆସୁଥିବାର ଦେଖି ମୁନିଙ୍କୁ ଯାହା କହିଥିଲା ତାହା ଶ୍ରବଣ କର । ୧୩ ।

କୁକ୍‌କୁର କହିଲା—ହେ ଭଗବନ୍ ! ଏହି କୁକ୍‌କୁର ଶତ୍ରୁ ତରକ୍ଷୁ ଆମ୍ଭଙ୍କୁ ଭକ୍ଷଣ କରିବାକୁ ଇଚ୍ଛା କରୁଅଛି । ହେ ମହାମୁନେ ! ଆପଣଙ୍କ ପ୍ରସାଦରୁ ଏହାଠାରୁ ଯେପରି ମୋର ଭୟ ନ ହୁଏ, ଆପଣ ତାହା କରନ୍ତୁ । ଆପଣ ସର୍ବଜ୍ଞ ଅଟନ୍ତି, ଏଥିରେ ସଂଶୟ ନାହିଁ । ଐଶ୍ୱର୍ଯ୍ୟ ସମନ୍ୱିତ ସର୍ବ ଜୀବର ରୁତଜ୍ଞ ଓ ଭାବଜ୍ଞ ସେହି ମହାମୁନି କୁକ୍‌କୁରର ଭୟର କାରଣକୁ ବିଜ୍ଞାତ ହୋଇ କହିଲେ । ୧୫ । ମୁନି କହିଲେ—ହେ ପୁତ୍ରକ ! ତୁମ୍ଭେ ଦ୍ୱୀପୀଠାରୁ ମୃତ୍ୟୁ ହେବ ବୋଲି କୌଣସି ଭୟ କରନାହିଁ । ତୁମ୍ଭେ ନିଜ ରୂପ ବିରହିତ ହୋଇ ଦ୍ୱୀପୀ ହୁଅ । ୧୬ ।

ଅନନ୍ତର ସେହି କୁକ୍‌କୁର ସୁବର୍ଣ୍ଣ ସଦୃଶ ଆକୃତି ସମ୍ପନ୍ନ ଚିତ୍ରାଙ୍ଗ ଶାର୍ଦ୍ଦୂଳ ହେଲା । ତାହାର ଦଂଷ୍ଟ୍ରା ସବୁ ବିସ୍ତୃତ ହେବାକୁ ଆରମ୍ଭ କଲା । ତେତେବେଳେ ସେ ନିର୍ଭୟ ହୋଇ ବନମଧ୍ୟରେ

ଅବସ୍ଥାନ କଲା । ପ୍ରକୃତ ଦ୍ୱୀପୀ ତାହାକୁ ଅଗ୍ନିସଦୃଶ ପଶୁଦେଖି ତତ୍ପ୍ରତି କୌଣସି ବିରୁଦ୍ଧାଚରଣ ନ କରି କ୍ଷଣକାଳ ମଧ୍ୟରେ ପ୍ରସ୍ଥାନ କଲା । ୧୮ । ଅନନ୍ତର ମହାଭୟଙ୍କର ବ୍ୟାଦିତ ବଦନ ରୁଧିରଲାଲସ ଲେଲିହଦ୍ୱକ୍ତ୍ର କ୍ଷୁଧାନ୍ୱିତ ବ୍ୟାଘ୍ର ଦ୍ୱୀପୀ ନିକଟକୁ ଆଗମନ କଲା । ୧୯ । ଦ୍ୱୀପୀ ବନବାସୀ ଦଂଷ୍ଟ୍ରୀ, କ୍ଷୁଧାତୁର ବ୍ୟାଘ୍ରକୁ ଦେଖି ଜୀବନ ରକ୍ଷାର୍ଥ ଋଷିଙ୍କର ଶରଣାଗତ ହେଲା । ୨୦ । ଋଷି ସହବାସ ନିମିତ୍ତ ତାହାକୁ ସ୍ନେହ କରନ୍ତି ଏହି ନିମିତ୍ତ ସେହି ଦ୍ୱୀପୀକୁ ଶତ୍ରୁଗଣଙ୍କ ଅପେକ୍ଷା ଗୋଟିଏ ବଳବତ୍ତର ବ୍ୟାଘ୍ର କଲେ । ୨୧ ।

ହେ ବିଶାମ୍ପତେ ! ଅନନ୍ତର ବ୍ୟାଘ୍ର ତାହାକୁ ସ୍ୱଜାତି ଦେଖି ହନନ କଲା ନାହିଁ । କୁକ୍କୁର ତେତେବେଳେ ବ୍ୟାଘ୍ରତ୍ୱ ପ୍ରାପ୍ତ ହୋଇ ବଳବାନ୍ ହେଲା ଏବଂ ମାଂସ ଭୋଜନ କରିବାକୁ ଆରମ୍ଭ କଲା । ତେତେ-ବେଳେ ତାହାର ଆଉ ଫଳମୂଳ ଭୋଜନ କରିବାକୁ ଇଚ୍ଛା ରହିଲା ନାହିଁ । ହେ ମହାରାଜ ! ମୃଗପତି ଯେପରି ନିତ୍ୟ ବନବାସୀ ଜୀବଗଣଙ୍କୁ ଭକ୍ଷଣ କରିବା ନିମିତ୍ତ ଆକାଂକ୍ଷା କରନ୍ତି, ସେହି ବ୍ୟାଘ୍ର ତତ୍କାଳରେ ତଦ୍ରୂପ ହେଲା । ୨୩ ।

## ଅଧ୍ୟାୟ—୧୧୭

ଭୀଷ୍ମ ବୋଇଲେ—ବ୍ୟାଘ୍ର ପର୍ଣ୍ଣଶାଳା ନିକଟରେ ଅବସ୍ଥାନ କରି ନିହତ ମୃଗଗଣଙ୍କର ମାଂସ ଭକ୍ଷଣରେ ତୃପ୍ତ ହୋଇ ଶୟନ କରିଥିବା ସମୟରେ ସମୁନ୍ନତ ମେଘ ସଦୃଶ ଗୋଟିଏ ମତ୍ତହସ୍ତୀ ସେହିସ୍ଥାନରେ ଉପସ୍ଥିତ ହେଲା । ୧ । ଉକ୍ତ ମାତଙ୍ଗର ଗଣ୍ଡସ୍ଥଳ ପ୍ରଭିନ୍ନ ହୋଇ ମଦକ୍ଷରଣ ହେଉଥିଲା । କୁମ୍ଭଦ୍ୱୟ ଅତି ବିସ୍ତୃତ, ତାହାର ଶରୀରରେ ପଦ୍ମଚିହ୍ନ ବିଦ୍ୟମାନ ଥିଲା । ସେହି ବିଶାଳ ଦନ୍ତ ଯୁଗଳ ସମନ୍ୱିତ ଅତ୍ୟୁଚ୍ଚ, ମହାକାୟ, ମେଘସମ ଗମ୍ଭୀର ନିଃସ୍ୱନ ବଳଗର୍ବିତ ମତ୍ତ କୁଞ୍ଜରକୁ ଆସିବାର ଦେଖି ବ୍ୟାଘ୍ର ହସ୍ତୀ ଭୟରେ ତ୍ରସ୍ତ ହୋଇ ସେହି ଋଷିଙ୍କର ଶରଣାପନ୍ନ ହେଲା । ୩ ।

ଅନନ୍ତର ଋଷିସତ୍ତମ ସେହି ବ୍ୟାଘ୍ରକୁ କୁଞ୍ଜର କଲେ । ପ୍ରକୃତ ମାତଙ୍ଗ ସେହି ବ୍ୟାଘ୍ରକୁ ମହାମେଘ ସଦୃଶ କୁଞ୍ଜର ହେବାର ଦେଖି

ଅତ୍ୟନ୍ତ ଭୀତ ହେଲା । ୪ । ତଦନନ୍ତର ବ୍ୟାଘ୍ର ହସ୍ତୀ ହୋଇ ଶଲ୍ଲକୀ ଗହନରେ ଓ କମଳ ବନରେ ପଦ୍ମରେଣୁ ବିଭୂଷିତ ଓ ମଦଯୁକ୍ତ ହୋଇ ବିଚରଣ କଲା । ୫ । ଋଷିଙ୍କର ପର୍ଣ୍ଣଶାଳା ନିକଟରେ ଥାଇ ହସ୍ତୀ ଇତସ୍ତତଃ ଭ୍ରମଣ କରୁ କରୁ ବହୁକାଳ ଗତ ହେଲା । ୬ । ଅନନ୍ତର ଗିରିକନ୍ଦର ଜାତ ଅରୁଣ ବର୍ଣ୍ଣ କେଶର ସମ୍ପନ୍ନ ନାଗ କୁଳାନ୍ତକ ଗୋଟିଏ କେଶରୀ ସେହି ସ୍ଥାନକୁ ଆଗମନ କଲା । ୭ । ମାତଙ୍ଗ ସେହି ସିଂହକୁ ଆସିବାର ଦେଖି ସିଂହ ଭୟରେ ଭୀତ ହୋଇ କମ୍ପମାନ କଳେବରରେ ଋଷିଙ୍କର ଶରଣାଗତ ହେଲା । ୮ । ତହୁଁ ମୁନି ତାହାଙ୍କୁ ସିଂହ କଲେ । ତେତେବେଳେ ସେ ତୁଲ୍ୟଜାତ ସମ୍ବନ୍ଧବଶତଃ ବନ୍ୟ ସିଂହକୁ ଗଣ୍ୟ କଲା ନାହିଁ । ୯ । ତାହାକୁ ସିଂହ ହେବାର ଦେଖି ବନ୍ୟସିଂହ ଭୟଯୁକ୍ତ ଚିତ୍ତରେ ପ୍ରସ୍ଥାନ କଲା । କୃତ୍ରିମ ସିଂହ ସେହି ମହାରଣ୍ୟ ମଧ୍ୟରେ ମୁନିଙ୍କ ଆଶ୍ରମରେ ବାସ କଲା । ତାହା ଭୟରେ ଅନ୍ୟାନ୍ୟ ପଶୁମାନେ ତ୍ରସ୍ତ ହୋଇ ଜୀବିତାକାଙ୍‌କ୍ଷା ବଶତଃ ସେହି ତପୋବନ ନିକଟକୁ ସୁଦ୍ଧା ଆସିଲେ ନାହିଁ । ୧୨ । କୌଣସି ସମୟରେ ସର୍ବପ୍ରାଣି ବିଘାତକ ରୁଧିରାହାରୀ ବିବିଧପ୍ରାଣିଙ୍କର ଭୟଙ୍କର ଅଷ୍ଟପାଦ ବିଶିଷ୍ଟ ଊର୍ଦ୍ଧ୍ୱ ନୟନ ବନବାସୀ ବଳବାନ୍ ଶରଭ ସେହି ସିଂହକୁ ସଂହାର କରିବା ନିମିତ୍ତ ଉକ୍ତ ମୁନିଙ୍କ ଆଶ୍ରମରେ ଉପନୀତ ହେଲା । ୧୩ ।

ହେ ଅରିନ୍ଦମ ! ମୁନି ତେତେବେଳେ ସେହି ସିଂହକୁ ଉତ୍କଟ ବଳଶାଳୀ ଶରଭ କଲେ । ବନ୍ୟଶରଭ ମୁନିଙ୍କର ଉଗ୍ରବଳ ସମ୍ପନ୍ନ ଶରଭକୁ ଅଗ୍ରଭାଗରେ ଅବଲୋକନ କରି ଦ୍ରୁତବେଗରେ ବନରୁ ପଳାୟନ କଲା । ସେହି କୁକ୍‌କୁର ତେତେବେଳେ ମୁନିଙ୍କ କର୍ତ୍ତୃକ ଶରଭତ୍ୱ ପ୍ରାପ୍ତ ହୋଇ, ତାହାଙ୍କ ନିକଟରେ ନିୟତ ସୁଖରେ କାଳଯାପନ କରୁଥିଲା । ହେ ରାଜନ୍ ! ଅନନ୍ତର ସମଗ୍ର ପଶୁଗଣ ସେହି ଶରଭ ଭୟରେ ସନ୍ତ୍ରସ୍ତ ଓ ଜୀବନରକ୍ଷା ନିମିତ୍ତ ଜନ୍ମ ପରାୟଣ ହୋଇ ଦଶଦିଗକୁ ଧାବିତ ହେଲେ । ଶରଭ ମଧ୍ୟ ଅତ୍ୟନ୍ତ ହୃଷ୍ଟ ଚିତ୍ତରେ ପ୍ରତ୍ୟହ ପ୍ରାଣିବଧରେ ଅନୁରକ୍ତ ହେଲା । ୧୭ । ସୁତରାଂ ମାଂସର ଆସ୍ୱାଦନରେ ମୁଗ୍ଧ ହୋଇ ଫଳମୂଳ ଭୋଗ କରିବାକୁ ଆଉ ଇଚ୍ଛା କଲା ନାହିଁ । କିଛିଦିନ ପରେ ଅକୃତଜ୍ଞ ଶ୍ୱଯୋନିଜ ଶରଭ ଶୋଣିତ ପିପାସାଦ୍ୱାରା ନିତାନ୍ତ ଅଧୀର ହୋଇ ସେହି ମୁନିଙ୍କୁ ହନନ କରିବାର ଇଚ୍ଛା କଲା ।

ତତ୍କାଳରେ ସେହି ମହାପ୍ରାଜ୍ଞ ମୁନି ତପୋବଳ ଓ ଜ୍ଞାନନେତ୍ର ଦ୍ୱାରା ତାହାର ଦୁରଭିସନ୍ଧିକୁ ବିଦିତ ହେଲେ ଏବଂ ବିଦିତ ହୋଇ ସେହି କୁକ୍କୁରକୁ କହିଲେ । ମୁନି କହିଲେ—ତୁ ପ୍ରଥମରେ କୁକ୍କୁର ଥିଲୁ, ଆମ୍ଭର ତପୋବଳ ଦ୍ୱାରା ତରକ୍ଷୁ ହେଲୁ । ତରକ୍ଷୁ ହୋଇ କ୍ରମଶଃ ବ୍ୟାଘ୍ର ହେଲୁ । ବ୍ୟାଘ୍ର ହୋଇ ମଦସ୍ରାବୀ ମାତଙ୍ଗତ୍ୱକୁ ଲାଭ କଲୁ । ମାତଙ୍ଗରୁ ସିଂହ ହେଲୁ ଏବଂ ପରିଶେଷରେ ସିଂହରୁ ପୁନର୍ବାର ବଳସମ୍ପନ୍ନ ଶରଭତ୍ୱକୁ ଲାଭ କଲୁ । ୨୧ । ଆମ୍ଭେ ତୋ ପ୍ରତି ସ୍ନେହ କରି ତୋତେ ଉତ୍ତରୋତ୍ତର ବିବିଧପ୍ରକାରେ ସୃଷ୍ଟି କଲୁଁ, କିନ୍ତୁ ତୋର ସେହି ସେହି କୁଳ ସହିତ ସମ୍ବନ୍ଧ ହୋଇନାହିଁ । ତୁ ନିଜର କୁଳ ସମ୍ବନ୍ଧକୁ ପରିତ୍ୟାଗ କରି ପାରିଲୁ ନାହିଁ । ରେ ପାପାତ୍ମନ୍ । ତୁ ଆମ୍ଭଙ୍କୁ ନିଷ୍ପାପ ଜାଣି ସୁଦ୍ଧା ହିଂସା କରୁଥିବା ସ୍ଥଳେ, ଆତ୍ମଯୋନିକୁ ପ୍ରାପ୍ତ ହୋଇ କୁକ୍କୁର ହେବୁ । ତଦନନ୍ତର ମୁନିଜନଦ୍ୱେଷ୍ଟା ଦୁଷ୍ଟଚିତ୍ତ ପ୍ରାକୃତ ମୂର୍ଖ ଶରଭ ଋଷିଙ୍କ ଦ୍ୱାରା ଅଭିଶପ୍ତ ହୋଇ ପୁନର୍ବାର ପୂର୍ବରୂପକୁ ପ୍ରାପ୍ତ ହେଲା । ୨୩ ।

## ଅଧ୍ୟାୟ—୧୧୮

ଭୀଷ୍ମ କହିଲେ—ସେହି କୁକ୍କୁର ପ୍ରକୃତିସ୍ଥ ହୋଇ ପରମ ଦୈନ୍ୟ ଦଶାଗ୍ରସ୍ତ ହେଲା ଏବଂ ଋଷି ସେହି ପାପାତ୍ମାକୁ ହୁଙ୍କାର ଦ୍ୱାରା ତପୋବନରୁ ବହିର୍ଗତ କଲେ । ୧ । ଏହି ପ୍ରକାରେ ମତିମାନ୍, ମହୀପତି, ସତ୍ୟ, ଶୌଚତା, ସରଳତା, ପ୍ରକୃତି, ଶ୍ରୁତି, ଚରିତ୍ର, କୁଳ, ଇନ୍ଦ୍ରିୟନିଗ୍ରହ, ଅନୁକମ୍ପା, ବଳବୀର୍ଯ୍ୟ ପ୍ରଭାବ, ପ୍ରଶ୍ରୟ ଓ କ୍ଷମା ଏହି ସମସ୍ତ ବିଦିତ ହୋଇ ଯେଉଁ ଭୃତ୍ୟ ଯେଉଁ କାର୍ଯ୍ୟର ଯୋଗ୍ୟ, ତାହାକୁ ସେହି କାର୍ଯ୍ୟରେ ନିଯୁକ୍ତ କରିବେ । ୩ । ପରୀକ୍ଷା ନ କରି ମନ୍ତ୍ରୀ ନିଯୁକ୍ତ କରିବା ମହୀପାଳର ଉଚିତ ନୁହେ, ଯେଉଁ ନୃପତି ଅକୁଳୀନ ଲୋକମାନଙ୍କ କର୍ତ୍ତୃକ ଆକୀର୍ଣ୍ଣ ଥାନ୍ତି, ସେ କଦାପି ସୁଖୀ ହୋଇ ପାରନ୍ତି ନାହିଁ । ୪ ।

ସତ୍କୁଳସମ୍ଭୂତ ମାନବ ନୃପତିଙ୍କ କର୍ତ୍ତୃକ ନିରପରାଧରେ ବାଧ୍ୟମାନ ହେଲେ ହେଁ କଦାପି ପାପକାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି ନାହିଁ । ୫ । କୁଳହୀନ ପ୍ରାକୃତ ପୁରୁଷ ସାଧୁସଂଶ୍ରୟ ବଶତଃ ଦୁର୍ଲଭ ଐଶ୍ୱର୍ଯ୍ୟ ଲାଭ କରି ଯଦି ନିନ୍ଦିତ ହୁଏ, ତାହା ହେଲେ ତତ୍କ୍ଷଣାତ୍ ଶତ୍ରୁ ହୋଇ

ଯତେ । ୭ । କୁଳୀନ, ଶିକ୍ଷିତ, ପ୍ରାଜ୍ଞ, ଜ୍ଞାନ ବିଜ୍ଞାନ ପାରଦର୍ଶୀ, ସର୍ବ ଶାସ୍ତ୍ରାର୍ଥ ତତ୍ତ୍ୱଜ୍ଞ, ସହିଷ୍ଣୁ, ସ୍ୱଦେଶୀୟ, କୃତଜ୍ଞ ବଳବାନ, କ୍ଷମାଶୀଳ, ଦାନଶୀଳ, ଜିତେନ୍ଦ୍ରିୟ, ଅଲୁବ୍ଧ, ଲବ୍ଧ ସନ୍ତୁଷ୍ଟ ପ୍ରଭୁଙ୍କ ମିତ୍ରମାନଙ୍କର ଐଶ୍ୱର୍ଯ୍ୟଲିପ୍ସୁ, ମନ୍ତ୍ରଦାନ କୁଶଳ, ଦେଶ କାଳଜ୍ଞ, ପ୍ରାଣିମାନଙ୍କ ମନୋରଞ୍ଜନରେ ଅନୁରକ୍ତ, ସତତ ଯୁକ୍ତଚିତ୍ତ, ହିତୈଷୀ, ଅନଳସ, ଆଗ୍ରହ ଯୁକ୍ତ, ନିଜବିଷୟରେ ସନ୍ଧି ବିଗ୍ରହ କୋବିଦ ନୃପତିଙ୍କର ଧର୍ମାର୍ଥ କାମବେତ୍ତା ପୌର ଓ ଜନପଦବାସୀ ଲୋକଙ୍କର ପ୍ରିୟ, ପର ସୈନ୍ୟ ବିଦାରକ ମାନଙ୍କ ବ୍ୟୂହ ସମୂହର ତତ୍ତ୍ୱଜ୍ଞ, ସୈନ୍ୟମାନଙ୍କ ପ୍ରହୃଷ୍ଟ କରିବା ବିଷୟରେ କୋବିଦ, ଇଙ୍ଗିତାକାର ତତ୍ତ୍ୱଜ୍ଞ, ଯାତ୍ରାଜ୍ଞାନ ବିଶାରଦ ହସ୍ତିଶିକ୍ଷା ନିପୁଣ, ଅହଙ୍କାର ବିବର୍ଜିତ, ପ୍ରଗଲ୍‌ଭ, ଦକ୍ଷ, ଦାନ୍ତ, ବଳବାନ, ସମୁଚିତ କାର୍ଯ୍ୟକାରୀ, ପବିତ୍ର ଓ ପବିତ୍ରଜନ ପରିବେଷ୍ଟିତ, ସୁମୁଖ, ସୁଖଦର୍ଶନ, ନାୟକ, ନୀତିକୁଶଳ, ଗୁଣ ଓ ଚେଷ୍ଟା ସମନ୍ୱିତ, ଅସ୍ତବ୍ଧ, ସୂକ୍ଷ୍ମାର୍ଥ ଦର୍ଶୀ ମଧୁର ଓ ମୃଦୁଭାଷୀ, ଧୀର ଶୂର, ମହୈଶ୍ୱର୍ଯ୍ୟ ସମ୍ପନ୍ନ ଏବଂ ଦେଶକାଳାନୁସାରେ କାର୍ଯ୍ୟ ସମ୍ପାଦକ ବ୍ୟକ୍ତିଙ୍କୁ ଯେ ସଚିବ କରନ୍ତି ଏବଂ ତାହାଙ୍କୁ ଯେ ଅବଜ୍ଞା ନ କରନ୍ତି, ସୁଧାକରଙ୍କର ଚନ୍ଦ୍ରିକା ପ୍ରାୟ, ସେହି ନରପତିଙ୍କର ରାଜ୍ୟ ବିସ୍ତୀର୍ଣ୍ଣ ହୁଏ । ୧୫ । ଏହିସବୁ ଗୁଣଯୁକ୍ତ ଶାସ୍ତ୍ର ବିଶାରଦ ପ୍ରଜାପାଳନ ତତ୍ପର ଧର୍ମନିଷ୍ଠ ନୃପତି ସମସ୍ତଙ୍କର ବାଞ୍ଛନୀୟ ଅଟନ୍ତି । ୧୭ ।

ଧୀର, କ୍ଷମାବାନ୍, ଶୁଚି, ସମୟାନୁସାରେ ତୀକ୍ଷ୍ଣ, ପୁରୁଷ କାଳବିତ୍, ଶୁଶ୍ରୂଷୁ, ଶ୍ରୁତବାନ୍, ଶ୍ରୋତା, ତର୍କ ବିତର୍କ କୋବିଦ, ମେଧାବୀ, ଧାରଣାଯୁକ୍ତ, ଯଥାନ୍ୟାୟରେ କାର୍ଯ୍ୟ ନିର୍ବାହକ, ଦାନ୍ତ, ସତତ ପ୍ରିୟଭାଷୀ, ଅପକାରକ ପ୍ରତି କ୍ଷମାବାନ୍, ଦାନର ଅବିଚ୍ଛେଦ କାରୀ, ଶ୍ରଦ୍ଧାଳୁ, ସୁଖଦର୍ଶନ, ଆର୍ତ୍ତ ଗଣଙ୍କର ଅବଲମ୍ବନ, ସର୍ବଦା ଅମାତ୍ୟ ଯାହାଙ୍କର ହିତ ନିରତ, ଅନହଙ୍କାରୀ, ଦୁଃଖ ସୁଖ ସହିଷ୍ଣୁ, ଚଳଚିତ୍ତ ଅନ କାରିତା ଶୂନ୍ୟ ଅମାତ୍ୟଗଣଙ୍କ ଦ୍ୱାରା କୌଣସି କାର୍ଯ୍ୟ ନିଷ୍ପନ୍ନ ହେଲେ ସେମାନଙ୍କର ଉପକାରକ, ଭକ୍ତଜନପ୍ରିୟ ସଂଗୃହୀତଜନ, ଅସ୍ତବ୍ଧ, ସତତ ପ୍ରସନ୍ନ ବଦନ, ନିୟତ ଭୃତ୍ୟ ଜନାପେକ୍ଷୀ, ଅକ୍ରୋଧୀ, ପ୍ରଶସ୍ତଚିତ୍ତ, ସମୁଚିତ, ଦଣ୍ଡଦାତା, ଅନିର୍ଦ୍ଦଣ୍ଡ, ଧର୍ମକାର୍ଯ୍ୟାନୁଶାସନ, ଗୁପ୍ତ ନେତ୍ର, ପ୍ରଜା ବେକ୍ଷଣ ତତ୍ପର ଓ ସତତ ଧର୍ମାର୍ଥ କୁଶଳ, ଏତାଦୃଶ ଶତ ଗୁଣାନ୍ୱିତ ନୃପତି ସମସ୍ତଙ୍କର ବାଞ୍ଛନୀୟ ଅଟନ୍ତି ।

ହେ ମନୁଜେନ୍ଦ୍ର ! ରାଜ୍ୟ ଧାରଣର ସହାୟ ସ୍ୱରୂପ ସୁପୁରୁଷ ଗୁଣିଗଣ ପରିବୃତ୍ତ ଯୋଦ୍ଧାମାନଙ୍କ ମଧ୍ୟ ଅନ୍ୱେଷଣ କରିବା ଉଚିତ । ଯେଉଁ ନୃପତି ସମୃଦ୍ଧି କାମନା କରନ୍ତି ତାହାଙ୍କର ଯୋଦ୍ଧାମାନଙ୍କୁ ଅବଜ୍ଞା କରିବା ଉଚିତ ନୁହେ । ୨୪ ।

ଯେଉଁ ନୃପତିଙ୍କର ଯୁଦ୍ଧ ପାରଗ ଯୋଦ୍ଧା, କୃତଜ୍ଞ, ଶସ୍ତ୍ର କୋବିଦ, ଧର୍ମଶାସ୍ତ୍ରରତ, ପଦାତି ସୈନ୍ୟ ସଂବୃତ, ନିର୍ଭୟ, ଗଜାରୋହୀ, ରଥାରୋହୀ, ଅସ୍ତ୍ରଗ ଅସ୍ତ୍ର କୁଶଳ, ଯୋଦ୍ଧାମାନେ ବଶୀଭୂତ ଥାନ୍ତି, ଏହି ମହୀମଣ୍ଡଳ ସେହି ନୃପତିଙ୍କର କରତଳରେ ବିଳାସ କରେ । ୨୬ । ଯେଉଁ ନୃପତି ସମସ୍ତ ବସ୍ତୁ ସଂଗ୍ରହ କରିବାକୁ ସତତ ଆଗ୍ରହ ବିଶିଷ୍ଟ ଅଟନ୍ତି, ଯେ ଉତ୍ଥାନ ଶୀଳ ଓ ମିତ୍ର ସମ୍ପନ୍ନ, ସେହି ରାଜା ରାଜସତ୍ତମ ଅଟନ୍ତି । ୨୭ । ହେ ଭାରତ ! ସଂଗୃହୀତ ମନୁଷ୍ୟ ଓ ସହସ୍ର ଅଶ୍ୱାରୋହୀ ବୀରମାନଙ୍କ ଦ୍ୱାରା ସମସ୍ତ ବସୁନ୍ଧରାକୁ ଜୟ କରିହୁଏ । ୨୮ ।

## ଅଧ୍ୟାୟ—୧୧୯

ଭୀଷ୍ମ କହିଲେ—ଯେଉଁ ନରାଧିପତି ଏହିପରି କୁକ୍କୁର ତୁଲ୍ୟ ଭୃତ୍ୟଗଣଙ୍କୁ ସ୍ୱ ସ୍ୱ ସ୍ଥାନରେ କାର୍ଯ୍ୟ ବିଶେଷରେ ନିଯୋଜିତ କରନ୍ତି, ସେ ରାଜ୍ୟଫଳକୁ ଭୋଗ କରନ୍ତି । ୧ । କୁକ୍କୁରକୁ ସମ୍ମାନ କରି ସ୍ୱସ୍ଥାନରୁ ନେଇ ଉଚ୍ଚସ୍ଥାନରେ ନିଯୁକ୍ତ କରିବା ଉଚିତ ନୁହେ । କୁକ୍କୁର ସ୍ୱସ୍ଥାନ ଅପେକ୍ଷା ଉଚ୍ଚପଦ ପ୍ରାପ୍ତ ହେଲେ ପ୍ରମତ୍ତ ହୁଏ । ୨ । ସ୍ୱଜାତିଗୁଣସମ୍ପନ୍ନ ଅମାତ୍ୟଗଣଙ୍କୁ ସ୍ୱକୀୟ କର୍ମରେ ସଂସ୍ଥିତ କରିବା କର୍ତ୍ତବ୍ୟ । ସେମାନଙ୍କୁ ଅଯଥାସ୍ଥାନରେ ନିଯୁକ୍ତ କରିବା ବିଧେୟ ନୁହେ । ୩ । ଯେଉଁ ରାଜା ଭୃତ୍ୟଗଣଙ୍କୁ ଅନୁରୂପ କାର୍ଯ୍ୟ ପ୍ରଦାନ କରନ୍ତି, ସେହି ଭୃତ୍ୟଗଣ ସମ୍ପନ୍ନ ଭୂପତି ଉତ୍କୃଷ୍ଟଫଳ ଭୋଗ କରନ୍ତି । ୪ । ଶରଭ ସ୍ଥାନରେ ଶରଭ, ସିଂହ ସ୍ଥାନରେ ବଳବାନ ସିଂହ, ବ୍ୟାଘ୍ର ସ୍ଥାନରେ ବ୍ୟାଘ୍ର, ଏବଂ ଦ୍ୱୀପୀକୁ ଦ୍ୱୀପୀ ସ୍ଥାନରେ ସ୍ଥାପନ କରିବା ଉଚିତ । ୫ । ଯେଉଁ ଭୃତ୍ୟ ଯେଉଁ କର୍ମରେ ଉପଯୁକ୍ତ ତାହାକୁ ସେହି କର୍ମରେ ନିଯୁକ୍ତ କରିବା ବିଧେୟ । କର୍ମଫଳାଭିଳାଷୀ ଭୃତ୍ୟଗଣଙ୍କୁ ବିପରୀତ ରୂପରେ ନିଯୁକ୍ତ କରିବା ଉଚିତ ନୁହେ । ଯେଉଁ ବୁଦ୍ଧିହୀନ

ନୃପତି ପ୍ରମାଣଙ୍କୁ ଅତିକ୍ରମପୂର୍ବକ ବିପରୀତ ଭାବରେ ଭୃତ୍ୟଗଣଙ୍କୁ ସ୍ଥାପନ କରନ୍ତି, ସେ ପ୍ରଜାରଞ୍ଜନ କରି ପାରନ୍ତି ନାହିଁ । ୭ । ମୂର୍ଖ, କ୍ଷୁଦ୍ର, ଅପ୍ରାଜ୍ଞ, ଅଜିତେନ୍ଦ୍ରିୟ, ଓ ଅକୁଳୀନ ଲୋକମାନଙ୍କୁ ନିଯୁକ୍ତ କରିବା ଗୁଣଜ୍ଞ ନୃପତିଙ୍କର କର୍ତ୍ତବ୍ୟ ନୁହେ । ୮ । ସାଧୁ, ସଦ୍‌ବଂଶଜ, ଶୂର, ଜ୍ଞାନବାନ୍, ଅନସୂୟକ, ଅକ୍ଷୁଦ୍ର, ଶୁଚି ଓ ଦକ୍ଷପୁରୁଷମାନେ ପାରିପାର୍ଶ୍ୱିକ ହୁଅନ୍ତି । ୯ । ଯେଉଁମାନେ ନମ୍ର, କାର୍ଯ୍ୟତତ୍ପର, ଶୁଦ୍ଧ, ଶାନ୍ତ, ସ୍ୱଭାବିକ ଗୁଣମାନଙ୍କ ଦ୍ୱାରା ରମଣୀୟ ଏବଂ ପଦରେ ନିନ୍ଦିତ ହୁଅନ୍ତି ନାହିଁ, ସେମାନେ ନୃପତିଙ୍କର ବହିଶ୍ଚର ପ୍ରାଣସ୍ୱରୂପ ଅଟନ୍ତି । ୧୦ । ସିଂହ ସତତ ଅନୁଗତ ହେବ, ଯେ ସିଂହ ନୁହେ, ସେ ସିଂହ ସହିତ ମିଳିତ ହେଲେ ସିଂହବତ୍ ଫଳଲାଭ କରେ । ୧୧ । ଯେ ସିଂହହୋଇ କୁକ୍କୁରମାନଙ୍କ ଦ୍ୱାରା ଅକୀର୍ଣ୍ଣ ରହେ ଏବଂ ସିଂହର କର୍ମଫଳରେ ରତହୁଏ ସେ କୁକ୍କୁରଗଣଙ୍କ କର୍ତ୍ତୃକ ଉପାସିତ ହୋଇ ସିଂହର ଫଳଭୋଗ କରିବାକୁ ସମର୍ଥ ହୁଏ ନାହିଁ । ୧୨ । ହେ ମନୁଜେନ୍ଦ୍ର ! ଶୂର, ପ୍ରାଜ୍ଞ, ବହୁଶ୍ରୁତ ଓ କୁଳୀନମାନଙ୍କ ଦ୍ୱାରା ସମସ୍ତ ବସୁନ୍ଧରା ଜୟ କରିହୁଏ । ୧୩ ।

ହେ ଭୃତ୍ୟ ବତ୍ସଳ ପ୍ରବର ! ବିଦ୍ୟାହୀନ, ଅନୃଜୁ, ଅପ୍ରାଜ୍ଞ, ଅମହାଧନ ଭୃତ୍ୟଙ୍କୁ ମହୀପାଳମାନଙ୍କର ସଂଗ୍ରହ କରିବା ବିଧେୟ ନୁହେ । ୧୪ । ସ୍ୱାମୀ କାର୍ଯ୍ୟ ସାଧନ ତତ୍ପର ଲୋକମାନେ ବାଣବତ୍ କାର୍ଯ୍ୟର ଅଭ୍ୟନ୍ତରରେ ପ୍ରବେଶ କରନ୍ତି, ଯେଉଁ ଭୃତ୍ୟମାନେ ନୃପତିଙ୍କର ହିତକର ଅଟନ୍ତି, ସେମାନଙ୍କ ପ୍ରତି ପ୍ରିୟବଚନ ପ୍ରୟୋଗ କରିବା ବିଧେୟ । ୧୫ । ପାର୍ଥିବଗଣଙ୍କର ପ୍ରଯତ୍ନପୂର୍ବକ ସତତ ନିଜ କୋଷକୁ ରକ୍ଷା କରିବା ଉଚିତ; କାହିଁକି ନା କୋଷହିଁ ତାଙ୍କର ମୂଳ ଶକ୍ତି ଏବଂ କୋଷହିଁ ତାଙ୍କୁ ଅଗକୁ ବଢ଼ାଇ ପାରିବ । ୧୬ ।

ଯୁଧିଷ୍ଠିର ! ତୁମ୍ଭର ଅନ୍ନ-ଭଣ୍ଡାର ସଦା ପୁଷ୍ଟିକାରକ ଖାଦ୍ୟବସ୍ତୁରେ ପୂର୍ଣ୍ଣ ରହିବା ଉଚିତ୍ ଏବଂ ତାର ରକ୍ଷାର ଭାର ଶ୍ରେଷ୍ଠ ବ୍ୟକ୍ତିଙ୍କୁ ସମର୍ପଣ କରିବା ଉଚିତ୍; ତୁମ୍ଭେ ସର୍ବଦା ଧନ-ଧାନ୍ୟର ବୃଦ୍ଧି କର । ୧୭ । ତୁମ୍ଭର ସମସ୍ତ ସେବକ ସବୁବେଳେ ଉଦ୍‌ଯୋଗଶୀଳ ଓ ଯୁଦ୍ଧ କଳାରେ କୁଶଳୀ ହୁଅନ୍ତୁ ଏବଂ ଘୋଡ଼ାରେ ଚଢ଼ିବା ବା ସେମାନଙ୍କୁ ଚଳାଇବାରେ ସେମାନଙ୍କ ବିଶେଷ ଚତୁର ହେବା ଦରକାର । ୧୮ ।

କୌରବନନ୍ଦନ ! ତୁମ୍ଭେ ସ୍ୱକାର୍ଯ୍ୟମାନଙ୍କ ଉପରେ ଦୃଷ୍ଟି ରଖ. ମିତ୍ର, ସମ୍ବନ୍ଧ ମାନଙ୍କୁ ନେଇ ଚଳ ଏବଂ ପୁରବାସିମାନଙ୍କ କାର୍ଯ୍ୟ ଓ ହିତ ସିଦ୍ଧିର ଉପାୟ ଚିନ୍ତାକର । ୧୯ ।

ତାତଃ । ମୁଁ ଏହି ତୁମ୍ଭନିକଟରେ ପ୍ରଜାପାଳନ ବିଷୟ ସ୍ଥିର ବୁଦ୍ଧିର ପ୍ରତିପାଦନ କରିଅଛି ଏବଂ କୁକ୍କୁରର ଦୃଷ୍ଟାନ୍ତ ସମ୍ମୁଖରେ ରଖିଛି । ବର୍ତ୍ତିମାନ ଅନ୍ୟ କଣ ଶୁଣିବାକୁ ଚାହୁଁଛ ? । ୨୦ ।

## ଅଧ୍ୟାୟ—୧୨୦

ଯୁଧିଷ୍ଠିର କହିଲେ—ଭାରତ ! ରାଜଧର୍ମର ସତ୍ତ୍ୱକୁ ଜାଣିଥିବା ପୂର୍ବବର୍ତ୍ତୀ ରାଜାମାନେ, ପୂର୍ବକାଳରେ ଯେଉଁମାନଙ୍କ ଅନୁଷ୍ଠାନ କରି-ନେଇଛନ୍ତି, ସେହି ଅନେକ ପ୍ରକାରର ରାଜୋଚିତ ବିଷୟ ଆପଣ ବର୍ଣ୍ଣନ କଲେ । ୧ । ଭାରତଶ୍ରେଷ୍ଠ ! ଆପଣ ପୂର୍ବପୁରୁଷଙ୍କ ଦ୍ୱାରା ଆଚରିତ ତଥା ସଜ୍ଜନ ସମ୍ମତ ଯେଉଁ ଶ୍ରେଷ୍ଠ ରାଜଧର୍ମର ବିସ୍ତାର ପୂର୍ବକ ବର୍ଣ୍ଣନ କରିଦେଇଛନ୍ତି, ତାହାକୁ ଏହିପରି ସଂକ୍ଷିପ୍ତ କରି କୁହ । ଯେଉଁଥିରୁ ତାହାର ବିଶେଷ ରୂପରେ ପାଳନ କରାଯାଇପାରେ । ୨ ।

ଭୀଷ୍ମ କହିଲେ—ଭୂପାଳ ! ସମସ୍ତ ପ୍ରାଣୀମାନଙ୍କୁ ରକ୍ଷାକରିବା, କ୍ଷତ୍ରିୟଙ୍କର ସବୁଠାରୁ ଶ୍ରେଷ୍ଠଧର୍ମ ବୋଲି ପରିଗଣିତ ହୋଇଛି । ପରନ୍ତୁ ଏହି ରକ୍ଷାକାର୍ଯ୍ୟ କିପରି କରାଯିବ, ତାହା କହୁଛି ଶୁଣ । ୩ । ଯେପରି ସାପଖିଆ ମୟୂର ବିଚିତ୍ର ପରଶର ପୁଚ୍ଛ ଧାରଣ କରେ, ସେହି ପ୍ରକାରେ ଧର୍ମଜ୍ଞ ରାଜାଙ୍କୁ ସମୟ ସମୟରେ ନିଜର ଅନେକ ରୂପ ପ୍ରକଟ କରିବା ଦରକାର । ୪ । ରାଜା ମଧ୍ୟସ୍ଥ ଭାବରେ ରହିକରି ତୀକ୍ଷ୍ଣତା, କୁଟିଳନୀତି, ଅଭୟଦାନ, ସତ୍ୟ, ସରଳତା ତଥା ଶ୍ରେଷ୍ଠବ୍ୟବହାରର ଅବଲମ୍ବନ କଲେ ବହୁତ ସୁଖର ଭାଗୀ ହୋଇପାରେ । ୫ । ଯେଉଁ କାର୍ଯ୍ୟନିମିତ୍ତ ଯାହା ହିତକର, ସେଥିରେ ସେହିପରି ରୂପ ପ୍ରକଟ କରାଇବ ( ଉଦାହରଣ ସ୍ୱରୂପ ଅପରାଧୀ ମାନଙ୍କୁ ଦଣ୍ଡଦେବା ସମୟରେ ଉଗ୍ରରୂପ ଓ ଦୀନ ଦୁଃଖୀପ୍ରତି ଅନୁଗ୍ରହ କରିବା ସମୟରେ ଶାନ୍ତ ଏବଂ ଦୟାଳୁ ରୂପ ଧାରଣ କରିବ ) । ଏହିପରି ଅନେକ ରୂପ ଧାରଣ କରୁଥିବା ରାଜାଙ୍କ ଛୋଟ କାର୍ଯ୍ୟ ମଧ୍ୟ ନଷ୍ଟ ହୋଇଯାଏ ନାହିଁ । ୬ । ଯେପରି ଶରତ୍‌କାଳରେ ମୟୂର ଡାକେନା,

ସେହିପରି ରାଜାମାନଙ୍କ ମଧ୍ୟ ମୌନଭାବରେ ସର୍ବଦା ରାଜକୀୟ ଗୁପ୍ତ ବିଷୟ-ମାନଙ୍କୁ ସୁରକ୍ଷିତ ରଖିବା କର୍ତ୍ତବ୍ୟ । ତାଙ୍କୁ ମଧୁର ବଚନ କହିବା, ସୌମ୍ୟ ସ୍ୱରୂପ ରହିବା ଓ ଶୋଭା ସମ୍ପନ୍ନ ହୋଇ ସବୁ ଶାସ୍ତ୍ରରେ ବିଶେଷ ଜ୍ଞାନପ୍ରାପ୍ତ ହେବା ଉଚିତ । ୭ ।

ବର୍ଷା ସମୟରେ ଯେଉଁ ବାଟରୁ ଜଳ ବହିଆସି ଗ୍ରାମକୁ ଜଳମଗ୍ନ କରିଦିଏ, ସେହି ସ୍ଥାନରେ ଯେପରି ଲୋକମାନେ ମଜବୁତ ବନ୍ଧ ବାନ୍ଧି-ଦିଅନ୍ତି, ସେହିପରି ଯେଉଁ ଦ୍ୱାରରୁ ସଙ୍କଟ ଆସିବାର ସମ୍ଭାବନା ଅଛି ତାହାକୁ ସୁଦୃଢ଼ କରିବା କିମ୍ବା ବନ୍ଦ କରିବା ନିମନ୍ତେ ରାଜାଙ୍କୁ ସବୁବେଳେ ସାବଧାନ ରହିବାର ଦରକାର । ଯେପରି ପର୍ବତ ଉପରେ ବର୍ଷାହେଲେ ଯେଉଁ ପାଣି ବହିଆସି ଏକତ୍ରିତ ହୋଇ ନଦୀ କିମ୍ବା ପୋଖରୀ ରୂପ ଧାରଣ କରେ ଏବଂ ତାହାର ବ୍ୟବହାର କରିବାପାଇଁ ଲୋକେ ତାର ଆଶ୍ରୟ ନିଅନ୍ତି, ସେହିପରି ରାଜାଙ୍କୁ ସିଦ୍ଧ ବ୍ରାହ୍ମଣମାନଙ୍କ ଆଶ୍ରୟ ନେବା ଉଚିତ୍ । ଯେପରି ଭଣ୍ଡ ବାବାଜି ମୁଣ୍ଡରେ ଜଟା ଧାରଣ କରନ୍ତି, ସେହିପରି ରାଜାଙ୍କୁ ନିଜର ସ୍ୱାର୍ଥସିଦ୍ଧି ନିମନ୍ତେ ଉଚିତ ଲକ୍ଷଣସବୁ ଧାରଣ କରିବା ଉଚିତ୍ । ସେ ସଦା ଅପରାଧୀ ମାନଙ୍କୁ ଦଣ୍ଡ ଦେବାଲାଗି ଉଦ୍ୟତ ରୁହନ୍ତୁ, ପ୍ରତ୍ୟେକ କାର୍ଯ୍ୟ ସାବଧାନତା ସହ କରନ୍ତୁ, ଲୋକମାନଙ୍କ ଆୟବ୍ୟୟ ଦେଖି ତାଳବୃକ୍ଷରୁ ରସ ବାହାର କରିବାପରି ସେମାନଙ୍କଠାରୁ ଧନରୂପୀ ରସ ନିଅନ୍ତୁ । (ଅର୍ଥାତ୍ ଯେପରି ସେହି ରସ ନିମିତ୍ତ ବୃକ୍ଷକୁ କାଟି ଦିଆଯାଏ ନା, ସେହିପରି ପ୍ରଜାଙ୍କ ଉଚ୍ଛେଦ କରିବ ନାହିଁ ) । ୯ ।

ନୃପତି ନିଜପକ୍ଷ ପ୍ରତି ବିଶୁଦ୍ଧ ବ୍ୟବହାର କରିବେ ଏବଂ ବିପକ୍ଷ ମାନଙ୍କର ଭୂମିଜାତ ଶସ୍ୟାଦି ଅଶ୍ୱାଦି ଗମନ ଦ୍ୱାରା ବିନଷ୍ଟ କରାଇବେ । ସସହାୟ ହୋଇ ଯୁଦ୍ଧ ଯାତ୍ରାଦି କରିବେ । ଏବଂ ଆତ୍ମବୈକଲ୍ୟ ବିଲୋକନରେ ଅବହିତ ରହିବେ । ୧୦ । କାନନରେ ପୁଷ୍ପ ଚୟନ ପ୍ରାୟ ଅର୍ଥ ଆହରଣ କରି ଶତ୍ରୁର ଦୋଷମାନ ବିସ୍ତାର କରିବେ ଏବଂ ମୃଗୟାଦି ଛଳରେ ପରରାଜ୍ୟକୁ ଗମନକରି ପରପକ୍ଷ ମାନଙ୍କୁ ବିବାସିତ କରିବେ ।୧୧। ପରଦୁର୍ଗାଧିପତିଙ୍କ ସହିତ ସନ୍ଧିକରି ଦେବତା ଦର୍ଶନାଦି ଛଳରେ ଅକସ୍ମାତ ପରଦୁର୍ଗରେ ପ୍ରବେଶ ପୂର୍ବକ ଅଟଳୋପମ ସ୍ଥିତ ଓ ଉନ୍ନତ ଦୁର୍ଲଙ୍ଘ୍ୟ ନୃପତିମାନଙ୍କର ବିନାଶ ସାଧନ କରିବେ । ଅତଏବ ଅବଜ୍ଞାତ ଛାୟା ଆଶ୍ରୟ ପୂର୍ବକ ଗୁପ୍ତଭାବରେ ରଣ କାର୍ଯ୍ୟକୁ ନିର୍ବାହ କରିବେ ।୧୨।

ଉଜଣୀରେ ମୟୂର ପ୍ରାୟ, ପ୍ରାବୃଟ କାଳରେ ନିର୍ଜନ ସ୍ଥାନରେ ଅବସ୍ଥିତ କରିବେ । ମୟୂରର ଗୁଣ ଅବଲମ୍ବନ ଦ୍ୱାରା ଅଦୃଶ୍ୟ ହୋଇ ଅନ୍ତଃପୁରରେ ଆଚରଣ କରିବେ । କଦାପି ଭନୁପ୍ରାଣକୁ ପରିତ୍ୟାଗ କରିବେ ନାହିଁ । ନିଜେ ନିଜକୁ ରକ୍ଷା କରିବେ ।

ଗୁପ୍ତଚରଗଣ କର୍ତ୍ତୃକ ପ୍ରଦର୍ଶିତ ପ୍ରଦେଶ ମାନଙ୍କରେ ଧାନୀ, କଣ୍ଟକୀ ଓ ଯୂପକାର ପ୍ରଭୃତି ବିପକ୍ଷମାନଙ୍କ ଦ୍ୱାରା ଚ୍ଛେଦିତ ହେଲେ ଅଭ୍ୟୁଦୟରେ ଅପତିତ ବିଷାଦରୂପ ପାଶ ସମୂହକୁ ଆତ୍ମରକ୍ଷାର୍ଥ ପରିବର୍ଜନ କରିବେ ।୧୪। ବିଷାଦ ଜ୍ଞାନ ଦୁର୍ବୋଧହେଲେ ସେହି କପଟସ୍ଥାନକୁ ସ୍ୱୟଂ ଗମନ ପୂର୍ବକ ତାହାକୁ ବିନଷ୍ଟ କରିବେ । ବିଷ କନ୍ୟାଦି ପ୍ରୟୋଗକାରୀ କୁଟିଳ କ୍ରୁଦ୍ଧ ବ୍ୟକ୍ତିମାନଙ୍କୁ ଗୁପ୍ତବଧ ଦ୍ୱାରା ଅଥବା ତଦଙ୍ଗସ୍ପର୍ଶୀ ମକ୍ଷିକା ମଶକାଦିର ମରଣ ଦ୍ୱାରା, ଜ୍ଞାତ ହୋଇ ନିହତ କରିବେ । ୧୫ । ସ୍ଥୂଳପକ୍ଷ ଅର୍ଥାତ୍ ସୈନ୍ୟମାନଙ୍କର ପକ୍ଷସ୍ଥାନୀୟ ଶିବିର ସମ୍ବନ୍ଧୀୟ ବାଟବଣାଟା ଓ ନୈତିକ ପ୍ରଭୃତିଙ୍କୁ ବିନାଶିତ କରିବେ । ଅର୍ଥାତ୍ ମୟୂର ପ୍ରାୟ ଦୂରୀକୃତ କରିବେ । ଦୃଢ଼ମୂଳ ଅମାତ୍ୟ ଓ ଶୂରମାନଙ୍କୁ ସଂସ୍ଥାପିତ କରିବେ । ସତତ ମୟୂର ପ୍ରାୟ ଯଦୃଚ୍ଛାନୁସାରେ ପ୍ରଶସ୍ତ କାର୍ଯ୍ୟ ଆଚରଣ କରିବେ । ଶଳଭ ସମୂହ ଯେପରି ଗହନ ବନରେ ପତିତ ହୋଇ କାନନକୁ ନିଷ୍ପ୍ରଭ କରନ୍ତି, ତଦ୍ରୂପ ନୃପତି ସୈନ୍ୟ ସାମନ୍ତସହ ସମ୍ମିଳିତ ହୋଇ ଶତ୍ରୁରାଜ୍ୟକୁ ଆକ୍ରମଣ କରିବାରେ ପ୍ରବୃତ୍ତ ହେବେ । ୧୬ । ଏହି ପ୍ରକାରେ ବିଚକ୍ଷଣ ନରପାଳ ମୟୂରବତ୍ ସ୍ୱରାଜ୍ୟକୁ ପାଳନ କରିବେ ଏବଂ ଆତ୍ମ ବୃଦ୍ଧିକାରୀ ନୀତି ବିଧାନ କରିବେ । ୧୭ ।

ବୁଦ୍ଧିଦ୍ୱାରା ଆତ୍ମସଂଯମନ, ଅର୍ଥାତ୍ ଏହାପରେ କାର୍ଯ୍ୟ କରିବା ଉଚିତ, ଏହି ପ୍ରକାର ନିୟମ କରିବେ ଏବଂ ପରବୁଦ୍ଧି ଅନୁସାରେ ତଦ୍‌ବିଷୟକୁ ଅବଧାରଣ କରିବା କର୍ତ୍ତବ୍ୟ । ଶାସ୍ତ୍ରୋକ୍ତ ଧୀଶକ୍ତି ଦ୍ୱାରା ଆତ୍ମଗୁଣ ପ୍ରାପ୍ତି ହୁଏ । ଏହାହିଁ ଶାସ୍ତ୍ରର ପ୍ରୟୋଜନ ଅଟେ । ୧୮ । ସାନ୍ତ୍ୱନା ବାକ୍ୟଦ୍ୱାରା ପରକୁ ବିଶ୍ୱାସିତ କରିବେ ଏବଂ ସ୍ୱକୀୟ ଶକ୍ତି ପ୍ରଦର୍ଶନ କରିବେ । ସର୍ବତୋଭାବରେ ଅତୀତ ଓ ଅନାଗତ ବିଷୟର ବିଚାର ଦ୍ୱାରା ଅର୍ଥାତ୍ ଊହାପୋହ କୌଶଳରୂପା ବୁଦ୍ଧିଶକ୍ତିକୁ ତୁଳନା କରି କର୍ତ୍ତବ୍ୟ ବିଷୟର ନିଷ୍ପତ୍ତିକୁ ବିବେଚନା କରିବେ । ୧୯ ପ୍ରାଜ୍ଞ ପୁରୁଷ ସାନ୍ତ୍ୱଯୋଗ ଅବଲମ୍ବନପୂର୍ବକ କାର୍ଯ୍ୟାକାର୍ଯ୍ୟର ପ୍ରୟୋଜକ ହେବେ ଏବଂ

ନିଗୂଢ଼ ବୁଦ୍ଧି ଧୀର ବ୍ୟକ୍ତିଙ୍କୁ ଉପଦେଶ ଦେବା ନିଷ୍ପ୍ରୟୋଜନ । ୨୦ । ସଲିଳ ମଧ୍ୟରେ ପ୍ରକ୍ଷିପ୍ତ ତପ୍ତଲୌହ ଯେପରି ତତ୍କ୍ଷଣାତ୍ ଶୈତ୍ୟଗୁଣ-ସମ୍ପନ୍ନ ହୁଏ, ତଦ୍ରୂପ ପୂର୍ବୋକ୍ତ ପ୍ରାଜ୍ଞ ପୁରୁଷ ବୁଦ୍ଧିବଶତଃ ବୃହସ୍ପତିଙ୍କ ସଦୃଶ ହୋଇ ସୁଦ୍ଧା ଯଦି ନିକୃଷ୍ଟ କଥା ଅର୍ଥାତ୍ ନିଜର ନିନ୍ଦିତ ପ୍ରବାଦକୁ ପ୍ରାପ୍ତ ହୁଅନ୍ତି, ତା ହେଲେ ସେ ସଦୁପାୟ ଅବଲମ୍ବନ ପୂର୍ବକ ସ୍ୱଭାବର ସ୍ୱାସ୍ଥ୍ୟ କାମନା କରନ୍ତି । ୨୧ । ନୃପତି ନିଜର କିମ୍ବା ପରର ଆଗମ ଦ୍ୱାରା ଉପଦିଷ୍ଟ ସମସ୍ତ କାର୍ଯ୍ୟ ସମ୍ପାଦନ କରିବେ । ଅର୍ଥ ବିଧାନବିତ୍ ଭୂପାଳ ମୃଦୁସ୍ୱଭାବ କିମ୍ବା ପ୍ରାଜ୍ଞ ଏବଂ ଶୂରବ୍ୟକ୍ତି କିମ୍ବା ଅନ୍ୟ ଯେ କେହି ବଳଶାଳୀ ହେବେ ସେମାନଙ୍କୁ ନିଜ କାର୍ଯ୍ୟରେ ନିଯୁକ୍ତ କରିବେ । ୨୩ । ଅନନ୍ତର ଆପୃତାତନ୍ତ୍ରୀ ଯେପରି ସ୍ୱରମାନଙ୍କର ଅନୁବର୍ତ୍ତିନୀ ହୁଏ, ତଦ୍ରୂପ ସେ ସେମାନଙ୍କୁ ନିଜ ନିଜ ଅନୁରୂପ କାର୍ଯ୍ୟରେ ନିଯୁକ୍ତ ଦେଖି ସମସ୍ତଙ୍କର ଅନୁବର୍ତ୍ତନ କରିବେ । ୨୪ ।

ଧର୍ମ୍ମର ଅବରୋଧରେ ସମସ୍ତଙ୍କର ପ୍ରିୟାଚରଣ କରିବେ । ଯେଉଁ ନୃପତିଙ୍କୁ ପ୍ରକୃତିବୃନ୍ଦ "ମୋ ଆମ୍ଭର" ଏହିପରି ଜ୍ଞାନ କରନ୍ତି, ସେ ପର୍ବତ-ପ୍ରାୟ ଅଚଳହୋଇ ଅବସ୍ଥାନ କରନ୍ତି । ୨୫ । ଦିବାକର ଯେପରି ଆପୃତ ରଶ୍ମିମଣ୍ଡଳକୁ ପ୍ରକାଶ କରନ୍ତି, ନରପତି ସେହିପରି କାର୍ଯ୍ୟ ସମାଧା କରି ପ୍ରିୟ ଓ ଅପ୍ରିୟ ବିଷୟକୁ ତୁଲ୍ୟଜ୍ଞାନ ପୂର୍ବକ ସର୍ବତୋଭାବରେ କେବଳ ଧର୍ମ୍ମରକ୍ଷା କରିବେ । ୨୬ । ଯେଉଁମାନେ କୁଳପ୍ରକୃତି ଦେଶ ବିଦେଶରେ ଧର୍ମ୍ମଜ୍ଞ, ମୃଦୁଭାଷୀ, ମଧ୍ୟ ବୟସ୍କ, ନିର୍ଦ୍ଦୋଷ ହିତ ବିଷୟରେ ନିରତ, ଅପ୍ରମତ୍ତ, ଅଲୁବ୍ଧ, ଶିକ୍ଷିତ, ଜିତେନ୍ଦ୍ରିୟ, ଧର୍ମ୍ମନିଷ୍ଠ, ଧର୍ମ୍ମଜ୍ଞ ଏବଂ ଅର୍ଥରକ୍ଷା କରିବାରେ ସମର୍ଥ, ସେହିସବୁ ବ୍ୟକ୍ତିମାନଙ୍କୁ ନୃପତି ସର୍ବକାର୍ଯ୍ୟରେ ନିୟୋଜିତ କରିବେ । ୨୮ । ରାଜା ଏହି ଗୁଣଗଣଙ୍କ ଦ୍ୱାରା ବିଦିତ ହୁଅନ୍ତି, ସୁତରାଂ ସନ୍ତୁଷ୍ଟ ହୋଇ ଏହି ପ୍ରକାରେ କାର୍ଯ୍ୟମାନଙ୍କର ଆଗମ ଓ ଗତି ବିଷୟକୁ ବିଜ୍ଞାତ ହେବା ନିମିତ୍ତ ନିଯୁକ୍ତ ଥାଇ ସମ୍ୟକ ପ୍ରକାରରେ ସମସ୍ତ କାର୍ଯ୍ୟ ଅନୁଷ୍ଠାନ କରିବେ । ୨୯ । ଯାହାଙ୍କର କ୍ରୋଧ ଓ ହର୍ଷ ଅବ୍ୟର୍ଥ ଏବଂ ଯେ ସ୍ୱୟଂ କାର୍ଯ୍ୟସବୁ ଅବଲୋକନ କରନ୍ତି ଏବଂ ଆତ୍ମପ୍ରତ୍ୟୟ କେବଳ ଯାହାଙ୍କର ଧନାଗାର, ସେହି ରାଜାଙ୍କ ପକ୍ଷରେ ବସୁନ୍ଧରା ବସୁଦାତ୍ରୀ ହୁଅନ୍ତି । ଯାହାଙ୍କର ଅନୁଗ୍ରହ ସ୍ପଷ୍ଟ ରୂପରେ ପ୍ରତୀୟମାନ ହୁଏ, ଏବଂ ଯଥାର୍ଥ ଜାଣି ନିଗ୍ରହ କରନ୍ତି, ଆଉ ଯେଉଁ ନୃପତି ଆତ୍ମରକ୍ଷା କରି

ରାଜ୍ୟ ରକ୍ଷା କରନ୍ତି, ସେ ରାଜଧର୍ମଜ୍ଞ ଅଟନ୍ତି । ୩୧ । ସମୁଦିତ ସୂର୍ଯ୍ୟ ଯେପରି ରଶ୍ମିମଣ୍ଡଳ ଦ୍ୱାରା ଲକ୍ଷିତ ହୁଅନ୍ତି, ସେହିପରି ନୃପତି ନିଜ ରାଜ୍ୟକୁ ନିୟତ ନିରୀକ୍ଷଣ କରିବେ । ଏବଂ ଚରମାନଙ୍କୁ ଅନୁଚର କରି ସେମାନଙ୍କ ଠାରୁ ସ୍ୱରାଷ୍ଟ୍ର ଓ ପରରାଷ୍ଟ୍ର ବିଷୟକ ସମାଚାର ସବୁ ବିଦିତ ହେବେ ଓ ନିଜେ ନିଜର ବୁଦ୍ଧି ପ୍ରଭାବ ଦ୍ୱାରା ସମସ୍ତ କାର୍ଯ୍ୟ ଅନୁଷ୍ଠାନ କରିବେ । ନୃପତି ଅର୍ଥ ଉପାର୍ଜ୍ଜନର କାଳ ଉପସ୍ଥିତ ହେଲେ ଅର୍ଥ ଆହରଣ କରିବେ ଏବଂ ନିଜର ଅର୍ଥବୃଦ୍ଧି ବିଷୟକୁ କାହାରିଠାରେ ପ୍ରକାଶ କରିବେ ନାହିଁ । ବୁଦ୍ଧିମାନ ରାଜା ପ୍ରତିଦିନ ଗୋ ଦୋହନ ପ୍ରାୟ, ପୃଥିବୀରୁ ଅର୍ଥ ଦୋହନ କରିବେ । ୩୩ ।

ମଧୁକର ଯେପରି ଯଥାକ୍ରମରେ କୁସୁମମାନଙ୍କଠାରୁ ମଧୁସଞ୍ଚୟ କରେ, ନୃପତି ତଦ୍ରୂପ କ୍ରମେ କ୍ରମେ ଦ୍ରବ୍ୟ ଆହରଣପୂର୍ବକ ସଞ୍ଚୟ କରିବେ । ୩୪ । ଶାସ୍ତ୍ରଜ୍ଞ ବୁଦ୍ଧିମାନ ଭୂପାଳ ସଞ୍ଚୟ କରି ଯେଉଁ ଅର୍ଥ ଅବଶିଷ୍ଟ ରହିବ, ତାହା ଧର୍ମ୍ମାର୍ଥ ଓ କାମାର୍ଥ ବ୍ୟୟ କରିବେ, ସଞ୍ଚିତ ଅର୍ଥକୁ କଦାପି ବ୍ୟୟ କରିବେ ନାହିଁ । ୩୫ । ଅର୍ଥ ଅଳ୍ପହେଲେ ତାହାକୁ ଅଗ୍ରାହ୍ୟ କରିବେ ନାହିଁ ଏବଂ ଶତ୍ରୁମାନଙ୍କୁ ଅବଜ୍ଞା କରିବା ଉଚିତ ନୁହେ । ବୁଦ୍ଧିଦ୍ୱାରା ନିଜକୁ ବୁଝାଇବେ ଏବଂ ନିର୍ବୁଦ୍ଧି ବ୍ୟକ୍ତିଙ୍କୁ ବିଶ୍ୱାସ କରିବେ ନାହିଁ । ୩୬ । ସନ୍ତୋଷ, ଦକ୍ଷତା, ସଂଯମବୁଦ୍ଧି, ଦେହ, ଧୈର୍ଯ୍ୟ, ଶୌର୍ଯ୍ୟ, ଦେଶ ଓ କାଳରେ ଅପ୍ରମାଦ ଅଳ୍ପ କିମ୍ବା ବହୁଧନର ବିଶେଷରୂପ ବୃଦ୍ଧି ବିଷୟରେ ଏହି ଆଠୋଟି ବିଷୟ ଉଦ୍ଦୀପକ ହୋଇଥାଏ । ୩୭ । ଅଗ୍ନି ଅଳ୍ପ ହେଲେ ମଧ୍ୟ ଆଦ୍ୟ ସିକ୍ତ ହୋଇ ବର୍ଦ୍ଧିତ ହୁଏ, ଏକ ବୀଜରୁ ସହସ୍ର ଅଙ୍କୁର ଉତ୍ପନ୍ନ ହୁଏ, ଅତଏବ ବିପୁଳ ଆୟ ବ୍ୟୟ ବିଷୟକୁ ସମ୍ୟକ ପ୍ରକାରେ ଶ୍ରବଣ କରି ଅଳ୍ପ ଅର୍ଥକୁ କଦାପି ଅବଜ୍ଞା କରିବେ ନାହିଁ । ୩୮ ।

ପ୍ରାଚୀନ ଶତ୍ରୁ ବାଳକ ହେଲେ ମଧ୍ୟ ତାହାଙ୍କୁ ବାଳକ ବୋଧ କରିବା ଉଚିତ ନୁହେଁ, କାରଣ ସେ ବିପକ୍ଷକୁ ସତତ ପ୍ରମତ୍ତ ହେଲେ ନିହତ କରେ । କୌଣସି କାଳରେ ଅନାର୍ଯ୍ୟବ୍ୟକ୍ତି ତାହାର ମୂଳ ହରଣ କରିବ ନାହିଁ । ଏପରି ଯେଉଁ କାଳଜ୍ଞ ପୁରୁଷ ସେ ପାର୍ଥିବ ଗଣଙ୍କ ମଧ୍ୟରେ ବରିଷ୍ଠ ଅଟନ୍ତି । ୩୯ । ଶତ୍ରୁର କୀର୍ତ୍ତି ହରଣ ଏବଂ ତାହାର ଧର୍ମ୍ମ ଉପରୋଧ କରିବ ଏବଂ ଅର୍ଥ ବିଷୟରେ ତାହାର ଦୀର୍ଘତର କାର୍ଯ୍ୟର ଉପଘାତ

କରୁଥିବ । ହେ ଧୃତରାଷ୍ଟ୍ର ! ବୈଶ୍ୟ ଦୁର୍ବଳ ହେଉ କିମ୍ବା ବଳବାନ୍ ହେଉ ଯତବ୍ରତମାନଙ୍କ ଶତ୍ରୁ ଅପେକ୍ଷା କୌଣସି ପ୍ରକାରରେ ହୀନ ହେବେ ନାହିଁ । ୪୦ ।

କ୍ଷୟ, ବୃଦ୍ଧି, ପାଳନ ଓ ସଞ୍ଚୟ ବିବେଚନା କରି ମନ୍ତ୍ରିମାନ ନୃପତି ଐଶ୍ୱର୍ଯ୍ୟକାମ ଓ ବିଜିଗୀଷୁ ରାଜାଙ୍କୁ ଏକତ୍ର ମିଳିତ ଦେଖି ସେମାନଙ୍କ ସହିତ ସନ୍ଧି କରିବେ । ଅତଏବ ବୁଦ୍ଧିମାନ ବ୍ୟକ୍ତିଙ୍କୁ ଆଶ୍ରୟ କରିବା ରାଜାଙ୍କର ଅବଶ୍ୟ କର୍ତ୍ତବ୍ୟ । ୪୧ । ତୀକ୍ଷ୍ଣବୁଦ୍ଧି ବଳବାନ ବ୍ୟକ୍ତିଙ୍କୁ ବିନଷ୍ଟ କରିପାରନ୍ତି । ବୁଦ୍ଧିମାନ ବଳବୁଦ୍ଧି ଦ୍ୱାରା ପ୍ରତିପାଳିତ ହୋଇଥାଏ । ବର୍ଦ୍ଧମାନ ବୈରିକୁ ବୁଦ୍ଧିବଳଦ୍ୱାରା ଅବସନ୍ନ କରାଯାଏ । ଅତଏବ ବୁଦ୍ଧି ଅନୁସାରେ ଯେଉଁ କର୍ମ କରାଯାଏ, ତାହା ପ୍ରଶସ୍ତ ଅଟେ । ୪୨ । ଦୋଷ-ହୀନ ଧୀର ପୁରୁଷ ସମୁଦାୟ କାମ୍ୟ ବିଷୟକୁ କାମନା କରି ଅଳ୍ପ ବଳଦ୍ୱାରା ତାହା ପ୍ରାପ୍ତ ହୁଅନ୍ତି ଏବଂ ଯେ ଆପଣାକୁ ଯାଚମାନ ମାନବ ଯୁକ୍ତଠାରୁ ପ୍ରାର୍ଥନା କରନ୍ତି, ସେ ଅଳ୍ପମାନ ଶ୍ରେୟଃ ପୂରଣ କରି ପାରନ୍ତି ନାହିଁ । ୪୩ । ଅତଏବ ନୃପତି ପ୍ରଜାଗଣଙ୍କ ପ୍ରତି ସ୍ନେହଯୁକ୍ତ ହୋଇ ସମସ୍ତଙ୍କଠାରୁ ମୂଳ ଅର୍ଥକୁ ଆହରଣ କରିବେ । ପ୍ରଜାଗଣଙ୍କୁ ଦୀର୍ଘକାଳ ପୀଡ଼ନ କରି ବିଦ୍ୟୁତ୍ ସପାତ ପ୍ରାୟ, ସେମାନଙ୍କ ଉପରେ ପତିତ ହେବେ ନାହିଁ । ୪୪ ।

ଉଦ୍ୟୋଗଦ୍ୱାରା ବିଦ୍ୟା, ତପସ୍ୟା ଏବଂ ବିପୁଳ ବିତ୍ତ ହୋଇପାରେ, ସେହି ଉଦ୍ୟୋଗ ବୁଦ୍ଧିର ଆୟତ୍ତ ହୋଇ ଦେହବାନ୍ ବ୍ୟକ୍ତିଙ୍କଠାରେ ବସତି କରେ । ଅତଏବ ପ୍ରଭୂତ ଉଦ୍ୟୋଗ କରିବାପାଇଁ ସଯତ୍ନ ହେବା ଉଚିତ । ୪୫ । ଯାହାଙ୍କଠାରେ ମହାମନ୍ତ୍ର ମନସ୍ୱିଗଣ, ସୁରରାଜ, ବିଷ୍ଣୁ ଓ ସରସ୍ୱତୀ ସତତ ବସତି କରନ୍ତି ଏବଂ ଭୂତଗଣ ନିଯୁତ ଯାହାଙ୍କଠାରେ ଅବସ୍ଥିତ କରନ୍ତି, ବିଦ୍ୱାନ ବ୍ୟକ୍ତି ସେହି ଦେହକୁ କଦାପି ଅବଜ୍ଞା କରନ୍ତେ ନାହିଁ । ୪୬ ।

ଲୁବ୍ଧ ବ୍ୟକ୍ତିକୁ ନିୟତ ସମ୍ପ୍ରଦାନ ଦ୍ୱାରା ବଶୀଭୂତ କରିବ । ଲୁବ୍ଧ ପରଧନ ପ୍ରାପ୍ତ ହୋଇ କଦାପି ତୃପ୍ତ ହୁଏନାହିଁ । ସୁଖଭୋଗରେ ସମସ୍ତେ ଲୁବ୍ଧ ହୋଇଥାନ୍ତି । ଯେଉଁ ବ୍ୟକ୍ତି ଅର୍ଥହୀନ ହୁଅନ୍ତି, ସେ କାମ ଓ ଧର୍ମକୁ ପରିତ୍ୟାଗ କରନ୍ତି । ୪୭ । ଲୁବ୍ଧ ମାନବ ପରର ଧନ ଭୋଗ, ପୁତ୍ର, ପତ୍ନୀ ଓ ସମୃଦ୍ଧିମାନଙ୍କୁ ପ୍ରାର୍ଥନା କରେ । ଏହି ସଂସାରରେ ଲୁବ୍ଧ

ପୁରୁଷଠାରେ ସମସ୍ତ ଦୋଷ ସମ୍ଭବ ହୋଇପାରେ, ଅତଏବ ନୃପତି କଦାଚ ଲବ୍ଧ ବ୍ୟକ୍ତି ପ୍ରତି ସ୍ନେହ ପ୍ରକାଶ କରିବେ ନାହିଁ । ୪୮ । ଜଘନ୍ୟ ପୁରୁଷକୁ ଦର୍ଶନ ମାତ୍ରେ ତୁସ୍କାରିତ କରିବେ । ପ୍ରାଜ୍ଞ ପୁରୁଷ ବିପକ୍ଷମାନଙ୍କର ସମୁଦାୟ କାର୍ଯ୍ୟ ଓ ସମସ୍ତ ବିଷୟକୁ ବିନଷ୍ଟ କରିବେ ।୪୯।

ହେ ପାଣ୍ଡବ ! ବ୍ରାହ୍ମଣ ମଣ୍ଡଳୀ ମଧ୍ୟରେ ବିଜ୍ଞାନସମ୍ପନ୍ନ ମନ୍ତ୍ରୀଙ୍କୁ ରକ୍ଷା କରିବ । ଯେଉଁ ନୃପତି ବିଶ୍ୱସ୍ତ ଓ କୁଳୀନ ଅଟନ୍ତି, ସେ ସମସ୍ତ ବଶୀକରଣ କରିପାରନ୍ତି । ୫୦ । ହେ ନରନାଥ ! ଅମ୍ଭେ ବିଧିପ୍ରଯୁକ୍ତ ସମସ୍ତ ରାଜଧର୍ମ ସଂକ୍ଷେପରେ କୀର୍ତ୍ତନ କଲୁଁ । ତୁମ୍ଭେ ଏହାକୁ ଧୀଶକ୍ତି ଦ୍ୱାରା ଧାରଣା କର । ଯେଉଁ ନୃପତି ଗୁରୁଙ୍କ ଅନୁସରଣ କରି ଏହି ସମସ୍ତ ଧର୍ମକୁ ହୃଦୟରେ ଧାରଣ କରନ୍ତି, ସେ ପୃଥିବୀ ପାଳନ କରିବାରେ ସମର୍ଥ ହୁଅନ୍ତି । ୫୧ । ଯେଉଁ ନୃପତିଙ୍କର ଅନୀତିଜନିତ ହଠପ୍ରଣୀତ ଦୈବପ୍ରାପ୍ତ ସୁଖ ବିଧିବତ୍ ଦୃଷ୍ଟ ହୁଏ, ତାହାଙ୍କର ଗତି କିମ୍ବା ଅନୁତ୍ତମ ରାଜ୍ୟସୁଖ ଲବ୍ଧ ହୁଏ ନାହିଁ । ୫୨ । ସନ୍ଧି ବିଗ୍ରହାଦି ବିଷୟରେ ପ୍ରମତ୍ତ ମହୀପତି ବିଶିଷ୍ଟ ଧନଶାଳୀ, ବୁଦ୍ଧି ଓ ଶୀଳ ସମ୍ପନ୍ନ, ଯୁଦ୍ଧରେ ଦୃଷ୍ଟ ବିକ୍ରମ ଶତ୍ରୁ-ମାନଙ୍କୁ ଅବଲମ୍ବରେ ଅବଲୋକନ ପୂର୍ବକ ଲକ୍ଷ କରି ନିହତ କରନ୍ତି । ୫୩ ।

ବିବିଧ କ୍ରିୟାପଥ ଦ୍ୱାରା ଉପାୟ ଅବଲମ୍ବନ କରିବ । ଅନୁପାୟରେ ବୁଦ୍ଧି ନିବେଶ କରିବ ନାହିଁ । ନିର୍ଦ୍ଦୋଷ ବ୍ୟକ୍ତିମାନଙ୍କଠାରେ ଯେଉଁ ପୁରୁଷ ଦୋଷ ଦର୍ଶନ କରନ୍ତି ସେ ବିଶିଷ୍ଟ ଶ୍ରୀ ଏବଂ ବିପୁଳ ଯଶୋଧନକୁ ଭୋଗ କରି ପାରନ୍ତି ନାହିଁ । ୫୪ । ସୁହୃଦଗଣଙ୍କ ପ୍ରତି ଜ୍ଞାନପୂର୍ବକ ପ୍ରୀତିପୂର୍ବକ ହେଲେ ଯେଉଁ ସୁହୃଦଦ୍ୱୟ ଏକକାର୍ଯ୍ୟରେ ଅଭିମୁଖ ହୁଅନ୍ତି, ସେହି ଉଭୟଙ୍କର ମଧ୍ୟରେ ଯେଉଁ ବ୍ୟକ୍ତି ଗୁରୁତର ଭାର ବହନ କରନ୍ତି, ବିଦ୍ୱାନ ବ୍ୟକ୍ତି ସେହି ସ୍ନିଗ୍ଧ ମିତ୍ରଙ୍କ ପ୍ରଶଂସା କରନ୍ତି । ୫୫ । ମୁଦୁକ୍ତି ଏହିସବୁ ରାଜଧର୍ମ ଅଚରଣ କରି ମାନବଗଣଙ୍କର ପାଳନରେ ବୁଦ୍ଧି ନିବେଶ କର; ତାହାହେଲେ, ଅନାୟାସରେ ପୁଣ୍ୟଫଳ ପ୍ରାପ୍ତ ହେବ; କାରଣ ସମସ୍ତ ଲୋକଙ୍କର ରାଜଧର୍ମ ମୂଳ । ୫୬ ।

---

## ଅଧ୍ୟାୟ—୧୨୨

ଯୁଧିଷ୍ଠିର କହିଲେ—ପିତାମହଙ୍କ କର୍ତ୍ତୃକ ଏହି ସନାତନ ରାଜଧର୍ମ୍ମ କୀର୍ତ୍ତିତ ହେଲା । ସୁମହାନ୍ ଦଣ୍ଡ ସମସ୍ତଙ୍କର ନିୟନ୍ତା, କାରଣ ଦଣ୍ଡରେ ସମୁଦାୟ ବିଷୟ ପ୍ରତିଷ୍ଠିତ ରହିଅଛି । ୧ । ଦେବଗଣ, ଋଷିଗଣ, ମହାନୁଭାବ ପିତୃଗଣ, ଯକ୍ଷ, ରାକ୍ଷସ, ପିଶାଚଗଣ, ବିଶେଷତଃ ସାଧ୍ୟଗଣ ଏବଂ ତିର୍ଯ୍ୟକଯୋନି ପ୍ରଭୃତି ସମସ୍ତ ପ୍ରାଣିଙ୍କ ମଧ୍ୟରେ ସର୍ବବ୍ୟାପୀ ମହାତେଜାଦଣ୍ଡ ଶ୍ରେଷ୍ଠତର । ଏହା ଆପଣ କହିଅଛନ୍ତି, ମହାସ୍ତ୍ରର ମାନୁଷ ସହ ସଚରାଚର ସମସ୍ତ ଲୋକ ଦଣ୍ଡରେ ଆସକ୍ତ ରହି ଅଛନ୍ତି । ୪ ।

ଅତଏବ ହେ ଭରତର୍ଷଭ ! ଆମ୍ଭେ ଏହାକୁ ଯଥାର୍ଥ ରୂପରେ ଜାଣିବାର ଇଚ୍ଛା କରୁଅଛୁଁ, ଦଣ୍ଡ କାହାକୁ କହନ୍ତି ଓ ତାହା କି ପ୍ରକାର ? ତାହାର କୀଦୃଶ ଆକାର ଏବଂ ତାହାର ପରମ ଆଶ୍ରୟ ବା କଣ ? ଦଣ୍ଡର ସ୍ୱରୂପ କଣ ? ପ୍ରକାର କଣ ? କି ପ୍ରକାର ମୂର୍ତ୍ତି କିପରି ପ୍ରଭୁ ଏବଂ ଦଣ୍ଡ ପ୍ରଜାଗଣଙ୍କ ପ୍ରତି ଅବହିତ ହୋଇ କି ପ୍ରକାର ଜାଗରଣ କରେ ? । ୬ । କିଏ ଅବା ପୂର୍ବାପର ଏହି ଜଗତକୁ ପାଳନ କରି ଜାଗରିତ ଥାଏ ? ପ୍ରଥମତଃ କିଏ ବିଜ୍ଞାତ ହୁଏ ? ଏବଂ ଦଣ୍ଡ ନାମକ ଶ୍ରେଷ୍ଠ ବସ୍ତୁ ବା କଣ ? ଦଣ୍ଡର ଆକାର କି ପ୍ରକାର ? ଏବଂ ତାହାର ଗତି କାହାକୁ କହନ୍ତି ? । ୭ ।

ଭୀଷ୍ମ କହିଲେ—ହେ କୌରବ୍ୟ ! ଦଣ୍ଡ ଏବଂ ତାହାର ବ୍ୟବହାର ଯେଉଁପରି ତାହା ଶ୍ରବଣ କର । ଇହ ଲୋକରେ ଯଦ୍ଦ୍ୱାରା ସମୁଦାୟ ଆୟତ୍ତ ରହେ, ତାହାକୁ କେବଳ ଦଣ୍ଡ ବୋଲିଯାଏ ।୮। ହେ ମହାରାଜ ! ସମ୍ୟକ ପ୍ରକାରେ ଧର୍ମ୍ମର ପ୍ରକାଶ ବ୍ୟବହାର ନାମରେ ଅଭିହିତ ହୋଇଥାଏ । ଲୋକଙ୍କ ମଧ୍ୟରେ କି ପ୍ରକାର ଅବହିତ ସ୍ୱରୂପ ନୃପତିଙ୍କ ସମ୍ବନ୍ଧରେ ସେହି ଧର୍ମର ଲୋପ ନ ହୁଏ ? । ୯ । ଏହି ପ୍ରକାରେ ବ୍ୟବହାରର ବ୍ୟବହାରତ୍ୱ ଇଷ୍ଟ ହୁଏ, ଅବହାର ଅର୍ଥାତ ନୀଚ ମାର୍ଗ ଦ୍ୱାରା ପରଦ୍ରବ୍ୟାପହରଣ ଯହିଁରୁ ବାରିତ ହୁଏ, ତାହାକୁ ବ୍ୟବହାର ବୋଲିଯାଏ । ଅପିଚ ହେ ରାଜନ୍ ! ପୂର୍ବ କାଳରେ ମନୁ ଏହା କହି ଅଛନ୍ତି ଯେ, ପ୍ରିୟ ଅପ୍ରିୟ ବ୍ୟକ୍ତିମାନଙ୍କ ତୁଲ୍ୟରୂପ ସୁପ୍ରଣୀତ ଦଣ୍ଡଦ୍ୱାରା ଯେ ସମ୍ୟକ ପ୍ରଜାପାଳନ କରନ୍ତି, ତାହା କେବଳ ଧର୍ମ୍ମ ଅଟେ । ୧୧ ।

ହେ ନରେନ୍ଦ୍ର ! ଅମ୍ଭେ ଯେଉଁ ବ୍ରହ୍ମାଙ୍କର ଉକ୍ତ ସୁମହତ ବଚନ କହିଲୁଁ, ପୂର୍ବେ ପ୍ରଥମତଃ ମନୁ ସେହି ବଚନ କହିଥିଲେ । ପ୍ରଥମତଃ ଏହି ବଚନ ଉକ୍ତ ହୋଇଥିଲା । ଏହି ନିମିତ୍ତ ପଣ୍ଡିତମାନେ ଏହାକୁ ପ୍ରାଗ ବଚନ ବୋଲି କହନ୍ତି । ଯେଉଁ ଧର୍ମରୁ ପରସ୍ୱାପହରଣାଦି ଦୋଷ ନିରାକୃତ ହୁଏ, ସେହି ଧର୍ମ କଥନ ହେତୁରୁ ବ୍ୟବହାର କଥିତ ହୁଏ । ୧୩ । ସୁପ୍ରଣୀତ ଦଣ୍ଡରେ ଧର୍ମ ଅର୍ଥ ଓ କାମ ଏହି ତ୍ରିବର୍ଗ ସତତ ବିଦ୍ୟମାନ ଥାଏ । ଦୈବଦଣ୍ଡ ସର୍ବାପେକ୍ଷା ଶ୍ରେଷ୍ଠ ଅଟେ । ତାହାର ରୂପ ପ୍ରଜ୍ୱଳିତ ଅଗ୍ନି ସଦୃଶ । ୧୪ । ଦଣ୍ଡର ଅନ୍ତର ରୂପ ଦୁଷ୍ଟ-ସନ୍ତାପ ଜନକ, ସୁତରାଂ କ୍ରୂରତ୍ୱ ହେତୁ ଅଗ୍ନି ସାଦୃଶ୍ୟ ଧାରଣ କରେ । ଦଣ୍ଡର ବାହ୍ୟରୂପ ନୀଳପୋଲ ଦଳପ୍ରାପ୍ତ ଶ୍ୟାମବର୍ଣ୍ଣ, ଅର୍ଥାତ୍ ରାଜଦଣ୍ଡରେ ହେୟ ଧନ ଲୋଭାଦି ଥିବାରୁ ତହିଁରେ ମାଳିନ୍ୟ ଅଛି, ସୁତରାଂ ତାହା ଶ୍ୟାମବର୍ଣ୍ଣ ଅଟେ । କେହି ମାନ ଭଙ୍ଗ ପ୍ରଯୁକ୍ତ ଦଣ୍ଡାର୍ହ ହୁଏ, କେହି ଧନ ହରଣ ହେତୁ ଦଣ୍ଡିତ ହୋଇଥାଏ, କେହି ଅଙ୍ଗ ବୈକଲ୍ୟ ହେତୁରୁ ଦଣ୍ଡିତ ହୋଇଥାଏ, କେହିବା ପ୍ରାଣନାଶାଦି ନିମିତ୍ତ ଦଣ୍ଡଭାଗୀ ହୋଇଥାଏ । ଏହି କାରଣ ଚତୁଷ୍ଟୟ ହେତୁ ପ୍ରାଣିମାନଙ୍କର ବଧ ସାଧନ ହୋଇଥାଏ, ଅତଏବ ଦଣ୍ଡକୁ ଚତୁର୍ଦଂଷ୍ଟ୍ର ବୋଲାଯାଏ । ପ୍ରଜାଗଣଙ୍କ ଅର୍ଥ ଆଦାନ, ସାମନ୍ତମାନଙ୍କଠାରୁ କରଗ୍ରହଣ, ଅର୍ଥି ପ୍ରତ୍ୟର୍ଥିମାନଙ୍କଠାରୁ ଦ୍ୱିଗୁଣ ଧନ ଆହରଣ ଏବଂ କଦର୍ଯ୍ୟ ବିପ୍ରଠାରୁ ସର୍ବସ୍ୱ ଆଦାନ, ଏହି ଚତୁର୍ବିଧ ଅର୍ଥ, ଦଣ୍ଡଦ୍ୱାରା ଆହୃତ ହୁଏ, ଅତଏବ ଦଣ୍ଡ ଚତୁର୍ବିଧ ରୂପରେ ଉକ୍ତ ହୋଇଥାଏ । ଅର୍ଥି ପ୍ରତ୍ୟର୍ଥିଗଣଙ୍କର ଆବେଦନ ଓ ଉତ୍ତର ପ୍ରଦାନ ପ୍ରଭୃତି ଅଷ୍ଟବିଧ କାରଣରେ ଦଣ୍ଡ ବିଚରଣ କରେ । ଏହି ନିମିତ୍ତ ଦଣ୍ଡ ଅଷ୍ଟ ପାଦ ଅଟେ ।

ରାଜା, ଅମାତ୍ୟ, ପୁରୋହିତ ପ୍ରଭୃତି ଅନେକଙ୍କ ଦର୍ଶନ ସାଧନ ଥିବାରୁ, ଅନେକ ନୟନ, ଅବଶ୍ୟ ଶ୍ରାବ୍ୟ, ଏହି ନିମିତ୍ତ ଶଙ୍କୁ କର୍ଣ୍ଣ ଅର୍ଥାତ୍ ତୀକ୍ଷ୍ଣ ଶ୍ରବଣ ଅତଏବ ଉତ୍ଫୁଲ୍ଲ, ଏହି ନିମିତ୍ତ ଊର୍ଦ୍ଧ୍ୱ ରୋମବାନ୍, ଅନେକ ସନ୍ଦେହ ଜଟିଳ, ଏହି ନିମିତ୍ତ ଜଟୀ, ଅର୍ଥି ପ୍ରତ୍ୟର୍ଥିଙ୍କର ବାକ୍ୟ ବିବେଚନା ନିମିତ୍ତ ଦ୍ୱିଜିହ୍ୱ, ଆତ୍ମଜୀଵୃ ବହ୍ନିଦଣ୍ଡର ଆନନ, ଏହି ନିମିତ୍ତ ତାମ୍ରମୁଖ, କୃଷ୍ଣସାର ମୃଗ ଚର୍ମ ଦ୍ୱାରା ଦଣ୍ଡର ଶରୀର ଆବୃତ ଥାଏ, ଏହି ନିମିତ୍ତ ମୃଗରାଜ ତନୁଚ୍ଛଦ ଏହି ନାମ ଦଣ୍ଡର ହୋଇଅଛି । ଦୁର୍ଦ୍ଧର୍ଷ ଦଣ୍ଡ ନିମିତ୍ତ

ଏହି ଉଗ୍ରରୂପକୁ ଧାରଣ କରିଥାଏ । ୧୭ । ଅସି, ଧନୁ, ଗଦା, ଶକ୍ତି, ତ୍ରିଶୂଳ, ମୁଦ୍‌ଗର, ଶର ସମୂହ, ମୂଷଳ, ଟଙ୍କ, ପାଶ, ଦଣ୍ଡ, ଋଷ୍ଟି ଓ ତୋମର ପ୍ରଭୃତି ଇହଲୋକରେ ଯେଉଁସବୁ ପ୍ରହରଣ ଅଛି, ଦଣ୍ଡ ସେହି ସର୍ବାତ୍ମ ସ୍ୱରୂପରେ, ମୂର୍ତ୍ତିମାନ ହୋଇ ବିଚରଣ କରନ୍ତି । ୧୮ । ଛେଦ,ଭେଦ, ଛିଦ୍ରଣ କରଣ, କୃନ୍ତନ, ବିଦାରଣ, ବିପାଟନ, ଘାତନ ଓ ଅଭିମୁଖରେ ଧାବନ କରି ଦଣ୍ଡ ବିଚରଣ କରିଥାଏ । ୧୯ । ଅସି, ବିଶସନ ଧର୍ମ, ତୀକ୍ଷ୍ଣ ଧର୍ମା ଦୁରାଧର, ଶ୍ରୀଗର୍ଭ, ବିଜୟ, ଶାନ୍ତ ବ୍ୟବହାର, ସନାତନ ଶାସ୍ତ୍ର, ବ୍ରାହ୍ମଣ ମନ୍ତ୍ର, ଶାସ୍ତା, ବାଗ୍ମିଶ୍ରେଷ୍ଠ, ଧର୍ମପାଳ, ଅକ୍ଷର, ଦେବ, ସତ୍ୟଗନତ୍ୟଗ, ଅଗ୍ରଜ, ଅସଙ୍ଗ, ରୁଦ୍ରତନୟ, ମନୁ, ଜ୍ୟେଷ୍ଠ ଓ ଶିବଙ୍କର ଦଣ୍ଡର ଏହି ସମସ୍ତ ନାମ କୀର୍ତ୍ତିତ ହେଲା ।

ହେ ଯୁଧିଷ୍ଠିର । ଦଣ୍ଡ ଭଗବାନ୍ ବିଷ୍ଣୁ ଅଟନ୍ତି । ଦଣ୍ଡ ପ୍ରଭୁ ନାରାୟଣ ଅଟନ୍ତି । ଦଣ୍ଡ ନିରନ୍ତର ମହତ୍ ରୂପ ଧାରଣ କରିଥାନ୍ତି, ଏହି ନିମିତ୍ତ ଦଣ୍ଡ ମହାପୁରୁଷ ବୋଲି ଉକ୍ତ ହୁଅନ୍ତି । ୨୩ । ବ୍ରହ୍ମକନ୍ୟା ଲକ୍ଷ୍ମୀ, ବୃତ୍ତି, ସରସ୍ୱତୀ, ଜଗଦ୍ଧାତ୍ରୀ, ଦଣ୍ଡନୀତି ଅର୍ଥାତ୍ ଦଣ୍ଡସହିତ ନୀତି ଏହି ସମୁଦାୟ ଦଣ୍ଡ ସ୍ୱରୂପ । ଅତଏବ ଦଣ୍ଡର ବିଗ୍ରହ ବହୁବିଧ । ୨୪ ।

ହେ ଭାରତ । ଅର୍ଥ, ଅନର୍ଥ, ସୁଖ, ଦୁଃଖ, ଧର୍ମ୍ମା ଧର୍ମ୍ମ, ବଳାବଳ, ଦୌର୍ଭାଗ୍ୟ, ଭାଗଧେୟ, ପୁଣ୍ୟାପୁଣ୍ୟ, ଗୁଣାଗୁଣ, କାମ ଅକାମ, ଋତୁ, ମାସ, ଦିବା, ରାତ୍ରି,କ୍ଷଣ, ଅପ୍ରମାଦ, ପ୍ରମାଦ, ହର୍ଷ, କ୍ରୋଧ, ଶମ, ଦୈବ, ପୁରୁଷକାର, ମୋକ୍ଷାମୋକ୍ଷ, ଭୟାଭୟ, ହିଂସା, ଅହିଂସା, ତପସ୍ୟା, ଯଜ୍ଞ, ସଂଯମ, ବିଷ, ଅବିଷ, ଅନ୍ତ, ଆଦି, ମଧ୍ୟ, କୃତ, ସମସ୍ତଙ୍କର ପ୍ରପଞ୍ଚନ, ମଦ, ପ୍ରମାଦ, ଦର୍ପ, ଦମ୍ଭ, ଧୈର୍ଯ୍ୟ, ନୀତି, ଅନୀତି, ଶକ୍ତି, ଅଶକ୍ତି, ମାନ, ସ୍ତମ୍ଭ, ବ୍ୟୟ, ଅବ୍ୟୟ, ବିନୟ, ବିସର୍ଗ, କାଳ, ଅକାଳ, ମିଥ୍ୟା, ଜ୍ଞାନିତା, ସତ୍ୟ, ଶ୍ରଦ୍ଧା, ଅଶ୍ରଦ୍ଧା, କ୍ଳୀବତା, ବ୍ୟବସାୟ, ଲଭ, ଅଲଭ, ଜୟ, ପରାଜୟ, ତୀକ୍ଷ୍ଣତା, ମୃଦୁତା, ମୃତ୍ୟୁ, ଆଗମ, ଅନାଗମ, ବିରୋଧ, ଅବିରୋଧ, କାର୍ଯ୍ୟ, ଅକାର୍ଯ୍ୟ, ବଳାବଳ, ଅସୂୟା, ଅନସୂୟା, ଧର୍ମାଧର୍ମ, ଅପତ୍ରପ, ଅନପତ୍ରପ, ହ୍ରୀ, ସମ୍ପଦ, ବିପଦ, ପଦ, ତେଜ, କର୍ମ୍ମ ସମୁଦାୟ, ପାଣ୍ଡିତ୍ୟ, ବାକ୍‌ଶକ୍ତି, ତତ୍ତ୍ୱ ଓ ବୁଦ୍ଧିତା ହେ କୌରବ୍ୟ । ଏତାଦୃଶ ପ୍ରକାରେ ଦଣ୍ଡର ବହୁ ରୂପତା ହୁଏ । ୩୩ । ଲୋକ ମଧ୍ୟରେ ଯଦି ଦଣ୍ଡ ନଥାଏ, ତାହେଲେ ପରସ୍ପର ପରସ୍ପରକୁ ପ୍ରମଥନ କରେ ।

ହେ ଯୁଧିଷ୍ଠିର । ଦଣ୍ଡ ଭୟରେ ଲୋକେ ପରସ୍ପର ପରସ୍ପରକୁ ପ୍ରହାର କରନ୍ତି ନାହିଁ । ୩୪ । ଦଣ୍ଡକର୍ତ୍ତୃକ ରକ୍ଷ୍ୟମାଣ ପ୍ରଜାମାନେ ଅହରହ ରାଜାଙ୍କୁ ବର୍ଦ୍ଧିତ କରନ୍ତି, ଅତଏବ ଦଣ୍ଡହିଁ ପରମ ଆଶ୍ରୟ ଅଟେ । ୩୫ । ହେ ନରେଶ୍ୱର । ସତ୍ୟ ବ୍ୟବସ୍ଥିତ ଧର୍ମ୍ମ ଅବଲମ୍ବରେ ଏହି ଲୋକମାନଙ୍କୁ ଅବସ୍ଥାପିତ କରେ । ସତ୍ୟ ପଞ୍ଚଯାଜୀ ଧର୍ମ୍ମ ବ୍ରାହ୍ମଣ ମୂର୍ତ୍ତି ସ୍ୱରୂପ ଅଟେ । ୩୬ । ଧର୍ମ୍ମଯୁକ୍ତ ଦ୍ୱିଜବରମାନେ ବେଦଜ୍ଞ ହୋଇଥାନ୍ତି । ବେଦମାନଙ୍କରୁ ଯଜ୍ଞ ହୋଇଅଛି । ଯଜ୍ଞ ଦେବତାମାନଙ୍କୁ ପ୍ରୀତିଯୁକ୍ତ କରଥାଏ । ଦେବଗଣ ପ୍ରୀତ ହୋଇ ନିୟତ ଇନ୍ଦ୍ରଙ୍କୁ ସ୍ତୁତ କରନ୍ତି । ଇନ୍ଦ୍ରମଧ୍ୟ ଏହି ସମୁଦାୟ ପ୍ରଜାଗଣଙ୍କୁ ଅନୁଗ୍ରହ କରି ଅନ୍ନଦାନ କରନ୍ତି । ୩୮ । ସମସ୍ତ ଭୂତ୍ୟଗଣଙ୍କର ପ୍ରାଣ ନିତ୍ୟ ଅନ୍ନରେ ପ୍ରତିଷ୍ଠିତ ରହିଅଛି । ଅତଏବ ପ୍ରଜାଗଣ ମଧ୍ୟ ଅନ୍ନ ମଧ୍ୟରେ ପ୍ରତିଷ୍ଠିତ ଅଛନ୍ତି ଏବଂ ଦଣ୍ଡ ସେହି ପ୍ରଜାଗଣଙ୍କ ପ୍ରତି ଜାଗରିତ ରହି ଅଛନ୍ତି । ୩୯ । ଏହିପରି ପ୍ରୟୋଜନାନୁସାରେ ଦଣ୍ଡ କ୍ଷତ୍ରିୟତ୍ୱକୁ ପ୍ରାପ୍ତ ହୋଇ ଅଛନ୍ତି । ଦଣ୍ଡ ନିୟତ ଅବହିତ ଓ ଅକ୍ଷୟ ହୋଇ ପ୍ରଜାଗଣଙ୍କୁ ରକ୍ଷାପୂର୍ବକ ଜାଗରିତ ଥାନ୍ତି । ୪୦ । ଈଶ୍ୱର, ପୁରୁଷ ପ୍ରାଣ, ସତ୍ତ୍ୱ, ଚିତ୍ତ, ପ୍ରଜାପତି, ଭୂତାତ୍ମା ଓ ଜୀବ ଏହି ଅଷ୍ଟନାମ ଦ୍ୱାରା ଦଣ୍ଡ ଉକ୍ତ ହୋଇଥାନ୍ତି । ୪୧ । ଯେଉଁ ନୃପତି ବଳସମନ୍ୱିତ ଏବଂ ଧର୍ମ୍ମ, ବ୍ୟବହାର, ଦଣ୍ଡ, ଈଶ୍ୱର ଓ ଜୀବରୂପ ଏହି ପଞ୍ଚପ୍ରକାରାତ୍ମକ ଅଟନ୍ତି । ଈଶ୍ୱର ତାହାଙ୍କୁ ଦଣ୍ଡ ଏବଂ ଐଶ୍ୱର୍ଯ୍ୟ ଦାନ କରି ଅଛନ୍ତି । ୪୨ ।

ହେ ଯୁଧିଷ୍ଠିର । ସଦ୍‌ବଂଶସମ୍ଭୂତ ପ୍ରଭୂତ ଧନଶାଳୀ ଅମାତ୍ୟ, ପ୍ରଜ୍ଞା, ଓଜସ୍ୱିତା, ତେଜ ଓ ଦେହେନ୍ଦ୍ରିୟ ବୁଦ୍ଧି ସାମର୍ଥ୍ୟ ଏବଂ ନିମ୍ନଲିଖିତ ଶ୍ଲୋକରେ ବକ୍ଷ୍ୟମାଣ ହସ୍ତୀ ପ୍ରଭୃତି ଅହାର୍ଯ୍ୟ ବଳସବୁ, ନୃପତିଙ୍କର ଧନାଗାର ଉପଚୟର କାରଣ ଅଟନ୍ତି । ୪୩ । ହସ୍ତୀ, ଅଶ୍ୱ, ରଥ, ପଦାତି, ନୌକା, ଅବୈତନିକ ଭାରବାହ, ଦେଶ ବିଦେଶ ସମ୍ଭୂତ ବସ୍ତୁ ଓ ମେଷ ଲୋମାଦି ଜନିତ ଆସନାଦି ରାଜାମାନଙ୍କର ଅଷ୍ଟାଙ୍ଗ ବଳ ରୂପରେ ସ୍ତୁତ ହୋଇ ଅଛନ୍ତି । ୪୪ । ଅଥବା ରଥାରୋହୀ, ଗଜାରୋହୀ, ଅଶ୍ୱାରୋହି, ପଦାତି, ମନ୍ତ୍ରୀ, ଚିକିତ୍ସକ, ଭିକ୍ଷୁକ, ପ୍ରାଡ୍‌ବିବାକ୍, ଜୋତିଷିକ, ଦୈବଚିନ୍ତକ, କୋଷ, ମିତ୍ର, ଧାନ୍ୟ, ସମସ୍ତ ଉପକରଣ ଓ ସପ୍ତପ୍ରକୃତି, ଏହି ସମସ୍ତ ରାଜ୍ୟର ଅଷ୍ଟାଙ୍ଗଯୁକ୍ତ ଶରୀର ରୂପରେ ଜ୍ଞାତ ହୁଅନ୍ତି । କିନ୍ତୁ ଦଣ୍ଡ ରାଜ୍ୟର ଅଙ୍ଗ ଓ ରାଜ୍ୟର କାରଣ ଅଟେ । ୪୬ । ଈଶ୍ୱରଙ୍କ କର୍ତ୍ତୃକ ପ୍ରଯତ୍ନ ସହକାରେ କ୍ଷତ୍ରିୟର କାରଣ ଏହି ଦଣ୍ଡ ପ୍ରଦତ୍ତ ହୋଇଅଛି ।

ପ୍ରିୟାପ୍ରିୟ ସମସ୍ତ ଲୋକେ ସମସ୍ୱରୂପ ଦଣ୍ଡର ଅଧୀନ ଅଟନ୍ତି । ୪୮ । ପ୍ରଜାପତିଙ୍କ କର୍ତ୍ତୃକ ଲୋକରକ୍ଷାର୍ଥ ଏବଂ ସ୍ୱଧର୍ମ ସ୍ଥାପନ ନିମିତ୍ତ ଯେଉଁପରି ଧର୍ମ ପ୍ରଦର୍ଶିତ ହୋଇଅଛି, ସେହି ଧର୍ମ ସ୍ୱରୂପ ଦଣ୍ଡ ଅପେକ୍ଷା ନୃପତି-ମାନଙ୍କର ଅନ୍ୟ କେହି ପ୍ରିୟତମ ନୁହନ୍ତି । ୪୯ । ପ୍ରତ୍ୟୟବଶତଃ ଉତ୍ପନ୍ନ ଏବଂ ବାଦୀ ପ୍ରତିବାଦୀ ଦ୍ୱାରା ପ୍ରବର୍ତ୍ତିତ ବ୍ୟବହାର, ଏହି ଅନ୍ୟତରର ଅଭ୍ୟୁପଗମ ଯାହାର ଲକ୍ଷଣ ହିତଯୁକ୍ତ ଦେଖାଯାଏ, ସେହି ଦଣ୍ଡକୁ ଭର୍ତ୍ତୃପ୍ରତ୍ୟୟ ଲକ୍ଷଣ ବୋଲାଯାଏ । ୫୦ ।

ହେ ନରଶାର୍ଦ୍ଦୂଳ ! ପରଦାରଗମନାଦିଜନିତ ଦୋଷର ନିବୃତ୍ତି ନିମିତ୍ତ ପ୍ରାୟଶ୍ଚିତ ପ୍ରଭୃତି ଦଣ୍ଡ, ବେଦାତ୍ମା ଓ ବେଦପ୍ରତ୍ୟୟ ନାମରେ ଉକ୍ତ ହୁଏ ଏବଂ କୁଳଗୁରୁ ପ୍ରଯୁକ୍ତ ବ୍ୟବହାରକୁ ମୌନ କୁହାଯାଏ ଓ ଅପର ଦଣ୍ଡ ଶାସ୍ତ୍ରୋକ୍ତ ନାମରେ ଅଭିହିତ ହୁଏ । ୫୧ । ସେହି ତ୍ରିବିଧ ଦଣ୍ଡ ମଧ୍ୟରେ ପ୍ରଥମ ଦଣ୍ଡ କ୍ଷତ୍ରିୟାଧୀନ ଅଟେ । କ୍ଷତ୍ରିୟମାନଙ୍କର ଦଣ୍ଡ ଜ୍ଞାନ ଥିବା ଅବଶ୍ୟ ବିଧେୟ । ନରେନ୍ଦ୍ରନିଷ୍ଠ ପ୍ରତ୍ୟୟ ଲକ୍ଷଣ ଦଣ୍ଡ କ୍ଷତ୍ରିୟମାନଙ୍କର ଜ୍ଞେୟ । ୫୨ । ଅତି ପରପକ୍ଷ କ୍ଷେପଣ ଓ ସ୍ୱପକ୍ଷ ସାଧନ ରୂପ ବ୍ୟବହାର ଦଣ୍ଡ ପ୍ରତ୍ୟୟ ଦୃଷ୍ଟ ଅଟେ ଓ ମନୁ ପ୍ରଭୃତି ମହର୍ଷିଗଣଙ୍କ କର୍ତ୍ତୃକ ସ୍ମୃତ ହେଲେ ମଧ୍ୟ ତାହା ବେଦାର୍ଥ ଗୋଚର ହୋଇଅଛି । ୫୩ । ଅପର ବ୍ୟବହାର ଦୁହେଁ ଧର୍ମମୂଳକ । ବେଦପ୍ରସୂତ ଧର୍ମ ଗୁଣଦର୍ଶୀ ଅଟେ । କୃତାତ୍ମା ମୁନିଗଣଙ୍କ କର୍ତ୍ତୃକ ଧର୍ମାନୁସାରେ ଧର୍ମ ପ୍ରତ୍ୟୟ ନିର୍ଦ୍ଦିଷ୍ଟ ହୋଇଅଛି । ୫୪ ।

ହେ ଯୁଧିଷ୍ଠିର ! ବ୍ରହ୍ମୋପଦିଷ୍ଟ ବ୍ୟବହାର ପ୍ରଜାଗଣଙ୍କୁ ରକ୍ଷା କରେ; ସତ୍ୟସ୍ୱରୂପ ଭୂତି ବର୍ଦ୍ଧନ ବ୍ୟବହାର ଲୋକତ୍ରୟକୁ ଧାରଣ କରି ରହିଅଛି । ୫୫ । ଯେ ଦଣ୍ଡ ନାମରେ ଅଭିହିତ ହୁଅନ୍ତି, ତାହାଙ୍କୁ ସନାତନ ବ୍ୟବହାର ରୂପରେ ଅବଲୋକନ କରାଯାଏ । ବ୍ୟବହାର କର୍ତ୍ତୃକ ଯେ ଦୃଷ୍ଟ ହୁଅନ୍ତି, ସେ ବେଦ ଅଟନ୍ତି । ଏହା ନିଷ୍ଟୟ ହୋଇଅଛି । ୫୬ । ଯେ ବେଦ, ସେହି ଧର୍ମ ଏବଂ ଯାହା ଧର୍ମ ତାହାହିଁ ସତ୍ପଥ ଅଟେ । ପୂର୍ବ କାଳରେ ପିତାମହ ବ୍ରହ୍ମା, ପ୍ରଜାପତି ହୋଇଥିଲେ । ୫୭ । ସେ ସୁର, ଅସୁର, ରାକ୍ଷସ, ମାନୁଷ ଓ ଉରଗସହ ସମସ୍ତ ଲୋକଙ୍କର ସର୍ଜନାକର୍ତ୍ତା ଅଟନ୍ତି । ଏହି ନିମିତ୍ତ ସେ ଭୂତକର୍ତ୍ତା ନାମରେ ଅଭିହିତ ହୁଅନ୍ତି । ୫୮ । ସେହି ପ୍ରଜାପତିଙ୍କ ଠାରୁ ଏହି ଭର୍ତ୍ତୃ ପ୍ରତ୍ୟୟ ଲକ୍ଷଣ ବ୍ୟବହାର ପ୍ରବର୍ତ୍ତିତ

ହୋଇଥିଲ । ସେ ଏହି ବ୍ୟବହାରର ନିଦର୍ଶନ କହି ଅଛନ୍ତି ଯେ, ଯେଉଁ ନୃପତି ସ୍ୱଧର୍ମ ଦ୍ୱାରା ପ୍ରଜାପାଳନ ପୂର୍ବକ ଅବସ୍ଥାନ କରନ୍ତି, ତାଙ୍କ ପକ୍ଷରେ ତାହାଙ୍କର ମାତା, ପିତା, ଭାର୍ଯ୍ୟା ଓ ପୁରୋହିତ ଏମାନେ କେହି ଅଦଣ୍ଡ୍ୟ ନୁହନ୍ତି । ୭୦ ।

## ଅଧ୍ୟାୟ—୧୨୨

ଭୀଷ୍ମ କହିଲେ—ପଣ୍ଡିତମାନେ ଏହି ଦଣ୍ଡୋତ୍ପତ୍ତି ବିଷୟରେ ଗୋଟିଏ ପୁରାତନ ଇତିହାସ ଉଦାହରଣ ଦିଅନ୍ତି । ଅଙ୍ଗ ଦେଶରେ ବସୁ ହୋମ ନାମରେ ଜଣେ ବିଖ୍ୟାତ ଦ୍ୟୁତିମାନ ନରପତି ଥିଲେ । ସେହି ମହାତ୍ମା ନିତ୍ୟ ଧର୍ମଜ୍ଞ ନରପତି ପତ୍ନୀ ସହିତ ପିତୃଗଣ ଓ ଦେବର୍ଷି-ଗଣ ପୂଜିତ ମୁଞ୍ଜ ପୃଷ୍ଠକୁ ଗମନ କରିଥିଲେ । ୨ ।

ହେ ରାଜେନ୍ଦ୍ର । ସୁବର୍ଣ୍ଣମୟ ସୁମେରୁ ସନ୍ନିହିତ ସେହି ହିମାଳୟର ଶୃଙ୍ଗ, ଯେଉଁ ମୁଞ୍ଜାଟରେ ରାମ ଜଟା ହରଣ କରିଥିଲେ, ତଦବଧି ସଂଶିତବ୍ରତ ଋଷିଗଣ, ସେହି ରୁଦ୍ର ସେବିତ ପ୍ରଦେଶକୁ ମୁଞ୍ଜପୃଷ୍ଠ ବୋଲି କହନ୍ତି । ସେତେବେଳେ ଶ୍ରୁତିମୟ ବହୁଗୁଣଯୁକ୍ତ ହୋଇ ବ୍ରାହ୍ମଣମାନଙ୍କର ଅନୁମତ ଏବଂ ଦେବର୍ଷି ସଦୃଶ ହୋଇଥିଲେ । ୫ । କୌଣସି ସମୟରେ ଯେଙ୍କର ସମ୍ମାନିତ ସଖା ଅମିତ୍ରକର୍ଷଣ ଶତ୍ରୁକର୍ଷଣ ମହୀପାଳ ମାନ୍ଧାତା ତାହାଙ୍କ ନିକଟକୁ ଆଗମନ କଲେ । ୬ ।

ମାନ୍ଧାତା ନରପତି ବସୁହୋମଙ୍କୁ ପ୍ରକୃଷ୍ଟ ତପଃସମ୍ପନ୍ନ ଦର୍ଶନ କରି ବିନତ ହୋଇ ତାହାଙ୍କ ଅଭିମୁଖରେ ଅବସ୍ଥାନ କଲେ । ୭ । ବସୁହୋମ ମଧ୍ୟ ରାଜା ମାନ୍ଧାତାଙ୍କୁ ପାଦ୍ୟ ଅର୍ଘ୍ୟ ନିବେଦନ କଲେ ଏବଂ ସପ୍ତାଙ୍ଗ ରାଜ୍ୟର ମଙ୍ଗଳାମଙ୍ଗଳ ଜିଜ୍ଞାସା କଲେ । ୮ । ପୂର୍ବକାଳରେ ସାଧୁମାନଙ୍କ ଆଚରଣର ଯଥାବତ୍ ଅନୁଯାୟୀ ସେହି ମାନ୍ଧାତାଙ୍କୁ ବସୁହୋମ ପ୍ରଶ୍ନ କଲେ —ହେ ରାଜନ୍ । ଅମ୍ଭେ ଆପଣଙ୍କର କଣ କରିବୁ ? ୯ ।

ହେ କୁରୁନନ୍ଦନ । ରାଜସତ୍ତମ ମାନ୍ଧାତା ପରମ ପ୍ରୀତ ହୋଇ ସମାସୀନ ମହାପ୍ରାଜ୍ଞ ବସୁହୋମଙ୍କୁ କହିଲେ । ୧୨ । ମାନ୍ଧାତା କହିଲେ— ହେ ନରସତ୍ତମ ମହାରାଜ । ଆପଣ ବୃହସ୍ପତିଙ୍କର ସମସ୍ତ ମତ ଅଧ୍ୟୟନ କରିଅଛନ୍ତି ଏବଂ ଶୁକ୍ରାଚାର୍ଯ୍ୟଙ୍କର ସମସ୍ତ ଶାସ୍ତ୍ର ବିଜ୍ଞାତ ହୋଇ ଅଛନ୍ତି ।

ଅତଏବ ଦଣ୍ଡ କି ପ୍ରକାରେ ଉତ୍ପନ୍ନ ହୁଏ, ଅମ୍ଭେ ତାହା ଜାଣିବାକୁ ଅଭିଳାଷ କରୁଅଛୁଁ । ଏହି ଦଣ୍ଡର ପୂର୍ବେ କଣ ଜାଗରିତ ଥାଏ, ଏବଂ କଣ ଶ୍ରେଷ୍ଠ ବୋଲି ଉକ୍ତ ହୁଏ ? ୧୨ । ସମ୍ପ୍ରତି ଦଣ୍ଡ କି ପ୍ରକାରେ କ୍ଷତ୍ରିୟ-ସଂସ୍ଥ ହୋଇ ଅବସ୍ଥିତ ରହିଅଛି ? ହେ ମହାପ୍ରାଜ୍ଞ ! ଆପଣ ଅମ୍ଭଙ୍କୁ ଏହା କହନ୍ତୁ । ଅମ୍ଭେ ଆପଣଙ୍କର ବେତନ ପ୍ରଦାନ କରିବୁଁ । ୧୩ ।

ବାସୁହୋମ କହିଲେ—ହେ ରାଜନ୍ ! ପ୍ରଜାଗଣଙ୍କର ବିନୟ-ରକ୍ଷାର୍ଥ ଧର୍ମ ସ୍ୱରୂପ ସନାତନ ଲୋକ ସଂଗ୍ରହ ସକ୍ଷମ ଦଣ୍ଡ ଯେଉଁପରି ସମ୍ଭୂତ ହୋଇଅଛି, ତାହା ଶ୍ରବଣ କରନ୍ତୁ । ୧୪ । ସର୍ବଲୋକ ପିତାମହ ଭଗବାନ ବ୍ରହ୍ମା ଯଜ୍ଞ କରିବାର କାମନା କରି ଅନୁରୂପ ଋତ୍ୱିକ ଦେଖିବାକୁ ପାଇଲେ ନାହିଁ, ଏହା ଅମ୍ଭେମାନେ ଶୁଣିଅଛୁଁ । ୧୫ । ସେହି ଦେବ ପ୍ରଜାପତି ମସ୍ତକ ଦ୍ୱାରା ବହୁବର୍ଷକାଳ ଗର୍ଭଧାରଣ କରିଥିଲେ । ସହସ୍ର ବର୍ଷ ପୂର୍ଣ୍ଣ ହୁଅନ୍ତେ, ତାହାଙ୍କର କ୍ଷୁତ ହେବାକାଳରେ ସେହି ଗର୍ଭ ପତିତ ହେଲା । ୧୬ ।

ହେ ଅରିନ୍ଦମ ! ସେହି ଗର୍ଭସମ୍ଭୂତ ସନ୍ତାନ କ୍ଷୁପନାମକ ପ୍ରଜାପତି ହେଲେ । ହେ ମହାରାଜ ! ମହାନୁଭବ ବ୍ରହ୍ମାଙ୍କ ଯଜ୍ଞରେ ସେ ଋତ୍ୱିକ ହୋଇଥିଲେ । ୧୭ । ହେ ନୃପବର ! ପ୍ରଜାପତିଙ୍କର ସବ ଆରମ୍ଭ ହେବାରୁ ଦୃଷ୍ଟ ରୂପର ପ୍ରାଧାନ୍ୟ ହେତୁ ସେହି ଦଣ୍ଡ ଅନ୍ତର୍ହିତ ହେଲା । ୧୮ । ଦଣ୍ଡ, ଅନ୍ତର୍ହିତ ହୁଅନ୍ତେ ପ୍ରଜାସଙ୍କର ହେବାକୁ ଆରମ୍ଭ ହେଲା । କାର୍ଯ୍ୟାକାର୍ଯ୍ୟ ଓ ଭୋଜ୍ୟାଭୋଜ୍ୟ କିଛି ବିଚାର ରହିଲା ନାହିଁ । ସୁତରାଂ ପ୍ରେୟ କିମ୍ବା ଅପ୍ରିୟ ବିଷୟରେ ବିବେଚନା ରହିବ କାହିଁକି ? ତତ୍କାଳରେ ଗମ୍ୟ କିମ୍ବା ଅଗମ୍ୟ କିଛି ଥିଲା ନାହିଁ । ଆତ୍ମଧନ ଓ ପରଧନ ଉଭୟ ସମାନ ହେଲା । ସାରମେୟଗଣ ଯେପରି ଆମିଷ ଆହରଣ କରନ୍ତି, ତଦ୍ରୂପ ସମସ୍ତେ, ପରସ୍ପର ପରସ୍ପରର ଧନ ହରଣ କରିବାରେ ପ୍ରବୃତ୍ତ ହେଲେ । ବଳବାନ୍ ମାନେ ଦୁର୍ବଳମାନଙ୍କୁ ହନନ କରିବାରେ ପ୍ରବୃତ୍ତ ହେଲେ, ସମସ୍ତେ ମର୍ଯ୍ୟାଦା ଶୂନ୍ୟ ହୋଇ ପଡ଼ିଲେ । ୨୧ ।

ଅନନ୍ତର ପିତାମହ ବ୍ରହ୍ମା, ସନାତନ ବରଦ ଦେବ ଭଗବାନ ମହାଦେବ ବିଷ୍ଣୁଙ୍କୁ ସମ୍ୟକ ପ୍ରକାରେ ପୂଜା କରି କହିଲେ—ହେ କେଶବ ! ଏ ବିଷୟରେ ଆପଣଙ୍କର ଅନୁକମ୍ପା କରିବା ଉଚିତ ହେଉଅଛି, ଯଦ୍ଦ୍ୱାରା ପ୍ରଜା ସଙ୍କର ନ ହେବ, ଆପଣ ତାଦୃଶ ବିଧାନ କରନ୍ତୁ । ୨୩ ।

ଅନନ୍ତର ଦେବସତ୍ତମ ସେହି ଶୂଳବରାୟୁଧ ଭଗବାନ୍ ବହୁକ୍ଷଣ ଚିନ୍ତାକରି ନିଜେ ନିଜକୁ ଦଣ୍ଡରୂପରେ ସୃଜନ କଲେ, ତହିଁରୁ ଧର୍ମାଚରଣ ହେତୁ ନୀତିରୂପା ସରସ୍ୱତୀ ଦେବୀ ତ୍ରିଲୋକବିଶ୍ରୁତା ଦଣ୍ଡନୀତି ଉତ୍ପାଦନ କଲେ । ୨୫ । ଶୂଳଧାରୀ ଭଗବାନ ପୁନର୍ବାର ବହୁକ୍ଷଣ ଧ୍ୟାନକରି ସେହି ସେହି ଦଣ୍ଡ କାଳର ଜଣେ ଜଣେ ଅଧୀଶ୍ୱର କରିଦେଲେ । ୨୬ । ସହସ୍ର ଲୋଚନ ଦେବରାଜଙ୍କୁ ଦେବଗଣଙ୍କର ଈଶ୍ୱର କଲେ । ବୈବସ୍ୱତ ଯମଙ୍କ ପ୍ରତି ପିତୃଗଣଙ୍କର ପ୍ରଭୁତ୍ୱ ଦେଲେ । ଧନ ଓ ରାକ୍ଷସମାନଙ୍କୁ ସ୍ୱାୟତ୍ତରେ ରଖିବା ନିମିତ୍ତ କୁବେରଙ୍କ ପ୍ରତି ଭାରାର୍ପଣ କଲେ । ସୁମେରୁକୁ ଶୈଳପତି ଓ ସମୁଦ୍ରକୁ ସରିତ୍ପତି କଲେ । ୨୮ । ସଲିଳରେ ଓ ଅସୁରଗଣଙ୍କ ରାଜ୍ୟରେ ବରୁଣଙ୍କୁ ପ୍ରଭୁତ୍ୱ କରିବାର ଭାର ଦେଲେ । ମୃତ୍ୟୁକୁ ପ୍ରାଣର ଈଶ୍ୱର ଓ ହୁତାଶନକୁ ତେଜର ଈଶ୍ୱର କଲେ । ୨୯ । ମହାନୁଭବ ବିଶାଳାକ୍ଷ ସନାତନ ମହାଦେବ ଈଶାନଙ୍କୁ ରୁଦ୍ରଗଣଙ୍କର ରକ୍ଷକ ଓ ପ୍ରଭୁ କଲେ । ୩୦ । ବଶିଷ୍ଠଙ୍କୁ ବିପ୍ରଗଣଙ୍କର ଏବଂ ଅଗ୍ନିଙ୍କୁ ବସୁଗଣଙ୍କର ଅଧୀଶ୍ୱର କଲେ । ଭାସ୍କରଙ୍କୁ ତେଜର ଓ ନିଶାକରଙ୍କୁ ନକ୍ଷତ୍ରମାନଙ୍କର ପ୍ରଭୁତ୍ୱ ଦେଲେ । ୩୧ । ଅଂଶୁମାନଙ୍କୁ ଲତାମାନଙ୍କର ଈଶ୍ୱର କଲେ ଏବଂ ଦ୍ୱାଦଶ ବାହୁ କୁମାର ସ୍କନ୍ଦଙ୍କୁ ଭୂତଗଣଙ୍କ ପ୍ରତି ରାଜତ୍ୱ କରିବାର ଆଦେଶ କଲେ । ୩୨ ।

ହେ ନରନାଥ ! ସଂହାରାତ୍ମକ କାଳକୁ ସର୍ବେଶ୍ୱର କଲେ; ଶସ୍ତ୍ର, ଶତ୍ରୁ, ରୋଗ ଓ ଭୋଜନ ମୃତ୍ୟୁର ଏହି ବିଭାଗ ଚତୁଷ୍ଟୟର ଓ ସୁଖ ଦୁଃଖ ପ୍ରଭୃତି ସମସ୍ତଙ୍କର ସର୍ବଦେବମୟ କାଳ ଈଶ୍ୱର ଅଟେ । ଶୂଳପାଣି ସମସ୍ତ ରୁଦ୍ରଗଣଙ୍କର ଅଧିପତି ଅଟନ୍ତି । ଏହା ଶ୍ରୁତିରେ ଅଛି । ୩୪ । ମହାଦେବ ପ୍ରଜାଗଣଙ୍କର ଅଧିପତି ସମସ୍ତ ଧାର୍ମିକଗଣ ଶ୍ରେଷ୍ଠ ସେହି ବ୍ରହ୍ମାଙ୍କର ପୁତ୍ର କ୍ଷୁପଙ୍କୁ ପ୍ରଥମତଃ ଦଣ୍ଡର ରକ୍ଷକ କରିଥିଲେ । ୩୫ । ତଦନନ୍ତର ସେହି ଯଜ୍ଞ ଯଥାବିଧି ସମ୍ପନ୍ନ ହେବାପରେ ମହାଦେବ ସେହି ଦଣ୍ଡକୁ ସତ୍କାର କରି ଧର୍ମରକ୍ଷକ ବିଷ୍ଣୁଙ୍କ ପ୍ରତି ତାହାର ରକ୍ଷାର ଭାର ଅର୍ପଣ କଲେ । ୩୬ । ବିଷ୍ଣୁ ତାହା ଅଙ୍ଗିରାଙ୍କୁ ପ୍ରଦାନ କଲେ । ମୁନିସତ୍ତମ ଅଙ୍ଗିରା, ଇନ୍ଦ୍ର ଓ ମରୀଚିଙ୍କୁ ସେହି ଧର୍ମ ସମାହିତ ଦଣ୍ଡ ଦାନ କଲେ । ଋଷିଗଣ ଲୋକପାଳମାନଙ୍କୁ ଏବଂ ଲୋକପାଳମାନେ କ୍ଷୁପଙ୍କୁ ସେହି ଦଣ୍ଡ ପ୍ରଦାନ କଲେ । କ୍ଷୁପ ପୁନର୍ବାର ଆଦିତ୍ୟ ତନୟ ମନୁଙ୍କୁ ତାହା ଅର୍ପଣ କଲେ । ଶ୍ରାଦ୍ଧଦେବ

ମନୁ ସୂକ୍ଷ୍ମଧର୍ମାର୍ଥ କାରଣ ବଶତଃ ପ୍ରଜାଗଣଙ୍କୁ ତାହା ପ୍ରଦାନ କଲେ । ୩୯ ॥ ସ୍ୱେଚ୍ଛାଗ୍ରସ୍ତ ନ ହୋଇ ନ୍ୟାଯ୍ୟ ଅନ୍ୟାଯ୍ୟ ଅବଧାରଣ ପୂର୍ବକ ଦଣ୍ଡ ବିଧାନ କରିବା କର୍ତ୍ତବ୍ୟ । ଦୁଷ୍ଟବ୍ୟକ୍ତିଙ୍କର ନିଗ୍ରହକୁ ଦଣ୍ଡ କହି, ସୁବର୍ଣ୍ଣାଦି ଦଣ୍ଡ ଲୋକମାନଙ୍କର ବିଭୀଷିକା ପ୍ରଦର୍ଶନ ମାତ୍ର । ୪୦ ଶରୀରର ଅଙ୍ଗହୀନତା ଓ ବଧଦଣ୍ଡ ଅଳ୍ପ କାରଣରେ ହୁଏ ନାହିଁ । ଶାରୀରକ ଦଣ୍ଡ ଅର୍ଥାତ୍ ଉଚ୍ଚସ୍ଥାନରୁ ପତନ ରୂପରେ ଦେହତ୍ୟାଗ ଏବଂ ସ୍ୱଦେଶରୁ ଦୂରୀକରଣ, ଏହା ବିଶେଷ ଦୋଷର ଦଣ୍ଡ ଅଟେ । ୪୧ ।

ସୂର୍ଯ୍ୟପୁତ୍ର ମନୁ ପ୍ରଜାଗଣଙ୍କର ରକ୍ଷଣାର୍ଥ ସେହି ଦଣ୍ଡକୁ ଯଥାକ୍ରମରେ ଦାନ କରିଥିଲେ । ଏହି ଦଣ୍ଡ ପ୍ରଜାମାନଙ୍କୁ ପାଳନ ପୂର୍ବକ ଜାଗରିତ ଥାଏ । ୪୨ । ଭଗବାନ ଇନ୍ଦ୍ର ସତତ ଜାଗରିତ ରହିଅଛନ୍ତି, ପ୍ରଜାପତିଙ୍କଠାରୁ ବିନୟାତ୍ମକ ଧର୍ମ ନିରନ୍ତର ଜାଗରୂପ ରହିଅଛି । ଧର୍ମର ବ୍ରହ୍ମପୁତ୍ର ସନାତନ ବ୍ୟବସାୟ, ବ୍ୟବସାୟରୁ ତେଜ ପ୍ରଜାପାଳନ ପୂର୍ବକ ଜାଗରିତ ଥାନ୍ତି । ତେଜରୁ ଔଷଧି ସବୁ; ଔଷଧିରୁ ପର୍ବତ ସମୁଦାୟ, ପର୍ବତରୁ ରସ ଓ ରସଗୁଣମାନ ଜାଗରିତ ଥାଏ; ତହିଁରୁ ନିର୍ଋତି ଦେବୀ ଜାଗରିତା ଥାନ୍ତି । ନିର୍ଋତିଙ୍କଠାରୁ ଜ୍ୟୋତିର୍ଗଣ ଜାଗରୂକ ହୋଇ ଥାନ୍ତି । ଜ୍ୟୋତିର୍ଗଣଙ୍କଠାରୁ ଦେବସବୁ ପ୍ରତିଷ୍ଠିତ ହୁଏ; ତହିଁରୁ ପ୍ରଭୁ ହିରଣ୍ୟଗର୍ଭ ଜାଗରିତ ହୁଅନ୍ତି । ତାଙ୍କଠାରୁ ଅବ୍ୟୟ ପ୍ରଭୁ ପିତାମହ ବ୍ରହ୍ମା ଜାଗରିତ ହୋଇ ରହିଅଛନ୍ତି । ୪୩ ।

ପିତାମହଙ୍କଠାରୁ ଭଗବାନ୍ ଶିବସ୍ୱରୂପ ମହାଦେବ ଜାଗରିତ ହୁଅନ୍ତି । ଶିବଙ୍କଠାରୁ ବିଶ୍ୱଦେବଗଣ ଏବଂ ବିଶ୍ୱଦେବଗଣଠାରୁ ଋଷିଗଣ, ଋଷିଗଣଙ୍କଠାରୁ ଭଗବାନ ସୋମ, ସୋମଙ୍କଠାରୁ ଦେବଗଣ, ଦେବଗଣଙ୍କଠାରୁ ଲୋକମଧ୍ୟରେ ବ୍ରାହ୍ମଣମାନେ ଜାଗରିତ ରହିଅଛନ୍ତି । ଏହା ଧାରଣା କର । ୦୯ । ବ୍ରାହ୍ମଣଗଣଙ୍କଠାରୁ କ୍ଷତ୍ରିୟଗଣ ଧର୍ମାନୁସାରେ ଲୋକମାନଙ୍କୁ ରକ୍ଷା କରୁଅଛନ୍ତି । କ୍ଷତ୍ରିୟଗଣଙ୍କଠାରୁ ସ୍ଥାବର ଜଙ୍ଗମ ସମସ୍ତ ପ୍ରଜା ଇହଲୋକରେ ଜାଗରିତ ଅଛନ୍ତି ଏବଂ ଦଣ୍ଡ ସେହି ପ୍ରଜାଗଣଙ୍କ ଉପରେ ଜାଗରୂକ ହୋଇ ଅବସ୍ଥିତ କରୁଅଛି । ପିତାମହ ସମ ପ୍ରଭାସମ୍ପନ୍ନ ଦଣ୍ଡ ସମସ୍ତଙ୍କୁ ସଂଗ୍ରହ କରୁଅଛି । ୫୧ ।

ହେ ଭାରତ ! କାଳ ପ୍ରଥମରେ, ମଧ୍ୟରେ ଏବଂ ଅବସାନରେ ଜାଗରୂକ ହୋଇ ରହିଅଛି । ସମସ୍ତ ଲୋକଙ୍କର ଈଶ୍ୱର ମହାଦେବ

ପ୍ରଜାପତି ଦେବ ଦେବ ସର୍ବମୟ କପର୍ଦ୍ଦୀ ଶଙ୍କର ରୁଦ୍ର, ଭବ ସ୍ଥାଣୁ ଉମାପତି ପ୍ରଭୃତିଙ୍କ ସତତ ଜାଗରିତ ଅଛନ୍ତି ।୫୨। ଅଦ୍ୟ, ମଧ୍ୟ ଓ ଅବସାନରେ ଦଣ୍ଡ ଏହିପରି ବର୍ଣ୍ଣିତ ଅଛି । ଧର୍ମଜ୍ଞ ଭୂମିପାଳ ଯଥାନ୍ୟାୟରେ ଏହି ଦଣ୍ଡକୁ ଧାରଣ କରି ଅବସ୍ଥାନ କରିବେ । ୫୪ । ଭୀଷ୍ମ କହିଲେ—ହେ ଭାରତ । ଯେଉଁ ମାନବ ଏହି ବସୁହୋମଙ୍କର ମତକୁ ଶ୍ରବଣ କରନ୍ତି ଏବଂ ଶ୍ରବଣକରି ସମ୍ୟକ୍ ଅନୁଷ୍ଠାନ କରନ୍ତି, ସେ ସମୁଦାୟ କାମ୍ୟ ବିଷୟକୁ ପ୍ରାପ୍ତ ହୁଅନ୍ତି ।

ହେ ମନୁଜର୍ଷଭ ! ଏହିସବୁ ଦଣ୍ଡ ବିଷୟ ତୁମ୍ଭଠାରେ କୀର୍ତ୍ତନ କଲି । ଦଣ୍ଡ ଧର୍ମାକ୍ରାନ୍ତ ସମସ୍ତ ଲୋକଙ୍କର ନିୟନ୍ତା ଅଟେ । ୫୬ ।

## ଅଧ୍ୟାୟ—୧୨୩

ଯୁଧିଷ୍ଠିର କହିଲେ—ହେ ତାତ ! ଧର୍ମ, ଅର୍ଥ ଓ କାମର ନିଶ୍ଚୟ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ଲୋକ ଯାତ୍ରା ସମ୍ୟକ୍ ପ୍ରକାରରେ କାହିଁରେ ପ୍ରତିଷ୍ଠିତ ଥାଏ ? ଧର୍ମ, ଅର୍ଥ ଓ କାମ କେଉଁ ଉଦ୍ଦେଶ୍ୟରେ କରାଯାଏ ଏବଂ ଏହି ତିନିପ୍ରର ଉତ୍ପତ୍ତି କାରଣ ଅବା କିଏ ? ଏମାନେ ପରସ୍ପର ମିଳିତ ଏବଂ ପୃଥକ ପୃଥକ ହୋଇ କି ନିମିତ୍ତ ଅବସ୍ଥିତ କରନ୍ତି ?

ଭୀଷ୍ମ କହିଲେ—ମାନବଗଣ ଯେତେବେଳେ ଲୋକମଧ୍ୟରେ ଧର୍ମପୂର୍ବକ ଅର୍ଥ ନିଶ୍ଚୟ କରିବା ନିମିତ୍ତ ସୂଚିତ ହୁଅନ୍ତି, ଅର୍ଥାତ୍ ଅମ୍ଭେ ଗର୍ଭାଧାନୋକ୍ତ ବିଧି ଅନୁସାରେ ଋତୁକାଳରେ ସ୍ୱଭାର୍ଯ୍ୟା ସହିତ ସଙ୍ଗତ ହୋଇ ପୁତ୍ରଲାଭ କରିବୁଁ, ମାନବଗଣଙ୍କ ମନରେ ଯେତେବେଳେ ଏହିପରି ପ୍ରବୃତ୍ତି ଜନ୍ମେ, ସେତେବେଳେ ଧର୍ମ, ଅର୍ଥ, କାମ ଏହି ତିନିପ୍ର କାଳପ୍ରଭାବ ଏବଂ କର୍ମଦ୍ୱାରା ସମ୍ୟକ ନିଷ୍ପନ୍ନହୋଇ ଏକତ୍ର ସଙ୍ଗତ ହୁଅନ୍ତି । ୩ । ଧର୍ମଅର୍ଥର ମୂଳ ଏବଂ କାମଅର୍ଥର ଫଳ, ଏହା ସର୍ବଦା ଉକ୍ତ ହୋଇଥାଏ, ଆଉ କାମର ମୂଳ ଇନ୍ଦ୍ରିୟ ପ୍ରୀତି, ଧର୍ମ, ଅର୍ଥ, କାମ ଏହି ତ୍ରିବର୍ଗ ସଂକଳ୍ପମୂଳକ ଏବଂ ସକଳ ରୂପାଦି ବିଷୟାତ୍ମକ । ରୂପାଦି ବିଷୟମାନ ଭୋଗ ପ୍ରୟୋଜକ ତ୍ରିବର୍ଗର ମୂଳ ଅଟନ୍ତି ଏବଂ ତ୍ରିବର୍ଗରୁ ନିବୃତ୍ତିକୁ ମୋକ୍ଷ ବୋଲଯାଏ । ୫ ।

ଧର୍ମ ହେତୁ ଶରୀର ରକ୍ଷା ଅର୍ଥାତ୍ ଆରୋଗ୍ୟାର୍ଥ ଧର୍ମସେବା କର୍ତ୍ତବ୍ୟ ଏବଂ ଧର୍ମ ନିମିତ୍ତ ଅର୍ଥ ଉପାର୍ଜନ ବିହିତ ହୁଏ । ଅଉ କାମର ଫଳ ରତି, ଅତଏବ ଧର୍ମ, ଅର୍ଥ ଓ କାମ ଏହି ତ୍ରିତୟ ରଜୋଗୁଣ ପ୍ରଧାନ ଅଟନ୍ତି । ୭ । ଅନୁଷ୍ଠାନରୂପ ଫଳସନ୍ନିକୃଷ୍ଟ ଧର୍ମାର୍ଥ କାମମଧ ସେହି ଅନୁଷ୍ଠାନରେ ପ୍ରୟୋଜକ ହେତୁରୁ ତତ୍କାଳରେ ସନ୍ନିକୃଷ୍ଟ ଫଳର କାରଣ ହୁଅନ୍ତି, ଅତଏବ ତେତେବେଳେ ସେମାନଙ୍କୁ ସେବାକରିବ; ମନଦ୍ୱାରା ସୁଦ୍ଧା ସେମାନଙ୍କୁ ପରିତ୍ୟାଗ କରିବନାହିଁ । ଚିତ୍ତ ଶୁଦ୍ଧି ନିମିତ୍ତ ଧର୍ମ, ନିଷ୍କାମ କର୍ମ ନିମିତ୍ତ ଅର୍ଥ ଏବଂ ଦେହଧାରଣ ନିମିତ୍ତ କାମସେବା କର୍ତ୍ତବ୍ୟ । ତପୋବିହୀନ ମାନବ କାମାଦିବାସନାରେ ଧର୍ମାଦିକୁ ମନେମନେ ସୁଦ୍ଧା ପରିହାର କରିବନାହିଁ । ସ୍ୱରୂପ ପରିତ୍ୟାଗ କରିବା କଥା କଣ କହିବା ? । ୭ । ଧର୍ମ, ଅର୍ଥ, କାମ ଏହି ତ୍ରିବର୍ଗର ନିଷ୍ଠା ସର୍ବଶ୍ରେଷ୍ଠ ମୋକ୍ଷରେ ବିଦ୍ୟମାନ ଅଛି । ଯଦି ମନୁଷ୍ୟ ସେହି ମୋକ୍ଷକୁ ପ୍ରାପ୍ତ ହେବାକୁ ଅଭିଳାଷୀ ହୁଅନ୍ତି, ତାହାହେଲେ ଅଗ୍ରେ ତାହାଙ୍କୁ ନିଷ୍କାମ ହେବାକୁ ହେବ । ନିଷ୍କାମନ ହେଲେ ମୋକ୍ଷଲାଭ ହୁଏନାହିଁ । ଧର୍ମ ହେତୁରୁ ଅର୍ଥ ଏବଂ ଅର୍ଥ ହେତୁରୁ ଧର୍ମ ଉତ୍ପନ୍ନ ହୁଏ । ଏହି ବିଷୟରେ ଅଜ୍ଞାନବଶତଃ ନିକୃଷ୍ଟ ବୁଦ୍ଧି ସମନ୍ୱିତ, ଅର୍ଥାତ୍ ଅବୁଦ୍ଧି ମୂଢ଼ମାନବ ଉକ୍ତରୂପ ଧର୍ମାର୍ଥର ଫଳଲାଭ କରିପାରେ ନାହିଁ । ଅତଏବ ଧର୍ମ ଓ ଅର୍ଥର ଫଳ ମୋକ୍ଷ ଅବ୍ୟଭିଚାରୀ ଅଟେ । ଏହା ନିଶ୍ଚୟ ଜାଣିବାର ଫଳାଭିସନ୍ଧି ଧର୍ମର ମଳସ୍ୱରୂପ, ଅର୍ଥର ଦାନ ଓ ଭୋଗ ବିହୀନ ରକ୍ଷଣ ମଳ ସ୍ୱରୂପ ଅଟେ । କେବଳ ପ୍ରୀତିନିମିତ୍ତ କାମସେବନ, କାମର ମଳସ୍ୱରୂପ ଅଟେ ।

ଅତଏବ ସେହି ତ୍ରିବର୍ଗ ଅର୍ଥାତ୍ ଧର୍ମାର୍ଥ କାମ ଫଳାଭିସନ୍ଧାନ, ଦାନ, ଭୋଗ ଓ ପ୍ରୀତି ଏହି ମଳମାନଙ୍କରୁ ବିରହିତ ହେଲେ ପୁନର୍ବାର ବହୁତର ଫଳ ଅର୍ଥାତ୍ ଚିତ୍ତ ଶୁଦ୍ଧିଦ୍ୱାରା ବ୍ରହ୍ମାନନ୍ଦଫଳ ପ୍ରଦାନ କରେ । ୧୦ । ଏ ବିଷୟରେ କାମନ୍ଦକ ଓ ଅଙ୍ଗାରିଷ୍ଠ ଏହି ଉଭୟଙ୍କର ସମ୍ବାଦ ସମ୍ବଳିତ ଗୋଟିଏ ପୁରାତନ ଇତିହାସକୁ ପୂର୍ବାଚାର୍ଯ୍ୟଗଣ ଉଦାହରଣ ଦେଇଥାନ୍ତି । ୧୧ । ନରପତି ଅଙ୍ଗାରିଷ୍ଠ ସୁଖାସୀନ କାମନ୍ଦକ ଋଷିଙ୍କୁ ଅଭିବାଦନ ପୂର୍ବକ ମର୍ଯ୍ୟାଦାଭଙ୍ଗ ବିଷୟକ ପ୍ରଶ୍ନ ଜିଜ୍ଞାସ କଲେ ଯେ ଯେଉଁ ନୃପତି କାମ ଓ ମୋହର ବଶୀଭୂତ ହୋଇ ପାପାଚରଣ କରନ୍ତି, ସେହି ପଶ୍ଚାତ୍ତାପଯୁକ୍ତ ଭୂପାଳଙ୍କର କି ପ୍ରକାରେ ପାପ ବିନାଶ

ହୁଏ ? । ୧୩ । ଯେଉଁମାନେ ଅଜ୍ଞାନ ବଶତଃ ଅଧର୍ମକୁ ଧର୍ମ ବିବେଚନା କରି ଆଚରଣ କରନ୍ତି, ଲୋକମଧ୍ୟରେ ପ୍ରଥିତ ସେହି ଅଧର୍ମକୁ ନୃପତି କି ଉପାୟଦ୍ୱାରା ନିବାରିତ କରିବେ ? । ୧୪ ।

କାମନ୍ଦକ କହିଲେ—ଯେଉଁ ବ୍ୟକ୍ତି ଧର୍ମ ଓ ଅର୍ଥ ପରିତ୍ୟାଗ-ପୂର୍ବକ କେବଳ କାମର ଅନୁବର୍ତ୍ତନ କରନ୍ତି, ସେ ଧର୍ମାର୍ଥ ପରିହାର ହେତୁରୁ ଇହଲୋକରେ ପ୍ରଜ୍ଞାହୀନ ହୁଅନ୍ତି । ପ୍ରଜ୍ଞାନାଶାତ୍ମକ ମୋହ ଧର୍ମାର୍ଥବିନାଶକ ହୋଇପଡ଼େ । ତନ୍ନିମିତ୍ତ ନାସ୍ତିକତା ଓ ଦୁରାଚାର ଜାତହୁଏ । ୧୬ । ରାଜା ଯଦି ଏକାନ୍ତ ଦୁଷ୍ଟ ଦୁରାଚାରମାନଙ୍କୁ ନିବାରଣ କରି ନ ପାରନ୍ତି, ତେବେ ପ୍ରଜାମାନେ ଗୃହସ୍ଥିତ ସର୍ପସଦୃଶ ସେହି ସେହି ଦୁରାଚାରମାନଙ୍କ ହେତୁରୁ ଉଦ୍‌ବିଗ୍ନ ହୁଅନ୍ତି । ୧୭ । ପ୍ରଜାଗଣ, ବ୍ରାହ୍ମଣମାନେ ଏବଂ ସାଧୁମାନେ ତାଦୃଶ ନୃପତିଙ୍କର ଅନୁବର୍ତ୍ତୀ ହୁଅନ୍ତି ନାହିଁ । ତତ୍ପରେ ସେ ସଂଶୟାପନ୍ନ ହୋଇ ବଧ ହୁଅନ୍ତି କିମ୍ବା ଅପଧ୍ୱସ୍ତ ବା ଅବନତ ହୋଇ ଅତି ଦୁଃଖରେ ଜୀବିତ ଲାଭକରନ୍ତି, ଅବମାନଗ୍ରସ୍ତ ହୋଇ ଜୀବିତଥିବା ମରଣତୁଲ୍ୟ ଅଟେ । ୧୯ । ପୂର୍ବାଗୁର୍ଯ୍ୟଗଣ ଏ ବିଷୟରେ ସର୍ବତୋଭାବରେ ପାପର ନିନ୍ଦା କରନ୍ତି, ଅତଏବ ତ୍ରୟୀ ବିଦ୍ୟା ସେବନ ଏବଂ ବ୍ରାହ୍ମଣମାନଙ୍କର ସତ୍କାର କରିବା କର୍ତ୍ତବ୍ୟ ।୨୦। ଧର୍ମ ବିଷୟରେ ପ୍ରଶସ୍ତ ଚିତ୍ତ ହେବ ଏବଂ ମହତବଂଶରେ ବିବାହ କରିବ । କ୍ଷମାଯୁକ୍ତ ମନସ୍ୱୀ ବ୍ରାହ୍ମଣମାନଙ୍କୁ ସେବା କରିବ । ୨୧ । ସ୍ନାନଶୀଳ ହୋଇ ଜପ କରିବ । ଏବଂ ସତତ ସୁଖରେ ଅବସ୍ଥିତ ରହିବ । ଦୁଷ୍କୃତ ମାନବଗଣଙ୍କ ସହିତ ସଙ୍ଗ ନକରି ଧର୍ମିଷ୍ଠ ବ୍ୟକ୍ତିଙ୍କ ନିକଟକୁ ଗମନ କରିବ । ୨୨ । ମଧୁର ବାକ୍ୟ କିମ୍ବା କର୍ମଦ୍ୱାରା ସମସ୍ତଙ୍କୁ ପ୍ରସନ୍ନ କରିବ । ଅନ୍ୟର ଗୁଣ କୀର୍ତ୍ତନକରି "ଅମ୍ଭେ ଆପଣଙ୍କର" ଏହିକଥା ସମସ୍ତଙ୍କ ନିକଟରେ କହିବ । ୨୩ ।

ନିଷ୍ପାପ ପୁରୁଷ ଏବଂବିଧ ଆଚରଣ କଲେ ଅବିଳମ୍ବରେ ସମସ୍ତଙ୍କର ଆଦର ଭାଜନ ହୁଅନ୍ତି ଏବଂ ସମସ୍ତ ପାପ ପ୍ରଶମନ କରନ୍ତି । ଏଥିରେ ସଂଶୟ ନାହିଁ । ୨୪ । ଗୁରୁମାନେ ଯେଉଁ ପରମଧର୍ମ ବିଷୟକୁ କୀର୍ତ୍ତନ କରନ୍ତି, ତୁମ୍ଭେ ସେହି ଧର୍ମକୁ ଯେହିପରି ଆଚରଣ କର । ଗୁରୁଙ୍କ ପ୍ରସାଦରୁ ତୁମ୍ଭେ ପରମ ଶ୍ରେୟ ପ୍ରାପ୍ତହେବ । ୨୫ ।

———

## ଅଧ୍ୟାୟ—୧୨୪

ଯୁଧିଷ୍ଠିର କହିଲେ—ହେ ନରଶ୍ରେଷ୍ଠ ! ଭୂମଣ୍ଡଳରେ ଏହିସବୁ ମାନବଗଣ ସତତ ଶୀଳକୁ ଧର୍ମର କାରଣ ବୋଲି ପ୍ରଶଂସା କରନ୍ତି । ଏ ବିଷୟରେ ଆମ୍ଭର ମହାନ୍ ସଂଶୟ ହେଉଅଛି । ୧ । ହେ ଧାର୍ମିକ ପ୍ରବର ! ଯଦି ଆମ୍ଭର ତାହା ଜାଣିବାର ସାମର୍ଥ୍ୟ ଥାଏ, ତେବେ ତାହା ଯେଉଁ ପ୍ରକାରରେ ଉପଲବ୍ଧ ହେବ ତାହା ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ୨ । ହେ ବକ୍ତୃବର ଭାରତ ! କିପ୍ରକାରେ ସେହି ଶୀଳତାକୁ ପ୍ରାପ୍ତ ହୋଇପାରୁଁ ଏବଂ ତାହାର ଲକ୍ଷଣ କିପରି, ଅପଣ ତାହା ଅମ୍ଭଠାରେ କୀର୍ତ୍ତନ କରନ୍ତୁ । ୩ ।

ଭୀଷ୍ମ କହିଲେ—ହେ ମାନବ ମହାରାଜ ! ପୂର୍ବେ ଦୁର୍ଯ୍ୟୋଧନ ଇନ୍ଦ୍ରପ୍ରସ୍ଥରେ ଭ୍ରାତୃଗଣଙ୍କ ସହିତ ତୁମ୍ଭର ସେହି ଅତୁଳ ଐଶ୍ୱର୍ଯ୍ୟ ଅବଲୋକନ ପୂର୍ବକ ସନ୍ତପ୍ତ ଓ ସଭାମଧ୍ୟରେ ଉପହସିତ ହୋଇ ପିତାଙ୍କଠାରେ ତତ୍ସମସ୍ତ କୀର୍ତ୍ତନ କରିଥିଲେ । ଧୃତରାଷ୍ଟ୍ର ସେତେବେଳେ ଦୁର୍ଯ୍ୟୋଧନଙ୍କର ବାକ୍ୟ ଶ୍ରବଣକରି କର୍ଣ୍ଣଙ୍କ ସହିତ ସମାସୀନ ପୁତ୍ରକୁ ବକ୍ଷ୍ୟମାଣ ବାକ୍ୟ କହିଥିଲେ । ୭ ।

ଧୃତରାଷ୍ଟ୍ର କହିଲେ—ହେ ବତ୍ସ ! ତୁମ୍ଭେ କି ନିମିତ୍ତ ସନ୍ତପ୍ତ ହେଉଅଛ ? ଆମ୍ଭେ ତାହା ଯଥାର୍ଥ ରୂପରେ ଶ୍ରବଣକରିବାକୁ ଇଚ୍ଛାକରୁଁ । ଶ୍ରବଣ କରି ଯଦି ସମ୍ୟକ ଉପଯୁକ୍ତ ବୋଧହୁଏ, ତାହାହେଲେ ତୁମ୍ଭଙ୍କୁ ଉପଦେଶ କରିବୁଁ । ୮ । ହେ ପରପୁରଞ୍ଜୟ ! ତୁମ୍ଭେ ପରମ ଐଶ୍ୱର୍ଯ୍ୟକୁ ପ୍ରାପ୍ତ ହୋଇଅଛ; ଭ୍ରାତୃଗଣ, ମିତ୍ର ଓ ସମ୍ବନ୍ଧମାନେ ସମସ୍ତେ ସତତ ତୁମ୍ଭର ଆଜ୍ଞାବହ ହୋଇ ରହିଅଛନ୍ତି । ୯ । ପ୍ରଶସ୍ତ ପ୍ରାକାର, ବସ୍ତ୍ର, ଗାତ୍ରାବରଣ ଏବଂ ପଳାନ୍ନ ଭୋଜନ କରୁଅଛ । ଆଜାନେୟ ଅଶ୍ୱଗଣ ତୁମ୍ଭଙ୍କୁ ବହନ କରୁଅଛନ୍ତି । ତଥାପି ତୁମ୍ଭେ କି ନିମିତ୍ତ ପାଣ୍ଡୁବର୍ଣ୍ଣ ଓ କୃଶ ହେଉଅଛ ? ୧୦ ।

ଦୁର୍ଯ୍ୟୋଧନ କହିଲେ—ହେ ଭାରତ ! ଯୁଧିଷ୍ଠିରଙ୍କ ନିକେତନରେ ପ୍ରତ୍ୟହ ଦଶସହସ୍ର ମହାନୁଭବ ସ୍ନାତକ ବ୍ରାହ୍ମଣ ସ୍ୱର୍ଣ୍ଣ ପାତ୍ରରେ ଭୋଜନ କରୁଅଛନ୍ତି । ୧୧ । ପାଣ୍ଡବ ମାନଙ୍କର ଦିବ୍ୟ ଫଳପୁଷ୍ପ ଶୋଭିତ ଦିବ୍ୟସଭା, ତିତ୍ତିର ପକ୍ଷୀପ୍ରାୟ ବିଚିତ୍ରବର୍ଣ୍ଣ ବାଜିଗଣ ଓ ବିବିଧ ବସ୍ତୁ

ଏବଂ ରାଜରାଜତୁଲ୍ୟ ସୁମହାତ୍ମା ଶତ୍ରୁଭଙ୍କର ସମୃଦ୍ଧି ସନ୍ଦର୍ଶନ କରି ଅମ୍ଭେ ଅନୁଶୋଚନା କରୁଅଛୁଁ । ୧୩ ।

ଧୃତରାଷ୍ଟ୍ର କହିଲେ—ହେ ବତ୍ସ ! ନରଶ୍ରେଷ୍ଠ ! ଯୁଧିଷ୍ଠିରଙ୍କର ଯାଦୃଶ ସମୃଦ୍ଧି, ତୁମ୍ଭେ ଯଦି ତାଦୃଶ କିମ୍ବା ତଦପେକ୍ଷା ସମଧିକ ଐଶ୍ୱର୍ଯ୍ୟ ଇଚ୍ଛା କର, ତେବେ ତୁମ୍ଭେ ଶୀଳବାନ ହୁଅ । ୧୪ । ସଦ୍‌ବ୍ୟବହାର ଦ୍ୱାରା ଲୋକତ୍ରୟକୁ ଜୟ କରି ହୁଏ, ଏଥିରେ ସଂଶୟ ନାହିଁ । ଇହଲୋକରେ ଶୀଳବାନ ମନୁଷ୍ୟମାନଙ୍କର କୌଣସି କର୍ମ ଅସାଧ୍ୟ ହୁଏ ନାହିଁ । ୧୫ । ମାନ୍ଧାତା ଏକ ରାତ୍ରରେ, ଜନମେଜୟ ତିନିରାତ୍ରରେ ଏବଂ ନାଭାଗ ନୃପତି ସପ୍ତ ରାତ୍ରରେ ପୃଥିବୀ ଲାଭ କରି ଅଛନ୍ତି । ୧୬ । ଏହିସବୁ ଭୂପାଳମାନେ ଶୀଳବନ୍ତ ଏବଂ ଦୟାନ୍ୱିତ ଥିଲେ ସୁତରାଂ ବସୁନ୍ଧରା ସେମାନଙ୍କର ଗୁଣକ୍ରୀତା ହୋଇ ସେମାନଙ୍କର ସନ୍ନିହିତା ହୋଇଥିଲେ । ୧୭ ।

ଦୁର୍ଯ୍ୟୋଧନ କହିଲେ—ହେ ଭାରତ ! ଯେଉଁ ଶୀଳଦ୍ୱାରା ସେମାନେ ଅବିଳମ୍ବରେ ବସୁନ୍ଧରାକୁ ଲାଭ କରିଥିଲେ, କି ପ୍ରକାରେ ସେହି ଶୀଳକୁ ପ୍ରାପ୍ତ ହେବୁଁ, ତାହା ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ୧୮ । ଧୃତରାଷ୍ଟ୍ର କହିଲେ—ହେ ଭାରତ ! ମହର୍ଷି ନାରଦ ଶୀଳକୁ ଆଶ୍ରୟ କରି ପୂର୍ବେ ଯେଉଁ ପୁରାତନ ଇତିହାସ କହିଥିଲେ, ପଣ୍ଡିତଗଣ ଏହି ବିଷୟରେ ସେହି ଇତିହାସକୁ ଉଦାହରଣ ଦିଅନ୍ତି । ୧୯ । ପ୍ରହ୍ଲାଦ ଦୈତ୍ୟ ହୋଇ ସୁଦ୍ଧା ଶୀଳାବଲମ୍ବନ ପୂର୍ବକ ମହାନୁଭବ ମହେନ୍ଦ୍ରଙ୍କର ରାଜ୍ୟ ହରଣ ଓ ତ୍ରିଭୁବନକୁ ବଶୀଭୂତ କରିଥିଲେ । ୨୦ ।

ତଦନନ୍ତର ମହାମତି ମଘବାନ କୃତାଞ୍ଜଳିବଦ୍ଧହସ୍ତ ହୋଇ ବୃହସ୍ପତିଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ କହିଲେ,—ଆମ୍ଭେ ଶ୍ରେୟ ଜାଣିବାକୁ ଇଚ୍ଛା କରୁଅଛୁଁ । ୨୧ । ସେତେବେଳେ ଭଗବାନ ବୃହସ୍ପତି ସେହି ଦେବେନ୍ଦ୍ରଙ୍କୁ ପରମ ନିଃଶ୍ରେୟସ ସମ୍ବନ୍ଧୀୟ, ଅର୍ଥାତ୍ ମୋକ୍ଷୋପଯୋଗୀ ଜ୍ଞାନ ବିଷୟ କହିଲେ । ୨୨ । ବୃହସ୍ପତି ମୋକ୍ଷୋପଯୋଗୀ ଜ୍ଞାନର ଉପଦେଶ ଦେଇ "ଏହା ଶ୍ରେୟ" ଏହି କଥା କହିଲେ । ଦେବରାଜ ପୁନର୍ବାର ପ୍ରଶ୍ନ କଲେ ଯେ, ନିଃଶ୍ରେୟସ ଠାରୁ ଅନ୍ୟ କୌଣସି ଶ୍ରେୟ ଅଛି କି ନା ତାହା ବିଶେଷ କରି କୀର୍ତ୍ତନ କରନ୍ତୁ । ୨୩ ।

ବୃହସ୍ପତି କହିଲେ—ହେ ତାତ ସୁରରାଜ ! ଏ ବିଷୟରେ ଯାହା କିଛି ବିଶେଷ ଅଛି, ତାହା ମହାନୁଭବ ଭାର୍ଗବଙ୍କର ଅବିଦିତ ନାହିଁ ।

ଅତଏବ ତୁମ୍ଭେ ତାହାଙ୍କୁ ତଦ୍‌ବିଷୟ ପ୍ରଶ୍ନ କର, ତୁମ୍ଭର ମଙ୍ଗଳ ହେଉ ।୨୫। ମହାତପା ପରମ ଦ୍ୟୁତିଶାଳୀ ଦେବରାଜ ନିଜର ଶ୍ରେୟଲାଭ ନିମିତ୍ତ ପ୍ରୀତି-ପୂର୍ବକ ଭାର୍ଗବଙ୍କ ନିକଟକୁ ଗମନ କଲେ ଏବଂ ସେହି ମହାନୁଭବ ଦୈତ୍ୟ-ଗୁରୁଙ୍କ କର୍ତ୍ତୃକ ଅନୁଜ୍ଞାତ ହୋଇ ତାହାଙ୍କୁ ପୁନର୍ବାର 'କଣ ଶ୍ରେୟ ଅଛି' ତାହା ପ୍ରଶ୍ନ କଲେ । ୨୬ ।

ସର୍ବଜ୍ଞ ଭାର୍ଗବ କହିଲେ—ମହାନୁଭାବ ପ୍ରହ୍ଲାଦଙ୍କର ଏ ବିଷୟରେ ବିଶେଷ ଜ୍ଞାନ ଅଛି । ଇନ୍ଦ୍ର ଏହା ଶ୍ରବଣ କରି ହର୍ଷାନ୍ୱିତ ହେଲେ । ୨୭ । ତଦନନ୍ତର ମେଧାବୀ ପାକଶାସନ ବ୍ରାହ୍ମଣ ବେଶ ଧାରଣ କରି ପ୍ରହ୍ଲାଦଙ୍କ ନିକଟକୁ ଗମନ ପୂର୍ବକ କହିଲେ—ଆମ୍ଭେ ଶ୍ରେୟ ଜାଣିବାକୁ ଇଚ୍ଛା କରୁଅଛୁଁ । ୨୮ ।

ପ୍ରହ୍ଲାଦ କହିଲେ—ହେ ଦ୍ୱିଜବର ! ଆମ୍ଭେ ତ୍ରୈଲୋକ୍ୟ ରାଜ୍ୟକୁ ଶାସନ କରିବାରେ ସତତ ବ୍ୟାପୃତ ରହିଅଛୁଁ । ଅତଏବ ଆମ୍ଭଙ୍କୁ ବର୍ତ୍ତମାନ ଅବସର ନାହିଁ । ସୁତରାଂ ତୁମ୍ଭଙ୍କୁ ଉପଦେଶ ଦେବାକୁ ସକ୍ଷମ ନୋହୁଁ । ତହୁଁ ବ୍ରାହ୍ମଣ କହିଲେ—ହେ ରାଜନ୍ ! ଯେତେବେଳେ ଆପଣଙ୍କର ଅବସର ହେବ ତେତେବେଳେ ଆମ୍ଭେ ଅତ୍ୟୁତ୍ତମ ଆଚରଣୀୟ ବିଷୟର ଉପଦେଶ ଗ୍ରହଣ କରିବାକୁ ଇଚ୍ଛା କରୁଅଛୁଁ ।

ତପ୍ପରେ ରାଜା ପ୍ରହ୍ଲାଦ ପ୍ରୀତ ହେଲେ ଏବଂ ତାହା ହେବ, ଏହି କଥା ବ୍ରାହ୍ମଣଙ୍କୁ କହି, ସେହି ଶୁଭକ୍ଷଣରେ ତାହାଙ୍କୁ ଜ୍ଞାନତତ୍ତ୍ୱ ପ୍ରଦାନ କଲେ । ୩୧ । ବ୍ରାହ୍ମଣ ଯଥାନ୍ୟାୟରେ ଗୁରୁଙ୍କ ପ୍ରତି ଯାଦୃଶ ବ୍ୟବହାର କରିବାକୁ ହୁଏ ଏବଂ ତାହାଙ୍କର ଅନ୍ତଃକରଣରେ ଯେଉଁପରି ଅଭିଳାଷ ଥିଲା ସର୍ବତୋଭାବରେ ତଦ୍ରୂପ ପ୍ରଦର୍ଶନ କଲେ । ୩୨ । ଏବଂ ବାରମ୍ବାର ପ୍ରଶ୍ନ କଲେ—ହେ ଅରିନ୍ଦମ ! ଆପଣ କି ପ୍ରକାରରେ ତ୍ରୈଲୋକ୍ୟ ରାଜ୍ୟକୁ ପ୍ରାପ୍ତ ହୋଇଅଛନ୍ତି ? ହେ ଧର୍ମଜ୍ଞ ! ସେହି କାରଣକୁ ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ । ହେ ମହାରାଜ ! ପ୍ରହ୍ଲାଦ ତେତେବେଳେ ବ୍ରାହ୍ମଣଙ୍କ ତଦୀୟ ପ୍ରଶ୍ନର ଉତ୍ତର କଲେ । ୩୩ ।

ପ୍ରହ୍ଲାଦ କହିଲେ—ହେ ବିପ୍ର ! ଆମ୍ଭେ ରାଜାବୋଲି କଦାପି ବ୍ରାହ୍ମଣଙ୍କ ପ୍ରତି ଅସୂୟା ପ୍ରକାଶ କରୁନାହୁଁ । ତାହାଙ୍କର ଶୁକ୍ରପ୍ରୋକ୍ତ-ନୀତି ଶାସ୍ତ୍ରସବୁ ବ୍ୟାଖ୍ୟା କରୁଥିବା ସମୟରେ ଆମ୍ଭେ ତାହା ଶ୍ରବଣ କରି

ଧାରଣା କରିଥାନ୍ତି । ସେମାନେ ବିଶ୍ୱସ୍ତ ହୋଇ, ତାହା ଶାନ୍ତିର ପୂର୍ବାଙ୍କ ଆମ୍ଭଙ୍କୁ ସମର୍ପିତ କରନ୍ତି । ଅତେବ ଶୁକ୍ରାଚାର୍ଯ୍ୟ ନିଗଦିତ ନୀତିପଥରେ ସର୍ବଦା ବର୍ତ୍ତମାନ ଥାନ୍ତି । ବ୍ରାହ୍ମଣମାନଙ୍କର ଶୁଶ୍ରୂଷା କରୁଁ, କଦାପି ସେମାନଙ୍କ ପ୍ରତି ଅସୂୟା କରୁନାହୁଁ । ୩୫ । ମଧୁମକ୍ଷିକାମାନେ ଯେପରି ସୌଦ୍ର ପଟଳରେ ମଧୁ ସଞ୍ଚୟ କରନ୍ତି, ତଦ୍ରୂପ ସେହି ଶାସନକାରୀ ବ୍ରାହ୍ମଣଗଣ ଆମ୍ଭଙ୍କ ଧର୍ମାତ୍ମା, କୃତବୋଧ ଓ ସଂଯତ ସଜ୍ଜତେନ୍ଦ୍ରିୟ ଜାଣି ଶାସ୍ତ୍ର ବଚନ ଦ୍ୱାରା ସେଚନ କରନ୍ତି । ୩୬ । ଆମ୍ଭେ ବାଙ୍ମୟ ଶାସ୍ତ୍ରମାନଙ୍କର ପ୍ରଧାନ ଶବ୍ଦୀରସ ଅବଲେହନ କରି ନକ୍ଷତ୍ର ମଣ୍ଡଳୀମଧ୍ୟରେ ଚନ୍ଦ୍ରମା ପ୍ରାୟ, ସ୍ୱଜାତୀୟ ଗଣଙ୍କ ମଧ୍ୟରେ ଅଧିଷ୍ଠାନ କରି ରହିଅଛୁଁ । ୩୭ । ବ୍ରାହ୍ମଣ ମୁଖରୁ ଶୁକ୍ରପ୍ରୋକ୍ତ ଶାସ୍ତ୍ର ଶ୍ରବଣପୂର୍ବକ ତଦନୁସାରେ କାର୍ଯ୍ୟ କରିବାକୁ ପ୍ରବୃତ୍ତ ହେବା ପୃଥିବୀମଧ୍ୟରେ ଅମୃତ ସ୍ୱରୂପ ଅଟେ ଏବଂ ଏହାହିଁ ଅନୁତ୍ତମ ଚକ୍ଷୁ ସ୍ୱରୂପ ଅଟେ । ୩୮ ।

ପ୍ରହ୍ଲାଦ ସେହି ବ୍ରାହ୍ମଣଙ୍କୁ ଏତାବନ୍ମାତ୍ର ଶ୍ରେୟ ବୋଲି କହିଲେ ଏବଂ ତତ୍କାଳରେ ଦୈତ୍ୟରାଜ ଦ୍ୱିଜଙ୍କ କର୍ତ୍ତୃକ ଶୁଶ୍ରୂଷିତ ହୋଇ କହିଲେ । ୩୯ । ହେ ଦ୍ୱିଜସତ୍ତମ ! ତୁମ୍ଭେ ଆମ୍ଭ ପ୍ରତି ଗୁରୁତ୍ୱାସ୍ୟ ବ୍ୟବହାର କରିବାରୁ ଆମ୍ଭେ ପ୍ରୀତ ହୋଇଅଛୁଁ, ଅତଏବ ବର ପ୍ରାର୍ଥନା କର । ଆମ୍ଭେ ତୁମ୍ଭଙ୍କୁ ତାହା ପ୍ରଦାନ କରିବୁଁ, ଏଥିରେ ସଂଶୟ ନାହିଁ, ତୁମ୍ଭର ମଙ୍ଗଳ ହେଉ । ୪୦ । ବ୍ରାହ୍ମଣ ଯେତେବେଳେ ଦୈତ୍ୟେନ୍ଦ୍ରଙ୍କୁ କହିଲେ,—ଆମ୍ଭେ ବର ପ୍ରାର୍ଥନା କଲୁଁ । ତୁମ୍ଭେ ପ୍ରୀତହୋଇ ବର ଗ୍ରହଣ କର, ଏହା କହିଲେ । ୪୧ ।

ବ୍ରାହ୍ମଣ କହିଲେ—ହେ ରାଜନ୍ ! ଆପଣ ଯଦି ପ୍ରସନ୍ନ ହୋଇ ଆମ୍ଭର ପ୍ରିୟ କାମନା କରୁଅଛନ୍ତି, ତେବେ ଆମ୍ଭେ ଆପଣଙ୍କର ଶୀଳ ପ୍ରାପ୍ତ ହେବାକୁ ଇଚ୍ଛା କରୁଅଛୁଁ । ଏହାହିଁ ଆମ୍ଭର ପ୍ରାର୍ଥନୀୟ । ୪୨ । ତଦନନ୍ତର ଦୈତ୍ୟରାଜ ପ୍ରସନ୍ନ ହେଲେ, କିନ୍ତୁ ତାହାଙ୍କର ଅତିଶୟ ଭୟ ଜାତ ହେଲା, ବ୍ରାହ୍ମଣ ବର ପ୍ରାର୍ଥନା କରନ୍ତେ "ସେ ଅଳ୍ପ ତେଜସ୍ୱୀ ନୁହନ୍ତି" ଏହା ସେ ନିଶ୍ଚୟ କଲେ । ୪୩ । ପରଶେଷରେ ପ୍ରହ୍ଲାଦ ବିସ୍ମିତ ହୋଇ "ତାହା ହେଉ" ଏହିକଥା କହିଲେ ଏବଂ ସେହି ବିପ୍ରଙ୍କୁ ବରଦାନ କରି ଦୁଃଖାନ୍ୱିତ ହେଲେ । ୪୪ ।

ହେ ମହାରାଜ । ବରଦାନାନ୍ତର ବ୍ରାହ୍ମଣ ଗମନ କରନ୍ତେ, ପ୍ରହ୍ଲାଦଙ୍କର ମହତୀ ଚିନ୍ତା ଉପସ୍ଥିତ ହେଲା । ସେ ତେତେବେଳେ କିଛି ନିଶ୍ଚୟ କରି ପାରିଲେ ନାହିଁ ।୪୫। ହେ ତାତ । ସେ ଚିନ୍ତା କରୁଥିବା ସମୟରେ ତେଜୋମୟ ବିଗ୍ରହ ବିଶିଷ୍ଟ ଛାୟାଭୂତ ମହାଦ୍ୟୁତିଶୀଳ ତାହାଙ୍କର ଶରୀର ପରିତ୍ୟାଗ କଲା ।୪୬। ପ୍ରହ୍ଲାଦ ତେତେବେଳେ ସେହି ମହାକାୟକୁ କହିଲେ—ଆପଣ କିଏ ? ସେ କହିଲେ ହେ ରାଜନ୍ । ଆମ୍ଭେ ଶୀଳ ଅଟୁଁ । ତୁମ୍ଭେ ଆମ୍ଭକୁ ପରିତ୍ୟାଗ କରିବାରୁ ଆମ୍ଭେ ଯାଉଅଛୁଁ । ୪୭ । ନିତ୍ୟ ଶିଷ୍ୟହୋଇ ନିୟତ ତୁମ୍ଭଠାରେ ସମାହିତ ଥିଲେ ଆମ୍ଭେ ସେହି ଅନିନ୍ଦିତ ଦ୍ୱିଜବରଙ୍କ ଦେହରେ ବାସ କରିବୁଁ ।୪୮। ତେଜୋମୟ ଶୀଳ ଏହି କଥା କହି ଅନ୍ତର୍ହିତ ହେଲା ଏବଂ ଶକ୍ରଙ୍କ ଶରୀରରେ ଅନୁପ୍ରବେଶ କଲା । ଶୀଳସ୍ୱରୂପ ତେଜ ଗମନ କରନ୍ତେ ତାଦୃଶ ରୂପ ବିଶିଷ୍ଟ ଅନ୍ୟ ଗୋଟିଏ ତେଜ ପ୍ରହ୍ଲାଦଙ୍କର ଶରୀର ମଧ୍ୟରୁ ନିଃସୃତ ହେଲା । ୪୯ ।

ତେତେବେଳେ ସେ ତାହାଙ୍କୁ କହିଲେ—ଆପଣ କିଏ ? ସେ କହିଲେ ହେ ପ୍ରହ୍ଲାଦ ! ଆମ୍ଭେ ଧର୍ମ ଅଟୁଁ । ଯେଉଁସ୍ଥାନରେ ସେହି ଦ୍ୱିଜସତ୍ତମ ରହିଅଛନ୍ତି, ଆମ୍ଭେ ସେହିଠାକୁ ଯିବୁଁ । ହେ ଦୈତ୍ୟେନ୍ଦ୍ର ! ଶୀଳ ଯେଉଁସ୍ଥାନକୁ ଯାନ୍ତି, ଆମ୍ଭେ ମଧ୍ୟ ସେହିସ୍ଥାନକୁ ଯାଉଁ । ହେ ମହାରାଜ । ଅନନ୍ତର ଅପର ଏକବ୍ୟକ୍ତି ତେଜରେ ପ୍ରଜ୍ୱଳିତ ହୋଇ ମହାନୁଭବ ପ୍ରହ୍ଲାଦଙ୍କର ଶରୀର ମଧ୍ୟରୁ ନିର୍ଗତ ହେଲା । ଆପଣ କିଏ ? ପ୍ରହ୍ଲାଦ ଏହି ପରି ପ୍ରଶ୍ନ କରିବାରୁ, ସେହି ମହାଦ୍ୟୁତି କହିଲେ—ଆମ୍ଭେ ସତ୍ୟ ଅଟୁଁ, ସମ୍ପ୍ରତି ଧର୍ମଙ୍କର ଅନୁଗମନ କରିବୁଁ । ସତ୍ୟ ଏହି କଥା କହି ଧର୍ମଙ୍କର ପଶ୍ଚାତ୍ ଗମନ କରନ୍ତେ ଅନ୍ୟ ଗୋଟିଏ ମହାନ୍ ପୁରୁଷ ପ୍ରହ୍ଲାଦଙ୍କର ଶରୀରମଧ୍ୟରୁ ନିଷ୍କ୍ରାନ୍ତ ହେଲା ।

ତତ୍ପରେ ସେହି ମହାବଳ ଜିଜ୍ଞାସିତ ହୋଇ କହିଲେ—ହେ ପ୍ରହ୍ଲାଦ ! ଆମ୍ଭେ ବୃତ୍ତ ଅଟୁଁ । ସତ୍ୟ ଯେଉଁଠାରେ ଥାନ୍ତି, ଆମ୍ଭେ ମଧ୍ୟ ସେଠାକୁ ଗମନ କରିଥାଉଁ ।୫୦। ବୃତ୍ତ ଗମନ କରନ୍ତେ ପ୍ରହ୍ଲାଦଙ୍କ ଦେହରୁ ମହାଶବ୍ଦ ନିର୍ଗତ ହେଲା । ଏବଂ ସେ ପୃଷ୍ଟ ହେବାରୁ କହିଲା—ଆମ୍ଭେ ବଳ ଅଟୁଁ । ବୃତ୍ତ ଯେଉଁଠାକୁ ଯାନ୍ତି ଆମ୍ଭେ ସେହିଠାକୁ ଯାଉଁ ।୫୧।

ହେ ନରନାଥ ! ବଳ ଏହି କଥା କହି ଯେଉଁଠାକୁ ଯାଇଥିଲେ, ସେହିଠାକୁ ଗମନ କଲେ । ଅନନ୍ତର ତାହାଙ୍କ ଶରୀରରୁ ଗୋଟିଏ

ପ୍ରଭାମୟୀ ଦେବୀ ନିର୍ଗତା ହେଲେ । ଦୈତ୍ୟରାଜ ପ୍ରହ୍ଲାଦ ତାହାଙ୍କୁ ପ୍ରଶ୍ନ କରିବାରୁ ସେ କହିଲେ—ହେ ସତ୍ୟ ପରାକ୍ରମ ବୀରବର । ଆମ୍ଭେ ଶ୍ରୀ ଅଟୁଁ । ଆମ୍ଭେ ସ୍ୱୟଂ ତୁମ୍ଭଠାରେ ବାସ କରିଥିଲୁଁ । ବର୍ତ୍ତମାନ ତୁମ୍ଭଦ୍ୱାରା ପରିତ୍ୟକ୍ତା ହୋଇ ଗମନ କରୁଅଛୁଁ । ଆମ୍ଭେ ବଳର ଅନୁଗାମିନୀ ହୋଇ ଥାଉଁ ।୫୭। ତଦନନ୍ତର ମହାନୁଭବ ପ୍ରହ୍ଲାଦଙ୍କର ଅନ୍ତଃକରଣରେ ଭୟ ସଞ୍ଚାର ହେଲା । ସେ ପୁନର୍ବାର କହିଲେ—ହେ କମଳାଳୟେ । ଆପଣ କେଉଁଠାକୁ ଗମନ କରୁଅଛନ୍ତି ? ।୫୮। ଆପଣ ସତ୍ୟବ୍ରତଧାରିଣୀ ଓ ଲୋକଙ୍କର ପରମେଶ୍ୱରୀ ଦେବୀ ଅଟନ୍ତି, ଅତଏବ ସେହି ଦ୍ୱିଜବର କିଏ ? ଏହା ଆମ୍ଭେ ଯଥାର୍ଥ ରୂପରେ ଜାଣିବାକୁ ଇଚ୍ଛା କରୁଅଛୁଁ ।୫୯।

ଶ୍ରୀ କହିଲେ—ହେ ରାଜନ୍ ! ଯେ ବ୍ରହ୍ମଚାରୀ ହୋଇ ତୁମ୍ଭଠାରେ ଶିକ୍ଷିତ ହୋଇଥିଲେ, ସେ ଦେବରାଜ ଇନ୍ଦ୍ର ଅଟନ୍ତି । ତ୍ରୈଲୋକ୍ୟ ମଧ୍ୟରେ ତୁମ୍ଭର ଯେଉଁ ସବୁ ଐଶ୍ୱର୍ଯ୍ୟ ଥିଲା ତାହା ତାଙ୍କଠାରେ ଅପହୃତ ହୋଇଅଛି ।୬୦। ହେ ଧର୍ମଜ୍ଞ ! ତୁମ୍ଭେ ଶୀଳଦ୍ୱାରା ଲୋକତ୍ରୟକୁ ଜୟ କରିଥିଲ । ସୁରରାଜ ତାହା ବିଜ୍ଞାତ ହୋଇ ତୁମ୍ଭର ଶୀଳକୁ ହରଣ କରିଅଛନ୍ତି । ୬୧ ।

ହେ ମହାମତେ । ଧର୍ମ, ସତ୍ୟ, ବୃତ୍ତ, ବଳ ଏବଂ ଆମ୍ଭେ ଆମ୍ଭମାନଙ୍କ ସମସ୍ତଙ୍କର ଶୀଳ ମୂଳ ଅଟନ୍ତି । ଏଥିରେ ସଂଶୟ ନାହିଁ ।୬୨। ଭୀଷ୍ମ କହିଲେ—ହେ ଯୁଧିଷ୍ଠିର ! ଏହାପରେ କହି ଲକ୍ଷ୍ମୀ ଓ ସତ୍ୟ ପ୍ରଭୃତି ସମସ୍ତେ ଗମନ କରିଥିଲେ । ଦୁର୍ଯ୍ୟୋଧନ ପୁନର୍ବାର ପିତାଙ୍କୁ କହିଲେ—ହେ କୌରବନନ୍ଦନ ! ଶୀଳର ବୃତ୍ତାନ୍ତ ବିଦିତ ହେବାକୁ ଅଭିଳାଷ କରିଅଛୁଁ । ଯଦ୍ଦ୍ୱାରା ଶୀଳତା ଲାଭ କରିପାରିବୁଁ, ଆପଣ ସେହି ଉପାୟ କହନ୍ତୁ । ୬୪ ।

ଧୃତରାଷ୍ଟ୍ର କହିଲେ—ସେହି ଉପାୟ ପୂର୍ବେ ମହାନୁଭବ ପ୍ରହ୍ଲାଦଙ୍କ କର୍ତ୍ତୃକ ଉଦ୍ଦିଷ୍ଟ ହୋଇଅଛି । ହେ ନରେଶ୍ୱର ! ସମ୍ପ୍ରତି ଶୀଳ-ପ୍ରାପ୍ତି ବିଷୟ ସଂକ୍ଷେପରେ କହୁଅଛୁଁ, ଶ୍ରବଣ କର ।୬୫। ବାକ୍ୟ, ମନ ଓ କର୍ମଦ୍ୱାରା ସମସ୍ତଭୂତଙ୍କ ପ୍ରତି ଅନିଷ୍ଟାଚରଣ ନ କରିବା, ଅନୁଗ୍ରହ ପ୍ରକାଶ ଏବଂ ଦାନ କରିବା, ଶୀଳମଧ୍ୟରେ ପ୍ରଶସ୍ତ ଅଟେ ।୬୬। ଆପଣଙ୍କ କର୍ମ କିମ୍ବା ପୌରୁଷ ଯାହାକି ଅନ୍ୟର ହିତକର ନ ହୁଏ, ଏବଂ ଯଦ୍ଦ୍ୱାରା

ଅନ୍ୟଠାରୁ ଲକ୍ଷିତ ହେବାକୁ ହୁଏ, ତାହା କୌଣସି ପ୍ରକାରରେ କର୍ତ୍ତବ୍ୟ ନୁହେଁ । ୬୭ । ଯଦ୍ଦ୍ୱାରା ସଭାମଧ୍ୟରେ ଶ୍ଳାଘନୀୟ ହୋଇପାରିବ, ସତତ ସେହି କାର୍ଯ୍ୟ ଅନୁଷ୍ଠାନ କରିବ । ହେ କୁରୁସତ୍ତମ ! ତୁମ୍ଭଙ୍କୁ ସଂକ୍ଷେପରେ ଶୀଳ ବିଷୟ କହିଲି । ୬୮ ।

ହେ ନୃପତେ ! ଶୀଳହୀନ ମାନବ ଯଦି କଦାଚିତ ଶ୍ରୀ ସମ୍ପନ୍ନ ହୁଅନ୍ତି, ତଥାପି ସେମାନେ ଚିରକାଳ ସେହି ଶ୍ରୀକୁ ଭୋଗ କରିବାରେ ସମର୍ଥ ଏବଂ ବଦ୍ଧମୂଳ ହୁଅନ୍ତି ନାହିଁ । ୬୯ । ଧୃତରାଷ୍ଟ୍ର କହିଲେ—ହେ ପୁତ୍ର ! ହେ ତାତ ! ଯଦି ଯୁଧିଷ୍ଠିରଙ୍କ ଅପେକ୍ଷା ଅଧିକତର ଐଶ୍ୱର୍ଯ୍ୟଲାଭ କରିବାକୁ ଅଭିଳାଷ କର, ତେବେ ଏହା ଯଥାର୍ଥରୂପରେ ଜାଣି ଶୀଳବାନ୍ ହୁଅ । ଭୀଷ୍ମ କହିଲେ—ନରାଧିପତି ଧୃତରାଷ୍ଟ୍ର ନିଜପୁତ୍ର ଦୁର୍ଯ୍ୟୋଧନକୁ ଏହିପରି କହିଥିଲେ । ହେ କୌନ୍ତେୟ ! ତୁମ୍ଭେ ଏହିପରି ଆଚରଣକର ଅବଶ୍ୟ ଏହାର ଫଳପ୍ରାପ୍ତ ହେବ । ୭୧ ।

## ଅଧ୍ୟାୟ—୧୨୫

ଯୁଧିଷ୍ଠିର ବୋଇଲେ—ହେ ପିତାମହ ! ପୁରୁଷ ପକ୍ଷରେ ଶୀଳ ପ୍ରଧାନ ଅଟେ । ଏହା ତ ଆପଣ କୀର୍ତ୍ତନ କଲେ । କିନ୍ତୁ ଆଶା କି ପ୍ରକାରେ ଉତ୍ପନ୍ନ ହୋଇଅଛି ଏବଂ ସେହି ଆଶା କିଏ ? ତାହା ଆପଣ ଆମ୍ଭଠାରେ କୀର୍ତ୍ତନ କରନ୍ତୁ । ୧ ।

ହେ ପିତାମହ ! ଏ ବିଷୟରେ ଅତିଶୟ ସଂଶୟ ଜନ୍ମିଅଛି । ହେ ପରପୁରଞ୍ଜୟ ! ଆପଣଙ୍କ ଭିନ୍ନ ଏହି ସଂଶୟର ଛେଦନକର୍ତ୍ତା ଅନ୍ୟ କେହି ନାହିଁ । ୨ । ହେ ପିତାମହ ! ଯୁଦ୍ଧ ଉପସ୍ଥିତ ହେଲେ ମଧ୍ୟ ବିନାଯୁଦ୍ଧରେ ଦୁର୍ଯ୍ୟୋଧନ ରାଜ୍ୟାର୍ଦ୍ଧ ପ୍ରଦାନ କରିବ, ତାହାପ୍ରତି ଆମ୍ଭର ଏହି ମହତୀ ଆଶା ଥିଲା । ୩ । ପୁରୁଷ ମାନବର ସୁମହତୀ ସୁ ଆଶା ଜନ୍ମେ । ସେହି ଆଶା ବିନଷ୍ଟ ହେଲେ ଦୁଃଖୀଙ୍କର ମୃତ୍ୟୁ ହୁଏ, ଏଥିରେ ସଂଶୟ ନାହିଁ । ୪ ।

ହେ ରାଜେନ୍ଦ୍ର ! ସେହି ଦୁରାତ୍ମା ଧାର୍ତ୍ତରାଷ୍ଟ୍ର ଆମ୍ଭଙ୍କୁ ଦୁର୍ବୁଦ୍ଧି ଓ ହତାଶ କରିଅଛି । ଆମ୍ଭର ମନ୍ଦାତ୍ମା ତାକୁ ଅବଲୋକନ କରନ୍ତୁ । ୫ । ଅମ୍ଭେ ବୃକ୍ଷ ସମନ୍ୱିତ ଶୈଳ ଅପେକ୍ଷା ଆଶାକୁ ମହତ୍ତର ବିବେଚନା

କରୁଁ । ହେ ରାଜନ୍ ! ଆଶା ଆକାଶ ଅପେକ୍ଷା ଅପ୍ରମେୟ ଅଟେ । ୬ । ହେ କୁରୁଶ୍ରେଷ୍ଠ ! ଏହି ଆଶା ଅତିକ୍ରମଣୀୟ ଏବଂ ଏକାନ୍ତ ଦୁର୍ଲଭ ଅଟେ । ଦୁର୍ଲଭତ୍ୱ ହେତୁରୁ ଅନ୍ୟ କୌଣସି ବିଷୟ ଏତଦପେକ୍ଷା ଦୁର୍ଲଭ ଦେଖୁନାହୁଁ । ୭ ।

ଭୀଷ୍ମ କହିଲେ—ହେ ଯୁଧିଷ୍ଠିର ! ଏ ବିଷୟରେ ଆମ୍ଭେ ତୁମ୍ଭ-ଠାରେ ସୁମିତ୍ର ଓ ଋଷଭର ବୃତ୍ତାନ୍ତ ଘଟିତ ଗୋଟିଏ ଇତିହାସ ବର୍ଣ୍ଣନ କରୁଅଛୁଁ । ଶ୍ରବଣ କର । ୮ । ହୈହୟ ବଂଶୀୟ ସୁମିତ୍ର ନାମକ ରାଜର୍ଷି ମୃଗୟା ଗମନ ପୂର୍ବକ ନତପର୍ବ ବାଣଦ୍ୱାରା ଗୋଟିଏ ମୃଗକୁ ବିଦ୍ଧକରି ବନ ମଧ୍ୟରେ ବିଚରଣ କରୁଥିଲେ । ୯ । ଅପରିମିତ ବିକ୍ରମଶୀଳ ସେହି ମୃଗ ବାଣବିଦ୍ଧ ହୋଇ ଗମନ କଲା । ରାଜା ମଧ୍ୟ ବଳପୂର୍ବକ ଅବଲମ୍ବରେ ସେହି ମୃଗୟା ଯୂଥପତିର ଅନୁସରଣ କଲେ । ୧୦ ।

ହେ ରାଜେନ୍ଦ୍ର ! ତଦନନ୍ତର ସେହି ଆଶୁଗାମୀ କୁରଙ୍ଗ ମୁହୂର୍ତ୍ତ ମଧ୍ୟରେ ନିମ୍ନସ୍ଥଳ ଓ ସମପଥରେ ଧାବିତ ହେଲା । ୧୧ । ପରିଶେଷରେ ସେହି ତନୁବାନ୍ ନୃପତି ଧନୁ ଓ ଖଡ଼୍ଗ ଧାରଣ ପୂର୍ବକ ଯୌବନ ବଳବଶତଃ ବିଚରଣ କରି ନଦ, ନଦୀ, ପଲ୍ୱଳ ଓ କାନନ ଅତିକ୍ରମ କରି ଏକାକୀ ବନଚର ହୋଇ ଭ୍ରମଣ କଲେ । ୧୩ । ସେହି ବେଗବାନ୍ ମୃଗ ଇଚ୍ଛାନୁସାରେ ନୃପତିଙ୍କ ନିକଟକୁ ଆସି ପୁନର୍ବାର ଅତିବେଗରେ ଦୂରକୁ ଗମନ କଲା । ୧୪ । ଏହି ସମୟରେ ସେହି ମୃଗ ନରପତିଙ୍କର ଭୂରିଭୂରି ଶର ନିପାତ ସହ୍ୟକରି ମଧ୍ୟ ବାରମ୍ବାର ତାଙ୍କ ସମୀପକୁ ଆଗମନ କରିବାରୁ ବୋଧ ହେଲା ଯେ, ସେ ନୃପତିଙ୍କ ସହିତ କ୍ରୀଡ଼ା କରୁଅଛି । ଏହି ପ୍ରକାରେ ମୃଗ ବାରମ୍ବାର ନୃପତିଙ୍କୁ ଅତିକ୍ରମ ଓ ତାହାଙ୍କ ସମୀପକୁ ପୁନଃ ପୁନଃ ଆଗମନ କରିବାରୁ ଅମିତ୍ର କର୍ଷଣ ସୁମିତ୍ର କ୍ରୁଦ୍ଧହୋଇ ତାହାର ମର୍ମ୍ମଚ୍ଛେଦକର ଘୋରତର ତୀକ୍ଷ୍ଣ ଶର ସନ୍ଧାନପୂର୍ବକ ନିକ୍ଷେପ -କଲେ । ୧୭ ।

ଅନନ୍ତର ମୃଗ ଯୂଥପତି ଦୁଇକୋଶ ଦୂରରେ ହାସ୍ୟପୂର୍ବକ ନୃପତିଙ୍କର ବାଣପଥକୁ ପରିତ୍ୟାଗ କରି ଅବସ୍ଥାନ କଲା ।୧୮। ଜ୍ୱଳିତ-ତେଜଃ ସମ୍ପନ୍ନ ଶର ଧରାତଳରେ ପତିତ ହୁଅନ୍ତେ, ମୃଗ ମହାରଣ୍ୟ ମଧ୍ୟକୁ ପ୍ରବେଶକଲା । ରାଜାମଧ୍ୟ ଧାବିତ ହେଲେ । ୧୯ ।

## ଅଧ୍ୟାୟ—୧୨୭

ଭୀଷ୍ମ କହିଲେ—ଅନନ୍ତର ନୃପତି ମହାରଣ୍ୟ ମଧ୍ୟରେ ପ୍ରବେଶ କରି ତାପସଗଣଙ୍କ ଆଶ୍ରମରେ ଉପନୀତ ହେଲେ, ଏବଂ ଶ୍ରାନ୍ତ ହୋଇ ତତ୍କାଳରେ ସେଠାରେ ଉପବେଶନ କଲେ ।୧। ଋଷିଗଣ ସେହି ଧନୁର୍ଦ୍ଧାରୀ ଭୂପାଳଙ୍କୁ ଶ୍ରାନ୍ତି ଓ କ୍ଷୁଧିତ ଦେଖି ସମସ୍ତେ ସେହି ସ୍ଥାନରେ ସଙ୍ଗତ ହୋଇ ତାହାଙ୍କର ଯଥାବିଧି ସତ୍କାର କଲେ ।୨। ନରପତି ସେହି ଋଷିଗଣଙ୍କ କର୍ତ୍ତୃକ ପ୍ରଦତ୍ତ ସତ୍କାର ଗ୍ରହଣ କରି ସମସ୍ତ ତାପସଗଣଙ୍କୁ ତପୋବୃଦ୍ଧି ବିଷୟ ପ୍ରଶ୍ନ କଲେ ।୩। ତପୋଧନ ଋଷିମାନେ ନୃପତିଙ୍କର ବଚନ ଗ୍ରହଣ ପୂର୍ବକ ସେହି ନରଶ୍ରେଷ୍ଠଙ୍କୁ ଆଗମନ ପ୍ରୟୋଜନ ଜାଣିବାର୍ଥ କହିଲେ—ହେ ନରେଶ୍ୱର ! ଆପଣ ଧନୁର୍ବାଣ ଓ ଅସିଧାରଣପୂର୍ବକ ପଦାଗ୍ରତ ହୋଇ କି ସୁଖ ନିମିତ୍ତ ଏହି ତପୋବନକୁ ଆଗମନ କରି-ଅଛନ୍ତି ? ।୪। ହେ ମାନଦ ! ଆପଣ କେଉଁଠାରୁ ଆଗମନ କରି ଅଛନ୍ତି, ତାହା ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ, ଆପଣ କେଉଁ ବଂଶରୁ ସମୁତ୍ପନ୍ନ ହୋଇ ଅଛନ୍ତି ଏବଂ ଆପଣଙ୍କର ନାମ କଣ ? ତାହା ଆମ୍ଭମାନଙ୍କଠାରେ କହନ୍ତୁ ।୫।

ହେ ପୁରୁଷଶ୍ରେଷ୍ଠ ଭାରତ ! ତତ୍ପରେ ସେହି ନୃପତି ସମସ୍ତ ଦ୍ୱିଜଗଣଙ୍କୁ ଯଥାନ୍ୟାୟରେ ନିଜର ପରିଚୟ ପ୍ରଦାନାର୍ଥ କହିଲେ । ଆମ୍ଭେ ହୈହୟ ବଂଶରେ ଜନ୍ମ ପରିଗ୍ରହ କରିଅଛୁଁ । ମିତ୍ରଗଣଙ୍କର ଆନନ୍ଦ ବର୍ଦ୍ଧନ ସୁମିତ୍ରନାମରେ ବିଖ୍ୟାତ ଅଟୁଁ । ଆମ୍ଭେ ବିପୁଳ ବଳଦ୍ୱାରା ପରିରକ୍ଷିତ ଏବଂ ଅମାତ୍ୟ ଓ ଅନ୍ତଃପୁର ବାସିନୀମାନଙ୍କ କର୍ତ୍ତୃକ ପରିବୃତ୍ତ ହୋଇ ଶର ନିକର ଦ୍ୱାରା ସହସ୍ର ସହସ୍ର ମୃଗଯୂଥ ହନନ ପୂର୍ବକ ବିଚରଣ କରୁଅଛୁଁ । କୌଣସି ମୃଗ ମତ୍କର୍ତ୍ତୃକ ଶରବିଦ୍ଧ ହୋଇ ଲେଂଜ ସହିତ ଧାବିତ ହେଉଅଛି ।୯। ଆମ୍ଭେ ସେହି ଧାବମାନ ମୃଗର ଅନୁଧାବନ ପୂର୍ବକ ଯଦୃଚ୍ଛାକ୍ରମେ ଏହି କାନନରେ ଉପନୀତ ହୋଇଅଛୁଁ । ବର୍ତ୍ତମାନ ନଷ୍ଟଶ୍ରୀ ହତାଶ ଓ ଶ୍ରମକର୍ଷିତ ହୋଇ ଆପଣମାନଙ୍କ ନିକଟକୁ ଆସିଅଛୁଁ । ଆମ୍ଭେ ଶ୍ରମକାତର, ହତାଶ ଓ ଭ୍ରଷ୍ଟ ଲକ୍ଷଣ ହୋଇ ଆପଣମାନଙ୍କ ଆଶ୍ରମକୁ ଆଗମନ କଲୁଁ । ଏହା ଅପେକ୍ଷା ଆମ୍ଭର ଅନ୍ୟକି ଦୁଃଖ ଅଛି ।୧୧।

ହେ ତପୋଧନ ଗଣ ! ଆମ୍ଭର ମୃଗ ବିଷୟିଣୀ ଆଶା ବିହିତ ନୋହିବାରୁ ଯାଦୃଶ ତୀବ୍ର ଦୁଃଖ ହୋଇଅଛି, ରାଜଚିହ୍ନ ପରିତ୍ୟାଗ ଓ ନଗର ପରିହାର ତାଦୃଶ ଦୁଃଖକର ନୁହେ ।୧୨। ଅତ୍ୟୁନ୍ନତ ମହାଶୈଳ ହିମାଳୟ ଅତି ବିଶାଳ ମହୋଦଧି ସମୁଦ୍ର ଓ ଆକାଶର ଅନ୍ତରାଳ ମହତ୍ତ୍ୱ ଅନୁସାରେ ଆଶାସଦୃଶ ହୋଇପାରିବ ନାହିଁ ।୧୩। ଅତଏବ ହେ ତାପସ-ପ୍ରବର ଗଣ ! ଆମ୍ଭେ ଆଶାର ଅନ୍ତ ସୁଦ୍ଧା ଦେଖି ପାରୁନାହୁଁ । ଆପଣମାନେ ସର୍ବଜ୍ଞ ଓ ତପୋଧନ ଅଟନ୍ତି । ସମସ୍ତ ଆପଣମାନଙ୍କୁ ବିଦିତ ଅଛି ।୧୪। ଆପଣମାନେ ମହୈଶ୍ୱର୍ଯ୍ୟଶାଳୀ, ଏହି ହେତୁରୁ ଆପଣମାନଙ୍କୁ ସଂଶୟର ବିଷୟ ପ୍ରଶ୍ନ କରୁଅଛୁଁ । ଆଶାବାନ୍ ପୁରୁଷ ଓ ଅନ୍ତରୀକ୍ଷ ଏହି ଉଭୟ-ମଧ୍ୟରେ ସଂସାରରେ ମହତ୍ତ୍ୱ ବିଶତଃ କିଏ ଶ୍ରେଷ୍ଠତର, ତାହା ଆପଣମାନଙ୍କୁ ପ୍ରତିଭାତ ହୁଏ, ଆମ୍ଭେ ଏହାହିଁ ଶ୍ରବଣ କରିବାକୁ ଅଭିଳାଷ କରୁଅଛୁଁ । ଇହଲୋକରେ ଶ୍ରବଣ କରିବାକୁ ଦୁର୍ଲଭ କଣ ? ।୧୬। ଏହି ବିଷୟ ଯଦି ଆପଣମାନଙ୍କର ଗୋପନୀୟ ନ ହୁଏ, ତେବେ ଅନତିକାଳରେ ଅବିଳମ୍ବରେ କୀର୍ତ୍ତନ କରନ୍ତୁ ।

ହେ ଦ୍ୱିଜସତ୍ତମ ଗଣ ! ଆପଣମାନଙ୍କର ଗୋପନୀୟ ବିଷୟ ଶ୍ରବଣ କରିବାକୁ ଇଚ୍ଛା କରୁନାହୁଁ ।୧୭। ଯଦି ଆପଣମାନଙ୍କ ତପସ୍ୟାର ବ୍ୟାଘାତ କିମ୍ବା ତପସ୍ୟାରୁ ବିରତ ହୁଏ, ତେବେ ଆମ୍ଭେ ଆପଣମାନଙ୍କୁ ଜିଜ୍ଞାସା କରିବାର ଇଚ୍ଛା କରୁନାହୁଁ । ଆମ୍ଭେ ଯାହା ପ୍ରଶ୍ନ କଲୁଁ, କଥା ପ୍ରସଙ୍ଗରେ ଯଦି ଏହାର ଉତ୍ତର ଦେବେ, ତାହାହେଲେ କୀର୍ତ୍ତନ କରନ୍ତୁ ।୧୮। ଆଶାର କାରଣ ଓ ସାମର୍ଥ୍ୟ ଯଥାର୍ଥ ଭାବରେ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ ; ଆପଣମାନେ ମଧ୍ୟ ତପୋନିରତ ଅଟନ୍ତି ଅତଏବ ସମସ୍ତେ ସମନ୍ୱିତ ହୋଇ ଏହି ବିଷୟକୁ କୀର୍ତ୍ତନ କରନ୍ତୁ । ୧୯ ।

## ଅଧ୍ୟାୟ—୧୨୭

ଭୀଷ୍ମ କହିଲେ—ତଦନନ୍ତର ସେହି ସବୁ ଋଷିଗଣଙ୍କ ମଧ୍ୟରେ ଋଷିସତ୍ତମ ଋଷଭନାମକ ବ୍ରହ୍ମର୍ଷି ବିସ୍ମୟାପନ୍ନ ହୋଇ ଏହି କଥା କହିଲେ,—ହେ ପ୍ରଭୁ ନୃପବର ! ପୂର୍ବକାଳରେ ଆମ୍ଭେ ତୀର୍ଥସବୁ ବିଚରଣକରି ଦିବ୍ୟ ନରନାରାୟଣାଶ୍ରମରେ ଉପସ୍ଥିତ ହୋଇଥିଲୁଁ । ୨ । ଯେଉଁସ୍ଥାନରେ ସେହି ରମଣୀୟ ବଦରୀ ଓ ଆକାଶ ଗଙ୍ଗା ସମ୍ବନ୍ଧୀ ହ୍ରଦ

ବିଦ୍ୟମାନ ରହିଅଛି ଏବଂ ଅଶ୍ୱଶିର ଶାଶ୍ୱତ ବେଦପାଠ କରୁଅଛନ୍ତି, ପୂର୍ବକାଳରେ ଆମ୍ଭେ ସେହି ସରୋବରରେ ପିତୃଗଣ ଓ ଦେବଗଣଙ୍କର ବିଧିବତ୍ ତର୍ପଣ କରି ତତ୍‌କ୍ଷଣାତ୍ ଆଶ୍ରମରେ ଉପନୀତ ହେଲୁଁ ।୪। ଯେଉଁସ୍ଥାନରେ ସେହି ନରନାରାୟଣ ଋଷି ନିୟତ ଅବସ୍ଥାନ କରନ୍ତି, ତାହାର ଅଦୂରରେ ବାସ କରିବା ନିମିତ୍ତ କୌଣସି ଆଶ୍ରମକୁ ଗମନ କଲୁଁ ।୫। ସେଠାରେ ଚୀରଜିନଧାରୀ କୃଶ ଓ ଅତିଶୟ ଉଚ୍ଚ ତନୁନାମକ ତପୋଧନ ଋଷିଙ୍କୁ ଆଗମନ କରିବାର ଦେଖିଲୁଁ ।୬।

ହେ ମହାବାହୋ ! ରାଜର୍ଷେ ! ତାହାଙ୍କର ଶରୀର ଅନ୍ୟମାନବ ଅପେକ୍ଷା ଅଷ୍ଟଗୁଣ ଉଚ୍ଚ ଅଟେ । କିନ୍ତୁ ତାହାଙ୍କର କୃଶତା ଯେପରି, ସେପରି କୃଶତା କେଉଁଠାରେ ସୁଦ୍ଧା ଦେଖାଯାଇ ନାହିଁ ।୭। ହେ ରାଜେନ୍ଦ୍ର ! ତାହାଙ୍କର ଶରୀର କନିଷ୍ଠାଙ୍ଗୁଳି ସଦୃଶ, ଗ୍ରୀବା, ବାହୁ ଯୁଗଳ, ପଦଦ୍ୱୟ ଓ କେଶ ସମୁଦାୟ ଦେଖିବାକୁ ଅଦ୍ଭୁତ ଅଟେ ।୮। ମସ୍ତକ ଶରୀର ଅନୁରୂପ ଅଟେ । କର୍ଣ୍ଣଯୁଗଳ ଓ ନେତ୍ରଦ୍ୱୟ ତତ୍ସଦୃଶ ଅଟେ । ହେ ନୃପସତ୍ତମ ! ତାହାଙ୍କର ବାକ୍ୟ ଓ ଚେଷ୍ଟା ସାମାନ୍ୟ ଅଟେ ।୯। ଆମ୍ଭେ ସେହି କୃଶ ବିପ୍ରଙ୍କୁ ଦର୍ଶନକରି ଅତିଶୟ ଭୀତ ଓ ଦୁର୍ମନା ହେଲୁଁ । ଅନନ୍ତର ତାହାଙ୍କର ଚରଣଦ୍ୱୟରେ ଅଭିବାଦନ ପୂର୍ବକ କୃତାଞ୍ଜଳି ହୋଇ ତାହାଙ୍କ ସମ୍ମୁଖରେ ଅବସ୍ଥିତ ହେଲୁଁ ।୧୦।

ହେ ନରର୍ଷଭ ! ନାମ, ଗୋତ୍ର ଓ ପିତାଙ୍କର ନାମ ନିବେଦନ କରି ତଦୋଦିଷ୍ଟ ଆସନକୁ ଗମନପୂର୍ବକ ଶନୈଃ ଶନୈଃ ଉପବେଶନ କଲୁଁ ।୧୧। ହେ ମହାରାଜ ! ତଦନନ୍ତର ସେହି ଧାର୍ମିକପ୍ରବର ମହର୍ଷି ତନୁ ଋଷିମାନଙ୍କ ମଧ୍ୟରେ ଧର୍ମାର୍ଥଯୁକ୍ତ କଥା କହିଲେ ।୧୨। ସେ ଧର୍ମାର୍ଥଯୁକ୍ତ କଥା କହିବାକୁ ଆରମ୍ଭ କରନ୍ତେ ରାଜୀବଲୋଚନ କୌଣସି ନୃପତି ସସୈନ୍ୟରେ ଅନ୍ତଃପୁର ଗୃହିଣୀଗଣଙ୍କ ସହିତ ବେଗବାନ୍ ହୟଚରଣଦ୍ୱାରା ସେହିଠାରେ ଉପନୀତ ହେଲେ ।୧୩।

ଅରଣ୍ୟ ମଧ୍ୟରେ ପୁତ୍ର ନଷ୍ଟ ହୋଇଅଛି, ଏହା ସ୍ମରଣ ପୂର୍ବକ ଅତିଶୟ ଦୁର୍ମନା ହୋଇ ଭୂରିଦ୍ୟୁମ୍ନଙ୍କ ପିତା ମହାଯଶା ଶ୍ରୀମାନ୍ ବୀରଦ୍ୟୁମ୍ନ ନୃପତି ପୂର୍ବକାଳରେ "ଏହିଠାରେ ସେହି ପୁତ୍ରକୁ ପାଇବୁଁ" ଏହିପରି ଆଶାଯୁକ୍ତ ହୋଇ ଏହି ବନରେ ବିଚରଣ କଲେ ଏବଂ "ଆମ୍ଭର ସେହି ପରମ ଧାର୍ମିକ ପୁତ୍ରକୁ ଦେଖିବା ଦୁର୍ଲ୍ଲଭ; ଏକମାତ୍ର ପୁତ୍ର

ମହାରଣ୍ୟ ମଧ୍ୟରେ ଅନୁଦ୍ଦିଷ୍ଟ ହେଲ” ଏହିପରି କଥା ବାରମ୍ବାର ଚେଁଚେଇ-ଲେ କହିଲେ । ୧୬ । ଆମ୍ଭର ତାହାକୁ ଦେଖିବା ଦୁର୍ଲ୍ଲଭ ଅଟେ । କିନ୍ତୁ ତଥାପି ତାହାକୁ ଦେଖିବା ନିମିତ୍ତ ଆମ୍ଭର ମହତୀ ଆଶା ହେଉଅଛି । ସେହି ଆଶାରେ ଆମ୍ଭର ସମଗ୍ର ଶରୀର ପରିବୃତ୍ତ ହେବାରୁ ଅତ୍ୟନ୍ତ ମୁମୂର୍ଷୁ ହୋଇଅଛୁଁ ଏଥିରେ ସଂଶୟ ନାହିଁ । ୧୭ । ମୁନିଶ୍ରେଷ୍ଠ ଭଗବାନ ତନୁ ନୃପତିଙ୍କର ଏହି କଥା ଶ୍ରବଣ ପୂର୍ବ୍ବକ ଅବାକ୍ ଶିର ଓ ଚିନ୍ତାପରାୟଣ ହୋଇ ମୁହୂର୍ତ୍ତକାଳ ଅବସ୍ଥିତ ରହିଲେ । ୧୮ । ନୃପତି ତାହାଙ୍କୁ ଚିନ୍ତିତ ଦେଖି ଅତିଶୟ ଦୁର୍ମନା ହେଲେ ଏବଂ ଦୀନ ଚିତ୍ତରେ ବାରମ୍ବାର ମନ୍ଦମନ୍ଦ ସ୍ୱରରେ କହିଲେ—ହେ ମହର୍ଷେ । ଦୁର୍ଲ୍ଲଭ କଣ ଏବଂ ଆଶା ଅପେକ୍ଷା ମହତ୍ କଣ ? ଯଦି ଏହା ଆପଣଙ୍କଠାରେ ଗୋପନୀୟ ହୁଏ, ତାହାହେଲେ ଭଗବାନ । ଏହା କୀର୍ତ୍ତନ କରନ୍ତୁ । ୨୦ । ମୁନି କହିଲେ—ପୂର୍ବ୍ବେ ମହର୍ଷି ଭଗବାନ ଭୂରିଦ୍ୟୁମ୍ନଙ୍କର ସେହି ପୁତ୍ରଙ୍କ କର୍ତ୍ତୃକ ବାଳିଶ ବୁଦ୍ଧି ଓ ଆତ୍ମମନ୍ଦ ଭାଗ୍ୟ ବଶତଃ ଵିମାନିତ ହୋଇଥିଲେ । ୨୧ ।

ହେ ରାଜନ । ମହର୍ଷି ଗୋଟିଏ କାଞ୍ଚନ କଳସ ଓ ବଲ୍କଳ ପ୍ରାର୍ଥନା କରିବାରୁ, ସେ ଅବଜ୍ଞା ପୂର୍ବ୍ବକ ତାହା ସମ୍ପାଦନ କରି ନାହାନ୍ତି । ସେହି ରାଜର୍ଷି ନିର୍ବ୍ବିଣ୍ଣ ଓ ନିରାଶ ହୋଇଥିଲେ । ହେ ନରସତ୍ତମ । ସେହି ଧର୍ମ୍ମାତ୍ମା ଏହିପରି ଉକ୍ତ ହୋଇ ସେହି ଲୋକପୂଜିତ ଋଷିଙ୍କୁ ଅଭିବାଦନ ପୂର୍ବ୍ବକ ତୁମ୍ଭ ପ୍ରାୟ ଶ୍ରାନ୍ତ ଓ ଅବସନ୍ନ ହୋଇଥିଲେ । ୨୩ । ତଦନନ୍ତର ମହର୍ଷି ପାଦ୍ୟ ଓ ଅର୍ଘ୍ୟ ଆନୟନପୂର୍ବ୍ବକ ଆରଣ୍ୟବିଧି ଅନୁସାରେ ରାଜାଙ୍କୁ ତତ୍ସମୁଦାୟ ନିବେଦନ କଲେ । ୨୪ । ହେ ନରଶ୍ରେଷ୍ଠ । ତଦନନ୍ତର ସପ୍ତର୍ଷିଗଣ ଯେପରି ଧ୍ରୁବଙ୍କୁ ପରିବେଷ୍ଟନ କରନ୍ତି, ତଦ୍ରୂପ ସମୁଦାୟ ମୁନିମାନେ ସେହି ନରବରଙ୍କୁ ପରିବେଷ୍ଟନ ପୂର୍ବ୍ବକ ଉପବିଷ୍ଟ ହେଲେ ଏବଂ ସେମାନେ ସେହି ଅପରାଜିତ ନରପାଳଙ୍କୁ ଆଶ୍ରମକୁ ଆଗମନ କରିବାର ପ୍ରୟୋଜନ ପ୍ରଶ୍ନ କଲେ । ୨୫ ।

---

## ଅଧ୍ୟାୟ—୧୨୮

ରାଜା କହିଲେ—ଅମ୍ଭେ ବୀରଦ୍ୟୁମ୍ନ ନାମକ ନୃପତି, ଚତୁର୍ଦ୍ଦିଗରେ ବିଶ୍ରୁତ ଅଛୁଁ । ଅମ୍ଭର ପୁତ୍ର ଭୂରିଦ୍ୟୁମ୍ନ ନଷ୍ଟ ହୋଇଅଛି । ତାହାକୁ ଅନ୍ୱେଷଣ କରିବା ନିମିତ୍ତ ଅମ୍ଭେ ଏହି ବନକୁ ଆଗମନ କରିଅଛୁଁ । ୧ । ହେ ଅନଘ ବିପ୍ରବର ! ଅମ୍ଭର ସେ ଏକମାତ୍ର ପୁତ୍ର ଅଟେ । ସେ ପୁଣି ବାଳକ ଅଟେ, ତାହାକୁ ଏହି ବନରେ ନପାଇ ବିଚରଣ କରୁଅଛୁଁ । ୨ ।

ଋଷଭ କହିଲେ—ରାଜା ଏହିକଥା କହନ୍ତେ, ମୁନି ତତ୍କାଳରେ ଅଧୋବଦନ ହୋଇ ମୌନାବଲମ୍ବନ ପୂର୍ବକ ଅବସ୍ଥାନ କଲେ, ନୃପତିଙ୍କୁ କିଛି ପ୍ରତ୍ୟୁତ୍ତର କଲେ ନାହିଁ । ୩ । ସେହି ବ୍ରାହ୍ମଣ ପୂର୍ବେ ନୃପତିଙ୍କ କର୍ତ୍ତୃକ ସମ୍ମାନିତ ହୋଇ ନଥିଲେ । ହେ ରାଜେନ୍ଦ୍ର ! ସେ ଆଶା ଛେଦ ନିମିତ୍ତ ଦୀର୍ଘ ତପସ୍ୟା ଅବଲମ୍ବନ କରିଥିଲେ । ୪ । ଅମ୍ଭେ କୌଣସି ପ୍ରକାରେ ନୃପତିମାନଙ୍କ ଠାରୁ ପ୍ରତିଗ୍ରହ ଓ ଅନ୍ୟ କୌଣସି ଦାନ ଗ୍ରହଣ କରିବୁ ନାହିଁ । ତତ୍କାଳରେ ଏହିପରି ବୁଦ୍ଧି କରି ଅବସ୍ଥିତ ଥିଲେ । ୫ । ଆଶା ସ୍ଥିରତର ହୋଇ ପୁରୁଷକୁ ଏବଂ ବାଳକକୁ ମଧ୍ୟ ଉଦ୍‌ଯୋଗଶାଳୀ କରେ, ଅତଏବ ଅମ୍ଭେ ସେହି ଆଶାକୁ ଦୂର କରିବୁଁ । ଏହା ମନେ ମନେ ସ୍ଥିର କରି ମୁନି ମୌନାବଲମ୍ବୀ ଥିଲେ । ବୀରଦ୍ୟୁମ୍ନ ନୃପତି ପୁନର୍ବାର ସେହି ମୁନିସତ୍ତମଙ୍କୁ ପ୍ରଶ୍ନ କଲେ । ୬ । ରାଜା କହିଲେ—ଆଶାର କୃଶତ୍ୱ କଣ ? ଏହି ଭୂମଣ୍ଡଳ ମଧ୍ୟରେ ଦୁର୍ଲଭ କଣ ? ଆପଣ ଏହାହିଁ କୀର୍ତ୍ତନ କରନ୍ତୁ, କାରଣ ଆପଣ ଧର୍ମ୍ମାର୍ଥ ଦର୍ଶନ କରି ଅଛନ୍ତି ।୭। ଋଷଭ କହିଲେ—ତଦନନ୍ତର ଭଗବାନ୍ ଦ୍ୱିଜଶ୍ରେଷ୍ଠ କୃଶତନୁ ପୂର୍ବ ବୃତ୍ତାନ୍ତ ସବୁ ସ୍ମରଣ ପୂର୍ବକ ନୃପତିଙ୍କୁ ତାହା ସ୍ମରଣ କରିବା ନିମିତ୍ତ କହିଲେ । ୮ । ଋଷି କହିଲେ—ହେ ବ୍ରହ୍ମନ୍ ! ଆଶା ବିଶିଷ୍ଟ ବ୍ୟକ୍ତି ସମାନ ଅନ୍ୟ କେହି କୃଶ ନାହାନ୍ତି । ଅଶାଗ୍ରସ୍ତ ବିଷୟର ଦୁର୍ଲଭତ୍ୱ ହେତୁରୁ ଅମ୍ଭେ ପାର୍ଥିବଗଣଙ୍କ ଠାରେ ପ୍ରାର୍ଥନା କରିଥିଲୁ । ୯ ।

ରାଜା କହିଲେ—ହେ ବ୍ରହ୍ମନ୍ ! ଆପଣଙ୍କର ବଚନାନୁସାରେ କୃଶ ଓ ଅକୃଶ ବିଷୟ ବୋଧ ହେଲା ଏବଂ ଆଶା ଗୃହୀତ ବିଷୟର ଦୁର୍ଲଭତ୍ୱ ବେଦବାକ୍ୟବତ୍ ପ୍ରତୀତ ହେଲା । ୧୦ । ହେ ମହାପ୍ରାଜ୍ଞ ମୁନି-ଶ୍ରେଷ୍ଠ ! ଅମ୍ଭର ଅନ୍ତଃକରଣରେ ସଂଶୟ ଜନ୍ମି ଅଛି, ଅତଏବ ଅମ୍ଭେ

ସେହି ସଂଶୟର ବିଷୟକୁ ପ୍ରଶ୍ନ କରୁଅଛୁଁ । ଆପଣ ଯଥାତତ୍ତ୍ୱ କୀର୍ତ୍ତନ କରନ୍ତୁ । ୧୧ ।

ହେ ମୁନିସତ୍ତମ ! ଯଦି ଗୋପନୀୟ ନ ହୁଏ, ତେବେ ଆପଣଙ୍କ ଅପେକ୍ଷା କୃଶତର କଣ ଅଛି, ତାହା ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ ।୧୨। ଋଷି କହିଲେ—ହେ ତାତ ! ଯାଚକ ହୋଇ ସନ୍ତୁଷ୍ଟ ଥାଏ, ଏପରି ବ୍ୟକ୍ତି ଦୁର୍ଲଭ, କିମ୍ବା ନାହିଁ ବୋଲି କହିଲେ ହୁଏ ଏବଂ ଅର୍ଥିକୁ ଅବଜ୍ଞା କରେ ନାହିଁ । ଏପରି ବ୍ୟକ୍ତି ମଧ୍ୟ ଅତିଶୟ ଦୁର୍ଲଭ । ୧୩ । କେତେ ଥାଇ ଥାଇ ସୁଦ୍ଧା ସତ୍କାର କରି ପରର ଉପକାର କରେ ନାହିଁ । ଏବଂ ଯେଉଁ ଆଶା ସର୍ବଭୂତଙ୍କଠାରେ ଆସକ୍ତ ହୋଇଅଛି, ଆମ୍ଭେ ସେହି ଆଶାକୁ ଏକାନ୍ତ କୃଶ କରିଅଛୁଁ । କୃତଘ୍ନ ନୃଶଂସ, ଅଳସ ଓ ଅପକାରୀ ବ୍ୟକ୍ତିମାନେ ଯେଉଁ ଆଶାରେ ଆସକ୍ତ ହୋଇ ରହି ଅଛନ୍ତି, ଆମ୍ଭେ ସେହି ଆଶାକୁ ଏକାନ୍ତ କୃଶ କରିଅଛୁଁ ।୧୫। ଏକମାତ୍ର ପୁତ୍ରର ପିତା ପୁତ୍ର ନଷ୍ଟ କିମ୍ବା ପ୍ରୋଷିତ ହେଲେ, ତାହାର ବାର୍ତ୍ତା ଯେ ଜାଣେ ନାହିଁ, ଆମ୍ଭେ ସେହି ଆଶାକୁ ଏକାନ୍ତ କୃଶ କରିଅଛୁଁ । ୧୬ ।

ହେ ନରେନ୍ଦ୍ର ! ନାରୀମାନଙ୍କର ପ୍ରସବ କାଳରେ, ବୃଦ୍ଧମାନଙ୍କର ପୁତ୍ରୋତ୍ପାଦନ ସମୟରେ ଏବଂ ଧନୀମାନଙ୍କ ମନରେ ଯେଉଁ ଆଶା ଥାଏ, ଆମ୍ଭେ ସେହି ଆଶାକୁ ଏକାନ୍ତ କୃଶ କରିଅଛୁଁ । ପ୍ରଦାନକାଙ୍‌କ୍ଷିଣୀ କନ୍ୟାମାନଙ୍କର ଯୌବନକାଳ ଉପସ୍ଥିତ ହେଲେ ତତ୍ସଂକ୍ରାନ୍ତ କଥା ଶ୍ରବଣରେ ଯେଉଁ ଆଶା ଜନ୍ମେ, ଆମ୍ଭେ ସେହି ଆଶାକୁ ଏକାନ୍ତ କୃଶ କରିଅଛୁଁ । ୧୮ ।

ହେ ରାଜନ ! ଅନନ୍ତର ବୀରଦ୍ୟୁମ୍ନ ନୃପତି ଏହିପରି କଥା ଶ୍ରବଣ ପୂର୍ବକ ସପତ୍ନୀକ ହୋଇ ଦ୍ୱିଜଶ୍ରେଷ୍ଠଙ୍କର ଚରଣଦ୍ୱୟକୁ ମସ୍ତକ ଦ୍ୱାରା ସ୍ପର୍ଶ କରି ପ୍ରଣତ ହେଲେ । ୧୯ । ରାଜା କହିଲେ—ହେ ଭଗବନ୍ ! ଆମ୍ଭେ ଆପଣଙ୍କର ଅନୁଗ୍ରହ କାମନା କରିଅଛୁଁ । ଆମ୍ଭେ ନିଜ ପୁତ୍ର ସହିତ ମିଳନ କରିବାର ପ୍ରାର୍ଥନା କରୁଅଛୁଁ । ହେ ଦ୍ୱିଜସତ୍ତମ ! ସମ୍ପ୍ରତି ଆପଣ ଯାହା କହିଲେ, ତାହା ସତ୍ୟ ଅଟେ । ଏଥିରେ ସନ୍ଦେହ ନାହିଁ । ୨୦ । ଋଷି କହିଲେ ଧାର୍ମିକ ପ୍ରବର ଭଗବାନ୍ ତନୁ ହାସ୍ୟପୂର୍ବକ ତପୋବଳ ଏବଂ ବିଦ୍ୟାବଳ ଦ୍ୱାରା ସେହି ଅନୁଦ୍ଦିଷ୍ଟ ରାଜପୁତ୍ରକୁ ଆନୟନ କଲେ । ୨୧ ।

ସେ ରାଜପୁତ୍ରଙ୍କୁ ଆନୟନ ପୂର୍ବକ ନୃପତିଙ୍କୁ ତିରସ୍କାର କରି ନିଜେ ଯେଉଁ ଧର୍ମ ସ୍ୱରୂପ ତାହା ଦେଖାଇଲେ । ଅଦ୍ଭୁତ ଦର୍ଶନ ଦିବ୍ୟାତ୍ମା ପ୍ରଦର୍ଶନ ପୂର୍ବକ ନିଷ୍ପାପ ଓ କ୍ରୋଧହୀନ ହୋଇ ସନ୍ନିହିତ ବନ ମଧ୍ୟକୁ ଗମନ କଲେ । ୨୩ ।

ହେ ରାଜନ୍ ! ଆମ୍ଭେ ଏହା ଦେଖିଥିଲୁ ଏବଂ ଏହିସବୁ ବାକ୍ୟ ଶ୍ରବଣ କରିଥିଲୁ, ଆଶାକୁ ଅବଲମ୍ବରେ ବଦ୍ଧୁରତ କର, ତାହେଲେ ଏହା ଏକାନ୍ତ ଦୁର୍ବଳ ହେବ । ୨୪ । ଭୀଷ୍ମ କହିଲେ—ହେ ରାଜନ୍ ! ତତ୍କାଳରେ ସେହି ସୁମିତ୍ର ମହାତ୍ମା ଋଷଭଙ୍କ କର୍ତ୍ତୃକ ସେହିପରି କଥିତ ହୋଇ ଶୀଘ୍ର କୃଶତମ ଆଶା ପରିହାର କଲେ । ୨୫ । ହେ କୌନ୍ତେୟ ମହାରାଜ ! ତୁମ୍ଭେ ମଧ୍ୟ ଆମ୍ଭର ଏହି ବାଣୀ ଶ୍ରବଣ ପୂର୍ବକ ହିମବାନ ପର୍ବତ ପ୍ରାୟ ସ୍ଥିର ହୁଅ । ୨୬ । ହେ ମହାରାଜ ! ତୁମ୍ଭେ ପ୍ରଷ୍ଟା ଏବଂ ଶ୍ରୋତା; ଅତଏବ ତୁମ୍ଭେ ଆମ୍ଭର ମତ ଶ୍ରବଣ କର ଆପତ୍କାଳ ଉପସ୍ଥିତ ହେଲେ, ସନ୍ତାପଭାଜନ ହେବ ନାହିଁ । ୨୭ ।

## ଅଧ୍ୟାୟ—୧୨୯

ଯୁଧିଷ୍ଠିର କହିଲେ—ହେ ଭାରତ ! ଆପଣ ଧର୍ମକଥା କୀର୍ତ୍ତନ କରୁଥିବା ସମୟରେ ଆମ୍ଭେ ଆତ୍ମତୃପ୍ତ ହୋଇ ଯେଉଁପରି ତୃପ୍ତ ହେଉଁ, ଅମୃତ ଦ୍ୱାରା ସୁଦ୍ଧା ତାଦୃଶ ତୃପ୍ତ ହେଉନାହିଁ । ୧ । ଅତଏବ ହେ ପିତାମହ ! ଆପଣ ପୁନର୍ବାର ଧର୍ମକଥା କୀର୍ତ୍ତନ କରନ୍ତୁ । ଆମ୍ଭେ ଆପଣଙ୍କ କଥିତ ଧର୍ମାମୃତକୁ ପାନକରି କୌଣସି ମତେ ସୁଦ୍ଧା ତୃପ୍ତିଲାଭ କରିପାରୁ ନାହୁଁ । ୨ ।

ଭୀଷ୍ମ କହିଲେ—ଏ ବିଷୟରେ ପଣ୍ଡିତମାନେ ମହାନୁଭବ ଯମ ଓ ଗୌତମଙ୍କର ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ ବର୍ଣ୍ଣନ କରନ୍ତି । ୩ । ପାରିପାତ୍ର ପର୍ବତ ନିକଟରେ ଗୌତମଙ୍କ ଅତି ପ୍ରଶସ୍ତ ଆଶ୍ରମ ଥିଲା । ଗୌତମ ସେହି ଆଶ୍ରମରେ ଯେତେଦିନ ବାସ କରିଥିଲେ, ତାହା ମଧ୍ୟ ଆମ୍ଭଠାରୁ ଶ୍ରବଣ କର । ୪ । ଗୌତମ ସେହି ଆଶ୍ରମରେ ଷଷ୍ଟି ସହସ୍ର ବର୍ଷ ତପସ୍ୟା କରିଥିଲେ । ସେହି ମହାମୁନିଙ୍କୁ ଉଗ୍ର ତପସ୍ୟାଯୁକ୍ତ ହେବାର ଦର୍ଶନ କରି ଲୋକପାଳ ଯମ ତାହାଙ୍କ ନିକଟକୁ ଗମନ

କଲେ ଏବଂ ତତ୍କାଳରେ ଗୌତମ ଋଷିଙ୍କୁ ଅତ୍ୟନ୍ତ କଠୋର ତପସ୍ୟା କରିବାରେ ନିରତ ଦେଖିଲେ । ୬ । ବ୍ରହ୍ମର୍ଷି ତପୋଧନ ଗୌତମ ତେଜ ପ୍ରଭାବଶାଳୀ ଯମଙ୍କୁ ଆସିଥିବାର ଦେଖି କୃତାଞ୍ଜଳି ପୂର୍ବରେ ପ୍ରସନ୍ନ ହୋଇ ଉପବିଷ୍ଟ ରହିଲେ । ୭ । ଧର୍ମରାଜ ସେହି ଦ୍ୱିଜବରଙ୍କୁ ଦର୍ଶନ କରି ମାନ୍ୟରେ ଧର୍ମାନୁସାରେ ସତ୍କାର ପୂର୍ବକ "ଆମ୍ଭେ ତୁମ୍ଭର କଣ କରିବୁ" ଏହି କଥା ତାହାଙ୍କୁ ପଚାରିଲେ । ୮ ।

ଗୌତମ କହିଲେ—କଣ କଲେ ପୁରୁଷ ପିତା ମାତାଙ୍କର ଆନୃଣ୍ୟକୁ ପ୍ରାପ୍ତ ହୁଏ ଏବଂ କି ପ୍ରକାରେ ପବିତ୍ର ଓ ଦୁର୍ଲଭ ଲୋକ-ସବୁକୁ ଲାଭ କରେ ? ୯ । ଯମ କହିଲେ—ତପସ୍ୟା ଓ ଶୌଚଯୁକ୍ତ ବଶିଷ୍ଟ ଏବଂ ନିୟମ ଓ ସତ୍ୟ ଧର୍ମରତ ବ୍ୟକ୍ତି ଅହରହ ପିତା ମାତାଙ୍କର ପୂଜା କରିବେ ଏବଂ ବହୁ ଦକ୍ଷିଣା ସମନ୍ୱିତ ଅଶ୍ୱମେଧ ଯଜ୍ଞ କଲେ ପୁରୁଷ ଅଦ୍ଭୁତ ଦର୍ଶନ ଦୁର୍ଲଭ ଲୋକମାନଙ୍କୁ ଲାଭ କରନ୍ତି । ୧୧ ।

## ଅଧ୍ୟାୟ—୧୩୦

ଯୁଧିଷ୍ଠିର କହିଲେ—ହେ ଭାରତ ! ଯେଉଁ ରାଜା ମିତ୍ରଙ୍କ କର୍ତ୍ତୃକ ପରିତ୍ୟକ୍ତ ହୋଇଅଛନ୍ତି, ଯାହାଙ୍କର ଅନେକାନେକ ଅମିତ୍ର ହୋଇଅଛନ୍ତି ଏବଂ ଯେ କୋଷହୀନ ଓ ବଳ ବିହୀନ ହୋଇଅଛନ୍ତି, ତାହାଙ୍କର ଉପାୟ କଣ ? । ୧ । ଦୁଷ୍ଟ ଅମାତ୍ୟଗଣ ଯାହାଙ୍କର ସହାୟ ହୋଇଅଛନ୍ତି, ଯାହାଙ୍କର ମନ୍ତ୍ରଣା ସବୁ ସର୍ବତୋଭାବରେ ବିଚ୍ୟୁତ ହୋଇଅଛି, ରାଜ-ପଦରୁ ଯେ ପ୍ରଚ୍ୟୁତ ହେଉଅଛନ୍ତି, ଅଥଚ ଉତ୍କୃଷ୍ଟ ଉପାୟ ଅବଲୋକନ କରିବାକୁ ଅକ୍ଷମ, ଯେ ପରରାଜ୍ୟ ପ୍ରତି ପ୍ରୟାଣ କରିବାକୁ ଉଦ୍ୟତ ଏବଂ ପରରାଜ୍ୟ ସବୁକୁ ମର୍ଦ୍ଦନ କରିବା ନିମିତ୍ତ ପ୍ରସ୍ତୁତ ହୋଇଅଛନ୍ତି, ଯେ ସ୍ୱୟଂ ଦୁର୍ବଳ ହୋଇ ମଧ୍ୟ ବଳବାନ୍ ସହିତ ବିଗ୍ରହ କରିବାକୁ ବର୍ତ୍ତମାନ ରହିଅଛନ୍ତି, ଯେଉଁ ନୃପତି ସମ୍ୟକ ପ୍ରକାରେ ରାଜ୍ୟରକ୍ଷା କରି ପାରନ୍ତି ନାହିଁ, ଯେ ଦେଶ ଓ କାଳ ଅନୁସାରେ କାର୍ଯ୍ୟ କରିବାକୁ ଅବଜ୍ଞା କରନ୍ତି, ଅତଏବ ପୀଡ଼ନ ହେତୁରୁ ପରକୀୟ ଅମାତ୍ୟ ପ୍ରଭୃତିଙ୍କର ଭେଦ ଓ ସାମବାଦ ଯାହାଙ୍କ ପକ୍ଷରେ ଅପ୍ରାପ୍ୟ ହୁଏ ତାହାଙ୍କର ଉପାୟ କଣ ? ଏବଂ ଅର୍ଥସାଧ୍ୟ ଜୀବିତ ଶ୍ରେୟ ହେବ କିମ୍ବା ସୁକୃତ ଶ୍ରେୟ ହେବ, ଅର୍ଥାତ୍ ଅସତ୍ ପଥଦ୍ୱାରା ଅର୍ଥ ଗ୍ରାହ୍ୟ ହେବ କିମ୍ବା ଅର୍ଥ ବିନା ମରଣ ଶ୍ରେୟ

ହେବ ? ୪ । ଭୀଷ୍ମ କହିଲେ—ହେ ଭରତଶ୍ରେଷ୍ଠ ଧର୍ମଙ୍କ ଯୁଧିଷ୍ଠିର ! ତୁମ୍ଭେ ଅତଏବ ଗୁହ୍ୟ ବିଷୟକୁ ପ୍ରଶ୍ନ କରଅଛ ? ପୃଷ୍ଟ ନହେଲେ, ଆମ୍ଭେ ଏହି ଧର୍ମକୁ କୀର୍ତ୍ତନ କରିବାକୁ ଉତ୍ସାହବାନ୍ ହୁଅନ୍ତୁ ନାହିଁ । ୫ ।

ହେ ଭରତଶ୍ରେଷ୍ଠ । ଧର୍ମ ଅତି ସୂକ୍ଷ୍ମ ପଦାର୍ଥ ଅଟେ । ଶାସ୍ତ୍ର ଶ୍ରବଣ ହେତୁ ସେହି ସୂକ୍ଷ୍ମ ଧର୍ମରେ ଜ୍ଞାନ ହୋଇଥାଏ, ଧର୍ମ ଶ୍ରବଣ ଓ ଆଚରଣ ହେତୁରୁ କଦାଚିତ କୌଣସି ବ୍ୟକ୍ତି ସଦାଚାର ଦ୍ୱାରା ସାଧୁ ହୁଅନ୍ତି । ୬ । ଆପଦ୍ କାଳରେ ଧନ ନିମିତ୍ତ ପ୍ରଜାପୀଡ଼ନ କରି ଧନ ଲଭ ହେଉ କିମ୍ବା ନ ହେଉ, ଆପଦରୁ ଉତ୍ତୀର୍ଣ୍ଣ ହେବ, ତତ୍ପରେ ପ୍ରଜାଗଣଙ୍କ ପ୍ରତି ଅନୁକମ୍ପା କରିବା ଉଚିତ । ଯଦି ଧନ ଲଭ ନ ହୁଏ, ତେବେ ନିଜର ଓ ପ୍ରଜାଗଣଙ୍କର ନାଶ ହୋଇଥାଏ, ଏହା ବିବେଚନା କରି ତୁମ୍ଭର ନିଜ ପ୍ରଶ୍ନର ବିଷୟ ନିଜ ବୁଦ୍ଧିଦ୍ୱାରା ବିବେଚନାପୂର୍ବକ ଜାଣିବ । ୭ । ହେ ଭାରତ । ରାଜାମାନଙ୍କର ବ୍ୟବହାର ନିର୍ବାହାର୍ଥ ବହୁଳ ଧର୍ମ ସମନ୍ୱିତ ଉପାୟ ଅଛି, ଶ୍ରବଣ କର । ଆମ୍ଭେ ଧର୍ମ ନିମିତ୍ତ ଏତାଦୃଶ୍ୟ ଧର୍ମ ପ୍ରାପ୍ତ ହେବାକୁ କାମନା କରୁନାହିଁ । ୮ ।

ପ୍ରଜ ଗଣଙ୍କୁ ଦୁଃଖଦାନ କରି ଯାହା ଆଦାନ କରାଯାଏ, ପଶ୍ଚାତ୍ ତାହା ମରଣତୁଲ୍ୟ ହୋଇଥାଏ, ଅର୍ଥାତ୍ ପ୍ରଜାପୀଡ଼ନ ସନ୍ତାପ ହେତୁ ସମୁତ ହୁତାଶନ ରାଜାଙ୍କର ପ୍ରାଣ, ବଳ ଓ ଧନାଗାରକୁ ଦଗ୍ଧ ନ କରି ନିବୃତ୍ତ ହୁଏ ନାହିଁ, ଏହା ବିଶୁଦ୍ଧ ବୁଦ୍ଧି ମାନବ କିମ୍ବା ପ୍ରଜାଗଣଙ୍କର ନିଶ୍ଚୟ ଅଛି । ୯ । ପୁରୁଷ ନିୟତ ଯେଉଁ ଯେଉଁ ପ୍ରକାର ଶାସ୍ତ୍ର ନିରୀକ୍ଷଣ କରେ, ସେହି ପ୍ରକାର ବିଜ୍ଞାନ ଲଭକରି ତହିଁରେ ଅନୁରକ୍ତ ହୋଇଥାଏ । ୧୦ । ଅବିଜ୍ଞାନ ହେତୁରୁ ଅନୁପାୟ ହୁଏ, ଉପାୟ ଜ୍ଞାନ ନିଃସଂଶୟ ବିଭୂତି ଉତ୍ପାଦନ କରେ । ୧୧ । ତୁମ୍ଭେ ଅଶଙ୍କିତ ଓ ଅସୂୟାରହିତ ହୋଇ ଏହି ବଚନ ଶ୍ରବଣ କର । ନୃପତିଙ୍କର କୋଷକ୍ଷୟ ହେତୁରୁ ବଳକ୍ଷୟ ଜନ୍ମେ । ୧୨ । ନିର୍ଜନ ପ୍ରଦେଶରେ ଜଳ ଉତ୍ପାଦନ ପ୍ରାୟ ରାଜା କୋଷ ସଞ୍ଚୟ କରିଥାନ୍ତି, ପୂର୍ବତନ ଲୋକଙ୍କ କର୍ତ୍ତୃକ ଆଚରିତ ଏହି ଉପଧର୍ମକୁ ବିଜ୍ଞାତ ହୋଇ ସମୟାନୁସାରେ ନୃପତି ପୂର୍ବପୀଡ଼ିତ ପ୍ରଜାଗଣଙ୍କ ପ୍ରତି ଅନୁଗ୍ରହ କରିବେ । ୧୩ ।

ହେ ଭାରତ ! ସମର୍ଥ ମାନବଗଣଙ୍କର ଧର୍ମ ସ୍ୱତନ୍ତ୍ର ଅଟେ ଏବଂ ଆପଦ୍ କାଳରେ ଧର୍ମ ସ୍ୱତନ୍ତ୍ର । କୋଷ ସଞ୍ଚୟ ପୂର୍ବରୁ ରାଜା ତପସ୍ୟାଦ୍ୱାରା ଧର୍ମ ସଞ୍ଚୟ କରିବାକୁ ସମର୍ଥ ହୁଅନ୍ତି, ଧର୍ମ ଅପେକ୍ଷା ଜୀବନ ଗୁରୁତର ଅଟେ । ୧୪ । ଦୁର୍ବଳ ବ୍ୟକ୍ତି ଧର୍ମ ଲାଭକରି ନ୍ୟାୟଯୁକ୍ତ ଜୀବିକା ଅବଲମ୍ବନ କରେ ନାହିଁ । କାରଣ ଯତ୍ନକଲେ ମଧ୍ୟ ଅବଶ୍ୟ ବଳ ସମ୍ଭବ ହୁଏ, ଏପରି ନିୟମ ନାହିଁ । ୧୫ । ଅତଏବ ଶ୍ରୁତ ହୁଏ ଯେ ଆପଦ୍‌କାଳରେ ଅଧର୍ମ ସୁଦ୍ଧା ଧର୍ମ ଲକ୍ଷଣ ହୋଇଥାଏ, ସୁତରାଂ ଆପଦ୍ କାଳରେ ଅଧର୍ମ ମଧ୍ୟ କର୍ତ୍ତବ୍ୟ ରୂପରେ ଶ୍ରୁତ ଅଛି । ତତ୍କାଳରେ ଯାହା ଧର୍ମ, ତାହା ଅଧର୍ମ ହୋଇଥାଏ, ଅତଏବ ଶାସ୍ତ୍ର ମର୍ଯାଦା ଅନୁସାରେ ଆପଦ୍ କାଳରେ ପ୍ରଜାପୀଡ଼ନ ପ୍ରଭୃତି ମଧ୍ୟ ଧର୍ମ ରୂପରେ ଗଣ୍ୟ ହୁଏ । ବରଂ ତାହା ନ କଲେ ଅଧର୍ମ ହୁଏ, ଏହା କବିମାନଙ୍କର ଅବାଦିତ ନାହିଁ । ୧୬ । ଆପଦ୍‌କାଳ ଅତୀତ ହେଲେ କ୍ଷତ୍ରିୟଙ୍କ ପକ୍ଷରେ ପୂର୍ବୋକ୍ତ ଅଧର୍ମଜନିତ ଦୋଷ ପରିହାରାର୍ଥ ପ୍ରାୟଶ୍ଚିତ୍ତ ବିହିତ ହୋଇଥାଏ । କ୍ଷତ୍ରିୟଙ୍କର ଯେପରି ଧର୍ମହାନି ନ ହୁଏ, ଏବଂ ସେ ଯେପରି ଶତ୍ରୁର ବଶୀଭୂତ ନ ହୁଅନ୍ତି, ତାଦୃଶ ଉପାୟ କରିବା ଉଚିତ, ଏହା ପ୍ରାଚୀନ-ମାନେ କହିଅଛନ୍ତି, ଆତ୍ମାକୁ ଅବସନ୍ନ କରିବା ବିଧେୟ ନୁହେ । ୧୭ । ସର୍ବବିଧ ପ୍ରଯତ୍ନ ଦ୍ୱାରା ନିଜର କିମ୍ବା ପରର ଧର୍ମକୁ ଉଦ୍ଧାର କରିବା ନିମିତ୍ତ ଇଚ୍ଛା କରିବ ନାହିଁ । ଯେ କୌଣସି ପ୍ରକାରରେ ଆତ୍ମାକୁ ଉଦ୍ଧାର କରିବ, ଏହା ନିଶ୍ଚୟ ଜାଣିବ । ୧୮ ।

ହେ ତାତ ! ସେହି ଆପଦ୍‌କାଳ ଉତ୍ତରେ ଧର୍ମବିତ ବ୍ୟକ୍ତି-ମାନଙ୍କର ଧର୍ମ ବିଷୟରେ ନୈପୁଣ୍ୟ ନିଶ୍ଚୟ ହୁଏ ଏବଂ କ୍ଷତ୍ରିୟ ପକ୍ଷରେ ବାହୁବୀର୍ଯ ବଶତଃ ଉଦ୍ୟମ ନୈପୁଣ୍ୟ ଅଟେ । ଏହିପରି ଶ୍ରୁତ ଅଛି । ୧୯ । ହେ ଭାରତ ! ସମ୍ୟକ୍ ପ୍ରକାରେ ବୃତ୍ତି ରୋଧହେଲେ ତାପସସ୍ୱ ଓ ବ୍ରାହ୍ମଣସ୍ୱ ବ୍ୟତିରେକେ କ୍ଷତ୍ରିୟ ଅନ୍ୟ ସମସ୍ତଙ୍କଠାରୁ ଧନ ଆଦାନ କରି ପାରନ୍ତି । ୨୦ । ବ୍ରାହ୍ମଣ ଯେପରି ଅବସନ୍ନ ହେଲେ, ଅଯାଜ୍ୟ ବ୍ୟକ୍ତିଙ୍କର ଯାଜନ କରନ୍ତି ଏବଂ ଅଭୋଜ୍ୟ ଅନ୍ନ ମଧ୍ୟ ଭୋଜନ କରନ୍ତି, ଆପଦ୍ କାଳରେ କ୍ଷତ୍ରିୟଙ୍କର ମଧ୍ୟ ବ୍ରାହ୍ମଣସ୍ୱ ଓ ତାପସସ୍ୱ ଭିନ୍ନ ଅନ୍ୟ ଧନ ଗ୍ରହଣରେ ଦୋଷ ହୁଏ ନାହିଁ, ଏଥିରେ ସନ୍ଦେହ ନାହିଁ । ୨୧ । ପୀଡ଼ିତ ବ୍ୟକ୍ତିର ଅଦ୍ୱାର କଣ ? ଏବଂ ନିରୁଦ୍ଧ ବ୍ୟକ୍ତିର ଉତ୍ପଥ ବା କଣ ? ଲୋକେ ଯେତେବେଳେ ପୀଡ଼ିତ ହୁଅନ୍ତି, ସେତେବେଳେ ଅଦ୍ୱାର ଦେଇ ମଧ୍ୟ ଧାବିତ ହୁଅନ୍ତି । ୨୨ ।

ଯେଉଁ ନୃପତିଙ୍କର ଧନାଗାରଶୂନ୍ୟ ଓ ସୈନ୍ୟ କ୍ଷୟ ହେତୁରୁ ସମସ୍ତ ଲୋକଙ୍କଠାରେ ପରାଭବ ହୁଏ, ତାହାଙ୍କର ଭିକ୍ଷା କରି ଜୀବନ ଧାରଣ କରିବା କିମ୍ବା ବୈଶ୍ୟ ଓ ଶୂଦ୍ର ବୃତ୍ତି ଅବଲମ୍ବନ କରିବା ବିହିତ ନୁହେ । ୨୩ । କ୍ଷତ୍ରିୟଙ୍କର ସ୍ୱଜାତୀୟ ବୃତ୍ତି ବିଜୟ ଦ୍ୱାରା ଧନୋପାର୍ଜନ କରିବା ବିଧେୟ, ଯେ ତଦନୁସାରେ ଜୀବନଯାପନ ନ କରନ୍ତି, ସେ ଅଯାଚକ ହୋଇ ମଧ୍ୟ ପ୍ରଥମତଃ ଆପଦ୍ କାଳରେ ମୁଖ୍ୟକଳ୍ପ ଦ୍ୱାରା ଜୀବନ ଯାପନ କରିବେ ଏବଂ ତହିଁରେ ଯଦି ଅକ୍ଷମ ହୁଅନ୍ତି ତାହାହେଲେ ଅନୁକଳ୍ପ ଅବଲମ୍ବନ କରିବା ଅନୁଚିତ ନୁହେ । ୨୪ । ଆପଦ୍‌କାଳ ଉପସ୍ଥିତ ହେଲେ, ଧର୍ମ୍ମ ମାନଙ୍କର ବିପର୍ଯ୍ୟୟ ଦ୍ୱାରା ଅର୍ଥାତ୍ ଚୌର୍ଯ୍ୟଦ୍ୱାରା ମଧ୍ୟ ଜୀବନଧାରଣ କରିବା ବିହିତ ହୁଏ । ଜୀବିକା ପରିକ୍ଷୟ ହେଲେ ବ୍ରାହ୍ମଣମାନଙ୍କଠାରେ ମଧ୍ୟ ଏତାଦୃଶ ବ୍ୟବହାର ଦୃଷ୍ଟ ହୋଇଅଛି, ଅତଏବ କ୍ଷତ୍ରିୟଙ୍କ ପକ୍ଷରେ ସଂଶୟ କହିଁକି ହେବ ? କ୍ଷତ୍ରିୟ ଆପଦ୍ ସମୟରେ ବିଶିଷ୍ଟ ସମ୍ପତ୍ତିଶାଳୀ ବ୍ୟକ୍ତିମାନଙ୍କଠାରୁ ବଳପୂର୍ବକ ଅର୍ଥ ଆଦାନ କରି ଜୀବନ ଧାରଣ କରିବେ. କେବେହେଁ ଅବସନ୍ନ ହେବେ ନାହିଁ, ଏଥିରେ ସଂଶୟ କରିବା ଉଚିତ ନୁହେ । ଏହା ସର୍ବଦା ନିଶ୍ଚିତ ଅଛି । ୨୬ । ପଣ୍ଡିତମାନେ କ୍ଷତ୍ରିୟଙ୍କୁ ପ୍ରଜାମାନଙ୍କର ପାଳୟିତା ଓ ହନ୍ତା ବୋଲି ଜ୍ଞାନ କରନ୍ତି, ଅତଏବ ରକ୍ଷାକର୍ତ୍ତା କ୍ଷତ୍ରିୟ ଅର୍ଥବାନ୍ ମାନବଙ୍କ-ଠାରୁ ଧନ ଆଦାନ କରିବେ । ୨୭ ।

ହେ ରାଜନ୍ ! ଏକାକୀ ଅବସ୍ଥିତ ଅରଣ୍ୟଗୃହୀ ମୁନିଙ୍କ ବ୍ୟତିରେକେ ଅନ୍ୟ କୌଣସି ବ୍ୟକ୍ତିଙ୍କର ହିଂସା ବ୍ୟତୀତ ଇହଲୋକରେ ଜୀବିକା ନିର୍ବାହ ହୁଏନାହିଁ । ୨୮ । ହେ କୁରୁଶ୍ରେଷ୍ଠ ! ଲଲାଟ ପଟ୍ଟରେ ଲିଖିତ ବୃତ୍ତି ଅର୍ଥାତ୍ ଅଦୃଷ୍ଟମାନ ଅବଲମ୍ବନ କରି ଜୀବନ ଧାରଣ କରିବା କ୍ଷତ୍ରିୟପକ୍ଷରେ ଯୋଗ୍ୟ ନୁହେଁ । ବିଶେଷତଃ ଯାହାଙ୍କର ପ୍ରଜା ପାଳନରେ ଲାଳସା ଅଛି, ତାହାଙ୍କର ମଧ୍ୟ ତାଦୃଶୀ ବୃତ୍ତି ଅବଲମ୍ବନ କରିବା ନିତାନ୍ତ ନିନ୍ଦନୀୟ । ୨୯ । ଆପଦ୍ କାଳରେ ରାଜା ଏବଂ ରାଜ୍ୟ ଉଭୟଙ୍କୁ ନିୟତ ପରସ୍ପର ରକ୍ଷାକରିବା କର୍ତ୍ତବ୍ୟ । ଏହାହିଁ ସନାତନ ଧର୍ମ୍ମ । ୩୦ । ଆପଦ କାଳରେ ରାଜା ଯେପରି ଦ୍ରବ୍ୟ ସମୂହ ଦ୍ୱାରା ସର୍ବତୋଭାବରେ ରାଜ୍ୟରକ୍ଷା କରନ୍ତି, ବିପଦ ଉପସ୍ଥିତ ହେଲେ ରାଜ୍ୟର ମଧ୍ୟ ତଦ୍ରୂପ ରାଜାଙ୍କୁ ରକ୍ଷାକରିବା କର୍ତ୍ତବ୍ୟ । ୩୧ ।

କୋଷ, ଦଣ୍ଡ, ବଳ, ମିତ୍ର ଓ ଅନ୍ୟ ଯାହାକିଛି ସଞ୍ଚିତ ଥାଏ, ରାଜା କ୍ଷୁଧାତୁର ହୋଇସୁଦ୍ଧା ରାଜ୍ୟନିମିତ୍ତ ତାହାକୁ ଦୂର କରିବେ ନାହିଁ । ୩୨ । ଅନ୍ନଦ୍ୱାରା ବୀଜ ସମ୍ପାଦନ କରିବାକୁ ହୁଏ, ଏହା ଧର୍ମବିତ୍ ବ୍ୟକ୍ତିମାନେ ଜାଣନ୍ତି, ଅଳ୍ପ ଧନବାନ୍ ବ୍ୟକ୍ତି ଯଦି ପ୍ରଜାଗଣଙ୍କ କର୍ତ୍ତୃକ ରକ୍ଷିତ ନହୁଅନ୍ତି, ତେବେ ସେ ବିନଷ୍ଟ ହୁଅନ୍ତି । ରାଜା ବିନଷ୍ଟ ହେଲେ ସମସ୍ତ ପ୍ରଜା ବିନଷ୍ଟ ହୁଅନ୍ତି । ଏ ବିଷୟରେ ପଣ୍ଡିତମାନେ ମହା ମାୟାବୀ ଶମ୍ବରଙ୍କର ଏହି ଶାସ୍ତ୍ର କୀର୍ତ୍ତନ କରିଥାନ୍ତି । ୩୩ । ଯେଉଁ ରାଜାଙ୍କର ରାଜ୍ୟବାସୀ ପ୍ରଜାମାନେ ଅବସନ୍ନ ହୁଅନ୍ତି, ଯେ ପରର ପ୍ରେଷ୍ୟ ହୋଇଥାନ୍ତି, କିମ୍ବା ବୃତ୍ତି ବିରହରେ ଅଳ୍ପ ପରିବାର ପ୍ରତିପାଳନ କରନ୍ତି ଏବଂ ଯେ ଦେଶାନ୍ତରରେ ଜୀବିକା ନିର୍ବାହକରିବା ନିମିତ୍ତ କାଳଯାପନ କରନ୍ତି, ତାହାଙ୍କୁ ଧିକ୍ । ୩୪ । କୋଷାଗାର ଓ ଧନ ନୃପତିଙ୍କର ମୂଳ ଅଟେ । ତନ୍ମଧ୍ୟରେ କୋଷ ସୈନ୍ୟର ମୂଳ ଏବଂ ସୈନ୍ୟମାନେ ସମସ୍ତେ ଧର୍ମର ମୂଳ ଅଟନ୍ତି । ଧର୍ମ ପ୍ରଜାଗଣଙ୍କର ମୂଳ, ଅତଏବ ସମସ୍ତଙ୍କର ମୂଳ ଧନାଗାର ବୃଦ୍ଧି ଅବଶ୍ୟ କର୍ତ୍ତବ୍ୟ । ୩୫ । ଅନ୍ୟବ୍ୟକ୍ତିକୁ ପୀଡ଼ନ ନ କରି କୋଷ ସଞ୍ଚୟ ହୁଏନାହିଁ, ସୁତରାଂ ସୈନ୍ୟସଂଗ୍ରହ କି ପ୍ରକାରେ ହୋଇପାରେ ? ଅତଏବ କୋଷ ସଞ୍ଚୟାର୍ଥ ଲୋକ ପୀଡ଼ନକଲେ ନୃପତି ଦୋଷଭାଗୀ ହୁଅନ୍ତି ନାହିଁ । ୩୬ । ଯଜ୍ଞକାର୍ଯ୍ୟ ନିର୍ବାହାର୍ଥ ଅକାର୍ଯ୍ୟ କରାଯାଏ, ତନ୍ନିମିତ୍ତ ରାଜା କଦାପି ଦୋଷାର୍ହ ନୁହନ୍ତି । ୩୭ ।

ଆପଦ୍ କାଳରେ ପ୍ରଜାପୀଡ଼ନ ଅର୍ଥ ନିମିତ୍ତ ହୋଇଥାଏ, ତାହା ସ୍ୱତନ୍ତ୍ର ଅଟେ । ଆଉ ତଦ୍‌କାଳରେ ପ୍ରଜାପୀଡ଼ନ ନ କରିବା ଅନର୍ଥ ନିମିତ୍ତ ହୋଇଥାଏ, ଅତଏବ ତାହାମଧ୍ୟ ସ୍ୱତନ୍ତ୍ର, ଆଉ ଅର୍ଥାଭାବ ନିମିତ୍ତ କୁଞ୍ଜର ପାଳନାଦି ହୋଇଥାଏ, ଏବଂ ତାହା ଅର୍ଥର ଉତ୍ପାଦକ ଅଟେ । ଅତଏବ ମେଧାବୀ ମାନବ ଏହି କର୍ମ ନିଷ୍ଟୟକୁ ବୁଦ୍ଧି ଦ୍ୱାରା ବିବେଚନା କରିବେ । ପଶୁ ପ୍ରଭୃତି ଯେପରି ଯଜ୍ଞନିମିତ୍ତ ହୋଇଥାନ୍ତି, ସେହିପରି ଯଜ୍ଞମଧ୍ୟ ଚିତ୍ତ ସଂସ୍କାର ନିମିତ୍ତ ହୋଇଥାଏ । ପଶୁ ପ୍ରଭୃତି ଯଜ୍ଞ ଓ ଚିତ୍ତ ସଂସ୍କାର ଏହି ତିନୟ ଯେପରି ମୋକ୍ଷନିମିତ୍ତ ହୋଇଥାନ୍ତି, ସେହିପରି କୋଷନିମିତ୍ତ ଦଣ୍ଡ, ବଳନିମିତ୍ତ କୋଷ, ଶତ୍ରୁ ପରାଭବ ନିମିତ୍ତ ବଳ ଏବଂ କୋଷ, ବଳ ଓ ଜୟ ଏହି ତିନୟ ରାଜ୍ୟପ୍ରାପ୍ତି ନିମିତ୍ତ ହୋଇ-

ଥାନ୍ତି । ୩୯ । ଏ ବିଷୟରେ ଧର୍ମ୍ମତତ୍ତ୍ୱ ପ୍ରକାଶିନୀ ଉପମା କହୁଅଛୁଁ । ଯଜ୍ଞ ବିଷୟରେ ଯେଉଁମାନେ ପରିପନ୍ଥୀ, ସେମାନେ ଯଜ୍ଞାର୍ଥ ଯୂପ ଛେଦନ କରନ୍ତି, ପ୍ରତିପକ୍ଷଭୂତ ସାମନ୍ତଗଣ ଦ୍ରୁମସ୍ୱରୂପ ହୋଇ ସେମାନଙ୍କୁ ଛେଦନ କଲେ, ସେମାନେ ଯେତେବେଳେ ବିଚ୍ଛିନ୍ନ ହୋଇ ପତିତ ହୁଅନ୍ତି, ସେତେବେଳେ ସେମାନେ ଅନ୍ୟ ବନସ୍ପତି ମାନଙ୍କୁ ନିପାତିତ କରନ୍ତି । ୪୧ ।

ହେ ଶତ୍ରୁତାପନ ଏହିପରି ଯେଉଁ ସବୁଲୋକେ ସୁମର୍ଦ୍ଦିତ କୋଷର ପରିପନ୍ଥୀ ହୁଅନ୍ତି, ସେମାନଙ୍କୁ ନିହତ ନକଲେ ତଦ୍ ବିଷୟରେ ସିଦ୍ଧି ଦେଖାଯାଏ ନାହିଁ । ୪୨ । ଧନଦ୍ୱାରା ଇହଲୋକ ଓ ପରଲୋକ ଉଭୟ ଲୋକକୁ ଜୟ କରାଯାଏ । ନିର୍ଦ୍ଧନ ହେଲେ, ଧର୍ମ୍ମ ଓ ସତ୍ୟ ବଚନ ଯେପରି ନଥାଏ, ସେହିପରି ନିର୍ଦ୍ଧନ ବ୍ୟକ୍ତି ଜୀବନ୍ମୃତବତ୍ କାଳଯାପନ କରନ୍ତି । ୪୩ । ଯଜ୍ଞ ପ୍ରୟୋଜନ ଧନକୁ ସର୍ବୋପାୟ ଦ୍ୱାରା ଆଦାନ କରିବ । ହେ ଭାରତ । ଯଜ୍ଞ ନିମିତ୍ତ ଯେଉଁ ଧନ ଆବଶ୍ୟକ ହୁଏ, ନିକୃଷ୍ଟ ଉପାୟଦ୍ୱାରା ସୁଦ୍ଧା ତାହା ଯେପରି ଆଦାନ କରିବା କର୍ତ୍ତବ୍ୟ ତଦ୍ରୂପ ବିହିତ ଓ ନିଷିଦ୍ଧ କାର୍ଯ୍ୟାକାର୍ଯ୍ୟ ବିଷୟରେ ଅର୍ଥାତ୍ ଆପଦ୍‌କାଳରେ ପ୍ରଜାପୀଡ଼ନ ବିହିତ ଅଟେ । ଏବଂ ତାହାହିଁ ନିରାପଦ ସମୟରେ ନିଷିଦ୍ଧ । ଅତଏବ ଉଭୟବିଧ ବିଷୟରେ ଏହା ତୁଲ୍ୟଦୋଷ ନୁହେ । ଦେଶ କାଳ ଅନୁସାରେ କାର୍ଯ୍ୟମଧ୍ୟ ଅକାର୍ଯ୍ୟ ହୁଏ, ଏବଂ ଅକାର୍ଯ୍ୟ ମଧ୍ୟ କାର୍ଯ୍ୟ ହୋଇଥାଏ । ୪୪ ।

ହେ ପୃଥ୍ୱୀପାଳ ମହାରାଜ । ଧନ ସଂଗ୍ରହ ଓ ଧନତ୍ୟାଗ ଏକ ମନୁଷ୍ୟଙ୍କଠାରେ କଦାପି ସମ୍ଭୂତ ହୁଏନାହିଁ । ଆମ୍ଭେ ଅରଣ୍ୟ ମଧ୍ୟରେ କେବେହେଁ ଧନବୃଦ୍ଧ ମାନବମାନଙ୍କୁ ଅବଲୋକନ କରିନାହୁଁ । ୪୫ । ଏହି ପୃଥିବୀ ମଧ୍ୟରେ ଯାହାକିଛି ଧନ ଦୃଷ୍ଟିଗୋଚର ହୁଏ, ତତ୍ ସମୁଦାୟ ଧନ ଆମ୍ଭର ହେଉ, ଆମ୍ଭର ହେଉବୋଲି ଲୋକେ ଆକାଙ୍କ୍ଷା କରନ୍ତି । ୪୬ । ହେ ପରନ୍ତପ । ରାଜ୍ୟସମ ଧନ ଆଉ କିଛିନାହିଁ । ରାଜ୍ୟ ମାନଙ୍କର ଆପଦକାଳରେ ବହୁଳ କର ଗ୍ରହଣ କରିବା ପାପ-ମୂଳକ ନୁହେ । ଅନାପଦ୍ କାଳରେ ତାହା ପାପଜନକ ହୋଇଥାଏ । ଅତଏବ ଆପଦ ନିମିତ୍ତ ଅର୍ଥ ସଂଗ୍ରହକଲେ ପାପକର ହୁଏନାହିଁ । ସୁତରାଂ ଧନମୂଳକ ରାଜ୍ୟ ମଧ୍ୟ ହେୟ ହୋଇ ନପାରେ । ୪୭ । କେହି କେହି

ଦାନ ଓ କର୍ମଦ୍ୱାରା ତପସ୍ୱୀ ହୁଅନ୍ତି । କେହି ଅବା ତପସ୍ୟା କରି ତପସ୍ୱୀ ହୋଇଥାନ୍ତି । ଅନ୍ୟଲୋକେ ବୁଦ୍ଧି କୌଶଳ ଓ ଦକ୍ଷତା ଦ୍ୱାରା ଧନ ସଞ୍ଚୟ କରନ୍ତି । ୪୮ । ପଣ୍ଡିତମାନେ ଧନହୀନ ବ୍ୟକ୍ତିଙ୍କୁ ଦୁର୍ବଳ କହନ୍ତି । ଧନବାନ୍ ବ୍ୟକ୍ତି ବଳବାନ ହୁଅନ୍ତି । ଧନବାନ ବ୍ୟକ୍ତିଙ୍କର ଅପ୍ରାପ୍ୟ କିଛିନାହିଁ । ଏବଂ କୋଷବାନ ବ୍ୟକ୍ତି ସମସ୍ତ ବିପଦରୁ ଉତ୍ତୀର୍ଣ୍ଣ ହୁଅନ୍ତି । ୪୯ । କୋଷଦ୍ୱାରା ଧର୍ମ, କାମ ଏବଂ ଇହ ଓ ପରଲୋକରେ ସୁଖଲାଭ ହୁଏ, ଅତଏବ ଧର୍ମତଃ ସେହି ଧନଲାଭକୁ ଇଚ୍ଛାକରିବ । କଦାପି ଅଧର୍ମଦ୍ୱାରା ଧନ ସଞ୍ଚୟ କରିବାକୁ ଇଚ୍ଛା କରିବନାହିଁ । ୫୦ ।

## ଅଧ୍ୟାୟ—୧୩୧

ଯୁଧିଷ୍ଠିର କହିଲେ—ହେ ଭାରତ । ଯେଉଁରାଜା ଧାନ୍ୟ କୋଷାଦି ସଂଗ୍ରହ ରହିତ, ଦୀର୍ଘ ସୂତ୍ର, ଅର୍ଥାତ୍ ଆଳସ୍ୟତା ବନ୍ଧୁବଧ ଭୟବଶତଃ ଦୁର୍ଗର ବହିର୍ଭାଗକୁ ନିର୍ଗତ ହୋଇ ଯୁଦ୍ଧଦାନରେ ଅସମର୍ଥ, ଅମାତ୍ୟାଦିଙ୍କଠାରେ ସତତ ଶଙ୍କିତ, ଯାହାଙ୍କର ମନ୍ତ୍ରଣାକୁ ଅନ୍ୟଲୋକେ ଶ୍ରବଣ କରିଅଛନ୍ତି, ଶତ୍ରୁମାନେ ଯାହାଙ୍କର ରାଜ୍ୟକୁ ବିଭାଗକରି ନେଇଅଛନ୍ତି, ଯେ ବିଷୟବିହୀନ ଅଟନ୍ତି, ଯେଉଁମାନେ ମନ୍ତ୍ରୀମାନଙ୍କୁ ସର୍ବତୋଭାବରେ ସମ୍ମାନପୂର୍ବକ ନିଜର ବଶ କରିବାକୁ ସକ୍ଷମ ନୁହନ୍ତି, ଯାହାଙ୍କର ଅମାତ୍ୟ ବର୍ଗ ବିପକ୍ଷମାନଙ୍କର ବଶୀଭୂତ ହୋଇଅଛନ୍ତି, ଶତ୍ରୁମାନେ ଯାହାଙ୍କର ସମ୍ମୁଖବର୍ତ୍ତୀ ଅର୍ଥାତ୍ ପରଚକ୍ର କର୍ତ୍ତୃକ ଅଭିଭୂତ ହୋଇ ଅଛନ୍ତି, ସ୍ୱୟଂ ଦୁର୍ବଳ ହେବାରୁ ପ୍ରବଳ ବୈରୀ କର୍ତ୍ତୃକ ଯାହାଙ୍କର ଚିତ୍ତ ବ୍ୟାକୁଳୀକୃତ ହୋଇଅଛି, ତାହାଙ୍କର ଅବଶେଷରେ କଣ କର୍ତ୍ତବ୍ୟ ତାହା କହନ୍ତୁ । ୩ ।

ଭୀଷ୍ମ କହିଲେ—ବିଜୟାର୍ଥ ବହିର୍ଗତ ବିଜିଗୀଷୁ ନୃପତି ଯଦି ଧର୍ମତଃ ଅର୍ଥ ଉପାର୍ଜ୍ଜନରେ ନିପୁଣ ଓ ଶୁଚି ହୁଅନ୍ତି ତାହାହେଲେ ତାହା ସହିତ ଶୀଘ୍ର ସନ୍ଧିସ୍ଥାପନ କରିବେ ଓ ତତ୍କର୍ତ୍ତୃକ ବିଜିତ ପୂର୍ବଭୁକ୍ତ ଗ୍ରାମନଗରାଦିକୁ ସାନ୍ତ୍ୱବାଦଦ୍ୱାରା ତାହାଙ୍କଠାରୁ କ୍ରମଶଃ ମୋଚନ କରିବେ । ଯେଉଁ ବ୍ୟକ୍ତି ବଳବାନ୍ ଓ ପାପବୁଦ୍ଧି ହୋଇ ଅଧର୍ମ ଅନୁସାରେ ବିଜୟ ଇଚ୍ଛା କରନ୍ତି, ତାହାହେଲେ ତାହାଙ୍କୁ କିଛିପରୁ

ଗ୍ରାମଦାନ କରି ତାହାଙ୍କ ସହିତ ସନ୍ଧିକରିବାକୁ ସମ୍ମତ ହେବ । ସେ ଯେବେ ଅତ୍ୟନ୍ତ ଦୁଷ୍ଟ ହୋଇଥାଏ, ତାହାହେଲେ ରାଜଧାନୀ ପରିତ୍ୟାଗ ପୂର୍ବକ ସଞ୍ଚିତ ଦ୍ରବ୍ୟ ସମୂହଦ୍ୱାରା ଆପଦରୁ ଉତ୍ତୀର୍ଣ୍ଣ ହେବ । ଯଦି ରାଜଗୁଣଯୁକ୍ତ ହୋଇ ଜୀବିତ ଥିବ ତେବେ ଦ୍ରବ୍ୟାଦି ପୁନର୍ବାର ଉପାର୍ଜ୍ଜନ କରି ପାରିବ । ୬ । ଦୁଷ୍ଟତମ ବିଜିଗୀଷୁ ହେଲେ ରାଜ୍ୟ ଓ ଧନ ପରିତ୍ୟାଗ କରି ସେହିସବୁ ଆପଦ୍ ନିବାରଣ କରିବ । କେଉଁ ଅର୍ଥ ଧର୍ମଜ୍ଞ ରାଜା ତଦ୍‌ବିଷୟରେ ଅଧିକ ଆତ୍ମଦାନ କରନ୍ତି ? ୭ । ଅନ୍ତଃପୁରବାସୀ କାମିନୀଗଣଙ୍କୁ ରକ୍ଷା କରିବାକୁ ଇଚ୍ଛା କରିବ । ସେମାନେ ସର୍ବଥା ବିପକ୍ଷର ଅଧିକୃତ ହେଲେ, ତଦ୍‌ବିଷୟରେ ଦୟା ଓ ସ୍ନେହ କରିବାର ଅବଶ୍ୟକ ନାହିଁ । ଅର୍ଥାତ୍ ସେମାନଙ୍କୁ ପରିତ୍ୟାଗ କରି ଆତ୍ମରକ୍ଷଣ କେବଳ ବିଧେୟ ଏବଂ ସାମର୍ଥ୍ୟ ଥାଉଁ ଥାଉଁ କୌଣସି ପ୍ରକାରେ ଆତ୍ମସମର୍ପଣ କରିବା କର୍ତ୍ତବ୍ୟ ନୁହେ । ୮ ।

ଯୁଧିଷ୍ଠିର କହିଲେ—ଅମାତ୍ୟ ପ୍ରଭୃତି କୋପାବିଷ୍ଟ, ଦୁର୍ଗ ରାଜ୍ୟାଦି ବିପକ୍ଷ କର୍ତ୍ତୃକ ଆକ୍ରାନ୍ତ, ଧନାଗାର ଶୂନ୍ୟ ଏବଂ ମନ୍ତ୍ର ପ୍ରକାଶିତ ହେଲେ ଅବଶେଷରେ କଣ କର୍ତ୍ତବ୍ୟ ? । ୯ । ଭୀଷ୍ମ କହିଲେ—ବିପକ୍ଷ ଧର୍ମିଷ୍ଠ ହେଲେ ଅବିଳମ୍ବରେ ତାହା ସହିତ ସନ୍ଧି କାମନା କରିବ । ଅଧର୍ମିଷ୍ଠ ହେଲେ ତୀକ୍ଷ୍ଣ ପରାକ୍ରମ ପ୍ରକାଶ କରିବ, ତାହାହେଲେ ଶୀଘ୍ର ବିପକ୍ଷର ଦୂରୀକରଣ ହୁଏ । ଧର୍ମ୍ମ କିମ୍ବା ଯୁଦ୍ଧରେ ପ୍ରାଣ ପରିତ୍ୟାଗ କଲେ ପରଲୋକରେ ହିତ ହୁଏ । ୧୦ । ସୈନ୍ୟ ସାମାନ୍ୟ ହେଲେ ସୁଦ୍ଧା ଯଦି ସେମାନେ ଅନୁରକ୍ତ, ଅଭିପ୍ରେତ ଓ ହର୍ଷଯୁକ୍ତ ହୁଅନ୍ତି, ତେବେ ଜଗତପତି ପୃଥିବୀପାଳ ତଦ୍ୱାରା ମହୀମଣ୍ଡଳକୁ ଜୟ କରି ପାରନ୍ତି । ୧୧ । ଶତ୍ରୁ କର୍ତ୍ତୃକ ଧର୍ମ୍ମ ଯୁଦ୍ଧରେ ହତ ହୋଇ ସ୍ୱର୍ଗାରୋହଣ କରନ୍ତୁ କିମ୍ବା ଶତ୍ରୁକୁ ନିହତ କରି ଧରାତଳରେ ବାସ କରନ୍ତି । ଯେ ଯୁଦ୍ଧରେ ପ୍ରାଣ ପରିତ୍ୟାଗ କରନ୍ତି, ସେ ଇନ୍ଦ୍ରଲୋକକୁ ପ୍ରାପ୍ତ ହୁଅନ୍ତି । ୧୨ । ସର୍ବ ଲୋକ ପ୍ରସିଦ୍ଧ ବୁଦ୍ଧିକୁ ଆଶ୍ରୟ ପୂର୍ବକ ଯୁଦ୍ଧ ପକ୍ଷକୁ ପରିତ୍ୟାଗ କରିବା ନିମିତ୍ତ ଯେପରି ଶତ୍ରୁପକ୍ଷରେ ବିଶ୍ୱାସ ହୁଏ, ସେହିପରି ଭାବରେ ବିନୟ କରିବ । ସ୍ୱୟଂମଧ୍ୟ ସମ୍ପ୍ରାନୁସାରେ ଶତ୍ରୁଠାରେ ମୃଦୁ ହେବ । ୧୩ । ଅମାତ୍ୟ ପ୍ରଭୃତିଙ୍କ ପ୍ରାତିକୂଲ ହେତୁରୁ ଯଦି ଯୁଦ୍ଧ କରିବାକୁ ଅଶକ୍ତ ହେଲେ ଏବଂ ଉପସ୍ଥିତ ଶତ୍ରୁ ପ୍ରକୋପ ହେତୁ ସାମୋପାୟମଧ୍ୟ ଯଦି ଅଶକ୍ୟ ହୁଏ,

ତାହାହେଲେ ରାଜା ଶାନ୍ତିବାଦଦ୍ୱାରା ବିପକ୍ଷର ସାନ୍ତ୍ୱନା ପୂର୍ବକ ଦୁର୍ଗରୁ ନିଷ୍କ୍ରାନ୍ତ ହୋଇ ଦେଶାନ୍ତରରେ କିଛିକାଳ ଯାପନ କରି ପରିଶେଷରେ ମନ୍ତ୍ରଣା ବଳରେ ସ୍ୱୟଂ ରାଜ୍ୟ ଜୟ କରିବାକୁ ଉପକ୍ରମ କରିବେ । ୧୪ ।

## ଅଧ୍ୟାୟ—୧୩୬

ଯୁଧିଷ୍ଠିର କହିଲେ—ହେ ପିତାମହ । ପୃଥିବୀରେ ଯେଉଁସବୁ ବସ୍ତୁକୁ ଉପଜୀବ୍ୟ କରି ଜୀବନ ଧାରଣ କରାଯାଏ, ରାଜାମାନଙ୍କର ଧର୍ମହୀନତା ପ୍ରଯୁକ୍ତ ତତ୍ସମୁଦାୟ ଦସ୍ୟୁସାତ୍ ହେଲେ, ସେହି ଆପଦ୍ କାଳରେ ଯେଉଁ ବ୍ରାହ୍ମଣ ଦୟାବଶତଃ ପୁତ୍ର ପୌତ୍ରଗଣଙ୍କୁ ପରିତ୍ୟାଗ କରିବାକୁ ଅସମର୍ଥ ଅଟନ୍ତି, ସେ କିପ୍ରକାର ଉପାୟ ଦ୍ୱାରା ଜୀବନ ଧାରଣ କରିବେ । ୨ ।

ଭୀଷ୍ମ କହିଲେ—ହେ ରାଜନ୍ । ବିପଦକାଳ ସମାଗତ ହେଲେ ବ୍ରାହ୍ମଣ ବିଜ୍ଞାନ ବଳ ଅବଲମ୍ବନ ପୂର୍ବକ ଜୀବନ ଯାପନ କରିବେ । ଏହି ଜଗତରେ ଯାହାକିଛି ଭୋଗ୍ୟ ଦ୍ରବ୍ୟ ଅଛି, ତାହା ସାଧୁମାନଙ୍କ ନିମିତ୍ତ ସୃଷ୍ଟି ହୋଇଅଛି । ଅସାଧୁ ବ୍ୟକ୍ତିମାନଙ୍କ ନିମିତ୍ତ କିଛି ସୁଦ୍ଧା ନିର୍ମିତ ହୋଇ ନାହିଁ । ୩ । ଯେଉଁ ବ୍ୟକ୍ତି ନିଜକୁ ଅର୍ଥାଗମର ଉପାୟ କରି ଅସାଧୁମାନଙ୍କଠାରୁ ଧନ ଗ୍ରହଣ ପୂର୍ବକ ସାଧୁମାନଙ୍କୁ ପ୍ରଦାନ କରନ୍ତି । ସେ ସର୍ବଧର୍ମବିତ୍ ଅଟନ୍ତି । ୪ । ସ୍ଥାନଭ୍ରଷ୍ଟ ନରପତି କୌଣସି ବ୍ୟକ୍ତିକୁ ପ୍ରକୋପିତ ନ କରି ନିଜର ରାଜ୍ୟପାଳନ ଧର୍ମକୁ ଆକାଙ୍କ୍ଷା କରିବେ ଏବଂ ଅନ୍ୟର ଅଦତ୍ତ ବିତ୍ତକୁ ପାଳନ କରିବାର ଧନ ବୋଲି ବ୍ରାହ୍ମଣ ରକ୍ଷାର୍ଥ ଗ୍ରହଣ କରିବେ । ୫ । ଯେ ବିଜ୍ଞାନ ବଳରେ ପବିତ୍ର ଥାଇ ନିନ୍ଦିତ କାର୍ଯ୍ୟରେ ପ୍ରବୃତ୍ତ ହେଲେ ସୁଦ୍ଧା ତାହାଙ୍କୁ କିଏବା ବୃତ୍ତ ବିଜ୍ଞାନବାନ୍ ଧୀର ପୁରୁଷ ନିନ୍ଦାକରି ପାରେ ? । ୬ ।

ହେ—ଯୁଧିଷ୍ଠିର । ଯେଉଁମାନେ ବଳପୂର୍ବକ ବୃତ୍ତି ଉପାର୍ଜ୍ଜନ କରନ୍ତି, ସେମାନଙ୍କର ଅନ୍ୟବିଧ ଉପାର୍ଜ୍ଜନରେ ରୁଚି ହୁଏ ନାହିଁ । ବଳବାନ୍ ବ୍ୟକ୍ତିମାନେ ନିଜର ତେଜଃ ପ୍ରଭାବ ଦ୍ୱାରା ଜୀବିକା ନିର୍ବାହ କରିବାରେ ପ୍ରବୃତ୍ତ ହୁଅନ୍ତି । ୭ । ଆପଦ୍‌ଗ୍ରସ୍ତ ରାଜା "ସ୍ୱରାଜ୍ୟ ଓ ପରରାଜ୍ୟରୁ ଧନ ସଂଗ୍ରହ କରିବି" ଏହି ଆପଦ୍ଧର୍ମୋପଯୋଗୀ ସମାନ୍ୟ ଶାସ୍ତ୍ରକୁ ଅଭ୍ୟାସ କରିବେ । ମେଧାବୀ ନୃପତି

ଉକ୍ତ ଶାସ୍ତ୍ରକୁ ଅଭ୍ୟାସ କର "ଉଭୟ ରାଜ୍ୟସ୍ଥିତ ଧନୀମାନେ, ଯେଉଁମାନେ କି କଦର୍ଯ୍ୟ କାର୍ଯ୍ୟବଶତଃ ଦଣ୍ଡାର୍ହ ଅଟନ୍ତି, ସେମାନଙ୍କଠାରୁ କୋଷ ସଞ୍ଚୟ କରିବେ"। ଏହି ବିଶେଷ ଶାସ୍ତ୍ରକୁ ଅବିଶେଷ ଭାବରେ ଆୟତ୍ତ କରିବେ ।୮। ରାଜା ଏକାନ୍ତ ଆପଦ୍‌ଗ୍ରସ୍ତ ହେଲେହେଁ ଋତ୍ୱିକ, ଆଗୁର୍ଯ୍ୟ ଓ ପୁରୋହିତ ପ୍ରଭୃତି ବ୍ରାହ୍ମଣମାନଙ୍କୁ କଦାପି ହିଂସା କରିବେ ନାହିଁ । ସେମାନଙ୍କୁ ହିଂସାକଲେ ଦୋଷଗ୍ରସ୍ତ ହେବେ ।୯। ଏହାହିଁ ଲୋକଙ୍କର ଚକ୍ଷୁଃସ୍ୱରୂପ ସନାତନ ପ୍ରମାଣ ଅଟେ ଅତଏବ ଏହା ସାଧୁ ହେଉ କିମ୍ବା ଅସାଧୁ ହେଉ ଆପଦାପନ୍ନ ନୃପତିଙ୍କର ଏହିପରି ଆଚରଣ କରିବା ଉଚିତ୍ ।୧୦। ଗ୍ରାମବାସୀ ବହୁବ୍ୟକ୍ତି ରୋଷବଶତଃ ରାଜାଙ୍କଠାରେ ପରସ୍ପରର ନିନ୍ଦା କରନ୍ତି କିନ୍ତୁ ରାଜା ସେମାନଙ୍କର ବାକ୍ୟାନୁସାରେ କାହାକୁ ପୁରସ୍କାର କିମ୍ବା ତିରସ୍କାର କରିବେ ନାହିଁ ।୧୧। ପୁରୋହିତ ପ୍ରଭୃତିଙ୍କର ପରିବାଦ କୌଣସି ପ୍ରକାରେ ବକ୍ତବ୍ୟ କିମ୍ବା ଶ୍ରୋତବ୍ୟ ନୁହେଁ । ଯଦି କେହି ସଭାମଧ୍ୟରେ ସେମାନଙ୍କର ନିନ୍ଦାକରେ, ତାହାହେଲେ କର୍ଣ୍ଣଦ୍ୱୟକୁ ହସ୍ତଦ୍ୱାରା ଆଚ୍ଛାଦନ କରିବେ, କିମ୍ବା ସ୍ଥାନାନ୍ତରକୁ ପ୍ରସ୍ଥାନ କରିବେ ।୧୨।

ହେ ନରାଧିପ ! ପରର ନିନ୍ଦା ଓ ଖଳତା କରିବା ଅସାଧୁଗଣଙ୍କର ସ୍ୱଭାବସିଦ୍ଧ ଧର୍ମ୍ମ ଅଟେ । ସାଧୁମାନଙ୍କ ମଧ୍ୟରେ କତିପୟ ବ୍ୟକ୍ତି କେବଳ ଅନ୍ୟର ଗୁଣ କୀର୍ତ୍ତନ କରନ୍ତି ।୧୩। ଯେପରି ଦମନୀୟ, ସୁନ୍ଦରରୂପ ବହନକ୍ଷମ, ଦାନ୍ତ ଓ ଦର୍ପନୀୟ ବୃଷଭମାନେ ଭାର ଧାରଣ ପୂର୍ବକ ବହନ କରନ୍ତି, ଆପଦାପନ୍ନ ନୃପତି ସେହିପରି ବ୍ୟବହାର କରିବେ ।୧୪। ଯେପରି ବ୍ୟବହାର କଲେ ବହୁ ସହାୟ ଲାଭହୁଏ, ରାଜା ସେହିପରି ଆଚାର ପ୍ରଚାର କରିବେ । ପଣ୍ଡିତମାନେ ଆଚାରକୁ ଗୁରୁତର ଧର୍ମ୍ମ ଲକ୍ଷଣ ବୋଲି ଜ୍ଞାନ କରନ୍ତି ।୧୫। ଶଙ୍ଖ ଓ ଲିଖିତଙ୍କର ମତାବଲମ୍ବୀ ଋଷି-ମାନଙ୍କର ଏହିପରି ଅଭିପ୍ରାୟ ନୁହେ । ମାତ୍ସର୍ଯ୍ୟ କିମ୍ବା ଲୋଭବଶତଃ ସେମାନେ ଯେ ଆଚାରକୁ ଧର୍ମ୍ମଜ୍ଞାନ କରନ୍ତି ନାହିଁ, ତାହା ନୁହେ, ଋଷି ଶାସନ ସେମାନଙ୍କର ଅନୁମୋଦନୀୟ ଅଟେ ।୧୬। କୁକର୍ମ୍ମଶୀଳ ପୁରୁଷକୁ ଶାସନ କରିବ ବୋଲି ଋଷିମାନେ ନିର୍ଦ୍ଦେଶ କରିଅଛନ୍ତି । କିନ୍ତୁ ଗୁରୁତର ବ୍ୟକ୍ତିଗଣ ଅସତ୍ପଥ ଅବଲମ୍ବନ କଲେ, ସେମାନଙ୍କୁ ମଧ୍ୟ ଶାସନ କରିବା ଉଚିତ, ଏହିପରି ବାକ୍ୟ ଋଷିମାନଙ୍କ କର୍ତ୍ତୃକ ନିର୍ଦ୍ଦିଷ୍ଟ ହୋଇଥିଲେ ହେଁ ତତ୍ସଦୃଶ ପ୍ରମାଣ କୁତ୍ରାପି ଦେଖାଯାଏ ନାହିଁ; ଅତଏବ ରାଜାମାନଙ୍କର ତାହା କର୍ତ୍ତବ୍ୟ ନୁହେ ।୧୭।

ଦେବତାମାନେ କ୍ରୂରକର୍ମଶୀଳ ନରାଧମକୁ ଶାସନ କରନ୍ତି । ଯେଉଁ ରଜା ଛଳଦ୍ୱାରା ଧନସଞ୍ଚୟ କରନ୍ତି, ସେ ଧର୍ମଭ୍ରଷ୍ଟ ହୁଅନ୍ତି । ୧୮ । ଶ୍ରୁତି ନିର୍ଦ୍ଦିଷ୍ଟ, ଜାନୁ ପ୍ରଭୃତି ସ୍ମୃତି ବିହିତ, ଦେଶ ଓ କୁଳାଚାରାନୁଯାୟୀ ସାଧୁଜନାଚରିତ ଏବଂ ସଜ୍ଜନ ହୃଦୟ ସମ୍ପୃକ୍ତ ଧର୍ମକୁ ରାଜା ଅବଲମ୍ବନ କରିବେ । ୧୯ । ଯେଉଁ ବ୍ୟକ୍ତି ବେଦ ବିହିତ ତର୍କନିଶ୍ଚିତ, ବାର୍ତ୍ତାଶାସ୍ତ୍ର ସମ୍ମତ ଓ ଦଣ୍ଡନୀତି ପ୍ରସିଦ୍ଧ ଧର୍ମକୁ କହିପାରନ୍ତି, ସେ ଧର୍ମଜ୍ଞ ଅଟନ୍ତି । ସର୍ପର ପଦ ଅନ୍ୱେଷଣ କଲାପ୍ରାୟ ଧର୍ମର ମୂଳଅନ୍ୱେଷଣ କରିବା ଅତି ଦୁଃଖକର କର୍ମ ଅଟେ । ୨୦ । ବ୍ୟାଧ ଯେପରି ବାଣବିଦ୍ଧ ମୃଗର ରୁଧିର-ସିକ୍ତ ପଦଚିହ୍ନ ଦର୍ଶନଦ୍ୱାରା ତାହାର ଗମନପଥକୁ ଲକ୍ଷ୍ୟ କରନ୍ତି, ଧର୍ମପଥ ଅନୁସନ୍ଧାନ କରିବା ମଧ୍ୟ ସେହିପରି ଅଟେ । ୨୧ ।

ହେ ଯୁଧିଷ୍ଠିର ! ଏହି ପ୍ରକାରେ ସାଧୁଗଣଙ୍କର ଆଚରିତ ପଥରେ ବିଚରଣ କରିବା କର୍ତ୍ତବ୍ୟ । ରାଜର୍ଷିଗଣଙ୍କର ଚରିତ୍ର ଏହିପରି, ତୁମ୍ଭେ ମଧ୍ୟ ଏହିପରି କର । ୨୨ ।

## ଅଧ୍ୟାୟ—୧୩୩

ଭୀଷ୍ମ କହିଲେ—ହେ କୌନ୍ତେୟ ! ରାଜା ରାଜସ୍ୱ ଓ ପରରାଜ୍ୟରୁ ଧନ ସଂଗ୍ରହ କରିବେ । କାରଣ ଧନରୁ ରାଜ୍ୟର ମୂଳଭୂତ ଧର୍ମ ବର୍ଦ୍ଧିତ ହୋଇଥାଏ । ୧ । ଅତଏବ ଧନ ସଙ୍କଳନ ପୂର୍ବକ ତାହାକୁ ଯତ୍ନ ସହକାରେ ରକ୍ଷା କରିବା ଉଚିତ ଏବଂ ରକ୍ଷାକରି ତାହାର ବୃଦ୍ଧି କରିବା କର୍ତ୍ତବ୍ୟ । ଏହାହିଁ ସନାତନ ଧର୍ମ । ୨ । କେବଳ ପବିତ୍ରତା କିମ୍ବା ନୃଶଂସତା ଦ୍ୱାରା ଧନ ସଞ୍ଚୟ କରିବା କର୍ତ୍ତବ୍ୟ ନୁହେ । ପବିତ୍ରତା ଓ ନୃଶଂସତାର ମଧ୍ୟବର୍ତ୍ତୀ ହୋଇ କୋଷ ସଂଗ୍ରହ କରିବା ଉଚିତ । ୩ । ବଳହୀନ ରାଜାଙ୍କର ଧନ ସଂଗ୍ରହ ହୁଏ ନାହିଁ; ଧନହୀନ ବ୍ୟକ୍ତି ବଳିଷ୍ଠ ହୁଏ ନାହିଁ । ବଳହୀନ ହେଲେ ରଜା ରାଜ୍ୟଚ୍ୟୁତ ହୁଅନ୍ତି ଏବଂ ରାଜ୍ୟହୀନ ରାଜା ଶ୍ରୀଚ୍ୟୁତ ହୁଅନ୍ତି । ମହତ ବ୍ୟକ୍ତିଙ୍କର ଶ୍ରୀହାନି ମରଣତୁଲ୍ୟ ଅଟେ । ଅତଏବ ନୃପତି ଯେଉଁ ଉପାୟ ଦ୍ୱାରା ଧନ, ବଳ ଓ ମିତ୍ର ବୃଦ୍ଧି ହୁଏ, ତଦ୍ୱିଷୟରେ ଯତ୍ନବାନ ହେବେ । ୪ । ମାନବଗଣ ଧନହୀନ ନୃପତିଙ୍କୁ ଅବଜ୍ଞା କରନ୍ତି । ସେମାନେ ଅଳ୍ପ ଧନଦ୍ୱାରା ତାହାଙ୍କ ପ୍ରତି ସନ୍ତୁଷ୍ଟ

ହୁଅନ୍ତି ନାହିଁ । ଏବଂ ଉତ୍ସାହ ସହକାରେ ତାହାଙ୍କର କାର୍ଯ୍ୟ କରନ୍ତି ନାହିଁ । ୬ ।

ରାଜା ସମ୍ପତ୍ତି ହେତୁରୁ ପରମ ସମ୍ମାନ ପ୍ରାପ୍ତ ହୁଅନ୍ତି । ବସ୍ତ୍ର ଯେପରି ନାରୀମାନଙ୍କର ଗୋପନୀୟ ସ୍ଥାନକୁ ଆବରଣ କରେ, ଧନ ସମ୍ପତ୍ତି ସେହିପରି ରାଜାଙ୍କର ପାପନିଚୟକୁ ସମ୍ବରଣ କରେ । ୭ । ପୂର୍ବେ ରାଜା ଯେଉଁମାନଙ୍କ ସହିତ ବିରୋଧ କରି ଥାଅନ୍ତି, ସେମାନେ ତାହାଙ୍କର ସମୃଦ୍ଧି ସମୟରେ ଅନୁତପ୍ତ ହୁଅନ୍ତି ଏବଂ ବାନରଗଣ ଯେପରି ଜଙ୍ଗଲସ୍ଥ ବ୍ୟକ୍ତିମାନଙ୍କୁ ନିହତ କରିବା ନିମିତ୍ତ ଅନୁସରଣ କରନ୍ତି, ସେହିପରି ଉକ୍ତ ବ୍ୟକ୍ତିମାନେ କପଟାଚାର ଦ୍ୱାରା ରାଜାଙ୍କୁ ବିନଷ୍ଟ କରିବା ମାନସରେ ତାହାଙ୍କୁ ଆଶ୍ରୟ କରନ୍ତି । ୮ ।

ହେ ଭାରତ ! ଯେଉଁ ରାଜା ଏତାଦୃଶ, ତାହାଙ୍କର ସୁଖ କି ପ୍ରକାରେ ହୋଇପାରେ ? ଅତଏବ ସର୍ବତୋଭାବରେ ଉନ୍ନତି ନିମିତ୍ତ ଚେଷ୍ଟା କରିବା ଉଚିତ । ନତ ହେବା ଉଚିତ ନୁହେ । କାରଣ ଉଦ୍ୟମ ପୌରୁଷ ବୋଲି ପ୍ରଥିତ ଅଟେ । ଅସମୟରେ ବରଂ ଭଗ୍ନ ହେବା ଭଲ, ତଥାପି କାହାଠାରେ ନତ ହେବା ଉଚିତ ନୁହେ । ଅରଣ୍ୟକୁ ଆଶ୍ରୟ ପୂର୍ବକ ମୃଗମାନଙ୍କ ସହିତ ବିଚରଣ କରିବା ବିହିତ, ମର୍ଯ୍ୟାଦାଶୂନ୍ୟ ଦସ୍ୟୁଗଣଙ୍କ ସଦୃଶ ଅମାତ୍ୟ ବର୍ଗଙ୍କର ସଂସର୍ଗ କରିବା ଉଚିତ ନୁହେ । ହେ ଭାରତ ! ଭୟଙ୍କର କାର୍ଯ୍ୟରେ ଅମାତ୍ୟ ଗଣପ୍ରାୟ ବନସ୍ଥ ଦସ୍ୟୁସେନା ମଧ୍ୟ ସୁଲଭ । ଏକାନ୍ତତଃ ଅମର୍ଯ୍ୟାଦା ବଶତଃ ସମସ୍ତ ବ୍ୟକ୍ତି ଉଦ୍‌ବିଗ୍ନ ହୋଇଥାନ୍ତି ଏବଂ ଦସ୍ୟୁମାନେ ମଧ୍ୟ ନିର୍ଦ୍ଦୟ ଲୋକଙ୍କୁ ଅତ୍ୟନ୍ତ ଭୟ କରନ୍ତି । ୧୨ ।

ଅତଏବ ଯେଉଁ ମର୍ଯ୍ୟାଦା ଲୋକମାନଙ୍କର ଅନ୍ତଃକରଣକୁ ପ୍ରସନ୍ନ କରେ, ତାହାକୁ ସ୍ଥାପନ କରିବା ଉଚିତ । ଅର୍ଥ ଅଳ୍ପ ଥିଲେ ମଧ୍ୟ ଜନ ସମାଜରେ ମର୍ଯ୍ୟାଦା ବିଶିଷ୍ଟ ପୁରୁଷ ପୂଜିତ ହୁଏ । ୧୩ । ଇହଲୋକ କିମ୍ବା ପରଲୋକରେ ପାପପୁଣ୍ୟର ଫଳ ଭୋଗ କରିବାକୁ ହୁଏ । ସାଧାରଣ ଲୋକେ ଏହା ବିଶ୍ୱାସ କରନ୍ତି ନାହିଁ ବୋଲି ଭୟଶଙ୍କିତ ନାସ୍ତିକ ମତରେ ବିଶ୍ୱାସ କରିବା ବିହିତ ନୁହେ । ୧୪ । ଦସ୍ୟୁଗଣଙ୍କ ମଧ୍ୟରେ ଇଦୃଶ ବ୍ୟକ୍ତି ଅଛନ୍ତି, ଯେଉଁମାନେ ପରସ୍ୱ ହରଣ କରନ୍ତି କିନ୍ତୁ

ତାହାର ହିଂସା କରନ୍ତିନାହିଁ, ଅତଏବ ଦସ୍ୟୁଗଣ ମର୍ଯ୍ୟାଦା ସମନ୍ୱିତ ହେଲେ ତାହାଙ୍କଠାରେ ଶେଷରେ ସମସ୍ତେ ଅନୁରକ୍ତ ହୁଅନ୍ତି । ୧୫ । ଯେଉଁ ବ୍ୟକ୍ତି ଯୁଦ୍ଧରୁ ବିରତ ହୋଇଅଛି, ତାଦୃଶ ବ୍ୟକ୍ତିର ବଧ ସାଧନ କରିବା, ଦାରାପହରଣ କୃତଘ୍ନତା ଓ ବ୍ରାହ୍ମଣମାନଙ୍କର ବିତ୍ତହରଣ କରିବା, ସର୍ବସ୍ୱାପହରଣ ଓ କନ୍ୟା ଚୌର୍ଯ୍ୟ କରିବା, ଗ୍ରାମାଦି ଆକ୍ରମଣ ପୂର୍ବକ ପ୍ରଭୁତ୍ୱ ଭାବରେ ଅବସ୍ଥାନ କରିବା ଏବଂ ସମ୍ଭୋଗଦ୍ୱାରା ପରସ୍ତ୍ରୀର ପାତିବ୍ରତ୍ୟ ଖଣ୍ଡନ କରିବା, ଏହିସବୁ କାର୍ଯ୍ୟ ଦସ୍ୟୁଗଣଙ୍କ ପକ୍ଷରେ ଅତ୍ୟନ୍ତ ଗର୍ହିତ ଅଟେ । ଅତଏବ ଦସ୍ୟୁମାନଙ୍କର ଏହି କର୍ମସବୁକୁ ପରିତ୍ୟାଗ କରିବା ବିଧେୟ । ୧୭ । ଯେଉଁମାନେ ଦସ୍ୟୁର ବିନାଶାର୍ଥ ଅଭିସନ୍ଧି କରନ୍ତି, ସେମାନେ ତାହାର ବିଶ୍ୱାସୋତ୍ପାଦନ ପୂର୍ବକ ନାନା ଉପାୟ ଦ୍ୱାରା ତାହାର ଧନ ସମ୍ପତ୍ତି ଇତ୍ୟାଦିକୁ ପ୍ରାପ୍ତ ହୋଇ ତାହା ସହିତ ବନ୍ଧୁବନ୍ଧନ କରନ୍ତି । ଅତଏବ ତାହାର ଦାରା, ପୁତ୍ର, ବିତ୍ତ, ବିଭବ ଯାହା କିଛି ଥାଏ, ତତ୍ସମସ୍ତ ରାଜାଙ୍କର ଆତ୍ମୀକୃତ କରିବା କର୍ତ୍ତବ୍ୟ । ୧୮ ।

ଏଥିନିମିତ୍ତ ଦସ୍ୟୁମାନଙ୍କ ଉଚିତ୍ କି ସେମାନେ ଅନ୍ୟର ଧନକୁ ନିଜ ଅଧିକାରରେ ପାଇ ମଧ୍ୟ କିଛି ଅବଶିଷ୍ଟ ରଖିଯିବେ, ଯେପରି ସମସ୍ତେ ନ ନିଅନ୍ତି । "ମୁଁ ବଳବାନ୍ ଅଟେ" ଏକଥା ଭାବି କ୍ରୂରତାପୂର୍ଣ୍ଣ ବ୍ୟବହାର କରିବା ଅନୁଚିତ ।୧୯। ଯେଉଁ ରାଜା ଦସ୍ୟୁମାନଙ୍କର ଦାରା, ପୁତ୍ର ଓ ଧନ ସମ୍ପତ୍ତିକୁ ରକ୍ଷା କରନ୍ତି, ସେ ନିରାପଦରେ ରାଜ୍ୟଭୋଗ କରିବାକୁ ସମର୍ଥ ହୁଅନ୍ତି ଏବଂ ଯେ ଦସ୍ୟୁଗଣଙ୍କୁ ନିର୍ମୂଳ କରନ୍ତି, ନିଃଶେଷ କରିଥିବା ହେତୁରୁ ଅନ୍ୟ ଦସ୍ୟୁବୃନ୍ଦ ତାହାଙ୍କୁ ସତତ ଭୟ ପ୍ରଦର୍ଶନ କରନ୍ତି । ଅତଏବ ତାଙ୍କର ନିରାପଦରେ ରାଜ୍ୟ ପାଳନ କରିବା ସୁକଠିନ ହୁଏ । ୨୦ ।

---

## ଅଧ୍ୟାୟ—୧୩୪

ଭୀଷ୍ମ କହିଲେ—ଏହି ବିଷୟରେ ଇତିହାସବେତ୍ତା ପଣ୍ଡିତମାନେ ଧର୍ମ୍ମ ଶାସନ କୀର୍ତ୍ତନ କରିଥାନ୍ତି । ବିଶେଷତଃ କ୍ଷତ୍ରିୟ ରାଜା ଧର୍ମ୍ମ ଓ ଅର୍ଥକୁ ପ୍ରତ୍ୟକ୍ଷ କରନ୍ତି । ପ୍ରତ୍ୟକ୍ଷ ଧର୍ମ୍ମକୁ ଶାସ୍ତ୍ରୋକ୍ତ ବିଗୁର ରୂପ ପରୋକ୍ଷ ଧର୍ମ୍ମ ଦ୍ୱାରା ଆବରଣ କରିବା ଉଚିତ ନୁହେ । ଭୂମିତଳରେ ବୃକର ପଦ ଚିହ୍ନକୁ ପ୍ରତ୍ୟକ୍ଷ କରି "ଏହା ବୃକର ପାଦ ଚିହ୍ନ କି ନା" ଏହିପରି ବିବେଚନା କରିବା ସଦୃଶ ପ୍ରତ୍ୟକ୍ଷ ଧର୍ମ୍ମକୁ ଅଧର୍ମ୍ମ ବୋଲି ସନ୍ଦେହ କରିବା ଅନୁଚିତ । ୨ । ଇହଲୋକରେ କୌଣସି ବ୍ୟକ୍ତି ଧର୍ମ୍ମାଧର୍ମ୍ମର ଫଳକୁ କଦାପି ଦେଖି ନାହାନ୍ତି । ଧର୍ମ୍ମ ଫଳକୁ ବଳରୂପରେ ଜ୍ଞାନ କରିବା ଉଚିତ । କାରଣ ସମସ୍ତ ବିଷୟ ବଳବାନ୍ ବ୍ୟକ୍ତିଙ୍କର ବଶୀଭୂତ ଅଟେ । ୩ । ବଳବାନ୍ ବ୍ୟକ୍ତି ଧନ, ବଳ ଓ ଅମାତ୍ୟବର୍ଗଙ୍କୁ ଲାଭ କରନ୍ତି । ଯେ ନିର୍ଦ୍ଧନ ସେ ପତିତ ଅଟନ୍ତି । ଯାହା କିଛି ଅଳ୍ପ, ତାହା ଉଚ୍ଛିଷ୍ଟ ବୋଲି ପରିଗଣିତ ହୁଏ । ୪ । ବଳବାନ୍ ଲୋକ ବହୁ ବିଗର୍ହିତ କର୍ମ୍ମ କଲେ ମଧ୍ୟ ଭୟବଶତଃ ତାହାଙ୍କର କେହି କୌଣସି ଅନିଷ୍ଟ କରିପାରନ୍ତି ନାହିଁ । ଅର୍ଥାତ୍ ପାତିତ୍ୟାଦି ଦୋଷ ଦେଇପାରନ୍ତି ନାହିଁ । ଧର୍ମ୍ମ ଓ ସତ୍ୟ ଉଭୟ ବଳବାନ୍ ଲୋକଙ୍କୁ ମହତ ଭୟରୁ ପରିତ୍ରାଣ କରେ । ୫ ।

ବଳ ଧର୍ମ୍ମ ଅପେକ୍ଷା ପ୍ରବଳ ବୋଲି ବୋଧ ହୁଏ, କାରଣ ବଳରୁ ଧର୍ମ୍ମ ସମ୍ଭୁତ ହୋଇଥାଏ । ଧରଣୀ ତଳରେ ଜଙ୍ଗମ ଜୀବଗଣ ପ୍ରାୟ, ବଳରେ ଧର୍ମ୍ମ ପ୍ରତିଷ୍ଠିତ ରହିଅଛି । ୬ । ଧୂମ ଯେପରି ବାୟୁ ବଶରେ ଥାଏ, ସେହିପରି ଧର୍ମ୍ମ ବଳରେ ଅନୁସରଣ କରେ । ଲତା ଯେପରି ବୃକ୍ଷକୁ ଆଶ୍ରୟ କରି ଥାଏ, ସେହିପରି ଧର୍ମ୍ମ ବଳକୁ ଅବଲମ୍ବନ ପୂର୍ବ୍ବକ ତତ୍ପ୍ରତି ପ୍ରଭୁତ୍ୱ ପ୍ରକାଶ କରିପାରେ ନାହିଁ । ୭ । ସୁଖ ଯେପରି ଭୋଗବାନ ବ୍ୟକ୍ତିଙ୍କର ବଶୀଭୂତ, ଧର୍ମ୍ମ ସେହିପରି ବଳବାନ ବ୍ୟକ୍ତିଙ୍କର ଅଧୀନ । ବଳିଷ୍ଠ ମାନଙ୍କର ଅସାଧ୍ୟ କିଛି ନାହିଁ । ସେମାନଙ୍କର ସମସ୍ତ କାର୍ଯ୍ୟ ପବିତ୍ର ଅଟେ । ୮ । ଦୁରାଚାର ଓ ବଳବାନ୍ ବ୍ୟକ୍ତିଙ୍କର ପରିତ୍ରାଣର ଉପାୟ ନାହିଁ, ବରଞ୍ଚ ସମସ୍ତ ଲୋକେ ବୃକପ୍ରାୟ, ତାହାଙ୍କଠାରୁ ଉଦ୍‌ବେଗ ପ୍ରାପ୍ତ ହୁଅନ୍ତି । ୯ । ଐଶ୍ୱର୍ଯ୍ୟହୀନ ଅବଜ୍ଞାତ ବ୍ୟକ୍ତି ଅତି ଦୁଃଖରେ ଜୀବନଯାପନ କରନ୍ତି । ଘୃଣିତ ଜୀବନ ଓ

ମରଣ ସମାନ । ୧୦ । ପ୍ରାଚୀନମାନେ କହନ୍ତି ଯେ ପାପଚରିତ ହେତୁ ଯେଉଁ ବ୍ୟକ୍ତି ବାନ୍ଧବଗଣଙ୍କ କର୍ତ୍ତୃକ ପରିତ୍ୟକ୍ତ ହୋଇଅଛନ୍ତି, ସେ ଅପରର ବାକ୍ୟ ସ୍ୱରୂପ ଶଲ୍ୟ ଦ୍ୱାରା ପରିତପ୍ତ ହୁଅନ୍ତି । ୧୧ । ଅଧର୍ମତଃ ଧନୋପାର୍ଜ୍ଜନରେ ଯେଉଁ ପାପ ହୁଏ ତାହାର ବିମୋଚନ ବିଷୟରେ ପୂର୍ବାଗୃର୍ଯ୍ୟମାନେ କହିଅଛନ୍ତି ଯେ ପାପୀ ବ୍ୟକ୍ତିଗଣ ବେଦ ବିଦ୍ୟାର ଆଲୋଚନା କରିବେ ଏବଂ ବ୍ରାହ୍ମଣମାନଙ୍କ ଉପାସନା କରି ସେମାନଙ୍କୁ ମଧୁର ବାକ୍ୟ ଓ ମଧୁର କାର୍ଯ୍ୟ ଦ୍ୱାରା ପ୍ରସନ୍ନ କରିବେ । ଉଦାର ଚିତ୍ତ ହେବେ । ମହତ୍ ବଂଶରେ ବିବାହ କରିବେ । ନିଜର ନମ୍ରତା ପ୍ରକାଶ ପୂର୍ବକ ଅପରର ଗୁଣ କୀର୍ତ୍ତନ କରିବେ । ସ୍ନାନଶୀଳ ହୋଇ ଜପାନୁଷ୍ଠାନ କରିବେ । ମୃଦୁ ସ୍ୱଭାବ ଧାରଣ କରିବେ ଏବଂ ବହୁଭାଷୀ ହେବେ ନାହିଁ । ୧୪ । ବହୁ ଦୁଷ୍କର କାର୍ଯ୍ୟକର ବ୍ରାହ୍ମଣ ଓ କ୍ଷତ୍ରିୟଗଣଙ୍କଠାରେ ଆଶ୍ରୟ ଗ୍ରହଣ କରିବେ । ଲୋକେ ସେମାନଙ୍କର ନିନ୍ଦା କଲେ ମଧ୍ଯ ବହୁ ପାପକାରୀ ବ୍ୟକ୍ତିଗଣ ତାହା ଚିନ୍ତା କରିବେ ନାହିଁ । ୧୫ । ପାପକାରୀ ଲୋକମାନେ ଏହିପରି ଆଚରଣ କରିପାରିଲେ ଅବିଳମ୍ବରେ ପାପହୀନ ଓ ସମସ୍ତଙ୍କର ସମାଦୃତ ହୁଅନ୍ତି । ଇହ ଓ ପରଲୋକରେ ସୁମହତ ସମ୍ମାନ ଲାଭ କରନ୍ତି ଏବଂ ଏକମାତ୍ର ସୁକୃତ ଦ୍ୱାରା ସମସ୍ତ ପାପ କ୍ଷାଳନ ପୂର୍ବକ ବିଚିତ୍ର ସୁଖଭୋଗ କରିବାକୁ ସମର୍ଥ ହୁଅନ୍ତି । ୧୬ ।

## ଅଧ୍ୟାୟ—୧୩୫

ଭୀଷ୍ମ କହିଲେ—ଏହି ସ୍ଥଳରେ ପ୍ରାଚୀନମାନେ ଗୋଟିଏ ପୁରାତନ ଇତିହାସ କୀର୍ତ୍ତନ କରନ୍ତି ଯେ, ଦସ୍ୟୁ ହୋଇ ସୁଦ୍ଧା ମର୍ଯ୍ୟାଦାଯୁକ୍ତ ହେଲେ ମରଣାନନ୍ତର ସେ ନିରୟଗାମୀ ହୁଅନ୍ତି ନାହିଁ । ୧ ।

କୌଣସି ନିଷାଦ ନାରୀର ଗର୍ଭରେ କ୍ଷତ୍ରିୟର ଔରସରେ କାପ୍ୟବ୍ୟ ନାମକ କ୍ଷତ୍ରିୟ ଧର୍ମ୍ମପାଳକ ଗୋଟିଏ ନିଷାଦ ଜନ୍ମଗ୍ରହଣ କରିଥିଲା । ସେ ଦସ୍ୟୁ ହୋଇ ସୁଦ୍ଧା ପ୍ରହର୍ତ୍ତା, ବୁଦ୍ଧିମାନ, ଶୂର, ଶାସ୍ତ୍ରଜ୍ଞ, ସୁନୃଶଂସବାନ୍ ଓ ମହାବଳ ପରାକ୍ରାନ୍ତ ଥିଲା । ଆଶ୍ରମଗୃହୀ ଋଷିମାନଙ୍କର ଧର୍ମ୍ମରକ୍ଷା କରୁଥିଲା । ବ୍ରାହ୍ମଣମାନଙ୍କର ହିତସାଧନ କରୁଥିଲା ଓ ଗୁରୁଲୋକଙ୍କର ସମ୍ମାନ କରୁଥିଲା । ଏହିସବୁ କାରଣରୁ ସେ ସିଦ୍ଧିଲାଭ

କରିଥିଲି । ୩ । ସେ ପ୍ରତିଦିନ ପୂର୍ବାହ୍ନରେ ଓ ସାୟଂକାଳରେ ଅରଣ୍ୟ ମଧ୍ୟରେ ମୃଗଯୂଥଙ୍କୁ ଉତ୍ତେଜିତ କରୁଥିଲି । ସେ ନିଷାଦଗଣଙ୍କ ମଧ୍ୟରେ ବିଜ୍ଞ ଥିଲି ଓ ମୃଗ ବନ୍ଧନ ବିଷୟରେ ସୁପଣ୍ଡିତ ଥିଲି । ୪ । ଦେଶକାଳ ବିବେଚନା କରିବା ବିଷୟରେ ତାହାର କିଛିମାତ୍ର ଅବିଦିତ ଥିଲା ନାହିଁ । ସେ ସତତ ପରିଯାତ୍ର ପର୍ବତରେ ବିଚରଣ କରୁଥିଲି । ସମସ୍ତ ଜୀବଙ୍କର ଧର୍ମକୁ ଅବଗତ ଥିଲି । ତାହାର ଶର ସବୁ ଅମୋଘ ଥିଲି ଓ ଶସ୍ତ୍ରସବୁ ଦୃଢ଼ ଥିଲି । ୫ । ସେ ଏକାକୀ ବହୁଶତ ସୈନ୍ୟ ଜୟ କରୁଥିଲି । ମହାରଣ୍ୟ ମଧ୍ୟରେ ବୃଦ୍ଧ, ଅନ୍ଧ ଓ ବଧିର ଲୋକମାନଙ୍କୁ ସମ୍ମାନ କରୁଥିଲି । ୬ । ସେ ସତ୍କାର ପୂର୍ବକ ମଧୁ, ମାଂସ, ଫଳ, ମୂଳ ଓ ନାନାପ୍ରକାର ଅନ୍ନ ଲୋକମାନଙ୍କୁ ଭୋଜନ କରାଉଥିଲି ଏବଂ ମାନ୍ୟ ଲୋକମାନଙ୍କର ପରିଚର୍ଯ୍ୟା କରୁଥିଲି । ୭ । ବନବାସୀ ସନ୍ନ୍ୟାସୀ ବ୍ରାହ୍ମଣଙ୍କୁ ପୂଜାକରି ବନ ମଧ୍ୟରେ ମୃଗ ହିଂସା ପୂର୍ବକ ସେମାନଙ୍କୁ ସତତ ଦାନ କରୁଥିଲି । ୮ । ଯେଉଁ ଲୋକମାନେ ଦସ୍ୟୁଠାରୁ ଭୋଜନ କରିବା ଭୟରେ ତାହାଠାରୁ ମାଂସ ପ୍ରଭୃତି ପ୍ରତିଗ୍ରହ କରନ୍ତି ନାହିଁ, ସେହି ଲୋକମାନଙ୍କ ଗୃହରେ ଅତି ପ୍ରତ୍ୟୁଷରେ ସେ ମାଂସାଦି ରଖିଦେଇ ଆସୁଥିଲି । ୯ ।

ଏକଦା ନିର୍ଦ୍ଦୟ ଓ ମର୍ଯ୍ୟାଦା ବର୍ଜିତ ବହୁସହସ୍ର ଦସ୍ୟୁ ତାହା ନିକଟକୁ ଆସି ତାହାଙ୍କୁ ସେମାନଙ୍କର ଗ୍ରାମଣୀ ଅର୍ଥାତ୍ ଅଧିପତି କରିବା ନିମିତ୍ତ ପ୍ରାର୍ଥନା କଲେ । ୧୦ । ଦସ୍ୟୁମାନେ କହିଲେ—ଆପଣ ଦେଶ କାଳ, ମୁହୂର୍ତ୍ତ ପ୍ରଭୃତିକୁ ବିଶେଷ ରୂପରେ ଅବଗତ ଅଛନ୍ତି, ଆପଣ ପ୍ରାଜ୍ଞ, ଶୂର ଓ ଦୃଢ଼ବ୍ରତ ଅଟନ୍ତି । ଅତଏବ ଅମ୍ଭମାନଙ୍କର ସମସ୍ତଙ୍କର ଅଭିମତ ଯେ ଆପଣ ଅମ୍ଭମାନଙ୍କର ପ୍ରଧାନ ଗ୍ରାମଣୀ ହୁଅନ୍ତୁ । ୧୧ । ଆପଣ ଅମ୍ଭମାନଙ୍କୁ ଯାହା ଯାହା ଆଦେଶ କରିବେ, ଅମ୍ଭେମାନେ ତାହା କରିବୁ ଅତଏବ ମାତା ପିତା ପ୍ରାୟ ଆପଣ ଅମ୍ଭମାନଙ୍କୁ ଯଥା ନ୍ୟାୟରେ ପ୍ରତିପାଳନ କରନ୍ତୁ । ୧୨ ।

କାୟବ୍ୟ କହିଲେ—ହେ ଦସ୍ୟୁଗଣ ! ତୁମ୍ଭେମାନେ ସ୍ତ୍ରୀ ଲୋକ, ତପସ୍ୱୀ, ଭୟଶୀଳ ଲୋକ ଓ ପଶୁମାନଙ୍କୁ ବଧ କରିବ ନାହିଁ । ଯେଉଁ ବ୍ୟକ୍ତି ଯୁଦ୍ଧ କରିବାରୁ ବିରତ ହୋଇଅଛି, ତାହାକୁ ବିନଷ୍ଟ କରିବା ଉଚିତ୍ ନୁହେ । ବଳ ପୂର୍ବକ ଅବଳାଗଣଙ୍କୁ ଗ୍ରହଣ କରିବା

ଅନୁଚିତ । ୧୩ । ସର୍ବଜୀବ ମଧ୍ୟରେ କାହାରି ସୁଦ୍ଧା ସ୍ତ୍ରୀବଧ ବିହିତ ନୁହେ । ସର୍ବଦା ବ୍ରାହ୍ମଣମାନଙ୍କର ମଙ୍ଗଳ ସାଧନ ଓ ସେମାନଙ୍କୁ ଧନଦାନ କରିବା ନିମିତ୍ତ ଅନ୍ୟ ସହିତ ଯୁଦ୍ଧ କରିବା କର୍ତ୍ତବ୍ୟ । ୧୪ । ସତ୍ୟର କଦାପି ଅମାନ୍ୟ କରିବା ଉଚିତ ନୁହେ । ବିବାହାଦି କାର୍ଯ୍ୟରେ ବିଘ୍ନ ଉତ୍ପାଦନ କରିବ ନାହିଁ । ସର୍ବ ଜୀବଙ୍କ ମଧ୍ୟରେ ଯାହାଙ୍କଠାରେ ଦେବତା, ପିତୃଗଣ ଓ ଅତିଥିମାନେ ପୂଜିତ ହୁଅନ୍ତି, ସେହି ସେ ବ୍ରାହ୍ମଣ ଅଟନ୍ତି ଓ ମୋକ୍ଷ ପଥର ଅଧିକାରୀ ଅଟନ୍ତି । ସମସ୍ତ ବସ୍ତୁ ଦାନ ଦ୍ୱାରା ଯେପରି ସେମାନଙ୍କର ଉନ୍ନତି ସାଧିତ ହୁଏ, ତାହା ସର୍ବତୋ ଭାବରେ କର୍ତ୍ତବ୍ୟ । ୧୬ । ବ୍ରାହ୍ମଣମାନେ ରୋଷ ପରବଶ ହୋଇ ଯାହାର ପରାଭବ ବିଷୟରେ ମନ୍ତ୍ରଣା କରନ୍ତି, ତ୍ରିଲୋକ ମଧ୍ୟରେ କେହି ସୁଦ୍ଧା ତାହାର ତ୍ରାତା ନାହିଁ । ୧୭ । ଯେଉଁ ବ୍ୟକ୍ତି ବ୍ରାହ୍ମଣମାନଙ୍କ ନିନ୍ଦା କରେ କିମ୍ବା ସେମାନଙ୍କର ବିନାଶ ସାଧନାର ବାସନା କରେ ସୂର୍ଯ୍ୟୋଦୟରେ ଅନ୍ଧକାର ପ୍ରାପ୍ତ ନିଶ୍ଚୟ ତାହାର ପରାଭବ ହୁଏ । ୧୮ । ତୁମ୍ଭେମାନେ ଏହି ସ୍ଥାନରେ ଅବସ୍ଥାନ ପୂର୍ବକ ସମସ୍ତ ଫଳ କାମନା କରିବ, ଯେଉଁ ସବୁ ବଣିକମାନେ ଆମ୍ଭମାନଙ୍କୁ ଦାନ ନ କରିବେ, ସେମାନଙ୍କ ପ୍ରତି ସେନା ପ୍ରେରିତ ହେବ । ୧୯ ।

ଦୁଷ୍ଟମାନଙ୍କର ଶାସନ ନିମିତ୍ତ ଦଣ୍ଡ ବିହିତ ହୋଇଅଛି । ନିଜର ଉନ୍ନତି ନିମିତ୍ତ ତାହା ବିହିତ ନୁହେ, ଏହା ନିଶ୍ଚୟ ଜାଣିବ । ଯେଉଁମାନେ ଶିଷ୍ଟଜନର ବାଧା କରନ୍ତି, ସେମାନଙ୍କ ପ୍ରତି ବଧରୂପ ଦଣ୍ଡ ବିହିତ ହୁଏ । ୨୦ । ଯେଉଁମାନେ ରାଜ୍ୟ ପ୍ରତି ଉପଦ୍ରବ କରି କୌଣସି ପ୍ରକାରରେ ଧନ ବୃଦ୍ଧି କରନ୍ତି. ସେମାନେ କୁଣପ ନିହତ କୃମିଗଣଙ୍କ ପ୍ରାୟ ଅଚିର କାଳ ମଧ୍ୟରେ ବଧ୍ୟ ରୂପରେ ପରିଗଣିତ ହୁଅନ୍ତି । ୨୧ । ଯେଉଁସବୁ ଦସ୍ୟୁଗଣ ଏହି କାନନ ମଧ୍ୟରେ ଧର୍ମ୍ମ ଶାସ୍ତ୍ରାନୁସାରେ ଜୀବନ ଯାପନ କରନ୍ତି, ସେମାନେ ଦସ୍ୟୁ ହୋଇ ସୁଦ୍ଧା ଅବିଳମ୍ବରେ ସିଦ୍ଧିଲାଭ କରି ପାରିବେ । ୨୨ । ଭୀଷ୍ମ କହିଲେ—ସେହି ସବୁ ଦସ୍ୟୁମାନେ କାପ୍ୟବ୍ୟର ସମସ୍ତ ଶାସନକୁ ପ୍ରତିପାଳନ କରିଥିଲେ । ସମସ୍ତେ ଉନ୍ନତି ଲାଭ କରି ପାପ କର୍ମ୍ମରୁ ବିରତ ହୋଇଥିଲେ । ୨୩ । କାପ୍ୟବ୍ୟ ସାଧୁମାନଙ୍କ ପ୍ରତି ମଙ୍ଗଳ ଆଚରଣ ଓ ଦସ୍ୟୁଗଣଙ୍କୁ ପାପରୁ ନିବର୍ତ୍ତିତ କରିବା ଦ୍ୱାରା ମହତୀ ସିଦ୍ଧି ଲାଭ କରିଥିଲେ । ୨୪ ।

ହେ ଭରତ ! ଯେ ଏହି କାପୁରୁଷ ଚରିତ ବିଷୟକୁ ନିମ୍ନ ଚିନ୍ତା କରନ୍ତି, ସେ ଅରଣ୍ୟ ଭୂତଗଣଙ୍କ ଠାରୁ କୌଣସି ଭୟ ପ୍ରାପ୍ତ ହୁଅନ୍ତି ନାହିଁ । ତାହାଙ୍କର ଅସଜ୍ଜନଙ୍କ ଠାରୁ ଏବଂ ସର୍ବଭୂତଙ୍କ ଠାରୁ ମଧ୍ୟ କୌଣସି ଭୟ ହୁଏ ନାହିଁ । ସେ ଅରଣ୍ୟ ମଧ୍ୟରେ ନୃପତି ହୋଇ ନିଶ୍ଚିତ ରୂପରେ ଅବସ୍ଥିତ କରି ପାରନ୍ତି । ୨୭ ।

## ଅଧ୍ୟାୟ—୧୩୬

ଭୀଷ୍ମ କହିଲେ—ରାଜା ଯେଉଁ ଉପାୟ ଦ୍ୱାରା କୋଷ ସଞ୍ଚୟ କରନ୍ତି ତଦ୍‌ବିଷୟରେ ପୁରାବିତ ପଣ୍ଡିତମାନେ ବ୍ରହ୍ମାଙ୍କ କର୍ତ୍ତୃକ କଥିତ ଏହି ଗାଥା ସବୁ କୀର୍ତ୍ତନ କରନ୍ତି । ୧ । ଯଜ୍ଞଯାଜୀ ଋଷିଗଣଙ୍କର ଧନ ଓ ଦେବସ୍ୱ ହରଣ କରିବା ଉଚିତ ନୁହେ । କ୍ଷତ୍ରିୟ ନୃପତି ଦସ୍ୟୁ ଓ କ୍ରିୟାହୀନ ଲୋକଙ୍କର ଧନ ହରଣ କରି ପାରନ୍ତି । ୨ ।

ହେ ଭାରତ ! କ୍ଷତ୍ରିୟମାନଙ୍କର ଏହି ପ୍ରଜାମାନଙ୍କୁ ପାଳନ କରିବାରେ ଓ ରାଜ୍ୟ ଭୋଗରେ ଅଧିକାର ଅଛି । ଅତଏବ ସମସ୍ତ ଧନ କ୍ଷତ୍ରିୟର ଅଟେ । ଅନ୍ୟର ନୁହେ । ୩ । ସେହି ଧନ ରାଜାଙ୍କର ବଳ ନିମିତ୍ତ କିମ୍ବା ଯଜ୍ଞ ନିମିତ୍ତ ହୁଏ । ଲୋକେ ଯେପରି ଅଭୋଗ୍ୟ ଔଷଧିମାନଙ୍କୁ ଛେଦନ ପୂର୍ବକ ତଦ୍ୱାରା ଭୋଗାର୍ହ ବ୍ରୀହ୍ୟାଦି ଦ୍ରବ୍ୟମାନଙ୍କୁ ପାକ କରନ୍ତି, ସେହିପରି ରାଜାମାନେ ଅସାଧୁ ବ୍ୟକ୍ତିମାନଙ୍କୁ ହିଂସା କରି ସାଧୁ ବ୍ୟକ୍ତି-ମାନଙ୍କୁ ପ୍ରତିପାଳନ କରିବେ । ୪ । ଯେଉଁ ବ୍ୟକ୍ତି ଦେବତା, ପିତୃଗଣ ଓ ମାନବ ଗଣଙ୍କୁ ହବି ଦ୍ୱାରା ଅର୍ଚ୍ଚନା କରେ ନାହିଁ, ଧର୍ମବିତ୍ ବ୍ୟକ୍ତିମାନେ ସେହି ବ୍ୟକ୍ତିର ଅର୍ଥକୁ ଅନର୍ଥକ ବୋଲି କହନ୍ତି । ୫ ।

ହେ ରାଜନ୍ ! ଧାର୍ମିକ ନୃପତି ଧନକୁ ହରଣ କରିବେ ଏବଂ ତଦ୍ୱାରା ଲୋକମାନଙ୍କୁ ପ୍ରୀତ କରିବେ । ତାଦୃଶ ଧନ ଦ୍ୱାରା କୋଷ ସଞ୍ଚୟ କରିବେ ନାହିଁ । ୬ । ଯେ ଆପଣାକୁ ଅର୍ଥାଗମର ଉପାୟ କରି ଅସାଧୁଗଣଙ୍କ ଠାରୁ ଅର୍ଥ ଆଦାନ ପୂର୍ବକ ସାଧୁଗଣଙ୍କୁ ପ୍ରଦାନ କରନ୍ତି ସେହି ସେ ସମ୍ପୂର୍ଣ୍ଣ ଧର୍ମଜ୍ଞ ଅଟନ୍ତି । ୭ । ଯାହାଙ୍କର ଯେପରି ଶକ୍ତି ସେ ତଦନୁସାରେ ପର-ଲୋକମାନଙ୍କୁ ଜୟ କରିବେ । ବଲ୍ମୀ ଓ ପିପୀଲିକାଦି ଯେପରି ଶନୈଃ ଶନୈଃ ବହୁ ଦୂରକୁ ଗମନ କରନ୍ତି, ସେହିପରି ରାଜା ନିଜର ଶକ୍ତି ଅନୁସାରେ

କ୍ରମେ କ୍ରମେ ପରଲୋକକୁ ଜୟ କରିବାର ଚେଷ୍ଟା କରିବେ । ଉଦ୍ଭିଜ୍ଜ ଓ ବଜ୍ରକୀଟ ପ୍ରଭୃତି ଜୀବଗଣ ଯେପରି ନିମିତ୍ତ ବ୍ୟତୀତ ଉତ୍ପନ୍ନ ହୁଅନ୍ତି, ଅପଜ୍ଞ ମଧ୍ୟ ସେହିପରି ସମ୍ଭୃତ ହୁଅନ୍ତି । ଗବାଦିର ଶରୀରରୁ ଯେପରି ଦଂଶ, ମଶକ ଓ ପ୍ରଚଣ୍ଡ ପିପୀଲିକା ପ୍ରଭୃତିକୁ ବହିଷ୍କୃତ କରାଯାଏ, ଅପାଙ୍କ୍ତିକ ବ୍ୟକ୍ତି ପ୍ରତି ତାଦୃଶ ବ୍ୟବହାର କରିବା କର୍ତ୍ତବ୍ୟ । ଅର୍ଥାତ୍ ସେମାନଙ୍କୁ ରାଷ୍ଟ୍ରରୁ ବହିଷ୍କୃତ କରିବ, ଏହା ଧର୍ମାନୁସାରେ ବିହିତ ଅଟେ । ୧୦ । ଭୂମିତଳରେ ପତିତ ପାଂଶୁ ଯେପରି ପାଷାଣାଦି ଦ୍ୱାରା ପିଷ୍ଟ ହୋଇ ସୂକ୍ଷ୍ମ ଓ ସୂକ୍ଷ୍ମତର ହୋଇଯାଏ, ଧର୍ମ ମଧ୍ୟ ଇହଲୋକରେ ସେହିପରି ସୂକ୍ଷ୍ମ ଓ ସୂକ୍ଷ୍ମତର ଅଟେ । ୧୧ ।

## ଅଧ୍ୟାୟ—୨୩୭

ଭୀଷ୍ମ କହିଲେ—ହେ ରାଜନ୍ ! କାର୍ଯ୍ୟ ଉପସ୍ଥିତ ହେବା ପୂର୍ବରୁ ଯେ ତାହାର ଭବିଷ୍ୟତ ଫଳକୁ ବିବେଚନା କରନ୍ତି, ତାହାଙ୍କର ନାମ ଅନାଗତ ବିଧାତା ଅଟେ । କାର୍ଯ୍ୟ ଉପସ୍ଥିତ ହେଲେ ଯେ ତାହାକୁ ବୁଦ୍ଧି ବଳ ଦ୍ୱାରା ତତ୍କ୍ଷଣାତ୍ ସଂସାଧିତ କରନ୍ତି, ତାହାଙ୍କର ନାମ ପ୍ରତ୍ୟୁତ୍ପନ୍ନମତି ଅଟେ ଏବଂ ଉପସ୍ଥିତ କାର୍ଯ୍ୟରେ ଯେ ଆଳସ୍ୟ ପୂର୍ବକ ସମୟ କ୍ଷେପଣ କରନ୍ତି, ତାହାଙ୍କର ନାମ ଦୀର୍ଘସୂତ୍ର ଅଟେ । ଏହି ତ୍ରିବିଧ ଲୋକ ମଧ୍ୟରେ ଅନାଗତ ବିଧାତା ଓ ପ୍ରତ୍ୟୁତ୍ପନ୍ନମତି ଏହି ଦୁଇବ୍ୟକ୍ତି ସୁଖଲାଭ କରନ୍ତି, କିନ୍ତୁ ଦୀର୍ଘସୂତ୍ର ବ୍ୟକ୍ତି ଅବିଳମ୍ବରେ ବିନଷ୍ଟ ହୁଏ । ୧ । ବର୍ତ୍ତମାନ ଦୀର୍ଘ ସୂତ୍ରକୁ ଅବଲମ୍ବନ କରି କାର୍ଯ୍ୟାକାର୍ଯ୍ୟ ନିଶ୍ଚୟ ବିଷୟରେ ଗୋଟିଏ ଉତ୍ତମ ଉପାଖ୍ୟାନ କହୁଅଛୁଁ, ଅବ୍ୟଗ୍ର ଭାବରେ ଶ୍ରବଣ କର । ୨ ।

ହେ କୌନ୍ତେୟ ! କୌଣସି ପ୍ରଭୂତ ମତ୍ସ୍ୟପୂର୍ଣ୍ଣ ଅଳ୍ପଜଳ ବିଶିଷ୍ଟ ଜଳାଶୟରେ ଶକୁଳ ନାମକ ତିନୋଟି ମତ୍ସ୍ୟ ସୁହୃଦଭାବରେ ପରସ୍ପର ସହଚର ହୋଇ ବାସ କରୁଥିଲେ । ୩ । ସେହି ତିନି ସହଚରଙ୍କ ମଧ୍ୟରେ ପ୍ରଥମଟି ଅନାଗତ ବିଧାତା, ଦ୍ୱିତୀୟଟି ପ୍ରତ୍ୟୁତ୍ପନ୍ନମତି ଓ ତୃତୀୟଟି ଦୀର୍ଘସୂତ୍ର ଅଟେ ।୪। କୌଣସି ସମୟରେ ମତ୍ସ୍ୟଜୀବୀ ଧୀବରଗଣ ବିବିଧ ଜଳ ନିର୍ଗମ ମାର୍ଗଦ୍ୱାରା ସେହି ଜଳାଶୟର ଜଳକୁ ନିମ୍ନ ପ୍ରଦେଶକୁ ନିର୍ଗତ କରାଇଲେ । ୫ । ସେହି ଜଳାଶୟର ଜଳ କ୍ରମଶଃ ଅଳ୍ପ ହୋଇ ଯିବାର ଦେଖି ଦୀର୍ଘଦର୍ଶୀ ଅନାଗତ ବିଧାତା ଭୟବଶତଃ ଅନ୍ୟ ଦୁଇ ସୁହୃଦମାନଙ୍କୁ

କହିଲ ଯେ, ସମସ୍ତ ଜଳଚରଗଣଙ୍କର ଏହି ଆପଦ୍ ଉପସ୍ଥିତ ହୋଇ-ଅଛି । ଅତଏବ ଯାବତ୍କାଳ ନିର୍ଗମନର ପନ୍ଥା ଦୂଷିତ ନ ହୁଏ, ତାବତ୍କାଳ ମଧ୍ୟରେ ଆମ୍ଭେମାନେ ଅନ୍ୟତ୍ର ଶୀଘ୍ର ଗମନ କରିବା । ୭ । ଯେ ଅନାଗତ ଅନର୍ଥକୁ ସୁନୀତି ଦ୍ୱାରା ନିରାକୃତ କରନ୍ତି, ସେ କଦାପି ସଂଶୟାପନ୍ନ ହୁଅନ୍ତି ନାହିଁ, ଅତଏବ ତୁମ୍ଭମାନଙ୍କର ଏ ବିଷୟରେ ଅଭିରୁଚି ହେଉ; ଆମ୍ଭେ ଗମନ କରୁଅଛୁଁ । ୮ ।

ଏହିକଥା ଶୁଣି ଦୀର୍ଘସୂତ୍ର କହିଲା, ତୁମ୍ଭେ ଉତ୍ତମ କହୁଅଛ, କିନ୍ତୁ ଆମ୍ଭର ନିଶ୍ଚୟ ବିବେଚନା ହୁଏ ଯେ କୌଣସି ବିଷୟରେ ତ୍ୱରା କରିବା ଉଚିତ ନୁହେ । ୯ । ଅନନ୍ତର ପ୍ରତ୍ୟୁତ୍ପନ୍ନମତି ଦୀର୍ଘଦର୍ଶୀକୁ କହିଲା—ସମୟ ଉପସ୍ଥିତ ହେଲେ ଆମ୍ଭେ ନ୍ୟାୟତଃ କୌଣସି କର୍ତ୍ତବ୍ୟ ବିଷୟ ପରିତ୍ୟାଗ କରୁନାହିଁ । ୧୦ । ମହାମତି ଦୀର୍ଘଦର୍ଶୀ ଏହି କଥା ଶ୍ରବଣ କରି ସେହି ସ୍ରୋତ ଦ୍ୱାରା ନିର୍ଗତ ହୋଇ କୌଣସି ଗଭୀର ଜଳାଶୟକୁ ଗମନ କଲା । ୧୧ । ଅନନ୍ତର ମତ୍ସ୍ୟଜୀବୀମାନେ ସେହି ଜଳାଶୟର ସମସ୍ତ ଜଳ କ୍ଷରିତ ହୋଇ ଯିବାର ଦେଖି ବିବିଧ ଉପାୟ ଦ୍ୱାରା ମତ୍ସ୍ୟମାନଙ୍କୁ ବନ୍ଧନ କଲେ । ୧୨ । ସେହି ଜଳାଶୟର ଜଳ ବିଲୋଡ଼ିତ ଓ କ୍ଷରିତ ହୋଇ ଥିବା ସମୟରେ ଦୀର୍ଘସୂତ୍ର ଅପରାପର ଜଳଚରମାନଙ୍କ ସହିତ ବନ୍ଧନ ପ୍ରାପ୍ତ ହେଲା । ୧୩ । ମତ୍ସ୍ୟଜୀବୀମାନେ ତେତେବେଳେ ଶଣସୂତ୍ର ଦ୍ୱାରା ମତ୍ସମାନଙ୍କୁ ଗ୍ରଥିତ କରିବାକୁ ଆରମ୍ଭ କରିବାରୁ ପ୍ରତ୍ୟୁତ୍ପନ୍ନମତି ସେମାନଙ୍କ ମଧ୍ୟରେ ପ୍ରବେଶ କରି ମୁଖଦ୍ୱାରା ପ୍ରଥମ ସୂତ୍ରକୁ ଅବଲମ୍ବନ ପୂର୍ବକ ଅବସ୍ଥିତ ରହିଲା । ମତ୍ସ୍ୟଜୀବୀମାନେ ସମସ୍ତ ମତ୍ସ୍ୟ ଗ୍ରଥିତ ହୋଇ ଅଛି ବୋଲି ବିବେଚନା କଲେ । ୧୫ ।

ଅନନ୍ତର ବିପୁଳ ଜଳାଶୟ ମଧ୍ୟରେ ମତ୍ସ୍ୟମାନେ ପ୍ରକ୍ଷାଳିତ ହେଉଥିବା ସମୟରେ ପୂର୍ବୋକ୍ତ ପ୍ରତ୍ୟୁତ୍ପନ୍ନମତି ରଜ୍ଜୁମୋଚନ ପୂର୍ବକ ପଳାୟନ କଲା ଏବଂ ହୀନବୁଦ୍ଧି ଚୈତନାଶୂନ୍ୟ ମନ୍ଦାତ୍ମା ମୂଢ଼ ଦୀର୍ଘସୂତ୍ର, ନଷ୍ଟେନ୍ଦ୍ରିୟ ଲୋକପ୍ରାୟ ମୃତ ହେଲା । ୧୭ । ଏହିପରି ଯେଉଁଲୋକ ମୃତ୍ୟୁକାଳ ଉପସ୍ଥିତ ହେଲେ, ମୋହବଶତଃ ତାହା ଜାଣିପାରେ ନାହିଁ, ସେ ଦୀର୍ଘସୂତ୍ର ମତ୍ସ୍ୟପ୍ରାୟ ଅତିଶୀଘ୍ର ବିନଷ୍ଟ ହୁଏ । ୧୮ । "ଆମ୍ଭେ ଅତି ବିଚକ୍ଷଣ" ଏହା ଭାବି ଯେଉଁ ବ୍ୟକ୍ତି ଅଗ୍ରେ ନିଜର କଲ୍ୟାଣ ମାର୍ଗ ଆବିଷ୍କୃତ ନକରେ, ସେ ପ୍ରତ୍ୟୁତ୍ପନ୍ନ ମତିପ୍ରାୟ ସଂଶୟାପନ୍ନ ହୋଇଥାଏ ।୧୯।

ଅନାଗତ ବିଧାତା ଓ ପ୍ରତ୍ୟୁତ୍ପନ୍ନମତି ଏହି ଉଭୟ ସୁଖ ଲାଭ କରନ୍ତି ଏବଂ ଦୀର୍ଘସୂତ୍ର ବ୍ୟକ୍ତି ବିନଷ୍ଟ ହୁଏ । ୨୦ । କାଷ୍ଠା, କଳା, ମୁହୂର୍ତ୍ତ, ଦିବା, ରାତ୍ରି, ଲବ, ମାସ, ଋତୁ, ପକ୍ଷ, କଳ୍ପ, ସମ୍ବତ୍ସର ପୃଥିବୀ ଓ ଦେଶ ପ୍ରଭୃତି କାଳ ନାମରେ ଉକ୍ତ ହୁଅନ୍ତି, କିନ୍ତୁ ସେହି କାଳ ଦେଖାଯାଏ ନାହିଁ । ଅଭିପ୍ରେତ ବିଷୟର ସିଦ୍ଧିନିମିତ୍ତ ଯାହା ଯେପର ଚିନ୍ତା କରାଯାଏ, ତାହା ସେହିପର ସିଦ୍ଧ ହୁଏ । ଅର୍ଥାତ୍ କାଳ ଓ ଦେଶର ସୂକ୍ଷ୍ମତାକୁ ଜାଣି କାର୍ଯ୍ୟ କରିବା କର୍ତ୍ତବ୍ୟ । ୨୨ ।

ଧର୍ମ, ଅର୍ଥ ଓ ମୋକ୍ଷ ଶାସ୍ତ୍ରମାନଙ୍କରେ ମହର୍ଷିଗଣଙ୍କ କର୍ତ୍ତୃକ ଦୀର୍ଘ ଦର୍ଶୀ ଓ ପ୍ରତ୍ୟୁତ୍ପନ୍ନମତି ପ୍ରଧାନରୂପରେ ନିର୍ଦ୍ଦିଷ୍ଟ ହୋଇ ଅଛନ୍ତି ଏବଂ ସେମାନେ ସମୟରେ କାମରେ ମଧ୍ୟ ସମସ୍ତଙ୍କର ଅଭିମତ ହୋଇଥାନ୍ତି ।୨୩। ଯେ ପରୀକ୍ଷା ପୂର୍ବକ କାର୍ଯ୍ୟ ସମ୍ପାଦନ କରନ୍ତି ଏବଂ ଯେ ଯୁକ୍ତି ଅନୁସାରେ ସମ୍ୟକ କାର୍ଯ୍ୟ ସମାଧା କରନ୍ତି, ସେମାନେ ଦେଶକାଳ ଅନୁସାରେ ସର୍ବଜନସମ୍ମତ ହୋଇ ଦୀର୍ଘଦର୍ଶୀ ଓ ପ୍ରତ୍ୟୁତ୍ପନ୍ନମତି ଏମାନଙ୍କ ଅପେକ୍ଷା ସମଧିକ ଫଳପ୍ରାପ୍ତ ହୁଅନ୍ତି । ୨୪ ।

## ଅଧ୍ୟାୟ—୧୩୮

ଯୁଧିଷ୍ଠିର କହିଲେ—ହେ ଭରତଶ୍ରେଷ୍ଠ । ସମସ୍ତ ବିଷୟରେ ଆପଣଙ୍କର ବୁଦ୍ଧି ଶ୍ରେଷ୍ଠବୋଲି କଥିତ ହୋଇଅଛି । ଅନାଗତ ଓ ଉତ୍ପନ୍ନା ବୁଦ୍ଧି ଉତ୍କୃଷ୍ଟା ଅଟେ; କିନ୍ତୁ ଦୀର୍ଘସୂତ୍ରାମତି ବିନାଶିନୀ ଅଟେ ।୧।

ହେ ଭରତର୍ଷଭ । ଯେଉଁ ବୁଦ୍ଧି ଅବଲମ୍ବନ କଲେ ରାଜା ଶତ୍ରୁମାନଙ୍କ କର୍ତ୍ତୃକ ପରିବେଷ୍ଟିତ ହୋଇ ସୁଦ୍ଧା ମୋହପ୍ରାପ୍ତ ହୁଅନ୍ତି ନାହିଁ, ବର୍ତ୍ତମାନ ଆପଣଙ୍କଠାରୁ ସେହି ଉତ୍କୃଷ୍ଟ ବୁଦ୍ଧିର ବିଷୟକୁ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ୨ ।

ହେ କୁରୁଶ୍ରେଷ୍ଠ । ଆପଣ ଧର୍ମାର୍ଥକୁଶଳ ଓ ଧର୍ମଶାସ୍ତ୍ରବିଶାରଦ ଅଟନ୍ତି, ଅତଏବ ଆମ୍ଭେ ଯାହା ପ୍ରଶ୍ନ କରୁଅଛୁଁ, ତାହା ଆପଣ ଆମ୍ଭଠାରେ ବ୍ୟାଖ୍ୟା କରିବାକୁ ଯୋଗ୍ୟ ଅଟନ୍ତି । ୩ । ଭୂପତି ବହୁବୈରି କର୍ତ୍ତୃକ ପରିବେଷ୍ଟିତ ହୋଇ ଯେପରି ଅବସ୍ଥିତି କରିବେ, ତତ୍ସମୁଦାୟ ଯଥାବିଧି

ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ୪ । ରାଜା ଏକାକୀ ବିଷମସ୍ଥ ହେଲେ ପୂର୍ବସ୍ଥାପିତ ପରିପନ୍ଥିମାନେ ଏକତ୍ର ହୋଇ ତାହାଙ୍କର ପରାଜୟ ନିମିତ୍ତ ଯତ୍ନବାନ୍ ହୁଅନ୍ତି । ମହାବଳ ଭୂପାଳଗଣ ଯେତେବେଳେ ଅସହାୟ ଦୁର୍ବଳ ନୃପତିକୁ ଚତୁର୍ଦ୍ଦିଗରୁ ଆକ୍ରମଣ କରିବାକୁ ଉପକ୍ରମ କଲେ, ସେ କି ପ୍ରକାରେ ଅବସ୍ଥିତ କରିବାକୁ ସମର୍ଥ ହେବେ ? ହେ ଭରତଶ୍ରେଷ୍ଠ । କି ପ୍ରକାରେ ଅବା ସେ ଶତ୍ରୁ ଓ ମିତ୍ର ଲାଭ କରିବେ ଏବଂ ଶତ୍ରୁ ଓ ମିତ୍ରମାନଙ୍କ ମଧ୍ୟରେ ତାଙ୍କର କି ପ୍ରକାର ଚେଷ୍ଟା କରିବା ଉଚିତ ? ମିତ୍ର ଲକ୍ଷଣ ସମ୍ପନ୍ନ ସୁହୃତ୍ ଯଦି ଶତ୍ରୁ ହୋଇପଡ଼େ, ତାହାହେଲେ ତାହାପ୍ରତି କି ପ୍ରକାର ଆଚରଣ କରିବ ଏବଂ କୀଦୃଶ ବ୍ୟବହାର ଦ୍ୱାରା ସୁଖୀ ହେବ ? ୮ । ରାଜା କାହା ସହିତ ବିଗ୍ରହ କରିବେ, କାହା ସହିତ ଅବା ସନ୍ଧିସ୍ଥାପନ କରିବେ ? ଓ ବଳବାନ୍ ହୋଇ ସୁଦ୍ଧା ଶତ୍ରୁମାନଙ୍କ ମଧ୍ୟରେ କିପରି ଅବସ୍ଥାନ କରିବେ ? ୯ ।

ହେ ମହାଭାଗ ପରନ୍ତପ ! ସମସ୍ତ କର୍ତ୍ତବ୍ୟ ମଧ୍ୟରେ ଏହି ପରମ କର୍ତ୍ତବ୍ୟ ବିଷୟକୁ ଆପଣ ବିବେଚନା କରି କହନ୍ତୁ କାରଣ କଣ ? ସତ୍ୟସନ୍ଧ ଜିତେନ୍ଦ୍ରିୟ ଶାନ୍ତନୁନନ୍ଦନ ଭୀଷ୍ମଙ୍କ ବ୍ୟତୀତ ଏ ବିଷୟରେ ବକ୍ତା ଅନ୍ୟ କେହି ନାହିଁ, ଏହାର ଶ୍ରୋତା ମଧ୍ୟ ଅତ୍ୟନ୍ତ ଦୁର୍ଲଭ ଅଟେ । ୧୧ ।

ଭୀଷ୍ମ କହିଲେ—ହେ ଭରତଶ୍ରେଷ୍ଠ ବତ୍ସ ଯୁଧିଷ୍ଠିର ! ତୁମ୍ଭେ ଯାହା ପ୍ରଶ୍ନ କଲ ତାହା ଯୁକ୍ତିଯୁକ୍ତ ଅଟେ ଏବଂ ତାହାଶୁଣି ସୁଖୋଦୟ ହେଉ-ଅଛି । ଅତଏବ ଆପଦ କାଳରେ ଯାହା କର୍ତ୍ତବ୍ୟ ସେହି ଗୁହ୍ୟ ବିଷୟସବୁ କହୁଅଛୁଁ ଶ୍ରବଣ କର । ୧୨ । କାର୍ଯ୍ୟମାନଙ୍କର ସାମର୍ଥ୍ୟ ହେତୁରୁ ଅମିତ୍ର ସୁଦ୍ଧା ମିତ୍ର ହୁଏ ଓ ମିତ୍ର ମଧ୍ୟ ଦୂଷିତ ହୁଏ, ଅତଏବ କାର୍ଯ୍ୟର ଗତି ସତତ ଅନିତ୍ୟ ଅଟେ । ଅତଏବ କର୍ତ୍ତବ୍ୟାକର୍ତ୍ତବ୍ୟ ବିଷୟ ବିଶେଷ ଭାବରେ ନିଶ୍ଚୟ କରିବାକୁ ହେଲେ ଦେଶ କାଳ ବିବେଚନା ପୂର୍ବକ କାହା ପ୍ରତି ବିଶ୍ୱାସ କରିବା କର୍ତ୍ତବ୍ୟ ଏବଂ କାହାପ୍ରତି ବିଗ୍ରହ କରିବା ବିଧେୟ ।୧୪।

ହେ ଭାରତ ! ହିତୈଷୀ ପଣ୍ଡିତମାନଙ୍କ ସହିତ ଚେଷ୍ଟାକରି ସନ୍ଧି କରିବା ଉଚିତ ଏବଂ ପ୍ରାଣରକ୍ଷା ନିମିତ୍ତ ଶତ୍ରୁମାନଙ୍କ ସହିତ ସୁଦ୍ଧା ସନ୍ଧିବନ୍ଧନ କରିବା ବିଧେୟ । ୧୫ । ଯେଉଁ ଅପଣ୍ଡିତ ମାନବ ମିତ୍ରଗଣଙ୍କ

ସହିତ ସନ୍ଧି ସ୍ଥାପନ ନ କରେ ସେ କୌଣସି ଅର୍ଥ କିମ୍ବା ଫଳ ପ୍ରାପ୍ତ ହୁଏ ନାହିଁ । ୧୬ । ଯେଉଁ ବ୍ୟକ୍ତି ଅର୍ଥଯୁକ୍ତ ଅବଲମ୍ବନ ପୂର୍ବକ ସମୟାନୁସାରେ ଅମିତ୍ର ସହିତ ସନ୍ଧି ଏବଂ ମିତ୍ର ସହିତ ବିରୋଧ କରେ ସେ ସୁମହତ ଫଳପ୍ରାପ୍ତ ହୁଏ । ୧୭ । ପୁରାବିତ୍ ପଣ୍ଡିତମାନେ ଏ ବିଷୟରେ ଅର୍ଥାତ୍ ପୂର୍ବ ଶ୍ଳୋକୋକ୍ତ ବିଷୟରେ କୌଣସି ଗୋଟିଏ ବଟ ବିଟପି ନିକଟସ୍ଥ ମାର୍ଜାର ମୂଷିକର ସମ୍ବାଦ ସମ୍ବଳିତ ପୁରାତନ ଇତିହାସକୁ ଉଦାହରଣ ଦେଇଥାନ୍ତି । ୧୮ । କୌଣସି ମହାରଣ୍ୟ ମଧ୍ୟରେ ବିବିଧ ବିହଗକୁଳ ସମାକୁଳ ଲତାଜାଲ ସମାକୀର୍ଣ୍ଣ ପ୍ରକାଣ୍ଡ ସ୍କନ୍ଧ ସମନ୍ୱିତ ମେଘ ସଙ୍କାଶ ଶୀତଳ ଛାୟାଯୁକ୍ତ ବ୍ୟାଳମୃଗାକୁଳ ଓ ସମସ୍ତ ଅରଣ୍ୟକୁ ବ୍ୟାପି ଗୋଟିଏ ମନୋହର ସୁମହାନ୍ ବଟବୃକ୍ଷ ଥିଲା । ୨୦ । ପଳିତ ନାମକ ଗୋଟିଏ ମହାପ୍ରାଜ୍ଞ ମୂଷିକ ତାହାର ମୂଳସ୍ଥାନକୁ ଆଶ୍ରୟପୂର୍ବକ ଶତମୁଖ ଗର୍ତ୍ତ ନିର୍ମାଣ କରି ତହିଁରେ ବାସ କରୁଥିଲା । ୨୧ । ପକ୍ଷିସଙ୍ଘାତ ଭକ୍ଷକ ଲୋମଶ ନାମକ ମାର୍ଜାର ପୂର୍ବରୁ ସେହି ବଟବୃକ୍ଷର ଶାଖାକୁ ଆଶ୍ରୟ କରି ପରମ ସୁଖରେ ବାସ କରୁଥିଲା । ୨୨ । ଅରଣ୍ୟବାସୀ କୌଣସି ଗୋଟିଏ ଚଣ୍ଡାଳ ପ୍ରତିଦିନ ସୂର୍ଯ୍ୟ ଅସ୍ତ ହେଲେ ସେହି ବଟବୃକ୍ଷ ନିକଟକୁ ଆସି ପଶୁପକ୍ଷିବନ୍ଧନ କରିବା ନିମିତ୍ତ ତାହାର କୂଟ ଯନ୍ତ୍ରକୁ ବିସ୍ତାର କରୁଥିଲା । ୨୩ । ସେ ସେଠାରେ ଯଥାବିଧି ସ୍ନାୟୁମୟ ପାଶସବୁ ବିସ୍ତୀର୍ଣ୍ଣ କରି ଗୃହକୁ ଗମନପୂର୍ବକ ସୁଖରେ ଶୟନ କରେ ଏବଂ ଶର୍ବରୀ ପ୍ରଭାତ ହେଲେ ସେଠାରେ ଆସି ଉପସ୍ଥିତ ହୁଏ । ୨୪ । ରାତ୍ରିକାଳରେ ବହୁବିଧ ମୃଗଗଣ ସେହି ଜାଲରେ ବଦ୍ଧ ହୁଅନ୍ତି ।

କୌଣସି ଦିବସରେ ସେହି ମାର୍ଜାର ମଧ୍ୟ ପ୍ରମାଦହୀନ ହୋଇ ଉକ୍ତ ପାଶରେ ବଦ୍ଧ ହୋଇଥିଲା । ୨୫ । ନିପୁଣ ଆତତାୟୀ ଶତ୍ରୁ ମହାପ୍ରାଜ୍ଞ ମାର୍ଜାର ବଦ୍ଧ ହେବାରୁ ପଳିତ ମୂଷିକ ସମୟ ପାଇ ନିର୍ଭୟରେ ବିଚରଣ କଲା । ୨୬ । ମୂଷିକ ବିଶ୍ୱସ୍ତଭାବରେ ସେହି ବନ ମଧ୍ୟରେ ଭକ୍ଷ୍ୟବସ୍ତୁର ଅନ୍ୱେଷଣ ପୂର୍ବକ ବିଚରଣ କରୁଥିବା ସମୟରେ ବହୁକ୍ଷଣ ପରେ ପାଶ ମଧ୍ୟରେ ବଦ୍ଧ ଆମିଷକୁ ଦେଖିଲା । ୨୭ ।

ପରେ ସେ ପାଶବଦ୍ଧ ବିପକ୍ଷ ପ୍ରତି ମନେମନେ ଉପହାସ କରି କୂଟ ଯନ୍ତ୍ରୋପରି ଆରୋହଣପୂର୍ବକ ଆମିଷ ଭକ୍ଷଣ କଲା । ସେ ଆମିଷ ଭକ୍ଷଣରେ ଆସକ୍ତ ହୋଇ ଅବଲୋକନ କରୁଥିବା ସମୟରେ ଆଉ

ଗୋଟିଏ ଘୋରତର ନିଜର ବୈରୀକୁ ନିକଟସ୍ଥ ହେବାର ଦେଖିଲା । ମହୀତଳର ବିବରବାସୀ ସେହି ଜନ୍ତୁର ଶରୀର ଶରପୁଷ୍ପ ସଦୃଶ ଅଟେ । ତାହାର ଲୋଚନ ତାମ୍ରବର୍ଣ୍ଣ, ସେ ଅତିଶୟ ଚଞ୍ଚଳ ଓ ତାହାର ନାମ ହରିତ ନକୁଳ ଅଟେ । ସେ ମୂଷିକର ଗନ୍ଧପାଇ ଶୀଘ୍ର ଆଗମନ କଲା । ୩୧ । ଭକ୍ଷଣଯାଇ ଫଲହାନ ଓ ଊର୍ଦ୍ଧ୍ୱମୁଖ ହୋଇ ଭୂତଳରେ ଅବସ୍ଥାନ କଲା । ଇତିମଧ୍ୟରେ ମୂଷିକ ସେହି ବୃକ୍ଷ କୋଟରବାସୀ କ୍ଷପାଚର ତୀକ୍ଷ୍ଣତୁଣ୍ଡ ଚନ୍ଦ୍ରକ ନାମକ ଅନ୍ୟ ଗୋଟିଏ ବୈରୀ ଉଲୂକକୁ ବୃକ୍ଷଶାଖାରେ ବିଚରଣ କରୁଥିବାର ଦେଖିଲା । ମୂଷିକ ନକୁଳ ଓ ଉଲୂକର ମଧ୍ୟଗତ ହୋଇ ମହତ୍ ଭୟବଶତଃ ଚିନ୍ତାକଲା ଯେ ଏହି ନିତାନ୍ତ କଷ୍ଟକର ଆପଦ କାଳରେ ଚତୁର୍ଦ୍ଦିଗରୁ ଭୟ ଓ ମରଣ ଉପସ୍ଥିତ ହେଲେ ହିତୈଷୀ ବ୍ୟକ୍ତିଙ୍କର ଉପରି ଅଚରଣ କରିବା କର୍ତ୍ତବ୍ୟ । ମୂଷିକ ତାଦୃଶ ଭାବରେ ଚତୁର୍ଦ୍ଦିଗରୁ ରୁଦ୍ଧହୋଇ ସର୍ବଦା ଭୟରେ ଦର୍ଶନକରି ତ୍ରାସ ସନ୍ତପ୍ତ ହୋଇ ସୂକ୍ଷ୍ମବୁଦ୍ଧି ଉଦ୍ଭାବନ କଲା ଯେ ବିପଦ ବିନାଶର ଉପାୟ ଦ୍ୱାରା ଆପଦକୁ ନିବାରଣପୂର୍ବକ ଜୀବିତ ରକ୍ଷା କରିବା ପ୍ରଶସ୍ତ । ୩୬ । କିନ୍ତୁ ଚତୁର୍ଦ୍ଦିଗରୁ ଆମ୍ଭଠାରେ ଏହି ସଂଶୟାସ୍ପଦ ଆପଦ ଉପସ୍ଥିତ ହୋଇଅଛି । ଆମ୍ଭେ ଭୂତଳକୁ ଗମନ କଲେ ନକୁଳ ଆସି ସହସା ଆମ୍ଭଙ୍କୁ ଭକ୍ଷଣ କରିବ । ୩୭ । ଏ ସ୍ଥାନରେ ରହିଲେ ଆମ୍ଭଙ୍କୁ ଉଲୂକ ଗ୍ରାସକରିବ ଏବଂ ମାର୍ଜ୍ଜାର ପାଶମୁକ୍ତ ହେଲେ ଆମ୍ଭଙ୍କୁ ତତ୍କ୍ଷଣାତ୍ ଭକ୍ଷଣ କରିବ କିନ୍ତୁ ଆମ୍ଭ ପ୍ରାୟ ବିଜ୍ଞବ୍ୟକ୍ତି କଦାପି ମୁଗ୍ଧ ହେବା ଉପଯୁକ୍ତ ନୁହେ । ୩୮ ।

ଅତଏବ ଯୁକ୍ତି ଓ ବୁଦ୍ଧି ଶକ୍ତି ପ୍ରଭାବଦ୍ୱାରା ଯେତେଦୂର ସମ୍ଭବ ତେତେଦୂର ଆମ୍ଭେ ଆମ୍ଭର ଜୀବନ ରକ୍ଷାରେ ଯତ୍ନବାନ ହେବୁଁ । ନୀତିଶାସ୍ତ୍ର ବିଶାରଦ ବୁଦ୍ଧିମାନ ବିଜ୍ଞବ୍ୟକ୍ତି ମହତ୍ ଦାରୁଣ ବିପଦରେ ପତିତ ହୋଇସୁଦ୍ଧା ତହିଁରେ ନିମଗ୍ନ ହୁଅନ୍ତିନାହିଁ । ୪୦ । ସମ୍ପ୍ରତି ମାର୍ଜ୍ଜାରଠାରୁ ଉପକାର ଲଭିବା ବ୍ୟତୀତ ଅନ୍ୟ ଉପାୟ ଦେଖୁନାହିଁ । କିନ୍ତୁ ଏହି ବିଷମ ଶତ୍ରୁ ବର୍ତ୍ତମାନ ବିପମସ୍ଥ ହୋଇଅଛି । ଅତଏବ ଏହାର ମହତ ଉପକାର କରିବା ମୋର ଉଚିତ ହେଉଅଛି । ବର୍ତ୍ତମାନ ମୁଁ ଶତ୍ରୁତ୍ରୟ କର୍ତ୍ତୃକ ପ୍ରାର୍ଥିତ ହୋଇ କି ପ୍ରକାରେ ଜୀବନରକ୍ଷାର ଆଶା କରିପାରେ ? ସୁତରାଂ ମାର୍ଜ୍ଜାର ମୋର ନିତ୍ୟ ଶତ୍ରୁହେଲେମଧ୍ୟ ତାହାର

ଆଶ୍ରୟ ଗ୍ରହଣକରିବା ମୋର ଉଚିତ । ୪୨ । ଆମ୍ଭେ ବର୍ତ୍ତମାନ୍ ନୀତିଶାସ୍ତ୍ର ଅବଲମ୍ବନ ପୂର୍ବକ ଏହାକୁ ହିତୋପଦେଶ ପ୍ରଦାନ କରିବୁଁ, ଯଦ୍ୱାରା ଏହି ଶତ୍ରୁମାନଙ୍କୁ ବୁଦ୍ଧି ପୂର୍ବକ ବଞ୍ଚନାକରି ପାରିବୁଁ । ୪୩ । ଏହି ମୂଢ଼ ମାର୍ଜ୍ଜାର ମୋର ନିତାନ୍ତ ଶତ୍ରୁଅଟେ । ବର୍ତ୍ତମାନ ବିଷମ ବିପଦାପନ୍ନ ହୋଇଅଛି । ଅତଏବ ସ୍ୱାର୍ଥ ସାଧନ କରିବା ନିମିତ୍ତ ସଙ୍ଗତିକ୍ରମେ ଯଦି ଏହାକୁ ସମ୍ମତ କରିପାରେ, ତାହାହେଲେ ଜୀବନ ରକ୍ଷାହୋଇ ପାରିବ । ୪୪ । ଏ ବିପଦଗ୍ରସ୍ତ ହୋଇଅଛି, ଅତଏବ ଆମ୍ଭ ସହିତ ସନ୍ଧି କରିପାରେ ।

ବଳବାନ୍ ବ୍ୟକ୍ତି ବିଷମ ବିପଦରେ ପତିତ ହେଲେ ଜୀବନରକ୍ଷା ନିମିତ୍ତ ସନ୍ନିକୃଷ୍ଟ ଶତ୍ରୁସହିତ ସନ୍ଧିକରିବ ଏହା ପ୍ରାଚୀନ ଆଚାର୍ଯ୍ୟଗଣ କହି ଅଛନ୍ତି । ପଣ୍ଡିତ ଶତ୍ରୁ ବରଂ ଭଲ, କିନ୍ତୁ ମୂର୍ଖ ମିତ୍ର ଭଲନୁହେ । ୪୬ । ଏହି ଶତ୍ରୁ ମାର୍ଜ୍ଜାରଠାରେ ଆମ୍ଭର ଜୀବନ ପ୍ରତିଷ୍ଠିତ ରହିଅଛି । ଆମ୍ଭେ ଏହାକୁ ଆତ୍ମମୁକ୍ତିର ଉପାୟ ବୋଲି କହିବୁଁ । ୪୭ । ଏହି ଶତ୍ରୁ ମୂର୍ଖ ହେଲେହେଁ ଆମ୍ଭର ସହବାସ ବଶତଃ ପଣ୍ଡିତ ହୋଇ ପାରିବ । ମୂଷିକ ଶତ୍ରୁଗଣଙ୍କ କର୍ତ୍ତୃକ ପରିବେଷ୍ଟିତ ହୋଇ ଏହିପ୍ରକାରେ ଚିନ୍ତା କରିବାକୁ ଆରମ୍ଭ କଲା । ୪୮ ।

ତଦନନ୍ତର ସନ୍ଧିବିଗ୍ରହ କାଳବିତ୍ ଅର୍ଥଗତ ତତ୍ତ୍ୱଜ୍ଞ ମୂଷିକ ସାନ୍ତ୍ୱନାପୂର୍ବକ ମାର୍ଜ୍ଜାରକୁ କହିଲା, ହେ ମାର୍ଜ୍ଜାର । ଆମ୍ଭେ ତୁମ୍ଭସହିତ ସୁହୃଦ ଭାବରେ ସମ୍ଭାଷଣ କରୁଅଛୁଁ, ତୁମ୍ଭେ ଜୀବିତ ଅଛ ତ ? ଆମ୍ଭେ ତୁମ୍ଭର ଜୀବନ ରକ୍ଷାକରିବାକୁ ଇଚ୍ଛା କରୁଅଛୁଁ । କାରଣ ତାହା ଆମ୍ଭ ଦୁହିଁଙ୍କର ଶ୍ରେୟସ୍କର ଅଟେ । ୫୦ । ହେ ସୌମ୍ୟ । ତୁମ୍ଭେ ଭୟ କରନାହିଁ । ଯଥାସୁଖରେ ଜୀବନଧାରଣ କରିବ । ତୁମ୍ଭେ ଯଦି ଆମ୍ଭଙ୍କୁ ହିଂସା କରିବାକୁ ଇଚ୍ଛା ନ କର, ତାହାହେଲେ ଆମ୍ଭେ ତୁମ୍ଭଙ୍କୁ ବିପଦରୁ ରକ୍ଷା କରିବୁଁ । ୫୧ । ଏ ବିଷୟରେ କୌଣସି ଉତ୍କୃଷ୍ଟ ଉପାୟ ଅଛି ଓ ତାହା ଆମ୍ଭର ଅନ୍ତଃକରଣରେ ପ୍ରତିଭାତ ହେଉଅଛି । ଯେଉଁ ଉପାୟ ଦ୍ୱାରା ତୁମ୍ଭେମଧ୍ୟ ବିପଦରୁ ଆମ୍ଭ କର୍ତ୍ତୃକ ମୁକ୍ତହେବ ଏବଂ ଆମ୍ଭେ ମଧ୍ୟ ଶ୍ରେୟୋଲାଭ କରି ପାରିବୁଁ । ୫୨ । ଆମ୍ଭେ ବୁଦ୍ଧି ବିସ୍ତର ପୂର୍ବକ ନିଜର ଓ ତୁମ୍ଭର ଯେପରି ଶ୍ରେୟଃ ସାଧନ ହେବ ତାହିଁଶ

ଉପାୟ ଦେଖିଅଛୁଁ, ତାହା ଆମ୍ଭମାନଙ୍କ ଉଭୟଙ୍କ ପ୍ରତି କଲ୍ୟାଣକର ହେବ । ୫୩ ।

ହେ ମାର୍ଜ୍ଜାର ! ଏହି ନକୁଳ ଓ ଉଲୂକ ପାପବୁଦ୍ଧି ଅବଲମ୍ବନ ପୂର୍ବକ ଆମ୍ଭର ସମ୍ମୁଖରେ ଅଛନ୍ତି, ବର୍ତ୍ତମାନ ଏମାନେ ଯଦି ମୋତେ ଆକ୍ରମଣ ନ କରନ୍ତି ତାହାହେଲେ ଆମ୍ଭର ମଙ୍ଗଳ । ୫୪ । ଏହି ତରୁ-ଶାଖାଗ୍ରଗାମୀ ଚଞ୍ଚଳଲୋଚନ ପାପାତ୍ମା ଭଲ୍ଲକ ବିକୃତ ସ୍ୱର କରି ଆମ୍ଭଙ୍କୁ ନିରୀକ୍ଷଣ କରୁଅଛି । ଏଥିନିମିତ୍ତ ଆମ୍ଭେ ଏହାଠାରୁ ଅତିଶୟ ଭୟପ୍ରାପ୍ତ ହୋଇଅଛୁଁ । ୫୫ । ସାଧୁମାନଙ୍କର ପରସ୍ପର ସପ୍ତପଦ ଉଚ୍ଚାରଣ ପୂର୍ବକ କଥୋପକଥନ ହେଲେ ସଖିତା ହୁଏ ! ତୁମ୍ଭେ ଆମ୍ଭର ସେହି ସଖା ଓ ପଣ୍ଡିତ ଅଟ । ଆମ୍ଭେ ତୁମ୍ଭପ୍ରତି ଯଥାର୍ଥ ମିତ୍ରର କାର୍ଯ୍ୟ କରିବୁଁ । ବର୍ତ୍ତମାନ ତୁମ୍ଭର କୌଣସି ଭୟ ନାହିଁ ।୫୬।

ହେ ମାର୍ଜ୍ଜାର ! ତୁମ୍ଭେ ଆମ୍ଭ ବ୍ୟତିରେକେ ସ୍ୱୟଂ ପାଶ ଛେଦନ କରିବାକୁ ସମର୍ଥ ହେବନାହିଁ । ଯଦି ତୁମ୍ଭେ ଆମ୍ଭପ୍ରତି ହିଂସା ନ କର ତାହାହେଲେ ଆମ୍ଭେ ତୁମ୍ଭର ସମସ୍ତ ପାଶ ଛେଦନ କରି ଦେବୁଁ । ୫୭ । ତୁମ୍ଭେ ଏହି ବୃକ୍ଷର ଅଗ୍ରଭାଗକୁ ଓ ଆମ୍ଭେ ଏହାର ମୂଳକୁ ଅବଲମ୍ବନ କରି ବାସକରି ଅଛୁଅଛୁଁ । ଆମ୍ଭେମାନେ ଏହି ବୃକ୍ଷକୁ ଆଶ୍ରୟ କରି ବହୁକାଳରୁ ବାସ କରି ଅଛୁଅଛୁଁ । ଏହା ତୁମ୍ଭର ଅବିଦିତ ନାହିଁ । ୫୮ । ଯେଉଁ ବ୍ୟକ୍ତି କାହାକୁ ସୁଦ୍ଧା ବିଶ୍ୱାସ କରେ ନାହିଁ ଏବଂ ଯାହାକୁ କେହି ବିଶ୍ୱାସ କରେ ନାହିଁ, ତାଦୃଶ ନିୟତ ଉଦ୍‌ବିଗ୍ନଚିତ୍ତ ବ୍ୟକ୍ତିଦ୍ୱୟଙ୍କୁ ପଣ୍ଡିତମାନେ ପ୍ରଶଂସା କରନ୍ତି ନାହିଁ । ଅତଏବ ଆମ୍ଭମାନଙ୍କର ସତତ ସହବାସ ଓ ପ୍ରଣୟ ପରିବର୍ଦ୍ଧିତ ହେଉ । ପ୍ରୟୋଜନର ସମୟ ଅତୀତ ହେଲେ ପଣ୍ଡିତମାନେ ନିନ୍ଦା କରନ୍ତି । ୬୦ । ଅତଏବ ଏହି ବିଷୟର ଯଥାର୍ଥ ସୁଯୁକ୍ତିକୁ ବିବେଚନା କର । ତୁମ୍ଭେ ଆମ୍ଭର ଜୀବନ ରକ୍ଷା କରିବାକୁ ଅଭିଳାଷୀ ହେଲେ ଆମ୍ଭେ ସୁଦ୍ଧା ତୁମ୍ଭର ଜୀବନ ରକ୍ଷା କରିବାକୁ ଅଭିଳାଷୀ ହେବୁଁ । ୬୧ । କୌଣସି ମାନବ କାଷ୍ଠଦ୍ୱାରା ଅତି ଗଭୀର ମହାନଦୀକୁ ପାର ହୁଏ । ସେ ଯେପରି କାଷ୍ଠକୁ ଉତ୍ତୀର୍ଣ୍ଣ କରି ନିଜେ ମଧ୍ୟ ଉତ୍ତୀର୍ଣ୍ଣ ହୁଏ, ସେହିପରି ଆମ୍ଭ ଦୁହିଁଙ୍କର ସହଯୋଗ ପରିଣାମରେ ସୁଖକର ହେବ । ଆମ୍ଭେ ତୁମ୍ଭଙ୍କୁ ପାଶରୁ ମୁକ୍ତ କରିବୁଁ । ତୁମ୍ଭେ ମଧ୍ୟ ଆମ୍ଭଙ୍କୁ ବିପଦରୁ ମୁକ୍ତ କରିବ । ୬୩ ।

ମୂଷିକ ପଳିତ ଏହିପରି ଉଭୟଙ୍କର ହିତକର ଯୁକ୍ତିଯୁକ୍ତ ଓ ଗ୍ରହଣୀୟ ବାକ୍ୟ କହି ସମସ୍ତ ଅପେକ୍ଷା ପୂର୍ବକ ନିରୀକ୍ଷଣ କଲା । ୬୪ । ଅନନ୍ତର ବିଚକ୍ଷଣ ମାର୍ଜାର ଶତ୍ରୁ ମୂଷିକର ଯୁକ୍ତିଯୁକ୍ତ ଶ୍ରବଣଯୋଗ୍ୟ ସୁନ୍ଦର ବାକ୍ୟ ଶ୍ରବଣ କରି ପ୍ରତ୍ୟୁତ୍ତର କଲା, ସେହି ବୁଦ୍ଧିମାନ ବାକ୍ୟ ନିପୁଣ ବିଡ଼ାଳ ମୂଷକର ବାକ୍ୟକୁ ଅନୁଶୀଳନ ଓ ନିଜର ଅବସ୍ଥାକୁ ଅବଲୋକନ ପୂର୍ବକ ସନ୍ଧି ବନ୍ଧନରେ ସମ୍ମତ ହେଲା । ୬୭ । ପରିଶେଷରେ ତୀକ୍ଷ୍ଣାଗ୍ର ଦଶନ, ବୈଦୂର୍ଯ୍ୟ ଲୋଚନ ଲୋମଶ ନାମକ ମାର୍ଜାର ମୂଷିକକୁ ମନ୍ଦ ମନ୍ଦ ଦୃଷ୍ଟିରେ ନିରୀକ୍ଷଣ ପୂର୍ବକ କହିଲା—ହେ ସୌମ୍ୟ ! ତୁମ୍ଭର ମଙ୍ଗଳ ହେଉ, ତୁମ୍ଭେ ଆମ୍ଭର ଜୀବନରକ୍ଷା ନିମିତ୍ତ ଯତ୍ନ କରୁଥିବାରୁ ଆମ୍ଭେ ଅତିଶୟ ଆନନ୍ଦିତ ହେଲୁଁ । ଯଦି ଶ୍ରେୟୋବିଧାନର ଉପାୟ ଜାଣ ତେବେ ତାହା ଅବଲମ୍ବରେ କରି ଏଥିରେ ବିଚାର କରନାହିଁ । ୬୮ । ଆମ୍ଭେ ଆପଦଗ୍ରସ୍ତ ଅଛୁଁ, ତୁମ୍ଭେମଧ୍ୟ ଆମ୍ଭ ଅପେକ୍ଷା ଅଧିକ ଆପଦାପନ୍ନ ଅଛ, ଅତଏବ ଉଭୟ ଆପଣଙ୍କର ସନ୍ଧିକର, ବିଳମ୍ବକର ନାହିଁ ।୬୯। ସମୟରେ ଯଦ୍ଦ୍ୱାରା କାର୍ଯ୍ୟସିଦ୍ଧି ହେବ, ତାହା କରିବ, ଆମ୍ଭେ ଏହି କ୍ଳେଶକର ବିପଦରୁ ମୁକ୍ତ ହେଲେ, ତୁମ୍ଭ କର୍ତ୍ତୃକ କୃତଉପକାର ବିନଷ୍ଟ ହେବନାହିଁ ।୭୦। ଆମ୍ଭମାନଙ୍କୁ ତ୍ୟାଗପୂର୍ବକ ତୁମ୍ଭର ଅନୁରକ୍ତ, ଭକ୍ତ, ଶିଷ୍ୟ, ହିତକାରୀ ଓ ଅଜ୍ଞାକାରୀ ହୋଇ ଶରଣାଗତ ହେଲୁଁ । ୭୧ ।

ମୂଷିକବର ପଳିତ ମାର୍ଜାର କର୍ତ୍ତୃକ ଏହିପରି ଉକ୍ତ ହୋଇ ତାହାକୁ ନିଜର ବଶତାପନ୍ନ ହେବାର ଜାଣି ବିନୟଯୁକ୍ତ ଓ ଅର୍ଥାନ୍ୱିତ ହିତବାକ୍ୟ କହିଲା ଯେ ଆପଣ ଯେଉଁ ଉଦାରବାକ୍ୟ କହିଲେ, ତାହା ଭବାଦୃଶ ବ୍ୟକ୍ତି ବିଷୟରେ ବିଚିତ୍ରନୁହେ । ଉଭୟର ହିତ ନିମିତ୍ତ ଆମ୍ଭେ ଯେଉଁ ଉପାୟ ବିଧାନ କରିଅଛୁଁ, ତାହା ଆମ୍ଭଠାରୁ ଶ୍ରବଣ କର ।୭୩। ନକୁଳଠାରୁ ଆମ୍ଭର ଅତ୍ୟନ୍ତ ଭୟ ହେଉଅଛି । ଅତଏବ ଆମ୍ଭେ ତୁମ୍ଭଠାରେ ଶରଣାଗତ ହେଲୁଁ । ଆମ୍ଭେ ଆପଣଙ୍କର ରକ୍ଷାଣାର୍ଥ ସମର୍ଥ, ଅତଏବ ଆପଣ ଆମ୍ଭଙ୍କୁ ବଧ ନ କରି ରକ୍ଷା କରନ୍ତୁ ।୭୪। କ୍ଷୁଦ୍ରାଶୟ ଉଲ୍ଲୁକ ଆମ୍ଭଙ୍କୁ ଆକ୍ରମଣ କରିବାର ଆଶା କରୁଅଛି । ଅତଏବ ତାହାଠାରୁ ଆମ୍ଭଙ୍କୁ ରକ୍ଷାକର । ହେ ସଖେ ! ଆମ୍ଭେ ସତ୍ୟପୂର୍ବକ ଶପଥ କରୁଅଛୁଁ ଯେ ଆପଣଙ୍କର ପାଶ ସମୁଦାୟ ଛେଦନ କରିଦେବୁଁ । ୭୫ ।

ଲୋମଶ ପଳିତ ମୂଷିକର ଯୁକ୍ତ ଓ ଅର୍ଥଯୁକ୍ତ ସଙ୍ଗତ ବାକ୍ୟ ଶ୍ରବଣକରି ହର୍ଷବଶତଃ ତାହାକୁ ନିରୀକ୍ଷଣ ପୂର୍ବକ ସ୍ୱାଗତ ବାକ୍ୟରେ ସମ୍ମାନିତ କଲା ।୭୬। ଅନନ୍ତର ସେହି ଧୀର ମାର୍ଜାର ସୁହୃଦଭାବରେ ଅବସ୍ଥିତ ପ୍ରୀତ ଓ ହୃଷ୍ଟ ହୋଇ ବିଶେଷ ଚିନ୍ତାକରି ପଳିତକୁ ସମ୍ମାନ ପୂର୍ବକ କହିଲା—ହେ ସଖେ ! ଶୀଘ୍ର ଆସ, ତୁମ୍ଭର ମଙ୍ଗଳ ହେଉ । ତୁମ୍ଭେ ଆମ୍ଭର ପ୍ରାଣସମ ସଖାଅଛ । ତୁମ୍ଭର ପ୍ରସାଦରୁ ଆମ୍ଭେ ଅବଶ୍ୟ ଜୀବନ ଲାଭ କରିବୁ ।୭୮। ଏହି ସଙ୍କଟ ସମୟରେ ଆମ୍ଭେ ତୁମ୍ଭର ଯାହା ଉପକାର କରିପାରିବୁଁ ତୁମ୍ଭେ ତାହା ଆଜ୍ଞାକର, ଆମ୍ଭେ ତାହା କରିବୁଁ । ହେ ସଖେ ! ଆମ୍ଭ ଦୁହିଁଙ୍କର ସନ୍ଧିରହୁ ।୭୯। ଏହି ସଙ୍କଟରୁ ମୁକ୍ତହେଲେ ଆମ୍ଭେ ମିତ୍ର ଓ ବନ୍ଧୁବାନ୍ଧବମାନଙ୍କ ସହିତ ତୁମ୍ଭର ସମସ୍ତ ପ୍ରିୟ ଓ ହିତକର କାର୍ଯ୍ୟ ସମ୍ପାଦନ କରିବୁଁ । ହେ ସୌମ୍ୟ ! ଏହି ବିପଦରୁ ମୁକ୍ତ ହେଲେ ଆମ୍ଭେ ତୁମ୍ଭର ପ୍ରୀତି ଉତ୍ପାଦନ ଓ ସତ୍କାର ସାଧନ କରିବୁଁ । ଉପକୃତ ବ୍ୟକ୍ତି ବହୁତର ପ୍ରତ୍ୟୁପକାର କରିସୁଦ୍ଧା ପୂର୍ବୋପକାରୀ ତୁଲ୍ୟ ପ୍ରତିଭାତ ହୁଏ ନାହିଁ । କାରଣ ଉପକୃତ ବ୍ୟକ୍ତି ପୂର୍ବୋପକାରକୁ ସ୍ମରଣ କରି ପ୍ରତ୍ୟୁପକାର କରେ । ପ୍ରଥମ ଉପକାରକର୍ତ୍ତା ନିଷ୍କାରଣରେ ଉପକାର କରେ ।୮୨।

ଭୀଷ୍ମ କହିଲେ—ମୂଷିକ ସ୍ୱାର୍ଥ ସାଧନାର୍ଥ ମାର୍ଜାରକୁ ତାଦୃଶ ଭାବରେ ସମର୍ଥ କରାଇ ବିଶ୍ୱାସପୂର୍ବକ କୃତାପରାଧର କୋଡ଼ରେ ପ୍ରବେଶ କଲା ।୮୩। ବୁଦ୍ଧିମାନ ମୂଷିକ ମାର୍ଜାର କର୍ତ୍ତୃକ ଏହିପରି ଆଶ୍ୱାସିତ ହୋଇ ପିତାମାତା ପ୍ରାୟ ତାହାର ବକ୍ଷଃସ୍ଥଳରେ ବିଶ୍ୱସ୍ତଭାବରେ ଶୟନ କଲା ।୮୪। ନକୁଳ ଓ ଉଲୂକ ମୂଷିକକୁ ମାର୍ଜାରର ଗାତ୍ରରେ ଲୀନ ହେବାର ଦେଖି ନିରାଶ ହେଲେ ଏବଂ ସେମାନଙ୍କର ପରମପ୍ରୀତି ଦର୍ଶନରେ ବିସ୍ମୟାପନ୍ନ ଓ ନିତାନ୍ତ ତ୍ରସ୍ତ ହୋଇ ରହିଲେ । ସେମାନେ ବଳମାନ୍ ବୁଦ୍ଧିମାନ୍ ମୂଷିକକୁ ଆକ୍ରମଣ କରିବାକୁ ଅଶକ୍ତ ହେଲେ । ଉଲୂକ ଓ ନକୁଳ ମାର୍ଜାର ଓ ମୂଷିକକୁ କାର୍ଯ୍ୟବଶତଃ ସନ୍ଧି କରିବାର ଦେଖି ଅବିଳମ୍ବରେ ନିଜନିଜ ଗୃହକୁ ଗମନ କଲେ ।୮୮।

ହେ ମହାରାଜ ! ଅନନ୍ତର ଦେଶକାଳଜ୍ଞ ପଳିତ ସମୟାପେକ୍ଷୀ ହୋଇ ଶନୈଃ ଶନୈଃ ମାର୍ଜାରର ଗାତ୍ରସ୍ଥିତ ପାଶସବୁ ଛେଦନ କରିବାକୁ ଆରମ୍ଭ କଲା । ଅନନ୍ତର ମାର୍ଜାର ବନ୍ଧନ ହେତୁରୁ ନିତାନ୍ତ କ୍ଲିଷ୍ଟଥାଇ

ମୂଷିକକୁ ପାଶ ଛେଦନରେ ବିଳମ୍ବ କରିବାର ଦେଖି ସତ୍ୱରତା ସହକାରେ ଚଞ୍ଚଳ କରାଇବାକୁ ଆରମ୍ଭ କଲା ।

ମାର୍ଜାର କହିଲା—ହେ ସଖେ ! ତୁମ୍ଭେ କାହିଁକି ବିଳମ୍ବ କରୁଅଛ ? ସ୍ୱୟଂ କୃତକାର୍ଯ୍ୟ ହୋଇ କଣ ଆମ୍ଭଙ୍କୁ ଅବଜ୍ଞା କରୁଅଛ ? ହେ ଅମିତଘ୍ନ ! ବ୍ୟାଧ ଅଗ୍ରରେ ଆସୁଅଛି, ଅତଏବ ତୁମ୍ଭେ ଶୀଘ୍ର ପାଶ ଛେଦନ କର । ୯୨ । ତ୍ୱରାବାନ୍ ମାର୍ଜାର ଏହି କଥା କହନ୍ତେ ବୁଦ୍ଧିମାନ୍ ମୂଷିକ ଅପକ୍ୱମତି ମାର୍ଜାରକୁ ପଥ୍ୟ ଓ ଆତ୍ମହିତକର ବାକ୍ୟ କହିଲା—ହେ ପ୍ରିୟ ଦର୍ଶନ ! ତୁମ୍ଭେ ମୌନଭାବରେ ଅବସ୍ଥାନ କର । ତ୍ୱରା ଓ ଭୟ କରିବା ତୁମ୍ଭର ଉଚିତ ନୁହେ । ଆମ୍ଭେ କାଳଜ୍ଞ ଅଟୁଁ । ଅତଏବ ପ୍ରକୃତ କାଳକୁ ପରିତ୍ୟାଗ କରିବୁ ନାହିଁ । ୯୪ ।

ହେ ସଖେ ! ଅସମୟରେ ଆରବ୍ଧ ହୋଇଥିବା କାର୍ଯ୍ୟ କର୍ତ୍ତାର ପ୍ରୟୋଜନ ସାଧନ କରେନାହିଁ ଏବଂ ସେହି କାର୍ଯ୍ୟ ସମୟରେ ସମାରବ୍ଧ ହେଲେ ମହତ ଅର୍ଥ ଉତ୍ପାଦନ କରେ । ତୁମ୍ଭେ ଅସମୟରେ ବନ୍ଧନ ମୁକ୍ତ ହେଲେ ତୁମ୍ଭଠାରୁ ଆମ୍ଭର ଭୟ ହେବାର ସମ୍ଭାବନା, ଅତଏବ ସମୟ ପ୍ରତୀକ୍ଷା କର, କି ନିମିତ୍ତ ଚଞ୍ଚଳ ହେଉଅଛ ? । ୯୬ । ଶସ୍ତ୍ରଧାରୀ ଚଣ୍ଡାଳକୁ ଯେତେବେଳେ ଆସୁଥିବାର ଦେଖିବୁଁ, ସେତେବେଳେ ଆମ୍ଭ ଦୁହିଁଙ୍କର ସମାନ ଭୟ ଉପସ୍ଥିତ ହେବ, ସେହି ସମୟରେ ଆମ୍ଭେ ତୁମ୍ଭର ପାଶ ଛେଦନ କରିଦେବୁଁ । ୯୭ । ସେହି ସମୟରେ ତୁମ୍ଭେ ବନ୍ଧନ ମୁକ୍ତ ହୋଇ ବୃକ୍ଷୋପରେ ଆରୋହଣ କରିବ । କାରଣ ସେହି ସମୟରେ ତୁମ୍ଭର ଜୀବନ ରକ୍ଷା ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟ ହେବନାହିଁ । ୯୮ ।

ହେ ଲୋମଶ ! ତୁମ୍ଭେ ଭୀତ ଓ ସନ୍ତ୍ରସ୍ତ ହୋଇ ପଳାୟନ କଲେ ଆମ୍ଭେ ଗର୍ତ୍ତ ମଧ୍ୟରେ ପ୍ରବେଶ କରିବୁଁ । ତୁମ୍ଭେ ମଧ୍ୟ ତରୁ ଶାଖାକୁ ଆଶ୍ରୟ କରିବ । ୯୯ । ମୂଷିକ ଆତ୍ମହିତ ସାଧନାର୍ଥ ମାର୍ଜାରକୁ ଏହିପରି କହନ୍ତେ, ଜୀବିତାଭିଳାଷୀ ବାକ୍ୟ ତତ୍ତ୍ୱଜ୍ଞ ମହାମତି ଲୋମଶ ଆତ୍ମକାର୍ଯ୍ୟ ସମ୍ୟକ ସମ୍ପାଦନରେ ସତ୍ୱର ହୋଇ ପାଶ ଛେଦନ କରିବା ନିମିତ୍ତ ବିଳମ୍ବକାରୀ ମୂଷିକକୁ କହିଲା—ସଖେ ! ସାଧୁଗଣ ପ୍ରୀତିପୂର୍ବକ ଏହିପରି ମିତ୍ରର କାର୍ଯ୍ୟ କରନ୍ତି ନାହିଁ । ଆମ୍ଭେ ଯେପରି ତ୍ୱରମାଣ ହୋଇ ତୁମ୍ଭଙ୍କୁ ବିପଦରୁ ମୁକ୍ତ

କଲି, ତୁମ୍ଭର ମଧ୍ୟ ସେହିପରି ତୀବ୍ର ସହକାରେ ଆମ୍ଭର ହିତସାଧନ କରିବା ଉଚିତ । ହେ ମହାପ୍ରାଜ୍ଞ ! ବର୍ତ୍ତମାନ ଯେପରି ଆମ୍ଭ ଉଭୟଙ୍କର କଲ୍ୟାଣ ହୁଏ, ତୁମ୍ଭେ ତଦ୍‌ବିଷୟରେ ଯତ୍ନକର । ୧୦୩ । କିମ୍ବା ତୁମ୍ଭେ ଯଦି ପୂର୍ବ ବୈରିର ସ୍ମରଣ କରି କାଳକ୍ଷେପଣ କର, ତେବେ ଏହି ଦୁଷ୍ଟମତି ବଟତଃ ବ୍ୟକ୍ତି ଭାବରେ ତୁମ୍ଭର ଆୟୁଃ କ୍ଷୟ ଦେଖି ପାରିବ । ୧୦୪ । ଯଦି ଅଜ୍ଞାନ ବଶତଃ ପୂର୍ବେ ଆମ୍ଭେ କୌଣସି ପାପକର୍ମ୍ମ କରିଥାଉଁ, ତୁମ୍ଭେ ତାହା ମନେ କର ନାହିଁ । ଆମ୍ଭେ କ୍ଷମା ପ୍ରାର୍ଥନା କରୁଅଛୁଁ, ତୁମ୍ଭେ ଆମ୍ଭ ପ୍ରତି ପ୍ରସନ୍ନ ହୁଅ । ୧୦୫ ।

ମାର୍ଜ୍ଜାର ଏହିପରି କହନ୍ତେ ଶାସ୍ତ୍ରବିତ୍ ବୁଦ୍ଧିମାନ ବିଜ୍ଞ ମୂଷିକ ସେତେବେଳେ ତାହାକୁ ଏହି ହିତକର ବାକ୍ୟ କହିଲା ଯେ—ହେ ମାର୍ଜ୍ଜାର ! ତୁମ୍ଭେ ନିଜର ପ୍ରୟୋଜନ ସାଧନାରେ ବ୍ୟଗ୍ର ହୋଇ ଯାହା କହିଲ, ତାହା ଆମ୍ଭେ ଶ୍ରବଣ କଲୁଁ । ଆମ୍ଭେ ମଧ୍ୟ ନିଜର ପ୍ରୟୋଜନ ସିଦ୍ଧି କାମନାରେ କାତର ହୋଇ ତୁମ୍ଭଙ୍କୁ ଯାହା କହୁଅଛୁଁ ତାହା ତୁମ୍ଭେ ଜାଣ । ୧୦୭ । ଯେଉଁ ମିତ୍ର ଅତିଶୟ ଭୀତ ଏବଂ ଯେ ଭୟ ବିଚଳିତ, ସର୍ପ ମୁଖରୁ ନିଜର ହସ୍ତକୁ ରକ୍ଷାକଲା ପ୍ରାୟ ତାହାକୁ ଯଥୋଚିତ ରୂପେ ରକ୍ଷା କରିବା କର୍ତ୍ତବ୍ୟ । ୧୦୮ । ଯେଉଁ ବ୍ୟକ୍ତି ବଳବାନ ସହିତ ସନ୍ଧିକରି ଆତ୍ମରକ୍ଷା ନ କରେ, ତାହାର ଭୁକ୍ତ ଅନାଦି, ଅପଥ୍ୟ ବସ୍ତୁପ୍ରାୟ, ଉପକାରକ ହୁଏ ନାହିଁ । ୧୦୯ । ଏହି ଜଗତରେ ଅକାରଣରେ କେହି କାହାର ମିତ୍ର କିମ୍ବା ଶତ୍ରୁ ହୁଏନାହିଁ । ସ୍ୱାର୍ଥସାଧନାର୍ଥ ମିତ୍ର ଓ ଶତ୍ରୁ ସଙ୍ଘଟନ ହୋଇଥାଏ । ୧୧୦ ।

ପାଳିତ ହସ୍ତିଗଣଙ୍କ ଦ୍ୱାରା ଯେପରି ବନଗଜ ସବୁ ବନ୍ଧ ହୁଅନ୍ତି, ସେହିପରି ସ୍ୱାର୍ଥଦ୍ୱାରା ସ୍ୱାର୍ଥ ସାଧନ ହୋଇଥାଏ । କାର୍ଯ୍ୟ ସମ୍ପନ୍ନ ହେଲେ କେହି କର୍ତ୍ତାକୁ ନିରୀକ୍ଷଣ କରେ ନାହିଁ । ୧୧୧ । ଅତଏବ ସମସ୍ତ କାର୍ଯ୍ୟ ସାବଶେଷ କରି କରିବା କର୍ତ୍ତବ୍ୟ । ହେ ଲୋମଶ ! ତୁମ୍ଭେ ଚଣ୍ଡାଳରେ ବ୍ୟାଧ ଭୟରେ ପୀଡ଼ିତ ହୋଇ ପଳାୟନ ପରାୟଣ ହେବ । ଏଣୁ ଆମ୍ଭଙ୍କୁ ଗ୍ରହଣ କରିପାରିବ ନାହିଁ । ଆମ୍ଭେ ବହୁ ତନ୍ତୁ ଛେଦନ କରିଅଛୁଁ । ଗୋଟିଏ ମାତ୍ର ଅବଶିଷ୍ଟ ଅଛି, ତାହାକୁ ମଧ୍ୟ ଶୀଘ୍ର ଛେଦନ କରିଦେବୁଁ ; ତୁମ୍ଭେ ନିଶ୍ଚିନ୍ତ ହୁଅ । ବିପଦାପନ୍ନ ଓ ମୂଷିକ ଏହିପରି କଥୋପକଥନ କରୁଁ କରୁଁ ସେହି ରଜନୀ ପ୍ରଭାତା ହେଲା । ପ୍ରଭାତ ହୁଅନ୍ତେ ଲୋମଶର ଅନ୍ତଃ-

କରଣରେ ଉପୁଜାତ ହେଲା । ତଦନନ୍ତର ପ୍ରଭାତ ସମୟରେ ଗୋଟିଏ ବିକୃତ କାୟ, କୃଷ୍ଣ ପିଙ୍ଗଳବର୍ଣ୍ଣ, ସ୍ଥୂଳ ନିତମ୍ବ, କେଶ ବିହୀନକୁଷ୍ଠମୂର୍ତ୍ତି, ଭଗ୍ନ କର୍ଣ୍ଣ, ବୃହଦ୍ଦନ୍ତ କୁକ୍କୁର ଯୂଥଦ୍ୱାର ବେଷ୍ଟିତ, ମଳିନ ଘୋର ଦର୍ଶନ ଓ ଶସ୍ତ୍ରପାଣି ପରିଘ ନାମକ ଚଣ୍ଡାଳ ଦୃଷ୍ଟିଗୋଚର ହେଲା ।

ମାର୍ଜ୍ଜାର ସେହି ଯମଦୂତ ସଦୃଶ ଚଣ୍ଡାଳକୁ ଅବଲୋକନ କରି ଉଦ୍ବିଗ୍ନ ଓ ଭୀତ ହୋଇ ମୂଷିକକୁ କହିଲା—ହେ ସଖେ । ବର୍ତ୍ତମାନ କଣ କରିବ ? ୧୧୮ । ଅନନ୍ତର ସେହି କ୍ଷଣରେ ନକୁଳ ଉଲୂକ ଦୁହେଁ ଘୋର ସଙ୍କୁଳ ଦର୍ଶନରେ ସ୍ତମ୍ଭିତହୋଇ ନିରାଶତାକୁ ପ୍ରାପ୍ତ ହେଲେ ।୧୧୯। ସେ ଦୁହେଁ ବଳବାନ୍ ମତିବାନ୍ ହେଲେ ସୁଦ୍ଧା ମାର୍ଜ୍ଜାର ମୂଷିକର ଉତ୍ତମ ନୀତି ବଶତଃ ମୂଷିକକୁ ଧର୍ଷଣ କରିବାକୁ ସମର୍ଥ ହେଲେ ନାହିଁ । ୧୨୦ । ସେହି ସ୍ଥାନରେ କାର୍ଯ୍ୟାର୍ଥ କୃତସନ୍ଧାନ ମାର୍ଜ୍ଜାର ମୂଷିକକୁ ଦେଖି ନକୁଳ ଉଲୂକ ନିଜ ନିଜ ଆଳୟକୁ ଗମନ କଲେ, ତଦନନ୍ତର ମୂଷିକ ମାର୍ଜ୍ଜାରର ପାଶ ଛେଦନ କଲା । ୧୨୧ । ମାର୍ଜ୍ଜାର ତେତେବେଳେ ବନ୍ଧନ ବିମୁକ୍ତ ଓ ଘୋରତର ବିପକ୍ଷର ଉପ୍ଲାବର୍ତ୍ତିରୁ ମୁକ୍ତ ହୋଇ ସେହି ବୃକ୍ଷରେ ଆରୋହଣ ପୂର୍ବକ ତାହାର ଶାଖାକୁ ଅବଲମ୍ବନ କଲା । ପଲିତ ମୂଷିକ ମଧ୍ୟ ବିବର ମଧ୍ୟରେ ପ୍ରବେଶ କଲା । ହେ ଭରତର୍ଷଭ । ଚଣ୍ଡାଳ ମଧ୍ୟ ଜାଲ ଗ୍ରହଣ ପୂର୍ବକ କ୍ଷଣକାଳ ମଧ୍ୟରେ ଚତୁର୍ଦ୍ଦିଗକୁ ନିରୀକ୍ଷଣ ପୂର୍ବକ ହତାଶ ହୋଇ ସେଠାରୁ ନିଜ ଗୃହକୁ ଗମନ କଲା । ୧୨୪ ।

ଅନନ୍ତର ତରୁଶାଖାଗ୍ରବର୍ତ୍ତୀ ଲୋମଶ ତାଦୃଶ ଭୟରୁ ବିମୁକ୍ତ ହୋଇ ଦୁର୍ଲଭ ଜୀବନ ଲାଭକରି ଗର୍ତ୍ତମଧ୍ୟବର୍ତ୍ତୀ ପଳିତକୁ ସମ୍ବୋଧନ ପୂର୍ବକ କହିଲା—ହେ ସଖେ । ତୁମ୍ଭେ ଆମ୍ଭସହିତ କୌଣସି କଥୋପ-କଥନ ନକରି ସହସା ନିଜସ୍ଥାନକୁ ଗମନ କରୁଅଛ । ତୁମ୍ଭେ ଆମ୍ଭର ଯେଉଁ ଉପକାର କରିଅଛ ସେଥିପାଇଁ ଆମ୍ଭେ କୃତଜ୍ଞ ଏବଂ ଆମ୍ଭେ ତୁମ୍ଭର ଉପକାର କରିବାକୁ ସମର୍ଥ ଏହାଜାଣି ସୁଦ୍ଧା ତୁମ୍ଭେ ଆମ୍ଭକୁ ଶଙ୍କା କରୁନାହଁ ? । ୧୨୬ । ହେ ମିତ୍ର । ତୁମ୍ଭେ ଆମ୍ଭର ବିଶ୍ୱାସଭାଜନ ହୋଇ ପ୍ରାଣଦାନ ପୂର୍ବକ ସୁଖୋପଭୋଗ ସମୟରେ ଆମ୍ଭ ନିକଟକୁ ଆସୁନାହଁ କାହିଁକି ? । ୧୨୭ । ଯେଉଁବ୍ୟକ୍ତି ପ୍ରଥମତଃ ମିତ୍ରତା କରି ପରେ ତାହାର ଅନୁଷ୍ଠାନ କରେନାହିଁ, ସେହି ଦୁର୍ମ୍ମତି କଷ୍ଟକର ଆପଦ୍‌କାଳରେ ମିତ୍ରଲାଭ କରିବାକୁ ସମର୍ଥ ହୁଏନାହିଁ ।୧୨୮ । ହେ ସଖେ । ତୁମ୍ଭେ ସାମର୍ଥ୍ୟ

ସନ୍ଧକାରେ ଅମ୍ଭର ସହାର କରଅଛ, ଅମ୍ଭେମଧ୍ୟ ଅମ୍ଭ ସୁଖରେ ଆସକ୍ତ ହୋଇ ତୁମ୍ଭସହିତ ମୈତ୍ରୀବନ୍ଧନ କରଅଛୁଁ । ଅତଏବ ଅମ୍ଭ ସହିତ ସୁଖୋପଭୋଗ କରିବା ତୁମ୍ଭର ଉଚିତ ହେଉଅଛି । ୧୨୯ । ଅମ୍ଭର ଯେଉଁସବୁ ବନ୍ଧୁ, ବାନ୍ଧବ, ସମ୍ବନ୍ଧୀ ପ୍ରଭୃତି ଆତ୍ମୀୟ ଅଛନ୍ତି, ସେମାନେ ସମସ୍ତେ, ଶିଷ୍ୟମାନେ ଭକ୍ତିଭାଜନ ଗୁରୁଙ୍କର ପରିଚର୍ଯ୍ୟା କଲାପ୍ରାୟ, ତୁମ୍ଭର ସମ୍ମାନ କରିବେ । ୧୩୦ । ତୁମ୍ଭେ ଅମ୍ଭର ପ୍ରାଣଦାତା ଅଟ, ଅତଏବ ଅମ୍ଭେ ତୁମ୍ଭର ଓ ତୁମ୍ଭର ବନ୍ଧୁବାନ୍ଧବ ମାନଙ୍କର ସମ୍ମାନ କରିବୁଁ । କେଉଁ କୃତଜ୍ଞବ୍ୟକ୍ତି ନିଜ ଜୀବନଦାତାର ପୂଜା ନ କରେ । ୧୩୧ । ତୁମ୍ଭେ ଅମ୍ଭର ଶରୀର ସଦନ ଓ ସମୁଦାୟ ଅର୍ଥର ଅଧିଶ୍ୱର ହୁଅ ଏବଂ ଅମ୍ଭଙ୍କୁ ସଦୁପଦେଶ ପ୍ରଦାନ କର । ୧୩୨ ।

ହେ ପ୍ରାଜ୍ଞ ! ତୁମ୍ଭେ ଅମ୍ଭର ଅମାତ୍ୟହୁଅ ଏବଂ ପିତାପ୍ରାୟ ଅମ୍ଭଙ୍କୁ ଉପଦେଶ ପ୍ରଦାନ କର । ଅମ୍ଭେ ନିଜର ଜୀବନଦ୍ୱାରା ଶପଥକରି କହୁଅଛୁଁ ଯେ ଅମ୍ଭଠାରୁ ତୁମ୍ଭର କିଛିମାତ୍ର ଭୟନାହିଁ । ୧୩୩ । ତୁମ୍ଭେ ବୁଦ୍ଧି କୌଶଳରେ ସାକ୍ଷାତ୍ ଶୁକ୍ରାଚାର୍ଯ୍ୟଙ୍କ ସଦୃଶ ଅଟ । ଏଣୁ ମନ୍ତ୍ରବଳ ସମନ୍ୱିତ ହୋଇ ଅମ୍ଭର ଜୀବନ ଦାନକରି ଅମ୍ଭମାନଙ୍କୁ ଅଧିକାର କରିଅଛ । ୧୩୪ ।

ମାର୍ଜ୍ଜାର ମୂଷିକକୁ ଏହିପରି ନିତାନ୍ତ ସାନ୍ତ୍ୱନା ବାକ୍ୟ କହନ୍ତେ ପରମାର୍ଥବିତ୍ ମୂଷିକ ମଧୁରଭାବରେ ଆତ୍ମହିତ ବାକ୍ୟ କହିଲା—ହେ ଲୋମଶ ! ତୁମ୍ଭେ ଯାହା କହିଲ, ଅମ୍ଭେ ତତ୍ସମୁଦାୟ ଶ୍ରବଣ କଲୁଁ । ବର୍ତ୍ତମାନ ଅମ୍ଭେ ଯାହା ବିବେଚନାକରି କହୁଅଛୁଁ ତାହା ଶ୍ରବଣ କର । ୧୩୬ । ଶତ୍ରୁ ଓ ମିତ୍ର ଉଭୟଙ୍କୁ ବିଶେଷରୂପରେ ଜ୍ଞାତ ହେବା ଉଚିତ । ଏହାକୁ ଲୋକେ ପ୍ରାଜ୍ଞସମ୍ମତ ଅତି ସୂକ୍ଷ୍ମବିଷୟ ବୋଲି କହନ୍ତି । ୧୩୭ । ଶତ୍ରୁରୂପ ସୁହୃଦ ଓ ମିତ୍ରରୂପ ଶତ୍ରୁଗଣଙ୍କ ସହିତ ସନ୍ଧି ବିହିତ ହେଲେହେଁ କାମକ୍ରୋଧ ବଶୀଭୂତ ବ୍ୟକ୍ତିମାନେ ସେମାନଙ୍କର ପ୍ରକୃତଭାବକୁ ଜାଣିପାରନ୍ତି ନାହିଁ । ୧୩୮ । ଏହି ଜଗତରେ କଦାପି ସ୍ୱଭାବତଃ କେହି କାହାର ଶତ୍ରୁ କମ୍ବା ମିତ୍ର ହୁଏନାହିଁ, କାର୍ଯ୍ୟବଶତଃ ଶତ୍ରୁ କମ୍ବା ମିତ୍ର ହୁଅନ୍ତି । ୧୩୯ । ଯେଉଁବ୍ୟକ୍ତି ନିଜର ସ୍ୱାର୍ଥ ନିମିତ୍ତ ଯାହାକୁ ଅବଲମ୍ବନ କରି ଜୀବନଧାରଣ କରେ ଏବଂ ଯଦି ଉକ୍ତ ବ୍ୟକ୍ତିର ପୀଡ଼ା ଦେଖେ, ତାହାହେଲେ ଜୀବନ ବିସର୍ଜନ କରେ, ଏହିଭାବର

ବ୍ୟତିକ୍ରମ ଯାବତ୍କାଳ ନ ହୋଇଥାଏ, ତାବତ୍କାଳ ସେହି ଅଶ୍ରିତ ବ୍ୟକ୍ତି ତାହାର ମିତ୍ର ଅଟେ ।୧୪୦। ସୌହାର୍ଦ୍ଦ୍ୟ କିମ୍ବା ଶତ୍ରୁତା ସ୍ଥିରଭାବେ ଥାଏ ନାହିଁ । ପ୍ରୟୋଜନବଶତଃ ଶତ୍ରୁ କିମ୍ବା ମିତ୍ର ହୁଅନ୍ତି । ୧୪୧ । କାଳକ୍ରମରେ ମିତ୍ରମଧ୍ୟ ଶତ୍ରୁ ହୁଅନ୍ତି, ଶତ୍ରୁମଧ୍ୟ ମିତ୍ର ହୁଅନ୍ତି, ଅତଏବ ସ୍ୱାର୍ଥ ବଳବତ୍ତର ଅଟେ ।୧୪୨।

ଯେଉଁବ୍ୟକ୍ତି ପ୍ରୟୋଜନ ନଜାଣି ମିତ୍ରଗଣଙ୍କ ପ୍ରତି ବିଶ୍ୱାସ କରେ ଏବଂ ଶତ୍ରୁମାନଙ୍କ ପ୍ରତି ଅବିଶ୍ୱାସ କରେ, ତାହାର ଜୀବନ ବିଚଳିତ ହୁଏ । ଶତ୍ରୁ କିମ୍ବା ମିତ୍ର ବିଷୟରେ ପ୍ରୟୋଜନ ଜ୍ଞାନ ନ କରି ଯେଉଁବ୍ୟକ୍ତି ପ୍ରୀତିଚିତ୍ତ ହୁଏ, ତାହାର ମଧ୍ୟ ବୁଦ୍ଧି ବିଚଳିତ ହୋଇଯାଏ । ଅବିଶ୍ୱସ୍ତ ବ୍ୟକ୍ତିକୁ ବିଶ୍ୱାସ କରିବନାହିଁ, ବିଶ୍ୱାସ ବ୍ୟକ୍ତିକୁ ମଧ୍ୟ ଅତି ବିଶ୍ୱାସ କରିବା କର୍ତ୍ତବ୍ୟ ନୁହେ, କାରଣ ବିଶ୍ୱାସରୁ ଉତ୍ପନ୍ନ ଭୟ ବିଶ୍ୱାସର ମୂଳମାନଙ୍କୁ ଛେଦନ କରେ । ୧୪୪ । ପିତା, ମାତା, ପୁତ୍ର, ମାତୁଳ, ଭାଗିନେୟ, ସମ୍ବନ୍ଧୀ ଓ ବାନ୍ଧବ ପ୍ରଭୃତି ପ୍ରୟୋଜନ ଅନୁସାରେ ପ୍ରିୟ ହୁଅନ୍ତି । ୧୪୫ । ପ୍ରିୟପୁତ୍ର ପତିତ ହେଲେ ପିତାମାତା ତାହାଙ୍କୁ ପରିତ୍ୟାଗ କରି ଜନ ସମାଜରେ ନିଜକୁ ରକ୍ଷାକରନ୍ତି, ଅର୍ଥାତ୍ ସ୍ୱାର୍ଥ କେଡ଼େ ସାରବାନ୍, ବିବେଚନା କର । ୧୪୬ । ହେ ପ୍ରାଜ୍ଞ ! ଯେଉଁବ୍ୟକ୍ତି କୌଣସି ବିପଦରୁ ମୁକ୍ତ ହୋଇ ପରକ୍ଷଣରେ ଶତ୍ରୁର ସୁଖ ଉପାୟକୁ ଅନ୍ୱେଷଣ କରେ, ତାହାର ପ୍ରାୟ ନିଷ୍କୃତି ନାହିଁ ।୧୪୭। ତୁମ୍ଭେ ବଟବୃକ୍ଷରୁ ଏହି ଅବାସକୁ ଅବତାରିତ ହୋଇଥିଲ ।୧୪୮। କିନ୍ତୁ ପୂର୍ବେ ଯେଉଁ ଜାଲବନ୍ଧନ ସଂଯୋଜିତ ହୋଇଥିଲା, ତାହା ତୁମ୍ଭେ ଚପଳତାବଶତଃ ଜାଣି ପାରିଲ ନାହିଁ । ନିଜର ମନ ଅପେକ୍ଷା ଚଞ୍ଚଳ ଆଉ କେହି ନାହିଁ । ଅତଏବ ଅନ୍ୟର ଚପଳତା କି ପ୍ରକାରେ ଅଧିକ ହୋଇପାରେ ? । ୧୪୯ ।

ସୁତରାଂ ଚଞ୍ଚଳ ପ୍ରକୃତି ହେଲେ ନିଶ୍ଚୟ ସମସ୍ତକାର୍ଯ୍ୟ ବିନଷ୍ଟ ହୁଏ । ବର୍ତ୍ତମାନ ତୁମ୍ଭେ ଆମ୍ଭଙ୍କୁ ଯେଉଁ ମଧୁର ବାକ୍ୟ କହୁଅଛ, ତାହା ଆମ୍ଭର ପ୍ରୀତିକର ହେଉଅଛି ସତ୍ୟ, କିନ୍ତୁ ଆମ୍ଭେ ମଧ୍ୟ ବିସ୍ତାର କ୍ରମରେ ମିତ୍ରତାର ଉପାୟଭୂତ ଯେଉଁସବୁ କଥା କହୁଅଛୁଁ, ତାହା ଶ୍ରବଣ କର । ଏହି ସଂସାରରେ କାରଣ ଅନୁସାରେ ଲୋକପ୍ରିୟ ହୁଏ ଏବଂ କାରଣ ଅନୁସାରେ ଦ୍ୱେଷ୍ୟ ହୋଇଥାଏ ।୧୫୧। ପ୍ରତ୍ୟେକ ଜୀବ ପ୍ରୟୋଜନାପେକ୍ଷୀ ଅଟନ୍ତି;

ଅତଏବ ଅକାରଣ କେହ କାହାର ପ୍ରିୟ ହୁଅନ୍ତି ନାହିଁ । ସହୋଦରଙ୍କର, ଭ୍ରାତୃଦ୍ୱୟଙ୍କର ସୌଭ୍ରାତ୍ର ଓ ଦମ୍ପତିର ପରସ୍ପର ପ୍ରେମ ଯେ ସ୍ଥଳେ ଏହ ଜଗତରେ କାହାର ପ୍ରୀତି ବିନା କାରଣରେ ସଙ୍ଘଟିତ ହୁଏନାହିଁ । ଏହା ଅମ୍ଭେ କଦାପି ଦେଖୁନାହିଁ । କିନ୍ତୁ ଭ୍ରାତୃଗଣ କିମ୍ବା ଭାର୍ଯ୍ୟା କୌଣସି କାରଣବଶତଃ କ୍ରୁଦ୍ଧହେଲେ ପ୍ରୀତ ହୁଅନ୍ତି, ଅପର ଲୋକେ ସେପରି ପ୍ରୀତିଯୁକ୍ତ ହୁଅନ୍ତି ନାହିଁ ।

ଏହ ଜଗତରେ କେହ ଦାନ ଦ୍ୱାରା ପ୍ରିୟ ହୁଏ, କେହ ଅବା ପ୍ରିୟବାକ୍ୟ ଦ୍ୱାରା ପ୍ରିୟ ହୁଏ ।୧୫୦। ଅପର ଲୋକେ କାର୍ଯ୍ୟବଶତଃ ମନ୍ତ୍ର ହୋମ ଓ ଜପଦ୍ୱାରା ପ୍ରୀତିଲାଭ କରନ୍ତି । ଅମ୍ଭ ଦୁହିଁଙ୍କର ପ୍ରୀତି ବିଶେଷ କାରଣବଶତଃ ଉତ୍ପନ୍ନ ହୋଇଥିଲା । ବର୍ତ୍ତମାନ ସେହ କାରଣର ଅବସାନ ହୋଇଅଛି, ଅତଏବ ଅନ୍ୟ କୌଣସି ପ୍ରଶସ୍ତ କାରଣଥିଲେ ମଧ୍ୟ ସେହ ପ୍ରୀତି ନିବର୍ତ୍ତିତ ହୋଇଅଛି, ଏପରି କାରଣ କଣ ଅଛି, ଯଦ୍ୱାରା ଆମ୍ଭେ ତୁମ୍ଭର ପ୍ରିୟ ହୋଇପାରୁଁ ? ୧୫୬ । ବିନା କାରଣରେ ଯେପରି ବ୍ୟବହାର କରିବାକୁ ହୁଏ, ତାହା ଆମ୍ଭେ ବିଶେଷ ରୂପରେ ଜାଣୁ । କାଳ କାରଣକୁ ଅବସ୍ଥିତ କରଇଏ । କାରଣ କଦାପି ସ୍ୱାର୍ଥଶୂନ୍ୟ ହୁଏ ନାହିଁ । ୧୫୭ । ପ୍ରାଜ୍ଞ ବ୍ୟକ୍ତି ସ୍ୱାର୍ଥ ବିଷୟରେ ଅଭିଜ୍ଞ ଅଟନ୍ତି, ଅତଏବ ଲୋକେ ପ୍ରାଜ୍ଞ ବ୍ୟକ୍ତିଙ୍କର ଅନୁବର୍ତ୍ତନ କରନ୍ତି । ସ୍ୱାର୍ଥଭିଜ୍ଞ ବିଦ୍ୱାନ ବ୍ୟକ୍ତି ପ୍ରତି ଇତ୍ଥମ୍ଭୂତ ବାକ୍ୟ ପ୍ରୟୋଗ କରିବା ତୁମ୍ଭର ଉଚିତ ନୁହେ । ୧୫୮ ।

ତୁମ୍ଭେ ଅମ୍ଭ ପ୍ରତି ସ୍ନେହ ପ୍ରକାଶ କରିପାର, କିନ୍ତୁ ବର୍ତ୍ତମାନ ସେହ ସ୍ନେହ ପ୍ରକାଶ କରିବାର ସମୟ ନୁହେ । ଅତଏବ ଆମ୍ଭେ ସ୍ୱାର୍ଥରୁ କଦାପି ବିଚଳିତ ହେବୁ ନାହିଁ । ସନ୍ଧି ଓ ବିଗ୍ରହ ବିଷୟରେ ଅମ୍ଭର ବିଶେଷ ସ୍ଥିର ଜ୍ଞାନ ଅଛି । ୧୫୯ । ଏହ ସନ୍ଧି ବିଗ୍ରହ ସବୁ କ୍ଷଣକୁ କ୍ଷଣ ମେଘ ପ୍ରାୟ ନାନାରୂପ ଧାରଣ କରେ । ତୁମ୍ଭେ ଅଦ୍ୟ ଅମ୍ଭର ଶତ୍ରୁଥିଲ ଏବଂ ଅଦ୍ୟ ଅମ୍ଭର ସୁହୃଦ ହେଲେ, ପୁନର୍ବାର ଅଦ୍ୟ ଅମ୍ଭର ଶତ୍ରୁ ହୋଇଅଛ, ଅତଏବ ଯୁକ୍ତିର ଚପଳତା କିପରି, ତାହା ଅବଲୋକନ କର । ପୂର୍ବେ ଯେତେବେଳ ପର୍ଯ୍ୟନ୍ତ କାରଣ ଥିଲା, ସେତେବେଳ ପର୍ଯ୍ୟନ୍ତ ଅମ୍ଭ ଦୁହିଁଙ୍କର ମିତ୍ରତା ଥିଲା । ୧୬୧ । ବର୍ତ୍ତମାନ ସେହ ପୂର୍ବ ମିତ୍ରତା ଯାଇଅଛି । ତାହା କାଳ ସହକାରେ ଅନ୍ୟ କୌଣସି କାରଣ ବଶତଃ ହୋଇ ନ ପାରେ । ତୁମ୍ଭେ ଜାତିରେ ଅମ୍ଭର ଶତ୍ରୁ ଅଟ; କିନ୍ତୁ ଅପର ବୈରୀମାନଙ୍କଠାରୁ ଅମ୍ଭଙ୍କୁ

ରକ୍ଷା କରିବାର ସାମର୍ଥ୍ୟ ଥିବା ହେତୁରୁ ମିତ୍ର ହୋଇଥିଲ । ୧୬୨ । ସେହି ମିତ୍ରତାର କାର୍ଯ୍ୟ ନିବୃତ୍ତ ହୋଇଅଛି, ଅତଏବ ତୁମ୍ଭେ ବର୍ତ୍ତମାନ ପ୍ରକୃତ ଶତ୍ରୁଭାବ ଧାରଣ କରିଅଛ । ସୁତରାଂ ଆମ୍ଭେ ପ୍ରାଚୀନଗଣ ପ୍ରଣୀତ ଶାସ୍ତ୍ର-ମାନଙ୍କ ଯଥାର୍ଥ ରୂପରେ ଜାଣି କି ପ୍ରକାର ତୁମ୍ଭର ପାର୍ଶ୍ୱରେ ପ୍ରବେଶ କରିବୁ କୁହ ? ଆମ୍ଭେ ତୁମ୍ଭର ବୀର୍ଯ୍ୟବଳରେ ମୁକ୍ତ ହୋଇଅଛୁଁ, ତୁମ୍ଭେ ମଧ୍ୟ ଆମ୍ଭର ବୀର୍ଯ୍ୟପ୍ରଭାବ ଦ୍ୱାରା ବିପଦରୁ ଉତ୍ତୀର୍ଣ୍ଣ ହୋଇଅଛ । ଅତଏବ ପରସ୍ପରର ଅନୁଗ୍ରହ ନିବୃତ୍ତ ହୋଇଥିବା ସ୍ଥଳେ ପୁନର୍ବାର ଆଉ ସମାଗମ ହୋଇ ନ ପାରେ ।

ହେ ସୌମ୍ୟ ! ବର୍ତ୍ତମାନ ତୁମ୍ଭେ କୃତାର୍ଥ ହୋଇଅଛ । ଆମ୍ଭର ମଧ୍ୟ ପ୍ରୟୋଜନ ସିଦ୍ଧ ହୋଇଅଛି । ୧୬୫ । ଅତଏବ ଆମ୍ଭଙ୍କୁ ଭକ୍ଷଣ କରିବା ବ୍ୟତୀତ ଅଦ୍ୟ ତୁମ୍ଭର ଆମ୍ଭ ସହିତ ଅନ୍ୟ କୌଣସି କର୍ତ୍ତବ୍ୟ କାର୍ଯ୍ୟ ନାହିଁ । ଆମ୍ଭେ ଭକ୍ଷ୍ୟ ଏବଂ ତୁମ୍ଭେ ଭୋକ୍ତା ଅଟ, ଆମ୍ଭେ ଦୁର୍ବଳ ଓ ତୁମ୍ଭେ ବଳବାନ ଅଟ । ୧୬୬ । ଇଦୃଶ ବିଷମ ସମ୍ବନ୍ଧ ସ୍ଥଳରେ ଆମ୍ଭ ଦୁହିଁଙ୍କର ସନ୍ଧି ହୋଇପାରେ ନାହିଁ । ସମ୍ପ୍ରତି ତୁମ୍ଭର ବୁଦ୍ଧିକୌଶଳ ବିଷୟରେ ଏହିମତ ବିବେଚନା କରୁଅଛୁଁ ଯେ, ଆପଦରୁ ମୁକ୍ତ ହେଲାପରେ ତୁମ୍ଭେ ଅନାୟାସ କର୍ମ୍ମ ଦ୍ୱାରା ଭକ୍ଷ୍ୟ ଲାଭ କରିବାକୁ ଇଚ୍ଛା କରୁଅଛ, ତୁମ୍ଭେ କ୍ଷୁଧା ପୀଡିତ ହୋଇ ଭକ୍ଷ୍ୟ ନିମିତ୍ତ ବଦ୍ଧ ହୋଇଥିଲ ଏବଂ ଆମ୍ଭଦ୍ୱାରା ମୁକ୍ତ ହୋଇଅଛ । ୧୬୮ । ବର୍ତ୍ତମାନ ଶାସ୍ତ୍ରସିଦ୍ଧ ବୁଦ୍ଧି ଅବଲମ୍ବନ କରି ଆମ୍ଭଙ୍କୁ ନିଶ୍ଚୟ ଭକ୍ଷଣ କରିବ । ଆମ୍ଭେ ତୁମ୍ଭଙ୍କୁ କ୍ଷୁଧିତ ବିବେଚନା କରୁ-ଅଛୁଁ ଏବଂ ତୁମ୍ଭର ଆହାରର ସମୟ ମଧ୍ୟ ଉପସ୍ଥିତ ହୋଇଅଛି । ୧୬୯ । ଅତଏବ ତୁମ୍ଭେ ଆମ୍ଭଙ୍କୁ ଉଦ୍ଦେଶ୍ୟ କରି ଭକ୍ଷ ଅନ୍ୱେଷଣ କରୁଅଛ । ହେ ସଖେ ! ତୁମ୍ଭେ ସ୍ତ୍ରୀ ପୁତ୍ର ପ୍ରଭୃତିଙ୍କର ମଧ୍ୟବର୍ତ୍ତୀ ହୋଇ ଯେଉଁ ସ୍ଥଳେ ଆମ୍ଭ ସହିତ ସନ୍ଧି ପୂର୍ବକ ଆମ୍ଭର ଶୁଶ୍ରୂଷା କରିବାକୁ ଯତ୍ନବାନ ହୋଇଅଛ, ସେ ସ୍ଥଳେ ଆମ୍ଭେ ତହିଁରେ ସମ୍ମତ ହେବାକୁ ସକ୍ଷମ ନୋହୁଁ । ତୁମ୍ଭର ପ୍ରିୟଭାର୍ଯ୍ୟା ଓ ପ୍ରଣୟୀ ପୁତ୍ର ଗଣ ତୁମ୍ଭ ସହିତ ଆମ୍ଭଙ୍କୁ ଅବସ୍ଥାନ କରିବାର ଦେଖି କି କାରଣରୁ ଆମ୍ଭଙ୍କୁ ଭକ୍ଷଣ କରିବେ ନାହିଁ ?

ସମାଗମର କାରଣ ଅବସାନ ହୋଇଅଛି, ଅତଏବ ବର୍ତ୍ତମାନ ଆମ୍ଭେ ଆଉ ସବୁ ସହିତ ସଙ୍ଗତ ହେବୁନାହିଁ । ୧୭୨ । ଯଦି ତୁମ୍ଭେ କୃତଜ୍ଞତାକୁ ସ୍ମରଣ କର, ତେବେ ସ୍ୱସ୍ଥଥାଇ ଆମ୍ଭର କଲ୍ୟାଣ ଚିନ୍ତା

କରୁଥାଅ । ଯେଉଁ ଅସତ୍ ଶତ୍ରୁ କ୍ଲେଶ ଯୁକ୍ତ ଓ କ୍ଷୁଧିତ ହୋଇ ନିଜ ଭକ୍ଷକୁ ଅନ୍ୱେଷଣ କରୁଥାଏ, କେଉଁ ବୁଦ୍ଧିମାନ ବ୍ୟକ୍ତି ତାହାର ଅଧିକାରକୁ ଗମନ କରେ ? ଆମ୍ଭେ ଗମନ କରୁଅଛୁଁ, ତୁମ୍ଭର କଲ୍ୟାଣ ହେଉ, ଆମ୍ଭେ ତୁମ୍ଭର ଦୂରରେ ଥାଇ ସୁଦ୍ଧା ଉଦ୍‌ବିଗ୍ନ ହେଉଅଛୁଁ ।୧୭୪।

ଅତଏବ ହେ ଲୋମଶ । ଆମ୍ଭେ ତୁମ୍ଭ ସହିତ ମିଳିତ ହୋଇ ପାରିବୁ ନାହିଁ । ତୁମ୍ଭେ ନିବୃତ୍ତ ହୁଅ । ଆଉ ଯଦି ତୁମ୍ଭେ କୃତଜ୍ଞ ହେବାକୁ ଅଭିଳାଷ କରିଅଛ ତେବେ ବନ୍ଧୁତ୍ୱର ଅନୁସରଣ କର । ଆମ୍ଭେ ବିଶ୍ୱସ୍ତ କିମ୍ବା ଅନବହିତ ଥିଲେ କଦାପି ଆମ୍ଭର ଅନୁସରଣ କରିବୁ ନାହିଁ । ଏହା ହେଲେ ସୌହୃଦ୍ୟ ରକ୍ଷା ହେଲା । ଦୁର୍ବଳ ବ୍ୟକ୍ତିର ବଳିଷ୍ଠ ସହିତ ସଂସର୍ଗ ରଖିବା କଦାଚ ପ୍ରଶସ୍ତ ନୁହେ । ଭୟର କାରଣ ଅତିକ୍ରାନ୍ତ ହେଲେ ସୁଦ୍ଧା ଦୁର୍ବଳ ବ୍ୟକ୍ତିର ବଳବାନକୁ ସର୍ବଦା ଭୟ କରିବା ଉଚିତ । ଯଦି ତୁମ୍ଭର ମଦ୍‌ଭକ୍ଷଣାତିରିକ୍ତ ଅନ୍ୟ କୌଣସି ପ୍ରୟୋଜନ ଥାଏ, ତାହା କୁହ କଣ କରିବୁଁ । ୧୭୭ । ଆମ୍ଭେ ତୁମ୍ଭର ଅଭିଳଷିତ ସମସ୍ତ ବସ୍ତୁ ପ୍ରଦାନ କରିପାରୁଁ କିନ୍ତୁ କଦାପି ଆତ୍ମ ପ୍ରଦାନ କରି ନ ପାରୁଁ । ଆତ୍ମା ନିମିତ୍ତ କନ୍ୟା, ପୁତ୍ର, ଧନ, ରତ୍ନ ଓ ରାଜ୍ୟ ପର୍ଯ୍ୟନ୍ତ ପରିତ୍ୟାଗ କରାଯାଏ । ଅତଏବ ସର୍ବସ୍ୱ ପରିତ୍ୟାଗ କରି ସୁଦ୍ଧା ନିଜକୁ ରକ୍ଷା କରିବା ଆତ୍ମରକ୍ଷାର୍ଥ ଯେଉଁ ସବୁ ଧନ ରତ୍ନାଦି ଐଶ୍ୱର୍ଯ୍ୟ ଶତ୍ରୁ ହସ୍ତରେ ସମର୍ପଣ କରାଯାଏ, ଜୀବିତ ଥିଲେ ତତ୍ସମୁଦାୟ ପୁନର୍ବାର ନିଜର ହସ୍ତଗତ ହୋଇପାରେ । ଆତ୍ମ ସମ୍ପ୍ରଦାନ କଲେ ଧନରତ୍ନ ପ୍ରାୟ ତାହା ପ୍ରତ୍ୟାବୃତ୍ତ ହୁଏ ନାହିଁ । ଏଥିପାଇଁ ଆତ୍ମ ସମ୍ପ୍ରଦାନ କରିବା କାହାର ଇଷ୍ଟ ନୁହେ, ଏହା ଆମ୍ଭେ ଜନସମାଜରେ ଶ୍ରବଣ କରିଅଛୁଁ ।

ଅତଏବ ତୁମ୍ଭେ ଏହିସବୁ ଆଲୋଚନା କରି ଏହି ଅଧ୍ୟବସାୟରୁ ନିବୃତ୍ତ ହୁଅ । ୧୮୦ । ଭାର୍ଯ୍ୟା ଓ ଧନାଦି ଦ୍ୱାରା ସତତ ଆତ୍ମାକୁ ରକ୍ଷା କରିବା ଉଚିତ । ଯେଉଁ ଲୋକମାନେ ଆତ୍ମରକ୍ଷା କରିବାରେ ତତ୍ପର ଅଟନ୍ତି ଓ ବିବେଚନା ପୂର୍ବକ କାର୍ଯ୍ୟ କରନ୍ତି, ସେମାନଙ୍କର ନିଜ ଦୋଷ ଜନିତ ଆପଦ ସମୂହର ସମ୍ଭାବନା ହୁଏନାହିଁ । ଯେଉଁମାନେ ସ୍ୱୟଂ ଦୁର୍ବଳ ହୋଇ ବିପକ୍ଷକୁ ସମ୍ୟକ ରୂପେ ବଳବାନ ବୋଲି ଜ୍ଞାତ ହୁଅନ୍ତି, ସେମାନଙ୍କର ଶାସ୍ତ୍ରାର୍ଥ ଦର୍ଶିନୀ ସୁସ୍ଥିର ବୁଦ୍ଧି କଦାଚ ବିଚଳିତା

ହୁଏ ନାହିଁ । ଫଳତ ମୂଷିକ ମାର୍ଜାରକୁ ଏହିପରି ବିସ୍ପଷ୍ଟ ଭାବରେ ଭର୍ତ୍ସନା କରନ୍ତେ ସେ ଲଜ୍ଜିତ ହୋଇ ମୂଷିକକୁ କହିଲା । ୧୮୪ ।

ଲୋମଶ କହିଲା—ହେ ସଖେ ! ଅମ୍ଭେ ତୁମ୍ଭ ଦ୍ୱାରି ଶପଥ କରି କହୁଅଛୁଁ ଯେ ମିତ୍ରର ଅନିଷ୍ଟ ଆଚରଣ କରିବା ଅତିଶୟ ଗର୍ହିତ କର୍ମ୍ମ ଏହା ଅମ୍ଭେ ଜାଣୁ । ଅତଏବ ତୁମ୍ଭେ ଅମ୍ଭର ହିତକାରୀ, ତୁମ୍ଭର ବୁଦ୍ଧି ମଧ୍ୟ ତଦ୍ରୂପ, ତୁମ୍ଭେ ଅର୍ଥଶାସ୍ତ୍ର ଆଲୋଚନା ଦ୍ୱାରି ଅମ୍ଭର ଭଳାଭାବ ଦର୍ଶନ ପୂର୍ବକ ଯାହା କହିଲ, ତଦନୁସାରେ ଅମ୍ଭଙ୍କୁ ଅନ୍ୟବିଧ ବିବେଚନା କରିବା ତୁମ୍ଭର ଉଚିତ ହେଉନାହିଁ । ୧୮୬ । ତୁମ୍ଭେ ଅମ୍ଭର ପ୍ରାଣଦାନ କରିଅଛ, ଏତନିମିତ୍ତ ଅମ୍ଭ ସହିତ ତୁମ୍ଭର ସୌହୃଦ ହୋଇଅଛି । ଅମ୍ଭେ ଧର୍ମ୍ମଜ୍ଞ, ଗୁଣଜ୍ଞ, କୃତଜ୍ଞ ଓ ମିତ୍ରବତ୍ସଳ ଅଟୁଁ । ବିଶେଷତଃ ତୁମ୍ଭପ୍ରତି ଅନୁରକ୍ତ ହୋଇଅଛୁଁ, ଅତଏବ ଅମ୍ଭ ସହିତ ପୁନର୍ବାର ତୁମ୍ଭର ଏପରି ଆଚରଣ କରିବା ଉଚିତ ନୁହେ । ୧୮୮ । ତୁମ୍ଭେ ଅନୁମତି କଲେ ଅମ୍ଭେ ବାନ୍ଧବଗଣଙ୍କ ସହିତ ପ୍ରାଣ ପରିତ୍ୟାଗ କରିପାରୁଁ । ପଣ୍ଡିତମାନେ ମାଦୃଶ ମନସ୍ୱୀ ବ୍ୟକ୍ତିଙ୍କ ଠାରେ ବିଶ୍ୱାସ ଦର୍ଶନ କରନ୍ତି । ୧୮୯ । ଅତଏବ ହେ ଧର୍ମ୍ମତତ୍ତ୍ୱଜ୍ଞ ! ଅମ୍ଭ ପ୍ରତି ଶଙ୍କା କରିବା ତୁମ୍ଭର ଉଚିତ ହେଉ ନାହିଁ ।

ମୂଷିକ ମାର୍ଜ୍ଜାର କର୍ତ୍ତୃକ ଏହିପ୍ରକାର ଭାବରେ ପ୍ରଶଂସିତ ହୋଇ ତାହାକୁ ମାନସିକ ଭାବପୂର୍ଣ୍ଣ ଗମ୍ଭୀର ବଚନରେ କହିଲା—ହେ ସଖେ ! ତୁମ୍ଭେ ସାଧୁ; ତୁମ୍ଭର ବାକ୍ୟର ମର୍ମ୍ମଗ୍ରହଣ କରି ଅମ୍ଭେ ପ୍ରୀତ ହେଲୁ । ବର୍ତ୍ତମାନ ଅମ୍ଭେ ତୁମ୍ଭଙ୍କୁ ଆଉ ବିଶ୍ୱାସ କରି ନ ପାରୁଁ । ତୁମ୍ଭେ ପ୍ରଶଂସା କିମ୍ବା ଧନବଳ ଦ୍ୱାରି ପୁନର୍ବାର ଅମ୍ଭଙ୍କୁ ବଶୀଭୂତ କରି ପାରିବ ନାହିଁ । କାରଣ ବିଜ୍ଞ ବ୍ୟକ୍ତିମାନେ ଅକାରଣରେ ଶତ୍ରୁର ବଶତାପନ୍ନ ହୁଅନ୍ତି ନାହିଁ । ୧୯୨ । ଏହି ବିଷୟରେ ଶୁକ୍ରାଚାର୍ଯ୍ୟ ଯେଉଁ ଦୁଇ ଗାଥା ଗାନ କରି ଅଛନ୍ତି, ତାହା ଶ୍ରବଣ କର । ବଳବାନ ବ୍ୟକ୍ତି ଶତ୍ରୁ ସାଧାରଣ କାର୍ଯ୍ୟରେ ସନ୍ଧି କରି ଯୁକ୍ତି ସହକାରେ ସାବଧାନ ଥିବେ ଏବଂ କୃତକାର୍ଯ୍ୟ ହୋଇ ସୁଦ୍ଧା ଶତ୍ରୁକୁ ବିଶ୍ୱାସ କରିବେ ନାହିଁ ଏବଂ ବିଶ୍ୱସ୍ତ ଲୋକକୁ ମଧ୍ୟ ଅତିଶୟ ବିଶ୍ୱାସ କରିବା ବିଧେୟ ନୁହେ । ୧୯୪ । ସ୍ୱୟଂ ସତତ ଅପରର ବିଶ୍ୱାସ ଭାଜନ ହେବ, କିନ୍ତୁ ଅପରକୁ ବିଶ୍ୱାସ କରିବ ନାହିଁ । ଅତଏବ ସର୍ବାବସ୍ଥାରେ ନିଜର ଜୀବନକୁ ରକ୍ଷା କରିବା କର୍ତ୍ତବ୍ୟ । ୧୯୫ ।

ଜୀବିତ ଥିଲେ ଦ୍ରବ୍ୟ ସାମଗ୍ରୀ, ସନ୍ତାନ ସନ୍ତତି ସମୁଦାୟ ହୁଏ ଏବଂ ଅବିଶ୍ୱାସହିଁ ପରମ ଶ୍ରେଷ୍ଠ, ଏହା ନୀତି ଶାସ୍ତ୍ରମାନଙ୍କର ସଂକ୍ଷିପ୍ତ ଉପଦେଶ। ଅତଏବ ମନୁଷ୍ୟମାନଙ୍କୁ ଅବିଶ୍ୱାସ କରିବା ନିଜର ପ୍ରଭୂତ ହିତକର ବିଷୟ ଅଟେ। ମନୁଷ୍ୟମାନେ ଦୁର୍ବଳ ହୋଇ ସୁଦ୍ଧା ଯଦି ଦାହାକୁ ବିଶ୍ୱାସ ନ କରନ୍ତି, ତେବେ ସେମାନେ ଶତ୍ରୁମାନଙ୍କର ବଶୀଭୂତ ହୁଅନ୍ତି ନାହିଁ। ୧୯୭। ମନୁଷ୍ୟମାନେ ବଳବନ୍ତ ହୋଇ ସୁଦ୍ଧା, ଯଦି ବିପକ୍ଷକୁ ବିଶ୍ୱାସ କରନ୍ତି, ତେବେ ସେମାନଙ୍କର ବଧ ହୁଅନ୍ତି।

ଅତଏବ ହେ ମାର୍ଜ୍ଜାର। ତୁମ୍ଭେ ଆମ୍ଭର ଜାତଶତ୍ରୁ, ସୁତରାଂ ତୁମ୍ଭଠାରୁ ଆତ୍ମରକ୍ଷା କରିବା ଆମ୍ଭର ସତତ କର୍ତ୍ତବ୍ୟ। ୧୯୮। ତୁମ୍ଭେ ମଧ୍ୟ ନିଜ ଶତ୍ରୁ ପାପଜାତି ଚଣ୍ଡାଳଠାରୁ ନିଜକୁ ରକ୍ଷାକର। ମାର୍ଜାର ମୂଷିକର ଏହିପରି ବାକ୍ୟ ଶ୍ରବଣ କରି ଚଣ୍ଡାଳ ଭୟରେ ତ୍ରସ୍ତ ଓ ଭୀତ ହୋଇ ତରୁଶାଖାକୁ ପରିତ୍ୟାଗ ପୂର୍ବକ ବେଗ ସହକାରେ ସେଠାରୁ ପଳାୟନ କଲା ଏବଂ ଶାସ୍ତ୍ର ତତ୍ତ୍ୱଜ୍ଞ ବିଜ୍ଞ ମୂଷିକ ନିଜର ବୁଦ୍ଧି ସାମର୍ଥ୍ୟ ପ୍ରଦର୍ଶନ ପୂର୍ବକ ଅନ୍ୟ ବିବରରେ ପ୍ରବିଷ୍ଟ ହେଲା।

ହେ ମହାରାଜ। ଏହି ପ୍ରକାରେ ବୁଦ୍ଧିମାନ ମୂଷିକ ଦୁର୍ବଳ ହୋଇ ସୁଦ୍ଧା ଏକାକୀ ବୁଦ୍ଧିବଳରେ ବହୁ ବୈରୀମାନଙ୍କଠାରୁ ମୁକ୍ତ ଲାଭ କରିଥିଲା। ବିଜ୍ଞ ବ୍ୟକ୍ତିଙ୍କର ଅପେକ୍ଷାକୃତ ପ୍ରବଳ ବୈରୀ ସହିତ ସନ୍ଧି କରିବା ଉଚିତ। ୨୦୨। ମୂଷିକ ଓ ବିଡ଼ାଳ ଏହିପରି ସନ୍ଧିବଳରେ ପରସ୍ପରର ସାହାଯ୍ୟରୁ ମୁକ୍ତ ହୋଇଥିଲେ। ହେ ମହାରାଜ। ଏହି ପ୍ରକାରେ ବିସ୍ତାର କରି ଆମ୍ଭେ କ୍ଷତ୍ରଧର୍ମର ପଥକୁ ପ୍ରଦର୍ଶନ କଲୁଁ, ସମ୍ପ୍ରତି ତାହା ସଂକ୍ଷେପରେ କହୁଅଛୁଁ, ଶ୍ରବଣ କର। ଯେଉଁମାନେ ଥରେ ବୈରୋତ୍ପାଦନ ପୂର୍ବକ ପୁନର୍ବାର ପରସ୍ପର ପ୍ରୀତି ସ୍ଥାପନ କରିବାକୁ ପ୍ରୟାସ କରନ୍ତି ପରସ୍ପରକୁ ପ୍ରତାରଣା କରିବା ସେମାନଙ୍କର ମାନସିକ ଉଦ୍ଦେଶ୍ୟ। ତନ୍ମଧ୍ୟରେ ଅପେକ୍ଷାକୃତ ବୁଦ୍ଧିମାନ ବ୍ୟକ୍ତି ନିଜର ବୁଦ୍ଧି କୌଶଳ ଦ୍ୱାରା ଅନ୍ୟକୁ ବଞ୍ଚନା କରିବାକୁ ସମର୍ଥ ହୁଏ ଏବଂ ନିର୍ବୋଧ ଲୋକ ନିଜର ଅନବଧାନତା ଦୋଷରେ ପ୍ରତାରିତ ହୋଇଥାଏ। ଅତଏବ ଭୀତ ହେଲେ ମଧ୍ୟ ଅଭୀତ ପ୍ରାୟ ଏବଂ ଅନ୍ୟ ପ୍ରତି ଅବିଶ୍ୱାସ ଥିଲେ ମଧ୍ୟ ବିଶ୍ୱସ୍ତ ପ୍ରାୟ ବ୍ୟବହାର କରିବା ବିଧେୟ। ୨୦୬। ଯେଉଁ ବ୍ୟକ୍ତି

ଏହିପରି ସାବଧାନ ଥାଏ, ସେ କଦାପି ବିଚଳିତ ହୁଏ ନାହିଁ ଏବଂ ବିଚଳିତ ହୋଇ ସୁଦ୍ଧା ବିନଷ୍ଟ ହୁଏ ନାହିଁ ।

ହେ ମହାରାଜ ! ଉପଯୁକ୍ତ ସମୟ ଉପସ୍ଥିତ ହେଲେ ଶତ୍ରୁ ସହିତ ସନ୍ଧି କରିବ ଏବଂ ସମୟାନୁସାରେ ସଖା ସହିତ ମଧ୍ୟ ବିଗ୍ରହ କରିବ । ସନ୍ଧି ବିଗ୍ରହବିତ୍ ପଣ୍ଡିତମାନଙ୍କ କର୍ତ୍ତୃକ ଏହିପରି ସିଦ୍ଧାନ୍ତ କର୍ତ୍ତବ୍ୟ ବୋଲି କଥିତ ହୁଏ । ହେ ମହାରାଜ ! ଏହା ଜାଣି ଶାସ୍ତ୍ରାର୍ଥ ଅବଗତ ପୂର୍ବକ ଭୟର କାରଣ ଉପସ୍ଥିତ ହେବା ପୂର୍ବରୁ ସମାହିତ ଓ ସାବଧାନ ହୋଇ ଭୀତବତ୍ ଅବସ୍ଥାନ କରିବ । ଭୟ ଉପସ୍ଥିତ ହେବା ପୂର୍ବରୁ ସଭୟ ବ୍ୟବହାର ଏବଂ ଶତ୍ରୁ ସହିତ ସନ୍ଧି କରିବା ଅବଶ୍ୟ କର୍ତ୍ତବ୍ୟ । ୨୦୯ ।

ଭୟରୁ ସାବଧାନ ବୁଦ୍ଧି ଉତ୍ପନ୍ନ ହୁଏ । ହେ ମହାରାଜ ! ଯେଉଁ-ମାନେ ଭୟର କାରଣ ଉପସ୍ଥିତ ନୋହୁଣୁ ଭୀତ ହୁଅନ୍ତି, ସେମାନଙ୍କର କଦାପି ଭୟ ଜନ୍ମେ ନାହିଁ । ଯେଉଁମାନେ ନିର୍ଭୀକ ଚିତ୍ତରେ ସମସ୍ତଙ୍କ ପ୍ରତି ବିଶ୍ୱାସ କରନ୍ତି, ସେମାନଙ୍କର ସର୍ବଦା ଭୟ ଉପସ୍ଥିତ ହୁଏ । ଯେଉଁ ବ୍ୟକ୍ତି ନିଜକୁ ବିଜ୍ଞ ଜାଣି ସତତ ନିର୍ଭୀକ ଚିତ୍ତରେ ଅବସ୍ଥାନ କରେ, ସେ ଅନ୍ୟର ମନ୍ତ୍ରଣା କଦାପି ଶ୍ରବଣ କରେ ନାହିଁ । ୨୧୧ । ଭୟଶୀଳ ବ୍ୟକ୍ତି ନିଜକୁ ଅବିଜ୍ଞ ବିବେଚନା କରି ବହୁଦର୍ଶୀ ପଣ୍ଡିତମାନଙ୍କ ନିକଟକୁ ଗମନ କରନ୍ତି, ଅତଏବ ବିଜ୍ଞ ବ୍ୟକ୍ତି ଭୀତ ହୋଇ ଅଭିହିତ ପ୍ରାୟ ଅବସ୍ଥାନ କରିବେ ଏବଂ ଅବିଶ୍ୱସ୍ତ ଲୋକଙ୍କ ଠାରେ ବିଶ୍ୱାସ ପ୍ରଦର୍ଶନ କରି କାର୍ଯ୍ୟମାନଙ୍କର ଗୁରୁତା ବିବେଚନା ପୂର୍ବକ ଲୋକଙ୍କ ଠାରେ ମିଥ୍ୟା ବ୍ୟବହାର କରିବେ ନାହିଁ ।

ହେ ଯୁଧିଷ୍ଠିର ! ଅମ୍ଭେ ନୀତିଶାସ୍ତ୍ରର ସାର ମର୍ମକୁ କୀର୍ତ୍ତନ କରିବା ଉଦ୍ଦେଶ୍ୟରେ ଏହି ମାର୍ଜାର ମୂଷିକର ଇତିହାସକୁ ବର୍ଣ୍ଣନ କଲୁ । ତୁମ୍ଭେ ଏହାକୁ ହୃଦୟଙ୍ଗମ କରି ଶତ୍ରୁ ଓ ସୁହୃଦଗଣଙ୍କ ମଧ୍ୟରେ ସନ୍ଧି ବିଗ୍ରହ ସଂସ୍ଥାପନ ପୂର୍ବକ ଯଥାବତ୍ ବ୍ୟବହାର କର ଏବଂ ଏହି ବିଷୟ ଶ୍ରବଣରେ ବୁଦ୍ଧିକି ମାର୍ଜିତ କରି ସନ୍ଧି ବିଗ୍ରହ କାଳରେ ଶତ୍ରୁ ମିତ୍ରଙ୍କର ମନୋଗତ ଭାବକୁ ଅବରୋଧ ପୂର୍ବକ ଆପଦ୍ କାଳରେ ମୁକ୍ତିର ଉପାୟକୁ ଅବଗତ ହୁଅ । ଶତ୍ରୁ ସାଧାରଣ କାର୍ଯ୍ୟରେ ଦୁର୍ବଳବ୍ୟକ୍ତି ଅପେକ୍ଷାକୃତ ବଳବାନ ବିପକ୍ଷ ସହିତ ସନ୍ଧି କରି ତା ସହିତ ପୁଣି ସମାଗମ ହେଲେ

ଯୁକ୍ତି ଅନୁସାରେ ବ୍ୟବହାର କରିବ ଏବଂ କୃତକାର୍ଯ୍ୟ ହୋଇ ସୁଦ୍ଧା ତାହାଙ୍କୁ ବିଶ୍ୱାସ କରିବ ନାହିଁ ।

ହେ ମହୀପତେ ! ଏହି ନୀତିବାକ୍ୟ ଧର୍ମ, ଅର୍ଥ ଓ କାମ ଏହି ତ୍ରିବର୍ଗ ସହିତ ସୁସଙ୍ଗତ ଅଟେ । ୨୧୭ । ଅତଏବ ଏହା ଶ୍ରବଣ କରି ତୁମ୍ଭେ ପୁନର୍ବାର ପ୍ରଜାପାଳନ ପୂର୍ବକ ଅଭ୍ୟୁଦୟ ଲାଭ କରିବ । ହେ ପାଣ୍ଡୁନନ୍ଦନ ! ତୁମ୍ଭେ ବ୍ରାହ୍ମଣମାନଙ୍କ ସହିତ ନିଜ ରାଜଧାନୀକୁ ଯାତ୍ରା କର । ୨୧୭ । ବ୍ରାହ୍ମଣମାନେ ଇହଲୋକ ଓ ସ୍ୱର୍ଗ ଲୋକରେ ପରମ ଶ୍ରେୟ ସମ୍ପାଦନ କରନ୍ତି । ହେ ମହାରାଜ ! ବ୍ରାହ୍ମଣମାନେ ଧର୍ମ ବେତ୍ତା ଓ ସତତ କୃତଜ୍ଞ ଅଟନ୍ତି । ଏମାନେ ପୂଜିତ ହେଲେ ପରମ କଲ୍ୟାଣ ବିଧାନ କରନ୍ତି ।

ଅତଏବ ଏମାନଙ୍କୁ ପୂଜା କରିବା ଉଚିତ । ହେ ରାଜନ୍ ! ତୁମ୍ଭେ ନ୍ୟାୟାନୁସାରେ ଯଥା କର୍ମରେ ରାଜ୍ୟ ପରମ ଶ୍ରେୟ, ଯଶ, କୀର୍ତ୍ତି ଓ ବଂଶ ବୃଦ୍ଧିକର ସନ୍ତାନ ଲାଭ କରିବ । ୨୨୦ । ହେ ଭରତ ! ଭକ୍ତ ମାର୍ଜ୍ଜାର ମୂଷିକର ସନ୍ଧି ବିଗ୍ରହ ବିଷୟକ ବୁଦ୍ଧି ବିଶେଷ କାରକ, ସୁନ୍ଦର ବାକ୍ୟକୁ ଯଥାର୍ଥ ରୂପରେ ହୃଦୟଙ୍ଗମ କରି ନୃପତିଙ୍କର ଶତ୍ରୁମଣ୍ଡଳ ମଧ୍ୟରେ ଅବସ୍ଥିତି କରିବା ଉଚିତ । ୨୨୧ ।

## ଅଧ୍ୟାୟ—୧୩୯

ଯୁଧିଷ୍ଠିର କହିଲେ—ହେ ମହାବାହୋ ! ଶତ୍ରୁଗଣଙ୍କ ମଧ୍ୟରେ ବିବାହ କରିବା ବିଧେୟ ନୁହେ । ଆପଣ ଏହି ମନ୍ତ୍ରଣା ପ୍ରଦାନ କଲେ । ଯଦି କାହାକୁ ସୁଦ୍ଧା ବିଶ୍ୱାସ କରିବା ବିହିତ ନୁହେ, ତେବେ ନୃପତି କି ଉପାୟ ଅବଲମ୍ବନ ପୂର୍ବକ ଅବସ୍ଥିତି କରିବେ ? । ୧ ।

ହେ ପିତାମହ ! ବିଶ୍ୱାସବଶତଃ ରାଜାମାନଙ୍କର ଅତିଶୟ ଭୟ ଉତ୍ପନ୍ନ ହୁଏ । ଅତଏବ ରାଜା କୌଣସି ବ୍ୟକ୍ତିକୁ ସୁଦ୍ଧା ବିଶ୍ୱାସ ନ କଲେ କି ପ୍ରକାରେ ଶତ୍ରୁମାନଙ୍କୁ ଜୟ କରିବାକୁ ସମର୍ଥ ହେବେ ? । ୨ । ଏହି ଅବିଶ୍ୱାସ କଥା ଶ୍ରବଣ କରି ଆମ୍ଭର ମନ ଏକାନ୍ତ ମୁଗ୍ଧ ହେଉଅଛି; ଅତଏବ ଆପଣ ଆମ୍ଭର ଏହି ସଂଶୟକୁ ଛେଦନ କରନ୍ତୁ । ୩ । ଭୀଷ୍ମ

କହିଲେ—ହେ ରାଜନ୍ । ବ୍ରହ୍ମଦତ୍ତ ଭୂପତିଙ୍କ ଗୃହରେ ତାହାଙ୍କର ପୂଜଣୀ ଅର୍ଥାତ୍ କଣ୍ଟିକା ସହିତ ଯେଉଁ କଥୋପକଥନ ହୋଇଥିଲା, ସେହି ସମ୍ବାଦକୁ ଶ୍ରବଣ କର । ୪ । କାଂପିଲ୍ୟ ଦେଶରେ ବ୍ରହ୍ମଦତ୍ତ ନୃପତିଙ୍କର ଅନ୍ତଃପୁର ବାସିନୀ ପୂଜଣୀ ନାମରେ ଗୋଟିଏ ପକ୍ଷିଣୀ ଦୀର୍ଘକାଳ ତାହାଙ୍କ ସହିତ ସହବାସ କରୁଥିଲା ଏବଂ ତିର୍ଯ୍ୟକ୍ ଯୋନିରେ ଜନ୍ମଗ୍ରହଣ କରିସୁଦ୍ଧା ସର୍ବଜ୍ଞ ଓ ସମସ୍ତ ତତ୍ତ୍ୱଜ୍ଞ ଥିଲା । ସେ ଜୀବ ଜୀବକ ପକ୍ଷୀ ପ୍ରାୟ ସର୍ବଜୀବଙ୍କର ଧ୍ୱନିକି ବୁଝି ପାରୁଥିଲା । ୬ ।

ପୂଜଣୀ ସେହି ରାଜ ଭବନରେ ଗୋଟିଏ ସୁନ୍ଦର ପୁତ୍ର ପ୍ରସବ କଲା । ସେହି ସମୟରେ ରାଜାଙ୍କର ମହିଷୀ ଗୋଟିଏ ପୁତ୍ର ପ୍ରସବ କଲେ । ୭ । କୃତଜ୍ଞ ପୂଜଣୀ ପକ୍ଷିଣୀ ସେହି ଦୁହିଁଙ୍କ ନିମିତ୍ତ କୌଣସି ସମୟରେ ସାଗର ତୀରକୁ ଗମନ କରି ଦୁଇଗୋଟି ଫଳ ଆହାର ପୂର୍ବକ ନିଜପୁତ୍ର ଓ ରାଜପୁତ୍ରର ପୁଷ୍ଟି ସକାଶେ ଦୁଇଜଣଙ୍କୁ ଦୁଇଗୋଟି ଫଳ ପ୍ରଦାନ କରିଥିଲା । ୯ । ଏହି ପ୍ରକାରରେ ସେ ତାଦୃଶ ଅମୃତ ସ୍ୱାଦୁ, ବଳ ଓ ତେଜୋବୃଦ୍ଧିକର ଦୁଇଗୋଟି ଫଳ ଆହରଣ କରି ପୁନଃ ପୁନଃ ସେହି ବାଳକ ଦୁହିଁଙ୍କୁ ଦେଇଥିବାରୁ ରାଜପୁତ୍ର ସେହି ଫଳ ଭକ୍ଷଣ ଦ୍ୱାରା ହୃଷ୍ଟ ପୁଷ୍ଟ ହେଲା । ତଦନନ୍ତର ଏକଦା ନୃପାତ୍ମଜ ଧାତ୍ରୀ କୋଡ଼ରେ ଆରୋହଣ ପୂର୍ବକ ପକ୍ଷି-ଶାବକ ନିକଟକୁ ଆସି ତାହାକୁ ଦେଖିଲା । ତତ୍ପରେ ସେହି ରାଜକୁମାର ବାଲ୍ୟ ହେତୁରୁ ସେହି ପକ୍ଷିଶାବକ ସହିତ ଯତ୍ନ ସହକାରେ କ୍ରୀଡ଼ା କରିବାକୁ ଆରମ୍ଭ ହେଲା । ୧୨ ।

ହେ ରାଜେନ୍ଦ୍ର । ପରିଶେଷରେ ରାଜତନୟ ସେହି ସମଜାତ ଶାବକକୁ ଶୂନ୍ୟକୁ ଉତ୍ତୋଳନ ପୂର୍ବକ ନିହତ କରି ଧାତ୍ରୀ ନିକଟକୁ ଗମନ କଲା । ୧୩ । ଅନନ୍ତର ସେହି ପୂଜଣୀ ଫଳାହରଣ ପୂର୍ବକ ଆଗମନ କରି ନିଜ ଶାବକକୁ ରାଜପୁତ୍ର କର୍ତ୍ତୃକ ନିହତ ଓ ପତିତ ହୋଇଥିବାର ଅବଲୋକନ କଲା । ୧୪ । ପୁତ୍ରକୁ ନିହତ ହୋଇଥିବାର ଦେଖି ପୂଜଣୀ ବାଷ୍ପପୂର୍ଣ୍ଣ ବଦନା ଓ ଦୁଃଖ ସନ୍ତପ୍ତା ହୋଇ ରୋଦନ କରି କହିଲା— କ୍ଷତ୍ରିୟ ସହିତ ସହବାସ, ପ୍ରୀତି କିମ୍ବା ସୌହାର୍ଦ୍ଦ କରିବା ଉଚିତ ନୁହେ । ଏମାନେ ପ୍ରୟୋଜନ ବଶତଃ ପୁରୁଷଙ୍କୁ ସାନ୍ତ୍ୱନା କରନ୍ତି ଏବଂ କୃତକାର୍ଯ୍ୟ ହେଲେ ସେମାନଙ୍କୁ ପରିତ୍ୟାଗ କରନ୍ତି । ୧୬ । ସମସ୍ତଙ୍କର ଅପକାରକାରୀ କ୍ଷତ୍ରିୟମାନଙ୍କଠାରେ ବିଶ୍ୱାସ କରିବା ଉଚିତ ନୁହେ । ଏମାନେ ସତତ

ଅପକାର କର ମୁଖା ନିରର୍ଥକ ସାନ୍ତ୍ୱନା କରନ୍ତି । ୧୭ । ଅତଏବ ଅଦ୍ୟ ଅମ୍ଭେ ଏହି ବିଶ୍ୱାସଘାତୀ ନୃଶଂସ ଓ କୃତଘ୍ନ କ୍ଷତ୍ରିୟ ବାଳକର ସମୁଚିତ ବୈର ନିର୍ଯାତନ କରିବୁଁ । ୧୮ । ସହସଞ୍ଜାତ ବର୍ଦ୍ଧିତ ସହଭୋଜୀ ଓ ଶରଣାଗତ ବ୍ୟକ୍ତିର ବଧ ସାଧନ କରିବାରୁ ଏହାର ତ୍ରିବିଧ ପାତକ ହୋଇଅଛି । ୧୯ ।

ପୂଜନୀ ଏହିକଥା କହି ଚରଣ ଦ୍ୱୟ ଦ୍ୱାରା ରାଜ ପୁତ୍ରର ନୟନଯୁଗଳକୁ ଉତ୍ପାଟନ ପୂର୍ବକ ଆକାଶସ୍ଥ ହୋଇ କହିଲା । ୨୦ । ଏହି ସଂସାରରେ ଯେଉଁ ବ୍ୟକ୍ତି ଇଚ୍ଛାପୂର୍ବକ ପାପାଚରଣ କରେ, ସେହି ପାପ ତତ୍କ୍ଷଣାତ୍ ପାପକାରୀକୁ ସ୍ପର୍ଶକରେ । ଯେଉଁମାନଙ୍କର ପ୍ରତିକାର କରାଯାଏ ସେମାନଙ୍କର ଶୁଭାଶୁଭ ଫଳ ନଷ୍ଟ ହୁଏ ନାହିଁ । ୨୧ । ହେ ମହାରାଜ ! ଯଦିଚ ଗୃହସ୍ୱାମୀକୃତ କଣ୍ଟନୀୟ ପାପକର୍ମ ଦୃଷ୍ଟ ନ ହୁଏ, ତଥାପି ତାହାଙ୍କର ପୁତ୍ର ପୌତ୍ର ପ୍ରଭୃତିଙ୍କଠାରେ ତାଦୃଶ କର୍ମ ଦୃଷ୍ଟ ହୋଇଥାଏ ।୨୨। ବ୍ରହ୍ମଦତ୍ତ ନିଜ ପୁତ୍ରକୁ ପୂଜନୀ କର୍ତ୍ତୃକ ହୃତଲୋଚନ ହୋଇଥିବାର ଦେଖି ନିଜ ବାଳକର କୃତକର୍ମର ପ୍ରତିକାର ହୋଇଅଛି ବୋଲି ଜାଣିଲେ ଓ ପୂଜନୀକୁ କହିଲେ । ୨୩ ।

ବ୍ରହ୍ମଦତ୍ତ କହିଲେ—ହେ ପୂଜନୀ ! ଆମ୍ଭର ପୁତ୍ର ଯାହା କରିଅଛି, ତୁମ୍ଭେ ତାହାର ପ୍ରତିକାର କରିଅଛ; ଅତଏବ ଉଭୟର କାର୍ଯ୍ୟ ସମାନ ହୋଇଅଛି. ଏବେ ତୁମ୍ଭେ ଅମ୍ଭ ଆଳୟରେ ବାସ କର ଏଠାରୁ ଯାଅ-ନାହିଁ । ୨୪ । ପୂଜନୀ କହିଲା—ଯେଉଁ ବ୍ୟକ୍ତି ଯେଉଁ ସ୍ଥାନରେ ଥରେ ଅପରାଧ କରିଅଛି, ସେହି ବ୍ୟକ୍ତିର ସେହି ସ୍ଥାନରେ ଅବସ୍ଥାନ କରିବାକୁ ପଣ୍ଡିତମାନେ ପ୍ରଶଂସା କରନ୍ତି ନାହିଁ । ସେହି ସ୍ଥାନରୁ ପଳାୟନ କରିବା ତାହା ପକ୍ଷରେ ଶ୍ରେୟସ୍କର । ୨୫ । କୃତବୈର ବ୍ୟକ୍ତି ସତତ ସାନ୍ତ୍ୱବାକ୍ୟ ପ୍ରୟୋଗ କଲେ ହେଁ ତାହାକୁ ବିଶ୍ୱାସ କରିବା ଉଚିତ ନୁହେ । ଯେଉଁ ବ୍ୟକ୍ତି ତାହାଠାରେ ବିଶ୍ୱାସ କରେ, ସେ ଶୀଘ୍ର ବଧ ହୁଏ ଏବଂ ବୈରଭାବର ମଧ୍ୟ ଶାନ୍ତି ହୁଏ ନାହିଁ । ୨୬ । ଯେଉଁମାନଙ୍କର ପରସ୍ପର ଶତ୍ରୁତା ଅଛି, ସେମାନଙ୍କର ପୁତ୍ର, ପୌତ୍ର ପ୍ରଭୃତି ଯୁଦ୍ଧ ବିଗ୍ରହାଦିଦ୍ୱାରା ବିନଷ୍ଟ ହୁଅନ୍ତି । ପୁତ୍ର ପୌତ୍ରମାନଙ୍କର ବିନାଶରୁ ପରଲୋକମଧ୍ୟ ବିନଷ୍ଟ ହୋଇଯାଏ । ୨୭ । କୃତବୈର ବ୍ୟକ୍ତିମାନଙ୍କ ପ୍ରତି ଅବିଶ୍ୱାସ କରିବା ସୁଖୋଦୟର କାରଣ ଅଟେ । ବିଶ୍ୱାସଘାତକ ବ୍ୟକ୍ତିମାନଙ୍କ ସହିତ

ଏକାନ୍ତ ବିଶ୍ୱାସ କରିବା ଉଚିତ ନୁହେ । ୨୮ । ଅବିଶ୍ୱସ୍ତ ବ୍ୟକ୍ତିଠାରେ ବିଶ୍ୱାସ କରିବ ନାହିଁ ଏବଂ ବିଶ୍ୱସ୍ତ ବ୍ୟକ୍ତିଠାରେ ଅତି ବିଶ୍ୱାସ କରିବା ଉଚିତ ନୁହେ । କାରଣ ବିଶ୍ୱାସରୁ ଉତ୍ପନ୍ନ ଭୟ ବିଶ୍ୱାସର ମୂଳ ଛେଦନ କରେ । ସ୍ୱୟଂ ଅନ୍ୟର ବିଶ୍ୱାସ ଭାଜନ ହେବ, କିନ୍ତୁ ଅପରକୁ ବିଶ୍ୱାସ କରିବ ନାହିଁ । ୨୯ ।

ଏହି ଜଗତରେ ପିତାମାତା ସମସ୍ତ ବାନ୍ଧବ ବର୍ଗଙ୍କ ମଧ୍ୟରେ ବରିଷ୍ଠ ଅଟନ୍ତି । ଭାର୍ଯ୍ୟା ବୀର୍ଯ୍ୟହରଣ କରିବାରୁ ପୁତ୍ର ପ୍ରସବ ରୂପ ହେତୁରୁ ଏବଂ ଭ୍ରାତା ଓ ବୟସ୍ୟ ଦ୍ରବ୍ୟ ଧନ ହରଣ କରିବା ହେତୁରୁ ଶତ୍ରୁ ପଦବାଚ୍ୟ ହୋଇଥାନ୍ତି ଅତଏବ ଏକମାତ୍ର ଆତ୍ମା କେବଳ ସୁଖ ଦୁଃଖର ଭୋକ୍ତା ଅଟେ । ୩୦ । ଯେଉଁମାନଙ୍କର ଥରେ ପରସ୍ପର ବୈରଭାବ ହୋଇଅଛି, ପୁନର୍ବାର ସେମାନଙ୍କର ସନ୍ଧି ଘଟିତ ହୁଏ ନାହିଁ । ଅମ୍ଭେ ଯେ ହେତୁରୁ ତୁମ୍ଭର ଆବାସରେ ବାସ କରିଥିଲୁ, ସେ କାରଣ ଅତୀତ ହୋଇଅଛି । ପ୍ରଥମତଃ କୌଣସି ବ୍ୟକ୍ତିର ଅପକାର କଲାପରେ ଅର୍ଥ ଦାନ ଓ ସମ୍ମାନ ଦ୍ୱାରା ତାହାକୁ ସମ୍ମାନିତ କଲେ ସୁଦ୍ଧା ତାହାଙ୍କର ମନ କଦାପି ବିଶ୍ୱସ୍ତ ହୁଏ ନାହିଁ । ବଳବାନ୍ ବ୍ୟକ୍ତିମାନଙ୍କର ଈଦୃଶ ବ୍ୟବହାର ଦୁର୍ବଳ ଲୋକମାନଙ୍କୁ ତ୍ରାସିତ କରେ । ୩୨ । ଯେଉଁ ସ୍ଥାନରେ ପ୍ରଥମେ ସମ୍ମାନନା ହୁଏ ଏବଂ ପରିଶେଷରେ ଅବମାନନା ହୁଏ, ବୁଦ୍ଧିମାନ ବ୍ୟକ୍ତି ବୈରୀ କର୍ତ୍ତୃକ ସମ୍ମାନିତ ହେଲେ ସୁଦ୍ଧା ତାଦୃଶ ସ୍ଥାନକୁ ପରିତ୍ୟାଗ କରିବେ । ୩୩ । ଆମ୍ଭେ ବହୁକାଳରୁ ଆପଣଙ୍କ ଗୃହରେ ସମ୍ମାନିତ ହୋଇ ବାସ କରିଅଛୁଁ । କିନ୍ତୁ ବର୍ତ୍ତମାନ ବୈରଭାବ ଉତ୍ପନ୍ନ ହୋଇଅଛି, ଅତଏବ ଅମ୍ଭେ ଅନାୟାସରେ ଅବିଳମ୍ବରେ ଏହିସ୍ଥାନରୁ ଗମନ କରିବୁଁ । ୩୪ ।

ବ୍ରହ୍ମଦତ୍ତ କହିଲେ—ହେ ପୂଜନି ! ଯେଉଁ ବ୍ୟକ୍ତି ଅପକାରର ପ୍ରତ୍ୟପକାର କରେ, ସେ କେବେହେଁ ଅପରାଧୀ ହୁଏ ନାହିଁ, ତଦ୍ୱାରା ସେ ଅନୃଣୀ ହୁଏ, ଅତଏବ ତୁମ୍ଭେ ଏହିସ୍ଥାନରେ ବାସ କର, ଅନ୍ୟତ୍ର ଗମନ କର ନାହିଁ । ୩୫ । ପୂଜନୀ କହିଲା—ଅପକାରକ ଓ ପ୍ରତ୍ୟପକାରୀର ପୁନର୍ବାର ସଖ୍ୟ କିମ୍ବା ସନ୍ଧି ହୁଏ ନାହିଁ । ଏହା ସେ ଦୁହିଁଙ୍କର ଅନ୍ତଃକରଣ ବିଶେଷ ଭାବରେ ଜାଣିପାରେ । ୩୬ । ବ୍ରହ୍ମଦତ୍ତ କହିଲେ—ଅନେକ ସ୍ଥଳରେ ଅପକାରୀ ଓ ପ୍ରତ୍ୟପକାରୀର ପୁନର୍ବାର ମିଳନ ହୋଇଥାଏ ଏବଂ ସେମାନଙ୍କର ଶତ୍ରୁତା ଶାନ୍ତି ହେବାର ମଧ୍ୟ ଦେଖାଯାଇଅଛି । ଆଉ ଅନିଷ୍ଟ ସଂଘଟନା ମଧ୍ୟ ହୁଏ ନାହିଁ । ୩୭ ।

ପୂଜନୀ କହିଲା—ବୈରର କଦାପି ଅବସାନ ହୁଏ ନାହିଁ, ଶତ୍ରୁ ଆମ୍ଭଙ୍କୁ ସାନ୍ତ୍ୱନା କରୁଅଛି, ଏହା ବିବେଚନା କରି, ତାହାଠାରେ ବିଶ୍ୱାସ କରିବ ନାହିଁ । ସଂସାରରେ ବିଶ୍ୱାସ ହେତୁରୁ ଲୋକେ ବଧ ହୁଅନ୍ତି । ଅତଏବ ଶତ୍ରୁ ସହିତ ସଙ୍ଗତ ନ ହେବା ଶ୍ରେୟସ୍କର । ୩୮ । ସୁଶାଣିତ ଶସ୍ତ୍ର ସମୂହ ଦ୍ୱାରା ବଳପୂର୍ବକ ଯେଉଁମାନଙ୍କୁ ଜୟ କରିହୁଏ ନାହିଁ, କରେଣୁମାନେ ଯେପରି ମାତଙ୍ଗ ମାନଙ୍କୁ ବଶୀଭୂତ କରନ୍ତି, ସେହିପରି ସାନ୍ତ୍ୱନା ବାକ୍ୟ ଦ୍ୱାରା ସେମାନଙ୍କୁ ବଶୀଭୂତ କରାଯାଏ ।୩୯।

ବ୍ରହ୍ମଦତ୍ତ କହିଲେ—ଚଣ୍ଡାଳ ସହିତ କୁକ୍କୁରର ଯେପରି ସ୍ନେହ ଜନ୍ମେ, ସେହିପରି ପ୍ରାଣାନ୍ତକର ଲୋକମାନଙ୍କ ସନ୍ନିଧାନରେ ପରସ୍ପର ସହବାସ ଜନିତ ସ୍ନେହ ଜନ୍ମେ ଏବଂ ତଦ୍ୱାରା ପରସ୍ପରର ବିଶ୍ୱାସ ମଧ ଉତ୍ପନ୍ନ ହୁଏ । ୪୦ । ବୈରକୃତ ବ୍ୟକ୍ତିମାନଙ୍କର ବୈରଭାବ ପରସ୍ପର ସହବାସ ହେତୁରୁ ମୃଦୃତ୍ୱ ପ୍ରାପ୍ତ ହୋଇ ପଦ୍ମପତ୍ରସ୍ଥିତ ସଲିଳ ପ୍ରାୟ ଅବସ୍ଥାନ କରେ ନାହିଁ । ୪୧ । ପୂଜନୀ କହିଲା—ବୈର ପଞ୍ଚପ୍ରକାରରେ ଉତ୍ପନ୍ନ ହୁଏ, ଏହା ପଣ୍ଡିତମାନେ ଅବଗତ ଅଛନ୍ତି । ପ୍ରଥମ ସ୍ତ୍ରୀ ନିମିତ୍ତ ଯଥା କୃଷ୍ଣ ଓ ଶିଶୁପାଳଙ୍କ ବିବାଦ, ଦ୍ୱିତୀୟ ବସ୍ତୁ ନିମିତ୍ତ ଯଥା କୌରବ ପାଣ୍ଡବବର୍ଗଙ୍କର ଯୁଦ୍ଧ, ତୃତୀୟ ଦ୍ରୁପଦ ଓ ଦ୍ରୋଣଙ୍କ ପ୍ରାୟ ବାକ୍ୟ ନିମିତ୍ତ, ଚତୁର୍ଥ ମାର୍ଜ୍ଜାର ଓ ମୂଷିକ ପ୍ରାୟ ସ୍ୱଭାବ ସିଦ୍ଧ ଜାତବୈର, ପଞ୍ଚମ ଆମ୍ଭର ଓ ଆପଣଙ୍କର ଅପରାଧ ନିମିତ୍ତ ଯାହା ଘଟିଅଛି, ତାହା ଅପରାଧଜ । ୪୨ । ତନ୍ମଧ୍ୟରେ ପ୍ରକାଶ୍ୟ କିମ୍ବା ଅପ୍ରକାଶ୍ୟ ଭାବରେ ଦୋଷର ବଳାବଳ ବିବେଚନା କରି ଦାତାବ୍ୟକ୍ତିକୁ କୌଣସି ବ୍ୟକ୍ତିର ସୁଦ୍ଧା ବିଶେଷତଃ କ୍ଷତ୍ରିୟର ବଧ କରିବା ଉଚିତ ନୁହେ । ୪୩ । ସୁହୃଦ୍ ସହିତ ଶତ୍ରୁତା ହେଲେ ପରେ ତାହାକୁ ବିଶ୍ୱାସ କରିବ ନାହିଁ । କାଷ୍ଠ ମଧ୍ୟରେ ଗୂଢ଼ ଅଗ୍ନି ପ୍ରାୟ ବୈରଭାବ ପ୍ରଚ୍ଛନ୍ନଭାବରେ ଅବସ୍ଥିତ କରିଥାଏ । ହେ ରାଜନ୍ । ସାଗର ଗର୍ଭସ୍ଥ ବାଡ଼ବାନଳ ପ୍ରାୟ ବୈରାଗୀ, ବିତ୍ତ କିମ୍ବା ପରୁଷତା କିମ୍ବା ସାନ୍ତ୍ୱନା ବାକ୍ୟ ବା ଶାସ୍ତ୍ର ଦ୍ୱାରା ଶାନ୍ତ ହୁଏନାହିଁ । ୪୫ । ହେ ମହାରାଜ । ସମୁଦ୍ଭୂତ ବୈରାନଳ ସହନ ନକରି ଏବଂ ଅପରାଧ ଜନିତ କର୍ମ୍ମ ଏକତରର ପକ୍ଷକୁ କ୍ଷୟ ନ କରି ଶାନ୍ତ ହୁଏ ନାହିଁ । ୪୬ । ପ୍ରଥମାପକାରୀ ବ୍ୟକ୍ତିକୁ ଅର୍ଥ ଓ ସମ୍ମାନ ଦ୍ୱାରା ସନ୍ତୁଷ୍ଟ କରି ତାହାଠାରେ ମିତ୍ରପ୍ରାୟ ବିଶ୍ୱାସ ସ୍ଥାପନ କରିବା ଉଚିତ ନୁହେ ।

କାରଣ ତଉତ୍କୃତ କର୍ମ୍ମ ଅବଲକୁ ନାଶିତ କରେ । ୪୭ । ଅମ୍ଭେ ପୂର୍ବେ କଦାପି ଆପଣଙ୍କର ଅପକାର କରିନାହୁଁ, ଆପଣ ମଧ୍ୟ ପୂର୍ବେ କେବେହେଁ ଆମ୍ଭର ଅପକାର କରି ନାହାନ୍ତି । ଏହି ହେତୁରୁ ଅମ୍ଭେ ଆପଣଙ୍କ ଗୃହରେ ବାସ କରିଥିଲୁଁ । କିନ୍ତୁ ବର୍ତ୍ତିମାନ ଆଉ ଅମ୍ଭେ ଆପଣଙ୍କୁ ବିଶ୍ୱାସ କରିପାରୁ ନାହୁଁ । ୪୮ ।

ବ୍ରହ୍ମଦତ୍ତ କହିଲେ—କାଳ ବଶତଃ କାର୍ଯ୍ୟ ସଂଘଟିତ ହୁଏ ଏବଂ କାଳ ସହକାରେ ବିବଧ କିମ୍ବା ଅବିବଧ ହୁଏ । ଅତଏବ କେଉଁ ବ୍ୟକ୍ତି କାହାଠାରେ ଅପରାଧୀ ହେବ ? କାଳର ଅଧୀନ ସଂସାରରେ ଆମ୍ଭ ଦୁହିଁଙ୍କର କୌଣସି ଦୋଷ ନାହିଁ । ଜନ୍ମ, ମରଣ ଉଭୟ ତୁଲ୍ୟରୁ ପରେ ହୋଇଥାଏ । ଜୀବ କାଳ ସହକାରେ ଜନ୍ମଗ୍ରହଣ କରେ ଏବଂ କାଳ-ବଶତଃ ମୃତ ହୋଇଥାଏ । ପ୍ରତ୍ୟେକ ବ୍ୟକ୍ତି ମଧ୍ୟରେ କତିପୟ ଲୋକ ଏକକାଳରେ ବିଧାର୍ହ ହୁଅନ୍ତି, ଅପରେ ହୁଅନ୍ତି ନାହିଁ । ଅଗ୍ନି ଯେପରି ଇନ୍ଧନ ପ୍ରାପ୍ତ ହେଲେ ଦଗ୍ଧ କରେ, ସେହିପରି କାଳ ଜୀବ ସମୁଦାୟକୁ ଦଗ୍ଧ କରୁଅଛି । ୫୧ ।

ହେ କଲ୍ୟାଣି ! ତୁମ୍ଭେ କିମ୍ବା ଅମ୍ଭେ ଦୁହେଁ ପରସ୍ପରର ଦୁଃଖର କାରଣ ନୋହୁ । କାରଣ କାଳ ନିୟତ ଦେହୀମାନଙ୍କର ସୁଖ ଦୁଃଖକୁ ହରଣ କରେ । ଅତଏବ ହେ ପୂଜନି ! ତୁମ୍ଭେ ଯେପରି ଆମ୍ଭ ଆଳୟରେ ବାସ କରୁଥିଲ, ସେହିପରି ସ୍ନେହ ସହିତ ଇଚ୍ଛାନୁସାରେ ନିଃଶଙ୍କ ଚିତ୍ତରେ ବାସ କର । ତୁମ୍ଭେ ଅମ୍ଭର ଯେଉଁ ଅପକାର କରିଅଛ ତାହା ଅମ୍ଭେ କ୍ଷମା କଲୁଁ, ତୁମ୍ଭେ ମଧ୍ୟ ତାହା କ୍ଷମା କର । ୫୩ । ପୂଜନୀ, କହିଲା—ହେ ରାଜନ୍ ! ଯଦି ଆପଣଙ୍କ ଅଭିପ୍ରାୟ ଅନୁସାରେ କାଳ ସମସ୍ତଙ୍କର କାରଣ ହୁଏ, ଯେବେ କାହାର ସହିତ କୌଣସି ବ୍ୟକ୍ତିର ଶତ୍ରୁତା ହୁଏ ନାହିଁ, ବାନ୍ଧବଗଣ ନିହତ ହେଲେ ବନ୍ଧୁମାନେ କି ନିମିତ୍ତ ଦୁଃଖ ପ୍ରାପ୍ତ ହୁଅନ୍ତି ? ଦେବତା ଓ ଦାନବଗଣ ଅବା କି ନିମିତ୍ତ ପୂର୍ବେ ପରସ୍ପର ସଂପ୍ରହାର କରିଥିଲେ ? ଯଦି କାଳାଧୀନ ହୋଇ ଜନ୍ମ, ମୃତ୍ୟୁ, ସୁଖ, ଦୁଃଖ ପ୍ରଭୃତି ସମସ୍ତ ହୋଇଥାଏ, ତେବେ ଚିକିତ୍ସକମାନେ କି ନିମିତ୍ତ ରୋଗିମାନଙ୍କ ସକାଶେ ଔଷଧ ପ୍ରସ୍ତୁତ କରନ୍ତି ? ଯଦି କାଳବଶତଃ ଜୀବନର ମୃତ୍ୟୁ ହୁଏ, ତେବେ ଔଷଧ ପ୍ରୟୋଗର ପ୍ରୟୋଜନ କଣ ? ୫୬। ଶୋକମୂର୍ଚ୍ଛିତ ବ୍ୟକ୍ତିମାନେ ବା କି ନିମିତ୍ତ ଅତିଶୟ ପ୍ରଳାପବାକ୍ୟ

ଉଚ୍ଚାରଣ କରନ୍ତି ? ଯଦି କାଳ ଆପଣଙ୍କର ପ୍ରମାଣ ହେଲା, ତେବେ କର୍ତ୍ତୃଗଣଙ୍କ ପ୍ରତି ଧର୍ମ୍ମ ବିଷୟକ ବିଧି ନିଷେଧ ପ୍ରଭୃତି ବୃଥା ହେବ ।୫୭।

ହେ ନରାଧିପ । ଆପଣଙ୍କର ପୁତ୍ର ଆମ୍ଭର ସନ୍ତାନକୁ ନଷ୍ଟ କରିଅଛି । ଏଥିନିମିତ୍ତ ଆମ୍ଭେ ତାହାକୁ ଅହିତ କରିଅଛୁଁ । ବର୍ତ୍ତମାନ ଆପଣ ଆମ୍ଭଙ୍କୁ ନିହତ କରିବେ । ଆମ୍ଭେ ପୁତ୍ରଶୋକ ବଶତଃ ଆପଣଙ୍କର ଆତ୍ମଜ ପ୍ରତି ଅନିଷ୍ଟାଚରଣ କରିଅଛୁଁ । ଆପଣ ମଧ୍ୟ ଆମ୍ଭଙ୍କୁ ଯେଉଁ ପ୍ରକାରେ ପ୍ରହାର କରିବେ, ତଦ୍‌ବିଷୟର ତତ୍ତ୍ୱ କଥା କହୁଅଛୁଁ, ଶ୍ରବଣ କରନ୍ତୁ । ୫୯ । ମାନବମାନେ କ୍ରୀଡ଼ା ଓ ଭୋଜନ ନିମିତ୍ତ ପକ୍ଷି ମାନଙ୍କୁ ବାଞ୍ଛା କରନ୍ତି, ସେମାନଙ୍କର ବଧ ଓ ବନ୍ଧନ ବ୍ୟତୀତ ଆଉ କିଛି ତୃତୀୟ କାରଣ ନାହିଁ । ୬୦ । ପକ୍ଷିମାନେ ମଧ୍ୟ ବଧ ଓ ବନ୍ଧନ ଭୟ ହେତୁରୁ ମୁକ୍ତି ପଥକୁ ଆଶ୍ରୟ କରିଥାନ୍ତି । ବେଦ୍‌ବିତ୍ ବ୍ୟକ୍ତିମାନେ ମରଣୋପ୍ରାପ୍ତ ଜନିତ କ୍ଳେଶକୁ ଦୁଃଖ ବୋଲି କହନ୍ତି । ପ୍ରାଣ ଓ ପୁତ୍ରମାନେ ସମସ୍ତଙ୍କର ପ୍ରିୟ ପଦାର୍ଥ ଏବଂ ସମସ୍ତ ଲୋକେ ଦୁଃଖରୁ ଉଦ୍‌ବିଗ୍ନ ହୁଅନ୍ତି । ସୁଖ ସମସ୍ତଙ୍କର ଅଭିପ୍ସିତ । ୬୨ ।

ହେ ବ୍ରହ୍ମଦତ୍ତ । ଦୁଃଖ ନାନା ପ୍ରକାରରେ ଉତ୍ପନ୍ନ ହୋଇଥାଏ । ଜରା, ଅର୍ଥ, ବିପର୍ଯ୍ୟୟ ଅନିଷ୍ଟ ସହବାସ, ଇଷ୍ଟ ବିୟୋଗ ବଧ, ବନ୍ଧନ ଏମାନଙ୍କରୁ ଦୁଃଖ ଉତ୍ପନ୍ନ ହୁଏ । ସ୍ତ୍ରୀକୃତ୍ ସହଜ ଓ ପୁତ୍ର ବିୟୋଗଜ ଏବଂ ତଦାୟ ଦୁଷ୍ଟ ପ୍ରଯୁକ୍ତ ଏହି ଦୁଃଖମାନଙ୍କରେ ଲୋକେ ଅଭିଭୂତ ହୁଅନ୍ତି । ତନ୍ମଧ୍ୟରେ ପୁତ୍ର ବିୟୋଗ ଜନିତ ଦୁଃଖ ଲୋକମାନଙ୍କୁ ବିଶେଷ ରୂପରେ ପରିବର୍ତ୍ତିତ କରେ । ୬୪ । କୌଣସି କୌଣସି ନିର୍ବୁଦ୍ଧି ଲୋକମାନେ ପରଦୁଃଖରେ ଦୁଃଖ ନାହିଁ ଏହା କହନ୍ତି । ଯେଉଁ ବ୍ୟକ୍ତି କଦାପି ଦୁଃଖ ଅନୁଭବ କରିନାହିଁ, ସେ ଭଦ୍ରଲୋକଙ୍କ ନିକଟରେ ଏହିପରି ବାକ୍ୟ କହେ, ଆଉ ଯେଉଁ ବ୍ୟକ୍ତି ଦୁଃଖାର୍ତ୍ତି ହୋଇ ଶୋକ କରୁଅଛି, ସେ କି ପ୍ରକାରେ ଏପରି ବାକ୍ୟ କହିବାକୁ ଉତ୍ସାହବାନ୍ ହେବ ? ଯେଉଁ ବ୍ୟକ୍ତି ସମସ୍ତ ଦୁଃଖର ଆସ୍ୱାଦ ଗ୍ରହଣ କରୁଅଛି, ସେ ନିଜଠାରେ ଯେପରି ଦୁଃଖ ଦେଖେ, ଅନ୍ୟଠାରେ ମଧ୍ୟ ସେହିପରି ଦୁଃଖ ଦେଖେ । ୬୨ ।

ହେ ଅରିନ୍ଦମ ରାଜନ୍ । ଆମ୍ଭେ ଆପଣଙ୍କର ଯେଉଁ ଅନିଷ୍ଟ କରିଅଛୁଁ ଏବଂ ଆପଣ ମଧ୍ୟ ଯେଉଁ ଅହିତାଚରଣ କରିଅଛନ୍ତି, ତାହା

ଶତବର୍ଷରେ ସୁଦ୍ଧା ବିଲୁପ୍ତ ହୋଇ ପାରିବ ନାହିଁ । ୬୭ । ଆମ୍ଭେ ଦୁହେଁ ପରସ୍ପରରେ ଯେଉଁ କାର୍ଯ୍ୟ କରିଅଛୁ, ତଜ୍ଜନିତ ବନ୍ଧନ ପୁନର୍ବାର ଆଉ ପରସ୍ପରର ମିଳନ ହୋଇ ନ ପାରେ, ଆପଣ ପୁତ୍ରକୁ ଯେତେବେଳେ ସ୍ମରଣ କରିବେ, ତେତେବେଳେ ବୈରଭାବ ନୂତନ ହୋଇ ଉତ୍‌ଥିତ ହେବ । ୬୮ । ଅର୍ଥଶାସ୍ତ୍ରଜ୍ଞ ପଣ୍ଡିତମାନେ ନିଷ୍ଚୟ କରିଅଛନ୍ତି ଯେ, ମୃଣ୍ମୟ ପାତ୍ର ଭଗ୍ନ ହେଲେ, ତାହାର ଯେପରି ପୁନର୍ବାର ମିଳନ ହୁଏ ନାହିଁ, ସେହିପରି ଯେଉଁମାନେ ଅବିଳମ୍ବରେ ବୈର କରି ପ୍ରୀତି କରାଇବାକୁ ଇଚ୍ଛା କରନ୍ତି, ସେମାନଙ୍କର ମଧ୍ୟ ସନ୍ଧି କଦାପି ସୁଖକର ହୋଇପାରେ ନାହିଁ । ପୂର୍ବେ ଶୁକ୍ରାଚାର୍ଯ୍ୟ ପ୍ରହ୍ଲାଦକୁ ଏହି ବିଷୟରେ ଦୁଇଗୋଟି ଗାଥା କହିଥିଲେ ଯେ ଯେଉଁମାନେ ଶତ୍ରୁର ସତ୍ୟ କିମ୍ବା ମିଥ୍ୟା ବାକ୍ୟକୁ ବିଶ୍ୱାସ କରନ୍ତି, ଶତ୍ରୁପ୍ରଦର୍ଶିତ ପୁରଃସ୍ଥିତ ମଧୁଲେଭାର୍ଥୀ ପୁରୁଷମାନେ ଶୁଷ୍କତୃଣ ସମାଚ୍ଛନ୍ନ ପ୍ରପାତମଧ୍ୟରେ ପତିତ ହେଲା ପ୍ରାୟ, ଅବିଳମ୍ବରେ ବିନଷ୍ଟ ହୁଅନ୍ତି । ୭୧ । କୌଣସି ସ୍ଥଳରେ ଶତ୍ରୁତା ବଂଶ ପରମ୍ପରା ପ୍ରଚଳିତ ଥାଏ, ଏହା ଦେଖା ଯାଇଅଛି । ଯେଉଁମାନେ ବୈର କରି ପରଲୋକକୁ ଗମନ କରନ୍ତି, ସେମାନଙ୍କ ବଂଶରେ ଯେଉଁ ପୁରୁଷ ଥାଏ, ଅନ୍ୟାନ୍ୟ ବ୍ୟକ୍ତିମାନେ ତାହାଠାରେ ପୂର୍ବ ବୈର ପ୍ରକାଶ କରନ୍ତି । ହେ ମହାରାଜ ! ଯେଉଁମାନେ ବୈର ଶାନ୍ତି ନିମିତ୍ତ ଶତ୍ରୁ ସହିତ ସନ୍ଧିବନ୍ଧନ କରନ୍ତି, ସେମାନେ ପୁନର୍ବାର ପାଷାଣରେ ପତିତ ପୂର୍ଣ୍ଣଘଟ ପ୍ରାୟ, ତାହାକୁ ଚୂର୍ଣ୍ଣ କରନ୍ତି । ୭୩ । ଏହି ଜଗତରେ ରାଜା କାହାର ଅନିଷ୍ଟାଚରଣ କରି ସତତ ତାହାକୁ ବିଶ୍ୱାସ କରିବେ ନାହିଁ । ଅନ୍ୟର ଅପକାର କରି ତାହାକୁ ବିଶ୍ୱାସ କଲେ ଦୁଃଖ ଭୋଗ କରିବାକୁ ହୁଏ । ୭୪ ।

ବ୍ରହ୍ମଦତ୍ତ କହିଲେ—ଅବିଶ୍ୱାସ କରି କେହି ଅର୍ଥ ସଞ୍ଚୟ କିମ୍ବା ଅନ୍ୟ କୌଣସି ଉପାୟ କରିପାରେ ନାହିଁ । ବରଂ ଏକପକ୍ଷକୁ ନିୟତ ଅବିଶ୍ୱାସ କରି ଭୟବଶତଃ ମୃତକଳ୍ପ ହୋଇଥାଏ । ୭୫ । ପୂଜନୀ କହିଲା—ଏହି ସଂସାରରେ ଯେଉଁ ବ୍ୟକ୍ତି ପରିକ୍ଷତ ପଦଦ୍ୱାରା ସଞ୍ଚରଣ କରେ, ସେ ସାବଧାନରେ ଧାବିତ ହେଲେ ମଧ୍ୟ ତାହାର ପଦ ସ୍ଖଳିତ ହୋଇ ଯାଏ । ୭୬ । ଯେଉଁ ବ୍ୟକ୍ତି ରୁଗ୍‌ଣ ନେତ୍ରଦ୍ୱାରା ବାୟୁର ପ୍ରତିକୂଳ ଦିଗକୁ ନିରୀକ୍ଷଣ କରେ, ବାୟୁ ତାହାର ନେତ୍ରଦ୍ୱୟର ନିଷ୍ଚୟ ପୀଡ଼ାକର ହୁଏ । ୭୭ । ଯେଉଁ ବ୍ୟକ୍ତି ନିଜର ବଳକୁ ନ ଜାଣି ଅଜ୍ଞାନବଶତଃ ଦୁଷ୍ଟପଥ ଅବଲମ୍ବନ ପୂର୍ବକ ତହିଁରେ ଉପସ୍ଥିତ ହୁଏ, ସେହିସ୍ଥାନରେ

ତାହାର ଜୀବନାନ୍ତ ହୁଏ । ୭୮ । ଯେଉଁ ବ୍ୟକ୍ତି ବର୍ଷାକାଳକୁ ଜ୍ଞାତ ନ ହୋଇ କ୍ଷେତ୍ର କର୍ଷଣ କରେ, ସେହି ପୌରୁଷ ହୀନ ପୁରୁଷ ଶସ୍ୟଭୋଗ କରିବାକୁ ସମର୍ଥ ହୁଏ ନାହିଁ । ୭୯ ।

ଯେ ତିକ୍ତ, କଷାୟ, ସ୍ୱାଦୁ କିମ୍ବା ମଧୁର ପଥ୍ୟ ନିତ୍ୟ ଆହାର କରନ୍ତି, ସେ ଅମୃତ ହୁଅନ୍ତି, ଆଉ ଯେଉଁ ବ୍ୟକ୍ତି ପରିଣାମକୁ ବିବେଚନା ନ କରି ମୋହ ବଶତଃ ପଥ୍ୟ ଭୋଜନ ପରିତ୍ୟାଗ ପୂର୍ବକ ଅପଥ୍ୟ ଭୋଜନ କରେ, ତାହାର ଜୀବନ ବିନଷ୍ଟ ହୁଏ । ୮୧ । ଦୈବ ଓ ପୁରୁଷକାର ପରସ୍ପର ଆଶ୍ରୟରେ ଅବସ୍ଥାନ କରନ୍ତି, ଉଦାର ବ୍ୟକ୍ତିମାନେ ସତ୍କର୍ମର ଆଶ୍ରୟ ଗ୍ରହଣ କରନ୍ତି, ଆଉ କାପୁରୁଷମାନେ ଦୈବକୁ ଅବଲମ୍ବନ କରିଥାନ୍ତି । ୮୨ । ଆତ୍ମ ହିତକର କର୍ମ ତୀକ୍ଷ୍ଣ ହେଉ କିମ୍ବା ମୃଦୁ ହେଉ, ତାହା ଅବଶ୍ୟ କର୍ତ୍ତବ୍ୟ । ଅକର୍ମଶୀଳ ଅକିଞ୍ଚନ ବ୍ୟକ୍ତି ସତତ ଅନର୍ଥଗ୍ରସ୍ତ ହୁଅନ୍ତି, ଅତଏବ ସମସ୍ତ ବିଷୟ ପରିତ୍ୟାଗପୂର୍ବକ ପରାକ୍ରମ ପ୍ରକାଶ କରିବା କର୍ତ୍ତବ୍ୟ । ସର୍ବସ୍ୱ ପରିତ୍ୟାଗ କରିସୁଦ୍ଧା ମାନବଗଣଙ୍କର ଆତ୍ମହିତକର କାର୍ଯ୍ୟ କରିବା ଉଚିତ । ୮୪ ।

ଶୂରତା, ଦକ୍ଷତା, ବିଦ୍ୟା, ବୈରାଗ୍ୟ ଓ ଧୈର୍ଯ୍ୟ ଏହି ପାଞ୍ଚୋଟିକୁ ପଣ୍ଡିତମାନେ ସହଜମିତ୍ର ବୋଲି କହନ୍ତି ଏବଂ ସେମାନେ ଏହି ପଞ୍ଚବିଧ ମିତ୍ରକୁ ଅବଲମ୍ବନ କରି ଜୀବନଯାପନ କରନ୍ତି । ୮୫ । ଆଉ ଗୃହ, ତାମ୍ରାଦିପାତ୍ର, କ୍ଷେତ୍ର, ଭାର୍ଯ୍ୟା ଓ ସୁହୃଜ୍ଜନ ଏହି ପାଞ୍ଚୋଟିକୁ ପଣ୍ଡିତମାନେ ଉପମିତ୍ର କହନ୍ତି, ପୁରୁଷ ସର୍ବତ୍ର ଏହି ପାଞ୍ଚୋଟିକୁ ପ୍ରାପ୍ତ ହୁଅନ୍ତି । ୮୬ । ବୁଦ୍ଧିମାନ ବ୍ୟକ୍ତି ସର୍ବତ୍ର ଅନୁରକ୍ତ ହୁଅନ୍ତି ଏବଂ ସର୍ବତ୍ର ବିରାଜମାନ ହୁଅନ୍ତି । କୌଣସି ବ୍ୟକ୍ତି ତାହାଙ୍କୁ ଭୟ ପ୍ରଦର୍ଶନ କରିପାରେ ନାହିଁ । ଭୟ ପ୍ରଦର୍ଶନ କଲେ ମଧ୍ୟ ସେ ଭୀତ ହୁଅନ୍ତି ନାହିଁ । ୮୭ । ବୁଦ୍ଧିମାନ ବ୍ୟକ୍ତିର ଅର୍ଥ ଅଳ୍ପ ହେଲେ ମଧ୍ୟ ତାହା ନିୟତ ବର୍ଦ୍ଧିତ ହୁଏ । ନୈପୁଣ୍ୟ ସହିତ କର୍ମ କରିବାରୁ ତାହାଙ୍କର ପ୍ରତିଷ୍ଠା ଲାଭ ହୋଇଥାଏ । ୮୮ । କର୍କଟୀର ଗର୍ଭ ସମ୍ଭୂତ ସନ୍ତାନମାନେ ଯେପରି ତଦୀୟ ମାଂସକୁ ଭକ୍ଷଣ କରନ୍ତି, ସେହିପରି ଗୃହ ସ୍ନେହରେ ଆବଦ୍ଧ ଅଳ୍ପବୁଦ୍ଧି ମାନବଗଣଙ୍କର କୁପତ୍ନୀମାନେ ବାକ୍ୟ ଯନ୍ତ୍ରଣା ଦ୍ୱାରା ସେମାନଙ୍କର ଶରୀରର ମାଂସ ଓ ଶୋଣିତକୁ ଶୁଷ୍କ କରି ଦିଅନ୍ତି । ୮୯ । କୌଣସି କୌଣସି ବ୍ୟକ୍ତି ନିଜର ବୁଦ୍ଧି ଦୋଷରୁ ବିଦେଶକୁ ଗମନ କରିବାକୁ ହେଲେ ଆମ୍ଭର ଗୃହ,

ଅସ୍ଥିର କ୍ଷେତ୍ର, ଅସ୍ଥିର ମିତ୍ର ଏବଂ ଅସ୍ଥିର ସ୍ୱଦେଶ ଏହାଦ୍ୱାରା ଅବସନ୍ନ ହୁଅନ୍ତି । ୯୦ । ସ୍ୱଦେଶ ବ୍ୟାଧି କିମ୍ବା ଦୁର୍ଭିକ୍ଷ ଦ୍ୱାରା ଉତ୍ପୀଡ଼ିତ ହେଲେ ତାହାକୁ ପରିତ୍ୟାଗ ପୂର୍ବକ ଅନ୍ୟଦେଶରେ ବାସ କରିବାକୁ ଯାଇ ସେଠାରେ ନିତ୍ୟ ସମ୍ମାନିତ ହୋଇ ରହିବା ଉଚିତ । ଅତଏବ ଆମ୍ଭେ ଅନ୍ୟତ୍ର ବାସ କରିବା ନିମିତ୍ତ ଗମନ କରିବୁଁ । ହେ ମହାରାଜ । ଆମ୍ଭେ ଆପଣଙ୍କ ପୁତ୍ର ପ୍ରତି ଅତିଶୟ ଅନ୍ୟାୟ ଆଚରଣ କରିଅଛୁଁ, ଏଥିପାଇଁ ଏଠାରେ ବାସ କରିବାକୁ ଇଚ୍ଛା କରୁ ନାହିଁ । ୯୨ ।

କୁଭାର୍ଯ୍ୟା, କୁପୁତ୍ର, କୁରାଜ୍ୟ, କୁମିତ୍ର, କୁସମ୍ବନ୍ଧ ଓ କୁଦେଶକୁ ଦୂରରୁ ପରିତ୍ୟାଗ କରିବ । ୯୩ । କୁପୁତ୍ରଠାରେ ବିଶ୍ୱାସ ନାହିଁ, କୁଭାର୍ଯ୍ୟାଠାରେ ଅନୁରାଗ ନାହିଁ, କୁରାଜ୍ୟରେ ସୁଖ ନାହିଁ ଓ କୁଦେଶରେ ଜୀବିକା ନିର୍ବାହ ହୁଏ ନାହିଁ । ୯୪ । ନିଯୁତ ଅସ୍ଥିର ସୌହୃଦ କୁମିତ୍ର ସହିତ ସହବାସ ଚିରସ୍ଥାୟୀ ହୁଏ ନାହିଁ । ଏବଂ ପ୍ରୟୋଜନର ବିପର୍ଯ୍ୟୟ ହେଲେ କୁସମ୍ବନ୍ଧ ହେତୁରୁ ଅବମାନ ହୁଏ । ୯୫ । ଯେଉଁ ଭାର୍ଯ୍ୟା ପ୍ରିୟ କଥା କହେ, ସେହି ସେ ଭାର୍ଯ୍ୟା । ଯେଉଁ ପୁତ୍ରଠାରୁ ସୁଖ ଲାଭ ହୁଏ, ସେହି ସେ ପୁତ୍ର । ଯାହାଠାରେ ବିଶ୍ୱାସ କରାଯାଏ, ସେହି ସେ ମିତ୍ର ଏବଂ ଯେଉଁ ଦେଶରେ ଅନାୟାସରେ ଜୀବିକା ନିର୍ବାହ ହୁଏ, ସେହି ସେ ଉତ୍ତମ ଦେଶ । ୯୬ । ଯେଉଁ ଦେଶରେ ବଳତ୍କାର ନାହିଁ, ସେଠାରେ କୌଣସି ଭୟର ସମ୍ଭାବନା ଥାଏ ନାହିଁ । ଯେଉଁ ରାଜା ଦରିଦ୍ରକୁ ପାଳନ କରିବାକୁ ଇଚ୍ଛା କରନ୍ତି, ତାହାଙ୍କ ସହିତ ପ୍ରଜାମାନଙ୍କର ପାଲ୍ୟପାଳକ ସମ୍ବନ୍ଧ ହୁଏ, ଅତଏବ ତାଦୃଶ ରାଜା ଶିଷ୍ଟ ଶାସନକାରୀ ବୋଲି କଥିତ ହୁଅନ୍ତି । ୯୭ । ନୃପତି ଧାର୍ମିକ ଓ ଗୁଣବାନ ହେଲେ, ଦେଶ, ଭାର୍ଯ୍ୟା, ପୁତ୍ର ମିତ୍ର, ସମ୍ବନ୍ଧୀ ଓ ବାନ୍ଧବ ପ୍ରଭୃତି ସମସ୍ତେ ସୁନ୍ଦର ହୁଅନ୍ତି । ୯୮ । ଅଧର୍ମଜ୍ଞ ରାଜାଙ୍କର ନିଗ୍ରହବଳରୁ ପ୍ରଜାମାନେ ବିଲୟ ପ୍ରାପ୍ତ ହୁଅନ୍ତି । ରାଜା, ଧର୍ମ, ଅର୍ଥ, କାମ ଏହି ତ୍ରିବର୍ଗର ମୂଳ ଅଟନ୍ତି । ଅତଏବ ଉତ୍ତମ ରୂପେ ପ୍ରମାଦ ରହିତ ହୋଇ ପ୍ରଜାପାଳନ କରିବା ତାହାଙ୍କର ଅବଶ୍ୟ କର୍ତ୍ତବ୍ୟ । ୯୯ । ରାଜା ପ୍ରଜାବୃନ୍ଦଙ୍କଠାରୁ ଛଅଭାଗ କରଗ୍ରହଣ ପୂର୍ବକ ସେମାନଙ୍କୁ ପାଳନ କରିବେ । ଯେ ପ୍ରଜାମାନଙ୍କୁ ସମ୍ୟକ୍ ପ୍ରକାରେ ପାଳନ ନ କରନ୍ତି, ସେ ଭୂପାଳମାନଙ୍କ ମଧ୍ୟରେ ତସ୍କର ବୋଲି ନିନ୍ଦିତ ହୁଅନ୍ତି । ୧୦୦ ।

ଯେଉଁ ରାଜା ସ୍ୱୟଂ ଅଭୟ ପ୍ରଦାନ କରି ପରେ ଲୋଭବଶତଃ ତହିଁରେ ଅସମ୍ମତ ହୁଅନ୍ତି, ସେହି ଅଧର୍ମ ବୁଦ୍ଧି ନୃପତି ସର୍ବଲୋକଙ୍କଠୁ ପାପଗ୍ରହଣ ପୂର୍ବକ ପରିଶେଷରେ ନରକକୁ ଗମନ କରନ୍ତି । ୧୦୧ । ରାଜା ଯଦି ସ୍ୱୟଂ ଅଭୟ ପ୍ରଦାନ କରି ତାହା ପ୍ରମାଣ କରନ୍ତି ତେବେ ସେ ଧର୍ମାନୁସାରେ ପ୍ରଜାପାଳନ ପୂର୍ବକ ସର୍ବ ସୁଖକର ବୋଲି ବିଖ୍ୟାତ ହୁଅନ୍ତି । ୧୦୨ । ପ୍ରଜାପତି ମନୁ କହି ଅଛନ୍ତି ଯେ ରାଜାଙ୍କଠାରେ ପିତା, ମାତା, ଗୁରୁ, ରକ୍ଷିତା, ବହ୍ନି, କୁବେର ଓ ଯମ ଏହି ସାତଜଣଙ୍କର ଗୁଣ ଥାଏ, କାରଣ ପ୍ରଜାଗଣଙ୍କ ପ୍ରତି ଅନୁକମ୍ପା ପ୍ରକାଶ ପୂର୍ବକ ରାଜ୍ୟର ପିତୃସ୍ୱରୂପ ହୋଇ ଅଛନ୍ତି । ଯେଉଁ ମାନବ ତାହାଙ୍କ ଠାରେ ମିଥ୍ୟା ବିନୟ କରେ, ସେ ତିର୍ଯ୍ୟକ ଯୋନିକି ପ୍ରାପ୍ତ ହୁଏ । ୧୦୪ । ରାଜା ଦରିଦ୍ର ବ୍ୟକ୍ତିକୁ ମଧ୍ୟ ମାତା ସଦୃଶ ପ୍ରତିପାଳନ କରନ୍ତି ବୋଲି ମାତୃ ସ୍ଥାନୀୟ ହୋଇ ଅଛନ୍ତି । ଅନିଷ୍ଟ ଦହନ କରନ୍ତି ବୋଲି ସେ ଅଗ୍ନି ସ୍ୱରୂପ ଅଟନ୍ତି ଏବଂ ଅସତ୍ ସମୂହ ଶାସନ କରନ୍ତି ବୋଲି ଯମ ସ୍ୱରୂପ ହୋଇ ଅଛନ୍ତି । ୧୦୫ । ଇଷ୍ଟ ବ୍ୟକ୍ତିଙ୍କୁ ଅର୍ଥ ବିତରଣ କରିବା ଦ୍ୱାରା କାମପ୍ରଦ କୁବେର ସ୍ୱରୂପ ହୋଇ ଅଛନ୍ତି, ଧର୍ମୋପଦେଶ ଦାନ ହେତୁ ଗୁରୁ ଅଟନ୍ତି ଏବଂ ପାଳନ କରନ୍ତି ବୋଲି ରକ୍ଷକ ସ୍ୱରୂପ ଅଟନ୍ତି । ୧୦୬ ।

ଯେଉଁ ରାଜା ଗୁଣ ସମୂହ ଦ୍ୱାରା ପୁରବାସୀ ଓ ଜନପଦବାସୀ ଲୋକମାନଙ୍କର ମନୋରଞ୍ଜନ କରନ୍ତି ଏବଂ ସ୍ୱୟଂ ଧର୍ମାନୁସାରେ ସେମାନଙ୍କ ପାଳନ କରନ୍ତି, ତାହାଙ୍କର ରାଜ୍ୟ କଦାପି ବିଚ୍ୟୁତ ହୁଏ ନାହିଁ । ୧୦୭ । ଯେଉଁ ରାଜା ସ୍ୱୟଂ ପୁରବାସୀ ଓ ଜନପଦବାସୀ ଲୋକମାନଙ୍କର ସମ୍ମାନକୁ ଅବଗତ ହୁଅନ୍ତି, ସେ ଇହଲୋକ ଓ ପରଲୋକରେ ସୁଖ ଭୋଗ କରନ୍ତି । ୧୦୮ । ଯାହାଙ୍କର ପ୍ରଜାବର୍ଗ କର ଭାରରେ ପ୍ରପୀଡ଼ିତ ହୋଇ ନିୟତ ଓ ଉଦ୍‌ବିଗ୍ନ ଓ ଅନିଷ୍ଟ ଦ୍ୱାରା କଷ୍ଟ ପ୍ରାପ୍ତ ହୁଅନ୍ତି, ସେହି ରାଜା ଶତ୍ରୁଠାରେ ପରାଭୂତ ହୁଅନ୍ତି । ୧୦୯ । ସରୋବରରେ ଶତଦଳ ପ୍ରାୟ ଯାହାଙ୍କର ପ୍ରଜାମାନେ ସତତ ପରିବର୍ଦ୍ଧିତ ହୁଅନ୍ତି, ସେହି ସର୍ବଫଳଭାଗୀ ନୃପତି ସ୍ୱର୍ଗଲୋକରେ ବାସ କରନ୍ତି । ୧୧୦ । ହେ ରାଜନ୍ ! ବଳବାନ୍ ସହିତ ବିଗ୍ରହ କରିବା କଦାଚ ପ୍ରଶଂସିତ ନୁହେଁ । ଯାହାଙ୍କର ବଳବାନ୍ ସହିତ ବିଗ୍ରହ ହୁଏ, ତାହାଙ୍କର ରାଜ୍ୟଲାଭ କିମ୍ବା ସୁଖଭୋଗ ହୁଏ ନାହିଁ । ୧୧୧ ।

ଭୀଷ୍ମ କହିଲେ—ହେ ନରାଧିପ । ପ୍ରଜାମୀ ରାଜା ବ୍ରହ୍ମଦତ୍ତଙ୍କୁ ଏହିପରି କହି ତାହାଙ୍କର ଅନୁଜ୍ଞା ଗ୍ରହଣ ପୂର୍ବକ ଅଭିଳଷିତ ଦିଗକୁ ଗମନ କଲା । ହେ ନୃପତିଶ୍ରେଷ୍ଠ ! ପ୍ରଜାମୀ ସହିତ ବ୍ରହ୍ମଦତ୍ତଙ୍କର, ଯେଉଁ କଥୋପକଥନ ହୋଇଥିଲା, ତାହାତ କହିଲି, ଏବେ ଅଉ କଣ ଶ୍ରବଣ କରିବାକୁ ଇଚ୍ଛା କରୁଅଛ ? । ୧୧୩ ।

## ଅଧ୍ୟାୟ—୧୪୦

ଯୁଧିଷ୍ଠିର କହିଲେ—ହେ ଭରତକୁଳଶ୍ରେଷ୍ଠ ପିତାମହ । ଯୁଗ-କ୍ଷୟ ହେତୁ ଧର୍ମ ଓ ଲୋକସମୂହ ନିତାନ୍ତ କ୍ଷୀଣ ଓ ଦସ୍ୟୁଗଣ ଦ୍ୱାରା ପୀଡ଼ ୍ୟମାଣ ହେଲେ କି ପ୍ରକାର ଅବସ୍ଥିତ କରିବାକୁ ହେବ ? । ୧ ।

ଭୀଷ୍ମ କହିଲେ—ହେ ଭାରତ । ଭୂପାଳ କାଳକ୍ରମରେ ଘୃଣା ବିସର୍ଜନ ପୂର୍ବକ ଯେପରି ଅବସ୍ଥାନ କରିବେ, ଆମ୍ଭେ ତୁମ୍ଭଠାରେ ସେହି ଆପଲ୍ଲାଳୋଚିତ ନୀତି ବିଷୟ ବର୍ଣ୍ଣନ କରିବୁଁ । ପୂର୍ବତନ ପଣ୍ଡିତମାନେ ଏ ବିଷୟରେ ରାଜା ଶତ୍ରୁଞ୍ଜୟ ଓ ଭରଦ୍ୱାଜଙ୍କର ସମ୍ବାଦ ସମ୍ବଳିତ ଏହି ପ୍ରାଚୀନ ଇତିହାସକୁ ଉଦାହରଣ ଦିଅନ୍ତି । ୩ । ସୌବୀର ଦେଶର ଶତ୍ରୁଞ୍ଜୟ ନାମକ ଜଣେ ମହାରଥି ନୃପତି ଥିଲେ । ସେ ଭରଦ୍ୱାଜଙ୍କ ନିକଟକୁ ଗମନ ପୂର୍ବକ ଅର୍ଥ ବିଷୟର ବିଶେଷ ନିର୍ଣ୍ଣୟ ପ୍ରଶ୍ନ କଲେ—ଅପ୍ରାପ୍ତ ଅର୍ଥର ଲାଭଇଚ୍ଛା କି ପ୍ରକାର ? ଲବ୍‌ଧ ଧନ କି ପ୍ରକାରେ ପରିବର୍ଦ୍ଧିତ ହୁଏ ? ବର୍ଦ୍ଧିତ ବିତ୍ତକୁ କି ପ୍ରକାରେ ପାଳନ କରାଯାଏ ଏବଂ ପାଳିତ ଅର୍ଥକୁ କି ପ୍ରକାରେ ବ୍ୟୟ କରାଯାଏ ? ରାଜା ଏହିପରି ଭାବରେ ଅର୍ଥ ନିର୍ଣ୍ଣୟ ବିଷୟକୁ ପ୍ରଶ୍ନ କଲରୁ ଦ୍ୱିଜବର ଭରଦ୍ୱାଜ ତାହାକୁ ଜିଜ୍ଞାସିତ ବିଷୟରେ ଯୁକ୍ତିଯୁକ୍ତ ଉତ୍କୃଷ୍ଟ ବାକ୍ୟ କହିଲେ । ୬ । ରାଜା ନିତ୍ୟରେ ଉଦ୍ୟତ ଦଣ୍ଡ ହେବେ, ସତତ ଅସ୍ମ ପୌରୁଷକୁ ପ୍ରକାଶ କରିବେ । ସ୍ୱୟଂ ନିର୍ଦ୍ଦୋଷ ହୋଇ ଅନ୍ୟର ଦୋଷ ଦର୍ଶୀ ଓ ଛିଦ୍ରାନ୍ୱେଷୀ ହେବେ । ଯେଉଁ ରାଜା ସତତ ଦଣ୍ଡ ଉଦ୍ୟତ କରି ରଖନ୍ତି, ମାନବଗଣ ତାହାଙ୍କଠାରୁ ଅତିଶୟ ଭୟ ପ୍ରାପ୍ତ ହୁଅନ୍ତି । ଅତଏବ ସମସ୍ତ ଜୀବକୁ ଦଣ୍ଡ ଦ୍ୱାରା ଶାସିତ କରିବ । ତତ୍ତ୍ୱଦର୍ଶୀ ପଣ୍ଡିତମାନେ ଏହିପରି ଦଣ୍ଡର ପ୍ରଶଂସା କରନ୍ତି । ଅତଏବ ସାମ, ଦାନ ଓ ଭେଦଦଣ୍ଡ ଏହି ଚତୁଷ୍ଟୟ ମଧ୍ୟରେ ଦଣ୍ଡ ପ୍ରଧାନ ବୋଲି ଉକ୍ତ ହୁଏ । ୯ ।

ଅଶ୍ରୟ ସ୍ଥାନର ମୂଳ ଛେଦନ ହେଲେ ପ୍ରତ୍ୟେକ ଜୀବର ଜୀବନ ନଷ୍ଟ ହୁଏ । ବନସ୍ପତିର ମୂଳ ବିଛିନ୍ନ ହେଲେ ଶାଖା ସବୁ ତହିଁରେ ଅବସ୍ଥାନ କରି ପାରନ୍ତି ନାହିଁ । ୧୦ । ବୁଦ୍ଧିମାନ୍ ରାଜା ପ୍ରଥମତଃ ପରପକ୍ଷର ମୂଳ ଛେଦନ କରିବେ । ତତ୍ପରେ ତାହାଙ୍କର ସହାୟ ଓ ଅମାତ୍ୟ ପ୍ରଭୃତିଙ୍କୁ ବଶୀଭୂତ କରିବେ । ୧୧ । ଆପଦ ଉପସ୍ଥିତ ସମୟରେ ସୁମନ୍ତ୍ରଣା, ବିକ୍ରମ ପ୍ରକାଶ, ସୁନ୍ଦର ରୂପରେ ଯୁଦ୍ଧ କିମ୍ବା ପଳାୟନ କରିବା ଏ ବିଷୟରେ କୌଣସି ବିଚାର କରିବାର ଆବଶ୍ୟକ ନାହିଁ । ୧୨ । ହୃଦୟରେ କ୍ଷୁର ସଦୃଶ ଥାଇ ବାକ୍ୟରେ ବିନୟ ପ୍ରଦର୍ଶନ ମୃଦୁଭାବରେ ସମ୍ଭାଷଣ ଓ କାମ କ୍ରୋଧ ପରିବର୍ଜନ କରିବ । ୧୩ । ଶତ୍ରୁ ସହିତ କାର୍ଯ୍ୟ ସମ୍ବନ୍ଧ ସଂଘଟିତ ହେଲେ ପ୍ରଥମତଃ ସନ୍ଧିକରି ପରେ ତାହାକୁ ବିଶ୍ୱାସ କରିବ ନାହିଁ । ବିଚକ୍ଷଣ ବ୍ୟକ୍ତି କୃତକାର୍ଯ୍ୟ ହୋଇ ଅବିଳମ୍ବରେ ଶତ୍ରୁର ସଂସର୍ଗକୁ ପରିତ୍ୟାଗ କରିବେ ଏବଂ ମିତ୍ର ରୂପରେ ସାନ୍ତ୍ୱନା ବାକ୍ୟ ଦ୍ୱାରା ଶତ୍ରୁକୁ ଶାନ୍ତକରି ସସର୍ପ ଗୃହପ୍ରାୟ, ତାହାଠାରୁ ନିୟତ ଶଙ୍କିତ ଥିବ । ୧୫ । ନିଜ ବୁଦ୍ଧିଦ୍ୱାରା ଯାହାର ବୁଦ୍ଧିକୁ ପରାଭୂତ କରିବାକୁ ହେବ, ତାହାକୁ ଅଭୟ ପ୍ରଦାନ କରି ସାନ୍ତ୍ୱନା କରିବ । ମନ୍ଦବୁଦ୍ଧି ବ୍ୟକ୍ତିକୁ ପ୍ରତ୍ୟୁତ୍ପନ୍ନମତି ବୁଦ୍ଧି ଦ୍ୱାରା ସାନ୍ତ୍ୱନା କରିବ । ୧୬ । ଯେଉଁବ୍ୟକ୍ତି ଆପଣାର ଇଷ୍ଟ ଇଚ୍ଛା କରେ ସେ ଅଞ୍ଜଳିବଦ୍ଧ ହସ୍ତ ହୋଇ ଶପଥ ପୂର୍ବକ ସାନ୍ତ୍ୱନା ବାକ୍ୟଦ୍ୱାରା ନତ ମସ୍ତକରେ ଅଶ୍ରୁମାର୍ଜନ କରି କଥା କହିବ । ୧୭ । ସମୟ ପରିବର୍ତ୍ତିତ ନ ହେବା ପର୍ଯ୍ୟନ୍ତ ଶତ୍ରୁକୁ ସ୍କନ୍ଧରେ ବହନ କରିବ । ସମୟ ଉପସ୍ଥିତ ହେଲେ ପାଷାଣରେ ନିକ୍ଷିପ୍ତ କଳଶ ପ୍ରାୟ ଶତ୍ରୁକୁ ବିନଷ୍ଟ କରିବ । ୧୮ ।

ହେ ରାଜେନ୍ଦ୍ର ! ମନୁଷ୍ୟ ତିନ୍ଦୁକ କାଷ୍ଠପ୍ରାୟ ମୁହୂର୍ତ୍ତକାଳ ପ୍ରଜ୍ୱଳିତ ହେବ ଏବଂ ଜ୍ୱାଳା ବିବର୍ଜିତ ତୁଷାନଳ ପ୍ରାୟ ଚିରକାଳ ପ୍ରଧୂମିତ ହେବ ନାହିଁ । ୧୯ । ବହୁ ପ୍ରୟୋଜନ ସମ୍ପନ୍ନ ବ୍ୟକ୍ତି କୃତଘ୍ନ ସହିତ ଅର୍ଥ ଘଟିତ ସମ୍ବନ୍ଧ ରଖିବେ ନାହିଁ । କାରଣ କୃତଘ୍ନ ବ୍ୟକ୍ତି କୃତକାର୍ଯ୍ୟ ହୋଇ ଉପକାରର ଅବମାନନା କରେ । ଅତଏବ ଶତ୍ରୁସଙ୍ଘଟିତ ସମସ୍ତ କାର୍ଯ୍ୟ ସମ୍ପୂର୍ଣ୍ଣରୂପେ ସମ୍ପନ୍ନ ନକରି ତାହାର ଅବଶେଷ ରଖିବା ଆବଶ୍ୟକ । ୨୦ ।

ରାଜା ନିଜର ପ୍ରତିପାଲ୍ୟ ବର୍ଗଙ୍କୁ ଅନ୍ୟଦ୍ୱାରା ପ୍ରତିପାଳନ କରି କୋକିଳର ବିପକ୍ଷର ମୂଳ ଉତ୍ପାଟନ କରି ବରାହର ଓ ଅନୁଲ୍ଲଙ୍ଘନୀୟତା ଗୁଣରେ ସୁମେରୁ ଶୈଳର ଅନୁକରଣ କରିବେ । ଅପିଚ ନାନାରୂପ ଧାରଣ ପୂର୍ବକ ନଟର, ଅର୍ଥାଗମ କରିବା ନିମିତ୍ତ ଶୂନ୍ୟ ଗୃହର ଏବଂ ପ୍ରଜାଗଣଙ୍କ ପ୍ରତି ସଦୟ ବ୍ୟବହାର ପ୍ରକାଶ କରିବା ନିମିତ୍ତ ମିତ୍ରର ଅନୁକରଣ କରିବେ । ୨୧ । ନୃପତି ପ୍ରତିଦିନ ଗାତ୍ରୋତ୍ଥାନ କରି ରିପୁ ଗୃହକୁ ଗମନ କରିବେ । ଶତ୍ରୁ ସଦନରେ ଯଦି ଅମଙ୍ଗଳ ଥାଏ, ତଥାପି କୁଶଳ ପ୍ରଶ୍ନ କରିବେ । ୨୨ । ଅଳସ, ଅଭିମାନୀ, କାପୁରୁଷ, ଜନରବଭୀତ ଏବଂ ନିୟତ ସଂଶୟଚିତ୍ତ ବ୍ୟକ୍ତିମାନେ ଅର୍ଥଲାଭ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୨୩ । ଶତ୍ରୁମାନେ ଆତ୍ମଛିଦ୍ର ପ୍ରତି ଦୃଷ୍ଟି ନ ରଖି ପରର ଛିଦ୍ର ଅନ୍ୱେଷଣ କରନ୍ତି, ଅତଏବ କୂର୍ମଙ୍କ ପ୍ରାୟ ନିଜର ଛିଦ୍ର ସବୁ ଗୋପନ କରି ରଖିବ । ୨୪ । ବକପ୍ରାୟ ଏକାଗ୍ର ହୋଇ ଅର୍ଥଚିନ୍ତା, ସିଂହ ସଦୃଶ ନିର୍ଭୀକ ହୋଇ ପରାକ୍ରମ, ବୃକ ପ୍ରାୟ ଶୀଘ୍ରକାରୀ ହୋଇ ଆତ୍ମଗୋପନ ଓ ଶର ପ୍ରାୟ ଅପରାବୃତ୍ତ ହୋଇ ଶତ୍ରୁଭେଦ କରିବ । ୨୫ । ସୁରାପାନ, ଅକ୍ଷକ୍ରୀଡ଼ା, ସ୍ତ୍ରୀସମ୍ଭୋଗ, ମୃଗୟା ଓ ଗୀତ ବାଦ୍ୟ ଯୁକ୍ତି ଅନୁସାରେ କରିବ । ଏହିସବୁ ବିଷୟରେ ଅତିଶୟ ଆସକ୍ତ ହେଲେ ଦୋଷୀ ହେବାକୁ ହୁଏ । ୨୬ । ବଂଶାଦି ଦ୍ୱାରା ଧନୁ ନିର୍ମାଣ କରିବ । ମୃଗପ୍ରାୟ ସାବଧାନରେ ଶୟନ କରିବ । ସମୟାନୁସାରେ କେତେବେଳେ ଅନ୍ଧ, କେତେବେଳେ ଅବା ବଧିର ପ୍ରାୟ ବ୍ୟବହାର କରିବ । ୨୭ ।

ବିଚକ୍ଷଣ ନୃପତି ଦେଶ ଓ କାଳ ଅନୁସାରେ ବିକ୍ରମ ପ୍ରକାଶ କରିବେ । କାରଣ ଦେଶକାଳକୁ ଅତିକ୍ରମ କରି ବିକ୍ରମ ପ୍ରକାଶ କଲେ ତାହା ବିଫଳ ହୋଇଯାଏ । ୨୮ । ସମୟାନୁସାରେ ଆପଣାର ବଳାବଳକୁ ଅବଧାରଣ ପୂର୍ବକ ପରସ୍ପରର ବଳକୁ ବିଜ୍ଞାତ ହୋଇ କର୍ତ୍ତବ୍ୟ କାର୍ଯ୍ୟରେ ନିଯୁକ୍ତ ହେବ । ଯେଉଁ ରାଜା ଦଣ୍ଡୋପହତ ଶତ୍ରୁକୁ ନିଗୃହୀତ କରନ୍ତି ନାହିଁ, ଅଶ୍ୱତରୀ ଗର୍ଭ ଗ୍ରହଣ ପ୍ରାୟ ସେ ମୃତ୍ୟୁମୁଖରେ ପତିତ ହୁଅନ୍ତି । ୩୦ । ସୁନ୍ଦର ରୂପେ ପୁଷ୍ପିତ ବୃକ୍ଷମଧ୍ୟ ଫଳହୀନ ହୁଏ । ଫଳବାନ ବୃକ୍ଷ ଦୁରାରୋହ ହୁଏ; ଏବଂ ଯାହାର ଫଳ ଅପକ୍ୱ ଅବସ୍ଥାରେ ଥାଏ, ତାହା ମଧ୍ୟ ପକ୍ୱଫଳ ସଦୃଶ ଦେଖାଯାଏ । ଅତଏବ ରାଜା ଏହିସବୁ କାରଣ ଦର୍ଶନ କରି କାହାରିଠାରେ ଶୀଘ୍ର ହେବେ ନାହିଁ । ୩୧ ।

ରାଜା ବିପକ୍ଷମାନଙ୍କର ଆଶା ବହୁକାଳରେ ସିଦ୍ଧ ହେବ ବୋଲି କହି ତାହାଙ୍କର ଆଶାକୁ ବଳବତୀ କରିବେ । କିନ୍ତୁ ସବିଶେଷ କାରଣ ପ୍ରଦର୍ଶନ କରି ତତ୍ପୂର୍ବେ ବିଘ୍ନାନୁଷ୍ଠାନ କରିବା କର୍ତ୍ତବ୍ୟ । ୩୨ । ଯାବତ୍ କାଳ ଭୟ ଉପସ୍ଥିତ ହୋଇନାହିଁ, ତାବତ୍କାଳ ଭୀତବ୍ୟକ୍ତି ନ୍ୟାୟ ଅବସ୍ଥାନ କରିବ । କିନ୍ତୁ ଭୟର କାରଣ ଉପସ୍ଥିତ ଦେଖି ନିର୍ଭୀକ ପ୍ରାୟ ତାହାର ବିନାଶରେ ପ୍ରବୃତ୍ତ ହେବ । ୩୩ । ମନୁଷ୍ୟ ସଂଶୟରେ ଆରୋହଣ ନ କଲେ ମଙ୍ଗଳ ପଥ ଦର୍ଶନ କରିବାରେ ସମର୍ଥ ହୁଅନ୍ତି ନାହିଁ । କିନ୍ତୁ ସଂଶୟାପନ୍ନ ହୋଇ ଯଦି ଜୀବିତ ଥାନ୍ତି, ତେବେ ଅବଶ୍ୟ ନିଜର ମଙ୍ଗଳ ଅବଲୋକନ କରନ୍ତି । ୩୪ । ଭୟ ଯେପରି ଉପସ୍ଥିତ ନ ହୁଏ, ତାହା ଅଗ୍ରେ ଅବଧାରଣ କରିବା ଉଚିତ । ଦୈବାତ୍ ଉପସ୍ଥିତ ହେଲେ ତାହାର ପ୍ରତିବିଧାନ କରିବା କର୍ତ୍ତବ୍ୟ । ପୁନର୍ବାର ବୃଦ୍ଧି ହେବା ଭୟରେ ତାହାକୁ ଅନିବୃତ୍ତ ସଦୃଶ ଜାଣିବା ଆବଶ୍ୟକ, ଅର୍ଥାତ୍ ସେ ବିଷୟରେ ସର୍ବଦା ଅବହିତ ହୋଇ ଅବସ୍ଥାନ କରିବ । ୩୫ । ଉପସ୍ଥିତ ସୁଖକୁ ପରିବର୍ଜନ କରିବା ଏବଂ ଅନୁପସ୍ଥିତ ସୁଖର ଆଶା କରିବା ବୁଦ୍ଧିମାନ ବ୍ୟକ୍ତିମାନଙ୍କର ରୀତି ନୁହେ । ୩୬ ।

ଯେଉଁ ବ୍ୟକ୍ତି ଶତ୍ରୁ ସହିତ ସନ୍ଧି ବନ୍ଧନ ପୂର୍ବକ ବିଶ୍ୱାସ କରି ସୁଖରେ ନିଦ୍ରାଯାଏ, ସେ ବୃକ୍ଷାଗ୍ରରେ ପ୍ରସୁପ୍ତ ବ୍ୟକ୍ତିପ୍ରାୟ ଭୂତଳରେ ପତିତ ହୋଇ ପ୍ରତିବୋଧିତ ହୁଏ । ୩୭ । ମୃଦୁ ହେଉ କିମ୍ବା ଦାରୁଣ ହେଉ ଯେ କୌଣସି କର୍ମ୍ମ ଦ୍ୱାରା ବିପନ୍ନ ଆତ୍ମାକୁ ଉଦ୍ଧାର କରିବା ଉଚିତ ଏବଂ ସମର୍ଥ ହେଲେ ଧର୍ମ୍ମ ଆଚରଣ କରିବା କର୍ତ୍ତବ୍ୟ । ୩୮ । ଶତ୍ରୁର ଶତ୍ରୁମାନଙ୍କୁ ସେବା କରିବ । ନିଜର ଚରଗଣଙ୍କୁ ଶତ୍ରୁପ୍ରେରିତ ବୋଲି ବିବେଚନା କରିବା ଉଚିତ । ଆପଣାର ଚରମାନଙ୍କୁ ଯେପରି ଶତ୍ରୁ ଜାଣି ନ ପାରେ, ତାହାର ଉପାୟ କରିବା ଆବଶ୍ୟକ । ପାଷଣ୍ଡ ଓ ତାପସଗଣଙ୍କୁ ଚର ରୂପରେ ପର ରାଜ୍ୟରେ ପ୍ରବେଶ କରାଇବ । ୪୦ । କପଟ ଧର୍ମ୍ମାଶ୍ରୟୀ ଚୌରମାନେ ଲୋକଙ୍କର କଣ୍ଟକ ସ୍ୱରୂପ ଅଟନ୍ତି । ଦୁରାଚାର ଚୌର ସମୂହ ଉଦ୍ୟାନରେ ବିହାର ସ୍ଥାନରେ, ପାନ୍ଥ ନିବାସରେ, ପାନାଗାରରେ, ତୀର୍ଥ ସମୂହରେ ଓ ସଭାସ୍ଥଳରେ ଛଦ୍ମବେଶ ଧାରଣ ପୂର୍ବକ ବିଚରଣ କରନ୍ତି । ଅତଏବ ସେମାନଙ୍କୁ ବିଜ୍ଞାତ ହୋଇ ନିଗୃହୀତ ଓ ଶାନ୍ତ କରିବା ଆବଶ୍ୟକ । ୪୨ । ଅବିଶ୍ୱସ୍ତ ବ୍ୟକ୍ତିକୁ ବିଶ୍ୱାସ କରିବ ନାହିଁ ଏବଂ ବିଶ୍ୱସ୍ତ ବ୍ୟକ୍ତିକୁ ଏକାନ୍ତ ବିଶ୍ୱାସ

କରିବା ବିଧେୟ ନୁହେ । କାରଣ ବିଶ୍ୱାସରୁ ଭୟ ଉତ୍ପନ୍ନ ହୁଏ, ସୁତରାଂ ବିଶେଷଭାବରେ ପରୀକ୍ଷା ନ କରି ତାହାଙ୍କୁ ବିଶ୍ୱାସ କରିବ ନାହିଁ । ଯଥାର୍ଥ କାରଣ ପ୍ରଦର୍ଶନ ପୂର୍ବକ ବିପକ୍ଷର ବିଶ୍ୱାସ ଭାଜନ ହୋଇ କାଳକ୍ରମରେ ତାହାର କୌଣସି ବିଷୟରେ କିଞ୍ଚିନ୍ମାତ୍ର ପଦସ୍ଖଳନ ହେଲେ ତାହାକୁ ପ୍ରହାର କରିବ । ୪୪ । ଯାହାଠାରୁ ଶଙ୍କାର ସମ୍ଭାବନା ନାହିଁ, ତାହାକୁ ମଧ୍ୟ ଶଙ୍କା କରିବା ଉଚିତ । ଏବଂ ଶଙ୍କାର କାରଣ ଭୂତଲୋକମାନଙ୍କୁ ନିୟତ ଶଙ୍କା କରିବା କର୍ତ୍ତବ୍ୟ । କାରଣ ଅଶଙ୍କିତ ବ୍ୟକ୍ତିଠାରୁ ସମୁତ୍ପନ୍ନ ଭୟ ସମୂଳରେ ଛେଦନ କରେ । ୪୫ । ଧ୍ୟାନ, ଧାରଣା, ମୌନାବଲମ୍ବନ, କଷାୟ ବସ୍ତ୍ର ପରିଧାନ, ଜଟା ଓ ଅଜିନ ଧାରଣ ଏମାନଙ୍କ ଦ୍ୱାରା ବିପକ୍ଷର ଅନ୍ତଃକରଣରେ ବିଶ୍ୱାସ ଉତ୍ପାଦନ କରି ପରିଶେଷରେ ବୃକପ୍ରାୟ ତାହାକୁ ବିନଷ୍ଟ କରିବ । ୪୬ ।

ପିତା, ଭ୍ରାତା, ପୁତ୍ର କିମ୍ବା ସୁହୃଜ୍ଜନ ଯଦି ଅର୍ଥର ବିଘ୍ନକରେ ତେବେ ଐଶ୍ୱର୍ଯ୍ୟାଭିଳାଷୀ ବ୍ୟକ୍ତି ସେମାନଙ୍କୁ ବିନଷ୍ଟ କରିବେ । ଗୁରୁବ୍ୟକ୍ତି ଯଦି କର୍ତ୍ତବ୍ୟାକର୍ତ୍ତବ୍ୟ ନ ବୁଝି ଗର୍ବିତ ଓ ଉତ୍ପଥଗାମୀ ହୁଅନ୍ତି, ତେବେ ତାହାଙ୍କର ଦଣ୍ଡ ରୂପ ଶାସନ ବିହିତ ଅଟେ । ୪୮ । ତୀକ୍ଷ୍ଣତୁଣ୍ଡ ପକ୍ଷୀ ଯେପରି ବୃକ୍ଷ ସମୂହର ଫଳମାନଙ୍କୁ ନଷ୍ଟ କରେ, ସେହିପରି ଅଭ୍ୟୁତ୍ଥାନ, ଅଭିବାଦନ ଓ ସମ୍ପ୍ରଦାନ ଦ୍ୱାରା ବିପକ୍ଷର ବିଶ୍ୱାସ ଭାଜନ ହୋଇ ପରିଶେଷରେ ତାହାର ସମସ୍ତ ପୁରୁଷାର୍ଥକୁ ବିନଷ୍ଟ କରିବ । ୪୯ । ମତ୍ସ୍ୟଘାତୀ ଧୀବର ପ୍ରାୟ ପରର ମର୍ମଚ୍ଛେଦ ପ୍ରଭୃତି ଦାରୁଣ ହିଂସା କାର୍ଯ୍ୟ ନ କଲେ ମହା ସମୃଦ୍ଧି ଲାଭ ହୁଏ ନାହିଁ । ୫୦ । ଜାତି ଦ୍ୱାରା କେହି କାହାରି ଶତ୍ରୁ କିମ୍ବା ମିତ୍ର ହୁଏ ନାହିଁ । ପ୍ରୟୋଜନାନୁସାରେ ଶତ୍ରୁମିତ୍ର ସଂଘଟନ ହୁଏ । ୫୧ । ଅମିତ୍ର ବ୍ୟକ୍ତି ଦୁଃଖର କାରଣ ପ୍ରକାଶ କଲେ ହେଁ ତାହାକୁ କଦାପି ପରିତ୍ୟାଗ କରିବ ନାହିଁ । ଏବଂ ତାହାର ଦୁଃଖରେ ଦୁଃଖିତ ହେବ ନାହିଁ । ପୂର୍ବାପରାଧୀ ବ୍ୟକ୍ତିକୁ ଯେ କୌଣସି ଉପାୟରେ ବିନଷ୍ଟ କରିବ । ୫୨ । ଯେ ନିଜର ଐଶ୍ୱର୍ଯ୍ୟକୁ ଇଚ୍ଛା କରନ୍ତି, ତାହାଙ୍କର ଶତ୍ରୁ ନିଗ୍ରହ କରିବାରେ ଯତ୍ନ କରିବା ଅବଶ୍ୟ କର୍ତ୍ତବ୍ୟ ଏବଂ ଲୋକ ସଂଗ୍ରହ କରିବା ଓ ସେମାନଙ୍କ ପ୍ରତି ଯତ୍ନ କରିବା ଉଚିତ । କାହାରି ପ୍ରତି ଅସୂୟା କରିବା ବିହିତ ନୁହେ । ଯାହାକୁ ପ୍ରହାର କରିବ, ତାହାକୁ ପ୍ରିୟ କଥା କହିବ । ଏବଂ ପ୍ରହାର କରି ସୁଦ୍ଧା ପ୍ରିୟ

କଥା କହିବ । ଅସିଦ୍ୱାରା କାହାର ମସ୍ତକ ଛେଦନ କଲେ ତନ୍ନିମିତ୍ତ ଶୋକ ପ୍ରକାଶ ଓ ରୋଦନ କରିବ । ୫୪ ।

ଯେ ଐଶ୍ୱର୍ଯ୍ୟ ଅଭିଳାଷ କରନ୍ତି ସେ ସାନ୍ତ୍ୱନା ବାକ୍ୟ ସମ୍ମାନ ଓ ତିତିକ୍ଷା ଦ୍ୱାରା ଲୋକମାନଙ୍କୁ ଆହ୍ୱାନ କରିବେ । ଏହି ପ୍ରକାରେ ଲୋକଙ୍କର ଆରାଧନା କରିବା କର୍ତ୍ତବ୍ୟ । ୫୫ । ବାହୁ ଦ୍ୱାରା ନଦୀ ପାର ହେବ ନାହିଁ ଏବଂ ଯହିଁରେ କୌଣସି ଲଭ ନାହିଁ ତାଦୃଶ ବୈରାଚରଣ କର୍ତ୍ତବ୍ୟ ନୁହେ । ଯଥା ଶତ୍ରୁର ଗୋରୁ ବୋଲି ତାହାର ଶୃଙ୍ଗ ଭକ୍ଷଣ ଓ ଚର୍ବଣ କରିବା ଅନର୍ଥକ ଓ ଅନାୟୁଷ୍ୟ । ତଦ୍ୱାରା ଦନ୍ତ ସବୁ ପରିମାର୍ଜିତ ହୁଏ । କିନ୍ତୁ କୌଣସି ରସ ଲଭ ହୁଏ ନାହିଁ । ୫୬ । ଧର୍ମ୍ମ ଅର୍ଥ କାମ ଏହି ତ୍ରିବର୍ଗର ତ୍ରିବିଧ ପୀଡ଼ା ଅଛି । ଅର୍ଥାତ୍ ଧର୍ମ୍ମ ଦ୍ୱାରା ଅର୍ଥର ବାଧା, ଅର୍ଥଦ୍ୱାରା ଧର୍ମ୍ମର ବାଧା ଏବଂ କାମ ଦ୍ୱାରା ଧର୍ମ୍ମ ଓ ଅର୍ଥ ଉଭୟର ବାଧା ହୁଏ । ଅତଏବ ଏମାନଙ୍କର ବଳାବଳ ବିବେଚନା କରି ଉକ୍ତ ପୀଡ଼ାର ପରିହାର କରିବ । ୫୭ ।

ଋଣ ଶେଷ, ଅଗ୍ନି ଶେଷ ଓ ଶତ୍ରୁ ଶେଷ ଥିଲେ ତାହା ପୁନଃ ପୁନଃ କରି ବର୍ଦ୍ଧିତ ହୁଏ । ଅତଏବ ଏମାନଙ୍କର ନିଃଶେଷ କରିବା ଉଚିତ । ବୃଦ୍ଧି ଶୀଳ ଋଣ, ପରାଭୂତ ଶତ୍ରୁଗଣ ଏବଂ ଉପେକ୍ଷିତ ବ୍ୟାଧିସବୁ ଅତିଶୟ ଭୟୋତ୍ପାଦନ କରନ୍ତି । କୌଣସି କାର୍ଯ୍ୟ ଆରମ୍ଭ କଲେ ତାହାକୁ ସମ୍ପନ୍ନ ନ କରି ବିରତ ହେବ ନାହିଁ । ସତତ ସାବଧାନ ଥିବ । କ୍ଷୁଦ୍ର କଣ୍ଟକ ମଧ୍ୟ ସମ୍ୟକ ରୂପେ ଉଦ୍ଧୃତ ନ ହେଲେ ଚିରକାଳ ପାଇଁ ବିକାର ଉତ୍ପାଦନ କରେ । ୬୦ । ମନୁଷ୍ୟ ହତ୍ୟା, ପଥରୋଧ ଏବଂ ଗୃହ ବିନାଶ ଦ୍ୱାରା ଶତ୍ରୁରାଜ୍ୟକୁ ବିନଷ୍ଟ କରିବ । ୬୧ ।

ଗୃଧ୍ରପ୍ରାୟ ଦୂରଦର୍ଶୀ, ବକପ୍ରାୟ ନିଶ୍ଚଳ, କୁକ୍କୁର ପ୍ରାୟ ଜାଗରୁକ, ସିଂହପ୍ରାୟ ବିକ୍ରମଶାଳୀ ଓ କାକସଦୃଶ ପରର ଇଙ୍ଗିତଜ୍ଞ ହୋଇ ନିରୁଦ୍ୱେଗରେ ଭୁଜଙ୍ଗବତ୍ ସହସା ବିପକ୍ଷ ଦୁର୍ଗମଧ୍ୟକୁ ପ୍ରବେଶ କରିବ ।୬୨। ବୀରଠାରେ ଅଞ୍ଜଳି ବନ୍ଧନ, ଭୀରୁକୁ ଭୟ ପ୍ରଦର୍ଶନ ଓ ଲୁବ୍ଧ ବ୍ୟକ୍ତିକୁ ଅର୍ଥଦାନ ଦ୍ୱାରା ଆୟତ୍ତ କରିବ ଏବଂ ତୁଲ୍ୟ ବ୍ୟକ୍ତି ସହିତ ବିଗ୍ରହ ବିଧାନ କରିବା ବିଧେୟ । ୬୩ । ବୈରିଗଣ ଯେପରି ରାଜ୍ୟର ପ୍ରଧାନ ବ୍ୟକ୍ତିମାନଙ୍କୁ ବଶୀଭୂତ, ପ୍ରିୟବୟସ୍ୟମାନଙ୍କୁ ଅନୁନୟ ଦ୍ୱାରା ଆୟତ୍ତ ଏବଂ ଅମାତ୍ୟମାନଙ୍କୁ ବିଭିନ୍ନ ଓ ବିନଷ୍ଟ କରି ନ ପାରନ୍ତି, ସେହିପରି

ଭାବରେ ରାଜ୍ୟରକ୍ଷା କରିବା ଉଚିତ । ୬୪ । ରାଜା ମୃଦୁ ସ୍ୱଭାବ ହେଲେ ପ୍ରଜାଗଣ ତାହାକୁ ଅବଜ୍ଞା କରନ୍ତି ଏବଂ ତୀକ୍ଷ୍ଣ ହେଲେ ସମସ୍ତେ ତାହାଙ୍କୁ ଭୟ କରନ୍ତି । ଅତଏବ ତୀକ୍ଷ୍ଣ କାଳରେ ତୀକ୍ଷ୍ଣ ଓ ମୃଦୁ କାଳରେ ମୃଦୁ ହେବା ଉଚିତ ।୬୫। ମୃଦୁଦ୍ୱାରା ମୃଦୁକୁ ଛେଦନ କରିବ । ମୃଦୁଦ୍ୱାରା ଦାରୁଣ ବ୍ୟାପାର ବିନଷ୍ଟ କରାଯାଏ । ମୃଦୁ ଉପାୟ ଦ୍ୱାରା କୌଣସି କାର୍ଯ୍ୟ ଅସାଧ୍ୟ ହୁଏନାହିଁ । ଅତଏବ ମୃଦୁ ତୀକ୍ଷ୍ଣ ଅପେକ୍ଷା ତୀକ୍ଷ୍ଣତର ଅଟେ । ୬୬ ।

ଯେ ସମୟାନୁସାରେ ଦାରୁଣ ହୁଅନ୍ତି, ସେ ସମସ୍ତ କାର୍ଯ୍ୟ ସାଧନ କରି ଶତ୍ରୁବିଜୟ କରିବାକୁ ସମର୍ଥ ହୁଅନ୍ତି । ୬୭ । ପଣ୍ଡିତ ସହିତ ବିରୋଧ କରି "ଆମ୍ଭେ ଦୂରରେ ଅଛୁଁ" ବୋଲି ବିଶ୍ୱାସ କରିବ ନାହିଁ କାରଣ ବୁଦ୍ଧିମାନ ବ୍ୟକ୍ତିର ବାହୁଦ୍ୱୟ ଅତିଶୟ ଦୀର୍ଘ ଅଟେ । ସେ ହିଂସିତ ହୋଇ ତଦ୍ୱାରା ହିଂସା କରନ୍ତି । ୬୮ । ଯେଉଁ ନଦୀର ପରପାରକୁ ଉତ୍ତୀର୍ଣ୍ଣ ହୋଇ ନ ପାରିବ, ତାଦୃଶ ନଦୀରେ ସନ୍ତରଣ କରିବ ନାହିଁ । ବିପକ୍ଷ ବ୍ୟକ୍ତି ପୁନର୍ବାର ଯାହାକୁ ଆହରଣ କରି ପାରିବେ, ତାଦୃଶ ଧନ ହରଣ କରିବେ ନାହିଁ । ଯାହାର ମୂଳୋତ୍ପାଟନ କରିବାକୁ ସମର୍ଥ ହେବ ନାହିଁ ତାହାକୁ ଖନନ କରିବ ନାହିଁ । ଏବଂ ଯାହାର ମସ୍ତକକୁ ପାତିତ କରି ନ ପାରିବ ତାହାକୁ ପ୍ରହାର କରିବ ନାହିଁ । ୬୯ । ଆମ୍ଭେ ଆପଣଙ୍କ ଲାଭପ୍ରାପ୍ତିରେ ଏହିପରି କହିଲୁଁ । ମନୁଷ୍ୟ ସହିତ ଈଦୃଶ ଆଚରଣ କରିବେ ନାହିଁ । ବିପକ୍ଷ କର୍ତ୍ତୃକ ଆକ୍ରାନ୍ତ ହୋଇ କୀଦୃଶ ବ୍ୟବହାର କରିବା ଉଚିତ, ତାହା ଆମ୍ଭେ ଆପଣଙ୍କର ହିତାର୍ଥୀ ହୋଇ ଉପର୍ଯ୍ୟୁକ୍ତ ବାକ୍ୟମାନ କହିଲୁଁ । ୭୦ ।

ଭରଦ୍ୱାଜ ମୁନି ସୌବୀରରାଜ୍ୟାଧିପତିଙ୍କୁ ଯଥାବିଧାନରେ ଏହି ସବୁ କଥା କହନ୍ତେ ସେ ତାହା ଶ୍ରବଣ କରି ଅକ୍ଷୁଣ୍ଣ ଚିତ୍ତରେ ବ୍ରତପାଳନ କଲେ ଏବଂ ବାନ୍ଧବଗଣଙ୍କ ସହିତ ସମୁଜ୍ଜ୍ୱଳ ରାଜଲକ୍ଷ୍ମୀଙ୍କୁ ଭୋଗ କଲେ । ୭୧ ।

———

## ଅଧ୍ୟାୟ—୧୪୧

ଯୁଧିଷ୍ଠିର କହିଲେ—ହେ ପିତାମହ ! ପରମ ଧର୍ମ ନଷ୍ଟ ଓ ସର୍ବ ଲୋକଙ୍କ କର୍ତ୍ତୃକ ଉଲ୍ଲଙ୍ଘିତ ହେଲେ ଅଧର୍ମ ଧର୍ମପ୍ରାପ୍ତ ହେଲେ, ଧର୍ମ ଅଧର୍ମ ପ୍ରାପ୍ତ ହେଲେ, ମର୍ଯ୍ୟାଦା ବିନଷ୍ଟ ହେଲେ, ଧର୍ମ ନିଶ୍ଚୟ କ୍ଷୁଭିତ ହେଲେ, ଲୋକମାନେ ଭୂପାଳ ଓ ଦସ୍ୟୁଗଣଙ୍କ କର୍ତ୍ତୃକ ଉତ୍ପୀଡ଼ିତ ହେଲେ, ଆଶ୍ରମବାସିମାନେ ମୋହାଚ୍ଛନ୍ନ ହେଲେ, କର୍ମସବୁ ବିନଷ୍ଟ ହେଲେ କାମ, ଲୋଭ ଓ ମୋହବଶତଃ ସମସ୍ତେ ଭୟ ଦର୍ଶନ କଲେ, ପ୍ରତ୍ୟେକ ଜୀବ ନିୟତ ଅବିଶ୍ୱସ୍ତ ହେଲେ, ଅବମାନନା ଦ୍ୱାରା ହନ୍ୟମାନ ହୋଇ ସମସ୍ତେ ପରସ୍ପର ପରସ୍ପରକୁ ବଞ୍ଚନା କଲେ, ଦେଶସବୁ ପ୍ରଦୀପ୍ତ ହେଲେ, ବ୍ରାହ୍ମଣଗଣ ପୀଡ଼ିତ ହେଲେ, ପର୍ଜ୍ଜନ୍ୟ ବର୍ଷଣରୁ ବିରତ ହେଲେ, ପରସ୍ପର ଭେଦ ସମୁତ୍ଥିତ ହେଲେ ଏବଂ ପୃଥିବୀରେ ଯେଉଁସବୁ ଉପଜୀବ୍ୟ ବସ୍ତୁ ଅଛି ତତ୍‌ସମସ୍ତ ଦସ୍ୟୁସାତ୍ ହେଲେ ଅର୍ଥାତ୍ ଉପର୍ଯ୍ୟୁକ୍ତ ଆପତ୍କାଳର ସମାଗମରେ ଯେଉଁ ବ୍ରାହ୍ମଣ ଦୟାବଶତଃ ପୁତ୍ର ପୌତ୍ର ପ୍ରଭୃତିଙ୍କୁ ପରିତ୍ୟାଗ କରିବାକୁ ଅଶକ୍ତ, ସେ କି ପ୍ରକାରେ ଜୀବନଯାପନ କରିବେ ଓ ଲୋକମାନେ ପାପାତୁର ହେଲେ ଯେଉଁ ରାଜା ଦୟାବଶତଃ, ପୁତ୍ର ପୌତ୍ର ପ୍ରଭୃତିଙ୍କୁ ପରିତ୍ୟାଗ କରିବାକୁ ଅନିଚ୍ଛୁକ, ଅଥଚ ବ୍ରାହ୍ମଣମାନଙ୍କୁ ପାଳନ କରିବାକୁ ଅଶକ୍ତ, ସେ ବା କି ପ୍ରକାରେ ଅବସ୍ଥାନ କରିବେ ଏବଂ ଧର୍ମ ଓ ଅର୍ଥ ବା କେଉଁ ପ୍ରକାରେ ଭ୍ରଷ୍ଟ ନ ହେବ, ତାହା ଆପଣ ଆମ୍ଭଙ୍କୁ କହନ୍ତୁ ।୮।

ଭୀଷ୍ମ କହିଲେ—ହେ ମହାବାହୁ ! ଭରତ ଶ୍ରେଷ୍ଠ ! ଅପ୍ରାପ୍ତ ରାଜ୍ୟର ପ୍ରାପ୍ତି, ପ୍ରାପ୍ତ ରାଜ୍ୟର ପ୍ରତିପାଳନ ସ୍ୱରୂପ ଯୋଗ କ୍ଷେମ, ସୁବୃଷ୍ଟି, ପ୍ରଜାଗଣଙ୍କର ବ୍ୟାଧି, ମରଣ ଓ ଭୟ, ଏହିସବୁ ବିଷୟରେ ରାଜା ମୂଳ କାରଣ ଅଟନ୍ତି ଏବଂ ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଏହି ଯୁଗମାନଙ୍କର ପରିବର୍ତ୍ତନ ବିଷୟରେ ମଧ୍ୟ ରାଜା ମୂଳକାରଣ ହୋଇଥାନ୍ତି । ଏଥିରେ ସଂଶୟ ନାହିଁ ।୧୦। ପ୍ରଜାଗଣଙ୍କର ଦୋଷ କାରକ ସେହି ଆପତ୍କାଳ ଉପସ୍ଥିତ ହେଲେ ବିଜ୍ଞାନବଳ ଅବଲମ୍ବନ ପୂର୍ବକ ଜୀବନଯାପନ କରିବାକୁ ହୁଏ ।୧୧। ପଣ୍ଡିତମାନେ ଏ ବିଷୟରେ ଚଣ୍ଡାଳାଗାରରେ ବିଶ୍ୱାମିତ୍ର ଓ ଚଣ୍ଡାଳର ସମ୍ବାଦ ସମ୍ବଳିତ ଗୋଟିଏ ପୁରାତନ ଇତିହାସକୁ ଉଦାହରଣ ଦେଇଥାନ୍ତି ।୧୨।

ତ୍ରେତା ଓ ଦ୍ୱାପର ଯୁଗର ସନ୍ଧି ସମୟରେ ସଂସାରରେ ଦୈବ୍ୟବହିତ ଦ୍ୱାଦଶ ବର୍ଷ ବ୍ୟାପିନୀ ଘୋରତର ଅନାବୃଷ୍ଟି ହୋଇଥିଲା । ୧୩ । ତ୍ରେତାର ଅବସାନ ଓ ଦ୍ୱାପରର ପ୍ରାରମ୍ଭ କାଳରେ ଅତିବୃଦ୍ଧ ପ୍ରଜାବୃନ୍ଦଙ୍କର ପ୍ରଳୟ କାଳ ଉପସ୍ଥିତ ହୁଅନ୍ତେ ଦେବରାଜ ବାରି ବର୍ଷଣ କରି ନ ଥିଲେ । ବୃହସ୍ପତି ପ୍ରତିକୂଳ ହୋଇ ଏବଂ ଚନ୍ଦ୍ରମଣ୍ଡଳ ନିଜର ଲକ୍ଷଣ ପରିତ୍ୟାଗପୂର୍ବକ ଦକ୍ଷିଣ ପଥରେ ଗମନ କରିଥିଲେ । ତତ୍କାଳରେ ମେଘର ସଞ୍ଚାର ହେବା ତେଣିକି ଥାଉ, ନୀହାରପାତ ସୁଦ୍ଧା ହୋଇ ନ ଥିଲା । ନଦୀ ସବୁ ପ୍ରାୟ ଶୁଷ୍କ ହୋଇଗଲା । ୧୬ । ସରୋବର, କୂପ ଓ ପ୍ରସବଣ ସବୁ ଦୈବବଶତଃ ଜଳହୀନ ଓ ପ୍ରଭାହୀନ ହେବାରୁ ଅଲକ୍ଷିତ ହେଲା । ପାନୀୟଶାଳା ପ୍ରଭୃତି ଜଳଶୂନ୍ୟ ହେଲା । ବ୍ରାହ୍ମଣମାନେ ଯଜ୍ଞ ବେଦାଧ୍ୟୟନ, ଓ ବଷଟ୍‌କାର ପ୍ରଭୃତି ମଙ୍ଗଳ କାର୍ଯ୍ୟରୁ ନିବୃତ୍ତ ହେଲେ । । ୧୮ । କୃଷିକାର୍ଯ୍ୟ ଓ ଗୋରକ୍ଷା ଉଚ୍ଛିନ୍ନ ହୋଇଗଲା । ବିପଣୀରେ ବ୍ୟବହାର୍ଯ୍ୟ ବ୍ୟାପାର ସବୁ ନିବୃତ୍ତ ହେଲା । ପଶୁ ବନ୍ଧନ ସ୍ତମ୍ଭ, ଯଜ୍ଞ ସମ୍ଭାର ଓ ଉତ୍ସବ ସମୂହ ଏକକାଳରେ ବିନଷ୍ଟ ହୋଇଗଲା । ୧୯ । ମହାପ୍ରାଣୀ-ମାନେ ଅସ୍ଥିକଙ୍କାଳସାର ହୋଇ ଚିତ୍କାର ରବରେ ଆକୁଳ ହେଲେ । ଅନେକାନେକ ନଗର ଶୂନ୍ୟ ହୋଇଗଲା ଓ ଗ୍ରାମାଦ ଅଗ୍ନିଦାହରେ ଦଗ୍ଧ ହୋଇଗଲା । ୨୦ । ପ୍ରଜାମାନେ କୌଣସି ସ୍ଥାନରେ ଚୌରଗଣ ଦ୍ୱାରା, କୌଣସି ସ୍ଥାନରେ ଶସ୍ତ୍ର ଦ୍ୱାରା, କେଉଁଠାରେ ଅବା ରାଜାମାନଙ୍କ ଦ୍ୱାରା ଉତ୍ପୀଡ଼ିତ ହୋଇ ପରସ୍ପର ଭୟବଶତଃ ପଳାୟନ କରିବାରୁ ଗ୍ରାମସବୁ ନିର୍ଜ୍ଜନ ଓ ଶୂନ୍ୟ ହୋଇଗଲା । ୨୧ । ଦେବାଳୟ ସବୁ ବିନଷ୍ଟ ହେଲା ଓ ବୃଦ୍ଧମାନୁଷୀମାନେ ନିଜ ନିଜ ପୁତ୍ର ପୌତ୍ରାଦିଦ୍ୱାରା ତିରସ୍କୃତ ହେଲେ । ଗୋ, ଅଜ, ମେଷ ଓ ମହିଷ ସବୁ ପଞ୍ଚତ୍ୱପ୍ରାପ୍ତ ହେଲେ । ୨୨ । ବ୍ରାହ୍ମଣମାନେ କାଳଗ୍ରାସରେ ନିପତିତ ହେଲେ, ରକ୍ଷକମାନେ ନିଧନ ପ୍ରାପ୍ତ ହେଲେ, ଔଷଧି ନିଚୟ ବିଧ୍ୱସ୍ତ ହେଲା, ତତ୍କାଳରେ ବସୁଧାମଣ୍ଡଳ କେବଳ ଶ୍ମଶାନଚିହ୍ନ ନିକର ଦ୍ୱାରା ସମାବୃତ୍ତ ହୋଇଥିଲା ।୨୩।

ହେ ଯୁଧିଷ୍ଠିର । ସେହି ଭୟଙ୍କର ସମୟରେ ଧର୍ମ୍ମକ୍ଷୟ ହେବାରୁ ମନୁଷ୍ୟମାନେ କ୍ଷୁଧିତ ହୋଇ ପରସ୍ପରର ମାଂସ ଭକ୍ଷଣ ପୂର୍ବକ ବିଚରଣ କଲେ । ୨୪ । ଋଷିମାନେ ଜପ, ନିୟମ, ହୋମ ଓ ଆଶ୍ରମମାନଙ୍କୁ ପରିତ୍ୟାଗ କରି ଇତସ୍ତତଃ ଧାବିତ ହେଲେ । ୨୫ । ଅନନ୍ତର ବୁଦ୍ଧିମାନ ମହର୍ଷି ଭଗବାନ୍ ବିଶ୍ୱାମିତ୍ର କ୍ଷୁଧାର୍ତ୍ତ ହୋଇ ନିକେତନକୁ

ବିସର୍ଜନ କଲେ ଓ ସ୍ତ୍ରୀ ପୁତ୍ର ପ୍ରଭୃତିଙ୍କୁ କୌଣସି ଜନସମାଜରେ ରକ୍ଷାକରି ଖାଦ୍ୟାଖାଦ୍ୟ ବିଚାର ଓ ହୋମାଦି କାର୍ଯ୍ୟକୁ ପରିତ୍ୟାଗପୂର୍ବକ ସର୍ବତ୍ର ପର୍ଯ୍ୟଟନ କରିବାରେ ପ୍ରବୃତ୍ତ ହେଲେ । ସେ ପର୍ଯ୍ୟଟନ କରୁଁ କରୁଁ କୌଣସି ସମୟରେ ଅରଣ୍ୟ ମଧ୍ୟସ୍ଥ ପ୍ରାଣଘାତକ ହିଂସ୍ର ଚଣ୍ଡାଳମାନଙ୍କ ବସତି ମଧ୍ୟରେ ଉପସ୍ଥିତ ହେଲେ । ଉପସ୍ଥିତ ହୋଇ ଦେଖିଲେ ଯେ ସେହିସ୍ଥାନ ଭଗ୍ନ କଳସ, କୁକ୍କୁରର ଚର୍ମ୍ମଖଣ୍ଡ ବରାହ ଓ ଗର୍ଦ୍ଦଭର ଅସ୍ଥି ସମୂହ ଓ ମୃତମନୁଷ୍ୟର ବସ୍ତ୍ର ନିକର ଦ୍ୱାରା ସମାବୃତ୍ତ ହୋଇଅଛି । ଗୃହସବୁ ନିର୍ମାଲ୍ୟ ଦ୍ୱାରା ଅଳଂକୃତ ହୋଇଅଛି । କୁଟୀର ଓ ମଠସବୁ ଅହି-ନିର୍ମ୍ମୋକ-ମାଲ୍ୟଦ୍ୱାରା ଚିହ୍ନିତ ହୋଇଅଛି । ୩୦ । କୌଣସି ସ୍ଥାନ ବହୁଳ କୁକ୍କୁଟରବରେ ଓ କୌଣସି ସ୍ଥାନ ଗର୍ଦ୍ଦଭ ନିନାଦରେ ପ୍ରତି-ଧ୍ୱନିତ ହେଉଅଛି । କୌଣସି ସ୍ଥାନରେ ଅବା ଚଣ୍ଡାଳମାନେ ଖରତର ବାକ୍ୟରେ ପରସ୍ପର କଳହ କରୁଅଛନ୍ତି । ୩୧ । କୌଣସି ସ୍ଥାନରେ ଉଲୂକ ଓ ବିବିଧ ବିହଗଗଣଙ୍କର ସମଲଙ୍କୃତ ଦେବାଳୟ ନିଚୟ ବର୍ତ୍ତିମାନ ରହିଅଛି । କୌଣସି ସ୍ଥାନ ଲୌହ ଘଣ୍ଟାସମଲଙ୍କୃତ କୁକ୍କୁରଜାଲଦ୍ୱାରା ସମାଚ୍ଛନ୍ନ ହୋଇଅଛି । ୩୨ ।

ମହର୍ଷି ବିଶ୍ୱାମିତ୍ର କ୍ଷୁଧାବିଷ୍ଟ ହୋଇ ସେହି ସ୍ଥାନରେ ପ୍ରବେଶ ପୂର୍ବକ ଖାଦ୍ୟଦ୍ରବ୍ୟ ଅନ୍ୱେଷଣାର୍ଥ ଅତିଶୟ ଯତ୍ନ କଲେ କିନ୍ତୁ ସେ ଭିକ୍ଷା କରି ସୁଦ୍ଧା କୌଣସି ସ୍ଥାନରେ ମାଂସ, ଅନ୍ନ, ଫଳ, ମୂଳ କିମ୍ବା ଅନ୍ୟ କୌଣସି ଖାଦ୍ୟ ସାମିଗ୍ରୀ ପ୍ରାପ୍ତ ହେଲେ ନାହିଁ । ୩୪ । ଅହୋ । ଆମ୍ଭେ କି କଷ୍ଟ ପାଇଲୁଁ । ଏହିପରି ଅବଧାରଣ କରି ମହର୍ଷି ବିଶ୍ୱାମିତ୍ର ଦୈହିକ ଦୌର୍ବଲ୍ୟ ବଶତଃ ସେହି ଚଣ୍ଡାଳ ପଲ୍ଲୀମଧ୍ୟରେ ଭୂତଳରେ ପତିତ ହେଲେ । ୩୫ ।

ହେ ନୃପସତ୍ତମ । ସେ ତେତେବେଳେ କିପରି ଅବସ୍ଥାର ପରି-ବର୍ତ୍ତନ ହେବ ଏବଂ କି ପ୍ରକାରେ ବା ବୃଥା ମୃତ୍ୟୁ ନ ହେବ, ତାହା ଚିନ୍ତା କଲେ । ମୁନି ଚିନ୍ତା କରୁ କରୁ ଦେଖିଲେ ଯେ ଚଣ୍ଡାଳର ଗୃହରେ ସଦ୍ୟ ଶସ୍ତ୍ରହତ କୁକ୍କୁର ମାଂସ ବିସ୍ତୃତ ରହିଅଛି । ୩୭ । ତଦ୍ଦର୍ଶନରେ ଭାବିଲେ ଯେ ବର୍ତ୍ତମାନ ଆମ୍ଭର ପ୍ରାଣଧାରଣ ବିଷୟରେ ଅନ୍ୟ କୌଣସି ଉପାୟ ନାହିଁ । ଅତଏବ ଆମ୍ଭଙ୍କୁ ଚୌର୍ଯ୍ୟ ବୃତ୍ତି ଅବଲମ୍ବନ କରିବାକୁ ହେଲା । ଆପତ୍କାଳରେ ପ୍ରାଣରକ୍ଷା ନିମିତ୍ତ ଚୌର୍ଯ୍ୟ ଅବଲମ୍ବନ କରିବା ବ୍ରାହ୍ମଣ-

ପକ୍ଷରେ ଅବିଧେୟ ନୁହେ । ପ୍ରଥମତଃ ନିଜ ଅପେକ୍ଷା ନୀଚଠାରୁ, ଉପରେ ସମାନଠାରୁ ଏବଂ ତାହାମଧ୍ୟ ଅସମ୍ଭବ ହେଲେ ବିନଷ୍ଟ ଧର୍ମ୍ମାଠାରୁ ଖାଦ୍ୟଦ୍ରବ୍ୟ ହରଣ କରିବ । ୪୦ । ଅତଏବ ଆମ୍ଭେ ପ୍ରାଣାବଗ୍ରାନ ସମୟରେ ଏହି ଚଣ୍ଡାଳ ଗୃହରୁ କୁକ୍‌କୁର ମାଂସ ହରଣ କରିବୁ । ଏଥିରେ ଚୌର୍ଯ୍ୟଦୋଷ ଦୃଷ୍ଟ ହୁଏ ନାହିଁ । ୪୧ ।

ହେ ଭାରତ ! ମହାମୁନି ବିଶ୍ବାମିତ୍ର ଏହିପରି ବୁଦ୍ଧି ଅବଲମ୍ବନ ପୂର୍ବକ ସେହି ଚଣ୍ଡାଳ ଗୃହରେ ଶୟନ କଲେ । ୪୨ । ଚଣ୍ଡାଳଗଣ ନିଦ୍ରିତ ହୁଅନ୍ତେ ଭଗବାନ୍ ମୁନି ଗାଢ଼ ରଜନୀ ନିରୀକ୍ଷଣ ପୂର୍ବକ ଶନୈଃ ଶନୈଃ ଉତ୍‌ଥିତ ହୋଇ କୁଟୀର ମଧ୍ୟରେ ପ୍ରବେଶ କଲେ । ୪୩ । ଅପ୍ରିୟଦର୍ଶନ ଚଣ୍ଡାଳ ଶ୍ଳେଷ୍ମାଚ୍ଛନ୍ନ ନୟନରେ ନିଦ୍ରିତ ପ୍ରାୟ ଅବସ୍ଥିତ ଥିଲା । ସେ ମୁନିଙ୍କୁ ମାଂସ ହରଣରେ ଉଦ୍ୟତ ଦେଖି ରକ୍ଷ ଓ ବିଭିନ୍ନ ସ୍ବରରେ କହିଲା । ୪୪ ।

ଚଣ୍ଡାଳ କହିଲା—ସ୍ବଜାତ ମାନେ ନିଦ୍ରିତ ହୋଇ ଅଛନ୍ତି, ଆମ୍ଭେ ଏକାକୀ ଜାଗରିତ ରହିଅଛୁଁ । ବର୍ତ୍ତମାନ କିଏ ଆମ୍ଭ ଗୃହରେ ପ୍ରବିଷ୍ଟ ହୋଇ ମାଂସ ହରଣ କରିବା ନିମିତ୍ତ ଦଣ୍ଡ ଉଦ୍‌ଘାଟନ କରୁଅଛ ? ସେ ନିଜକୁ ହତବୋଲି ଜ୍ଞାନ କରୁ । ୪୫ । ଅନନ୍ତର ବିଶ୍ବାମିତ୍ର ସହସା ଚୌର୍ଯ୍ୟ କାର୍ଯ୍ୟ ହେତୁ ଉଦ୍‌ବିଗ୍ନ ଓ ଭୀତ ହୋଇ ଲଜ୍ଜାକୁଳ ବଦନରେ ତାହାକୁ କହିଲେ—ହେ ଆୟୁଷ୍ମାନ୍ ! ଆମ୍ଭେ ବିଶ୍ବାମିତ୍ର ! ନିତାନ୍ତ କ୍ଷୁଧାର୍ତ୍ତ ହୋଇ ତୁମ୍ଭ ଗୃହକୁ ଆସିଅଛୁ । ହେ ସଦ୍‌ବୁଦ୍ଧେ ! ତୁମ୍ଭେ ଯଦି ସାଧୁଦର୍ଶୀ ଅଟ, ତେବେ ଆମ୍ଭଙ୍କୁ ବଧ କରନାହିଁ । ୪୬ ।

ଚଣ୍ଡାଳ ମହର୍ଷିଙ୍କର ଏହି କଥା ଶ୍ରବଣ କରି ସସମ୍ଭ୍ରମ ଚିତ୍ତରେ ଶଯ୍ୟାରୁ ଗାତ୍ରୋତ୍‌ଥାନପୂର୍ବକ ତାହାଙ୍କ ନିକଟକୁ ଆଗମନ କଲା ଏବଂ ନେତ୍ର ଯୁଗଳ ନିଃସୃତ ଅଶ୍ରୁଜଳକୁ ମାର୍ଜନ କରି ବହୁମାନ ପୂର୍ବକ କୃତାଞ୍ଜଳିବଦ୍ଧ ହସ୍ତରେ କୌଶିକଙ୍କୁ କହିଲା—ହେ ବ୍ରହ୍ମନ୍ ! ଏହି ରଜନୀରେ ଆପଣଙ୍କର କି କାର୍ଯ୍ୟ କରିବାକୁ ଇଚ୍ଛା ଅଛି ? । ୪୯ । ବିଶ୍ବାମିତ୍ର ଚଣ୍ଡାଳକୁ ସାନ୍ତ୍ୱନା କରି କହିଲେ—ଆମ୍ଭେ ନିତାନ୍ତ କ୍ଷୁଧିତ, ଅତଏବ ମୃତ ସଦୃଶ ହୋଇ ତୁମ୍ଭ ଗୃହରୁ କୁକ୍‌କୁର ଜଘନ୍ୟ ମାଂସ ଗ୍ରହଣ କରିବାକୁ ଆସିଅଛୁ । ଆମ୍ଭେ କ୍ଷୁଧିତ ହୋଇ ପାପାକ୍ରାନ୍ତ ହୋଇ ଅଛୁଁ । ଭୋଜନାର୍ଥୀ ବ୍ୟକ୍ତିର ଲଜ୍ଜା ରହେ ନାହିଁ । ବର୍ତ୍ତମାନ କ୍ଷୁଧା

ଅମ୍ଭଙ୍କୁ ଦୂଷିତ କରିଅଛୁ । ଆମ୍ଭେ କୁକ୍କୁର ମାଂସ ହରଣ କରିବୁଁ ।୫୧।
ଅମ୍ଭର ପ୍ରାଣ ଅବସନ୍ନ ହେଉଅଛୁ । କ୍ଷୁଧା ଅମ୍ଭର ବେଦଜ୍ଞାନକୁ ବିନଷ୍ଟ
କରିଅଛୁ । ଆମ୍ଭେ ଦୁର୍ବଳ, ନଷ୍ଟ ଚେତନ ଓ ଖାଦ୍ୟାଖାଦ୍ୟ ବିଚାର
ବିବର୍ଜିତ ହୋଇଅଛୁଁ । ୫୨ । ଚୌର୍ଯ୍ୟକାର୍ଯ୍ୟକୁ ଅଧର୍ମ ବୋଲି ଜାଣି
ସୁଦ୍ଧା ଆମ୍ଭେ କୁକ୍କୁର ମାଂସ ହରଣରେ ଉଦ୍ୟତ ହୋଇଅଛୁଁ । ଆମ୍ଭେ
ତୁମ୍ଭମାନଙ୍କର ପଲ୍ଲୀ ମଧ୍ୟରେ ପ୍ରତି ଗୃହରେ ପର୍ଯ୍ୟଟନ କରି ସୁଦ୍ଧା ଭିକ୍ଷା
ପାଇ ନାହୁଁ । ସୁତରାଂ ବର୍ତ୍ତମାନ ଅମ୍ଭର ଏହି ପାପକାର୍ଯ୍ୟରେ ପ୍ରବୃତ୍ତ
ହୋଇଅଛୁ । ଆମ୍ଭେ କୁକ୍କୁରର ଜଘନ ମାଂସକୁ ହରଣ କରିବୁଁ ।
ଭଗବାନ୍ ଅଗ୍ନି ଯେ କି ଦେବଗଣଙ୍କର ମୁଖ ସ୍ୱରୂପ ଅଟନ୍ତି ଓ ପୁରୋଧା
ଯେ କି କେବଳ ପବିତ୍ର ବସ୍ତୁକୁ ସହ୍ୟ କରିଥାନ୍ତି, ତାହାଙ୍କ ମଧ୍ୟ
ସମୟାନୁସାରେ ସର୍ବଭକ୍ଷକ ହେବାକୁ ହୁଏ । ସୁତରାଂ ଅମ୍ଭଙ୍କୁ ମଧ୍ୟ ଧର୍ମାନୁ-
ସାରେ ତଦ୍ରୂପ ବିବେଚନା କର ।

ଶୃଗାଳ କହିଲା—ହେ ମହର୍ଷେ । ଅମ୍ଭର ବାକ୍ୟ ଶ୍ରବଣ କରନ୍ତୁ ।
ଏବଂ ଶ୍ରବଣ କରି ଯେଉଁରି ଧର୍ମହାନି ନ ହୁଏ, ତଦ୍ରୂପ ଅନୁଷ୍ଠାନ
କରନ୍ତୁ । ହେ ମହାମୁନେ । ଆମ୍ଭେ ଆପଣଙ୍କୁ ଯାହା କହୁଅଛୁଁ ତାହା
ମଧ୍ୟ ଆପଣଙ୍କର ଧର୍ମ । ପଣ୍ଡିତମାନେ କୁକ୍କୁରକୁ ଚଣ୍ଡାଳଠାରୁ ଅପକୃଷ୍ଟ
ବୋଲି କହନ୍ତି । ତାହାର ଜଘନ ମାଂସ ଶରୀରର ଅଧମ ସ୍ଥାନସ୍ଥ ହେବାରୁ
ଅତ୍ୟନ୍ତ ନିକୃଷ୍ଟ ଅଟେ । ଅତଏବ ଆପଣ ଏହା ସାଧୁ ଆଚରଣ କରୁ
ନାହାନ୍ତି । ହେ ମହର୍ଷେ । ଶୃଗାଳ ଧନ, ବିଶେଷତଃ ଅଭକ୍ଷ ମାଂସ
ଅପହରଣ କରିବା ନିତାନ୍ତ ଧର୍ମ ବିଗର୍ହିତ କର୍ମ ଅଟେ । ଆପଣ ପ୍ରାଣ
ଧାରଣାର୍ଥ ଅନ୍ୟ କୌଣସି ସାଧୁ ଉପାୟ ଅବଲମ୍ବନ କରନ୍ତୁ । ହେ
ମହାମୁନେ । ମାଂସ ଲୋଭ ହେତୁରୁ ଆପଣଙ୍କର ତପସ୍ୟା ନଷ୍ଟ ନ
ହେଉ । ୫୯ । ବିହିତ ଧର୍ମକୁ ଜାଣି ଧର୍ମ ସଙ୍କର କରିବା କର୍ତ୍ତବ୍ୟ
ନୁହେ । ଆପଣ ଧାର୍ମିକମାନଙ୍କର ଅଗ୍ରଗଣ୍ୟ ଅଟନ୍ତି, ଧର୍ମକୁ ପରିତ୍ୟାଗ
କରନ୍ତୁ ନାହିଁ । ହେ ଭରତଶ୍ରେଷ୍ଠ । ମହାମୁନି ବିଶ୍ୱାମିତ୍ର ଶୃଗାଳ କର୍ତ୍ତୃକ
ଏହିପରି ଉକ୍ତ ଓ କ୍ଷୁଧାର୍ତ୍ତ ହୋଇ ତାହାକୁ ପୁନର୍ବାର ପ୍ରତ୍ୟୁତ୍ତର
କଲେ । ୬୧ ।

ଅମ୍ଭେ ନିରାହାରରେ ପର୍ଯ୍ୟଟନ କରି ଦୀର୍ଘକାଳ ଯାପନ କରିଅଛୁଁ ।
ଏବଂ ଅମ୍ଭର ପ୍ରାଣଧାରଣର ଅନ୍ୟ କୌଣସି ଉପାୟ ନାହିଁ । ୬୨ ।

ପ୍ରାଣାବସାନ ସମୟରେ ଯେ କୌଣସି କର୍ମ୍ମ ଦ୍ୱାରା ଜୀବିତ ଥିବା ଉଚିତ । ପରେ ସମର୍ଥ ହେଲେ ଧର୍ମ୍ମାଚରଣ କରିବୁଁ । ୬୩ । କ୍ଷତ୍ରିୟମାନଙ୍କର ଇନ୍ଦ୍ରଙ୍କ ସଦୃଶ ପାଳନ କରିବା ଧର୍ମ୍ମ ଅଟେ । ବ୍ରାହ୍ମଣମାନଙ୍କର ଅଗ୍ନି ସଦୃଶ ପବିତ୍ର ହେବା ଧର୍ମ୍ମ ଅଟେ । ବେଦରୂପ ବହ୍ନି ଆମ୍ଭର ବଳ ଅଟେ । ଅମ୍ଭେ ସେହି ବଳ ଅବଲମ୍ବନ ପୂର୍ବକ ଅଭକ୍ଷ୍ୟମାଂସକୁ ଭକ୍ଷଣ କରି କ୍ଷୁଧାଶାନ୍ତି କରିବୁଁ । ୬୪ । ଯେ କୌଣସି ଉପାୟ ଦ୍ୱାରା ଜୀବନ ଧାରଣ କରିବା ସକାଶେ ଯତ୍ନ କରିବା ଉଚିତ । ମରଣ ଅପେକ୍ଷା ଜୀବନ ଶ୍ରେୟ । ଜୀବିତ ଥିଲେ ପୁନର୍ବାର ଧର୍ମ ଆଚରଣ କରି ପାରିବ । ଅତଏବ ଅମ୍ଭେ ପ୍ରାଣଧାରଣାର୍ଥ ଜ୍ଞାନପୂର୍ବକ ଅଭକ୍ଷ୍ୟ ଭକ୍ଷଣରେ ଉଦ୍ୟୁକ୍ତ ହୋଇଅଛୁଁ । ତୁମ୍ଭେ ତାହାକୁ ଅନୁମୋଦନ କର । ୬୫ । ଅମ୍ଭେ ଜୀବିତ ଥିଲେ ଧର୍ମ୍ମ ଆଚରଣ କରିବୁଁ । ଏବଂ ଜ୍ୟୋତିଃ ପଦାର୍ଥ ଯେପରି ପ୍ରଗାଢ଼ ଅନ୍ଧକାରକୁ ବିନଷ୍ଟ କରେ ସେହିପରି ବିଦ୍ୟା ଓ ତପୋବଳ ଦ୍ୱାରା ସମସ୍ତ ଅଶୁଭକୁ ଖଣ୍ଡନ କରିବୁଁ । ୬୬ ।

ଚଣ୍ଡାଳ କହିଲା—ଅଖାଦ୍ୟ ମାଂସ ଭକ୍ଷଣ କଲେ ପରମାୟୁ ବୃଦ୍ଧି ହୁଏ ନାହିଁ । ପ୍ରାଣମାନ ମଧ୍ୟ ପ୍ରସନ୍ନ ହୁଅନ୍ତି ନାହିଁ ଓ ଅମୃତ ପାନ ସଦୃଶ ତୃପ୍ତି ଲାଭ ମଧ୍ୟ କରନ୍ତି ନାହିଁ । ଅତଏବ ଆପଣ ଅନ୍ୟ କୌଣସି ଭିକ୍ଷା ପ୍ରାର୍ଥନା କରନ୍ତୁ । କୁକ୍କୁର ମାଂସ ଭକ୍ଷଣରେ ମନୋନିବେଶ କରନ୍ତୁ ନାହିଁ, କାରଣ କୁକ୍କୁର ବ୍ରାହ୍ମଣମାନଙ୍କର ଅଭକ୍ଷ୍ୟ ପଦାର୍ଥ ଅଟେ । ୬୮ ।

ବିଶ୍ୱାମିତ୍ର କହିଲେ—ଏହି ଦୁର୍ଭିକ୍ଷ କାଳରେ ଅନ୍ୟ ମାଂସ ସୁଲଭ ନୁହେ । ଆମ୍ଭର ମଧ୍ୟ କୌଣସି ସମ୍ପତ୍ତି ନାହିଁ । ଅମ୍ଭେ କ୍ଷୁଧାର୍ତ୍ତ ଅନୁପାୟ ଓ ନିରାଶ ହୋଇଅଛୁଁ । ଅତଏବ ଏହି କୁକ୍କୁର ମାଂସକୁ ଷଡ଼ବିଧରସ ଆସ୍ୱାଦନ କରିବା ଉତ୍ତମ ବିବେଚନା କରୁଅଛୁଁ । ୬୯ ।

ଚଣ୍ଡାଳ କହିଲା—ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କର ଶଶକ ପ୍ରଭୃତି ପାଞ୍ଚୋଟି ପଞ୍ଚନଖ "ଶଶକଃ ଶଲ୍ୟ କୋଧୋଧା କୂର୍ମ୍ମଃଗଣ୍ଡଃଶ୍ଚୈବ ପଞ୍ଚମଃ" ପଶୁ ଭକ୍ଷ୍ୟ ଅଟନ୍ତି । ଏ ବିଷୟରେ ଆପଣମାନଙ୍କର ଶାସ୍ତ୍ର ପ୍ରମାଣ ଅଟେ । ଅତଏବ ଆପଣ ଅଭକ୍ଷ୍ୟ ଭକ୍ଷଣରେ ପ୍ରବୃତ୍ତ ହୁଅନ୍ତୁ ନାହିଁ । ୭୦ ।

ବିଶ୍ୱାମିତ୍ର କହିଲେ—ଅଗସ୍ତ୍ୟ ମୁନି କ୍ଷୁଧିତ ହୋଇ ବାତାପି ନାମକ ଦାନବକୁ ଭକ୍ଷଣ କରିଥିଲେ, ଅତଏବ ଅମ୍ଭେ ମଧ୍ୟ ଆପଦାପନ୍ନ ଓ କ୍ଷୁଧାର୍ତ୍ତ ହୋଇ କୁକ୍‌କୁରର ଜଘନ ମାଂସକୁ ଭକ୍ଷଣ କରିବୁ । ୭୧ ।

ଚଣ୍ଡାଳ କହିଲା—ଆପଣ ଅନ୍ୟ କୌଣସି ଭକ୍ଷ୍ୟ ଅନ୍ୱେଷଣ କରନ୍ତୁ । ଏ ସ୍ଥାନରେ ଈଦୃଶ ଅଭକ୍ଷ୍ୟ ଭକ୍ଷଣ କରି ପାରିବେ ନାହିଁ । ଏହା ଅବଶ୍ୟ ଆପଣଙ୍କର ଅକର୍ତ୍ତବ୍ୟ । ଏଣିକି ଯଦି ଏକାନ୍ତ ଇଚ୍ଛା ହୁଏ, ତେବେ କୁକ୍‌କୁର ମାଂସ ହରଣ କରି ପାରନ୍ତି । ୭୨ ।

ବିଶ୍ୱାମିତ୍ର କହିଲେ—ଅଗସ୍ତ୍ୟାଦି ଶିଷ୍ଟ ବ୍ୟକ୍ତିମାନେ ଧର୍ମାଚରଣ ବିଷୟରେ କାରଣ ଅଟନ୍ତି । ଅତଏବ ଅମ୍ଭେ ସେମାନଙ୍କ ଚରିତ୍ରକୁ ଅନୁସରଣ କରିବୁଁ । ପବିତ୍ର ସାମିଗ୍ରୀ ଭକ୍ଷଣ କରିବା ଅପେକ୍ଷା ଅମ୍ଭେ ଏହି କୁକ୍‌କୁର ମାଂସକୁ ଅତି ଉତ୍କୃଷ୍ଟ ଭକ୍ଷ୍ୟ ବୋଲି ବିବେଚନା କରୁଅଛୁଁ । ୭୩ ।

ଚଣ୍ଡାଳ କହିଲା—ଅସାଧୁ ବ୍ୟକ୍ତିଗଣ ଯାହା ଆଚରଣ କରି ଅଛନ୍ତି, ତାହା ସନାତନ ଧର୍ମ ନୁହେ । ବର୍ତ୍ତମାନ ଆପଣଙ୍କର ଏହି ଅକର୍ତ୍ତବ୍ୟ କାର୍ଯ୍ୟ କରିବା ଉଚିତ ନୁହେ । ଆପଣ ଛଳନା ଦ୍ୱାରା ସୁଦ୍ଧା ଅଶୁଭ କାର୍ଯ୍ୟ କରିବେ ନାହିଁ । ୭୪ । ବିଶ୍ୱାମିତ୍ର କହିଲେ—ଋଷି ହୋଇ କେହି ସାଧାରଣ ଲୋକଙ୍କର ଅସମ୍ମତ ପାପକୁ ଆଚରଣ କରନ୍ତି ନାହିଁ । କିନ୍ତୁ ବର୍ତ୍ତମାନ ଅମ୍ଭେ କୁକ୍‌କୁର ଓ ମୃଗ ଉଭୟଙ୍କୁ ପଶୁ ବୋଲି ସମାନ ଜ୍ଞାନ କରୁଅଛୁଁ । ଅତଏବ ଅମ୍ଭେ କୁକ୍‌କୁରର ଜଘନ ମାଂସକୁ ଭକ୍ଷଣ କରିବୁଁ । ୭୫ ।

ଚଣ୍ଡାଳ କହିଲା—ବାତାପି ବ୍ରାହ୍ମଣମାନଙ୍କୁ ଭକ୍ଷଣ କରିଥିଲା, ଏଥିପାଇଁ ମହର୍ଷି ଅଗସ୍ତ୍ୟ ବ୍ରାହ୍ମଣମାନଙ୍କର ପ୍ରାର୍ଥନାନୁସାରେ ତାହାକୁ ଭକ୍ଷଣ କରିଥିଲେ । ତାଦୃଶ ସ୍ଥଳେ ନରମାଂସ ଭକ୍ଷଣ କରିବା ଦୋଷା-ବହ ନୁହେ । ଯାହାକୁ ପାପସ୍ପର୍ଶ କରେ ନାହିଁ, ତାହାକୁ ଧର୍ମ ବୋଲିଯାଏ ଏବଂ ସର୍ବ ପ୍ରକାର ଉପାୟ ଦ୍ୱାରା ବ୍ରାହ୍ମଣମାନଙ୍କୁ ରକ୍ଷା କରିବା ଉଚିତ । ୭୬ ।

ବିଶ୍ୱାମିତ୍ର କହିଲେ—ଆମ୍ଭେ ବ୍ରାହ୍ମଣ ଅଟୁଁ । ଆମ୍ଭର ଦେହ ପରମ ପ୍ରିୟତମ ଓ ପୂଜ୍ୟତମ ମିତ୍ର ଅଟେ । ସେହି ଦେହ ରକ୍ଷଣାର୍ଥ ଏହି ଅଭକ୍ଷ୍ୟ ମାଂସ ହରଣାର୍ଥ ଇଚ୍ଛୁକ ହୋଇଅଛୁଁ । ଏଣୁ ଈଦୃଶ ନୃଶଂସ ଶୃଗାଳଗଣଙ୍କୁ ମଧ୍ୟ ଭୟ କରୁନାହୁଁ । ୭୭ ।

ଶୃଗାଳ କହିଲା—ହେ ବିଦ୍ୱନ୍ । ମାନବଗଣ ବରଂ ନିଜର ଜୀବନ ବିସର୍ଜନ କରନ୍ତି, ତଥାପି କୌଣସି ଅଭକ୍ଷ୍ୟ ବସ୍ତୁ ଭକ୍ଷଣରେ ପ୍ରବୃତ୍ତ ହୁଅନ୍ତି ନାହିଁ । ସେମାନେ କ୍ଷୁଧାକୁ ଜୟ କରି ଇହଲୋକରେ ସମସ୍ତ କାମନା ପ୍ରାପ୍ତ ହୁଅନ୍ତି । ଅତଏବ ଆପଣ ମଧ୍ୟ କ୍ଷୁଧାର ବେଗକୁ ସହ୍ୟକରି ଇହଲୋକରେ ସମସ୍ତ କାମନା ପ୍ରାପ୍ତ ହେଉନ୍ତୁ । ୭୮ ।

ବିଶ୍ୱାମିତ୍ର କହିଲେ—ପାପକର୍ମ କରି ପ୍ରାଣ ପରିତ୍ୟାଗ କଲେ ପରଲୋକରେ ସଂଶୟ ଉପସ୍ଥିତ ହୁଏ, ଏହା ସତ୍ୟ; କିନ୍ତୁ କର୍ମ ସବୁ ବିନଷ୍ଟ ହୋଇଗଲେ କୌଣସି ସଂଶୟ ଥାଏ ନାହିଁ । ଆମ୍ଭେ ଶାନ୍ତଚିତ୍ତ ହୋଇ ସତତ ବ୍ରତାଚରଣ କରିଥାଉଁ, ଅତଏବ ତପସ୍ୟା ଦ୍ୱାରା ଅଭକ୍ଷ୍ୟ ଭକ୍ଷଣ ରୂପ ପାପରୁ ନିଷ୍କୃତି ପାଇବୁଁ । ବର୍ତ୍ତମାନ ଧର୍ମ୍ମ ଆଚରଣର ପ୍ରଧାନ ସାଧନ ଯେଉଁ ଶରୀର ତାହାକୁ ରକ୍ଷା କରିବା କର୍ତ୍ତବ୍ୟ । ଏଣୁ ଆମ୍ଭେ ଅଭକ୍ଷ୍ୟ ଭକ୍ଷଣରେ ପ୍ରବୃତ୍ତ ହୋଇଅଛୁଁ । ୭୯ । ବିବେକ ଶକ୍ତିସମ୍ପନ୍ନ ବ୍ୟକ୍ତିଗଣଙ୍କ ନିକଟରେ ଏହି ଅଭକ୍ଷ୍ୟ ଭକ୍ଷଣ ପବିତ୍ର କର୍ମରୂପରେ କୀର୍ତ୍ତିତ ହୁଏ । ଏବଂ ମୂଢ଼ ବ୍ୟକ୍ତିମାନେ ଆପଦ କାଳରେ କୁକ୍କୁର ମାଂସକୁ ଅଭକ୍ଷ୍ୟ ବୋଲି କହନ୍ତି । ଆମ୍ଭେ ଜୀବନ ସଂଶୟ ସମୟରେ ଯଦିଚ ଏହି ଅସତ୍ କାର୍ଯ୍ୟ କରିବୁଁ, ତଥାପି ତୁମ୍ଭ ସଦୃଶ ଶୃଗାଳ ହେବୁଁ ନାହିଁ । କାରଣ ତପଶ୍ଚାରଣ ଦ୍ୱାରା ଉକ୍ତ ଦୋଷରୁ ନିଷ୍କୃତି ଲଭ କରିବୁ । ୮୦ ।

ଶୃଗାଳ କହିଲା—ଆମ୍ଭର ନିଶ୍ଚୟ ବିବେଚନା ହେଉଅଛି ଯେ ଆପଣଙ୍କୁ ଏହି ଅକାର୍ଯ୍ୟରୁ ରକ୍ଷାକରିବା ଆମ୍ଭର ଉଚିତ । ବ୍ରାହ୍ମଣ ଦୁଷ୍କର୍ମ କଲେ ତାହାଙ୍କଠାରେ ବ୍ରାହ୍ମଣତ୍ୱ ଥାଏ ନାହିଁ । ଏହି କାରଣରୁ ଆମ୍ଭେ ଆପଣଙ୍କୁ ନିବାରଣ କରୁଅଛୁଁ । ୮୧ ।

ବିଶ୍ୱାମିତ୍ର କହିଲେ—ଭେକଗଣ ଉଚ୍ଚସ୍ୱରରେ ଚିତ୍କାର କଲେ ମଧ୍ୟ ଗୋ ସମୂହ କଦାପି ଜଳପାନ କରିବାରୁ ବିରତ ହୁଅନ୍ତିନାହିଁ । ତୁମ୍ଭର

ଧର୍ମୋପଦେଶ କରିବାକୁ କୌଣସି ଅଧିକାର ନାହିଁ, ଅତଏବ ତୁମ୍ଭେ ଆମ୍ଭ ପ୍ରକାଶ କରନାହିଁ । ୮୨ ।

ଚଣ୍ଡାଳ କହିଲା—ହେ ଦ୍ୱିଜବର ! ଆପଣଙ୍କ ପ୍ରତି ଆମ୍ଭର କୃପା ହୋଇଅଛି । ଏଥିପାଇଁ ଆମ୍ଭେ ସୁହୃଦଭାବରେ ଆପଣଙ୍କୁ ଅନୁଶାସନ କରୁଅଛୁଁ । ଅତଏବ ଏହାକୁ ଯଦି ଆପଣ କଲ୍ୟାଣକର ବିବେଚନା କରନ୍ତି, ତାହାହେଲେ ଏହା କରନ୍ତୁ । କିନ୍ତୁ ଲୋଭବଶତଃ ପାପକର୍ମ କରିବେ ନାହିଁ । ୮୩ ।

ବିଶ୍ୱାମିତ୍ର କହିଲେ—ତୁମ୍ଭେ ଯଦି ଆମ୍ଭର ସୁହୃତ ଓ ସୁଖାର୍ଥୀ ହୁଅ, ତେବେ ଆମ୍ଭଙ୍କୁ ଏହି ଆପଦରୁ ଉଦ୍ଧାର କର । ଆମ୍ଭେ କୁକ୍କୁରର ଜଘନ ମାଂସକୁ ପରିତ୍ୟାଗ କରି ଆପଣଙ୍କୁ ଧର୍ମତଃ ରକ୍ଷିତା ବୋଲି ଜ୍ଞାନ କରିବୁଁ । ୮୪ ।

ଚଣ୍ଡାଳ କହିଲା—ଏହି କୁକ୍କୁର ମାଂସ ଆମ୍ଭ ନିଜର ଖାଦ୍ୟ ଅଟେ । ଏହାକୁ ଆପଣଙ୍କୁ ଦାନ କରି ନ ପାରେ ଏବଂ ଆମ୍ଭ ସାକ୍ଷାତରେ ଆପଣଙ୍କର ଏହାକୁ ହରଣ କରିବା ମଧ୍ୟ ଆମ୍ଭଦ୍ୱାରା ଉପେକ୍ଷିତ ହୋଇ ପାରିବ ନାହିଁ । ଆମ୍ଭେ ଏହାକୁ ଦାନ କଲେ ଏବଂ ଆପଣ ବ୍ରାହ୍ମଣ ହୋଇ ଏହାକୁ ଗ୍ରହଣ କଲେ, ଆମ୍ଭେ ଦୁହେଁଯାକ ନରକକୁ ଗମନ କରିବା । ୮୫ ।

ବିଶ୍ୱାମିତ୍ର କହିଲେ—ଆମ୍ଭେ ଅଦ୍ୟ ଯଦି ଏହି ପାପକର୍ମାନୁଷ୍ଠାନ ପୂର୍ବକ ଦେହ ରକ୍ଷା କରି ଜୀବିତ ଥିବୁଁ, ତେବେ ଭବିଷ୍ୟତ କାଳରେ ପରମ ପବିତ୍ର ଧର୍ମ ଆଚରଣ କରିବୁଁ । ଅନଶନ ଦ୍ୱାରା ଶରୀର ପରିତ୍ୟାଗ, କିମ୍ବା ଅଭକ୍ଷ୍ୟ ଭକ୍ଷଣ ଦ୍ୱାରା ଦେହ ଧାରଣ ଏହି ଉଭୟ ମଧ୍ୟରେ କେଉଁଟି ଗୁରୁତର, ତାହା ତୁମ୍ଭେ କୁହ ।

ଚଣ୍ଡାଳ କହିଲା—ବଂଶ ପରମ୍ପରା ପ୍ରଚଳିତ ଧର୍ମ ସମ୍ପାଦନ ବିଷୟରେ ଆତ୍ମା ସାକ୍ଷୀ ଅଟେ । ଅତଏବ ଏଥିରେ ପାପ ଅଛି କି ନା ତାହା ଆପଣ ଜାଣନ୍ତି । ଯେଉଁ ବ୍ୟକ୍ତି କୁକ୍କୁର ମାଂସକୁ ଖାଦ୍ୟବୋଲି ଆଦର କରନ୍ତି, ବୋଧହୁଏ ତାଙ୍କର କୌଣସି ବସ୍ତୁ ବର୍ଜନୀୟ ନୁହେ । ୮୬ ।

ବିଶ୍ୱାମିତ୍ର କହିଲେ—ଅଭକ୍ଷ୍ୟ ବସ୍ତୁ ଗ୍ରହଣ କରିବାରେ କିମ୍ବା ଭୋଜନ କରିବାରେ ନିଶ୍ଚୟ ପାପ ଅଛି, କିନ୍ତୁ ପ୍ରାଣାତ୍ୟୟ କାଳରେ ତାହା ଦୋଷାବହ ହୁଏ ନାହିଁ । ଯହିଁରେ ହିଂସା ଓ ମିଥ୍ୟା ବ୍ୟବହାର ନାହିଁ ଏବଂ ଯେଉଁ କର୍ମ କଲେ ଜନ ସମାଜରେ ନିନ୍ଦନୀୟ ହେବାକୁ ହୁଏ ନାହିଁ, ତାଦୃଶ ଅଭକ୍ଷ୍ୟ ଭକ୍ଷଣ ଗୁରୁତର ପାପର କାରଣ ନୁହେ । ୮୮ ।

ଚଣ୍ଡାଳ କହିଲା—ଯଦି ଅଖାଦ୍ୟ ଭକ୍ଷଣ ଦ୍ୱାରା କେବଳ ପ୍ରାଣ ରକ୍ଷା କରିବା ଆପଣଙ୍କର ପ୍ରଧାନ କାରଣ ହେଲା, ତେବେ ବେଦ ଓ ଆର୍ଯ୍ୟଧର୍ମ ଆପଣଙ୍କଠାରେ କିଛି ନୁହେଁ । ହେ ଦ୍ୱିଜେନ୍ଦ୍ର ! ଆପଣ ଅଭକ୍ଷ୍ୟ ଭକ୍ଷଣରେ ଆଗ୍ରହ ପ୍ରକାଶ କରୁଥିବା ସ୍ଥଳେ ଏହା ସ୍ପଷ୍ଟ ପ୍ରତିପନ୍ନ ହେଉଅଛି ଯେ ଖାଦ୍ୟାଖାଦ୍ୟ ବସ୍ତୁମାନରେ କୌଣସି ଦୋଷ ନାହିଁ । ୮୯ ।

ବିଶ୍ୱାମିତ୍ର କହିଲେ—ଭୋଜନ କଲେ ଅତିଶୟ ପାପ ହୁଏ ବୋଲି ବିବେଚନା କରାଯାଏ ନାହିଁ । ସୁରାପାନ କରି ଲୋକେ ଯେ ପତିତ ହୁଅନ୍ତି, ତାହା କେବଳ ଶାସ୍ତ୍ରର ଶାସନ ମାତ୍ର । ନିଷିଦ୍ଧ ମୈଥୁନାଦି ପାପ କାର୍ଯ୍ୟ ମାତ୍ର ଯେ ପୁଣ୍ୟ ହାନି କରନ୍ତି, ତାହା ନୁହେ । ୯୦ ।

ଚଣ୍ଡାଳ କହିଲା—ନୀଚ ଜାତି ଚଣ୍ଡାଳର ଗୃହରୁ ଚୌର୍ଯ୍ୟବୃତ୍ତି ଦ୍ୱାରା ଆଗ୍ରହାତିଶୟ ସହିତ ଯେ କୁକ୍କୁର ମାଂସ ହରଣ କରନ୍ତି, ସେହି ବିଦ୍ୱାନ ବ୍ୟକ୍ତିଙ୍କର ସଚ୍ଚରିତତା ଥାଏ ନାହିଁ । ଏବଂ ପରିଶେଷରେ ଅବଶ୍ୟ ତାହାଙ୍କୁ ଅନୁତାପିତ ହେବାକୁ ହୁଏ ।

ଭୀଷ୍ମ କହିଲେ—ଚଣ୍ଡାଳ ତତ୍କାଳରେ ମହର୍ଷି ବିଶ୍ୱାମିତ୍ରଙ୍କୁ ଏହିପରି କହି ନିବୃତ୍ତ ହେଲା । ବୁଦ୍ଧିମାନ ବିଶ୍ୱାମିତ୍ର ମଧ୍ୟ କୁକ୍କୁରର ଜଘନ ମାଂସକୁ ହରଣ କରି ପ୍ରସ୍ଥାନ କଲେ । ଅନନ୍ତର ସେହି ମହାମୁନି ଜୀବିତାର୍ଥୀ ହୋଇ କୁକ୍କୁର ମାଂସ ଗ୍ରହଣ ପୂର୍ବକ ବନ ମଧ୍ୟରେ ସପରିବାରରେ ତାହାକୁ ଭୋଜନ କରିବାର ଇଚ୍ଛା କଲେ । ୯୩ । ପରିଶେଷରେ ସେ ଭାବିଲେ ଯେ ଅଗ୍ରେ ବିଧାନାନୁସାରେ ଦେବଗଣଙ୍କୁ ସନ୍ତାପିତ କରି ପରେ ଇଚ୍ଛାନୁସାରେ ଏହି କୁକୁର ମାଂସକୁ ଭକ୍ଷଣ କରିବୁଁ । ମୁନି ଏହିପରି ସ୍ଥିର

କରି ବ୍ରହ୍ମ ବିଧିଦ୍ୱାରା ଅଗ୍ନି ଆହରଣ ପୂର୍ବକ ଐନ୍ଦ୍ରାଗ୍ନେୟ ବିଧାନ ଦ୍ୱାରା ସ୍ୱୟଂ ଚରୁ ପାକ କଲେ । ହେ ଭାରତ ! ଅନନ୍ତର ସେ ବିଧାନାନୁସାରେ ଭାଗ୍ୟକ୍ରମେ ଇନ୍ଦ୍ରାଦି ଦେବଗଣଙ୍କୁ ଆହ୍ୱାନ ପୂର୍ବକ ଦୈବ ଓ ପୈତ୍ର କର୍ମ ଆରମ୍ଭ କଲେ । ଏମନ୍ତ ସମୟରେ ଦେବରାଜ ପ୍ରଜାଗଣଙ୍କୁ ସଞ୍ଜୀବିତ କରି ପ୍ରଚୁର ବାରି ବର୍ଷଣ କଲେ । ତଦ୍ଦ୍ୱାରା ଔଷଧି ସବୁ ଉତ୍ପନ୍ନ ହେଲେ । ଭଗବାନ ବିଶ୍ୱାମିତ୍ର ତପସ୍ୟା ଦ୍ୱାରା ପାପ ଦହନ କରି ବହୁକାଳ ପରେ ପରମ ସିଦ୍ଧିକୁ ପ୍ରାପ୍ତ ହେଲେ । ସେ ମେଧ୍ୟ ଅଚବ୍ଧ କାର୍ଯ୍ୟର ଉପସଂହାର କରି ଚାଣ୍ଡାଳ ଚରୁର ଅସ୍ୱାଦନ ଗ୍ରହଣ ନକରି ମଧ୍ୟ ଦେବଗଣ ଓ ପିତୃ-ଗଣଙ୍କୁ ସନ୍ତୋଷିତ କରିଥିଲେ । ୯୯ । ବିଦ୍ୱାନ ବ୍ୟକ୍ତି ଆପଦାପନ୍ନ ହୋଇ ଜୀବନ ଧାରଣର ଅଭିଳାଷୀ ହେଲେ ଏହିପରି ଅଦୀନ ଚିତ୍ତରେ ଯେ କୌଣସି ଉପାୟ ଦ୍ୱାରା ଦୁଃଖିତାତ୍ମାକୁ ଉଦ୍ଧୃତ କରିବେ । ୧୦୦ । ସତତ ଈଦୃଶ ବୁଦ୍ଧି ଅବଲମ୍ବନ ପୂର୍ବକ ଜୀବିତ ଥିବା ଉଚିତ । ପୁରୁଷ ଜୀବିତ ଥିଲେ ପୁଣ୍ୟସଞ୍ଚୟ ଓ କଲ୍ୟାଣ ଭୋଗ କରି ପାରନ୍ତି । ୧୦୧ । ଅତଏବ ହେ କୁନ୍ତୀନନ୍ଦନ ! ବିଦ୍ୱାନ ବ୍ୟକ୍ତିଙ୍କର ଧର୍ମାଧର୍ମ ନିର୍ଣ୍ଣୟ ବିଷୟରେ କୃତବୁଦ୍ଧି ଅବଲମ୍ବନ ପୂର୍ବକ ଇହଲୋକରେ ଜୀବନ ଯାପନ କରିବା ଉଚିତ । ୧୦୨ ।

## ଅଧ୍ୟାୟ—୧୪୨

ଯୁଧିଷ୍ଠିର କହିଲେ—ଆପଣ ଅନୃତ ପ୍ରାୟ ଅଶ୍ରଦ୍ଧେୟ ଯେଉଁ ଘୋରତର କାର୍ଯ୍ୟକୁ ମହତ ବ୍ୟକ୍ତିମାନଙ୍କର କର୍ତ୍ତବ୍ୟ ବୋଲି ନିର୍ଦ୍ଦେଶ କଲେ, ତାହା ଶ୍ରବଣ କରି ଦସ୍ୟୁମାନଙ୍କର କଣ କର୍ତ୍ତବ୍ୟ ଏବଂ ଆମ୍ଭର ବା କଣ ପରିହର୍ତ୍ତବ୍ୟ ଏହା ଚିନ୍ତା ପୂର୍ବକ ବିଷର୍ଣ୍ଣ ଓ ମୋହାଚ୍ଛନ୍ନ ହେଉଅଛୁଁ । ଅମ୍ଭେ ଚିତ୍ତକୁ ସାନ୍ତ୍ୱନା କରି କୌଣସି ଉପାୟରେ ମଧ୍ୟ ଅଧ୍ୟବସାୟ ଲାଭ କରିବାକୁ ସମର୍ଥ ହେଉ ନାହୁଁ । ଅତଏବ ଅମ୍ଭେ ଈଦୃଶ ଧର୍ମାଚରଣ କରିବାକୁ ଅଶକ୍ତ ଅଟୁଁ । ୨ ।

ଭୀଷ୍ମ କହିଲେ—ଅମ୍ଭେ ବେଦାଗମାଦି ଶାସ୍ତ୍ର ଶ୍ରବଣ କରି ତୁମ୍ଭକୁ ଏହିପରି ଧର୍ମ ଆଚରଣ କରିବା ନିମିତ୍ତ ଉପଦେଶ କରୁନାହୁଁ । କିନ୍ତୁ ଆପତ୍କାଳରେ ଈଦୃଶ ଧର୍ମ ଆଚରଣ ନ କଲେ, ଅନେକ ଦୋଷ ଘଟେ । ଏଥିନିମିତ୍ତ କବିଗଣ ନିଜର ବୁଦ୍ଧି କୌଶଳ ଦ୍ୱାରା ସୁନ୍ଦର ରୂପେ ଏହା

କଳ୍ପନା କରି ଅଛନ୍ତି । ୩ । କୋକିଳ, ବରାହ, ସିଂହ ପ୍ରଭୃତିଙ୍କ ଠାରୁ ଶିକ୍ଷାଲାଭ ପୂର୍ବକ ଯେତେବେଳେ ଯେଉଁ ବିଷୟରେ ଏହି ବୁଦ୍ଧି ପ୍ରବର୍ତ୍ତିତ ହେବ, ତେତେବେଳେ ତାହା କରିବ । ଧର୍ମର ଏକଦେଶ ମାତ୍ର ଅବଲମ୍ବନ କରିବା ଉଚିତ ନୁହେ । ଭୂପତିଙ୍କର ବହୁବିଧ ବୁଦ୍ଧି ଧାରଣ କରିବା ବିଧେୟ । ୪ ।

ହେ କୌରବ୍ୟ । ବୁଦ୍ଧି ପ୍ରାଣିଙ୍କ ଧର୍ମକୁ ଏବଂ ସାଧୁମାନଙ୍କର ଆଚରଣକୁ ସର୍ବଦା ବିଦିତ ହେବ । ଆମ୍ଭର ବାକ୍ୟ ସର୍ବଦା ଏହାହିଁ ପ୍ରତିପନ୍ନ କରୁଅଛୁ ଜାଣିବ । ୫ । ନୃପତିମାନେ ନିଜ ନିଜ ବୁଦ୍ଧି ପ୍ରଭାବ ଦ୍ୱାରା ବିଜୟୀ ହୁଅନ୍ତି । ଅତଏବ ବୁଦ୍ଧିବଳ ଅବଲମ୍ବନ ପୂର୍ବକ ଧର୍ମ ସଂସ୍କାରରେ ପ୍ରବୃତ୍ତ ହେବା ବିଧେୟ । ରାଜାଙ୍କର ଧର୍ମ ବହୁ ଶାଖା ବିଶିଷ୍ଟ ଅଟେ, ଅତଏବ ତାହାର ଏକଦେଶ ଦ୍ୱାରା ବ୍ୟବହାର କରିବା ଉଚିତ ନୁହେ । ଅଧ୍ୟୟନ କାଳରେ ଉତ୍ତମ ରୂପେ ଧର୍ମ ଶିକ୍ଷା ନ କଲେ ବୁଦ୍ଧି ମାର୍ଜିତ ହୁଏ ନାହିଁ । ଦୁର୍ବଳ ବ୍ୟକ୍ତି ଏକ ଶାଖା ଧର୍ମ ଦ୍ୱାରା କୌଣସି କାର୍ଯ୍ୟ କରିବାର ସମର୍ଥ ହୁଅନ୍ତି ନାହିଁ । ୬ ।

ହେ ଭାରତ ! ଏକମାତ୍ର ଧର୍ମ କେତେବେଳେ ବା ଧର୍ମ, କେତେବେଳେ ଅବା ଅଧର୍ମ ରୂପରେ ପ୍ରତିଭାତ ହୁଏ । ଯେଉଁ ବ୍ୟକ୍ତି ତଦ୍‌ବିଷୟରେ ଅନଭିଜ୍ଞ ସେ ଦ୍ୱିବିଧ ପଥରେ ଅବତୀର୍ଣ୍ଣ ହୋଇ ସଂଶୟାପନ୍ନ ହୁଅନ୍ତି । ଅତଏବ ବୁଦ୍ଧି ଅନୁସାରେ ଏହି ଦ୍ୱୈଧକୁ ପୂର୍ବରୁ ଅବଗତ ହେବା ଉଚିତ । ପରିଶେଷରେ ଯାହା କରିବାକୁ ହେବ ଅଗ୍ରେ ତାହା ନିଶ୍ଚୟ କରି ବୁଦ୍ଧିମାନ ନରପତି ପ୍ରଜାଗଣଙ୍କ ନିକଟରୁ ଛଅଭାଗ କର ଗ୍ରହଣ କରିବେ । ଆପଦ କାଳରେ ତହିଁରୁ ଅଧିକ ଗ୍ରହଣ କରିବା ଅବିଧେୟ ନୁହେଁ । ମୂଢ଼ ଲୋକେ ଈଦୃଶ ରାଜାଙ୍କୁ ଅଧର୍ମୀ ବୋଲି କହନ୍ତି । ପ୍ରାଜ୍ଞମାନଙ୍କ ଦୃଷ୍ଟିରେ ସେ ଅଧର୍ମୀ ହୁଅନ୍ତି ନାହିଁ । କେହି କେହି ଯଥାର୍ଥ ଜ୍ଞାନୀ, କେହି କେହି ଅବା ବୃଥା ଜ୍ଞାନ ସମ୍ପନ୍ନ ହୁଅନ୍ତି । ଏମାନଙ୍କୁ ଯଥାର୍ଥ ରୂପେ ବିଦିତ ହୋଇ ବୁଦ୍ଧିମାନ ଲୋକେ ସାଧୁମାନଙ୍କର ମତକୁ ଗ୍ରହଣ କରନ୍ତି ।

ଧର୍ମବିଦ୍ୱେଷୀ ଅର୍ଥଜ୍ଞାନବିହୀନ ମନୁଷ୍ୟମାନେ ଶାସ୍ତ୍ର ନିକରର ନିନ୍ଦା ଓ ଅପ୍ରାମାଣ୍ୟକୁ ପ୍ରକଟନ କରନ୍ତି । ଯେଉଁମାନେ ଶାସ୍ତ୍ର ଓ ଆଗମର ନିନ୍ଦା ପ୍ରସଙ୍ଗରେ କେବଳ ଜୀବିକା ନିର୍ବାହାର୍ଥ ବିଦ୍ୟା ଶିକ୍ଷା କରି ଯଶ

ଆକାଂକ୍ଷା କରନ୍ତି, ସେମାନେ କେବଳ ଧର୍ମଦ୍ୱେଷୀ ଓ ପାପିଷ୍ଠ ଅଟନ୍ତି । ଶାସ୍ତ୍ରଜ୍ଞାନ ବିହୀନ ଅଯୁକ୍ତ ସମ୍ପନ୍ନ ଲୋକମାନଙ୍କ ପରି ଅପରିଣିତ ବୁଦ୍ଧି ମୂର୍ଖମାନେ ଆପଣା ଆପଣା କର୍ତ୍ତବ୍ୟ କର୍ମ ନିର୍ବାହ କରିବାକୁ ଜାଣନ୍ତି ନାହିଁ । ୧୩ । ଶାସ୍ତ୍ରର ଦୋଷଦର୍ଶୀ ଲୋକମାନେ ଶାସ୍ତ୍ର ସମୂହର ନିନ୍ଦା କରନ୍ତି । ଶାସ୍ତ୍ରର ଅର୍ଥକୁ ବିଜ୍ଞାତ ହେଲେ ହେଁ ସେମାନଙ୍କଠାରେ ତାହା ସାଧୁ ଭାବରେ ପ୍ରତିପନ୍ନ ହୁଏ ନାହିଁ । ୧୪ । ସେମାନେ କୃତବିଦ୍ୟ ବ୍ୟକ୍ତିଗଣଙ୍କ ପରି ବାକ୍ୟରୂପ ଅସ୍ତ୍ର ଓ ଶର ଧାରଣ ପୂର୍ବକ ପରବିଦ୍ୟାର ନିନ୍ଦାବାଦ ଦ୍ୱାରା ନିଜ ବିଦ୍ୟାକୁ ପ୍ରକଟନ କରନ୍ତି । ୧୫ ।

ହେ ଭରତ । ତୁମ୍ଭେ ଈଦୃଶ ଲୋକମାନଙ୍କୁ ବିଦ୍ୟା ବଣିକ ଓ ରାକ୍ଷସ ପ୍ରାୟ ଜ୍ଞାନ କରିବ । ସେମାନେ ସାଧୁ ବୃନ୍ଦଙ୍କର ବିହିତ ଧର୍ମକୁ ଛଳପୂର୍ବକ ପରିତ୍ୟାଗ କରନ୍ତି । ୧୬ । ଅମ୍ଭେମାନେ ଶୁଣିଅଛୁଁ ଯେ ବାକ୍ୟ ବା ବୁଦ୍ଧି ଦ୍ୱାରା କେବଳ ଧର୍ମୋଚ୍ଚାରଣ କଲେ ଧର୍ମ ହୁଏ ନାହିଁ । ଦେବରାଜ ସ୍ୱୟଂ ବୃହସ୍ପତିଙ୍କ ସମ୍ଭନ୍ଧ ଜ୍ଞାନକୁ କହିଥିଲେ । ୧୭ । ବର୍ତ୍ତମାନ ଅମ୍ଭେ ବିନାଶ କାରଣରେ କୌଣସି କଥା କହୁନାହୁଁ । କୌଣସି ବ୍ୟକ୍ତି ଶାସ୍ତ୍ରଜ୍ଞାନ ସମ୍ପନ୍ନ ହୋଇ ସୁଦ୍ଧା ତଦନୁସାରେ ଧର୍ମାଚରଣ କରନ୍ତି ନାହିଁ । କୌଣସି କୌଣସି ପଣ୍ଡିତମାନେ ଲୋକଯାତ୍ରା ବିଧାନକୁ ଧର୍ମ ବୋଲି କହନ୍ତି । ପଣ୍ଡିତ ବ୍ୟକ୍ତି ସ୍ୱୟଂ ସାଧୁଗଣଙ୍କର ଅନୁଷ୍ଠିତ ଧର୍ମକୁ ଆଚରଣ କରିବେ । ୧୯ ।

ହେ ଭାରତ । ପ୍ରାଜ୍ଞ ବ୍ୟକ୍ତି ଯଦି କ୍ରୋଧ, ମୋହ ଓ ଅଜ୍ଞାନ-ବଶତଃ ଶାସ୍ତ୍ରୀୟ ଉପଦେଶ ପ୍ରଦାନ କରନ୍ତି, ତେବେ ତାହା ଜନ ସମାଜର ଗ୍ରହଣୀୟ ହୁଏ ନାହିଁ ଏବଂ ଯେଉଁମାନେ ଶାସ୍ତ୍ରାର୍ଥଦର୍ଶିନୀ ବୁଦ୍ଧିକୁ ଧାରଣ କରନ୍ତି, ସେମାନଙ୍କଠାରେ ମଧ୍ୟ ଉକ୍ତ ଉପଦେଶ ପ୍ରଶଂସନୀୟ ହୁଏ ନାହିଁ । ବରଂ ସେମାନେ ଅଳ୍ପଜ୍ଞାନସମ୍ପନ୍ନ ବ୍ୟକ୍ତିର ଜ୍ଞାନ ଗର୍ଭ ହେଲେ ତାହାକୁ ସାଧୁଜ୍ଞାନ କରନ୍ତି । ୨୧ । ଯୁକ୍ତି ଦ୍ୱାରା ଯେଉଁ ଶାସ୍ତ୍ର ନଷ୍ଟ ହୁଏ, ତାହା ଶାସ୍ତ୍ର ମଧ୍ୟରେ ଗଣ୍ୟ ନୁହେଁ । ଶୁକ୍ରାଚାର୍ଯ୍ୟ ଏହି ସଂଶୟ ଛେଦନ ବାକ୍ୟକୁ ଦାନବଗଣଙ୍କୁ କହିଥିଲେ । ୨୨ । ସନ୍ଦେହଯୁକ୍ତ ଜ୍ଞାନ ରହିବା ନ ରହିବା ସମାନ । ତାଦୃଶ ଜ୍ଞାନ ଦ୍ୱାରା ଯେଉଁ ଧର୍ମ ହୁଏ, ତାହାର ମୂଳ ଚ୍ଛେଦନ କରିବା ଏବଂ ଅମ୍ଭର ଏହିସବୁ ଉପଦେଶକୁ ସ୍ୱୀକାର କରିବା ତୁମ୍ଭର ଅବଶ୍ୟ କର୍ତ୍ତବ୍ୟ । ତୁମ୍ଭେ ଯେଉଁ ଉଗ୍ର କର୍ମ ସାଧନ କରିବା ନିମିତ୍ତ

ଜନ୍ମ ଗ୍ରହଣ କରିଅଛ ତାହାକି ତୁମ୍ଭର ମନରେ ନାହିଁ ? ଆମ୍ଭେ ଯୁଦ୍ଧ ସଂଗ୍ରହରେ ପ୍ରବୃତ୍ତ ହୋଇ କେତେକେତେ ଐଶ୍ୱର୍ଯ୍ୟଶାଳୀ କ୍ଷତ୍ରିୟମାନଙ୍କୁ ସ୍ୱର୍ଗଧାମକୁ ପ୍ରେରଣ କରିଅଛୁଁ । ତଦ୍ୱାରା ସେମାନଙ୍କର ସଦ୍‌ଗତି ଲାଭ ହୋଇଅଛି । କିନ୍ତୁ କେହି କେହି ଏଥି ସକାଶେ ଆମ୍ଭ ପ୍ରତି ସନ୍ତୁଷ୍ଟ ନାହାନ୍ତି । ୨୫ ।

ପ୍ରଜାପତି ଅଜ, ଅଶ୍ୱ ଓ କ୍ଷତ୍ରିୟମାନଙ୍କୁ ତୁଲ୍ୟଭାବରେ ପରୋପକାରାର୍ଥ ସୃଷ୍ଟି କରିଅଛନ୍ତି, ଅତଏବ ନିରନ୍ତର ଜୀବଗଣଙ୍କର ଉପକାର କରି ସ୍ୱର୍ଗଲୋକକୁ ଗମନ କରିବା ଉଚିତ । ୨୬ । ଅବଧ ବ୍ୟକ୍ତିଙ୍କୁ ବଧ କଲେ ଯେପରି ଦୋଷ ହୁଏ, ବଧ୍ୟ ବ୍ୟକ୍ତିକୁ ବଧ ନ କଲେ ମଧ୍ୟ ତଦ୍ରୂପ ଦୋଷ ହୁଏ । ସାଧୁମାନେ ଯାହା ପରିତ୍ୟାଗ କରନ୍ତି, ଦସ୍ୟୁମାନେ ତାହାକୁ କର୍ତ୍ତବ୍ୟ ବୋଲି ଗ୍ରହଣ କରନ୍ତି । ଅତଏବ ନୃପତି ଅତି ତୀକ୍ଷ୍ଣ ହୋଇ ପ୍ରଜାବର୍ଗଙ୍କୁ ସ୍ୱଧର୍ମରେ ସ୍ଥାପନ କରିବେ । ଏହାର ଅନ୍ୟଥା ହେଲେ ସେମାନେ ବୃକ ସଦୃଶ ପରସ୍ପର ପରସ୍ପରକୁ ଭକ୍ଷଣ କରି ବିଚରଣ କରିବେ । ୨୮ । ଜଳରୁ ବାୟସଗଣ ମତ୍ସ୍ୟହରଣ କଲା ପ୍ରାୟ, ଦସ୍ୟୁଗଣ ଯାହାଙ୍କ ରାଜ୍ୟରେ ପରଧନ ହରଣ କରନ୍ତି, ସେହି ରାଜା କ୍ଷତ୍ରିୟମାନଙ୍କ ମଧ୍ୟରେ ନିତାନ୍ତ ପାପିଷ୍ଠ ଅଟନ୍ତି । ୨୯ ।

ହେ ରାଜନ୍ ! ତୁମ୍ଭେ ବେଦବିଦ୍ୟା ସମନ୍ୱିତ ସତ୍କୁଳସମ୍ଭୂତ ବ୍ୟକ୍ତିମାନଙ୍କୁ ସଚିବ ପଦରେ ଅଭିଷିକ୍ତ କରି ଧର୍ମାନୁସାରେ ପ୍ରଜାପାଳନ ପୂର୍ବକ ପୃଥିବୀକୁ ଶାସନ କର । ୩୦ । ଯେଉଁ ରାଜା ଅନ୍ୟାୟ ଭାବରେ ପ୍ରଜାବର୍ଗଙ୍କଠାରୁ କର ଗ୍ରହଣ କରନ୍ତି, ସେହି ପାଳନ ଧର୍ମ ବିବର୍ଜିତ ଓ ବିଶେଷ ଉପାୟ ଅନଭିଜ୍ଞ କ୍ଷତ୍ରିୟ କ୍ଳୀବ ଶବ୍ଦ ବାଚ୍ୟ ହୁଅନ୍ତି । ୩୧ । ନୃପତି ଏକାନ୍ତ ଉଗ୍ର କିମ୍ବା ନିତାନ୍ତ ଅନୁଗ୍ର ହେଲେ ଧର୍ମତଃ ପ୍ରଶଂସିତ ହୁଅନ୍ତି ନାହିଁ । ଅତଏବ ଉଗ୍ରତ୍ୱ କିମ୍ବା ଅନୁଗ୍ରହ ଉଭୟକୁ ଅତିକ୍ରମ କରିବା ଉଚିତ ନୁହେ । ସୁତରାଂ ତୁମ୍ଭେ ପ୍ରଥମେ ଉଗ୍ର ହୋଇ ପରେ ମୃଦୁ ହେବ । ୩୨ । ଆମ୍ଭେ ତୁମ୍ଭ ପ୍ରତି ଅତିଶୟ ସ୍ନେହ କରିଥାଉଁ, ସେଥିପାଇଁ ଏହି ନିତାନ୍ତ କଷ୍ଟକର କ୍ଷତ୍ରିୟ ଧର୍ମକୁ କହିଲୁଁ । ବିଧାତା ଉଗ୍ରକାର୍ଯ୍ୟ ସାଧନାର୍ଥ ତୁମ୍ଭଙ୍କୁ ସୃଷ୍ଟି କରିଅଛନ୍ତି, ଅତଏବ ତୁମ୍ଭେ ତଦନୁସାରେ ରାଜ୍ୟ ଶାସନ କର ।

ହେ ଭରତଶ୍ରେଷ୍ଠ ! ଧୀମାନ୍ ଶୁକ୍ରାଚାର୍ଯ୍ୟ କହି ଅଛନ୍ତି ଯେ ଆପଦ୍ କାଳରେ ଅଶିଷ୍ଟ ବ୍ୟକ୍ତିଗଣଙ୍କର ନିଗ୍ରହ ଏବଂ ଶିଷ୍ଟ ବ୍ୟକ୍ତିମାନଙ୍କର ସତତ ପ୍ରତିପାଳନ କରିବା ଧର୍ମ ଅଟେ । ୩୪ । ଯୁଧିଷ୍ଠିର କହିଲେ—ହେ ସାଧୁତମ ପିତାମହ ! ଅନ୍ୟବ୍ୟକ୍ତିର ଅଲଙ୍ଘନୀୟ ଯଦି କୌଣସି ମର୍ଯ୍ୟାଦା ଥାଏ ତେବେ ତାହା ଆପଣଙ୍କୁ ପ୍ରଶ୍ନ କରୁଅଛୁଁ କହନ୍ତୁ । ୩୫ । ଭୀଷ୍ମ କହିଲେ—ବେଦବ୍ରତ୍ ସଚ୍ଚରିତ୍ର ବ୍ରାହ୍ମଣମାନଙ୍କ ସେବାକର । ଏହା ଗୋଟିଏ ସୁପବିତ୍ର ଉତ୍କୃଷ୍ଟ କର୍ମ । ତୁମ୍ଭେ ଦେବତାମାନଙ୍କ ପ୍ରତି ଯେରୂପ ବ୍ୟବହାର କରିଥାଅ, ବ୍ରାହ୍ମଣମାନଙ୍କ ପ୍ରତି ନିୟତ ସେହିପରି ବ୍ୟବହାର କରିବ ।

ହେ ମହାରାଜ ! ବ୍ରାହ୍ମଣମାନେ କ୍ରୁଦ୍ଧ ହୋଇ ବିବିଧ ଦୁଷ୍କର କର୍ମ କରିଅଛନ୍ତି । ସେମାନଙ୍କ ପ୍ରସନ୍ନତା ଦ୍ୱାରା ବିପୁଳ ଯଶୋଲାଭ ହୁଏ । ଅପ୍ରସନ୍ନତା ଦ୍ୱାରା ଭୟ ଉତ୍ପନ୍ନ ହୋଇଥାଏ । ବିପ୍ରମାନେ ପ୍ରୀତ ହେଲେ, ଅମୃତ-ତୁଲ୍ୟ ଏବଂ କ୍ରୁଦ୍ଧ ହେଲେ ବିଷ ସଦୃଶ ହୋଇଥାନ୍ତି । ୩୮ ।

## ଅଧ୍ୟାୟ—୧୪୩

ଯୁଧିଷ୍ଠିର କହିଲେ—ହେ ସର୍ବଶାସ୍ତ୍ର ବିଶାରଦ ମହାପ୍ରାଜ୍ଞ ପିତାମହ ! ଶରଣାଗତ ବ୍ୟକ୍ତିଙ୍କୁ ପ୍ରତିପାଳନ କଲେ ଯେଉଁ ଧର୍ମ ହୁଏ, ଆପଣ ତାହା ମୋତେ କହିବା ହେଉନ୍ତୁ । ୧ ।

ଭୀଷ୍ମ କହିଲେ—ହେ ଭାରତସତ୍ତମ ମହାରାଜ ! ଶରଣାଗତ ବ୍ୟକ୍ତିକୁ ପ୍ରତିପାଳନ କଲେ ସୁମହାନ ଧର୍ମ ହୁଏ । ତୁମ୍ଭେ ଏହି ବିଷୟର ପ୍ରଶ୍ନ କରିବାର ଉପଯୁକ୍ତ ପାତ୍ର ଅଟ । ହେ ରାଜନ୍ ! ଶିବି ପ୍ରଭୃତି ମହାନୁଭାବ ନୃପତିମାନେ ଶରଣାଗତ ବ୍ୟକ୍ତିମାନଙ୍କୁ ପ୍ରତିପାଳନ କରି ପରମ ସିଦ୍ଧି ପ୍ରାପ୍ତ ହୋଇଅଛନ୍ତି । ଅମ୍ଭେ ଶୁଣିଅଛୁଁ ଯେ କୌଣସି କପୋତ ଶରଣାଗତ ଶତ୍ରୁକୁ ଯଥାବତ୍ ସମ୍ମାନ କରି ନିଜ ମାଂସକୁ ଭୋଜନ କରାଇଥିଲା । ୪ ।

ଯୁଧିଷ୍ଠିର କହିଲେ—ହେ ଭାରତ ! ପୂର୍ବକାଳରେ କପୋତ ଶରଣାଗତ ଶତ୍ରୁକୁ କି ପ୍ରକାରେ ନିଜର ମାଂସ ଭୋଜନ କରାଇଥିଲା ଏବଂ ସେହି କପୋତର ଅବା କି ପ୍ରକାରେ ଗତି ହୋଇଥିଲା ?

ଭୀଷ୍ମ କହିଲେ—ଭଗବାନ ଭାର୍ଗବ, ମୁଚୁକୁନ୍ଦ ନୃପତିଙ୍କଠାରେ ଯେଉଁ ସର୍ବପାପ ବିନାଶିନୀ ଦିବ୍ୟକଥା କହିଥିଲେ ତୁମ୍ଭେ ତାହା ଶ୍ରବଣ କର । ୭ । ହେ ପୁରୁଷ ପ୍ରବର ପୃଥା ତନୟ ! ପୂର୍ବେ ନରପତି ମୁଚୁକୁନ୍ଦ, ଭାର୍ଗବଙ୍କ ନିକଟରେ ପ୍ରଣତ ହୋଇ ଏହିକଥା ପ୍ରଶ୍ନ କରିଥିଲେ । ଭାର୍ଗବ ମଧ୍ୟ ସେହି ଶୁଶ୍ରୂଷୁ ନରପତିଙ୍କୁ କପୋତ ଯେପରି ସିଦ୍ଧିଲାଭ କରିଥିଲା ସେହି କଥା କହିଥିଲେ । ୮ ।

ମୁନି କହିଲେ—ହେ ମହାଭୁଜ ମହାରାଜ ! ଅମ୍ଭେ ଧର୍ମ୍ମ-କାମାର୍ଥ ନିର୍ଣ୍ଣୟଯୁକ୍ତ କଥା କହୁଅଛୁଁ । ଅବହିତ ଚିତ୍ତରେ ଶ୍ରବଣ କର । ପୃଥିବୀରେ କାଳାନ୍ତକ କୃତାନ୍ତ ପ୍ରାୟ, ବିକଟାକୃତି ଗୋଟିଏ ପକ୍ଷି ଘାତକ ନିଷାଦ କୌଣସି ମହାରଣ୍ୟ ମଧ୍ୟରେ ପର୍ଯ୍ୟଟନ କରୁଥିଲା । ତାହାର ଶରୀର କାକ ବିଶେଷ ସଦୃଶ କୃଷ୍ଣବର୍ଣ୍ଣ, ନେତ୍ରଦ୍ୱୟ ରକ୍ତବର୍ଣ୍ଣ, ଜଙ୍ଘାଦ୍ୱୟ ସୁଦୀର୍ଘ, ପଦଦ୍ୱୟ କ୍ଷୁଦ୍ର, ମୁଖମଣ୍ଡଳ ଭୟଙ୍କର ଓ ହନୁଦ୍ୱୟ ବୃହତ୍ ଥିଲା । ୧୧ । ସେ ନିରନ୍ତର ଭୟଙ୍କର କାର୍ଯ୍ୟ କରେ ବୋଲି ପତ୍ନୀ ବ୍ୟତୀତ ଅନ୍ୟ କେହି ତାହାର ସୁହୃତ, ସମ୍ବନ୍ଧୀ ଓ ବାନ୍ଧବ ଥିଲେ ନାହିଁ । ସମସ୍ତେ ତାହାକୁ ପରିତ୍ୟାଗ କରିଥିଲେ କାରଣ ପଣ୍ଡିତମାନେ ପାପାଚାର ମନୁଷ୍ୟକୁ ଏକାବେଳେକେ ପରିତ୍ୟାଗ କରନ୍ତି । ଯେଉଁ ବ୍ୟକ୍ତି ନିଜକୁ ବିଷ ଭକ୍ଷଣ କିମ୍ବା ଉଦ୍‌ବନ୍ଧନାଦି ଦ୍ୱାରା ବିନଷ୍ଟ କରିପାରେ, ସେ କି ପ୍ରକାରେ ଅନ୍ୟର ହିତକର ହେବ ? । ୧୩ । ଯେଉଁସବୁ ଦୁରାଚାର ନୃଶଂସ ମନୁଷ୍ୟମାନେ ପ୍ରାଣିମାନଙ୍କର ପ୍ରାଣ ହରଣ କରନ୍ତି, ସେମାନେ ସର୍ପ ସଦୃଶ ଜୀବମାନଙ୍କର ଉଦ୍‌ବେଗଜନକ ହୁଅନ୍ତି । ୧୪ ।

ହେ ଜନାଧିପ ! ସେହି ନିଷାଦ ଜାଲ ଗ୍ରହଣ ପୂର୍ବକ ନିୟତ ପକ୍ଷୀ ହତ୍ୟାକରି ସେମାନଙ୍କର ମାଂସ ବିକ୍ରୟ କରୁଥାଏ । ସେହି ଦୁରାତ୍ମା ଏହିପରି ବ୍ୟବସାୟରେ ପ୍ରବୃତ୍ତ ଥାଇ ବହୁକାଳ ଅତିବାହିତ କଲା । ତଥାପି ସେ ନିଜର କାର୍ଯ୍ୟ ଦ୍ୱାରା ଯେଉଁ ଅଧର୍ମ୍ମ ହେଉଅଛି ତାହା ଜାଣି ପାରି ନ ଥିଲା । ୧୬ । ସେ ଏହି ଉପାୟ ଦ୍ୱାରା ଭାର୍ଯ୍ୟା ସହିତ କାଳ ହରଣ କରୁଥାଏ ଓ ମୂଢ଼ତା ବଶତଃ ତାହାର ଅନ୍ୟ କୌଣସି ବ୍ୟବସାୟରେ ଅଭିଳାଷ ଜନ୍ମୁ ନଥିଲା । ୧୭ । ତଦନନ୍ତର ଏକଦା ସେହି ନିଷାଦ ବନ ମଧ୍ୟରେ ଅବସ୍ଥିତ କରୁଥିବା କାଳରେ ପ୍ରଚଣ୍ଡ ସମୀରଣ ତାହାର ଚତୁର୍ଦ୍ଦିଗସ୍ଥ ବୃକ୍ଷମାନଙ୍କୁ ଉତ୍ପାଟନ କରି ପ୍ରାଦୁର୍ଭୂତ ହେଲା

ହେଲା । ୧୮ । ସମୁଦ୍ର ଯେପରି ନୌକା ସମୂହରେ ସମାଚ୍ଛନ୍ନ ହୁଏ, ଗଗନ ମଣ୍ଡଳ ସେହିପରି ମୁହୂର୍ତ୍ତକାଳ ମଧ୍ୟରେ ମେଘମାଳ ସମାଚ୍ଛନ୍ନ ଓ ବିଦ୍ୟୁତ୍ ସମୂହ ମଣ୍ଡିତ ହେଲା । ୧୯ । ଦେବରାଜ ପ୍ରଚୁର ବାରିଧାରା ବର୍ଷଣ ଦ୍ୱାରା କ୍ଷଣକ ମଧ୍ୟରେ ବସୁନ୍ଧରାକୁ ଜଳରେ ପରିପୂର୍ଣ୍ଣା କଲେ ।୨୦।

ଅନନ୍ତର ସେହି ବର୍ଷଣ ସମୟରେ ନିଷାଦ ହତଚେତନ ଓ ଶୀତାର୍ତ୍ତ ହୋଇ ବ୍ୟାକୁଳ ଚିତ୍ତରେ ବନ ମଧ୍ୟରେ ପର୍ଯ୍ୟଟନ ପୂର୍ବକ ଅଣୁ ମାତ୍ର ନିମ୍ନଭୂମି ପ୍ରାପ୍ତ ହେଲା ନାହିଁ । କାରଣ ବନର ସମସ୍ତ ପଥ ସଲିଳ ଦ୍ୱାରା ପରିପୂର୍ଣ୍ଣ ହୋଇଥିଲା । ୨୨ । ବେଗ ସହକାରେ ବର୍ଷଣ ହେବାରୁ ବିହଙ୍ଗଗଣ ହତ ହୋଇ ଧରା ତଳରେ ଲୀନ ହୋଇଥିଲେ । ମୃଗ, ସିଂହ ଓ ବରାହ ପ୍ରଭୃତି ଉଚ୍ଚ ସ୍ଥାନକୁ ଅବଲମ୍ବନ କରି ଶୟନ କଲେ । ୨୩ । ବନବାସୀମାନେ ପ୍ରଚଣ୍ଡ ସମୀରଣ ବର୍ଷଣ ହେତୁରୁ ତ୍ରାସିତ, ଭୟାର୍ତ୍ତ ଓ କ୍ଷୁଧାର୍ତ୍ତ ହୋଇ ବନ ମଧ୍ୟରେ ଏକତ୍ର ମିଳିତ ହୋଇ ଭ୍ରମଣ କଲେ ।୨୪। ପକ୍ଷିଘାତକ ନିଷାଦ ଶୀତାର୍ତ୍ତ ଶରୀରରେ କେଉଁ ସ୍ଥାନକୁ ଗମନ କରି ପାରିଲା ନାହିଁ । କିମ୍ବା ଏକସ୍ଥାନରେ ସ୍ଥିରତର ହୋଇ ରହି ପାରିଲା ନାହିଁ । ପରକ୍ଷଣରେ ଦେଖିଲା ଯେ ଗୋଟିଏ ଶୀତବିହ୍ୱଳା କପୋତୀ ଭୂତଳରେ ପତିତ ହୋଇଅଛି । ୨୫ । ସେହି ପାପାତ୍ମା ସ୍ୱୟଂ ପୀଡ଼ିତ ହୋଇ ସୁଦ୍ଧା ତତ୍କାଳରେ କପୋତୀକୁ ଦେଖିବା ମାତ୍ର ପଞ୍ଜର ମଧ୍ୟରେ ନିକ୍ଷେପ କଲା । ସେ ସ୍ୱୟଂ ଦୁଃଖାଭିଭୂତ ହୋଇ ସୁଦ୍ଧା ଅନ୍ୟର ଦୁଃଖର କେବଳ କାରଣ ହେଲା । ୨୬ ।

ସେହି ପାପାତ୍ମା ପାପକାରୀ ବୋଲି ପାପକାର୍ଯ୍ୟରେ ପ୍ରବୃତ୍ତ ହେଲା । ସେ ବନମଧ୍ୟରେ ମେଘ ପରିରେ ନୀଳବର୍ଣ୍ଣ ଗୋଟିଏ ବୃକ୍ଷକୁ ଦେଖିଲା । ୨୭ । ଛାୟା, ବାସ ଓ ଫଳ ପ୍ରତ୍ୟାଶାରେ ବିହଙ୍ଗମମାନେ ସେହି ବୃକ୍ଷକୁ ଆଶ୍ରୟ କରି ରହି ଅଛନ୍ତି । ବିଧାତାଙ୍କ କର୍ତ୍ତୃକ ଯେପରି ପରୋପକାର କରିବା ନିମିତ୍ତ ସାଧୁବ୍ୟକ୍ତି ନିର୍ମିତ ହୋଇଥାଏ, ସେହିପରି ସେହି ବୃକ୍ଷ ନିର୍ମିତ ହୋଇଅଛି । ୨୮ । ଅନନ୍ତର ପ୍ରଫୁଲ୍ଲ କୁମୁଦାବଳି ରଞ୍ଜିତ ସଲିଳ ସମ୍ପନ୍ନ ସୁଦୀର୍ଘ ସରୋବର ପ୍ରାୟ ଗଗନ ମଣ୍ଡଳ କ୍ଷଣକାଳ ମଧ୍ୟରେ ନିର୍ମଳ ତାରକା ସମୂହଦ୍ୱାରା ସୁଶୋଭିତ ହେଲା ।୨୯। ଶୀତ ବିହ୍ୱଳ ବ୍ୟାଧ ମେଘନିର୍ମୁକ୍ତ-ନକ୍ଷତ୍ର-ନିକର-ନିଚିତ ଗଗନମଣ୍ଡଳକୁ ନିର୍ମଳ ହେବାର ଅବଲୋକନ କଲା ଏବଂ ରଜନୀ ପ୍ରଗାଢ଼ା ହେବାର

ଦେଖି ଦିକ୍ ସମସ୍ତଙ୍କୁ ଅବଲୋକନ କଲା । ଏହି ସ୍ଥାନରୁ ଅତି ଦୂରରେ ଆମ୍ଭର ବାସସ୍ଥାନ ଅଛି, ଏହା ଭାବି ସେ ସେହି ବୃକ୍ଷମୂଳରେ ରଜନୀ-ଯାପନ କରିବାକୁ ନିଶ୍ଚିତ କଲା ।

ପରିଶେଷରେ ସେ ଅଞ୍ଜଳିବନ୍ଧନ ପୂର୍ବକ ଉକ୍ତ ବୃକ୍ଷକୁ ପ୍ରଣାମ କରି କହିଲା—ହେ ତରୁବର । ତୁମ୍ଭ ଉପରେ ଯେଉଁସବୁ ଦେବତା ଅଛନ୍ତି, ଆମ୍ଭେ ସେମାନଙ୍କର ଶରଣାଗତ ହେଲୁଁ । ପକ୍ଷିହନ୍ତା ମହା ଦୁଃଖରେ ପତିତ ହୋଇ ଏହିକଥା କହି ଭୂମିତଳରେ କେତେଗୁଡ଼ିଏ ପତ୍ର ଆସ୍ତରଣପୂର୍ବକ ପ୍ରସ୍ତର ଉପରେ ମସ୍ତକ ସ୍ଥାପନ କରି ଶୟନ କଲା । ୩୦ ।

## ଅଧ୍ୟାୟ—୧୪୪

ଭୀଷ୍ମ କହିଲେ—ହେ ରାଜନ୍ । ଏହାପରେ ଚନ୍ଦ୍ରଚୂଡ଼ ଗୋଟିଏ ବିହଙ୍ଗ ସୁହୃଦଗଣଙ୍କ ସହିତ ବହୁକାଳ ସେହି ବୃକ୍ଷ ଶାଖାରେ ବାସ କରୁଥିଲା । ତାହାର ଭାର୍ଯ୍ୟାପ୍ରାତଃ କାଳରେ ଆହାର ଆହରଣ କରିବାକୁ ଯାଇଥିଲା । ରଜନୀ ଉପସ୍ଥିତ ହେଲା, ତଥାପି ସେ ଆବାସକୁ ଆସିଲା ନାହିଁ । ସେଥିପାଇଁ ପକ୍ଷୀ ନିତାନ୍ତ ପରିତାପିତ ହୋଇ କହିଲା—ଇତପୂର୍ବରୁ ପ୍ରଚଣ୍ଡ ପବନ ପ୍ରବାହିତ ଓ ଘୋରତର ବାରିବର୍ଷଣ ହୋଇ ଯାଇଅଛି । ଏପର୍ଯ୍ୟନ୍ତ ସୁଦ୍ଧା ଆମ୍ଭର ପତ୍ନୀ କାହିଁକି ଆସିଲେ ନାହିଁ ? ସେ ଏପର୍ଯ୍ୟନ୍ତ ପ୍ରତ୍ୟାଗମନ ନ କରିବାର କାରଣ କଣ ? । ୩ । କାନନ ମଧ୍ୟରେ ଆମ୍ଭର ପ୍ରଣୟିନୀର ତ କୌଣସି ଅମଙ୍ଗଳ ହୋଇ ନାହିଁ ? ପ୍ରିୟା ବିରହରେ ଆମ୍ଭର ଏହି ଗୃହ ଅଦ୍ୟ ଶୂନ୍ୟ ବୋଧ ହେଉଅଛି । ୪ । ଭାର୍ଯ୍ୟାହୀନ ଗୃହସ୍ଥର ଗୃହ ପୁତ୍ର, ପୌତ୍ର, ବଧୂ ଓ ଭୃତ୍ୟଗଣଙ୍କ ଦ୍ୱାରା ପରିପୂର୍ଣ୍ଣ ହେଲେ ସୁଦ୍ଧା ଶୂନ୍ୟ ହୋଇଥାଏ । ୫ ।

ପଣ୍ଡିତମାନେ ଗୃହକୁ ଗୃହ ବୋଲି କହନ୍ତି ନାହିଁ । ଗୃହିଣୀକୁ ଗୃହ ବୋଲି କହନ୍ତି । ଗୃହିଣୀହୀନ ଗୃହ ଅରଣ୍ୟ ସଦୃଶ ଅଟେ । ୬ । ଆମ୍ଭର ସେହି ଆରକ୍ତ ନୟନା ବିଚିତ୍ରାଙ୍ଗୀ ମଧୁର ଭାଷିଣୀ ପ୍ରଣୟିନୀ ଅଦ୍ୟ ଯଦି ଆଗମନ ନ କରନ୍ତି, ତେବେ ଆମ୍ଭର ଜୀବନରେ କୌଣସି ପ୍ରୟୋଜନ ନାହିଁ । ୭ । ଯେଉଁ ସୁବ୍ରତା ଆମ୍ଭେ ଅଭୁକ୍ତ ଥିଲେ ଭୋଜନ କରେ ନାହିଁ, ଅସ୍ନାତ ଥିଲେ ସ୍ନାନ କରେ ନାହିଁ, ଉପବିଷ୍ଟ ନ ହେଲେ

ଉପବେଶନ କରେ ନାହିଁ ଏବଂ ଶୟନ ନ କଲେ ଶୟନ କରେ ନାହିଁ ଏବଂ ମୋହର ସୁଖ ଦୁଃଖରେ ଯାହାର ସୁଖ ଦୁଃଖ ହୁଏ, ଆମ୍ଭେ ପ୍ରବାସକୁ ଗଲେ ଯାହାର ମୁଖ ମଳିନ ହୁଏ, ଏବଂ କ୍ରୁଦ୍ଧ ହେଲେ ଯେ ପ୍ରିୟ କଥା କହେ, ଏହିପରି ପତିବ୍ରତା ପତିଗତ ପତିର ହିତ ଓ ପ୍ରିୟ କାର୍ଯ୍ୟରେ ନିରତା ଭାର୍ଯ୍ୟା ଭୂଲୋକରେ ଯାହାର ଅଛି, ସେହି ପୁରୁଷ ଧନ୍ୟ ଅଟେ । ୧୦ । ସେହି ଅନୁରକ୍ତା ସୁଷ୍ଠେ ସ୍ନିଗ୍ଧ ମୂର୍ତ୍ତି ଭକ୍ତିଶାଳିନୀ ଯଶସ୍ୱିନୀ ତପସ୍ୱିନୀ ଆମ୍ଭେ ଶ୍ରାନ୍ତ କିମ୍ବା କ୍ଷୁଧାର୍ତ୍ତ ହେଲେ ଜାଣିପାରେ । ୧୧ ।

ଯାହାର ଭାର୍ଯ୍ୟା ଅଛି ସେ ଯଦି ବୃକ୍ଷ ମୂଳରେ ବାସକରେ, ତେବେ ତାହାହିଁ ତାହାର ଗୃହସ୍ୱରୂପ, କିନ୍ତୁ ପ୍ରିୟାହୀନ ପ୍ରାସାଦସୁଦ୍ଧା ଦୁର୍ଗମ ଅରଣ୍ୟ ସଦୃଶ ହୋଇଯାଏ । ୧୨ । ପୁରୁଷର ଧର୍ମ୍ମ, ଅର୍ଥ ଓ କାମ ସାଧନ କାଳରେ ଭାର୍ଯ୍ୟା ସହାୟା ହୋଇଥାଏ ଏବଂ ବିଦେଶ ଗମନ କାଳରେ ଏକମାତ୍ର ପତ୍ନୀ ପୁରୁଷର ବିଶ୍ୱାସପାତ୍ର ଅଟେ । ୧୩ । ଇହଲୋକରେ ଭାର୍ଯ୍ୟା ପୁରୁଷର ପରମ ପ୍ରୟୋଜନ ସାଧନ କରେ ଏବଂ ସହାୟହୀନ ପୁରୁଷର ଲୋକଯାତ୍ରା ନିର୍ବାହ ପକ୍ଷରେ ଭାର୍ଯ୍ୟାକେବଳ ସହାୟ ହୁଏ । ୧୪ । ନିୟତ ରୋଗାଭିଭୂତ ଓ କ୍ଳେଶରେ ପତିତ ମନୁଷ୍ୟ ପକ୍ଷରେ ଭାର୍ଯ୍ୟାସମାନ ଆଉ କେହି ଔଷଧ ନାହିଁ । ୧୫ । ଭାର୍ଯ୍ୟା ସମାନ ବନ୍ଧୁ ନାହିଁ । ଭାର୍ଯ୍ୟାସମାନ ଆଶ୍ରୟ ନାହିଁ ଏବଂ ଜନ ସମାଜରେ ଧର୍ମ୍ମ ସଂଗ୍ରହ ବିଷୟରେ ଭାର୍ଯ୍ୟା ସଦୃଶ ଆଉ କେହି ସହାୟ ନାହିଁ । ୧୬ । ଯାହା ଗୃହରେ ପତିବ୍ରତା ପ୍ରିୟବାଦିନୀ ଭାର୍ଯ୍ୟାନାହିଁ, ତାହାର ଅରଣ୍ୟକୁ ଗମନ କରିବା କର୍ତ୍ତବ୍ୟ । କାରଣ ତାହା ପକ୍ଷରେ ଅରଣ୍ୟ ଓ ଗୃହଉଭୟ ସମାନ । ୧୭ ।

## ଅଧ୍ୟାୟ—୨୪୫

ଭୀଷ୍ମ କହିଲେ—କପୋତ ଏହିରୂପ ବିଳାପ କରୁଥିବା ସମୟରେ ପକ୍ଷିଘାତୀ ନିଷାଦର ହସ୍ତଗତା କପୋତୀ ପତିର ସକରୁଣ ବାକ୍ୟକୁ ଗ୍ରହଣ କରି କହିଲା । ୧ ।

କପୋତୀ କହିଲା— ଆହା ! ଆମ୍ଭେ ଅତି ସୌଭାଗ୍ୟବତୀ, ଆମ୍ଭର ପତି କେତେ ପ୍ରିୟବାଦୀ । ଆମ୍ଭର ଗୁଣ ଥାଉ କି ନ ଥାଉ ସେ ତ ଏପରି କହୁଅଛନ୍ତି ।୨। ଯେଉଁ ନାରୀ ପ୍ରତି ପତି ସନ୍ତୁଷ୍ଟ ନୁହନ୍ତି, ତାହାକୁ ସ୍ତ୍ରୀ ବୋଲି ଗଣ୍ୟ କରିବା ଉଚିତ ନୁହେ । ସ୍ତ୍ରୀ ମାନଙ୍କ ପ୍ରତି ପରିତୁଷ୍ଟ ଥିଲେ, ସମସ୍ତ

ଦେବତା ମାନେ ମଧ୍ୟ ସନ୍ତୁଷ୍ଟ ହୁଅନ୍ତି । ୩ । ଅବଳା ମାନଙ୍କର ପତି ଯେ ପରମ ଦେବତା ସ୍ୱରୂପ ଅଟନ୍ତି, ତଦ୍‌ବିଷୟରେ ଅଗ୍ନି ସାକ୍ଷୀ ଅଟନ୍ତି । ପୁଷ୍ପସ୍ତବକଶାଳିନୀ ଲତା ଯେପରି ଦାବାନଳ ଦ୍ୱାରା ଦଗ୍‌ଧ ହୁଏ, ଭର୍ତ୍ତା ଅସନ୍ତୁଷ୍ଟ ଥିଲେ ସ୍ତ୍ରୀ ମଧ୍ୟ ତଦ୍ରୂପ ଭସ୍ମ ହୋଇଯାଏ ।

ନିଷାଦ ହସ୍ତଗତା ଦୁଃଖାର୍ତ୍ତି କପୋତୀ ତତ୍କାଳରେ ଏହିପରି ଚିନ୍ତାକରି ଶୋକାକୁଳ ପତିକୁ କହିଲା—ହେ ନାଥ ! ଆମ୍ଭେ ତୁମ୍ଭଙ୍କୁ ମଙ୍ଗଳ କଥା କହୁଅଛୁଁ, ତୁମ୍ଭେ ଶ୍ରବଣ କରି ତାହା କର । ୬ । ତୁମ୍ଭେ ଶରଣାଗତ ବ୍ୟକ୍ତିକୁ ବିଶେଷ ରୂପେ ପରିତ୍ରାଣ କର । ଏହି ବ୍ୟକ୍ତି ତୁମ୍ଭର ଅବାସକୁ ଆସି ଶୟନ କରିଅଛି, ସେ ଶୀତାର୍ତ୍ତ ଓ କ୍ଷୁଧାର୍ତ୍ତ ହୋଇଅଛି, ଅତଏବ ଏହାର ସତ୍କାର କର । ଯେଉଁ ବ୍ୟକ୍ତି ବ୍ରହ୍ମହତ୍ୟା କରେ, ଯେ କେହି ଲୋକ ମାତା ଗାଭୀକୁ ହତ୍ୟା କରେ ଏବଂ ଯେଉଁବ୍ୟକ୍ତି ଶରଣାଗତ ବ୍ୟକ୍ତିକୁ ହତ୍ୟା କରେ, ସେମାନଙ୍କର ପାତକ ସବୁ ସମାନ ଅଟେ । ଅମ୍ଭମାନଙ୍କର କପୋତ ଜାତିର ଧର୍ମ୍ମାନୁସାରେ ଯେଉଁ ବ୍ୟବହାର ବିହିତ ଅଛି, ତାଦୃଶ ବ୍ୟବହାରକୁ ତ୍ୱଦ୍‌ବିଧ ବୁଦ୍ଧିମାନ ବ୍ୟକ୍ତିଙ୍କର ଅନୁସରଣ କରିବା ସତତ ନ୍ୟାଯ୍ୟ ଅଟେ । ଆମ୍ଭେ ଶୁଣିଅଛୁଁ ଯେ ଯେଉଁ ଗୃହସ୍ଥ ଯଥାଶକ୍ତି ଧର୍ମ୍ମ ଆଚରଣ କରେ, ସେ ପରକାଳରେ ଅକ୍ଷୟମାନଙ୍କୁ ପ୍ରାପ୍ତ ହୁଏ । ବର୍ତ୍ତମାନ ତୁମ୍ଭେ କନ୍ୟାପୁତ୍ରବାନ୍ ଅଟ । ଅତଏବ ସ୍ୱକୀୟ ଦେହରୁ ପରିତ୍ୟାଗ ପୂର୍ବକ ଧର୍ମ୍ମ ଓ ଅର୍ଥ ପରିଗ୍ରହ କର, ଯଦ୍ଦ୍ୱାରା ଏହି ଶରଣାଗତ ବ୍ୟକ୍ତିର ଚିତ୍ତ ପ୍ରସନ୍ନ ହେବ, ତଦ୍ଦ୍ୱାରା ଏହାଙ୍କର ସତ୍କାର କର । ୧୨ । ହେ ନାଥ ! ତୁମ୍ଭେ ଅମ୍ଭ ନିମିତ୍ତ ସନ୍ତାପ କର ନାହିଁ । ତୁମ୍ଭେ ମଧ୍ୟ ଜୀବିତ ଥାଅ, ତେବେ ଶରୀର ଯାତ୍ରା ନିର୍ବାହାର୍ଥ ଅନ୍ୟ ପତ୍ନୀ ପ୍ରାପ୍ତ ହେବ । ୧୩ । ପଞ୍ଜରସ୍ଥା ତପସ୍ୱିନୀ କପୋତୀ ଅତି ଦୁଃଖିତା ହୋଇ ପତିକୁ ନିରୀକ୍ଷଣ ପୂର୍ବକ ଏହିପରି କଥା କହିଲା । ୧୪ ।

---

## ଅଧ୍ୟାୟ—୧୪୭

ଭୀଷ୍ମ କହିଲେ—କପୋତ ନିଜ ପତ୍ନୀର ଧର୍ମସଙ୍ଗତ ଯୁକ୍ତିଯୁକ୍ତ ବାକ୍ୟ ଶ୍ରବଣ କରି ଅତିଶୟ ଆହ୍ଲାଦିତ ହେଲା ଓ ବାଷ୍ପାକୁଳ ଲୋଚନରେ ପକ୍ଷିଜୀବୀ ନିଷାଦକୁ ନିରୀକ୍ଷଣପୂର୍ବକ ଯଥାବିଧି ତାହାର ସତ୍କାର କଲା ଏବଂ ତାହାକୁ ସ୍ୱାଗତ ପ୍ରଶ୍ନ କରି କହିଲା—ତୁମ୍ଭେ ସନ୍ତାପ କରନାହିଁ । ତୁମ୍ଭେ ନିଜ ଗୃହରେ ଅଛ ବୋଲି ଜ୍ଞାନ କର । ବର୍ତ୍ତମାନ ଆମ୍ଭେ ତୁମ୍ଭର ପ୍ରିୟକାର୍ଯ୍ୟ ସାଧନ କରିବୁ । ତାହା କୁହ । ତୁମ୍ଭେ ଅମ୍ଭମାନଙ୍କର ଶରଣାଗତ ହୋଇଅଛ, ଏଥିପାଇଁ ତୁମ୍ଭଙ୍କୁ ପ୍ରଶ୍ନ କରୁଅଛୁଁ, ତୁମ୍ଭର ଯାହା ଅଭିଳାଷ, ତାହା ଶୀଘ୍ର କୁହ, ଆମ୍ଭେ ସମ୍ପାଦନ କରିବୁ । ୪ ।

ଶତ୍ରୁ ଯଦି ଗୃହକୁ ଆଗମନ କରେ, ତଥାପି ତାହାର ମଧ୍ୟ ଆତିଥ୍ୟ କରିବା ଉଚିତ । କୌଣସି ଲୋକ ନିଜର ଛେଦନ କରିବା ନିମିତ୍ତ ଆସିଲେହେଁ ବୃକ୍ଷ ତାହାକୁ ଛାୟା ପ୍ରଦାନ କରେ । ୫ । ପଞ୍ଚ ଯଜ୍ଞରେ ପ୍ରବୃତ୍ତ ଗୃହସ୍ଥ ବ୍ୟକ୍ତିଙ୍କର ବିଶେଷ ଯତ୍ନ ସହକାରେ ଆତିଥ୍ୟ କରିବା କର୍ତ୍ତବ୍ୟ । ୬ । ଗୃହାସ୍ଥାଶ୍ରମରେ ଥାଇ ଯେଉଁ ବ୍ୟକ୍ତି ମୋହ-ବଶତଃ ପଞ୍ଚ ଯଜ୍ଞ କରିବାରୁ ବିରତ ହୁଏ ତାହାର ଇହଲୋକ ଓ ପରଲୋକରେ ଧର୍ମତଃ ସଦ୍‌ଗତି ହୁଏ ନାହିଁ, ଅତଏବ ତୁମ୍ଭେ ବିଶ୍ୱସ୍ତ ଭାବରେ କୁହ, ତୁମ୍ଭେ ଯାହା କହିବ, ତାହା ଆମ୍ଭେ କରିବୁଁ । ତୁମ୍ଭେ ଶୋକ କରନାହିଁ । ୮ ।

ନିଷାଦ କପୋତର କଥା ଶ୍ରବଣ କରି କହିଲା, ଆମ୍ଭେ ଶୀତରେ ଅତିଶୟ କାତର ହୋଇଅଛୁଁ । ଅତଏବ ଯେପରି ଏହି ହିମରୁ ପରିତ୍ରାଣ ପାଇବୁ, ତାହା ତୁମ୍ଭେ ବିଧାନ କର । ୯ ।

ନିଷାଦ ଏହିପରି କହନ୍ତେ, କପୋତ ସାଧ୍ୟାନୁସାରେ ଭୂପୃଷ୍ଠରେ କେତେଗୁଡ଼ିଏ ପତ୍ର ବିସ୍ତୀର୍ଣ୍ଣ କରି ତଦ୍ୱାରା ଅଗ୍ନି ପ୍ରଜ୍ୱାଳନ କରିବା ନିମିତ୍ତ ଶୀଘ୍ର ଗମନ କଲା । ୧୦ । ସେ ଅଙ୍ଗାରଶାଳକୁ ଯାଇ ଅଗ୍ନି ଆନୟନ କଲା । ପରକ୍ଷେପରେ ଶୁଷ୍କ ପର୍ଣ୍ଣରାଶି ମଧ୍ୟରେ ଅଗ୍ନି ପ୍ରଜ୍ୱାଳନ କଲା । ୧୧ । କପୋତ ଏହିପ୍ରକାରେ ଅଗ୍ନି ପ୍ରଦୀପ୍ତ କରି ଶରଣାଗତ ବ୍ୟକ୍ତିକୁ କହିଲା—ତୁମ୍ଭେ ବିଶ୍ୱସ୍ତ ହୋଇ ଅକୁତ ଭୟରେ ନିଜ ଗାତ୍ରକୁ ତାପିତ କର ।

କପୋତ ଏହିପରି କହିବାରୁ ବ୍ୟାଧ ତହିଁରେ ସମ୍ମତ ହୋଇ ନିଜ ଶରୀରକୁ ତାପିତ କଲା । ଅଗ୍ନି ତାପରେ ତାହାର ଜୀବନ ପ୍ରତ୍ୟାଗତ ହୁଅନ୍ତେ, ସେ ହୃଷ୍ଟ ଚିତ୍ତରେ ଓ ବ୍ୟାକୁଳ ନୟନରେ କପୋତକୁ ସମ୍ବୋଧନ କରି କହିଲା—ହେ ବିହଙ୍ଗମ । ଅମ୍ଭେ କ୍ଷୁଧାରେ କାତର ହୋଇଅଛୁଁ । ଅତଏବ ଇଚ୍ଛା କରୁଅଛୁଁ, ତୁମ୍ଭେ ଅମ୍ଭଙ୍କୁ କିଛି ଆହାର ପ୍ରଦାନ କର ।

କପୋତ ବ୍ୟାଧର ବାକ୍ୟକୁ ସ୍ୱୀକାର କରି କହିଲା—ଆମ୍ଭର ବର୍ତ୍ତମାନ କୌଣସି ଖାଦ୍ୟ ସାମଗ୍ରୀ ସଞ୍ଚିତ ନାହିଁ । ଯଦ୍ୱାରା ତୁମ୍ଭର କ୍ଷୁଧା ଶାନ୍ତ ହେବ । ଅମ୍ଭେମାନେ ବନବାସୀ ଅଟୁଁ । ପ୍ରତିଦିନ ଯାହା ଆହରଣ କରୁଁ, ତଦ୍ୱାରା ଜୀବିକା ନିର୍ବାହ ହୁଏ, ମୁନିମାନଙ୍କ ସଦୃଶ ଅମ୍ଭମାନଙ୍କର ମଧ୍ୟ ଆହାର ଦ୍ରବ୍ୟ ସଞ୍ଚିତ ଥାଏ ନାହିଁ ।

ହେ ଭରତଶ୍ରେଷ୍ଠ ! କପୋତ ନିଷାଦକୁ ଏହିକଥା କହି ବିଷର୍ଣ୍ଣ ବଦନ ହେଲା ଏବଂ କଣ କର୍ତ୍ତବ୍ୟ, ତାହା ଚିନ୍ତା କରି ନିଜ ବୃତ୍ତିକୁ ନିନ୍ଦା କଲା । ୧୮ ।

କପୋତ ମୁହୂର୍ତ୍ତି କାଳପରେ ସଂଜ୍ଞା ଲାଭ କରି ପକ୍ଷିଘାତୀକୁ କହିଲା, "ତୁମ୍ଭେ କିୟତ୍‌କାଳ ଅପେକ୍ଷା କର । ଅମ୍ଭେ ତୁମ୍ଭଙ୍କୁ ପରିତୃପ୍ତ କରିବୁଁ" । ୨୯ । କପୋତ ନିଷାଦକୁ ଏହି କଥା କହି ଶୁଷ୍କପର୍ଣ୍ଣରାଶି-ଦ୍ୱାରା ହୁତାଶନ ପ୍ରଜ୍ୱଳନ ପୂର୍ବକ ଅତିଶୟ ହର୍ଷାବିଷ୍ଟ ହୋଇ କହିଲା—ଅମ୍ଭେ ଦେବଗଣ, ପିତୃଗଣ ଓ ମହାନୁଭବ ଋଷିଗଣଙ୍କଠାରୁ ପୂର୍ବେ ଶ୍ରବଣ କରିଅଛୁଁ ଯେ ଅତିଥି ହେବାରେ ଅତିଶୟ ଧର୍ମ ହୁଏ । ଅତଏବ ହେ ପ୍ରିୟଦର୍ଶନ ! ଅମ୍ଭେ ତୁମ୍ଭଙ୍କୁ ସତ୍ୟ କହୁଅଛୁଁ, ତୁମ୍ଭେ ଅନୁପ୍ରତି ଅନୁଗ୍ରହ କର । ଅତିଥି ପୂଜା ବିଷୟରେ ଅମ୍ଭର ନିଷ୍ଠପ୍ତ ଜ୍ଞାନ ହୋଇ ଅଛି । ୨୨ । ତଦନନ୍ତର କୃତପ୍ରତିଜ୍ଞ ମହାମତି କପୋତ ହାସ୍ୟମୁଖଙ୍କ ତିନି ଥର ଅଗ୍ନିକୁ ପ୍ରଦକ୍ଷିଣ କରି ତହିଁରେ ପ୍ରବିଷ୍ଟ ହେଲା । ୨୩ ।

ନିଷାଦ କପୋତକୁ ଅଗ୍ନି ମଧ୍ୟରେ ପ୍ରବିଷ୍ଟ ହେବାର ଦେଖି "ଅମ୍ଭେ କି କାର୍ଯ୍ୟ କଲୁଁ" ଏହା କହି ଅତିଶୟ ଚିନ୍ତାଭିଭୂତ ହେଲା ଓ କହିଲା—ଅହୋ ! ଅମ୍ଭେ ନିତାନ୍ତ ନିଷ୍ଠୁର, ଲୋକେ ଅମ୍ଭ ବ୍ୟବସାୟକୁ ଦେଖି ସତତ ନିନ୍ଦା କରନ୍ତି । ନିଜର କର୍ମ ଦୋଷରୁ ଅମ୍ଭର ଘୋରତର

ଓ ମହତର ଅଧର୍ମ ହେବ ଏଥିରେ ସଂଶୟ ନାହିଁ । ୨୫ । ନିଷାଦ ପକ୍ଷୀଙ୍କୁ ତାଦୃଶାବସ୍ଥାପନ୍ନ ଦେଖି ନିଜର କର୍ମକୁ ନିନ୍ଦା କଲା ଓ ଏହିପରି ବହୁବିଧ ବିଳାପ କରିବାରେ ପ୍ରବୃତ୍ତ ହେଲା । ୨୬ ।

## ଅଧ୍ୟାୟ—୧୪୭

ଭୀଷ୍ମ କହିଲେ—ଅନନ୍ତର କ୍ଷୁଧାର୍ତ୍ତ ଲୁବ୍‌ଧକ ଅଗ୍ନି ପ୍ରବିଷ୍ଟ କପୋତ ପ୍ରତି ଦୃଷ୍ଟିପାତ କରି ପୁନର୍ବାର ଏହି କଥା କହିଲା—ଆମ୍ଭେ ଅତିଶୟ ନୃଶଂସ ଓ ନିର୍ବୁଦ୍ଧି ଅଟୁଁ, ଆମ୍ଭେ କି କର୍ମ କଲୁଁ । ଆମ୍ଭେ ଅତିଶୟ କ୍ଷୁଦ୍ରଜୀବୀ, ଏହି କାର୍ଯ୍ୟ ଦ୍ୱାରା ଆମ୍ଭର ଅବଶ୍ୟ ମହାପାତକ ହେବ । ସେ ବାରମ୍ବାର ଏହିପରି ଆତ୍ମ ନିନ୍ଦାକରି କହିଲା—ଆମ୍ଭେ ଯେଉଁ ସ୍ଥଳେ ଶୁଭକାର୍ଯ୍ୟ ପରିତ୍ୟାଗ ପୂର୍ବକ ପକ୍ଷିଲୋଭୀ ହୋଇଅଛୁଁ, ସେ ସ୍ଥଳେ ଆମ୍ଭେ ଅବିଶ୍ୱାସ୍ୟ, ଅତି ଦୁର୍ବୁଦ୍ଧି ଓ ନିୟତ ପାପ ନିରତ ଅଟୁ । ଆମ୍ଭେ ନିତାନ୍ତ ନିଷ୍ଠୁର, ଏଥିନିମିତ୍ତ ମହାତ୍ମା କପୋତ ନିଜର ଦେହକୁ ଦଗ୍‌ଧକରି ଅଦ୍ୟ ଆମ୍ଭଙ୍କୁ ଧିକ୍‌କାର ପୂର୍ବକ ଉପଦେଶ ପ୍ରଦାନ କଲା, ଏଥିରେ ସଂଶୟ ନାହିଁ । ଅତଏବ ଆମ୍ଭେ ପତ୍ନୀ ପୁତ୍ର ପ୍ରଭୃତିଙ୍କୁ ପରିତ୍ୟାଗ ପୂର୍ବକ ପ୍ରିୟପ୍ରାଣକୁ ବିସର୍ଜନ କରିବୁଁ । ମହାତ୍ମା କପୋତ ଆମ୍ଭଙ୍କୁ ଧର୍ମୋପଦେଶ ପ୍ରଦାନ କରିଅଛନ୍ତି । ୫ । ଗ୍ରୀଷ୍ମ କାଳରେ ଅଳ୍ପଜଳ ବିଶିଷ୍ଟ ସରୋବର ଯେପରି ଶୁଷ୍କ ହୁଏ, ସେହିପରି ଆମ୍ଭେ ଅଦ୍ୟଠାରୁ ନିଜର ଦେହକୁ ସର୍ବଭୋଗ ବିବର୍ଜିତ କରି ପରିଶୁଷ୍କ କରିବୁ । ୬ । କ୍ଷୁଧା, ପିପାସା ଓ ଆତପ ସହିଷ୍ଣୁ ହୋଇ କୃଶ ଓ ଧମନୀ ସନ୍ତତ ଶରୀରରେ ବହୁବିଧ ଉପବାସ ଦ୍ୱାରା ପାରଲୌକିକ ଧର୍ମ ଆଚରଣ କରିବୁ । ୭ ।

ଅହୋ ! କପୋତ ଦେହ ଦାନ ଦ୍ୱାରା ଅତିଥି ସତ୍କାର ପ୍ରଦର୍ଶନ କଲା । ଧର୍ମିଷ୍ଠ ବିହଗୋତ୍ତମ ଠାରେ ଯାଦୃଶ ଧର୍ମ ଦେଖାଗଲା, ଆମ୍ଭେ ତାହା ଆଚରଣ କରିବୁଁ, କାରଣ ଧର୍ମ କେବଳ ପରମ ଗତି ଅଟେ । କ୍ରୂରକର୍ମା ଲୁବ୍‌ଧକ ତୀକ୍ଷ୍ଣ ବ୍ରତ ଅବଲମ୍ବନ ପୂର୍ବକ ଏହିପରି କହି ଓ ନିଶ୍ଚୟ କରି ମହା ପ୍ରସ୍ଥାନକୁ ଆଶ୍ରୟ କଲା ଓ ସେହି ବୃଦ୍ଧା କପୋତୀକୁ ମୁକ୍ତ କରି ନାଷ୍ଟି, ଶଳାକା, ଜାଲ ଓ ପିଞ୍ଜର ପ୍ରଭୃତିକୁ ପରିତ୍ୟାଗ କଲା । ୧୧ ।

———

## ଅଧ୍ୟାୟ—୧୪୮

ଭୀଷ୍ମ କହିଲେ—ନିଷାଦ ଗମନ କଲାନ୍ତୁ ପରମ ଦୁଃଖିତା କପୋତ ବନିତା ଶୋକାର୍ତ୍ତି ହୋଇ ରୋଦନ କଲା ଓ ପତିକୁ ସ୍ମରଣ କରି କହିଲା ହେ ନାଥ ! ତୁମ୍ଭେ କେବେ ଆମ୍ଭର ଅପ୍ରିୟ କାର୍ଯ୍ୟ କରିଥିଲ ବୋଲି ମୋର ସ୍ମରଣ ହେଉ ନାହିଁ । ବହୁପତ୍ନୀ ନାରୀମାନେ ମଧ୍ୟ ବିଧବା ହେଲେ ଶୋକ କରନ୍ତି । ୨ । ପତିହୀନା ଦୁଃଖିନୀ ନାରୀ ବନ୍ଧୁବର୍ଗଙ୍କର ଶୋଚନୀୟା ହୁଏ, ତୁମ୍ଭେ ନିଷ୍ଠିତ ଆମ୍ଭଙ୍କୁ ଲାଳନ କରିଅଛ ଏବଂ ବହୁ ମାନ ପୂର୍ବକ ମଧୁର ଓ ମନୋହର ବଚନ ଦ୍ୱାରା ଆମ୍ଭର ସତ୍କାର କରିଅଛ । ଶୈଳ କନ୍ଦରରେ, ନଦୀ ନିର୍ଝରରେ ଓ ରମଣୀୟ ବୃକ୍ଷ ଶିଖରରେ ଅମ୍ଭେ ତୁମ୍ଭ ସହିତ ବିହାର କରିଅଛୁଁ । ଆକାଶ ଗମନ କାଳରେ ସୁଦ୍ଧା ଅମ୍ଭେ ତୁମ୍ଭ ସହିତ ସୁଖରେ ସଞ୍ଚରଣ କରିଅଛୁଁ । ହେ ନାଥ ! ଅମ୍ଭେ ପୂର୍ବେ ତୁମ୍ଭ ସହିତ ଯେଉଁସବୁ ବିହାର କରିଅଛୁଁ, ଆଜି ସେ ସବୁ କାହିଁ ଗଲା ? । ୫ । ପିତା, ଭ୍ରାତା, ପୁତ୍ର ପ୍ରଭୃତି ପରିମିତ ସୁଖ ଦାନ କରନ୍ତି । କିନ୍ତୁ ଅପରିମିତ ସୁଖ ଦାତା ପତିଙ୍କୁ କିଏ ପୂଜା ନ କରେ ? ପତିଙ୍କ ସଦୃଶ ନାଥ ନାହିଁ, ପତିଙ୍କ ସଦୃଶ ସୁଖକର ନାହିଁ । ସର୍ବସ୍ୱଧନ ପରିତ୍ୟାଗ ପୂର୍ବକ ଅବଳାମାନଙ୍କର ପତି କେବଳ ଅବଲମ୍ବନୀୟ । ୭ । ହେ ନାଥ ! ତୁମ୍ଭ ବିନା ବର୍ତ୍ତମାନ ମୋର ଜୀବନରେ ପ୍ରୟୋଜନ ନାହିଁ । କେଉଁ ସତୀ ସ୍ତ୍ରୀ ପତିହୀନା ହୋଇ ଜୀବନ ଧାରଣରେ ଉତ୍ସାହ କରେ ? । ୮ ।

ନିତାନ୍ତ ଦୁଃଖିତା ପତିବ୍ରତା କପୋତୀ କରୁଣସ୍ୱରରେ ଏହିପରି ବହୁପ୍ରକାର ବିଳାପ କରି ପ୍ରଦୀପ୍ତ ହୁତାଶନ ମଧ୍ୟରେ ପ୍ରବେଶ କଲା । ୯ । ତତ୍ପରେ କପୋତବନିତା ବିଚିତ୍ର କଣ୍ଠଧାରୀ ବିମାନସ୍ଥ ପତିଙ୍କୁ ମହାନୁଭବ ସୁକୃତମାନଙ୍କ ଦ୍ୱାରା ପୂଜିତ ହେବାର ଦେଖିଲା । ୧୦ । କପୋତ ତେତେବେଳେ ବିଚିତ୍ର ମାଲ୍ୟ ବସନ ଓ ଆଭରଣରେ ବିଭୂଷିତ ହୋଇ ଶତକୋଟି ବିମାନ ବିହାରୀ ପୁଣ୍ୟବାନ୍ ଲୋକମାନଙ୍କ କର୍ତ୍ତୃକ ଆବୃତ ଥିଲା । ୧୧ । ତଦନନ୍ତର କପୋତ ବିମାନରେ ଆରୋହଣ ପୂର୍ବକ ସ୍ୱର୍ଗ ଲୋକକୁ ଗମନ କରି ସେଠାରେ ନିଜକର୍ମାନୁସାରେ ସତ୍କୃତ ହୋଇ ପ୍ରିୟା ସହିତ ବିହାର କଲା । ୧୨ ।

———

## ଅଧ୍ୟାୟ—୨୪୯

ଭୀଷ୍ମ କହିଲେ—ହେ ରାଜନ୍ ! ନିଷାଦ ସେହି କପୋତ ଦମ୍ପତିଙ୍କୁ ବିମାନାରୋହଣ ପୂର୍ବକ ଅବସ୍ଥାନ କରୁଥିବାର ଦେଖି ଦୁଃଖ ବଶତଃ ଚିନ୍ତା କଲା ଯେ ସେ ତାଦୃଶ ତପସ୍ୟା ଦ୍ୱାରା ପରମ ଗତିକୁ ପ୍ରାପ୍ତ ହେବ । ସେ ମନେ ମନେ ଏହା ନିଶ୍ଚୟ କରି ଗମନ କରିବାର ଉପକ୍ରମ କଲା ।୨। ପକ୍ଷିଜୀବୀ ବ୍ୟାଧ ମହା ପ୍ରସ୍ଥାନକୁ ଆଶ୍ରୟ ପୂର୍ବକ ସ୍ୱର୍ଗ କାମନା ନିମିତ୍ତ ନିଶ୍ଚେଷ୍ଟ ଓ ନିର୍ମମ ହୋଇ ବାୟୁଭକ୍ଷଣ କରିବାକୁ ଆରମ୍ଭ କଲା । ୩ ।

ଅନନ୍ତର ସୁଶୀତଳ ସଲିଳ ସମ୍ପନ୍ନ ସୁବିସ୍ତୀର୍ଣ୍ଣ ବିବିଧ ବିହଗ ବୃନ୍ଦାକୀର୍ଣ୍ଣ ପଦ୍ମ ଶୋଭିତ ଗୋଟିଏ ମନୋହର ସରୋବର ତାହାର ନୟନ ଗୋଚର ହେଲା । ୪ । ପିପାସାର୍ତ୍ତ ବ୍ୟକ୍ତି ତାହା ଦର୍ଶନ କଲେ ନିଃସନ୍ଦେହରେ ତୃପ୍ତ ହୁଏ ।

ହେ ମହାରାଜ ! ଲୁବ୍ଧକ ତତ୍ସମୟରେ ଉପବାସବଶତଃ ଅତିଶୟ କୃଶ ହୋଇଥିଲା । ସେ ସେହି ରମଣୀୟ ସରୋବର ପ୍ରତି ବିଶେଷ ରୂପେ ନୟନ ନିକ୍ଷେପ ନ କରି ବିବିଧ ଶ୍ୱାପଦ ସମାକୀର୍ଣ୍ଣ ଗୋଟିଏ ଘୋରତର ଅରଣ୍ୟ ମଧ୍ୟକୁ ହୃଷ୍ଟ ଚିତ୍ତରେ ପ୍ରବିଷ୍ଟ ହେଲା । ବନମଧ୍ୟରେ ପ୍ରବେଶ କଲା ମାତ୍ରକେ ତାହାର ଦେହ କଣ୍ଟକସମୂହ ଦ୍ୱାରା କ୍ଷତ ବିକ୍ଷତ ହୋଇ ରକ୍ତାକ୍ତ ହୋଇଥିଲା । ତଥାପି ସେ ସେହି ନାନା ମୃଗ ସମାକୁଳ ବିଜନ ବନ ମଧ୍ୟରେ ବିଚରଣ କରିବାରେ ପ୍ରବୃତ୍ତ ହେଲା । ଅନନ୍ତର କାନନ ମଧ୍ୟରେ ପବନ ବେଗ ବଶତଃ ବୃହତ ବୃହତ ବୃକ୍ଷମାନଙ୍କର ସଂଘର୍ଷଣ ଦ୍ୱାରା ପ୍ରବଳ ଦାବାନଳ ସମୁତ୍ଥିତ ହେଲା । ୮ । କ୍ରମଶଃ ପ୍ରଳୟାନଳ ସଦୃଶ ପ୍ରଭା ସମନ୍ୱିତ ପାବକ ବୃଦ୍ଧି ହୋଇ ବିବିଧ ତରୁ ନିକର ପରିପୂର୍ଣ୍ଣ ଲତା ପଲ୍ଲବ ସଂକୁଳ ସେହି ବନକୁ ଦଗ୍ଧ କଲା । ୯ । ଅଗ୍ନିଦେବ ଜ୍ୱାଳା-ମାଳା-ସମନ୍ୱିତ ପବନୋଦ୍ଧୃତ ବିସ୍ଫୁଲିଙ୍ଗ ଦ୍ୱାରା ମୃଗ ପକ୍ଷି ସମାକୁଳ ଘୋରତର ଅରଣ୍ୟକୁ ଦଗ୍ଧ କରୁଥିବା ସମୟରେ, ସେହି ବ୍ୟାଧ ଦେହତ୍ୟାଗ କରିବା ନିମିତ୍ତ କୃତ ନିଶ୍ଚୟ ହୋଇ ହୃଷ୍ଟ ଚିତ୍ତରେ ବର୍ଦ୍ଧିଷ୍ଣୁ ବହ୍ନିମଣ୍ଡଳ ଅଭିମୁଖରେ ଧାବିତ ହେଲା । ୧୧ ।

ହେ ଭରତ ସତ୍ତମ ! ନିଷାଦ ସେହି ଅଗ୍ନି ଦ୍ୱାରା ଦଗ୍ଧ ହୁଅନ୍ତେ ତାହାର କଳୁଷ ରାଶ୍ୟାଦ ନଷ୍ଟ ହେଲା । ପରଶେଷରେ ସେ ପରମାସିଦ୍ଧି ଲାଭ କଲା । ୧୨ । ଅନନ୍ତର ସେ ବିଗତ ଜ୍ୱର ହୋଇ ସ୍ୱର୍ଗଲୋକକୁ ଗମନ ପୂର୍ବକ ଆପଣାକୁ ଯକ୍ଷ ଗନ୍ଧର୍ବ ଓ ସିଦ୍ଧିଗଣଙ୍କ ମଧ୍ୟରେ ଦେବରାଜଙ୍କ ସଦୃଶ ବିରାଜିତ ହେବାର ଦେଖିଲା । ୧୩ । ପତିବ୍ରତା କପୋତୀ ଓ କପୋତ ପୁଣ୍ୟକର୍ମ ଦ୍ୱାରା ନିଷାଦ ସହିତ ଏହି ପ୍ରକାରେ ସୁରଲୋକକୁ ଗମନ କରିଥିଲେ । ୧୪ । ଏହିପରି ଯେଉଁ ନାରୀ ଅବଲମ୍ବରେ ପତିଙ୍କର ଅନୁସରଣ କରେ ସେ ସ୍ୱର୍ଗବାସିନୀ କପୋତୀ ପ୍ରାୟ ବିରାଜିତା ହୁଏ ।୧୫। ମହାତ୍ମା କପୋତ ଓ ଲୁବ୍‌ଧକର ଏହି ଉପାଖ୍ୟାନ କହିଲୁଁ । ଏମାନେ ପବିତ୍ର କର୍ମ ଦ୍ୱାରା ଧର୍ମିଷ୍ଠମାନଙ୍କର ଗତିକୁ ପ୍ରାପ୍ତ ହୋଇଥିଲେ । ୧୬ । ଯେଉଁ ବ୍ୟକ୍ତି ନିତ୍ୟ ଏହି ଉପାଖ୍ୟାନକୁ ଶ୍ରବଣ ଓ କୀର୍ତ୍ତନ କରନ୍ତି, ତାହାଙ୍କର ପ୍ରମାଦବଶତଃ ସୁଦ୍ଧା କଦାପି ମନୋ ମଧ୍ୟରେ ଅଶୁଭ ଜାତ ହୁଏ ନାହିଁ । ୧୭ ।

ହେ ଧାର୍ମିକପ୍ରବର ଯୁଧିଷ୍ଠିର ! ଏହି ପ୍ରକାରେ ଶରଣାଗତ ବ୍ୟକ୍ତିକୁ ରକ୍ଷା କରିବା ମହାନ୍ ଧର୍ମ ଅଟେ । ଏହି କାର୍ଯ୍ୟକରି ଗୋହତ୍ୟାକାରୀ ମନୁଷ୍ୟମାନେ ସୁଦ୍ଧା ପାପକର୍ମରୁ ନିଷ୍କୃତି ଲାଭ କରନ୍ତି । କିନ୍ତୁ ଯେଉଁ ବ୍ୟକ୍ତି ଶରଣାଗତ ଲୋକକୁ ହତ୍ୟାକରେ, ତାହାର ନିଷ୍କୃତି ହୁଏ ନାହିଁ । ମନୁଷ୍ୟ ଏହି ପ୍ରାଣାଶନ ପବିତ୍ର ଇତିହାସକୁ ଶ୍ରବଣ କଲେ ଦୁର୍ଗତି ପ୍ରାପ୍ତ ନ ହୋଇ ସ୍ୱର୍ଗ ଲୋକକୁ ପ୍ରାପ୍ତ ହୁଅନ୍ତି । ୧୯ ।

## ଅଧ୍ୟାୟ—୧୫୦

ଯୁଧିଷ୍ଠିର କହିଲେ—ହେ ଭରତସତ୍ତମ ! ଯେଉଁ ବ୍ୟକ୍ତି ଅଜ୍ଞାନ ପୂର୍ବକ ପାପାଚରଣ କରେ, ସେ କି ପ୍ରକାରେ ତହିଁରୁ ମୁକ୍ତ ହେବ, ତାହା ଆପଣ ଆମ୍ଭଙ୍କୁ କହନ୍ତୁ । ୧ ।

ଭୀଷ୍ମ କହିଲେ—ଶୁନକ ପୁତ୍ର ଇନ୍ଦ୍ରୋତ ଯାହା ଜନମେଜୟଙ୍କୁ କହିଥିଲେ, ଋଷିଗଣ ସଂସ୍ତୁତ ସେହି ପୁରାତନ ବୃତ୍ତାନ୍ତକୁ ତୁମ୍ଭ ନିକଟରେ ବର୍ଣ୍ଣନ କରିବୁ । ୨ । ପରୀକ୍ଷିତଙ୍କ ପୁତ୍ର ଜନମେଜୟ ନାମା ମହାବଳ ପରାକ୍ରାନ୍ତ ଜଣେ ରାଜାଥିଲେ । ସେ ଅଜ୍ଞାନ ପୂର୍ବକ ବ୍ରହ୍ମହତ୍ୟା କରିଥିଲେ

ବୋଲି ପୃଥିବୀପତିଙ୍କ ସହିତ ବ୍ରାହ୍ମଣମାନେ ସମସ୍ତେ ତାହାଙ୍କୁ ପରିତ୍ୟାଗ କରିଥିଲେ । ପରିଶେଷରେ ପ୍ରଜାମାନେ ମଧ୍ୟ ତାହାଙ୍କୁ ପରିତ୍ୟାଗ କରନ୍ତେ, ସେ ଦିବା ନିଶି ଦହ୍ୟମାନ ହୋଇ ବନଗମନ ପୂର୍ବକ ମହତ କଲ୍ୟାଣ ସାଧନ କରିଥିଲେ । ନରପତି ଶୋକରେ ଦଗ୍ଧହୋଇ ଘୋରତର ତପସ୍ୟାଚରଣ କଲେ ଏବଂ ମହୀମଣ୍ଡଳ ମଧ୍ୟରେ ଦେଶରୁ ଦେଶ ପର୍ଯ୍ୟଟନ କରି ବ୍ରହ୍ମହତ୍ୟାଜନିତ ପାପ ଖଣ୍ଡନାର୍ଥ ଅନେକାନେକ ବ୍ରାହ୍ମଣଙ୍କୁ ପ୍ରଶ୍ନ କଲେ । ୭ । ତଦ୍ ବିଷୟରେ ଏହି ଧର୍ମ୍ମ ସଂକ୍ରାନ୍ତ ବୃତ୍ତାନ୍ତ ବର୍ଣ୍ଣନା କରୁଅଛୁଁ ଶ୍ରବଣ କର ।

କୌଣସି ସମୟରେ ରାଜା ଜନମେଜୟ ପାପ କାର୍ଯ୍ୟ ଦ୍ୱାରା ଦହ୍ୟମାନ ହୋଇ ବିଚରଣପୂର୍ବକ ଶୁନକନନ୍ଦନ ସଂଶିତବ୍ରତ ମହର୍ଷି ଇନ୍ଦ୍ରୋତଙ୍କର ନିକଟକୁ ଯାଇ ତାହାଙ୍କର ଚରଣ ଯୁଗଳକୁ ଧାରଣ କଲେ । ମହର୍ଷି ତତ୍କାଳରେ ନୃପତିଙ୍କ ପ୍ରତି ଅବଲୋକନ ପୂର୍ବକ ନିତାନ୍ତ ଭର୍ତ୍ସନା କରି କହିଲେ—ତୁମ୍ଭେ ବ୍ରହ୍ମହତ୍ୟାକାରୀ ମହା ପାପାଗ୍ରସ୍ତ ହୋଇ କି ନିମିତ୍ତ ଏଠାକୁ ଆଗମନ କରିଅଛ ? ଅମ୍ଭଠାରେ ତୁମ୍ଭର ପ୍ରୟୋଜନ କଣ ? ତୁମ୍ଭେ ଅମ୍ଭଙ୍କୁ କୌଣସି ପ୍ରଶ୍ନ କରନାହିଁ । ଯାଅ, ଯାଅ, ଏହା ତୁମ୍ଭର ଉପଯୁକ୍ତ ସ୍ଥାନ ନୁହେ । ତୁମ୍ଭ ଆଗମନରେ ଆମ୍ଭେ ପ୍ରୀତ ନୋହୁଁ । ୧୦ । ତୁମ୍ଭର ଶରୀରରୁ ରୁଧିର ପ୍ରାୟ ଗନ୍ଧ ନିର୍ଗତ ହେଉଅଛି । ତୁମ୍ଭର ଆକୃତି ଶବ ପ୍ରାୟ ଦେଖା ଯାଉଅଛି । ତୁମ୍ଭେ ଅମଙ୍ଗଳାତୁର ହୋଇ ମଙ୍ଗଳାତୁର ପ୍ରାୟ ଏବଂ ମୃତ ହୋଇ ଜୀବିତ ପ୍ରାୟ ବିଚରଣ କରୁଅଛ । ୧୧ । ତୁମ୍ଭେ ଅନୁକ୍ଷଣ ପାପ ଚିନ୍ତା କରି ଅବିଶୁଦ୍ଧ ସ୍ୱଭାବ, ଅତଏବ ବ୍ରହ୍ମହତ୍ୟା କର୍ତ୍ତୃକ ଆକ୍ରାନ୍ତ ହୋଇଅଛ । ତୁମ୍ଭେ ପ୍ରସୁପ୍ତ ଓ ପ୍ରବୁଦ୍ଧ ହୋଇଅଛ ସତ୍ୟ କିନ୍ତୁ ନିତାନ୍ତ ଅସୁଖ ଭୋଗ କରୁଅଛ । ୧୨ ।

ହେ ରାଜନ୍ ! ତୁମ୍ଭର ଜୀବନ ନିରର୍ଥକ; ତୁମ୍ଭେ ଅତିଶୟ କ୍ଳେଶରେ ଜୀବନ ଯାପନ କରୁଅଛ । ହୀନତର ପାପକର୍ମ୍ମ କରିବା ନିମିତ୍ତ ବିଧାତା ତୁମ୍ଭଙ୍କୁ ସୃଷ୍ଟି କରିଅଛନ୍ତି । ୧୩ । ପିତୃଗଣ ବହୁ କଲ୍ୟାଣ ଇଚ୍ଛାକରି, ତପସ୍ୟା, ଦେବପୂଜା, ବନ୍ଦନା, ତିତିକ୍ଷା ଦ୍ୱାରା ପୁତ୍ର କାମନା କରନ୍ତି । କିନ୍ତୁ ତୁମ୍ଭପାଇଁ ତୁମ୍ଭର ପିତୃଲୋକ ସମସ୍ତ ନରକଗାମୀ ହୋଇଅଛନ୍ତି । ତୁମ୍ଭଠାରେ ସେମାନଙ୍କର ଯେଉଁ ଆଶା ବନ୍ଧନ ଥିଲା ତାହା ନିରର୍ଥକ ହୋଇଅଛି । ୧୫ । ଲୋକମାନେ ଯେଉଁମାନଙ୍କୁ ପୂଜା କରି ସ୍ୱର୍ଗ, ଆୟୁ ଓ

ନାଶୋଲବ୍ କରନ୍ତି ତୁମ୍ଭେ ଅକାରଣ ସେହି ବ୍ରାହ୍ମଣମାନଙ୍କ ପ୍ରତି ଦ୍ୱେଷ କର । ୧୬ । ଅତଏବ ତୁମ୍ଭେ ଇହଲୋକକୁ ପରିତ୍ୟାଗପୂର୍ବକ ପାପକର୍ମ୍ମ ବଶତଃ ଅଧଃଶିର୍ ହୋଇ ସମସ୍ତ କର୍ମ୍ମଫଳ ଭୋଗାର୍ଥ ଦୀର୍ଘକାଳ ନରକରେ ନିମଗ୍ନ ରହିବ । ୧୭ । ସେଠାରେ ଗୃଧ୍ର ଓ ଅୟୋମୁଖ ମୟୂରଗଣ ଅନୁକ୍ଷଣ ତୁମ୍ଭଙ୍କୁ ଭକ୍ଷଣ କରିବେ । ଅନନ୍ତର ତୁମ୍ଭେ ପୁନର୍ବାର ପାପଯୋନିକୁ ପ୍ରାପ୍ତ ହେବ । ୧୮ । ହେ ରାଜନ୍ । ଯଦି ତୁମ୍ଭେ ବିବେଚନା କର ଯେ ଇହଲୋକ ତ ନାହିଁ, ପରଲୋକ ବା କେଉଁଠାରୁ ଆସିବ ? ଏପରି ଭାବିଲେ ଯମାଳୟରେ ଯମଦୂତଗଣ ପ୍ରତିପକ୍ଷ ତୁମ୍ଭଙ୍କୁ ସ୍ମରଣ କରାଇ ଦେବେ । ୧୯ ।

## ଅଧ୍ୟାୟ—୧୫୧

ଭୀଷ୍ମ କହିଲେ—ଇନ୍ଦ୍ରୋତ ମୁନି ଜନମେଜୟଙ୍କୁ ଏହିପରି କହନ୍ତେ, ସେ ମୁନିଙ୍କୁ ସମ୍ବୋଧନ ପୂର୍ବକ କହିଲେ, ହେ ତପୋଧନ । ଆପଣ ନିନ୍ଦନୀୟ ବ୍ୟକ୍ତିଙ୍କୁ ନିନ୍ଦା କରନ୍ତି, ଏଥିପାଇଁ ଆମ୍ଭେ ନିନ୍ଦନୀୟ ହୋଇଅଛୁଁ ଓ ନିନ୍ଦନୀୟ କାର୍ଯ୍ୟ କରିଅଛୁଁ । ସୁତରାଂ ଆମ୍ଭଙ୍କୁ ଓ ଆମ୍ଭର କାର୍ଯ୍ୟକୁ ଆପଣ ନିନ୍ଦା କରୁଅଛନ୍ତି । ଅତଏବ ଆମ୍ଭେ ଆପଣଙ୍କୁ ପ୍ରସନ୍ନ କରାଉଅଛୁଁ । ଆମ୍ଭେ ଯାହା କିଛି କରିଅଛୁଁ ତାହା ସବୁ ଦୁଷ୍କର୍ମ ଅଟେ । ବର୍ତ୍ତମାନ ଆମ୍ଭେ ଅଗ୍ନି ମଧ୍ୟରେ ଅର୍ପିତ ହୋଇ ପ୍ରଜ୍ୱଳିତ ହେଲପ୍ରାୟ ହେଉଅଛୁଁ ।୨। ସ୍ୱକୀୟ କର୍ମ୍ମମାନ ସ୍ମରଣ କରି ଆମ୍ଭର ଅନ୍ତଃକରଣ କୌଣସି ପ୍ରକାରରେ ସନ୍ତୁଷ୍ଟ ହେଉନାହିଁ । ଆମ୍ଭେ ଯମଙ୍କଠାରୁ ନିତାନ୍ତ ଭୀତ ହେଉଅଛୁଁ । ୩ । ଯମଭୟ ସ୍ୱରୂପ ଶଲ୍ୟକୁ ଉଦ୍ଧାର ନ କରି କି ପ୍ରକାରରେ ଜୀବନ ଧାରଣ କରିବାକୁ ସମର୍ଥ ହେବୁ ।

ହେ ଶୌନକ । ଆପଣ ସମୁଦାୟ କ୍ରୋଧ ପରିତ୍ୟାଗ ପୂର୍ବକ ଆମ୍ଭଙ୍କୁ ସଦୁପଦେଶ ପ୍ରଦାନ କରନ୍ତୁ । ୪ । ପୂର୍ବେ ଆମ୍ଭେ ବ୍ରାହ୍ମଣମାନଙ୍କ ପ୍ରତି ଅତିଶୟ ଭକ୍ତିମାନ୍ ଥିଲୁଁ । ସମ୍ପ୍ରତି ମଧ୍ୟ କହୁଅଛୁଁ, ବ୍ରାହ୍ମଣମାନଙ୍କ ପ୍ରତି ପୁନର୍ବାର ଆଉ ଅଭକ୍ତି କରିବୁ ନାହିଁ । ଆମ୍ଭର ଏହି ବଂଶର ଶେଷ ଥାଉ; ଏହାର ଯେପରି ପରାଭବ ନ ହୁଏ । ୫ । ଯେଉଁମାନେ ବ୍ରାହ୍ମଣ ହିଂସକ ଏବଂ ସ୍ୱଜାତି ପରିବର୍ଜିତ ହୋଇଅଛନ୍ତି, ସେମାନଙ୍କର ଶେଷ ହେବା ଉଚିତ ନୁହେ । ତଥାପି ବେଦନିଷ୍ଠିତ ଆପଣଙ୍କୁ ପୁନରପି କିଛି

କହିବ । ୬ । ଅମ୍ଭେ ନିତାନ୍ତ ନିର୍ବୁଦ୍ଧି ହୋଇଅଛୁଁ, ଅତଏବ ଯୁକ୍ତାଯୁକ୍ତ ବାକ୍ୟ ସବୁ ପୁନଃ ପୁନଃ ପ୍ରକାଶ କରିବୁ । ସଙ୍ଗହୀନ ଯୋଗିମାନେ ଯେପରି ଅନୁକମ୍ପା ପ୍ରକାଶ ପୂର୍ବକ ନିର୍ଦ୍ଧନ ଲୋକମାନଙ୍କୁ ପୁନଃ ପୁନଃ ପ୍ରତିପାଳନ କରନ୍ତି, ସେହିପରି ଆପଣ ମଧ୍ୟ ଆମ୍ଭଙ୍କୁ ରକ୍ଷା କରନ୍ତୁ । ୭ । ଅଯାଜ୍ଞିକ ମନୁଷ୍ୟମାନେ କୌଣସି ପ୍ରକାରେ ଏହି ଲୋକକୁ ପ୍ରାପ୍ତ ହୁଅନ୍ତି ନାହିଁ । ସେମାନେ ପୁଳିନ୍ଦ ଓ ଶବର ପ୍ରଭୃତି ମ୍ଳେଚ୍ଛଜାତି ସଦୃଶ ନରକରେ ଅବସ୍ଥାନ କରନ୍ତି । ୮ । ହେ ବ୍ରହ୍ମନ୍ ! ଆପଣ ସୁପଣ୍ଡିତ ଅଟନ୍ତି; ଅତଏବ ଆମ୍ଭେ ନ ଜାଣି ବାଳକ ପ୍ରାୟ ଯାହା କରିଅଛୁଁ, ଆପଣ ତାହା କ୍ଷମା କରନ୍ତୁ । ପିତା ପୁତ୍ର ପ୍ରତି ପ୍ରସନ୍ନ ହେଲା ପ୍ରାୟ, ଆପଣ ଆମ୍ଭ ପ୍ରତି ପ୍ରସନ୍ନ ହେଉନ୍ତୁ । ୯ ।

ଶୌନକ କହିଲେ—ବ୍ରାହ୍ମଣ ଜାତି କୋପବଶତଃ ନାନାପ୍ରକାର ଅଯୁକ୍ତ କର୍ମ କଲେ ସୁଦ୍ଧା ତାହା ଆଶ୍ଚର୍ଯ୍ୟଜନକ ନୁହେ । ଜ୍ଞାନବାନ୍ ହୋଇ ସୁଦ୍ଧା ଯେଉଁ ବ୍ୟକ୍ତି ଜୀବମାନଙ୍କ ପ୍ରତି ଅନୁରୂପ ବ୍ୟବହାର ନ କରେ; ତାହାହିଁ ଆଶ୍ଚର୍ଯ୍ୟଜନକ ଅଟେ । ୧୦ । ବୁଦ୍ଧିମାନ ବ୍ୟକ୍ତି ପ୍ରଜ୍ଞାରୂପ ପ୍ରାସାଦରେ ଆରୋହଣପୂର୍ବକ ସ୍ୱୟଂ ଅଶୋଚ୍ୟ ହୋଇ ଅନ୍ୟ ନିମିତ୍ତ ଶୋଚ କରନ୍ତି ଏବଂ ଶୈଳବାସୀ ସଦୃଶ ଜଗତୀସ୍ଥ ସମସ୍ତ ବସ୍ତୁକୁ ପ୍ରଜ୍ଞାବଳଦ୍ୱାରା ବିଲୋକନ କରନ୍ତି । ଯେଉଁ ବ୍ୟକ୍ତି ସାଧୁମାନଙ୍କଠାରେ ନିନ୍ଦନୀୟ ହୋଇ ନିର୍ବେଦ ପ୍ରାପ୍ତ ହୁଏ ଓ ସେମାନଙ୍କ ନୟନର ଅଗୋଚର ହୋଇଥାଏ, ସେ କଦାପି କଲ୍ୟାଣ ଲାଭ ଓ କର୍ତ୍ତବ୍ୟ କାର୍ଯ୍ୟ ଦର୍ଶନ କରିପାରେ ନାହିଁ । ୧୨ । ବେଦାଗମ ବିହିତ ବ୍ରାହ୍ମଣଙ୍କର ବୀର୍ଯ୍ୟ ଓ ମାହାତ୍ମ୍ୟ ତୁମ୍ଭର ଅବିଦିତ ନାହିଁ । ଅତଏବ ବର୍ତ୍ତମାନ ଯଦ୍ଦ୍ୱାରା ଶାନ୍ତି ଲାଭ ହୁଏ, ତୁମ୍ଭେ ତାହା କର । ବ୍ରାହ୍ମଣମାନେ ତୁମ୍ଭଙ୍କୁ ରକ୍ଷା କରନ୍ତୁ । ୧୩ । ହେ ତାତ ! କ୍ରୋଧହୀନ ବ୍ରାହ୍ମଣମାନେ ଯାହା ଆଚରଣ କରନ୍ତି ତାହା ପରକାଳ ସକାଶେ ଉପକାର କରନ୍ତି । ବର୍ତ୍ତମାନ ତୁମ୍ଭେ ପାପରେ ପରିତାପିତ ହୋଇଅଛ । ଅତଏବ ଏକମାତ୍ର ଧର୍ମ୍ମକୁ ଅବଲମ୍ବନ କର । ୧୪ ।

ଜନମେଜୟ କହିଲେ—ହେ ଶୌନକ ! ଅମ୍ଭେ ପାପତାପରେ ଅନୁତାପିତ ହୋଇଥିଲେ ହେଁ ଧର୍ମ୍ମ ଲୋପ କରିନାହୁଁ । ମଙ୍ଗଳ କାମନା କରି ଆପଣଙ୍କର ଆରାଧନା କରୁଅଛୁଁ । ଆପଣ ଆମ୍ଭପ୍ରତି ପ୍ରସନ୍ନ ହେଉନ୍ତୁ । ୧୫ ।

ଶୌନକ କହିଲେ—ହେ ରାଜନ୍ ! ଆମ୍ଭେ ଦମ୍ଭ ଓ ଅଭିମାନ ପରିତ୍ୟାଗ ପୂର୍ବକ ତୁମ୍ଭର ପ୍ରୀତି ଅଭିଳାଷ କରୁଅଛୁଁ । ତୁମ୍ଭେ ଏକମାତ୍ର ଧର୍ମକୁ ସ୍ମରଣ କରି ସର୍ବଭୂତଙ୍କର ହିତ ସାଧନରେ ଅନୁରକ୍ତ ହୁଅ । ୧୬ । ଆମ୍ଭେ ଭୟ, କାର୍ପଣ୍ୟ କିମ୍ବା ଲୋଭ ପରତନ୍ତ୍ର ହୋଇ ତୁମ୍ଭଙ୍କୁ ଅନୁଶାସନ କରୁନାହୁଁ । ତୁମ୍ଭେ ବ୍ରାହ୍ମଣମାନଙ୍କ ସମଭିବ୍ୟାହାରରେ ଆମ୍ଭର ସତ୍ୟ ଉପଦେଶ ବାକ୍ୟକୁ ଶ୍ରବଣ କର । ୧୭ । ଆମ୍ଭେ କୌଣସି ବିଷୟ ପ୍ରାର୍ଥନା କରୁନାହୁଁ, ଲୋକେ ଆମ୍ଭଙ୍କୁ ପାପିଷ୍ଠ, ଯଜ୍ଞଗ୍ରାହୀ ବୋଲି ଧିକ୍କାର କଲେ ସୁଦ୍ଧା ଆମ୍ଭେ ସେମାନଙ୍କ ସମକ୍ଷରେ ତୁମ୍ଭଙ୍କୁ ଉପଦେଶ ପ୍ରଦାନ କରୁଅଛୁଁ । ସୁହୃଜ୍ଜନମାନେ ଏଥିନିମିତ୍ତ ଆମ୍ଭଙ୍କୁ ଅଧାର୍ମିକ ବୋଲି କହିବେ ଏବଂ ପରିତ୍ୟାଗ କରିବେ । କିନ୍ତୁ ସେମାନେ ଆମ୍ଭର ସେହିସବୁ ବାକ୍ୟ ଶ୍ରବଣ କରି ନିତାନ୍ତ ପୀଡ଼ିତ ହେବେ । କୌଣସି କୌଣସି ମହାପ୍ରାଜ୍ଞ ମନୁଷ୍ୟ-ମାନେ ଆମ୍ଭର ପ୍ରକୃତ ଅଭିପ୍ରାୟକୁ ଜାଣି ପାରିବେ । ହେ ଭାରତ ! ବ୍ରାହ୍ମଣମାନଙ୍କ ପ୍ରତି ଆମ୍ଭର ଯେଉଁ ଅଭିପ୍ରାୟ ତାହା ତୁମ୍ଭେ ଅବଗତ ହୁଅ । ୨୦ । ସେମାନେ ଆମ୍ଭପାଇଁ ଯେପରି ଶ୍ରେୟୋଲାଭ କରନ୍ତି, ତୁମ୍ଭେ ତାହା କର । ହେ ନରନାଥ ! ତୁମ୍ଭେ ବ୍ରାହ୍ମଣମାନଙ୍କର ଅନିଷ୍ଟ କରିବ ନାହିଁ ବୋଲି ପ୍ରତିଜ୍ଞା କର । ୨୧ ।

ଜନମେଜୟ ବୋଇଲେ—ହେ ବିପ୍ରବର ! ଆମ୍ଭେ ଆପଣଙ୍କର ଚରଣ ଯୁଗଳକୁ ସ୍ପର୍ଶ କରି ପ୍ରତିଜ୍ଞା କରୁଅଛୁଁ ଯେ, ବାକ୍ୟ, ମନ ଓ କର୍ମ ଦ୍ୱାରା ପୁନର୍ବାର କଦାପି ବ୍ରାହ୍ମଣମାନଙ୍କର ଅନିଷ୍ଟ ଆଚରଣ କରିବୁ ନାହିଁ । ୨୨ ।

## ଅଧ୍ୟାୟ—୧୫୬

ଶୌନକ କହିଲେ—ହେ ରାଜନ୍ ! ସମ୍ପ୍ରତି ତୁମ୍ଭର ଚିତ୍ତ ଧର୍ମ-ପଥକୁ ପ୍ରତ୍ୟାବୃତ୍ତ ହୋଇଅଛି । ଏଥିପାଇଁ ଆମ୍ଭେ ତୁମ୍ଭକୁ ଉପଦେଶ ପ୍ରଦାନ କରିବୁ । ତୁମ୍ଭେ ଶ୍ରୀମାନ୍, ମହାବଳ ପରାକ୍ରାନ୍ତ ଓ ସନ୍ତୁଷ୍ଟ ହୋଇ ସ୍ୱୟଂ ଧର୍ମଦର୍ଶୀ ହୋଇଅଛ । ୧ । ନୃପତିମାନେ ପ୍ରଥମେ ଉଗ୍ରସ୍ୱଭାବ ହୋଇ ପରିଶେଷରେ ସ୍ୱକୀୟ ସଚ୍ଚରିତ୍ର ଦ୍ୱାରା ଜୀବଗଣଙ୍କ ପ୍ରତି ଅନୁଗ୍ରହ ପ୍ରକାଶ କରିଥାନ୍ତି, ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟ ଅଟେ । ୨ । ଲୋକେ କହନ୍ତି ଯେ ଯେଉଁ ରାଜା ନିଷ୍ଠୁର ହୁଅନ୍ତି, ସେ ସମସ୍ତ ଲୋକଙ୍କୁ ସନ୍ତାପିତ କରନ୍ତି ।

ତୁମ୍ଭେ ମଧ ପୂର୍ବେ ତାଦୃଶ ହୋଇ ବର୍ତ୍ତମାନ ଧର୍ମ୍ମଦର୍ଶୀ ହେଉଅଛ । ୩ ॥ ହେ ଜନମେଜୟ ! ତୁମ୍ଭେ ରାଜଭୋଗ୍ୟ ଭକ୍ଷ୍ୟ ଭୋଜ୍ୟ ପରିତ୍ୟାଗ କରି ଦୀର୍ଘକାଳ ଯେ ତପସ୍ୟା ଅବଲମ୍ବନ କରିଅଛ, ତାହା ଅଧର୍ମ୍ମାଭିଭୂତ ରାଜାମାନଙ୍କ ପକ୍ଷରେ ଅଦ୍ଭୁତ କାର୍ଯ୍ୟ ଅଟେ । ୪ । ସମୃଦ୍ଧି ସମ୍ପନ୍ନ ଦାତା କିମ୍ବା କୃପଣ ଯେ ତପୋଧନ ହୁଅନ୍ତି, ତାହା ଆଶ୍ଚର୍ଯ୍ୟଜନକ ନୁହେଁ । କାରଣ ସେମାନେ ତପସ୍ୟାର ଦୂରତର ଦେଶରେ ଅବସ୍ଥିତ କରନ୍ତି ନାହିଁ । ୫ । ପୂର୍ବାପର ପର୍ଯ୍ୟାଲୋଚନା ନ କରି କାର୍ଯ୍ୟ କଲେ ଦୋଷ ଘଟିବାର ସମ୍ଭାବନା ଥାଏ, କିନ୍ତୁ ପରୀକ୍ଷାପୂର୍ବକ କାର୍ଯ୍ୟ କଲେ ତଦ୍ୱାରା ନାନା ଗୁଣ ଉତ୍ପନ୍ନ ହୋଇଥାଏ । ୬ ।

ହେ ମହାରାଜ ! ଯଜ୍ଞ, ଦାନ, ଦୟା, ବେଦାଧ୍ୟୟନ ଓ ସତ୍ୟ କଥନ ଏହି ପାଞ୍ଚୋଟି ପବିତ୍ର କର୍ମ୍ମ ଅଟେ ଏବଂ ଉତ୍ତମ ରୂପରେ ତପସ୍ୟା କରିବା ଭୂପାଳମାନଙ୍କର ପରମ ପବିତ୍ର ଧର୍ମ୍ମ । ହେ ଜନମେଜୟ ! ତୁମ୍ଭେ ସମ୍ୟକ ରୂପେ ସେହି ତପସ୍ୟା କରିବା ଦ୍ୱାରା ଶ୍ରେଷ୍ଠତର ଧର୍ମ୍ମ ଲାଭ କରିବ । ୮ । ପବିତ୍ର ଦେଶକୁ ଗମନ କରିବା ପରମ ପବିତ୍ର କର୍ମ୍ମ ଅଟେ । ଏହା ଋଷିଗଣ ସ୍ମରଣ କରି ଅଛନ୍ତି । ଏ ବିଷୟରେ ଯଯାତି ରାଜା ଯେଉଁ ଗାଥା କୀର୍ତ୍ତନ କରି ଅଛନ୍ତି ପଣ୍ଡିତମାନେ ତାହାକୁ ଉଦାହରଣ ପ୍ରଦର୍ଶନ କରିଥାନ୍ତି । ୯ । ଯେଉଁ ମନୁଷ୍ୟ ନିଜର ଦୀର୍ଘ ଜୀବନ କାମନା କରେ, ସେ ଯତ୍ନ ସହକାରେ ଯଜ୍ଞାନୁଷ୍ଠାନ କରି ପରିଶେଷରେ ତାହା ପରିତ୍ୟାଗ ପୂର୍ବକ ତପସ୍ୟା ଆଚରଣ କରିବ । ୧୦ । ପଣ୍ଡିତମାନେ କୁରୁକ୍ଷେତ୍ରକୁ ପବିତ୍ର ତୀର୍ଥ ବୋଲି କହନ୍ତି । କୁରୁକ୍ଷେତ୍ର ଅପେକ୍ଷା ସରସ୍ୱତୀ ପବିତ୍ର ଅଟେ । ସରସ୍ୱତୀ ଅପେକ୍ଷା ତତୀରସ୍ଥ ତୀର୍ଥମାନ ଏବଂ ସରସ୍ୱତୀ ତୀର୍ଥ ଅପେକ୍ଷା ପୃଥୂଦକ ତୀର୍ଥ ପବିତ୍ର ଅଟେ । ଯେଉଁ ତୀର୍ଥରେ ଅବଗାହନ କଲେ ଓ ଯାହାର ସଲିଳ ପାନ କଲେ ମନୁଷ୍ୟ ଅକାଳ ମରଣ ନିମିତ୍ତ ସନ୍ତାପିତ ହୁଅନ୍ତି ନାହିଁ, ଯେ ଦୀର୍ଘାୟୁ କାମନା କରନ୍ତି ସେ ମହା ସରୋବର ପୁଷ୍କର, ପ୍ରଭାସ, ଉତ୍ତର-ମାନସ ଓ କାଳୋଦକ ପ୍ରଭୃତି ତୀର୍ଥକୁ ଗମନ କରିବେ । ସରସ୍ୱତୀ ଓ ଦୃଷଦ୍ୱତୀ ନଦୀ ଦ୍ୱୟର ସଙ୍ଗମ ସ୍ଥାନରେ ଏବଂ ମାନସ ସରୋବରରେ ସ୍ୱାଧ୍ୟାୟଶୀଳ ହୋଇ ସ୍ନାନାଚମନ କରିବେ ।

ମନୁ କହିଅଛନ୍ତି ଯେ ସମସ୍ତ ପବିତ୍ର ଧର୍ମ୍ମ ମଧ୍ୟରେ ତ୍ୟାଗଧର୍ମ୍ମ ପବିତ୍ରତର ଏବଂ ସନ୍ନ୍ୟାସ ଧର୍ମ୍ମ ତଦପେକ୍ଷା ସମଧିକ ପବିତ୍ର ଅଟେ । ଏ

ବିଷୟରେ ସତ୍ୟବାନ ନିଜର ଅଭିମତକୁ ପ୍ରକାଶ କରି ଅଛନ୍ତି ଏବଂ ପଣ୍ଡିତମାନେ ତାହାକୁ ଏକା ଉଦାହରଣ ପ୍ରଦର୍ଶନ କରନ୍ତି । ରାଗ ଓ ଦ୍ୱେଷ ବିବର୍ଜିତ ବାଳକ ଯେପରି ପୁଣ୍ୟ ଓ ପାପରେ ଆସକ୍ତ ହୁଏ ନାହିଁ, ତୁମ୍ଭେ ମଧ୍ୟ ସେହିପରି ପାପ ପୁଣ୍ୟାନୁଷ୍ଠାନରୁ ନିବୃତ୍ତ ହୁଅ । ୧୫ ।

ଏହି ପୃଥିବୀରେ ସୁଖ ଦୁଃଖ କିଛି ନାହିଁ । ଜୀବଗଣଙ୍କର ପୁନ କାଳାଦି ସଂଯୋଗ ଓ ବିୟୋଗଜନିତ ସୁଖ ଦୁଃଖ କଳ୍ପିତ ମାତ୍ର । ନିଖିଳ କଳୁଷ ସଂସର୍ଗକାରୀ ପୁରୁଷମାନଙ୍କର ପୁଣ୍ୟ ଓ ପାପ ନିବୃତ୍ତ ହେଲେ ସେମାନେ ବ୍ରହ୍ମ ସ୍ୱରୂପକୁ ପ୍ରାପ୍ତ ହୋଇ ଜୀବନ ବିସର୍ଜନ ପୂର୍ବକ ପରମ କଲ୍ୟାଣ ଭାଜନ ହୁଅନ୍ତି । ସମ୍ପ୍ରତି ଭୂପାଳମାନଙ୍କର କର୍ତ୍ତବ୍ୟ କାର୍ଯ୍ୟ ମଧ୍ୟରେ ଯାହା ଶ୍ରେଷ୍ଠତର, ତାହା ତୁମ୍ଭଙ୍କୁ କହୁଅଛୁ । ୧୭ । ହେ ଜନନାଥ ! ତୁମ୍ଭେ ଧର୍ମ ଏବଂ ଦାନ ଦ୍ୱାରା ସ୍ୱର୍ଗଲୋକକୁ ଅଧିକାର କର । ଯାହାର ଧୈର୍ଯ୍ୟ ଓ ଦାନଶକ୍ତି ଅଛି, ସେହି ସେ ଧାର୍ମିକ ଅଟେ । ୧୮ ।

ହେ ନୃପ ! ତୁମ୍ଭେ ବ୍ରାହ୍ମଣମାନଙ୍କର ସୁଖ ନିମିତ୍ତ ପୃଥିବୀ ପାଳନ କର । ପୂର୍ବେ ଯେପରି ବ୍ରାହ୍ମଣମାନଙ୍କୁ ନିନ୍ଦା କରିଥିଲେ, ବର୍ତ୍ତମାନ ସେହିପରି ସେମାନଙ୍କୁ ପ୍ରସନ୍ନ କର । ୧୯ । ବ୍ରାହ୍ମଣମାନଙ୍କ କର୍ତ୍ତୃକ ବାରମ୍ବାର ଧିକ୍କୃତ ଓ ପରିତ୍ୟକ୍ତ ହେଲେ ହେଁ ତୁମ୍ଭେ ଆତ୍ମ ଉପମା ଦ୍ୱାରା ସେମାନଙ୍କୁ କଦାପି ନିହତ କରିବ ନାହିଁ । ଏହା ନିଶ୍ଚୟ କର । ନିଜର କାର୍ଯ୍ୟରେ ନିଯୁକ୍ତ ଥାଇ ପରମ କଲ୍ୟାଣ ସାଧନ କର । ୨୦ । କୌଣସି କୌଣସି ରଜା ହିମପ୍ରାୟ ଶୀତଳ, ଅଗ୍ନିନ୍ୟାୟ କ୍ରୂର ଏବଂ ଯମ ସଦୃଶ ଗୁଣ ଦୋଷ ବିଚାରକ ହୋଇଥାନ୍ତି । ଆଉ କୌଣସି କୌଣସି ଶତ୍ରୁ-ତାପନ ନୃପତି ଲଙ୍ଗଳପ୍ରାୟ ବିପକ୍ଷର ମୂଳୋନ୍ମୂଳନ କରନ୍ତି ଏବଂ ବଜ୍ର-ସଦୃଶ ଆକସ୍ମିକ ପାତଦ୍ୱାରା ଦୁଷ୍ଟମାନଙ୍କର ଶାସନ କରିଥାନ୍ତି । ୨୧ । ଅର୍ଥାତ୍ ବିଦଗ୍ଧାଦି ଦ୍ୱାରା ଏବଂ ସାମାନ୍ୟ ଭାବରେ ଅର୍ଥାତ୍ ବ୍ରାହ୍ମଣତ୍ୱାଦି ହେତୁରୁ ଅସାଧୁ ଲୋକ ସହିତ ସଙ୍ଗତ ହେବ ନାହିଁ । ଅତଏବ କଲ୍ୟାଣାର୍ଥୀ ବ୍ୟକ୍ତିଙ୍କର ଖଳ ସହିତ କଦାପି ପ୍ରୀତି କରିବା କର୍ତ୍ତବ୍ୟ ନୁହେଁ । ୨୨ । ଥରେ ପାପାଚରଣ କରି ପରିତାପ କଲେ ତହିଁରେ ମୁକ୍ତ ହୁଏ । ଦ୍ୱିତୀୟ ଥର ପାପାଚରଣ କରି, "ପୁନର୍ବାର ଏପରି କରିବୁ ନାହିଁ" ବୋଲି ପ୍ରତିଜ୍ଞା କଲେ, ସେହି ପାପରୁ ଅବ୍ୟାହତି ଲାଭ ହୁଏ । ତୃତୀୟବାର ପାପାଚରଣ କରି ଧର୍ମାଚରଣ କରିବୁ ବୋଲି ଦୃଢ଼ ପ୍ରତିଜ୍ଞା ହେଲେ ଉକ୍ତ

ପାପ ନଷ୍ଟ ହୁଏ । ବହୁଳ ପାପ କର୍ମ୍ମ କରି ପବିତ୍ର ହୋଇ ତୀର୍ଥ ପର୍ଯ୍ୟଟନ କଲେ ତହିଁରୁ ମୁକ୍ତିଲାଭ ହୁଏ । ୨୪ । ଜ୍ଞାନାଭିଳାଷୀ ମନୁଷ୍ୟର କଲ୍ୟାଣ ପଥର ପଥିକ ହେବା ଉଚିତ । ଯେଉଁମାନେ ସୁଗନ୍ଧ ଦ୍ରବ୍ୟ ସେବା କରନ୍ତି, ସେମାନଙ୍କର ଗାତ୍ର ସୁଗନ୍ଧ ହୁଏ । ଆଉ ଯେଉଁମାନେ ଦୁର୍ଗନ୍ଧ ଦ୍ରବ୍ୟ ସେବା କରନ୍ତି, ସେମାନଙ୍କର ଦେହ ଦୁର୍ଗନ୍ଧମୟ ହୋଇଥାଏ । ତପସ୍ୟା-ପରାୟଣ ବ୍ୟକ୍ତି ପାପରୁ ସଦ୍ୟ ବିମୁକ୍ତ ହୁଅନ୍ତି । ୨୬ । ଅଭିଶପ୍ତ ବ୍ୟକ୍ତି ସମ୍ବତ୍ସର କାଳ ପର୍ଯ୍ୟନ୍ତ ଅଗ୍ନି ଉପାସନା କଲେ ମୁକ୍ତି ଲାଭ କରେ । ଭ୍ରୁଣ ହତ୍ୟାକାରୀ ମାନବ ତିନି ବର୍ଷର କାଳ ପର୍ଯ୍ୟନ୍ତ ଅଗ୍ନି ଉପାସନା କଲେ ମୁକ୍ତ ହୁଅନ୍ତି । ଆଉ ଭ୍ରୂଣହତ୍ୟା ବ୍ୟକ୍ତି ଶତଯୋଜନ ଦୂରରୁ ଯଦି ମହା ସରୋବର ପୁଷ୍କର, ପ୍ରଭାସ ଓ ଉତ୍ତର ମାନସ ତୀର୍ଥକୁ ଆଗମନ କରେ, ତେବେ ସେ ପାପରୁ ମୁକ୍ତ ହୁଏ । ୨୮ । ପ୍ରାଣିଘାତକ ମାନବ ଯେତେ ପ୍ରାଣି ହତ୍ୟା କରେ ତଦ୍ଦ୍ୱାରା ସେତେ ସଂଖ୍ୟକ ପ୍ରାଣି ମିୟମାଣ ହେଉଥିବା ସମୟରେ ସେମାନଙ୍କୁ ବନ୍ଧନରୁ ମୁକ୍ତ କଲେ ତତ୍ ପାପରୁ ମୁକ୍ତ ହୁଏ ।

ମନୁ କହି ଅଛନ୍ତି—ଯେ ପାପୀ ବ୍ୟକ୍ତି ଅଘମର୍ଷଣ ମନ୍ତ୍ର ତିନିଥର ଜପ କରି ଜଳ ମଧ୍ୟରେ ଯଦି ନିମଗ୍ନ ହୁଏ, ତାହାହେଲେ ସେ ଅଶ୍ୱମେଧ ଯଜ୍ଞାବସାନରେ ସ୍ନାତବ୍ୟକ୍ତି ପ୍ରାୟ ପବିତ୍ର ହୋଇ ପାପ ଖଣ୍ଡନ ପୂର୍ବକ ଜନ ସମାଜରେ ସମାଦୃତ ହୁଏ ଏବଂ ପ୍ରତ୍ୟେକ ଜୀବ ଜଡ଼ ଓ ମୂକ ସଦୃଶ ତାହା ପ୍ରତି ପ୍ରସନ୍ନ ହୁଅନ୍ତି । ୩୧ ।

ହେ ରାଜନ୍ ! ପୂର୍ବେ ଦେବତା ଓ ଅସୁରମାନେ ସୁରଗୁରୁ ବୃହସ୍ପତିଙ୍କ ନିକଟକୁ ଗମନ କରି ବିନୀତ ବାକ୍ୟରେ କହିଥିଲେ—ହେ ମହର୍ଷେ ! ଆପଣ ସୁଖରୂପ ଧର୍ମ୍ମ ଫଳକୁ ଅବଗତ ଅଛନ୍ତି ଏବଂ ଯଦ୍ଦ୍ୱାରା ପରଲୋକରେ ନରକ ଭୋଗ କରାଯାଏ, ସେହି ପାପର ଫଳ ମଧ୍ୟ ଆପଣଙ୍କୁ ଅବିଦିତ ନାହିଁ । ୩୨ । ଯାହାର ପାପ ଓ ପୁଣ୍ୟ ଉଭୟ ସମାନ, ତାହାର କଣ ପୁଣ୍ୟ ଦ୍ୱାରା ପାପ ଜୟ ହୁଏ ନାହିଁ ? ପୁଣ୍ୟର ଫଳ କି ପ୍ରକାର ଏବଂ ଧର୍ମ୍ମଶୀଳ ମାନବ କି ପ୍ରକାର ପାପ ଖଣ୍ଡନ କରନ୍ତି ଆପଣ ଆମ୍ଭମାନଙ୍କୁ ତାହା କହନ୍ତୁ । ୩୩ ।

ବୃହସ୍ପତି ବୋଇଲେ—ପ୍ରଥମତଃ ଅଜ୍ଞାନ ପୂର୍ବକ ପାପକର୍ମ୍ମ କରି ପରେ ଯଦି ଜ୍ଞାନ ପୂର୍ବକ ପୁଣ୍ୟାନୁଷ୍ଠାନ କରେ ତେବେ କ୍ଷାର ସଂଯୋଗ

ଦ୍ୱାରା ମଳିନ ବସ୍ତ୍ରର ମାଳିନ୍ୟ ଦୂରୀକରଣ କଲା ପ୍ରାୟ, ପୁଣ୍ୟଶୀଳ ବ୍ୟକ୍ତି ଧର୍ମାନୁଷ୍ଠାନ ଦ୍ୱାରା ପାପ ଖଣ୍ଡନ କରିବାକୁ ସମର୍ଥ ହୁଅନ୍ତି । ୩୫ । ପୁରୁଷ ପାପକର୍ମ କରି ଅଭିମାନ କରିବ ନାହିଁ । ଶ୍ରଦ୍ଧାଯୁକ୍ତ ଓ ଅସୂୟା ବିରହିତ ହୋଇ ମଙ୍ଗଳ କାମନା କରିବ । ଯେଉଁ ପୁରୁଷ ପାପାଶ୍ରିତ କରି କଲ୍ୟାଣ କାମନା କରେ ସେ ସାଧୁମାନଙ୍କର ବିବୃତ ଛିଦ୍ରମାନଙ୍କୁ ଆବରଣ କରିବ । ୩୬ । ସୂର୍ଯ୍ୟଦେବ ଯେପରି ପ୍ରଭାତ ସମୟରେ ସମୁଦିତ ହୋଇ ସମସ୍ତ ତମକୁ ବିନଷ୍ଟ କରନ୍ତି, ଧର୍ମାଶ୍ରିତ ବ୍ୟକ୍ତି ସେହିପରି ସମସ୍ତ ପାପକୁ ଖଣ୍ଡନ କରନ୍ତି । ୩୭ ।

ଭୀଷ୍ମ କହିଲେ—ଶୁନକ ନନ୍ଦନ ମହର୍ଷି ଇନ୍ଦ୍ରୋତ ନରପତି ଜନମେଜୟଙ୍କୁ ଏହିପରି କହି ବିଧାନାନୁସାରେ ତାହାଙ୍କୁ ଅଶ୍ୱମେଧ ଯଜ୍ଞରେ ପ୍ରବର୍ତ୍ତିତ କଲେ ।୩୮ । ଅନନ୍ତର ଶତ୍ରୁକର୍ଷଣ ରାଜା ଜନମେଜୟ ନିଷ୍ପାପ ଓ ମଙ୍ଗଳ ପରିବୃତ ହୋଇ, ପୂର୍ଣ୍ଣ ସୁଧାକର ଯେପରି ଗଗନ ମଣ୍ଡଳରେ ଉଦିତ ହୁଅନ୍ତି, ସେହିପରି ପ୍ରଜ୍ୱଳିତ ଅନଳ ପ୍ରାୟ, ତେଜୋଯୁକ୍ତ ହୋଇ ନିଜ ରାଜ୍ୟରେ ପ୍ରବିଷ୍ଟ ହେଲେ । ୩୯ ।

## ଅଧ୍ୟାୟ—୧୫୩

ଯୁଧିଷ୍ଠିର କହିଲେ—ହେ ପିତାମହ ! କେଉଁ ମନୁଷ୍ୟ ମୃତ ହୋଇ ପୁନର୍ବାର ଜୀବିତ ହୋଇଅଛି, ଆପଣ ଏହା ଦର୍ଶନ ଓ ଶ୍ରବଣ କରି ଅଛନ୍ତି କି ?

ଭୀଷ୍ମ କହିଲେ—ହେ ରାଜନ୍ ! ପୂର୍ବ କାଳରେ ନୈମିଷାରଣ୍ୟ ମଧ୍ୟରେ ଗୃଧ୍ର ଜମ୍ବୁକ ସମ୍ବାଦ ସମ୍ବଳିତ ପୁରାତନ ଇତିହାସ ଯେପରି ଘଟିଥିଲା ତାହା ଶ୍ରବଣ କର ।

କୌଣସି ବ୍ରାହ୍ମଣର ବହୁ ଦୁଃଖଲବ୍ଧ ବିଶାଳ ନେତ୍ର ଏକମାତ୍ର ପୁତ୍ର ବାଳଗ୍ରହ ଦ୍ୱାରା ପୀଡ଼ିତ ହୋଇ ବାଲ୍ୟ କାଳରେ କୃତାନ୍ତ କବଳରେ ପତିତ ହେଲା । ବାନ୍ଧବଗଣ ଦୁଃଖିତ ଓ ଶୋକାଭିଭୂତ ହୋଇ ରୋଦନ କରି ବଂଶର ସର୍ବସ୍ୱଭୂତ ସେହି ଅପ୍ରାପ୍ତ ବୟସ୍କ ମୃତ ବାଳକକୁ ଗ୍ରହଣ ପୂର୍ବକ ଶ୍ମଶାନାଭିମୁଖରେ ପ୍ରସ୍ଥାନ କଲେ । ସେମାନେ ସେହି

ଶିଶୁକୁ କୋଡ଼ରେ ଧରି ନିତାନ୍ତ ଦୁଃଖିତ ଚିତ୍ତରେ ତାହାର ମଧୁର ବାକ୍ୟମାନ ସ୍ମରଣ ପୂର୍ବକ ଶୋକପ୍ରକାଶ ଓ ରୋଦନ କଲେ । ସେମାନେ କୌଣସି କ୍ରମରେ ସୁଦ୍ଧା ସେହି ମୃତ ବାଳକକୁ ଭୂତଳରେ ନିକ୍ଷେପକରି ଗୃହକୁ ପ୍ରତ୍ୟାଗତ ହେବାକୁ ସମର୍ଥ ହେଲେନାହିଁ । ୭ । ଇତିମଧ୍ୟରେ କୌଣସି ଗୃଧ୍ର ସେମାନଙ୍କର ରୋଦନଧ୍ୱନି ଅନୁସାରେ ସେଠାକୁ ଆସି କହିଲା—ତୁମ୍ଭେମାନେ ଏହି ଏକମାତ୍ର ପୁତ୍ରକୁ ପରିତ୍ୟାଗ କରି ଗମନକର । ଏହି ସ୍ଥାନକୁ ସହସ୍ର ସହସ୍ର ମୃତ ନରନାରୀ ଆସିଥାନ୍ତି । ସେମାନଙ୍କର ବାନ୍ଧବଗଣ ଯଥାକାଳରେ ଏହି ସ୍ଥାନକୁ ଆସି ସେମାନଙ୍କୁ ପରିତ୍ୟାଗ କରିଯାନ୍ତି । ୮ । ଦେଖ ସମସ୍ତ ଜଗତ ସୁଖ ଓ ଦୁଃଖରେ ଅବସ୍ଥାନ କରୁଅଛି । ପର୍ଯ୍ୟାୟ କ୍ରମରେ ପୁତ୍ର କଳତ୍ରାଦି ସହିତ ସଂଯୋଗ ଓ ବିୟୋଗ ହୁଏ । ଯେଉଁମାନେ ମୃତ ବ୍ୟକ୍ତିକୁ ଗ୍ରହଣକରି ଅବସ୍ଥିତ ଥାନ୍ତି କିମ୍ବା ସେମାନଙ୍କର ଅନୁଗମନ କରନ୍ତି; ସେମାନଙ୍କୁ ମଧ୍ୟ ନିଜ ପରମାୟୁର ପରିମାଣ ଅନୁସାରେ ଗମନ କରିବାକୁ ହୁଏ । ଅତଏବ ଏହି ଗୃଧ୍ର ଗୋମାୟୁ ସଙ୍କୁଳ ବହୁକଙ୍କାଳ ପରିବୃତ ସର୍ବପ୍ରାଣୀ ଭୟଙ୍କର ଘୋରତର ଶ୍ମଶାନରେ ରହିବାର ଆବଶ୍ୟକ ନାହିଁ । ପ୍ରିୟ ହେଉ କିମ୍ବା ଅପ୍ରିୟହେଉ ସେ ମୃତହେଲେ ଆଉ ପୁନର୍ଜୀବିତ ହୁଏନାହିଁ । ପ୍ରାଣୀମାନଙ୍କର ଗତି ଏହିପରି । ୧୨ ।

ମର୍ତ୍ତ୍ୟ ଲୋକରେ ଯେଉଁବ୍ୟକ୍ତି ଜନ୍ମଗ୍ରହଣ କରିଅଛି, ତାହାକୁ ନିଶ୍ଚୟ ମରିବାକୁ ହେବ । ଅତଏବ ଏହି କୃତାନ୍ତ କୃତ ନିୟମ ଥାଉଁ ଥାଉଁ କେଉଁବ୍ୟକ୍ତି ମୃତଲୋକକୁ ଜୀବିତ କରିପାରିବ ? । ୧୩ । କାର୍ଯ୍ୟର ଅବସାନ ହେତୁ ଲୋକମାନେ ବିରତ ହେବାରୁ ଦିବାକର ଅସ୍ତାଚଳକୁ ଗମନ କରୁଅଛନ୍ତି, ଅତଏବ ତୁମ୍ଭେମାନେ ପୁତ୍ରସ୍ନେହ ପରିତ୍ୟାଗ ପୂର୍ବକ ନିଜନିଜ ଗୃହକୁ ଗମନକର । ୧୪ ।

ତଦନନ୍ତର ବାନ୍ଧବଗଣ ଗୃଧ୍ରର ବାକ୍ୟ ଶ୍ରବଣରେ ତତ୍‌କ୍ଷଣାତ୍ ଶୋକ ଶୂନ୍ୟହୋଇ ପୁତ୍ରକୁ ଧରିତଳରେ ପରିତ୍ୟାଗ ପୂର୍ବକ ଗୃହାଭି-ମୁଖରେ ପ୍ରସ୍ଥାନ କଲେ ଏବଂ ସେମାନେ ସେହି ବାଳକକୁ ମୃତହେବାର ନିଷ୍ଚୟକରି ତାହାର ଦର୍ଶନରେ ଓ ଜୀବନରେ ନିରାଶ ଓ ହତାଶ ହୋଇ ରୋଦନ କରିବାରେ ପ୍ରବୃତ୍ତ ହେଲେ । ୧୫ । ବାନ୍ଧବଗଣ ବିଶେଷ

ରୂପରେ ନିଷ୍ଠୁରଚିତ୍ତ ନିଜ ଆତ୍ମଜଙ୍କୁ ପରିତ୍ୟାଗ ପୂର୍ବକ ପଥିମଧ୍ୟରେ ଆଗମନ କରୁଅଛନ୍ତି, ଏମନ୍ତ ସମୟରେ କାକପ୍ରାୟ କୃଷ୍ଣବର୍ଣ୍ଣ ଗୋଟିଏ ଶୃଗାଳ ବିବରରୁ ନିର୍ଗତ ହୋଇ ସେହିସବୁ ଗୃହ ଗମନୋଦ୍ୟତ ବ୍ୟକ୍ତିଙ୍କୁ କହିଲା—ହେ ଦୟାହୀନ ମୂଢ଼ ମାନବଗଣ ! ଦେଖ; ଅଦ୍ୟାପି ଏ ପର୍ଯ୍ୟନ୍ତ ଅସ୍ତମିତ ହୋଇ ନାହାନ୍ତି, ଅତଏବ ଏ ପର୍ଯ୍ୟନ୍ତ ତୁମ୍ଭେମାନେ ସ୍ନେହକର, ଭୟ କରନାହିଁ । ମୁହୂର୍ତ୍ତିର ପ୍ରଭାବ ଅତି ଚମତ୍କାର ଅଟେ । ମୁହୂର୍ତ୍ତି-ପ୍ରଭାବ ଦ୍ୱାରା ଏହାର ପୁନର୍ଜ୍ଜୀବନ ହେବା ଅସମ୍ଭବ ନୁହେଁ । ତୁମ୍ଭେମାନେ ପୁତ୍ରସ୍ନେହ ପରିବର୍ଜିତ ନିର୍ଦ୍ଦୟହୋଇ ଶ୍ମଶାନ ମଧ୍ୟରେ ଭୂପୃଷ୍ଠରେ ଦର୍ଭ ଆସ୍ତରଣ ପୂର୍ବକ ପୁତ୍ରଟିକୁ ବିସର୍ଜନ କରି କି ନିମିତ୍ତ ଗମନ କରୁଅଛ । ୨୦ । ଯାହାର କଥା କର୍ଣ୍ଣ କୁହରରେ ପ୍ରବିଷ୍ଟ ହେଲାମାତ୍ରକେ ତୁମ୍ଭେମାନେ ପ୍ରସନ୍ନ ହେଉଥିଲ, ସେହି ମଧୁରଭାଷୀ ଶିଶୁପ୍ରତି ତୁମ୍ଭମାନଙ୍କର କି ସ୍ନେହନାହିଁ ? । ୨୧ ।

ପଶୁ ପକ୍ଷିମାନେ ନିଜର ସନ୍ତାନମାନଙ୍କୁ ପ୍ରତିପାଳନ କରି କୌଣସି ଫଳପ୍ରାପ୍ତ ହୁଅନ୍ତି ନାହିଁ । ତଥାପି ସେମାନଙ୍କର ଅପତ୍ୟ ସ୍ନେହ କିପରି ତାହା ତୁମ୍ଭେମାନେ ଅନୁଶୀଳନ କର । ଧର୍ମ୍ମ ସନ୍ନ୍ୟାସୀ·ମୁନିମାନଙ୍କର ନାଜ୍ଞିକ୍ରିୟା ସଦୃଶ ପଶୁପକ୍ଷୀ କୀଟ ପ୍ରଭୃତି ସ୍ନେହାନୁବନ୍ଧୀ ପ୍ରାଣୀମାନଙ୍କର ପୁତ୍ରାଦିଙ୍କଠାରୁ ପରଲୋକରେ ଫଳ ପ୍ରତ୍ୟାଶା ନାହିଁ । ସେମାନେ ଇହଲୋକ କିମ୍ବା ପରଲୋକରେ ପୁତ୍ରାଦିଦ୍ୱାରା କୌଣସି ଉପକାର ପ୍ରାପ୍ତ ହୁଅନ୍ତି ନାହିଁ । ତଥାପି ସେମାନେ ଯତ୍ନ ସହକାରେ ଅପତ୍ୟମାନଙ୍କୁ ଧାରଣ କରିଥାନ୍ତି । ପଶୁପକ୍ଷୀ ପ୍ରଭୃତି ପ୍ରାଣୀମାନଙ୍କର ସନ୍ତାନଗଣ ସଂବର୍ଦ୍ଧିତ ହୋଇ କଦାପି ପିତାମାତାଙ୍କୁ ପ୍ରତିପାଳନ କରନ୍ତି ନାହିଁ । ତଥାପି ପ୍ରିୟପୁତ୍ରମାନଙ୍କୁ ନ ଦେଖିଲେ ତାହାଙ୍କର ହୃଦୟରେ ଶୋକୋଦୟ ହୁଏ ନାହିଁକି ? । ୨୫ । ମାନବଗଣଙ୍କର ଅପତ୍ୟସ୍ନେହ ହେତୁରୁ ପୁତ୍ରାଦି ବିରହରେ ଶୋକଜାତ ହୁଏ । ଅତଏବ ତୁମ୍ଭେମାନେ ଏହି ଏକମାତ୍ର ବଂଶଧର ପୁତ୍ରକୁ ପରିତ୍ୟାଗ ପୂର୍ବକ କେଉଁଠାକୁ ଗମନ କରିବ । ୨୬ । ତୁମ୍ଭେମାନେ ବହୁକ୍ଷଣ ଅଶ୍ରୁ ବିସର୍ଜନ କରି ସସ୍ନେହ ନୟନରେ ତାହାକୁ ନିରୀକ୍ଷଣ କର । ଈଦୃଶ ପ୍ରିୟପାତ୍ର ମାନଙ୍କୁ ପରିତ୍ୟାଗ କରିବା ଉପଯୁକ୍ତ ନୁହେଁ । ୨୭ । ଦୁର୍ବଳ, ଅଭିଯୁକ୍ତ ଓ ଶ୍ମଶାନସ୍ଥ ବ୍ୟକ୍ତିଙ୍କଠାରେ ବାନ୍ଧବଗଣ ଅବସ୍ଥାନ କଲେ ଇତର ବ୍ୟକ୍ତି

ସେଠାରେ ଅଧିଷ୍ଠାନ କରିପାରନ୍ତି ନାହିଁ । ଜୀବନ ସମସ୍ତଙ୍କର ପ୍ରିୟତମ; ସମସ୍ତେ ସ୍ନେହଲାଭ କରିଥାନ୍ତି । ସାଧୁମାନେ ତିର୍ଯ୍ୟକ୍ ଯୋନିରେ ସୁଦ୍ଧା ଯାଦୃଶ ସ୍ନେହକରନ୍ତି, ତାହା ଅବଲୋକନ କର । ୨୯ । ନବନୀରବାହ କାଳକ ମାଲ୍ୟଦ୍ୱାରା ବିଭୂଷିତ ବ୍ୟକ୍ତପ୍ରାୟ ଏହି କମଳାୟତ ଲୋଚନ ବାଳକକୁ ପରିତ୍ୟାଗ କରି ତୁମ୍ଭେମାନେ କି ନିମିତ୍ତ ଗମନ କରୁଅଛ । ୩୦ ।

ବାନ୍ଧବଗଣ ତତ୍କାଳରେ ଜମ୍ବୁକର ବାକ୍ୟ ଶ୍ରବଣକରି ଦୀନ ଭାବରେ ବିଳାପ କରୁକରୁ ସମସ୍ତେ ଶବାର୍ଥ ଗୃହ ଗମନରୁ ନିବୃତ୍ତ ହେଲେ । ୩୧ ।

ଗୃଧ୍ର କହିଲେ—ଅହୋ କି ଆଶ୍ଚର୍ଯ୍ୟ ! ହେ ସଦ୍‌ବୁଦ୍ଧିହୀନ ମାନବଗଣ ! ତୁମ୍ଭେମାନେ ଏହି ଅଳ୍ପବୁଦ୍ଧି ନୃଶଂସ କ୍ଷୁଦ୍ର ଶୃଗାଳର କଥା ଶ୍ରବଣକରି କି ନିମିତ୍ତ ନିବୃତ୍ତ ହେଉଅଛ ? ପଞ୍ଚଭୂତ କର୍ତ୍ତୃକ ପରିତ୍ୟକ୍ତ କାଷ୍ଠଭାବ ପ୍ରାପ୍ତ ଶୂନ୍ୟ ଓ ନିଶ୍ଚେଷ୍ଟ ଶବଦେହ ପାଇ କାହିଁକି ଶୋକକରୁଅଛ ? ତୁମ୍ଭେମାନେ ଆପଣାପାଇଁ କାହିଁକି ଶୋକ କରୁନାହଁ ? । ୩୩ । ତୀବ୍ର ତାପସ୍ୟା ଆଚରଣ କର, ଯଦ୍ୱାରା କଲୁଷରାଶିରୁ ବିମୁକ୍ତ ହେବ । ତପସ୍ୟା ଦ୍ୱାରା ସମସ୍ତ ଲାଭହୁଏ, ବିଳାପ କଲେ କଣହେବ ? । ୩୪ । ଅନିଷ୍ଟ ଓ ଅଦୃଷ୍ଟମାନ ମୃତ୍ୟୁ ସହିତ ଉତ୍ପନ୍ନ ହୁଅନ୍ତି । ଅଦୃଷ୍ଟର ଅନୁଗତହୋଇ ଏହି ବାଳକ ତୁମ୍ଭମାନଙ୍କୁ ଅନନ୍ତ ଶୋକ ସାଗରରେ ନିକ୍ଷେପକରି ଗମନ କରୁଅଛି । ୩୫ । ଗୋ, ଧନ, ସୁବର୍ଣ୍ଣ, ମଣି, ରତ୍ନ ଓ ଅପତ୍ୟ ଏସବୁ ତପସ୍ୟା ଦ୍ୱାରା ପ୍ରାପ୍ତହୁଏ ଏବଂ ଯୋଗରୁ ତପସ୍ୟା ଲାଭ କରାଯାଏ । ଜୀବଗଣଙ୍କ ମଧ୍ୟରେ ଯେ ଯେପରି କର୍ମ କରନ୍ତି, ସେ ସେହିପରି ସୁଖ ଓ ଦୁଃଖ ପ୍ରାପ୍ତହୁଅନ୍ତି । ଜୀବ ସୁଖ ଓ ଦୁଃଖ ଗ୍ରହଣକରି ଜନ୍ମ ଗ୍ରହଣ କରେ । ୩୭ । ପୁତ୍ର ପିତାର କର୍ମଦ୍ୱାରା କିମ୍ବା ପିତା ପୁତ୍ରର କର୍ମଦ୍ୱାରା ସୁକୃତ ଓ ଦୁଷ୍କୃତରେ ବଦ୍ଧହୋଇ ଏହି ପଥରେ ଗମନ କରନ୍ତିନାହିଁ । ୩୮ । ଯତ୍ନ ସହକାରେ ଧର୍ମ ଆଚରଣ କର । ଅଧର୍ମ ପଥରେ ମନୋନିବେଶ କରନାହିଁ । ଦେବତା ଓ ଦ୍ୱିଜମାନଙ୍କୁ ଯଥା କାଳରେ ସେବାକର । ୩୯ । ଶୋକ ଦୈନ୍ୟ ପରିତ୍ୟାଗ ପୂର୍ବକ ସୁତ ସ୍ନେହରୁ ନିବୃତ୍ତହୁଅ । ଏବଂ ଏହି ବାଳକକୁ ଶୂନ୍ୟରେ ପରିତ୍ୟାଗ କରି ଶୀଘ୍ର ଗୃହକୁ ଗମନକର । ୪୦ । ଯେଉଁବ୍ୟକ୍ତି ଶୁଭକର୍ମ୍ମ ଅଶୁଭ

କର୍ମ କରେ, ସେ ତାହାର ଫଳ ଭୋଗକରେ । ସେଥିରେ ବାନ୍ଧବଗଣଙ୍କର ସମ୍ବନ୍ଧ କଣ । ୪୧ । ବାନ୍ଧବଗଣ ପ୍ରିୟପୁତ୍ର ପ୍ରଭୃତିଙ୍କୁ ପରିତ୍ୟାଗ ପୂର୍ବକ ଶ୍ମଶାନରେ ଅବସ୍ଥାନ କରନ୍ତି ନାହିଁ । ସେମାନେ ସ୍ନେହ ବିସର୍ଜନ ପୂର୍ବକ ଅଶ୍ରୁପୂର୍ଣ୍ଣ ଓ ଅବିଲଲୋଚନରେ ଗୃହକୁ ଗମନ କରନ୍ତି । ୪୨ । ପ୍ରାଜ୍ଞହେଉ କିମ୍ବା ମୂର୍ଖହେଉ, ସଧନ ହେଉ କିମ୍ବା ନିର୍ଦ୍ଧନ ହେଉ, ସମସ୍ତେ ଶୁଭାଶୁଭ ଯୁକ୍ତହୋଇ କାଳର ବଶୀଭୂତ ହୁଅନ୍ତି । ୪୩ । ଶୋକକଲେ କଣହେବ ? ମୃତବ୍ୟକ୍ତି ପାଇଁ ଶୋକ କାହିଁକି କରୁଅଛ ? ଧର୍ମତଃ ସମଦର୍ଶନ କାଳ ସମସ୍ତଙ୍କର ନିୟନ୍ତା ଅଟେ । ୪୪ । ବାଳକ, ଯୁବା, ବୃଦ୍ଧ ଓ ଗର୍ଭସ୍ଥ ସମସ୍ତେ ମୃତ୍ୟୁର ବଶବର୍ତ୍ତୀ ଅଟନ୍ତି । ଜଗତର ଗତି ଏହିପରି । ୪୫ ।

ଶୃଗାଳ କହିଲା—କି ଆଶ୍ଚର୍ଯ୍ୟ ! ହେ ମାନବଗଣ ! ତୁମ୍ଭେମାନେ ଅପତ୍ୟ ସ୍ନେହରେ ଅଭିଭୂତ ହୋଇ ନିତାନ୍ତ ଶୋକ ପ୍ରକାଶ କରୁଅଛ ? ଅଳ୍ପବୁଦ୍ଧି ଗୃଧ୍ର ବର୍ତ୍ତମାନ ତୁମ୍ଭମାନଙ୍କର ସ୍ନେହବନ୍ଧନକୁ ଛେଦନ କରୁଅଛି । କାରଣ ଏହି ଗୃଧ୍ରର ସମଭାବରେ ଓ ସମ୍ୟକ୍ ପ୍ରକାରରେ ପ୍ରଯୁକ୍ତ ପ୍ରତ୍ୟୟ ଯୁକ୍ତ ବାକ୍ୟ ଦ୍ୱାରା ତୁମ୍ଭେମାନେ ଦୁସ୍ତ୍ୟଜ ସ୍ନେହକୁ ବିସର୍ଜନ କରି ଗୃହକୁ ଗମନ କରୁଅଛ । ଅହୋ ! ବିବତ୍ସା ଗାଭୀମାନଙ୍କ ସଦୃଶ, ପୁତ୍ରବିୟୋଗ ହେତୁରୁ ଶ୍ମଶାନରେ ଶବ ସେବା ପୂର୍ବକ ରୋଦନ କରି ତୁମ୍ଭମାନଙ୍କର ଅତିଶୟ ଦୁଃଖ ହେଉଅଛି । ମହୀ ମଣ୍ଡଳରେ ମନୁଷ୍ୟମାନଙ୍କର ଯାଦୃଶ ଶୋକ ହୁଏ, ତାହା ଅମ୍ଭେ ଅଦ୍ୟ ଜାଣିଲୁଁ । ତୁମ୍ଭମାନଙ୍କର ସ୍ନେହ ଓ ବିଳାପ ଅବଲୋକନ କରି ଅମ୍ଭର ମଧ୍ୟ ଅଶ୍ରୁପାତ ହେଉଅଛି । ସତତ ଯତ୍ନ କରିବା ଉଚିତ । ଉପରେ ଦଇବ ଦ୍ୱାରା ସିଦ୍ଧହୁଏ । ଦଇବ ଏବଂ ପୁରୁଷକାର କାଳ ବଶତଃ ସମ୍ପନ୍ନ ହୁଏ । ୫୦ । ନିରନ୍ତର ନିର୍ବେଦନ କରିବା ବାଞ୍ଛନୀୟ । କାରଣ ନିର୍ବେଦରୁ ସୁଖୋଦୟ ହୁଏ ନାହିଁ । ଯତ୍ନକଲେ ପ୍ରୟୋଜନ ସିଦ୍ଧି ହୁଏ । ଅତଏବ ତୁମ୍ଭେମାନେ ନିର୍ଦ୍ଦୟ ହୋଇ କାହିଁକି ଯାଉଅଛ ? ପିତୃଲୋକଙ୍କର ବଂଶକୁ ରକ୍ଷାକର । ଅମ୍ଭ ମାଂସରୁ ସମୁତ୍ପନ୍ନ ଶରୀରାର୍ଦ୍ଧ ସ୍ୱରୂପ ସନ୍ତାନକୁ ବନମଧ୍ୟରେ ପରିତ୍ୟାଗ କରି କେଉଁଠାକୁ ଗମନ କରୁଅଛ ? । ୫୨ । ସୂର୍ଯ୍ୟଦେବ ଅସ୍ତ ହେଲେ ଓ ସନ୍ଧ୍ୟା କାଳ ଉପସ୍ଥିତ ହେଲେ ତୁମ୍ଭେମାନେ ଏହି ବାଳକଟିକୁ ଗୃହକୁ ନେଇଯିବ କିମ୍ବା ଏହାକୁ ଘେନି ଏହିଠାରେ ଅବସ୍ଥାନ କରିବ । ୫୩ ।

ଗୃଧ୍ର କହିଲା—ହେ ମାନବଗଣ ! ସହସ୍ର ବର୍ଷରୁ ଅଧିକ ହେବ ଆମ୍ଭେ ଜନ୍ମଗ୍ରହଣ କରି ଅଛୁଁ କିନ୍ତୁ ନର, ନାରୀ ଓ ନପୁଂସକ ଏମାନଙ୍କ ମଧ୍ୟରେ କେହି କଦାପି ମୃତ ହୋଇ ପୁନର୍ଜୀବିତ ହେବାର ଦେଖି ନାହୁଁ । ୫୪ । କେହି କେହି ଗର୍ଭରେ ମୃତ ହୋଇ ଭୂମିଷ୍ଠ ହୁଅନ୍ତି, କେହି ଅବା ଜନ୍ମିଲା ମାତ୍ରକେ କାଳ କବଳିତ ହୁଅନ୍ତି । କେହି କେହି ବାଲ୍ୟକାଳରେ ଚରଣ ଚାଳନ ସମୟରେ ମୃତ ହୁଅନ୍ତି । କେହି ଅବା ଯୌବନାବସ୍ଥାରେ ପଞ୍ଚତ୍ୱ ପ୍ରାପ୍ତ ହୁଅନ୍ତି । ୫୫ । ଇହଲୋକରେ ପଶୁପକ୍ଷୀ ପ୍ରଭୃତି ଜଙ୍ଗମ ପ୍ରାଣିମାନଙ୍କର ଅଦୃଷ୍ଟ ଅନିତ୍ୟ ଅଟେ । ସ୍ଥାବର ଓ ଜଙ୍ଗମ ସମସ୍ତେ ପରମାୟୁର ଅଧୀନ ଅଟନ୍ତି । ୫୬ । ପ୍ରିୟ ପତ୍ନୀ ବିରହିତ ଓ ପୁତ୍ର ଶୋକାନ୍ୱିତ ବ୍ୟକ୍ତିମାନେ ଶୋକରେ ଦହ୍ୟମାନ ହୋଇ ପ୍ରତିଦିନ ଏହି ସ୍ଥାନରୁ ଗୃହକୁ ଗମନ କରନ୍ତି । ୫୭ । ମନୁଷ୍ୟମାନେ ଇହଲୋକରେ ସହସ୍ର ସହସ୍ର ଅପ୍ରିୟ ଓ ଶତ ଶତ ପ୍ରିୟ ବସ୍ତୁ ପରିତ୍ୟାଗ ପୂର୍ବକ ନିତାନ୍ତ ଦୁଃଖିତ ହୋଇ ପରଲୋକକୁ ଗମନ କରନ୍ତି । ଅତଏବ ତୁମ୍ଭେମାନେ ଏହି ଶୋଚନୀୟାବସ୍ଥାପନ୍ନ ଜୀବନଶୂନ୍ୟ ତେଜୋହୀନ ବାଳକକୁ ପରିତ୍ୟାଗ କର । ଏହାର ଜୀବନ ଅନ୍ୟ ଦେହରେ ସଂସକ୍ତ ହେବାରୁ ସେ ନିର୍ଜୀବ ହୋଇଅଛି । ଏହାର କାଷ୍ଠତ୍ୱ ପ୍ରାପ୍ତ ଶବ ଶରୀରକୁ ପରିତ୍ୟାଗ କରି ତୁମ୍ଭେମାନେ କି ନିମିତ୍ତ ଗମନ କରୁନାହଁ ? ବର୍ତ୍ତମାନ ଏହି ବାଳକ ପ୍ରତି ସ୍ନେହ କରିବା ଓ ଏହାକୁ ପରିବେଷ୍ଟନ କରି ରହିବା ନିଷ୍ଫଳ ।୬୦। ସମ୍ପ୍ରତି ଏହି ବାଳକର ଦର୍ଶନେନ୍ଦ୍ରିୟ ଓ ଶ୍ରବଣେନ୍ଦ୍ରିୟର କୌଣସି କାର୍ଯ୍ୟ ହେଉନାହିଁ । ଅତଏବ ତୁମ୍ଭେମାନେ ଏହାକୁ ପରିତ୍ୟାଗ କରି ଶୀଘ୍ର ନିଜ ଗୃହକୁ ଗମନ କର । ୬୧ । ଆମ୍ଭର ବାକ୍ୟସବୁ ଆପାତତଃ ନିଷ୍ଠୁରବତ୍ ପ୍ରତୀୟମାନ ହେଲେହେଁ ପରିଶେଷରେ ଏହା ଯୁକ୍ତିଯୁକ୍ତ ଓ ମୋକ୍ଷଧର୍ମାଶ୍ରିତ ବୋଲି ପ୍ରତିପନ୍ନ ହେବ । ଅତଏବ କହୁଅଛୁଁ ତୁମ୍ଭେମାନେ ବିଳମ୍ବ ନ କରି ନିଜ ନିଜ ନିକେତନକୁ ପ୍ରସ୍ଥାନ କର । ୬୨ । ବୁଦ୍ଧି ଓ ବିଜ୍ଞାନବାନ୍ ଚୈତନ୍ୟପ୍ରଦ ଗୃଧ୍ରର ବାକ୍ୟକୁ ଶ୍ରବଣ କରି ଓ ତାହାଠାରୁ "ସେହି ବାଳକର ଅଙ୍ଗ ଚେଷ୍ଟାଦି ସ୍ମରଣ କିମ୍ବା ଦର୍ଶନ କଲେ ଶୋକ ଦ୍ୱିଗୁଣିତ ହେବ" ବୋଲି ଜାଣି ଉକ୍ତ ମନୁଷ୍ୟମାନେ ନିବୃତ୍ତ ହେଲେ । ୬୩ ।

ବାନ୍ଧବଗଣ ଏହା ଶୁଣି ନିବୃତ୍ତ ହେଲାରୁ ଶୃଗାଳ ଦ୍ରୁତ ବେଗରେ ସେଠାକୁ ଆଗମନ ପୂର୍ବକ ସୁପ୍ତ ବାଳକକୁ ଅବଲୋକନ କଲା ।୬୪।

ଶୃଗାଳ କହିଲା—ତୁମ୍ଭେମାନେ ଗୃଧ୍ରର ବାକ୍ୟକୁ ଶ୍ରବଣ କରି ଏହି ସୁବର୍ଣ୍ଣ ବର୍ଣ୍ଣ-ଭୂଷଣ ବିଭୂଷିତ ପିତୃଲୋକଙ୍କର ପିଣ୍ଡପ୍ରଦ ପୁତ୍ରକୁ କି ନିମିତ୍ତ ପରିତ୍ୟାଗ କରୁଅଛ ? । ୬୫ । ଏହି ମୃତ ସନ୍ତାନକୁ ପରିତ୍ୟାଗ କଲେ ସ୍ନେହ, ବିଳାପ ଓ ରୋଦନର ବିଚ୍ଛେଦ ହେବ । ୬୬ । ଆମ୍ଭେ ଶୁଣିଅଛୁଁ, ସୁଖ ପରାକ୍ରମ ରାମଚନ୍ଦ୍ର ଶମ୍ବୁକ ନାମକ କ୍ଷୁଦ୍ର ତପସ୍ୱୀକୁ ନିହତ କରନ୍ତେ ତାହାଙ୍କର ଧର୍ମବଳଦ୍ୱାରା କୌଣସି ବ୍ରାହ୍ମଣ ବାଳକ ପୁନର୍ଜୀବିତ ହୋଇଥିଲା । ୬୭ । ଆଉ ମହର୍ଷି ଶ୍ୱେତଙ୍କର ବାଳକପୁତ୍ର ମୃତ ହୁଅନ୍ତେ, ଧର୍ମନିଷ୍ଠ ଶ୍ୱେତ ତାହାଙ୍କର ସେହି ପ୍ରେତପୁତ୍ରକୁ ପୁନର୍ବାର ଜୀବିତ କରିଥିଲେ । ୬୮ । ଏହିପରି କୌଣସି ସିଦ୍ଧ, ମୁନି କିମ୍ବା ଦେବତା ତୁମ୍ଭମାନଙ୍କର କରୁଣ ରୋଦନ ଶ୍ରବଣ କରି ଦୟା ପ୍ରକାଶ କରି ପାରନ୍ତି । ୬୯ ।

ଶୃଗାଳ ଏହିପରି କହିବାରୁ ପୁତ୍ର ବତ୍ସଳ ଶୋକାର୍ତ୍ତ ବାନ୍ଧବଗଣ ଗୃହ ଗମନରୁ ନିବୃତ୍ତ ହେଲେ । ଏବଂ ମୃତବାଳକର ମସ୍ତକକୁ କୋଡ଼ରେ ସ୍ଥାପନ ପୂର୍ବକ ବହୁ ବିଳାପ ସହିତ ରୋଦନ କଲେ । ଗୃଧ୍ର ସେମାନଙ୍କର ରୋଦନ ଧ୍ୱନି ଶ୍ରବଣ କରି ପୁନର୍ବାର ସେଠାକୁ ଆସି ବକ୍ଷମାଣ ବାକ୍ୟସବୁ କହିବାକୁ ଆରମ୍ଭ କଲା । ୭୦ ।

ଗୃଧ୍ର କହିଲା —ଏହି ବାଳକ ଧର୍ମରାଜଙ୍କର ନିୟୋଗାନୁସାରେ ଦୀର୍ଘ ନିଦ୍ରା ପ୍ରାପ୍ତ ହୋଇ ଅଛି । ଅତଏବ ଏହାର ଦେହରେ ହସ୍ତ ସଞ୍ଚାଳନ ଓ ଅଶ୍ରୁପାତ କରି କଣ ହେବ ? । ୭୧ । ଶତ ଶତ ତପସ୍ୟାଶାଳୀ ଧନବନ୍ତ ଓ ଧୀମନ୍ତ ମନୁଷ୍ୟମାନେ ଏହି ପ୍ରେତଭୂମିରେ ମୃତ୍ୟୁ ମୁଖରେ ପତିତ ହୁଅନ୍ତି । ୭୨ । ବାନ୍ଧବଗଣ ଏହି ସ୍ଥାନରେ ସହସ୍ର ସହସ୍ର ବାଳକ ଓ ବୃଦ୍ଧଗଣଙ୍କୁ ବିସର୍ଜନ କରି ଦିବା ନିଶି ଦୁଃଖିତ ଭାବରେ ଅବସ୍ଥିତ କରନ୍ତି । ଅତଏବ ଶୋକଭାର ଧାରଣରେ ନିର୍ବନ୍ଧ କରିବା ନିଷ୍ଫଳ । ବର୍ତ୍ତମାନ ପ୍ରେତ ପୁନର୍ଜୀବିତ ହେବା କଦାପି ବିଶ୍ୱାସଯୋଗ୍ୟ ନୁହେ । ୭୪ । ଏହି ବାଳକ ଜମ୍ବୁକ ବାକ୍ୟରେ ପୁନର୍ଜୀବିତ ହେବ ନାହିଁ । ଯେଉଁ ବ୍ୟକ୍ତି କାଳ ଧର୍ମାକ୍ରାନ୍ତ ହୋଇ ଶରୀର ପରିତ୍ୟାଗ କରେ ସେ ଆଉ ପୁନର୍ବାର ଜୀବିତ ହୁଏ ନାହିଁ । ଶୃଗାଳ ଯଦି ଆପଣଙ୍କ ପରି ଶତ ଶତ ଶରୀର ପ୍ରଦାନ କରେ, ତାହାହେଲେ ଶତବର୍ଷରେ ସୁଦ୍ଧା ଏହି ବାଳକକୁ ଜୀବିତ କରି ପାରିବ ନାହିଁ । କିନ୍ତୁ ରୁଦ୍ରଦେବ, କାର୍ତ୍ତିକେୟ, ବ୍ରହ୍ମା କିମ୍ବା ବିଷ୍ଣୁ ଯଦି

ଏହାକୁ ବର ପ୍ରଦାନ କରନ୍ତୁ, ତାହାହେଲେ ଏହି ଶିଶୁ ଜୀବିତ ହୋଇ ପାରେ, ନତୁବା ତୁମ୍ଭେମାନେ ଅଶ୍ରୁମୋଚନ, ଆଶ୍ୱାସନ ଓ ଦୀର୍ଘକାଳ ରୋଦନ କଲେ ଏହି ବାଳକ କଦାପି ପୁନର୍ଜୀବିତ ହେବ ନାହିଁ । ଆମ୍ଭେ, ଶୃଗାଳ ଓ ତୁମ୍ଭେମାନେ ସମସ୍ତେ ଧର୍ମାଧର୍ମ ଗ୍ରହଣ ପୂର୍ବକ ଏହି ବୃହନ୍ତର ପଥରେ ଅବସ୍ଥାନ କରୁଅଛୁଁ । ଅତଏବ ପ୍ରାଜ୍ଞ ପୁରୁଷ ଅପ୍ରିୟ, ପୁରୁଷତା, ପରଦ୍ରୋହ, ପରନାରୀ ସହିତ ପ୍ରଣୟାଭିଳାଷ, ଅଧର୍ମ ଓ ମିଥ୍ୟା ବ୍ୟବହାରକୁ ଦୂରରୁ ପରିତ୍ୟାଗ କରିବେ । ତୁମ୍ଭେମାନେ ସତ୍ୟ, ଧର୍ମ, ଶୁଭ, ନ୍ୟାଯ୍ୟ, ପ୍ରାଣିମାନଙ୍କପ୍ରତି ମହତୀ ଦୟା, ସରଳତା ଓ ଅଶାଠ୍ୟ ଏହି ସବୁକୁ ଯତ୍ନ ପୂର୍ବକ ପ୍ରାର୍ଥନା କର । ଯେଉଁମାନେ ମାତା ପିତା, ବାନ୍ଧବ ଓ ସୁହୃଦ୍‌ଗଣଙ୍କୁ ଜୀବିତ ଦର୍ଶନ କରି ନ ପାରନ୍ତି, ସେମାନଙ୍କର ଧର୍ମ ବିପର୍ଯ୍ୟୟ ହୋଇଥାଏ । ଯେ ଚକ୍ଷୁଦ୍ୱାରା ଦର୍ଶନ କରିବାକୁ କିମ୍ବା କୌଣସି ପ୍ରକାର ଅଙ୍ଗଚାଳନାଦି କରିବାକୁ ସମର୍ଥ ନୁହେ, ତାହାର ଦେହାବସାନରେ ରୋଦନ କରି କଣ କରିବ ?

ଅପତ୍ୟସ୍ନେହ ହେତୁ ଦହ୍ୟମାନ ସେହି ଶୋକ ସମାଚ୍ଛନ୍ନ ବାନ୍ଧବଗଣ ଗୃଧ୍ର କର୍ତ୍ତୃକ ଏହିପରି ଉକ୍ତ ହୋଇ ପୁତ୍ରଟିକୁ ଭୂତଳରେ ପରିତ୍ୟାଗ ପୂର୍ବକ ଗୃହ ଗମନରେ ପ୍ରବୃତ୍ତ ହେଲେ । ୮୩ ।

ଜମ୍ବୁକ କହିଲା—ସର୍ବପ୍ରାଣିବିନାଶନ ଏହି ମର୍ତ୍ତ୍ୟ ଲୋକ ଅତି ଦାରୁଣ ସ୍ଥଳ ଅଟେ । ଏହି ସ୍ଥଳରେ ପ୍ରିୟ ବନ୍ଧୁ ବିୟୋଗ, ଜୀବିତ କାଳର ନିତାନ୍ତ ଅଳ୍ପତା, ନାନାବିଧ ଅଳୀକ ଓ ଅସତ୍ୟ ବ୍ୟବହାର, ଅପବାଦ ଓ ଅପ୍ରିୟ କଥନ ପ୍ରଭୃତି ଦୁଃଖ ଶୋକ ବିବର୍ଦ୍ଧନ ଭାବସବୁ ଅବଲୋକନ କରି ମୁହୂର୍ତ୍ତକାଳ ପାଇଁ ଏହି ମର୍ତ୍ତ୍ୟ ଲୋକରେ ବାସ କରିବାକୁ ଆମ୍ଭର ଅଭିରୁଚି ହେଉନାହିଁ । ଧିକ୍ ଧିକ୍ । ଅହୋ ! ତୁମ୍ଭେ-ମାନେ ପୁତ୍ର ଶୋକରେ ପ୍ରଦୀପ୍ତ ହୋଇ ନିର୍ବୁଦ୍ଧି ଲୋକ ପ୍ରାୟ ଗୃଧ୍ରର ବାକ୍ୟରେ ନିବୃତ୍ତ ହେଲ ? ପାପାତ୍ମାର ଚଞ୍ଚଳମତି ଗୃଧ୍ରର ବାକ୍ୟକୁ ଶ୍ରବଣ କରି ସ୍ନେହହୀନ ହୋଇ ଅପତ୍ୟ ସ୍ନେହ ବିସର୍ଜନ ପୂର୍ବକ କି ପ୍ରକାରେ ଗୃହକୁ ଫେରି ଯାଉଅଛ ? ଏହି ସୁଖଦୁଃଖାବୃତ ଲୋକ ମଧ୍ୟରେ ସୁଖ ପରେ ଦୁଃଖ ଓ ଦୁଃଖ ପରେ ସୁଖ ହେବା ଭିନ୍ନ ଅନ୍ୟ କିଛି ନାହିଁ । ରେ ମୂଢ଼ଗଣ ! ବଂଶର ଶୋଭାକର ଏହି ରୂପବାନ୍ ଶିଶୁ ସନ୍ତାନକୁ ଭୂତଳରେ ପରିତ୍ୟାଗ କରି ତୁମ୍ଭେମାନେ କେଉଁଠାକୁ ଯିବ ? ଏହି ରୂପ-

ଯୌବନ ସମ୍ପନ୍ନ ବାଳକକୁ ଅମ୍ଭେ ମନେ ମନେ ଜୀବିତ ପ୍ରାୟ ନିରୀକ୍ଷଣ କରୁଅଛୁଁ । ଏଥିରେ ସଂଶୟ ନାହିଁ । ହେ ମାନବଗଣ ! ଏହାର ମରଣ ଅନୁଚିତ ହୋଇଅଛି । ତୁମ୍ଭେମାନେ ଅନାୟାସରେ ଏହାକୁ ପ୍ରାପ୍ତ ହେବ । ଯଦି ପରିତ୍ୟାଗ କରି ଯାଅ, ତେବେ ସନ୍ତାନ ଶୋକ ସନ୍ତାପିତ ହୋଇ ଅଦ୍ୟ ତୁମ୍ଭମାନଙ୍କର ବିନାଶ ହେବ । ଏହି ସ୍ଥାନରେ ଅବସ୍ଥାନ କଲେ ରଜନୀରେ ଦୁଃଖ ହେବାର ସମ୍ଭାବନା ଜାଣି ସ୍ୱୟଂ ସୁଖରେ ରହିବା ମାନସରେ ଅଳ୍ପବୁଦ୍ଧି ମନୁଷ୍ୟ ପ୍ରାୟ ଏହାକୁ ପରିତ୍ୟାଗ କରି କେଉଁଠାକୁ ଗମନ କରିବ ? । ୯୬ ।

ଭୀଷ୍ମ କହିଲେ—ହେ ଧର୍ମରାଜ ! ଶ୍ମଶାନବାସୀ ଶୃଗାଳ ସ୍ୱାର୍ଥ-ସାଧନ ନିମିତ୍ତ ଆପାତତଃ ଅମୃତୋପମ ଧର୍ମବିରୁଦ୍ଧ ମିଥ୍ୟା ପ୍ରିୟ ବାକ୍ୟ ଦ୍ୱାରା ସେହି ସବୁ ବାନ୍ଧବଗଣଙ୍କୁ ଗତାଗତବୃତ୍ତିର ମଧ୍ୟବର୍ତ୍ତୀ କରିବାରୁ ସେମାନେ ସେଠାରେ ଅବସ୍ଥିତ ରହିଲେ । ୯୦ ।

ଗୃଧ୍ର କହିଲା—ଏହି ଯକ୍ଷ ରାକ୍ଷସ ସେବିତ ପ୍ରେତ ସମାକୀର୍ଣ୍ଣ ପେଚକନାଦନିନାଦିତ ନୀଳମେଘ ସମପ୍ରଭ ସମ୍ପନ୍ନ ଘୋରତର ଦାରୁଣ କାନନ ଅତି ଭୟଙ୍କର ଅଟେ । ଦିବାକର ଅସ୍ତହେବା ପୂର୍ବରୁ ଯାବତ୍କାଳ ଦିଙ୍‌ମଣ୍ଡଳ ନିର୍ମଳ ଅଛି, ତାବତ୍କାଳ ମଧ୍ୟରେ ତୁମ୍ଭେମାନେ ଏହି ବନରେ ଶବଶରୀର ପରିତ୍ୟାଗ ପୂର୍ବକ ପ୍ରେତକାର୍ଯ୍ୟ ସମ୍ପନ୍ନ କର । ୯୭ । ଶ୍ୟେନ ପକ୍ଷମାନେ କର୍କଶ ସ୍ୱରରେ ନିନାଦ କରୁଅଛନ୍ତି । ଶୃଗାଳ ନିଚୟ ଦାରୁଣ ଚିତ୍କାର କରିବାକୁ ଆରମ୍ଭ କଲେଣି । ମୃଗେନ୍ଦ୍ର ସମୂହ ପ୍ରତି ଗର୍ଜନ କରୁଅଛନ୍ତି ଏବଂ ସୂର୍ଯ୍ୟଦେବ ଅସ୍ତାଚଳ ଚୂଡ଼ାବଲମ୍ବୀ ହେଉଅଛନ୍ତି । ୯୮ । ଶ୍ମଶାନସ୍ଥିତ ତରୁଗଣ ନୀଳବର୍ଣ୍ଣ ଚିତାଧୂମଦ୍ୱାରା ରଞ୍ଜିତ ହେଉଅଛନ୍ତି । ଶ୍ମଶାନାଧିଷ୍ଠିତ ଦେବତାମାନେ ନିରାହାରରେ ଥାଇ ଗର୍ଜନ କରୁଅଛନ୍ତି । ୯୯ । ଏହି ଶ୍ମଶାନମଧ୍ୟରେ ବିକୃତାକୃତି କ୍ରବ୍ୟାଦଗଣ ତୁମ୍ଭମାନଙ୍କୁ ଅଭିଭୂତ କରିବେ । ଘୋରତର ବନୋଦ୍ଦେଶରେ ଅଦ୍ୟ ତୁମ୍ଭମାନଙ୍କର ଅବଶ୍ୟ ଭୟହେବ । ଅତଏବ ଏହି କାଷ୍ଠଭୂତ ଶବଶରୀରକୁ ପରିତ୍ୟାଗ କର । ଶୃଗାଳର ବାକ୍ୟକୁ ଗ୍ରାହ୍ୟ କରନାହିଁ । ତୁମ୍ଭେମାନେ ଜ୍ଞାନଭ୍ରଷ୍ଟ ହୋଇ ଯଦି ଜମ୍ବୁକର ନିଷ୍ଫଳ ମିଥ୍ୟାବାକ୍ୟକୁ ଶ୍ରବଣକର, ତେବେ ସମସ୍ତ ବିନଷ୍ଟ ହେବ ।୧୦୨।

ଶୃଗାଳ କହିଲା—ହେ ମାନବଗଣ ! ଯେ ପର୍ଯ୍ୟନ୍ତ ସୂର୍ଯ୍ୟଦେବ ଅସ୍ତାଚଳ ଅବଲମ୍ବନ କରି ନାହାନ୍ତି, ସେ ପର୍ଯ୍ୟନ୍ତ ତୁମ୍ଭେମାନେ ଅପତ୍ୟ ସ୍ନେହହେତୁ ନିର୍ବେଦପ୍ରାପ୍ତ ନ ହୋଇ ଏହି ସ୍ଥାନରେ ଅବସ୍ଥାନ କର । ଭୟକରିବା ଉଚିତ ନୁହେ ତୁମ୍ଭେମାନେ ବିଶ୍ୱସ୍ତ ଭାବରେ ସ୍ୱେଚ୍ଛାନୁସାରେ ରୋଦନକରି ବହୁକ୍ଷଣପର୍ଯ୍ୟନ୍ତ ସନ୍ତାନପ୍ରତି ସସ୍ନେହ ନୟନରେ ନିରୀକ୍ଷଣ କର । ଏହି ଦାରୁଣ ବନମଧ୍ୟରେ ତୁମ୍ଭମାନଙ୍କର କୌଣସି ଭୟର ସମ୍ଭାବନା ନାହିଁ । ପିତୃଗଣଙ୍କର ନିଧନାସ୍ପଦ ଏହି ବନୋଦ୍ଦେଶ ଅତି ମନୋହର ଅଟେ । ଅତଏବ ଆଦିତ୍ୟ ଯେତେବେଳ ଯାଏ ଅଛନ୍ତି ତୁମ୍ଭେମାନେ ତେତେବେଳ ପର୍ଯ୍ୟନ୍ତ ଅବସ୍ଥାନ କର । ମାଂସାଶୀ ଗୃଧ୍ରର ବାକ୍ୟ ଶ୍ରବଣ କଲେ କୌଣସି ଫଳ ହେବ ନାହିଁ । ୧୦୪ । ତୁମ୍ଭେମାନେ ମୁଗ୍‌ଧଚିତ୍ତ ହୋଇ ଯଦି ଗୃଧ୍ରର ନିଷ୍ଠୁର ବାକ୍ୟକୁ ଗ୍ରାହ୍ୟକର, ତେବେ ତୁମ୍ଭମାନଙ୍କର ପୁତ୍ର ପୁନର୍ଜୀବିତ ହେବନାହିଁ । ୧୦୫ ।

ଭୀଷ୍ମ କହିଲେ ହେ ରାଜନ୍ ! ଗୃଧ୍ର କହିଲା ଯେ ସୂର୍ଯ୍ୟ ଅସ୍ତମିତ ହେଲେ କିନ୍ତୁ ଶୃଗାଳ ତାହାର ବିପରୀତ କହିଲା । ଏହି ପ୍ରକାରେ ସେମାନେ ସ୍ୱକାର୍ଯ୍ୟ ସାଧନରେ ଯତ୍ନବାନ୍ ଓ କ୍ଷୁଧା ପିପାସାରେ କାତର ହୋଇ ଶାସ୍ତ୍ର ଅବଲମ୍ବନ ପୂର୍ବକ ମୃତବାଳକର ବାନ୍ଧବଗଣଙ୍କୁ ବିଡ଼ମ୍ବିତ କରିବାକୁ ଆରମ୍ଭ କଲେ । ୧୦୭ । ସେମାନେ ସେହି ବିଜ୍ଞାନବିତ୍ ଗୃଧ୍ର ଓ ଶୃଗାଳର ଅମୃତ ସଦୃଶ ବାକ୍ୟରେ କେତେବେଳେ ଅବସ୍ଥାନ ଏବଂ କେତେବେଳେ ଅବା ଗୃହକୁ ପ୍ରତ୍ୟାଗମନ କରିବାକୁ ଉଦ୍ୟତ ହେଲେ । । ୧୦୮ । ପରିଶେଷରେ ସେମାନେ ଶୋକ ସମାବିଷ୍ଟ ହୋଇ ରୋଦନ ପୂର୍ବକ ସେହି କାର୍ଯ୍ୟଦକ୍ଷ ଗୃଧ୍ର ଓ ଶୃଗାଳର ବାକ୍ ନୈପୁଣ୍ୟଦ୍ୱାରା ପ୍ରତାରିତ ହୋଇ ସୁଦ୍ଧା ସେଠାରେ ଅବସ୍ଥାନ କରିବାକୁ ପ୍ରବୃତ୍ତ ହେଲେ । ୧୦୯ ।

ଏହାପରେ ବିଦ୍ୟମାନ ସେହି ବିଜ୍ଞାନବିତ୍ ଗୃଧ୍ର ଓ ଶୃଗାଳ ଏବଂ ଅବସ୍ଥିତ ବାନ୍ଧବଗଣ ଏମାନଙ୍କ ନିକଟକୁ ଭଗବାନ୍ ଭବାନୀପତି ଭଗବତୀଙ୍କ କର୍ତ୍ତୃକ ପ୍ରେରିତ ହୋଇ କରୁଣାର୍ଦ୍ର ନୟନରେ ସେମାନଙ୍କ-ଠାରେ ଉପସ୍ଥିତ ହେଲେ ଓ କହିଲେ—ହେ ମାନବଗଣ ! ଆମ୍ଭେ ବରଦାତା ଶଙ୍କର ଅଟୁଁ ।

ତହୁଁ ଦୁଃଖିତ ବାନ୍ଧବଗଣ ପ୍ରଣତ ଓ ଦଣ୍ଡାୟମାନ ହୋଇ କହିଲେ—ହେ ଭଗବନ୍ ! ଅମ୍ଭେମାନେ ସମସ୍ତେ ଏକମାତ୍ର ପୁତ୍ରର ଜୀବନ ନିମିତ୍ତ ପ୍ରାର୍ଥନା କରୁଅଛୁଁ । ଅତଏବ ଆପଣ ଅନୁକମ୍ପା ପ୍ରଦର୍ଶନ ପୂର୍ବକ ଆମ୍ଭମାନଙ୍କ ପୁତ୍ରଟିକୁ ଜୀବନ ଦାନ ଦ୍ୱାରା ଜୀବିତ କରନ୍ତୁ ।

ସର୍ବଭୂତ ହିତୈଷୀ ଭଗବାନ ପିନାକୀ ମାନବଗଣଙ୍କ କର୍ତ୍ତୃକ ଏହିପରି ଉକ୍ତ ହୋଇ ବାରିପୂର୍ଣ୍ଣ ହସ୍ତଦ୍ୱାରା ବାଳକଟିକୁ ଶତବର୍ଷ ପରମାୟୁ ଓ ଗୃଧ୍ର ଓ ଶୃଗାଳକୁ କ୍ଷୁଧା ବିନାଶନ ବର ପ୍ରଦାନ କଲେ । ୧୧୪ ।

ଅନନ୍ତର ସେମାନେ କଲ୍ୟାଣ ହେତୁ ହର୍ଷଯୁକ୍ତ, କୃତକୃତ୍ୟ ଓ ନିତାନ୍ତ ହୃଷ୍ଟ ହୋଇ ଦେବଦେବଙ୍କୁ ପ୍ରଣତପୂର୍ବକ ପ୍ରସ୍ଥାନ କଲେ । ଅନିର୍ବେଦ ଓ ଦୃଢ଼ ନିଷ୍ଠୟ ଦ୍ୱାରା ଦେବଦେବଙ୍କ ପ୍ରସାଦରୁ ଅବିଳମ୍ବରେ ଫଳପ୍ରାପ୍ତ ହୁଅନ୍ତି । ଦୈବଯୋଗ ଓ ବାନ୍ଧବଗଣଙ୍କର ଦୃଢ଼ ନିଷ୍ଠୟକୁ ଅବଲୋକନ କର । ୧୧୭ । ସେମାନେ ଦୁଃଖିତ ହୋଇ ରୋଦନ କରନ୍ତେ ଭଗବାନ୍ ସେମାନଙ୍କର ଅଶ୍ରୁ ମୋଚନ କଲେ । ଦେଖ; ଅଳ୍ପକାଳ ମଧ୍ୟରେ ନିଷ୍ଠୟ ଅନ୍ୱେଷଣଦ୍ୱାରା ଶଙ୍କରଙ୍କର ଅନୁଗ୍ରହ ଲାଭପୂର୍ବକ ଦୁଃଖିତ ମାନବଗଣ ସୁଖ ପ୍ରାପ୍ତ ହେଲେ ।

ହେ ଭରତଶ୍ରେଷ୍ଠ । ସେମାନେ ଶଙ୍କରଙ୍କ ପ୍ରସାଦରୁ ପୁତ୍ରର ପୁନର୍ଜୀବନ ହେତୁ ବିସ୍ମୟାବିଷ୍ଟ ଓ ନିତାନ୍ତ ହୃଷ୍ଟ ହେଲେ । ହେ ରାଜନ୍ ! ଅନନ୍ତର ସେମାନେ ଶିଶୁସମ୍ଭୂତ ଶୋକକୁ ପରିତ୍ୟାଗ ପୂର୍ବକ ଶୀଘ୍ର ହୃଷ୍ଟଚିତ୍ତ ହୋଇ ପୁତ୍ର ସହିତ ନଗର ମଧ୍ୟରେ ପ୍ରବେଶ କଲେ । ବ୍ରାହ୍ମଣାଦି ବର୍ଣ୍ଣ ଚତୁଷ୍ଟୟ ମଧ୍ୟରେ ସେମାନଙ୍କପାଇଁ ଏହିପରି ଜ୍ଞାନ ନିର୍ଦଶନ ରୂପରେ ପ୍ରଦର୍ଶିତ ହୋଇଅଛି । ୧୨୧ । ମନୁଷ୍ୟ ଏହି ଧର୍ମାର୍ଥ ମୋକ୍ଷ ସଂଯୁକ୍ତ ଇତିହାସକୁ ଶ୍ରବଣ କଲେ ଇହ ଓ ପରଲୋକରେ ସତତ ପ୍ରମୁଦିତ ହୁଅନ୍ତି । ୧୨୨ ।

———

## ଅଧ୍ୟାୟ—୧୫୪

ଯୁଧିଷ୍ଠିର କହିଲେ—ହେ ପିତାମହ ! ଅସାର ଅଲ୍ପବଳ ଓ କ୍ଷୁଦ୍ର ଜୀବୀ ମାନବ ମୋହବଶତଃ ଆତ୍ମଶ୍ଳାଘ୍ୟ ସମନ୍ୱିତ ବାକ୍ୟଦ୍ୱାରା ଯଦି ନିତ୍ୟ ଆସନ୍ନବର୍ତ୍ତୀ ଉପକାର ଓ ଅପକାର ଦ୍ୱାରା ବୈର ନିଗ୍ରହ ସମର୍ଥ ନିତ୍ୟ ଉଦ୍ୟୁକ୍ତ ବଳବାନ ବ୍ୟକ୍ତିପ୍ରତି ଦ୍ରୋହକରେ ଏବଂ ସେ ଯଦି କ୍ରୁଦ୍ଧ ହୋଇ ବୈର ନିର୍ଯାତନ ଅଭିଳାଷରେ ଗମନ କରେ, ତେବେ ଅଳ୍ପ ବଳ ବ୍ୟକ୍ତି କି ପ୍ରକାରେ ଆତ୍ମବଳ ଅବଲମ୍ବନ ପୂର୍ବକ ଅବସ୍ଥିତି କରିବ । ୩ ।

ଭୀଷ୍ମ କହିଲେ—ହେ ଭରତଶ୍ରେଷ୍ଠ ! ପ୍ରାଚୀନ ପଣ୍ଡିତମାନେ ଏ ବିଷୟରେ ଶାଲ୍ମଳି ପବନର ସମ୍ବାଦ ସମ୍ବଳିତ ପୁରାତନ ଇତିହାସକୁ ଉଦାହରଣ ଦେଇଥାନ୍ତି । ୪ । ହିମାଳୟ ଶୈଳରେ ବହୁ ବର୍ଷାବଧି ବୃଦ୍ଧିପ୍ରାପ୍ତ ଶାଖା ସ୍କନ୍ଧ ପଲ୍ଲବ ସମନ୍ୱିତ ଗୋଟିଏ ସୁମହାନ ଶାଲ୍ମଳୀ ବୃକ୍ଷ ଥିଲା ।୫। ସେଠାରେ ମତ୍ତ ମାତଙ୍ଗ ଦଳ ଓ ଅନ୍ୟାନ୍ୟ ପଶୁଗଣ ଗ୍ରୀଷ୍ମକାଳରେ ଘର୍ମାକ୍ତ ଓ ପରିଶ୍ରାନ୍ତ ହୋଇ ବିଶ୍ରାମ କରୁଥାନ୍ତି । ୬ । ସେହି ବନସ୍ପତି ଚତୁଃଶତ ହସ୍ତ ପରିମିତ ବିଶାଳ, ନିବିଡ଼ ଛାୟାସମାବୃତ ଓ ଫଳପୁଷ୍ପ ସୁଶୋଭିତ ଥିବାରୁ ଶୁକ ସାରିକାମାନେ ସତତ ତହିଁରେ ବାସ କରନ୍ତି । ୭ । ସାର୍ଥବାହ ବଣିକଗଣ ଏବଂ ବନବାସୀ ତପସ୍ୱିବୃନ୍ଦ ପଥି ମଧ୍ୟରେ ଗମନ କରୁଥିବା ସମୟରେ ସେହି ମନୋହର ତରୁତଳରେ ଅବସ୍ଥିତି କରୁଥାନ୍ତି । ୮ ।

ହେ ଭରତର୍ଷଭ । କୌଣସି ସମୟରେ ମହର୍ଷି ନାରଦ ସେହି ଶାଲ୍ମଳୀ ବୃକ୍ଷର ସ୍କନ୍ଧ ଓ ବିପୁଳ ଶାଖା ସମୂହ ଅବଲୋକନ ପୂର୍ବକ ସେହି ବୃକ୍ଷ ନିକଟକୁ ଆଗମନ କରି କହିଲେ—ହେ ତରୁପ୍ରବର ! ତୁମ୍ଭେ କେଡ଼େ ସୁନ୍ଦର ! ତୁମ୍ଭଙ୍କୁ ଦର୍ଶନ କରି ଆମ୍ଭେ ଏକାନ୍ତ ପ୍ରୀତି ଲାଭ କରୁଅଛୁଁ । ମନୋହର ମୃଗ, ପକ୍ଷୀ ଓ ଗଜ ସମୂହ ହୃଷ୍ଟ ହୋଇ ସତତ ତୁମ୍ଭ ଆଶ୍ରମରେ ବାସ କରୁ ଅଛନ୍ତି । ୧୧ । ହେ ମହାଶାଖ ! ତୁମ୍ଭର ବିପୁଳ ସ୍କନ୍ଧ ଓ ଶାଖାସବୁ କଦାପି ସମୀରଣ କର୍ତ୍ତୃକ ଭଗ୍ନ ହୋଇ ନାହିଁ ଦେଖୁଅଛୁଁ ।୧୨। ଏହି ବନମଧ୍ୟରେ ପବନ ଯେଉଁସ୍ଥଳେ ତୁମ୍ଭଙ୍କୁ ସତତ ରକ୍ଷା କରୁଅଛନ୍ତି, ତେବେ ସ୍ଥଳେ ବୋଧ ହେଉଅଛି ଯେ ସେ ତୁମ୍ଭର ସୁହୃତ ଅଟନ୍ତି କିମ୍ବା

ତୁମ୍ଭପ୍ରତି ପ୍ରୀତିମାନ ହୋଇଅଛନ୍ତି । ୧୬ । ବେଗଶାଳୀ ପବନ ଗନ୍ଧବାହ ଭଗବାନ୍ ପବନ ବହନପୂର୍ବକ ବିବିଧ ତରୁଜାଳକୁ ଓ ଗିରିଶିଖରମାନଙ୍କୁ ସ୍ୱସ୍ଥାନରୁ ବିଚଳିତ କରନ୍ତି ଏବଂ ପବନ ପ୍ରବାହିତ ହୋଇ ଓ ସାଗର, ସରୋବର ସବୁ ରସାତଳ ପର୍ଯ୍ୟନ୍ତ ଶୁଷ୍କକର ଥାନ୍ତି । ସୁତରାଂ ସଖିତ୍ୱ ହେତୁରୁ ପବନ ତୁମ୍ଭଙ୍କୁ ରକ୍ଷା କରୁଅଛନ୍ତି । ସନ୍ଦେହ ନାହିଁ । ଏହି ହେତୁରୁ ତୁମ୍ଭେ ବହୁଶାଖା ହୋଇ ପତ୍ର ପୁଷ୍ପରେ ସୁଶୋଭିତ ରହିଅଛ । ୧୭ ।

ହେ ବନସ୍ପତେ ! ଏହିସବୁ ବିହଙ୍ଗମମାନେ ତୁମ୍ଭଙ୍କୁ ଅବଲମ୍ବନ ପୂର୍ବକ ପ୍ରସନ୍ନ ମନରେ ବିହାର କରୁଅଛନ୍ତି ବୋଲି ଏହି କାନନ ରମଣୀୟ ରୂପରେ ଶୋଭିତ ହେଉଅଛି । ୧୭ । ବସନ୍ତ ସମୟରେ ମନୋହର ଧ୍ୱନିକାରୀ ଏହିସବୁ ବିହଙ୍ଗମ ମାନଙ୍କର ମଧୁର ସ୍ୱର କର୍ଣ୍ଣ-କୁହରରେ ଅମୃତ ବର୍ଷଣ କରୁଅଛି । ଘର୍ମାକ୍ତ ହସ୍ତି ସମୂହ ସ୍ୱୀୟ ଯୂଥରେ ସୁଶୋଭିତ ହୋଇ ଗର୍ଜନ ପୂର୍ବକ ତୁମ୍ଭ ଆଶ୍ରମରେ ସୁଖ ସମ୍ଭୋଗ କରୁ-ଅଛନ୍ତି । ୧୯ । ଏହି ପ୍ରକାରେ ତୁମ୍ଭେ ଅନ୍ୟାନ୍ୟ ମୃଗଜାତି ଓ ସର୍ବଜୀବଙ୍କର ଆଶ୍ରୟ ହୋଇ, ସୁମେରୁ ଶୈଳପ୍ରାୟ ଶୋଭିତ ହେଉଅଛ । ୨୦ । ତପଃସିଦ୍ଧ, ବ୍ରାହ୍ମଣ, ତାପସ ଓ ସନ୍ନ୍ୟାସିମାନଙ୍କ ଦ୍ୱାରା ସମାବୃତ ହେବାରୁ ତୁମ୍ଭର ଆୟତନ ସ୍ୱର୍ଗସମ ବୋଧ ହେଉଅଛି ।୨୧।

## ଅଧ୍ୟାୟ—୧୫୫

ନାରଦ କହିଲେ—ହେ ଶାଲ୍ମଳେ ! ସର୍ବତ୍ରଗାମୀ ଭୀଷଣ ସମୀରଣ ବନ୍ଧୁତ୍ୱ କିମ୍ବା ସଖ୍ୟ ହେତୁରୁ ସତତ ତୁମ୍ଭଙ୍କୁ ରକ୍ଷା କରୁଅଛନ୍ତି । ଏଥିରେ ସନ୍ଦେହ ନାହିଁ । ୧ । ତୁମ୍ଭେ ତାହାଙ୍କଠାରେ "ଆମ୍ଭେ ତୁମ୍ଭର ଏହି ପରନ୍ୟୁନତା ପ୍ରକାଶ କର ପରମ ଆତ୍ମୀୟ ହୋଇଅଛୁ । ଏଥିପାଇଁ ସେ ତୁମ୍ଭଙ୍କୁ ରକ୍ଷା କରୁଅଛନ୍ତି । ୨ । ଆମ୍ଭେ ଭୂଲୋକ ମଧ୍ୟରେ ଈଦୃଶ କୌଣସି ପାଦପ, ପର୍ବତ ଓ ଗୃହ ଦେଖୁନାହୁଁ, ଯାହା ବାୟୁବଳଦ୍ୱାରା ଭଗ୍ନ ହୋଇ ନାହିଁ; ଅତଏବ ଆମ୍ଭର ବୋଧ ହେଉଅଛି ଯେ ତୁମ୍ଭେ କୌଣସି କାରଣ ବଶତଃ ଶାଖାପଲ୍ଲବ ସହିତ ସମୀରଣ କର୍ତ୍ତୃକ ରକ୍ଷିତ ହୋଇ ନିଃଶଙ୍କରୂପରେ ଅବସ୍ଥାନ କରୁଅଛ । ୪ ।

ଶାଲ୍ମଳି କହିଲା—ହେ ବ୍ରହ୍ମନ୍ ! ସମୀରଣ ଆମ୍ଭର ସଖା, ସୁହୃତ, ବନ୍ଧୁ କିମ୍ବା ବିଧାତା ନୁହେ ଯେ ସେ ଆମ୍ଭଙ୍କୁ ରକ୍ଷା କରୁଅଛି । ୫ । ଆମ୍ଭର ତେଜୋବଳ ବାୟୁ ଅପେକ୍ଷା ପ୍ରବଳ ଅଟେ । ପବନ ଆମ୍ଭ ବଳର ଅଷ୍ଟାଦଶ ଅଂଶର ଏକାଂଶ ସଦୃଶ । ସେ ଆମ୍ଭ ନିକଟକୁ ଆଗମନ କଲେ ଆମ୍ଭେ ବଳପୂର୍ବକ ତାହାକୁ ସ୍ତମ୍ଭିତ କରି ରଖୁଁ । ପବନ, ପର୍ବତ ଓ ପାଦପ ପ୍ରଭୃତି ଯେ କୌଣସି ପଦାର୍ଥକୁ ଭଗ୍ନ କଲେ ସୁଦ୍ଧା ଆମ୍ଭ ନିକଟକୁ ଆସିଲେ, ଆମ୍ଭ ଦ୍ୱାରା ଭଗ୍ନ ହୋଇଯାଏ, ଅତଏବ ହେ ମହର୍ଷେ । ସମୀରଣ କ୍ରୁଦ୍ଧ ହେଲେ ହେଁ ଆମ୍ଭେ ତାହାଠାରୁ ଭୀତ ହେଉନାହୁଁ । ୮ ।

ନାରଦ କହିଲେ—ହେ ଶାଲ୍ମଳେ ! ତୁମ୍ଭର ବୁଦ୍ଧିର ବୈପରୀତ୍ୟ ହୋଇଅଛି । ସନ୍ଦେହ ନାହିଁ । ବାୟୁଠାରୁ ବଳଶାଳୀ କେହି ନାହିଁ ଏବଂ ତାଙ୍କଠାରୁ ବଳଶାଳୀ କେହି କୌଣସି ସ୍ଥଳରେ ନାହିଁ । ତୁମ୍ଭ କଥା ଦୂରରେ ଥାଉ, ଇନ୍ଦ୍ର, ଯମ, କୁବେର ଓ ଜଳାଧିପତି ବରୁଣ ମଧ୍ୟ ବାୟୁଙ୍କ ସଦୃଶ ନୁହନ୍ତି । ୧୦ । ଏହି ଜଗତରେ ଜୀବଗଣ ଯେ ଜୀବନ ଧାରଣ କରନ୍ତି, ତାହାର କାରଣ ଭଗବାନ୍ ବାୟୁ, ସେ ସମସ୍ତଙ୍କର ପ୍ରାଣଦାତା ଓ ଚେତୟିତା । ୧୧ । ବାୟୁ ପ୍ରଶାନ୍ତଭାବରେ ଥିଲେ ପ୍ରାଣିଗଣ ଜୀବିତ ଥାନ୍ତି ଏବଂ ଅଶାନ୍ତ ହେଲେ ଜୀବଗଣ ବିକୃତ ବିକୃତି ଲାଭ କରନ୍ତି, ଅତଏବ ତୁମ୍ଭେ ସମସ୍ତ ବଳବାନ୍‌ମାନଙ୍କର ଅଗ୍ରଗଣ୍ୟ ବୋଲି ଯେ ଈଦୃଶ ପୂଜନୀୟ ସମୀରଣକୁ ଅସମ୍ମାନ କରୁଅଛ, ତାହାର କାରଣ ତୁମ୍ଭର ବୁଦ୍ଧି ଲାଘବ ଭିନ୍ନ ଅନ୍ୟ କିଛି ନୁହେଁ । ତୁମ୍ଭେ ଅତି ଅସାର ଓ ଦୁର୍ବୁଦ୍ଧି; ଏହି ହେତୁରୁ ବହୁବାକ୍ୟ ବ୍ୟୟ କରୁଅଛ ଏବଂ କ୍ରୋଧାଚ୍ଛନ୍ନ ହୋଇ ମିଥ୍ୟା କଥା କହୁଅଛ । ୧୪ । ତୁମ୍ଭର ଏହିପରି କଥା ଶୁଣି ଆମ୍ଭର କ୍ରୋଧୋଦୟ ହୋଇଅଛି । ଆମ୍ଭେ ସ୍ୱୟଂ ସମୀରଣ ନିକଟକୁ ଗମନ କରି ତୁମ୍ଭର ଏହିସବୁ ଦୁଷ୍ଟ ବାକ୍ୟ ବ୍ୟକ୍ତ କରିବୁଁ । ୧୫ ।

ରେ ଦୁର୍ବୁଦ୍ଧେ ! ଚନ୍ଦନ, ସ୍ୟନ୍ଦନ, ଶାଳ, ସରଳ, ଦେବଦାରୁ, ବେତସ ଓ ବକୁଳ ପ୍ରଭୃତି ଅନ୍ୟାନ୍ୟ ଯେଉଁସବୁ ସାରବାନ ଓ ବଳବାନ ବୃକ୍ଷ ଅଛନ୍ତି, ସେମାନେ କଦାପି ବିନମ୍ର ପ୍ରଯୁକ୍ତ ପବନକୁ ଏହିପରି ତିରସ୍କାର କରନ୍ତି ନାହିଁ । ସେମାନେ ବାୟୁ ଓ ନିଜବଳର ତାରତମ୍ୟ ଜାଣନ୍ତି । ଏଥିପାଇଁ ସେ ତରୁବରମାନେ ସମୀରଣଙ୍କୁ ନମସ୍କାର କରନ୍ତି । ତୁମ୍ଭେ

ମୋହବଶତଃ ବାୟୁର ଅନନ୍ତ ବଳକୁ ବିଜ୍ଞାତ ହୋଇନାହିଁ, ଏଥିପାଇଁ ଏହିପରି କହୁଅଛ । ଅତଏବ ଆମ୍ଭେ ତୁମ୍ଭ ବୃତ୍ତାନ୍ତ କହିବା ସକାଶେ ସମୀରଣଙ୍କ ନିକଟକୁ ଗମନ କରିବୁଁ । ୧୯ ।

## ଅଧ୍ୟାୟ—୧୫୬

ଭୀଷ୍ମ କହିଲେ—ହେ ରାଜେନ୍ଦ୍ର ! ବ୍ରହ୍ମର୍ଷିଶ୍ରେଷ୍ଠ ନାରଦ ଶାଲ୍ମଳୀକୁ ଏହିପରି କଥା କହି ପବନ ନିକଟକୁ ଗମନ ପୂର୍ବକ ତାହାଙ୍କଠାରେ ଶାଲ୍ମଳୀର ବାକ୍ୟ ସବୁ ବ୍ୟକ୍ତ କଲେ । ୧ ।

ନାରଦ କହିଲେ—ହେ ସମୀରଣ ! ହିମାଳୟ ପର୍ବତର ପୃଷ୍ଠରେ ସମ୍ପୃକ୍ତ ଶାଖା ପଲ୍ଲବଶାଳୀ ବୃହନ୍ମୂଳ କୌଣସି ଶାଲ୍ମଳି ବୃକ୍ଷ ତୁମ୍ଭକୁ ଅବଜ୍ଞା କରୁଅଛି । ୨ । ତୁମ୍ଭ ନିକଟରେ ସେହିସବୁ କଥା ବ୍ୟକ୍ତ କରିବା ଆମ୍ଭର ଉଚିତ ନୁହେଁ । ଆମ୍ଭେ ତୁମ୍ଭଙ୍କୁ ପ୍ରାଣିଗଣଙ୍କର ଅଗ୍ରଗଣ୍ୟ, ବରିଷ୍ଠ ଓ ଗରିଷ୍ଠ ବୋଲି ବିବେଚନା କରୁ । ତୁମ୍ଭେ କ୍ରୁଦ୍ଧ ହେଲେ କୃତାନ୍ତ ସଦୃଶ ହୋଇଥାଅ । ୪ ।

ଭୀଷ୍ମ କହିଲେ—ସମୀରଣ ନାରଦଙ୍କର ଏହି କଥା ଶ୍ରବଣ କରି ସେହି ଶାଲ୍ମଳୀ ବୃକ୍ଷ ସମୀପକୁ ଆଗମନ ପୂର୍ବକ କ୍ରୁଦ୍ଧ ହୋଇ କହିଲେ । ୫ । ବାୟୁ କହିଲେ—ହେ ଶାଲ୍ମଳେ ! ତୁମ୍ଭେ ନାରଦଙ୍କଠାରେ ଆମ୍ଭର ନିନ୍ଦା କରିଅଛ, ଅତଏବ ଆମ୍ଭେ ବଳପୂର୍ବକ ତୁମ୍ଭଙ୍କୁ ନିଜ ପ୍ରଭାବ ପ୍ରଦର୍ଶନ କରାଇବୁଁ । ଆମ୍ଭେ ତୁମ୍ଭଙ୍କୁ ଜାଣୁ ଏବଂ ତୁମ୍ଭେ ମଧ୍ୟ ଆମ୍ଭକୁ ଜାଣ । ପିତାମହ ପ୍ରଜାସୃଷ୍ଟି କାଳରେ ତୁମ୍ଭ ମୂଳରେ ବିଶ୍ରାମ କରିଥିଲେ । ସେ ବିଶ୍ରାମ କରୁଥିଲେ ବୋଲି ଆମ୍ଭେ ତୁମ୍ଭ ପ୍ରତି ଅନୁଗ୍ରହ କରୁଥିଲୁଁ । ରେ ଦ୍ରୁମାଧମ ! ସେଥିନିମିତ୍ତ ଆମ୍ଭେ ତୁମ୍ଭଙ୍କୁ ରକ୍ଷା କରିଥିଲୁଁ । ତୁମ୍ଭେ ନିଜ ବଳବୀର୍ଯ୍ୟ ବଳଦ୍ୱାରା ରକ୍ଷିତ ହୋଇ ନାହିଁ । ୬ । ତୁମ୍ଭେ ସାମାନ୍ୟ ବ୍ୟକ୍ତି ପ୍ରାୟ ଆମ୍ଭଙ୍କୁ ଅବଜ୍ଞା କରୁଥିବା ସ୍ଥଳେ, ଆମ୍ଭେ, ତୁମ୍ଭେ ଯେପରି ଆମ୍ଭଙ୍କୁ ଆଉ ଅବଜ୍ଞା ନ କର, ତନିମିତ୍ତ ଆତ୍ମପ୍ରଭାବ ପ୍ରଦର୍ଶନ କରାଇବୁଁ । ୯ ।

ଭୀଷ୍ମ କହିଲେ—ଶାଲ୍ମଳି ସମୀରଣ କର୍ତ୍ତୃକ ଏହିପରି ଉକ୍ତ ହୋଇ ହାସ୍ୟ ବଦନରେ କହିଲା—ହେ ପବନ ! ତୁମ୍ଭେ ଆମ୍ଭ ପ୍ରତି କ୍ରୁଦ୍ଧ

ହୋଇ କି ପରାକ୍ରମ ପ୍ରକାଶ କରିବ ? ତାହା ପ୍ରକାଶ କର, ହେ ସମୀରଣ ! ତୁମ୍ଭେ ଅନ୍ୟର ଶାସନରେ ସମର୍ଥ ହେଲେ ହେଁ ଅମ୍ଭେ ତୁମ୍ଭଠାରୁ ଭୟ କରୁ ନାହୁଁ । ଅମ୍ଭେ ତୁମ୍ଭ ଅପେକ୍ଷା ସମଧିକ ବଳବାନ ଅଛୁଁ । ଅତଏବ ଅମ୍ଭେ ତୁମ୍ଭଠାରୁ ଭୀତ ହେବା ପ୍ରୟୋଜନ କଣ ? ଜଗତରେ ଯେଉଁମାନେ ବୁଦ୍ଧିବଳରେ ବଳବାନ ସେମାନେ ବଳୟାନ୍ ଅଟନ୍ତି । ୧୨ । ସାମର୍ଥ୍ୟରେ କେବଳ ବଳବାନ ବ୍ୟକ୍ତିମାନଙ୍କୁ ବଳବାନ ବୋଲି ଗଣ୍ୟ କରାଯାଏ ନାହିଁ ।

ସମୀରଣ ଶାଳ୍ମଳି କର୍ତ୍ତୃକ ଏହିପରି ଉକ୍ତ ହୋଇ "ତୁମ୍ଭକୁ ଅମ୍ଭେ କାଲି ଆମ୍ଭର ପରାକ୍ରମ ପ୍ରଦର୍ଶନ କରାଇବୁଁ" ବୋଲି କହି ପ୍ରସ୍ଥାନ କଲେ । ଅନନ୍ତରର ରାତ୍ରି ସମାଗତ ହେଲା । ଶାଳ୍ମଳି ମନେ ମନେ ପବନର ପରାକ୍ରମକୁ ଚିନ୍ତା କରି ଏବଂ ଆପଣାକୁ ପବନର ଅସଦୃଶ ଜାଣି ଭାବିଲା ଯେ ଅମ୍ଭେ ନାରଦଙ୍କ ଠାରେ ବାୟୁ ସମ୍ବନ୍ଧରେ ଯାହା କହିଅଛୁଁ, ତାହା ଅମୂଳକ ଅଟେ । ପବନ ପ୍ରବଳ ବଳଶାଳୀ, ନାରଦ ଯେପରି କହିଅଛନ୍ତି, ବାୟୁ ସେହିପରି ବଳବାନ୍ ଅଟେ । ତାହାଙ୍କୁ ଦେଖିଲେ ଅମ୍ଭେ ଅତି ଅସମର୍ଥ ଅଛୁଁ । ବାୟୁକଥା ଦୂରରେ ଥାଉ, ଅମ୍ଭେ ଅନ୍ୟାନ୍ୟ ବୃକ୍ଷ ଅପେକ୍ଷା ଦୁର୍ବଳ ଅଛୁଁ ।ସନ୍ଦେହ ନାହିଁ । କିନ୍ତୁ କୌଣସି ବନସ୍ପତି ସୁଦ୍ଧା ଆମ୍ଭପରି ବୁଦ୍ଧିମାନ ନୁହେ, ଅତଏବ ଅମ୍ଭେ ବୁଦ୍ଧିବଳ ପୂର୍ବକ ପବନ ଭୟରୁ ପରିତ୍ରାଣ ଲଭ କରିବୁଁ । କାନନସ୍ଥିତ ବୃକ୍ଷଗଣ ଯଦି ଆମ୍ଭପରି ବୁଦ୍ଧି ଅବଲମ୍ବନ ପୂର୍ବକ ଅବସ୍ଥାନ କରନ୍ତି, ତେବେ ସେମାନେ ସତତ କ୍ରୋଧପ୍ରବୃତ୍ତ ସମୀରଣ ଦ୍ୱାରା ଉପଦ୍ରୁତ ହେବେ ନାହିଁ । ଏହା ପ୍ରକୃତ ଅଟେ । କ୍ରୁଦ୍ଧ ସମୀରଣ ସେମାନଙ୍କୁ ଯେପରି ସଞ୍ଚାଳିତ କରେ, ତାହା ଅମ୍ଭେ ଯେପରି ଜାଣୁଁ, ସେମାନେ ବାଳକ ଥିବାରୁ ସେପରି ଜାଣନ୍ତି ନାହିଁ । ୧୯ ।

—·——

# ଅଧ୍ୟାୟ—୧୫୭

ଭୀଷ୍ମ କହିଲେ—ଅନନ୍ତର ଶାଲ୍ମଳି ଲୁବ୍ଧ ହୋଇ ମନେ ମନେ ନିଶ୍ଚୟ କରି ସ୍ୱୟଂ ନିଜର ଶାଖା ପ୍ରଶାଖା ସ୍କନ୍ଧ ସବୁ ଛେଦନ କଲା । ୧ । ସେ ଶାଖା, ପତ୍ର, ପୁଷ୍ପ ପ୍ରଭୃତି ପରିତ୍ୟାଗ ପୂର୍ବକ ପ୍ରଭାତ ସମୟରେ ବାୟୁର ଆଗମନକୁ ପ୍ରତୀକ୍ଷା କଲା । ୨ ।

ଅନନ୍ତର କ୍ରୋଧପୂର୍ଣ୍ଣ ପବନ ବୃହତ ବୃହତ ବୃକ୍ଷମାନଙ୍କୁ ପାତିତ କରି ଶାଲ୍ମଳି ସମୀପକୁ ଆଗମନ କଲେ । ସେ ଆଗତ ହୋଇ ତାହାକୁ ଶାଖା ଓ ପୁଷ୍ପହୀନ ଦେଖି ଅତିଶୟ ହୃଷ୍ଟ ଓ ବିସ୍ମୟାବିଷ୍ଟ ହୋଇ କହିଲେ—ହେ ଶାଲ୍ମଳେ ! ତୁମ୍ଭେ ନିଜେ କଷ୍ଟ କରି ଶାଖାମାନ ଛେଦନ ପୂର୍ବକ ଯେପରି ହୋଇଅଛ, ଆମ୍ଭେ ମଧ୍ୟ କ୍ରୋଧପୂର୍ବକ ତୁମ୍ଭଙ୍କୁ ସେହିପରି କରିଥାନ୍ତୁ । ତୁମ୍ଭେ ନିଜେ ଦୁର୍ବୁଦ୍ଧିବଶତଃ ଆମ୍ଭ ବୀର୍ଯ୍ୟରେ ବଶୀଭୂତ ହୋଇ ପୁଷ୍ପହୀନ, ଶାଖାବିହୀନ, ଶୀର୍ଣ୍ଣପର୍ଣ୍ଣ ଓ ଅଙ୍କୁର ବିରହିତ ହୋଇଅଛ ।୬।

ଭୀଷ୍ମ କହିଲେ—ଶାଲ୍ମଳି ତେତେବେଳେ ସମୀରଣର ଏହିକଥା ଶ୍ରବଣ କରି ଲଜ୍ଜିତ ହେଲା ଏବଂ ଦେବର୍ଷି ନାରଦ ପୂର୍ବେ ଯାହା କହିଥିଲେ, ତାହା ସ୍ମରଣ କରି ଅନୁତାପ କଲା । ୭ ।

ହେ ରାଜ ଶାର୍ଦ୍ଦୂଳ । ଏହିପରି ଯେଉଁ ଅଳ୍ପବୁଦ୍ଧିବ୍ୟକ୍ତି ସ୍ୱୟଂ ଦୁର୍ବଳ ହୋଇ ବଳବାନ୍ ସହିତ ଶତ୍ରୁତା କରେ ସେ ଶାଲ୍ମଳି ବୃକ୍ଷ ପ୍ରାୟ ସନ୍ତପ୍ତ ହୁଏ । ଅତଏବ ଦୁର୍ବଳ ଲୋକ ପ୍ରବଳ ସହିତ ବୈରିତାଚରଣ କରିବେ ନାହିଁ । ଯଦି କରନ୍ତି ତେବେ ସେ ଶାଲ୍ମଳିପ୍ରାୟ ଶୋଚନୀୟ ହେବେ । ୯ । ତୁଲ୍ୟ ପରାକ୍ରମ ବିଶିଷ୍ଟ ବ୍ୟକ୍ତିମାନେ ମଧ୍ୟ ଅପକାରୀ ସହିତ ସହସା ଶତ୍ରୁତା ପ୍ରକାଶ କରନ୍ତି ନାହିଁ । ସେମାନେ କ୍ରମଶଃ ଶତ୍ରୁ ସମୀପରେ ପରାକ୍ରମ ପ୍ରଦର୍ଶନ କରିଥାନ୍ତି । ୧୦ । ଦୁର୍ବୁଦ୍ଧି ବ୍ୟକ୍ତିର ବୁଦ୍ଧିଜୀବୀ ସହିତ ବୈରାଚରଣ କରିବା ଏକାନ୍ତ ଅବିଧେୟ ଅଟେ । ତୃଣରାଶି ମଧ୍ୟରେ ହୁତାଶନ ପ୍ରବେଶ କଲାପ୍ରାୟ, ବୁଦ୍ଧିମାନ ବ୍ୟକ୍ତିର ବୁଦ୍ଧି ବିପକ୍ଷ ମଧ୍ୟରେ ପ୍ରବେଶ କରେ । ୧୧ । ହେ ରାଜେନ୍ଦ୍ର ! ପୃଥିବୀସ୍ଥ ପୁରୁଷର ବୁଦ୍ଧି ଓ ବଳ ସମାନ ଅନ୍ୟ କିଛି ନାହିଁ । ଅତଏବ ବାଳକ, ଜଡ଼, ଅନ୍ଧ, ବଧିର ଓ ବଳାଧିକ ବ୍ୟକ୍ତିକୁ କ୍ଷମା କରିବ ।

ହେ ବୈରଦମନ ! ବଳାଧିକ ବ୍ୟକ୍ତିକୁ ଯେ କ୍ଷମା କରିବାକୁ ହୁଏ, ତାହା ତୁମ୍ଭଠାରେ ଦେଖା ଯାଇଅଛି । ଦୁର୍ଯ୍ୟୋଧନର ଏକାଦଶ ଅକ୍ଷୌହିଣୀ ଓ ତୁମ୍ଭର ସପ୍ତ ଅକ୍ଷୌହିଣୀ ସେନା ମହାବଳ ଅର୍ଜ୍ଜୁନଙ୍କର ବଳ ସମାନ ନୁହେଁ । ୧୪ । ଯଶସ୍ୱୀ ଇନ୍ଦ୍ରତନୟ ଅର୍ଜ୍ଜୁନ ବନେ ବନେ ବିଚରଣ କରି ସୁଦ୍ଧା ପରିଶେଷରେ ଶତ୍ରୁମାନଙ୍କୁ ଯୁଦ୍ଧରେ ନିହତ ଓ ପରାଜିତ କଲେ । ୧୫ । ହେ ଭାରତ ! ଆମ୍ଭେ ତୁମ୍ଭଙ୍କୁ ରାଜଧର୍ମ୍ମ ଓ ଆପଦ୍ଧର୍ମ୍ମ ବିସ୍ତର କ୍ରମରେ କହିଲୁଁ । ପୁନର୍ବାର କ'ଣ ଶ୍ରବଣ କରିବାକୁ ଇଚ୍ଛା କରୁଅଛ, ତାହା କୁହ । ୧୬ ।

## ଅଧ୍ୟାୟ—୧୫୮

ଯୁଧିଷ୍ଠିର କହିଲେ—ହେ ଭରତଶ୍ରେଷ୍ଠ ! ପାପର ଅଧିଷ୍ଠାନ କଣ ? ଏବଂ ଯହିଁରୁ ପାପ ପ୍ରବର୍ତ୍ତିତ ହୁଏ, ତାହା ଆମ୍ଭେ ପ୍ରକୃତ ରୂପେ ଶ୍ରବଣ କରିବାକୁ ଅଭିଳାଷ କରୁଅଛୁଁ । ୧ ।

ଭୀଷ୍ମ କହିଲେ—ହେ ନରନାଥ ! ଯହିଁରୁ ପାପ ଉତ୍ପନ୍ନ ହୁଏ, ତାହା ଶ୍ରବଣ କର । ୨ । ଏକମାତ୍ର ଲୋଭ କେବଳ ପୁଣ୍ୟଫଳକୁ ଗ୍ରାସ କରିଥାଏ । ଅତଏବ ଲୋଭରୁ ପାପ ପ୍ରବର୍ତ୍ତିତ ହୁଏ ଏବଂ ପାପ ସହିତ ନିରତିଶୟ ଦୁଃଖ ଉତ୍ପନ୍ନ ହୁଏ । ଲୋକେ ଲୋଭ ହେତୁରୁ, ପାପାଚରଣରେ ପ୍ରବୃତ୍ତ ହୁଅନ୍ତି । ଅତଏବ ଲୋଭ ପାପର ମୂଳ କାରଣ ଅଟେ । ୩ । କାମ, କ୍ରୋଧ, ମୋହ, ମାୟା, ଅଭିମାନ, ଗର୍ବ, ପରାଧୀନତା, ଅକ୍ଷମା, ନିର୍ଲ୍ଲଜ୍ଜତା, ଶ୍ରୀ ନାଶ, ଧର୍ମ୍ମହାନି, ଚିନ୍ତା ଓ ଅକୀର୍ତ୍ତି ପ୍ରଭୃତି ସମସ୍ତ ଲୋଭରୁ ପ୍ରାଦୁର୍ଭୂତ ହୁଏ । କୃପଣତା, ବୈଷୟିକ ସୁଖରେ ନିତାନ୍ତ ତୃଷ୍ଣା, କୁକର୍ମ୍ମରେ ପ୍ରବୃତ୍ତି, କୁଳ ଓ ବିଦ୍ୟାର ଅହଙ୍କାର, ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟର ଅଭିମାନ, ସର୍ବଜୀବର ଅନିଷ୍ଟାଚରଣ, ସମସ୍ତଙ୍କ ପ୍ରତି ଅସମ୍ମାନ, ଅବିଶ୍ୱାସ ଓ ଶଠତା ପ୍ରକାଶ, ପରସ୍ୱହରଣ, ପରନାରୀ ଗମନ ବାଚନିକ ଓ ମାନସିକ ଆଗମ, ପରନିନ୍ଦା ଇନ୍ଦ୍ରିୟ ପରତନ୍ତ୍ରତା, ଉଦରମ୍ଭରିତା, ଦାରୁଣ ମରଣ, ବଳବତୀ ଈର୍ଷା, ଦୁର୍ଜ୍ଜୟ ମିଥ୍ୟା ବ୍ୟବହାର, ଦୁର୍ନିବାର୍ଯ୍ୟ ରସବେଗ, ଦୁଃସହ ଶ୍ରୋତବେଗ, କୁତ୍ସା, ଆତ୍ମଶ୍ଲାଘା, ମାତ୍ସର୍ଯ୍ୟ, ଦୁଷ୍କରକାରିତା ଏବଂ ସାହସ କାର୍ଯ୍ୟ ଓ ଅକାର୍ଯ୍ୟର ଅନୁଷ୍ଠାନଜନିତ ସମସ୍ତ ପାପ ଲୋଭରୁ ପ୍ରବର୍ତ୍ତିତ ହୁଏ । ମାନବଗଣ

କି ବାଲ୍ୟ, କି କୌମାର କି ଯୌବନ, କୌଣସି ଅବସ୍ଥାରେ ସୁଦ୍ଧା ଲୋଭକୁ ପରିତ୍ୟାଗ କରି ପାରନ୍ତିନାହିଁ । ମନୁଷ୍ୟ ଜରାଜୀର୍ଣ୍ଣ ହେଲେ ମଧ୍ୟ, ଲୋଭ ଜୀର୍ଣ୍ଣ ହୁଏନାହିଁ । ହେ କୁରୁକୁଳ ଧୁରନ୍ଧର ନୃପବର ! ଗମ୍ଭୀର ସଲିଳ ସମ୍ପନ୍ନ ସ୍ରୋତସ୍ୱତୀ ସମୂହ ଦ୍ୱାରା ସାଗର ଯେପରି ପରିପୂର୍ଣ୍ଣ ହୁଏ ନାହିଁ, ସେହିପରି ନିୟତ ଫଳପ୍ରାପ୍ତି ହେଲେ ହେଁ ଲୋଭକୁ କଦାପି ପରିପୂର୍ଣ୍ଣ କରି ହୁଏ ନାହିଁ । ଯେଉଁ ଲୋଭୀ ଅର୍ଥଲାଭ ଦ୍ୱାରା ହୃଷ୍ଟ ଓ କାମନା ସିଦ୍ଧି ହେତୁ ପରିତୃପ୍ତ ହୁଏ ନାହିଁ, ଦେବ, ଗନ୍ଧର୍ବ, ଅସୁର, ଉରଗ ଓ ସମସ୍ତ ଜୀବଗଣ ଯାହାକୁ ପ୍ରକୃତ ରୂପରେ ଜାଣନ୍ତି ନାହିଁ, ସେହି ଲୋଭକୁ ମୋହ ସହିତ ଜୟ କରିବା ଜିତେନ୍ଦ୍ରିୟ ବ୍ୟକ୍ତିଙ୍କର ଉଚିତ ଅଟେ ।

ହେ କୌରବ ! ଅବଶେନ୍ଦ୍ରିୟ ଲୁବ୍ଧ ବ୍ୟକ୍ତିବର୍ଗଙ୍କର ଦମ୍ଭ, ପରିନିନ୍ଦା, ପରନିନ୍ଦା, ପୈଶୁନ୍ୟ ଓ ମତ୍ସରତା ପ୍ରାଦୁର୍ଭୂତ ହୋଇଥାଏ । ଯେଉଁମାନେ ବହୁଳ ଶାସ୍ତ୍ର ଅଧ୍ୟୟନ କରି ବହୁଦର୍ଶୀ ହୋଇଅଛନ୍ତି ଓ ସମସ୍ତ ସଂଶୟ ଛେଦନରେ ସମର୍ଥ ହୋଇଅଛନ୍ତି, ସେମାନେ ମଧ୍ୟ ଅଲ୍ପବୁଦ୍ଧି ଲୋକମାନଙ୍କ ପ୍ରାୟ ଲୋଭ ଜାଲରେ ଜଡ଼ିତ ହୋଇ କ୍ଲେଶ ପ୍ରାପ୍ତ ହୁଅନ୍ତି । ଦ୍ୱେଷ ଓ କ୍ରୋଧରେ ଆସକ୍ତ ଏବଂ ଶିଷ୍ଟାଚାର ବହିଷ୍କୃତ ଲୁବ୍ଧ ବ୍ୟକ୍ତିମାନେ, ତୃଣାଚ୍ଛନ୍ନ କୂପ ପ୍ରାୟ ଅନ୍ତରରେ କ୍ରୂର ଓ ବାକ୍ୟରେ କେବଳ ମଧୁର ହୁଅନ୍ତି । ସେହି କ୍ଷୁଦ୍ରାଶୟ ଲୋକେ ଧର୍ମ ପ୍ରଚାରକ ହୋଇ ଧର୍ମ ଛଳରେ ଅପରର ଅନିଷ୍ଟାଚରଣପୂର୍ବକ ଜଗତକୁ ବଞ୍ଚନା କରନ୍ତି । ୧୮ । ସେମାନେ ଯେକୌଣସି ଉପାୟ ଅବଲମ୍ବନ ପୂର୍ବକ ବହୁଳ ପଥ ପ୍ରଦର୍ଶନ କରନ୍ତି ଏବଂ ଲୋଭାସକ୍ତ ହୋଇ ସତ୍ପଥ ମାନଙ୍କୁ ବିଲୁପ୍ତ କରନ୍ତି । ୧୯ । ଲୋଭଗ୍ରସ୍ତ ଦୁରାତ୍ମାମାନଙ୍କର ଅନୁଷ୍ଠିତ ଧର୍ମର ଯେଉଁ ଯେଉଁ ଅବସ୍ଥା ଅନ୍ୟଥା ହୁଏ, ତାହା ତଦନ୍ତରେ ପ୍ରଖ୍ୟାପିତ ହୋଇଥାଏ । ୨୦ । ହେ କୁରୁନନ୍ଦନ ! କ୍ରୋଧ, ମଦ, ସ୍ୱପ୍ନ, ହର୍ଷ, ଶୋକ ଓ ଅଭିମାନ ଏହିସବୁ ଲୁବ୍ଧ ବୁଦ୍ଧି ବ୍ୟକ୍ତିମାନଙ୍କୁ ଆଶ୍ରୟ କରିଥାଏ । ୨୧ । ଲୋଭଯୁକ୍ତ ବ୍ୟକ୍ତିମାନଙ୍କୁ ନିୟତ ଅଶିଷ୍ଟ ବୋଲି ବିବେଚନା କରିବ । ସମ୍ପ୍ରତି ପବିତ୍ର ଚରିତ୍ର ଶିଷ୍ଟମାନଙ୍କ କଥା କହୁଅଛୁ ଶ୍ରବଣ କର । ୨୨ ।

ଯେଉଁମାନଙ୍କର ସଂସାରରେ ପୁନରାବୃତ୍ତି ଓ ନରକ ଭୟ ନାହିଁ, ଯେଉଁମାନଙ୍କର ପ୍ରିୟ ଓ ଅପ୍ରିୟ ବସ୍ତୁମାନଙ୍କରେ ସମାନ ଜ୍ଞାନ, ଯେଉଁମାନେ

ବୈଷୟିକ ସୁଖରେ ଆସକ୍ତ ନୁହନ୍ତି, ଯେଉଁମାନଙ୍କ ଶିଷ୍ଟାଗ୍ର ଓ ଇନ୍ଦ୍ରିୟ ଦମନ ଅବଲମ୍ବନ କରି ରହିଅଛି, ଯେଉଁମାନଙ୍କର ସୁଖ ଓ ଦୁଃଖରେ ସମଭାବ, ସତ୍ୟ ଯେଉଁମାନଙ୍କର ପରମ ଅବଲମ୍ବନ, ଯେଉଁମାନେ ଦାନଶୀଳ ଓ ଦୟାବାନ୍ ଅଥଚ ଅନ୍ୟଠାରୁ ଅର୍ଥ ଗ୍ରହଣରେ ପରାଙ୍ମୁଖ ଅଟନ୍ତି, ଯେଉଁମାନେ ପିତୃଗଣ, ଦେବଗଣ ଓ ଅତିଥି ଗଣଙ୍କର ପରିତୃପ୍ତି ସାଧନାରେ ସର୍ବଦା ନିରତ ଅଟନ୍ତି, ଯେଉଁମାନେ ସମସ୍ତଙ୍କର ଉପକାରକ, ଧୀର ଓ ସର୍ବଧର୍ମପାଳକ ଅଟନ୍ତି, ଯେଉଁମାନେ ସର୍ବଭୂତ ହିତୈଷୀ ଅଟନ୍ତି ଓ ସାଧାରଣଙ୍କର ଉପକାର ନିମିତ୍ତ ପ୍ରାଣ ପ୍ରଦାନ କରିବାକୁ ସମର୍ଥ ଅଟନ୍ତି, ସେହିସବୁ ଧାର୍ମିକ ବ୍ୟକ୍ତିମାନଙ୍କୁ ଧର୍ମ ପଥରୁ ବିଚଳିତ କରିବାର କାହାରି ସାଧ୍ୟ ନାହିଁ । ପୂର୍ବେ ସାଧୁମାନେ ଯାଦୃଶ ଆଚରଣ କରି ଯାଇଅଛନ୍ତି, ସେହି ସବୁ ଧାର୍ମିକ ବ୍ୟକ୍ତିମାନଙ୍କର ଆଚରଣ ମଧ୍ୟ ତହିଁରୁ ଭିନ୍ନ ନୁହେ । ୨୭ । ଯେଉଁମାନେ ସତ୍ପଥରେ ଅବସ୍ଥିତ କରନ୍ତି, ସେମାନଙ୍କର ଭୟ ନାହିଁ । ସେମାନେ ଚପଳ ଓ ଉଗ୍ରସ୍ୱଭାବ ନୁହନ୍ତି, କଦାପି କାହାରି ହିଂସା କରନ୍ତି ନାହିଁ । ସେହି ସବୁ ବ୍ୟକ୍ତିଙ୍କ ସତତ ସେବା କରିବା ସାଧୁଗଣଙ୍କର କର୍ତ୍ତବ୍ୟ । ୨୮ । ଯେଉଁମାନେ ନିଷ୍କାମ କ୍ରୋଧବିବର୍ଜିତ, ନିର୍ମମ, ନିରହଙ୍କାର, ସୁବ୍ରତ ଓ ସ୍ଥିର ମର୍ଯ୍ୟାଦା-ସମନ୍ୱିତ ଅଟନ୍ତି, ତୁମ୍ଭେ ସେମାନଙ୍କୁ ଉପାସନା କରି ଧର୍ମ ପ୍ରଶ୍ନ କର । ୨୯ ।

ହେ ଯୁଧିଷ୍ଠିର ! ଧନ ଓ ଯଶ ନିମିତ୍ତ ସେମାନଙ୍କର ଧର୍ମ ନୁହେ । ଦେହ ଧାରଣାର୍ଥ ଆହାରାଦି ପ୍ରାୟ ଅବଶ୍ୟ କର୍ତ୍ତବ୍ୟ ରୂପରେ ସେମାନେ ଧର୍ମକୁ ପାଳନ କରନ୍ତି । ୩୦ । ସେମାନଙ୍କର ଭୟ ନାହିଁ, କ୍ରୋଧ ନାହିଁ, ଚପଳତା କିମ୍ବା ଶୋକ ନାହିଁ । ସେମାନେ ଧର୍ମଧ୍ୱଜୀ କିମ୍ବା ପାଷାଣ୍ଡ-ଧର୍ମାବଲମ୍ବୀ ନୁହନ୍ତି । ଯେଉଁମାନଙ୍କର ଲୋଭ ନାହିଁ ଓ ମୋହ ନାହିଁ, ଯେଉଁମାନେ ସତ୍ୟ ଓ ସରଳତାକୁ ଅବଲମ୍ବନ କରିଥାନ୍ତି, ହେ କୁନ୍ତୀପୁତ୍ର ! ତୁମ୍ଭେ ସେମାନଙ୍କ ପ୍ରତି ଅନୁରକ୍ତ ହୁଅ । ଯେଉଁମାନଙ୍କ ସହିତ ଅନୁରକ୍ତ ହେଲେ, ପୁନର୍ବାର ତାହା ସ୍ଖଳିତ ହୁଏନାହିଁ, ଯେଉଁମାନେ ଲାଭରେ ହୃଷ୍ଟ ଓ ଅଲାଭରେ ଅସନ୍ତୁଷ୍ଟ ନୁହନ୍ତି, ଯେହି ନିର୍ମମ, ନିରହଙ୍କାର, ସତ୍ତ୍ୱଗୁଣାବଲମ୍ବୀ ସମଦର୍ଶୀ, ସତ୍ପଥାବସ୍ଥିତ, ସ୍ଥିର ବିକ୍ରମ, ବୋଧେଚ୍ଛୁ ବ୍ୟକ୍ତିମାନଙ୍କର ଲାଭାଲାଭ, ସୁଖ, ଦୁଃଖ, ପ୍ରିୟାପ୍ରିୟ ଓ ଜୀବନ ମରଣ ସମସ୍ତ ସମାନ ଅଟେ । ୩୪ ।

ହେ ଭଦ୍ର ! ତୁମ୍ଭେ ଇନ୍ଦ୍ରିୟ ନିଗ୍ରହରେ ନିରତ ଓ ଅପ୍ରମତ୍ତ ହୋଇ ସେହି ସବୁ ଧର୍ମପ୍ରିୟ ମହାନୁଭବମାନଙ୍କୁ ସର୍ବ ପ୍ରକାରରେ ସମ୍ମାନ କରିବ । ଲୋକର ବାକ୍ୟମାନ କେତେବେଳେ ଦୈବବଶତଃ ଗୁଣ ଗୌରବ ଯୁକ୍ତ ହୋଇ ସମ୍ପଦର ନିମିତ୍ତ ହୁଏ ଏବଂ କେତେବେଳେ ଅବା ବିପଦର କାରଣ ହୋଇପଡ଼େ । ୩୫ ।

## ଅଧ୍ୟାୟ—୧୫୯

ଯୁଧିଷ୍ଠିର କହିଲେ—ହେ ପିତାମହ ! ଲୋଭ ଯେ ଅନର୍ଥର ମୂଳ ତାହା ଆପଣ କହିଲେ; କିନ୍ତୁ ବର୍ତ୍ତମାନ ଅଜ୍ଞାନ କାହାକୁ କହନ୍ତି, ତାହା ଯଥାର୍ଥ ରୂପରେ ଶ୍ରବଣ କରିବାକୁ ଅଭିଳାଷ କରୁଅଛୁଁ ।

ଭୀଷ୍ମ କହିଲେ—ଯେଉଁ ବ୍ୟକ୍ତି ଅଜ୍ଞାନ ବଶତଃ ପାପାଚରଣ କରେ, ସେ ତାହାର ନିଜର ବିନାଶ ହେବ ବୋଲି ଜାଣିପାରେ ନାହିଁ । ସେ ସଚ୍ଚରିତ୍ର ବ୍ୟକ୍ତିମାନଙ୍କ ପ୍ରତି ଦ୍ୱେଷ କରି ଲୋକଙ୍କଠାରେ ନିନ୍ଦନୀୟ ହୁଏ । ୨ । ଲୋକ ଅଜ୍ଞାନବଶତଃ ନରକଗାମୀ, ଦୁର୍ଗତିଭାଗୀ, କ୍ଳେଶ ବିଶିଷ୍ଟ ଓ ଆପଦଗ୍ରସ୍ତ ହୋଇଥାଏ । ୩ ।

ଯୁଧିଷ୍ଠିର କହିଲେ—ସମ୍ପ୍ରତି ଆମ୍ଭେ ଅଜ୍ଞାନର ଉତ୍ପତ୍ତି, ସ୍ଥିତି, ବୃଦ୍ଧି କ୍ଷୟ, ଉଦୟ, ମୂଳ, ଯୋଗ, ଗତି, କାରଣ, କାଳ ଓ ହେତୁ କଣ ତାହା ଯଥାବତ୍ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ଲୋକେ ଯେ ଦୁଃଖ ଭୋଗ କରନ୍ତି, ତାହା ଅଜ୍ଞାନରୁ ପ୍ରସୂତ ହୁଏ । ୫ ।

ଭୀଷ୍ମ କହିଲେ—ରାଗ, ଦ୍ୱେଷ, ମୋହ, ଅସନ୍ତୋଷ, ଶୋକ, ଅଭିମାନ, କାମ, କ୍ରୋଧ, ଦର୍ପ, ତନ୍ଦ୍ରା, ଆଳସ୍ୟ, ବିଷୟାଭିଳାଷ, ତାପ, ପରର ବୃଦ୍ଧିରେ ପରିତାପ ଓ ପାପକ୍ରିୟା ଏସବୁ ଅଜ୍ଞାନ ବୋଲି ନିର୍ଦ୍ଦିଷ୍ଟ ଅଛି । ୭ । ହେ ମହାରାଜ ! ତୁମ୍ଭେ ଏହି ଅଜ୍ଞାନର ଉତ୍ପତ୍ତି ଓ ବୃଦ୍ଧି ପ୍ରଭୃତି ଯାହା ପ୍ରଶ୍ନ କରୁଅଛ, ତାହା ବିଶେଷ ବିସ୍ତର ରୂପରେ କହୁଅଛୁଁ, ଶ୍ରବଣ କର । ୮ ।

ହେ ଭାରତ ! ଅଜ୍ଞାନ ଓ ଅତିଲୋଭ ଏହି ଉଭୟର ଫଳ ଓ ଦୋଷ ସମାନ ଅଟେ । ଅତଏବ ତୁମ୍ଭେ ଏହି ଉଭୟଙ୍କୁ ଏକ ବିବେଚନା

କର । ୯ । ଲୋଭର ବୃଦ୍ଧି, କ୍ଷୟ ଓ ଉଦୟ ଅନୁସାରେ ତଦୁତ୍ପନ୍ନ ଅଜ୍ଞାନ ବର୍ଦ୍ଧିତ, କ୍ଷୀଣ ଓ ଉଦିତ ହୋଇଥାଏ । ୧୦ । ବିଚଭିତା ଲୋଭର ମୂଳ କାରଣ ଅଟେ । ଏବଂ ଲୋଭରୁ ଅଜ୍ଞାନ ଉତ୍ପନ୍ନ ହୁଏ । ଲୋଭଚ୍ଛିନ୍ନ ଭିନ୍ନ ହେଲେ ତାହାର କାରଣ ମଧ୍ୟ ବିନଷ୍ଟ ହୋଇଯାଏ । ୧୧ । ଅଜ୍ଞାନରୁ ଲୋଭ ଓ ଲୋଭରୁ ଅଜ୍ଞାନ ଏବଂ ଅନ୍ୟାନ୍ୟ ଦୋଷ ସବୁ ଉତ୍ପନ୍ନ ହୋଇଥାଏ । ଅତଏବ ଲୋକେ ଲୋଭକୁ ପରିତ୍ୟାଗ କରିବେ । ୧୨ । ଜନକ, ଯୁବନାଶ୍ୱ, ବୃଷାଦର୍ଭି, ପ୍ରସେନ୍‌ଜିତ୍ ଓ ଅନ୍ୟାନ୍ୟ ଅନେକାନେକ ନରପତିମାନେ ଲୋଭ କ୍ଷୟ ହେତୁରୁ ସୁରଲୋକକୁ ଗମନ କରି ଅଛନ୍ତି । ୧୩ ।

ହେ କୁରୁଶ୍ରେଷ୍ଠ ! ତୁମ୍ଭେ ପ୍ରତ୍ୟକ୍ଷ ଦୁଃଖକର ଲୋଭକୁ ପରିତ୍ୟାଗ କର । ଇହ ଲୋକରେ ଲୋଭ ପରିତ୍ୟାଗ କଲେ ପରଲୋକରେ ପରମ ସୁଖ ଲାଭ କରିବ । ୧୪ ।

## ଅଧ୍ୟାୟ—୧୬୦

ଯୁଧିଷ୍ଠିର କହିଲେ—ହେ ଧର୍ମାତ୍ମନ୍ ! ସ୍ୱାଧ୍ୟାୟରେ କୃତଯତ୍ନ ଧର୍ମକାମ ମନୁଷ୍ୟର ଇହଲୋକରେ ଶ୍ରେୟସ୍କର କଣ ? । ୧ । ଜଗତରେ ବହୁ-ବିଧ ବସ୍ତୁ ଦର୍ଶନ କରାଯାଏ । ସେଥିମଧ୍ୟରୁ ଇହଲୋକ ଓ ପରଲୋକରେ ଯଦ୍ୱାରା ଶ୍ରେୟ ହୁଏ, ଆପଣ ତାହା କହନ୍ତୁ । ୨ ।

ହେ ଭାରତ ! ଧର୍ମପଥ ଅତି ପ୍ରସୃତ ଓ ବହୁଶାଖା ଯୁକ୍ତ ଅଟେ । ଏତନ୍ମଧ୍ୟରେ ଧର୍ମର କେଉଁ ଅଂଶ ଅନୁଷ୍ଠେୟ ବୋଲି ଆପଣଙ୍କର ଅଭିମତ ? ବହୁଶାଖା ଯୁକ୍ତ ଧର୍ମ ଅତି ମହତ୍ ପଦାର୍ଥ ଅଟେ । ଅତଏବ ସେହି ଧର୍ମର ଯାହା ପରମମୂଳ, ତାହା ଆପଣ ବିଶେଷ ଭାବରେ କୀର୍ତ୍ତନ କରନ୍ତୁ । ୪ ।

ଭୀଷ୍ମ କହିଲେ—ହେ ରାଜନ୍ ! ଆମ୍ଭେ ତୁମ୍ଭର ପ୍ରଶ୍ନ ଶ୍ରବଣରେ ସନ୍ତୁଷ୍ଟ ହେଲୁଁ । ତୁମ୍ଭେ ଯଦ୍ଦ୍ୱାରା ଶ୍ରେୟ ଲାଭ କରିବ, ତାହା ଆମ୍ଭେ କହୁଅଛୁଁ । ପ୍ରାଜ୍ଞ ବ୍ୟକ୍ତି ଅମୃତ ଲାଭ କରି ଯେମନ୍ତ ପରିତୃପ୍ତ ହୁଅନ୍ତି, ତୁମ୍ଭେ ମଧ୍ୟ ସେହିପରି ଜ୍ଞାନ ତୃପ୍ତ ହେବ । ୫ । ମହର୍ଷିଗଣ ଧର୍ମର ଯେଉଁ ଯେଉଁ

ଅନୁଷ୍ଠାନ କହିଯାଇ ଅଛନ୍ତି, ତାହା ନାନାବିଧ ଅଟେ । ନିଜ ନିଜ ବିଜ୍ଞାନ ଅବଲମ୍ବନ ପୂର୍ବକ ଇନ୍ଦ୍ରିୟ ନିଗ୍ରହ କରିବା ଉକ୍ତ ଧର୍ମମାନଙ୍କ ମଧ୍ୟରେ ପରମ ଶ୍ରେଷ୍ଠ ଅଟେ । ନିଷ୍ଚୟ ଦର୍ଶୀ ବୃଦ୍ଧମାନେ ଇନ୍ଦ୍ରିୟ ନିଗ୍ରହକୁ ନିଃଶ୍ରେୟସର ନିମିତ୍ତ ବୋଲି କହନ୍ତି । ବିଶେଷତଃ ବ୍ରାହ୍ମଣ ପକ୍ଷରେ ଇନ୍ଦ୍ରିୟ ନିଗ୍ରହ ସନାତନ ଧର୍ମ ଅଟେ । ୭ । ବ୍ରାହ୍ମଣ ଇନ୍ଦ୍ରିୟ ନିଗ୍ରହ ହେତୁରୁ ଯଥାବିଧି କାର୍ଯ୍ୟସିଦ୍ଧି ଲାଭ କରନ୍ତି । ଦମଗୁଣ, ଦାନ, ଯଜ୍ଞ ଓ ବେଦାଧ୍ୟୟନ ଅପେକ୍ଷା ଉତ୍କୃଷ୍ଟ ଅଟେ । ପରମ ପବିତ୍ର ଦମଗୁଣରୁ ତେଜୋ ବୃଦ୍ଧି ହୁଏ । ଦମଗୁଣକୁ ଅବଲମ୍ବନ କଲେ ପୁରୁଷ ନିଷ୍ପାପ ଓ ତେଜସ୍ୱୀ ହୋଇ ମହତ ଫଳ ଲାଭ କରନ୍ତି । ୯ । ଆମ୍ଭେ-ମାନେ ଶୁଣିଅଛୁଁ ଯେ ଇହଲୋକରେ ଇନ୍ଦ୍ରିୟ ନିଗ୍ରହ ସଦୃଶ ଅପର କୌଣସି ଧର୍ମ ନାହିଁ । ଜନ ସମାଜରେ ସମସ୍ତ କର୍ମ ମଧ୍ୟରେ ଇନ୍ଦ୍ରିୟ ନିଗ୍ରହ ପରମ ଶ୍ରେଷ୍ଠ ଅଟେ । ୧୦ ।

ହେ ମନୁଷ୍ୟେନ୍ଦ୍ର । ଇନ୍ଦ୍ରିୟ-ନିଗ୍ରହ-ଶୀଳ ବ୍ୟକ୍ତି ଇହଲୋକ ଓ ପର ଲୋକରେ ପରମ ସୁଖ ସମ୍ଭୋଗ ଓ ମହାନ୍ ଧର୍ମ ଲାଭ କରନ୍ତି । ୧୧ । ସଂଯମୀ ବ୍ୟକ୍ତି ସୁଖରେ ଶୟନ ଓ ଜାଗରଣ କରନ୍ତି ଓ ଅନାୟାସରେ ସର୍ବତ୍ର ବିଚରଣ କରିଥାନ୍ତି ଏବଂ ତାହାଙ୍କର ମନ ସର୍ବଦା ପ୍ରସନ୍ନ ଥାଏ । ୧୨ । ଆଉ ଅସଂଯମୀ ବ୍ୟକ୍ତି ନିରନ୍ତର କ୍ଳେଶ ଭୋଗ କରି ଆତ୍ମଦୋଷଜନିତ ବହୁ ଅନର୍ଥର ଅଧିକୃତ ହୋଇଥାଏ । ୧୩ । ପଣ୍ଡିତ-ମାନେ କହିଅଛନ୍ତି ଯେ ଆଶ୍ରମ ଚତୁଷ୍ଟୟ ମଧ୍ୟରେ ଇନ୍ଦ୍ରିୟ ନିଗ୍ରହ ଉତ୍ତମ ବ୍ରତ ଅଟେ ।

ଅତଏବ ହେ କୁରୁନନ୍ଦନ । ଯେଉଁମାନଙ୍କର ସମଷ୍ଟିକୁ ଦମ ବୋଲିଯାଏ, ତାହାର ଲକ୍ଷଣ ସବୁ କହୁଅଛୁଁ, ଶ୍ରବଣ କର । ୧୦ । କ୍ଷମା, ଧୈର୍ଯ୍ୟ, ଅହିଂସା, ସର୍ବଭୂତଙ୍କଠାରେ ସମଭାବ ସତ୍ୟ, ସରଳତା, ଇନ୍ଦ୍ରିୟ ଜୟ, ଦକ୍ଷତା, ମୃଦୁଭାବ, ଲଜ୍ଜା, ଅଚପଳ୍ୟ, ଅକାର୍ପଣ୍ୟ, ଅକ୍ରୋଧ, ସନ୍ତୋଷ, ପ୍ରିୟବାଦିତା, ଅନସୂୟା, ଗୁରୁ ଶୁଶ୍ରୂଷା ଓ ସର୍ବ ଭୂତମାନଙ୍କ ଠାରେ ଦୟା ଏହି ସମୁଦାୟକୁ ଦମ ବୋଲିଯାଏ । ସଂଯମୀବ୍ୟକ୍ତି ଖଳତା, ଲୋକାପବାଦ, ମିଥ୍ୟା କଥା, ସ୍ତୁତି, ନିନ୍ଦା, କ୍ରୋଧ, ଲୋଭ, ଗର୍ବ, ଅବିନୟ, ଆତ୍ମଶ୍ଳାଘା, ଦ୍ୱେଷ, ଈର୍ଷା ଓ ଅବମାନନାକୁ ଆଲୋଚନା କରନ୍ତି ନାହିଁ । ୧୮ । ସେ ଅନିନ୍ଦିତ ଓ କାମନା ଓ ଅସୂୟା ବିରହିତ

ହୋଇ ଅନିତ୍ୟ ସୁଖରେ ଅଭିଳାଷୀ ହୁଅନ୍ତି ନାହିଁ । ଏବଂ ସମୁଦ୍ର ଯେପରି ସଲିଳ ରାଶି ଦ୍ୱାରା ପରିପୂର୍ଣ୍ଣ ହୁଅନ୍ତି ନାହିଁ ସେ ସେହିପରି ବ୍ରହ୍ମଲୋକ ଲାଭ କଲେ ସୁଦ୍ଧା ତୃପ୍ତ ହୁଅନ୍ତି ନାହିଁ । ୧୯ । ଜିତେନ୍ଦ୍ରିୟ ବ୍ୟକ୍ତି "ଆମ୍ଭେ ତୁମ୍ଭର, ତୁମ୍ଭେ ଆମ୍ଭର, ସେମାନେ ଆମ୍ଭର, ଆମ୍ଭେ ସେମାନଙ୍କର" ଇତ୍ୟାଦି ସମ୍ବନ୍ଧ ଦ୍ୱାରା ମମତା ପାଶରେ ଆବଦ୍ଧ ହୁଅନ୍ତି ନାହିଁ । ୨୦ । ଗ୍ରାମ୍ୟ ଓ ଆରଣ୍ୟ ଭେଦରେ ଲୋକ ମଧ୍ୟରେ ଯେଉଁ ଦ୍ୱିବିଧ ପ୍ରକାର ପ୍ରବୃତ୍ତି ଅଛି, ସେଥିରେ ଏବଂ ନିନ୍ଦା ଓ ପ୍ରଶଂସାରେ ଯେଉଁ ବ୍ୟକ୍ତି ଆସକ୍ତ ହୁଅନ୍ତି ନାହିଁ, ସେହି ସେ ମୁକ୍ତି ଲାଭ କରନ୍ତି । ୨୧ ।

ଯେଉଁ ବ୍ୟକ୍ତି ସର୍ବଭୂତ ହିତୈଷୀ, ଶୀଳ ସମ୍ପନ୍ନ, ପ୍ରସନ୍ନାତ୍ମା, ଆତ୍ମଜ୍ଞାନୀ ଏବଂ ବିବିଧ ବିଷୟାସକ୍ତି-ବିମୁକ୍ତ ଅଟନ୍ତି, ତାହାଙ୍କର ପରଲୋକରେ ମହତ ଫଳ ହୋଇଥାଏ । ୨୨ । ସୁଶୀଳ ସଚ୍ଚରିତ, ପ୍ରସନ୍ନଚିତ୍ତ ଆତ୍ମବିତ୍ ବିଦ୍ୱାନ ବ୍ୟକ୍ତି ଇହଲୋକରେ ସାଧୁବାଦ ପ୍ରାପ୍ତ ହୋଇ ପରଲୋକରେ ସଦ୍‌ଗତି ଲାଭ କରନ୍ତି । ୨୩ । ଇହଲୋକରେ ଯେଉଁ କର୍ମ ଶୁଭରୂପରେ ବିଖ୍ୟାତ ଅଛି ଏବଂ ସାଧୁଗଣ ଯାହା ଆଚରଣ କରନ୍ତି, ଜ୍ଞାନ ସମ୍ପନ୍ନ ମୌନାବଲମ୍ବୀ ମନୁଷ୍ୟଙ୍କ ପକ୍ଷରେ ତାହାହିଁ ସ୍ୱାଭାବିକ ପଥ ଅଟେ । ସେହି ପଥ କଦାପି ବିନଷ୍ଟ ହୁଏ ନାହିଁ । ୨୪ । ଜ୍ଞାନଯୁକ୍ତ ଯେଉଁ ଜିତେନ୍ଦ୍ରିୟ ବ୍ୟକ୍ତି ଗୃହରୁ ବହିର୍ଗତ ହୋଇ ବନଗମନ ପୂର୍ବକ କାଳ ଅପେକ୍ଷା କରି ବ୍ରତାଚରଣ କରନ୍ତି, ସେ ବ୍ରହ୍ମ ସାରୂପ୍ୟକୁ ଲାଭ କରନ୍ତି । ୨୫ । ସର୍ବଭୂତଙ୍କଠାରୁ ଯାହାଙ୍କର ଭୟ ନାହିଁ ଏବଂ ଯାହାଙ୍କୁ ସର୍ବପ୍ରାଣୀ ଭୟ କରନ୍ତି ନାହିଁ, ତାହାଙ୍କର ଦେହ ବିମୁକ୍ତ ପରେ କାହାରିଠାରୁ ଭୟ ହୁଏ ନାହିଁ । ୨୬ । ଯେ ଭୋଗ ଦ୍ୱାରା କର୍ମଫଳମାନଙ୍କୁ କ୍ଷୟ କରନ୍ତି ଏବଂ କଦାପି ତାହାକୁ ସଞ୍ଚୟ କରି ରଖନ୍ତି ନାହିଁ, ସେହି ସର୍ବଭୂତଙ୍କଠାରେ ସମଦର୍ଶୀ ବିଦ୍ୱାନ ବ୍ୟକ୍ତି ସମସ୍ତ ଜୀବଗଣଙ୍କୁ ଅଭୟଦାନ ପୂର୍ବକ ପର ବ୍ରହ୍ମରେ ଲୀନ ହୁଅନ୍ତି । ୨୭ । ଆକାଶରେ ବିହଙ୍ଗମମାନଙ୍କର ଓ ଜଳମଧ୍ୟରେ ଜଳଚରମାନଙ୍କ ଗତି ଯେପରି ନୟନଗୋଚର ନ ହୁଏ, ସେହିପରି ସର୍ବଭୂତ-ହିତୈଷୀ ମାନବଙ୍କର ଗତି ଦୃଷ୍ଟିପଥରେ ପତିତ ହୁଏ ନାହିଁ । ଏଥିରେ ସନ୍ଦେହ ନାହିଁ । ୨୮ ।

ହେ ରାଜନ୍ ! ଯେଉଁ ବ୍ୟକ୍ତି ଗୃହ ପରିତ୍ୟାଗ ପୂର୍ବକ ମୋକ୍ଷପଥର ପଥିକ ହୁଅନ୍ତି, ତାହାଙ୍କ ପାଇଁ ନିତ୍ୟ କାଳ ନିମିତ୍ତ ତେଜୋମୟ

ଲୋକମାନ ନିର୍ମିତ ହୁଏ ।୨୯। ନିଷ୍କାମ ପବିତ୍ର ଚିତ୍ତ-ପ୍ରସନ୍ନାତ୍ମା ଅମ୍ବିତ୍ ବ୍ୟକ୍ତି ସମସ୍ତ କର୍ମ ପରିତ୍ୟାଗ ପୂର୍ବକ ଯଥାବତ୍ ତପସ୍ୟା ଓ ବିବିଧ ବିଦ୍ୟା ସନ୍ୟାସ କରି ଇହଲୋକରେ ସତ୍କାର ପ୍ରାପ୍ତିପରେ ସ୍ୱର୍ଗ ଲାଭ କରନ୍ତି ।୩୧। ପିତାମହଙ୍କର ତପୋରାଶି ସମ୍ଭୂତ ଗୁହା ମଧ୍ୟରେ ନିହିତ ଯେଉଁ ନିତ୍ୟ ଲୋକ ଅଛି ତାହା ଇନ୍ଦ୍ରିୟ ନିଗ୍ରହ ଦ୍ୱାରା ଲଭ୍ୟ ହୁଏ ।୩୨। ଯେ ଜ୍ଞାନାଲୋଚନା ଦ୍ୱାରା ତୃପ୍ତ ଓ ପ୍ରବୁଦ୍ଧ ହୋଇ ଅଛନ୍ତି ଏବଂ ଯେ ସର୍ବଭୂତଙ୍କର ଅବିରୋଧୀ, ତାହାଙ୍କର ଇହଲୋକରେ ପୁନରାବୃତ୍ତିର ଭୟ ଥାଏ ନାହିଁ, ଅତଏବ ପରଲୋକ ଭୟ ଅବା କାହିଁକି ହେବ ।୩୩। ଇନ୍ଦ୍ରିୟ ବିଜୟୀର ଗୋଟିଏ ମାତ୍ର ଦୋଷ ଦୃଷ୍ଟି ଗୋଚର ହୁଏ, ଦ୍ୱିତୀୟ ଦୋଷ ଦେଖା ଯାଏ ନାହିଁ । ସଂଯମୀ ବ୍ୟକ୍ତି କ୍ଷମାଶୀଳ ହୁଅନ୍ତି ବୋଲି ଲୋକେ ତାହାଙ୍କୁ ଅଶକ୍ତ ବିବେଚନା କରନ୍ତି ।୩୪।

ହେ ମହାପ୍ରାଜ୍ଞ ଧର୍ମରାଜ ! କୌଣସିବ୍ୟକ୍ତିର ଏକମାତ୍ର ଦୋଷ ମହତ୍ ଗୁଣ ମଧ୍ୟ ହୋଇଥାଏ । କ୍ଷମାଦ୍ୱାରା ବିପୁଳ ପୁଣ୍ୟଲାଭ ହୋଇଥାଏ । କ୍ଷମାରୁ ସହିଷ୍ଣୁତା ମଧ୍ୟ ଆସିଯାଏ ।୩୫। ହେ ଭାରତ ! ସଂଯମୀ ବ୍ୟକ୍ତିଙ୍କର ଅରଣ୍ୟ ଗମନରେ ପ୍ରୟୋଜନ ନାହିଁ । ଆଉ ଯେ ଅସଂଯମୀ ସେ ଅରଣ୍ୟରେ ରହିଲେ ମଧ୍ୟ କିଛି ଲାଭ ହୁଏନାହିଁ । ସେ ଯେଉଁ ସ୍ଥାନରେ ଅବସ୍ଥିତି କରନ୍ତି, ସେହିସ୍ଥାନ ଅରଣ୍ୟାଶ୍ରମ ସଦୃଶ ହୋଇଥାଏ ଏବଂ ସଂଯମୀ ବ୍ୟକ୍ତିର ମଧ୍ୟ ଅରଣ୍ୟ ଗମନ ପ୍ରୟୋଜନ ନାହିଁ କାରଣ ତାହାର ସେହି ସ୍ଥାନରେ ମଧ୍ୟ ଅଶକ୍ତି ଉଦୟ ହୁଏ ।୩୬।

ବୈଶମ୍ପାୟନ କହିଲେ—ରାଜା ଯୁଧିଷ୍ଠିର ଭୀଷ୍ମଙ୍କର ଏହିବାକ୍ୟ ଶ୍ରବଣ କରି, ଅମୃତ ପାନରେ ତୃପ୍ତ ହେଲା ପ୍ରାୟ ପ୍ରହୃଷ୍ଟ ହେଲେ ।୩୭। ତହୁଁ ସେ ଧାର୍ମିକ ପ୍ରବର ଭୀଷ୍ମଦେବଙ୍କୁ ପୁନର୍ବାର ଧର୍ମ ବିଷୟ ପ୍ରଶ୍ନ କଲେ; ଅନନ୍ତର କୁରୁକୁଳ ଧୁରନ୍ଧର ଭୀଷ୍ମଦେବ ପ୍ରୀତ ହୋଇ ତାହାଙ୍କୁ କହିଲେ ।୩୮।

## ଅଧ୍ୟାୟ—୧୬୧

ଭୀଷ୍ମ କହିଲେ—ଏହି ସଂପୂର୍ଣ୍ଣ ଜଗତର ମୂଳକାରଣ ତପ ଅଟେ । ଏହାହିଁ ବିଦ୍ୱାନ୍ ଲୋକମାନେ କହିଥାନ୍ତି । ଯେଉଁ ମୂଢ଼ ବ୍ୟକ୍ତି

ତପସ୍ୟାଚରଣ କର ନାହିଁ, ସେ କଦାପି କ୍ରିୟାଫଳ ପ୍ରାପ୍ତ ହୁଏ ନାହିଁ । ୧ । ସର୍ବଶକ୍ତିମାନ୍ ପ୍ରଜାପତି, ତପୋବଳ ଦ୍ୱାରା ଏହି ଦୃଶ୍ୟମାନ୍ ବ୍ରହ୍ମାଣ୍ଡକୁ ସୃଷ୍ଟି କରି ଅଛନ୍ତି । ଏହିପରି ଋଷିମାନେ ମଧ୍ୟ ତପଃ ପ୍ରଭାବ ଦ୍ୱାରା ବେଦମାନଙ୍କୁ ଲାଭ କରିଅଛନ୍ତି । ୨ । ବିଧାତା ଫଳମୂଳାଦି ଅନ୍ନସବୁକୁ ତପସ୍ୟା ଦ୍ୱାରା ସୃଷ୍ଟି କରିଅଛନ୍ତି । ଏକାନ୍ତ ସମାହିତ ସିଦ୍ଧଗଣ ତପଃ ପ୍ରଭାବଦ୍ୱାରା ତ୍ରୈଲୋକ୍ୟକୁ ନିରୀକ୍ଷଣ କରନ୍ତି । ରୋଗ ନାଶକ ଔଷଧ ସବୁ ତଥାବିଧ କ୍ରିୟା ନିବହଂ ତପସ୍ୟା ଦ୍ୱାରା ସିଦ୍ଧ ହୋଇଅଛି । ସମସ୍ତ ସାଧନ ଓ ତପୋମୂଳ ଅଟେ । ୪ । ଜଗତରେ ଯାହା କିଛି ଦୁଷ୍ପ୍ରାପ୍ୟ ପଦାର୍ଥ ଅଛି, ତତ୍ ସମସ୍ତ ତପଃ ପ୍ରଭାବ ଦ୍ୱାରା ପ୍ରାପ୍ତ ହୋଇଥାଏ । ଋଷିଗଣ ତପସ୍ୟାଦ୍ୱାରା ଐଶ୍ୱର୍ଯ୍ୟ ପ୍ରାପ୍ତ ହୋଇଥିଲେ, ଏଥିରେ ସନ୍ଦେହ ନାହିଁ । ୫ । ସୁରାପାୟୀ ବିତପହାରୀ, ଭ୍ରୂଣହତ୍ୟାକାରୀ ଓ ଗୁରୁତଳ୍ପଗାମୀ ମାନବ ଉତ୍ତମ ରୂପେ ଅନୁଷ୍ଠିତ ତପସ୍ୟା ଦ୍ୱାରା ପାପମାନଙ୍କରୁ ବିମୁକ୍ତ ହୁଅନ୍ତି । ୬ । ତପସ୍ୟା ନାନାପ୍ରକାର । ବୈଷୟିକ ସୁଖ ସମ୍ଭୋଗରୁ ନିବୃତ୍ତ ହୋଇ ମାନବ ଯେ କୌଣସି ତପଃ ଅନୁଷ୍ଠାନ କଲେ ସୁଦ୍ଧା ଅନଶନ ଅପେକ୍ଷା ପରମ ତପସ୍ୟା ଆଉ କିଛି ନାହିଁ । ୭ ।

ହେ ମହାରାଜ । ଅହିଂସା, ସତ୍ୟବଚନ, ଦାନ ଓ ଇନ୍ଦ୍ରିୟ ସଂଯମ ଏହି ସବୁଠାରୁ ତପ ବଡ଼ ଏବଂ ଉପବାସଠାରୁ ବଳିକରି କୌଣସି ତପସ୍ୟା ନାହିଁ । ୮ । ଦାନ ଅପେକ୍ଷା ଦୁଷ୍କର ଧର୍ମ କିଛି ନାହିଁ । ମାତାଙ୍କ ସେବାଠାରୁ ବଳି କୌଣସି ଦ୍ୱିତୀୟ ଆଶ୍ରୟ ନାହିଁ, ତିନି ବେଦାଧ୍ୟୟନ କରିଥିବା ବିଦ୍ୱାନଠାରୁ ଶ୍ରେଷ୍ଠ ବିଦ୍ୱାନ କେହି ନାହିଁ ଏବଂ ସନ୍ନ୍ୟାସ ସବୁଠାରୁ ବଡ଼ ତପସ୍ୟା ଅଟେ । ୯ । ଯେଉଁମାନେ ସବୁ ସମୃଦ୍ଧି ଓ ଧର୍ମ ରକ୍ଷା ପାଇଁ ଇହଲୋକରେ ଇନ୍ଦ୍ରିୟ ସଂଯମନ କରନ୍ତି, ସେମାନଙ୍କ ପକ୍ଷରେ ଧର୍ମ ଓ ଅର୍ଥ ବିଷୟରେ ଅନଶନ ଅପେକ୍ଷା ଶ୍ରେଷ୍ଠତର ଆଉ କିଛି ନାହିଁ । ୧୦ । ଋଷିଗଣ, ପିତୃଗଣ, ମନୁଷ୍ୟ, ମୃଗ ଓ ପକ୍ଷିଗଣ, ତଦ୍ଭିନ୍ନ ଅନ୍ୟାନ୍ୟ ସ୍ଥାବର ଓ ଜଙ୍ଗମ ଜୀବଗଣ ସମସ୍ତେ ତପଃପରାୟଣ ହୋଇ ତପସ୍ୟା ଦ୍ୱାରା ସିଦ୍ଧ ହୁଅନ୍ତି । ଏହି ପ୍ରକାରେ ଦେବତାମାନେ ତପସ୍ୟା ଦ୍ୱାରା ମହତ୍ତ୍ୱ ପ୍ରାପ୍ତ ହୋଇ ଅଛନ୍ତି । ୧୨ । ତପସ୍ୟା ଦ୍ୱାରା ଯାହାର ଯେ ଇଷ୍ଟଫଳ ସେ ବିଭକ୍ତ ରୂପରେ ଲାଭ ହୁଏ । ତପସ୍ୟା ଦ୍ୱାରା ଦେବତ୍ୱ ସୁଦ୍ଧା ପ୍ରାପ୍ତ ହୁଏ, ଏଥିରେ ସଂଶୟ ନାହିଁ । ୧୩ ।

## ଅଧ୍ୟାୟ—୧୬୨

ଯୁଧିଷ୍ଠିର କହିଲେ—ହେ ପିତାମହ ! ଦେବଗଣ, ଦ୍ୱିଜଗଣ ଋଷିଗଣ ଓ ପିତୃଗଣ ସତ୍ୟଧର୍ମକୁ ପ୍ରଶଂସା କରନ୍ତି । ଅତଏବ ଆମ୍ଭେ ସତ୍ୟଧର୍ମ ଗ୍ରହଣ କରିବାକୁ ଅଭିଳାଷ କରୁଅଛୁଁ, ଆପଣ ଆମ୍ଭଙ୍କୁ ତାହା କହନ୍ତୁ । ୧ । ସତ୍ୟର ଲକ୍ଷଣ କଣ ? କି ପ୍ରକାରେ ତାହା ପ୍ରାପ୍ତ ହୁଏ, ଏବଂ ସତ୍ୟ ପ୍ରାପ୍ତ ହେଲେ କଣ ହୁଏ, ଆପଣ ତାହା ବର୍ଣ୍ଣନା କରନ୍ତୁ । ୨ ।

ଭୀଷ୍ମ କହିଲେ—ହେ ଭାରତ ! ବ୍ରାହ୍ମଣାଦି ବର୍ଣ୍ଣ ଚତୁଷ୍ଟୟ ମଧ୍ୟରେ ଧର୍ମ ସଙ୍କର ପ୍ରଶସ୍ତ ନୁହେ । ସର୍ବ ବର୍ଣ୍ଣ ମଧ୍ୟରେ ଅବିକାରିତମ ସତ୍ୟ ଶ୍ରେଷ୍ଠ ଅଟେ । ୩ । ଅସାଧୁ ଗଣଙ୍କ ନିକଟରେ ସତ୍ୟଧର୍ମ ସତତ ଆଦରଣୀୟ ଅଟେ । ସତ୍ୟ ସନାତନ ଧର୍ମ ଅଟେ । ସମସ୍ତେ ସତ୍ୟକୁ ସତ୍କାର କରିବେ । ସତ୍ୟ ପରମ ଗତି ଅଟେ । ୪ । ତପସ୍ୟା ଓ ଯୋଗ ସାଧନ ସତ୍ୟ ଧର୍ମ ଅଟେ । ସତ୍ୟ ସନାତନ ବ୍ରହ୍ମ, ସତ୍ୟ ପରମୋତ୍କୃଷ୍ଟ ଯଜ୍ଞ ବୋଲି ଉକ୍ତ ହୁଅନ୍ତି । ସମୁଦାୟ ବସ୍ତୁ ସତ୍ୟରେ ପ୍ରତିଷ୍ଠିତ ରହିଅଛି । ୫ । ସତ୍ୟର ଆକାର ଓ ଲକ୍ଷଣ କି ପ୍ରକାର ତାହା ଆମ୍ଭେ ଯଥାକ୍ରମରେ ଆନୁପୂର୍ବିକ କହୁଅଛୁଁ ଏବଂ ଯେପରି ସତ୍ୟପ୍ରାପ୍ତ ହେବାକୁ ହୁଏ, ତାହା ମଧ୍ୟ କୀର୍ତ୍ତନ କରୁଅଛୁଁ, ତୁମ୍ଭେ ତାହା ଶ୍ରବଣ କରିବାକୁ ଯୋଗ୍ୟ ଅଟ । ହେ ଭାରତ ! ସମସ୍ତ ଲୋକ ମଧ୍ୟରେ ସତ୍ୟ ତ୍ରୟୋଦଶ ପ୍ରକାରରେ ବିଖ୍ୟାତ ଅଟେ । ୬ ।

ହେ ରାଜେନ୍ଦ୍ର ! ସତ୍ୟ, ସମତା, ଦମ, ଅମାତ୍ସର୍ଯ୍ୟ, କ୍ଷମା, ଲଜ୍ଜା, ତିତିକ୍ଷା, ଅନସୂୟା, ତ୍ୟାଗ, ଧ୍ୟାନ, ଧୃତି, ଆର୍ଯ୍ୟତ୍ୱ, ସର୍ବଭୂତଙ୍କ ପ୍ରତି ସତତ ଦୟା ଓ ଅହିଂସା ଏହି ତ୍ରୟୋଦଶ ପ୍ରକାର ସତ୍ୟର ଆକାର ଅଟେ । ୯ । ତନ୍ମଧ୍ୟରେ ଅବ୍ୟୟ ଓ ଅବିକାରି ନିତ୍ୟ ପଦାର୍ଥର ନାମ ସତ୍ୟ ଅଟେ । ସର୍ବଧର୍ମର ଅବିରୁଦ୍ଧ ଯୋଗଦ୍ୱାରା ତାହା ପ୍ରାପ୍ତ ହୁଏ । ଇଚ୍ଛା, ଦ୍ୱେଷ, କାମ ଓ କ୍ରୋଧର ଉପଶମ ହେଲେ ନିଜର ଓ ବୈରୀର ଇଷ୍ଟ ଅନିଷ୍ଟ ବିଷୟରେ ତୁଲ୍ୟ ଦର୍ଶନକୁ ସମତା କହିବ । ୧୧ । ଇନ୍ଦ୍ରିୟ ବିଷୟରେ ସ୍ପୃହାଶୂନ୍ୟତାକୁ ଦମ କହନ୍ତି । ଦମଗୁଣ ଥିଲେ ଧୈର୍ଯ୍ୟ, ଗାମ୍ଭୀର୍ଯ୍ୟ, ଅଭୟ ଓ ରୋଗୋପଶମ ହୁଏ ଏବଂ ଜ୍ଞାନ ପ୍ରଭାବଦ୍ୱାରା ଏହା ପ୍ରାପ୍ତ ହୋଇଥାଏ । ୧୨ ।

ଦାନ ଓ ଧର୍ମ୍ମ ବିଷୟରେ ସଂଯମକୁ ପଣ୍ଡିତମାନେ ଆତ୍ମାସ୍ପର୍ଦ୍ଧ ବୋଲି କହନ୍ତି । ପୁରୁଷ ନିୟତ ସତ୍ୟ ପଥରେ ଅବସ୍ଥିତ ଥିଲେ, ମାତ୍ସର୍ଯ୍ୟ ଶୂନ୍ୟ ହୁଅନ୍ତି । ୧୩ । ଅପ୍ରିୟ ଓ କ୍ଷମା ବିଷୟରେ ପ୍ରିୟ ଓ ଅପ୍ରିୟ ପଦାର୍ଥ ମାନଙ୍କ ଶିଷ୍ଟ ଓ ସାଧୁ ବ୍ୟକ୍ତିମାନେ ଯେଉଁ ଶକ୍ତିଦ୍ୱାରା କ୍ଷମା କରନ୍ତି, ସେହି ଶକ୍ତିକି କ୍ଷମା କହି ସତ୍ୟବାଦୀ ବ୍ୟକ୍ତି ଅନାୟାସରେ ଏହି ଶକ୍ତିକୁ ପ୍ରାପ୍ତ ହୁଅନ୍ତି । ୧୪ । ପ୍ରଶାନ୍ତଚିତ୍ତ ସଂଯତ ବାକ୍ୟ ବୁଦ୍ଧିମାନ୍ ବ୍ୟକ୍ତି ଯେଉଁ ଶକ୍ତିଦ୍ୱାରା ନିରନ୍ତରସ୍ୱ କଲ୍ୟାଣକର କର୍ମ୍ମକୁ ସାଧନ କରନ୍ତି ଏବଂ କୌଣସି ସ୍ଥାନରେ ସୁଦ୍ଧା ଗ୍ଲାନିଯୁକ୍ତ ହୁଅନ୍ତି ନାହିଁ ତାହାକୁ ଲଜ୍ଜା କୁହାଯାଏ । ଧର୍ମ୍ମରୁ ଏହି ଶକ୍ତି ପ୍ରାପ୍ତ ହୁଏ । ୧୫ । ଧର୍ମ୍ମ, ଅର୍ଥ ନିମିତ୍ତ ଲୋକ ସଂଗ୍ରହାର୍ଥେ କ୍ଷମା କରିବାକୁ ତିତିକ୍ଷା ବୋଲାଯାଏ । ଧୈର୍ଯ୍ୟଦ୍ୱାରା ତିତିକ୍ଷା ଲାଭ ହୁଏ । ୧୬ । ମମତା ଓ ବିଷୟବାସନା ପରିତ୍ୟାଗର ନାମ ତ୍ୟାଗ ଅଟେ । ରାଗ ଦ୍ୱେଷ ବିହୀନ ବ୍ୟକ୍ତି ତ୍ୟାଗଶୀଳ ହୁଅନ୍ତି, ଅନ୍ୟଲୋକେ ନୁହନ୍ତି । ୧୭ । ପ୍ରଯତ୍ନ ସହକାରେ ଜୀବଗଣଙ୍କର ଶୁଭକାର୍ଯ୍ୟ ସମ୍ପାଦନ କରିବାକୁ ଆର୍ଯ୍ୟତା କହନ୍ତି । ଯଦ୍ଦ୍ୱାରା ସୁଖ ଓ ଦୁଃଖରେ ବିକୃତ ନହୁଏ, ତାହାକୁ ଧୃତି ବୋଲାଯାଏ । ଯେଉଁ ବୁଦ୍ଧିମାନ ବ୍ୟକ୍ତି ଆପଣାର ଐଶ୍ୱର୍ଯ୍ୟ ଇଚ୍ଛା କରନ୍ତି, ସେ ସତତ ଧୃତିର ବଶବର୍ତ୍ତୀ ହେବେ । ୧୯ । ମନୁଷ୍ୟ ନିୟତ କ୍ଷମାଶୀଳ ଓ ସତ୍ୟ ପରାୟଣ ହେବେ । ଯେ ହର୍ଷ, ଭୟ ଓ କ୍ରୋଧକୁ ପରିତ୍ୟାଗ କରିଅଛନ୍ତି, ସେହି ପଣ୍ଡିତ ବ୍ୟକ୍ତି ଧୃତି ଲାଭରେ ସମର୍ଥ ହୁଅନ୍ତି ।୨୦। ବାକ୍ୟ ମନ ଓ କର୍ମ୍ମଦ୍ୱାରା ସର୍ବଭୂତଙ୍କ ଅଦ୍ରୋହ, ଅନୁଗ୍ରହ ଓ ଦାନ କରିବା ସାଧୁଗଣଙ୍କର ସନାତନ ଧର୍ମ୍ମ ଅଟେ । ହେ ଭରତ । ଏହି ତ୍ରୟୋଦଶ ପ୍ରକାର ପୃଥକ ପୃଥକ ଗୁଣ ଏକତ୍ରିତ ହୋଇ ସତ୍ୟ ହୁଏ । ଇହଲୋକରେ ସାଧୁଗଣ ସତ୍ୟର ସେବା କରି ବର୍ଦ୍ଧିତ ହୁଅନ୍ତି । ୨୨ । ହେ ପାର୍ଥିବ । ସତ୍ୟର ଗୁଣମାନଙ୍କର ଅନ୍ତକୁ କହିହେବ ନାହିଁ । ଏଥିପାଇଁ ପିତୃଗଣ ଏବଂ ଦେବଗଣଙ୍କ ସହିତ ବିପ୍ରଗଣ ସତ୍ୟର ପ୍ରଶଂସା କରନ୍ତି । ୨୩ । ସତ୍ୟ ଅପେକ୍ଷା ପରମଧର୍ମ୍ମ ଅନ୍ୟ କିଛି ନାହିଁ । ମିଥ୍ୟାଠାରୁ ପରମ ପାତକ କିଛି ନାହିଁ । ସତ୍ୟ ଧର୍ମ୍ମର ଆଶ୍ରୟ ଅଟେ । ଅତଏବ ସତ୍ୟକୁ ଲୋପ କରିବ ନାହିଁ । ୨୪ । ସତ୍ୟରୁ ଦାନ, ସଦକ୍ଷିଣ ଯଜ୍ଞ, ଅଗ୍ନିହୋତ୍ର, ବେଦମାନ ଏବଂ ଧର୍ମ୍ମ ନିଶ୍ଚୟ ପ୍ରାପ୍ତ ହୁଏ । ୨୫ । ସହସ୍ର ଅଶ୍ୱମେଧ ଯଜ୍ଞ ଓ ଏକମାତ୍ର ସତ୍ୟ ତୁଳାଦଣ୍ଡରେ ଧୃତ ହେଲେ ସହସ୍ର ଅଶ୍ୱମେଧ ଯଜ୍ଞ ଅପେକ୍ଷା ସତ୍ୟ ବିଶିଷ୍ଟ ହୁଏ । ୨୬ ।

## ଅଧ୍ୟାୟ—୨୭୩

ଯୁଧିଷ୍ଠିର କହିଲେ—ହେ ମହାପ୍ରାଜ୍ଞ ଭରତଶ୍ରେଷ୍ଠ । କାମ, କ୍ରୋଧ, ଶୋକ, ମୋହ, ବିଧିତ୍ସା, ଅକାର୍ଯ୍ୟରେ ପରବଶତା, ମାତ୍ସର୍ଯ୍ୟ, ମଦ, ଈର୍ଷା, କୁତ୍ସା, ଅସୂୟା, କୃପା ଓ ଭୟ ଯେଉଁ ଅଜ୍ଞାନରୁ ଉତ୍ପନ୍ନ ହୁଅନ୍ତି, ଆପଣ ତାହା ପ୍ରକୃତ ଭାବରେ ଆମ୍ଭଙ୍କୁ କହନ୍ତୁ । ୨ । ଭୀଷ୍ମ କହିଲେ—ହେ ଧର୍ମରାଜ । ଏହି ତ୍ରୟୋଦଶଟି ପ୍ରାଣିମାନଙ୍କର ପ୍ରବଳ ଶତ୍ରୁ ଅଟନ୍ତି । ଏମାନେ ମାନବଗଣଙ୍କୁ ସର୍ବତୋଭାବରେ ସେବା କରନ୍ତି । ଉପର୍ଯ୍ୟୁକ୍ତ ତ୍ରୟୋଦଶଟି ଅପ୍ରମତ୍ତ ହୋଇ ସର୍ବଦା ଅନବହିତ ମାନବମାନଙ୍କୁ ଆଶ୍ରୟ କରି କ୍ଲେଶ ପ୍ରଦାନ କରନ୍ତି । ଏମାନେ ବୃକପ୍ରାୟ ଦର୍ଶନମାତ୍ରକେ ବଳପୂର୍ବକ ମନୁଷ୍ୟଙ୍କୁ ଆକ୍ରମଣ କରନ୍ତି । ଏମାନଙ୍କଠାରୁ ଯେ ଅଶେଷ ପାପ ଓ ଦୁଃଖ ଉପସ୍ଥିତ ହୁଏ, ତାହା ଅବଗତ ହେବା ମନୁଷ୍ୟମାନଙ୍କର କର୍ତ୍ତବ୍ୟ । ହେ ପୃଥିବୀପତେ ! ବର୍ତ୍ତମାନ ଏମାନଙ୍କର ଉତ୍ପତ୍ତି ବିଷୟ ଯଥାତଥ ଭାବରେ କୀର୍ତ୍ତନ କରୁଅଛୁଁ । ତୁମ୍ଭେ ଅବହିତ ହୋଇ ଶ୍ରବଣ କର । ଲୋଭରୁ କ୍ରୋଧ ଉତ୍ପନ୍ନ ହୁଏ ଏବଂ ତାହା ପର ଦୋଷ ଦ୍ୱାରା ଉଦ୍ଦୀପ୍ତ ହୋଇ କ୍ଷମାଦ୍ୱାରା ନିବୃତ୍ତି ଓ ନିବୃତ୍ତ ହୋଇଥାଏ । ସଙ୍କଳ୍ପରୁ କାମ ଜନ୍ମେ, ତାହାକୁ ଯେତେ ସେବା କରିଯାଏ, ସେ ତେତେ ବର୍ଦ୍ଧିତ ହୁଏ । ୮ । ପ୍ରାଜ୍ଞ ବ୍ୟକ୍ତି କାମରୁ ବିରତ ହେଲେ ତତ୍କ୍ଷଣାତ୍ ବିନାଶ ପ୍ରାପ୍ତ ହୁଏ । କ୍ରୋଧ ଓ ଲୋଭରୁ ଅସୂୟାର ଆବିର୍ଭାବ ହୁଏ । ୯ । ସର୍ବଭୂତଙ୍କଠାରେ ଦୟା ପ୍ରକାଶ ଦ୍ୱାରା ତାହାର ନିବୃତ୍ତି ହୁଏ । ବୁଦ୍ଧିମାନ ବ୍ୟକ୍ତିମାନଙ୍କର ଅନ୍ତଃକରଣରେ ଅନିଷ୍ଟ ବସ୍ତୁ ଦର୍ଶନ କରିବା ଦ୍ୱାରା ଏହି ଅସୂୟା ଉଦୟ ହୁଏ । ଏବଂ ତତ୍ତ୍ୱଜ୍ଞାନ ଦ୍ୱାରା ଏହାର ନିବୃତ୍ତି ହୁଏ । ମୋହ ଅଜ୍ଞାନରୁ ସମ୍ଭୂତ ହୋଇଥାଏ ଓ ତତ୍ ସର୍ଗ ବଶତଃ ତାହା ବିନଷ୍ଟ ହୁଏ ।

ହେ କୁରୁକୁଳ ଧୁରନ୍ଧର । ଯେଉଁମାନେ ବିରୁଦ୍ଧ ଶାସ୍ତ୍ରମାନଙ୍କୁ ଦର୍ଶନ କରନ୍ତି, ସେମାନଙ୍କର ବିଧିତ୍ସା ଅର୍ଥାତ୍ କାର୍ଯ୍ୟାରମ୍ଭରେ ବ୍ୟଗ୍ରତା ଜନ୍ମେ । ତତ୍ତ୍ୱଜ୍ଞାନ ଦ୍ୱାରା ତାହାର ନିବୃତ୍ତି ହୁଏ । ପ୍ରଣୟାସ୍ପଦ ପୁତ୍ର ପ୍ରଭୃତିଙ୍କର ବିୟୋଗବଶତଃ ଶରୀରମାନଙ୍କର ଶୋକ ଜାତ ହୁଏ । ପ୍ରିୟବ୍ୟକ୍ତି ବିମୁକ୍ତ ହେଲେ ଯେତେବେଳେ ଶୋକକର ସୁଦ୍ଧା ତାହାର ପୁନଃ ପ୍ରାପ୍ତିର ସମ୍ଭାବନା ନଥାଏ, ସେତେବେଳେ ତାହା ନିରର୍ଥକ

ଜାଣି ଶୋକ ଶାନ୍ତ ହୁଏ । ୧୩ । କ୍ରୋଧ, ଲୋଭ ଓ ଅଭ୍ୟାସ ହେତୁରୁ ଅକାର୍ଯ୍ୟ ପରତନ୍ତ୍ରତା ଜାତ ହୁଏ । ସର୍ବଭୂତଙ୍କଠାରେ ଦୟା ଓ ନିର୍ବେଦଯୁକ୍ତ ହେଲେ, ତାହାର ନିବୃତ୍ତ ହୁଏ । ୧୪ । ସତ୍ୟ ପରିତ୍ୟାଗ ଓ ଅନିଷ୍ଟ ବିଷୟ ସେବାଦ୍ୱାରା ମାତ୍ସର୍ଯ୍ୟ ହୁଏ । ସାଧୁ-ମାନଙ୍କର ସଂସର୍ଗ କଲେ ତାହା କ୍ଷୟ ହୁଏ । ୧୫ । କୁଳମର୍ଯ୍ୟାଦା, ବିଦ୍ୟା ଓ ଐଶ୍ୱର୍ଯ୍ୟରୁ ମଦ ଜନ୍ମେ; କିନ୍ତୁ ସେମାନଙ୍କର ଯଥାର୍ଥକୁ ବିଦିତ ହେଲେ ତାହା ତତ୍କ୍ଷଣାତ୍ ବିନଷ୍ଟ ହୋଇଯାଏ । ୧୬ । କାମ ଓ ହର୍ଷରୁ ଈର୍ଷା ଜାତ ହୁଏ । ଇତର ପ୍ରାଣିମାନଙ୍କର ପ୍ରଜ୍ଞା ଦର୍ଶନ ଦ୍ୱାରା ତାହା ବିନଷ୍ଟ ହୁଏ । ୧୭ ।

ହେ ରାଜନ୍ । ସମାଜଚ୍ୟୁତ ଲୋକମାନଙ୍କର ବିଭ୍ରମ ବଶତଃ ଦ୍ୱେଷ ଭାବକୁ ଦର୍ଶନ କଲେ ଓ ସେମାନଙ୍କର ଅସମ୍ମତ ବାକ୍ୟକୁ ଶ୍ରବଣ କଲେ କୁତ୍ସା ଜାତହୁଏ; କିନ୍ତୁ ଶିଷ୍ଟାଚାର ଦର୍ଶନ କରିବା ଦ୍ୱାରା ତାହା ନିବୃତ୍ତ ହୁଏ । ୧୮ । ଯେଉଁମାନେ ବଳଶାଳୀ ଅପକାରୀଠାରେ ପ୍ରତିକାର କରିବାକୁ ସମର୍ଥ ନୁହନ୍ତି, ସେମାନଙ୍କର ତୀକ୍ଷ୍ଣତର ଅସୂୟା ଜନ୍ମେ । କାରୁଣ୍ୟବଶତଃ ସେହି ଅସୂୟା ନିବୃତ୍ତ ହୁଏ । ୧୯ । ଦୁଃଖିତ ବ୍ୟକ୍ତି ମାନଙ୍କୁ ସର୍ବଦା ଦର୍ଶନ କଲେ କୃପା ଜନ୍ମେ । ଧର୍ମନିଷ୍ଠାକୁ ବିଦିତ ହେଲେ, ତାହାର ନିବୃତ୍ତି ହୁଏ । ୨୦ । ଜୀବଗଣଙ୍କର ଅଜ୍ଞାନରୁ ଲୋଭ ଉତ୍ପନ୍ନ ହୁଏ । ଏହା ସର୍ବଦା ଦେଖାଯାଏ । ବିଷୟ ମାନଙ୍କର ଅସ୍ଥୈର୍ଯ୍ୟ ଦର୍ଶନ କଲେ ଓ ଜ୍ଞାନ ହେଲେ ଉକ୍ତ ଲୋଭ ନିବୃତ୍ତ ହୁଏ । ୨୧ । ପଣ୍ଡିତମାନେ କହନ୍ତି ଯେ ଶାନ୍ତିଦ୍ୱାରା ଏହି ତ୍ରୟୋଦଶ ଦୋଷକୁ ପରାଜୟ କରାଯାଏ । ଧୃତରାଷ୍ଟ୍ରଙ୍କ ପୁତ୍ର ମାନଙ୍କର ଏହି ସବୁ ଦୋଷ ଥିଲା । ତୁମ୍ଭେ ସତ୍ୟାଭିଳାଷୀ ହୋଇ ସେମାନଙ୍କୁ ଜୟ କରିଅଛ । ୨୨ ।

———

## ଅଧ୍ୟାୟ—୧୬୪

ଯୁଧିଷ୍ଠିର କହିଲେ—ହେ ଭାରତ ! ଆମ୍ଭେ ସତତ ସାଧୁମାନଙ୍କର ସହବାସ ବଶତଃ ଅନୃଶଂସତ୍ୟକୁ ଅବଗତ ଅଛୁଁ । ନୃଶଂସ ଓ ତତ୍କାର୍ଯ୍ୟର ବିଷୟକୁ ଅବଗତ ନୋହୁଁ । ୧ । ମାନବଗଣ କଣ୍ଟକ, କୂପ ଓ ଅଗ୍ନିକୁ ଯେପରି ପରିତ୍ୟାଗ କରନ୍ତି, ନିଷ୍ଠୁର ମନୁଷ୍ୟ ସେହିପରି ପରିତ୍ୟାଗ କରନ୍ତି । ୨ । ନୃଶଂସ ବ୍ୟକ୍ତି ଇହ ଓ ପରଲୋକରେ ବିଶିଷ୍ଟ ଭାବରେ ଦଗ୍ଧ ହୁଏ । ଅତଏବ ଆପଣ ତାହାର ବିଷୟ ଓ କର୍ମ ନିର୍ଣ୍ଣୟକୁ ବର୍ଣ୍ଣନ କରନ୍ତୁ । ୩ ।

ଭୀଷ୍ମ କହିଲେ—ନୃଶଂସବ୍ୟକ୍ତିଗଣ କୁକର୍ମରେ ପ୍ରବୃତ୍ତ ଓ କୁତ୍ସିତ କାର୍ଯ୍ୟ କରିବାକୁ ଅଭିଳାଷୀ ହୁଅନ୍ତି । ସେମାନେ ସ୍ୱୟଂ ଜନ ସମାଜରେ ନିନ୍ଦନୀୟ ହୋଇସୁଦ୍ଧା ପରର ନିନ୍ଦା କରନ୍ତି ଏବଂ ଆପଣାକୁ ସମସ୍ତଙ୍କ-ଠାରେ ବଞ୍ଚିତ ବୋଲି ବିବେଚନା କରନ୍ତି । ୪ । ସେମାନଙ୍କ ପରି କ୍ଷୁଦ୍ର ଓ ନିରାଶ୍ରୟ ଆଉ କେହି ନାହାନ୍ତି । ସେମାନେ ଅଭିମାନ ଅସତ୍ ସଙ୍ଗ ଓ ଆତ୍ମଶ୍ଳାଘା ନିରତ ହୋଇ ନିଜର ବଦାନ୍ୟତାକୁ ପ୍ରକାଶ କରନ୍ତି ଓ କୃପଣ ଓ ମୂର୍ଖପ୍ରାୟ ସମସ୍ତଙ୍କୁ ଶଙ୍କା କରନ୍ତି । ନିଜ ସମ୍ପ୍ରଦାୟର ପ୍ରଶଂସା ଓ ଆଶ୍ରମବାସୀ ଋଷିମାନଙ୍କ ପ୍ରତି ଦ୍ୱେଷ କରନ୍ତି । ୬ । ଉକ୍ତ ନୃଶଂସ ବ୍ୟକ୍ତିମାନେ ପରହିଂସାରେ ପ୍ରବୃତ୍ତ ଥାଇ ଦୋଷଗୁଣର ବିବେଚନା କରନ୍ତି ନାହିଁ । ନାନାପ୍ରକାର ଅଳୀକ ବାକ୍ୟ କହନ୍ତି ଏବଂ ଅଶାନ୍ତ ଚିତ୍ତ ଓ ଓ ଲୁବ୍ଧ ହୋଇ ନିଷ୍ଠୁର କାର୍ଯ୍ୟ କରନ୍ତି । ଧର୍ମଶୀଳ ଗୁଣବାନ୍ ବ୍ୟକ୍ତିକୁ ପାପୀବୋଲି ନିଶ୍ଚୟ କରନ୍ତି ଏବଂ ଆପଣାର ଚରିତ୍ର ପ୍ରମାଣ ଦ୍ୱାରା ଅନ୍ୟ ବ୍ୟକ୍ତିକୁ ବିଶ୍ୱାସ କରନ୍ତି ନାହିଁ । ୮ । ପରର ଦୋଷ ଦେଖିଲେ ତାହାକୁ ଗୋପନ ଭାବରେ ପ୍ରକାଶ କରନ୍ତି । ଅନ୍ୟର ଦୋଷ ନିଜ ଦୋଷ ସମାନ ହେଲେ ଜୀବିକା ନିର୍ବାହ ନିମିତ୍ତ ତାହା ଅପ୍ରକାଶ ରଖନ୍ତି । ଉପକାରୀ ବ୍ୟକ୍ତିକୁ କେବଳ ବଞ୍ଚିତ ବୋଲି ବିବେଚନା କରନ୍ତି ଏବଂ ସମୟା-ନୁସାରେ ଉପକାରୀ ବ୍ୟକ୍ତିକୁ ଧନଦାନ କରି ପରେ ସନ୍ତାପ କରନ୍ତି । ୧୦। ଉପାଦେୟ ଭକ୍ଷ୍ୟ ପେୟ ପ୍ରଭୃତି ଭୋଜ୍ୟବସ୍ତୁକୁ ଭୋଜନ କରିବା କାଳରେ ଅପର ଲୋକ ତାହାକୁ ଅବଲୋକନ କଲେ ସୁଦ୍ଧା ଯେଉଁ ବ୍ୟକ୍ତି ଉକ୍ତ ବସ୍ତୁକୁ ଏକାକୀ ଭୋଜନ କରେ, ସେହି ବ୍ୟକ୍ତିକୁ ନୃଶଂସ ବୋଲଯାଏ । । ୧୧ । ଯେ ବ୍ରାହ୍ମଣମାନଙ୍କୁ ଭୋଜନୀୟ ଦ୍ରବ୍ୟର ଅଗ୍ରଭାଗ ପ୍ରଦାନ କରି

ସୁହୃଦବର୍ଗଙ୍କ ସହିତ ଭୋଜନ କରନ୍ତି, ସେ ଇହଲୋକରେ ଅନନ୍ତ ସୁଖ ସମ୍ଭୋଗ କରି ପରଲୋକରେ ସ୍ୱର୍ଗଲାଭ କରନ୍ତି । ୧୨ ।

ହେ ଭରତଶ୍ରେଷ୍ଠ ! ତୁମ୍ଭଠାରେ ନୃଶଂସର ବିଷୟ କୀର୍ତ୍ତନ କଲି । ବିଜ୍ଞବାନ୍ ମନୁଷ୍ୟଙ୍କ ପକ୍ଷରେ ନୃଶଂସର ସଂସର୍ଗକୁ ନିୟତ ପରିତ୍ୟାଗ କରିବା କର୍ତ୍ତବ୍ୟ । ୧୩ ।

## ଅଧ୍ୟାୟ—୧୬୫

ଭୀଷ୍ମ କହିଲେ—ହେ ଭାରତ ! ସର୍ବ ବେଦାନ୍ତ ପାରଦର୍ଶୀ ଧର୍ମପରାୟଣ ସାଧୁ ବ୍ରାହ୍ମଣମାନେ ନିର୍ଦ୍ଧନ ହେଲେ ଅଗ୍ନିସଂକାର୍ଯ୍ୟ, ପିତୃକାର୍ଯ୍ୟ ଓ ଅଧ୍ୟୟନ ନିମିତ୍ତ ସେମାନଙ୍କୁ ଅର୍ଥଦାନ କରିବା ଅବଶ୍ୟ କର୍ତ୍ତବ୍ୟ । ୨ । ଆଉ ଯେଉଁମାନେ ନିଃସ୍ୱ ନୁହନ୍ତି, ସେମାନଙ୍କୁ କେବଳ ଦକ୍ଷିଣା ଦାନ କରିବା ବିଧେୟ ଏବଂ ଅବ୍ରାହ୍ମଣମାନଙ୍କୁ ବେଦର ବହିର୍ଭାଗରେ ଅପକ୍ୱ ଅନ୍ନ ପ୍ରଦାନ କରିବା ଉଚିତ । ୩ । ନୃପତି ସାଧ୍ୟାନୁସାରେ ସହସ୍ର ରତ୍ନ ପ୍ରଦାନ କରିବେ । ବ୍ରାହ୍ମଣମାନେ ବେଦ ଓ ବହ୍ନି ଦକ୍ଷିଣା ଯଜ୍ଞ ସ୍ୱରୂପ ଅଟନ୍ତି । ସେମାନେ ପରସ୍ପର ସ୍ପର୍ଦ୍ଧାପୂର୍ବକ ଗୁଣ ଗୌରବ ବଶତଃ ସମ୍ପତ୍ତି ସମ୍ପାଦିତ ଯଜ୍ଞମାନଙ୍କୁ ସମ୍ପାଦନ କରନ୍ତି । ୪ । ଯାହାଙ୍କର ପୋଷ୍ୟବର୍ଗ ପ୍ରତିପାଳନ ନିମିତ୍ତ ତ୍ରୈବାର୍ଷିକ କିମ୍ବା ତତୋଽଧିକ ଅନ୍ନ ପର୍ଯ୍ୟାପ୍ତ ଥାଏ, ସେହି ସେ ସୋମପାନ କରିବାକୁ ସମର୍ଥ ହୁଅନ୍ତି । ୫ । ଧର୍ମ ପରାୟଣ ନୃପତି ଥାଉଁ ଥାଉଁ ଯାଜ୍ଞିକଙ୍କର ବିଶେଷତଃ ବ୍ରାହ୍ମଣର ଏକାଂଶଧନର ଅଭାବରୁ ଯଦି ଯଜ୍ଞ ପ୍ରତିବନ୍ଧ ହୁଏ, ତାହାହେଲେ ଉକ୍ତ ନୃପତି ଅସଂଖ୍ୟ ପଶୁ ସମ୍ପନ୍ନ ଅଯାଜ୍ଞିକ ବୈଶ୍ୟର ବିତ୍ତକୁ ଆଦାନ ପୂର୍ବକ ଯଜ୍ଞ ନିମିତ୍ତ ବ୍ରାହ୍ମଣଙ୍କୁ ଦାନ କରିବେ । ୬ ।

ରାଜା ଇଚ୍ଛାନୁସାରେ ଶୂଦ୍ର ନିକଟରୁ କୌଣସି ଅର୍ଥ ଆହରଣ କରି ପାରିବେ ନାହିଁ । ୮ । ଯେଉଁ ବ୍ୟକ୍ତି ଶତଗୋଧନ ସମ୍ପନ୍ନ ହୋଇ ସୁଦ୍ଧା ଅହିତାଗ୍ନି ନୁହନ୍ତି ଏବଂ ଯେ ସହସ୍ର ଗୋଧନ ସମ୍ପନ୍ନ ହୋଇ ସୁଦ୍ଧା ଯାଜ୍ଞିକ ନୁହନ୍ତି, ରାଜା ଯଜ୍ଞ ସକାଶେ ଅବିଗୃହିତ ଚିତ୍ତରେ ସେମାନଙ୍କର ଧନ ହରଣ କରିବେ । ନୃପତି ନିୟତ ପ୍ରକାଶ୍ୟ ଭାବରେ କୃପଣ ମାନଙ୍କ ଠାରୁ ଧନ ହରଣ କରିବେ, ଯେଉଁ ରାଜା ଏହିପରି ଆଚରଣ କରନ୍ତି,

ତାହାଙ୍କର ପ୍ରକୃତ ଧର୍ମ ହୁଏ । ଯେଉଁ ବ୍ରାହ୍ମଣ ଅନ୍ନାଭାବ ହେତୁରୁ ତିନିଦିନ ଉପବାସ କରିଅଛନ୍ତି, ସେ ହୀନକର୍ମୀ ବ୍ୟକ୍ତିର, ଉଦୂଖଳ, କ୍ଷେତ୍ର, ଉଦ୍ୟାନ କିମ୍ବା ଯେଉଁ ସ୍ଥାନରୁ ପ୍ରାପ୍ତ ହେବ, ସେହି ସ୍ଥାନରୁ ଏକଦିନର ଉପଯୁକ୍ତ ଧାନ୍ୟ ହରଣ କରି, ରାଜା ପ୍ରଶ୍ନ ନ କଲେ ସୁଦ୍ଧା ତାଙ୍କଠାରେ ତାହା ପ୍ରକାଶ କରିବେ । ୧୨ । ଧର୍ମଜ୍ଞ ରାଜା ଧର୍ମାନୁସାରେ ତାହାଙ୍କ ପ୍ରତି ଦଣ୍ଡଧାରଣ କରିବେ ନାହିଁ । କ୍ଷତ୍ରିୟର ଅନବଧାନତା ହେତୁରୁ ବ୍ରାହ୍ମଣ କ୍ଷୁଧା ଦ୍ୱାରା କ୍ଲେଶ ପ୍ରାପ୍ତ ହୁଅନ୍ତି । ୧୩ ।

ନୃପତି ବ୍ରାହ୍ମଣଙ୍କର ବିଦ୍ୟା ଓ ଚରିତ୍ର ବିଷୟ ବିଦିତ ହୋଇ ତାହାଙ୍କର ବୃତ୍ତି ବିଧାନ କରିବେ । ପିତା ଯେପରି ଔରସ ପୁତ୍ରକୁ ପ୍ରତିପାଳନ କରନ୍ତି, ରାଜା ସେହିପରି ବ୍ରାହ୍ମଣଙ୍କୁ ସର୍ବତୋଭାବରେ ରକ୍ଷଣାବେକ୍ଷଣ କରିବେ । ୧୪ । ପ୍ରତ୍ୟେକ ସମ୍ବତ୍ସର ଶେଷରେ ବୈଶ୍ୱାନର ଯଜ୍ଞ କରିବେ । ଧର୍ମଜ୍ଞ ଗଣ ଅନୁକଳ୍ପକୁ ପରମଧର୍ମ ବୋଲି କହିଅଛନ୍ତି । ୧୫ । ବିଶ୍ୱଦେବ, ସାଧ୍ୟ, ମହର୍ଷି ଓ ବ୍ରାହ୍ମଣଗଣ ଆପଦ କାଳରେ ମରଣ ଭୀତ ହୋଇ ଅନୁକଳ୍ପକୁ ମୁଖ୍ୟ କଳ୍ପର ପ୍ରତିନିଧି ରୂପରେ ନିର୍ଦ୍ଧାରିତ କରିଅଛନ୍ତି । ୧୬ । ଯେଉଁ ବ୍ୟକ୍ତି ମୁଖ୍ୟକଳ୍ପ କରିବାକୁ ସମର୍ଥ ହୋଇ, ଅନୁକଳ୍ପର ଅନୁବର୍ତ୍ତୀ ହୁଏ, ସେହି ଦୁର୍ମତି ବ୍ୟକ୍ତିର ପାରଲୌକିକ ଫଳ ଲାଭ ହୁଏନାହିଁ । ୧୭ । ବେଦଜ୍ଞ ବ୍ରାହ୍ମଣ ନୃପତିଠାରେ କୌଣସି ବିଷୟ ନିବେଦନ କରିବେ ନାହିଁ । ବ୍ରହ୍ମ ବୀର୍ଯ୍ୟ ଓ ରାଜ ବୀର୍ଯ୍ୟ ଏହି ଉଭୟ ମଧ୍ୟରେ ବ୍ରାହ୍ମଣ ବୀର୍ଯ୍ୟ ବଳବତ୍ତର ଅଟେ । ଅତଏବ ବ୍ରହ୍ମବାଦୀମାନଙ୍କର ବୀର୍ଯ୍ୟ ରାଜାଙ୍କ ନିକଟରେ ସତତ ଦୁଃସହ ହୋଇଥାଏ । ବ୍ରାହ୍ମଣ, କର୍ତ୍ତା, ଶାସ୍ତା, ବିଧାତା ଓ ଦେବତା ସ୍ୱରୂପରେ ଉକ୍ତ ହୁଅନ୍ତି ।୧୯।

ବ୍ରାହ୍ମଣଙ୍କଠାରେ ନୀରସ ଓ ଅମଙ୍ଗଳ ବାକ୍ୟ ବୋଲିବ ନାହିଁ । କ୍ଷତ୍ରିୟ ବାହୁ ବୀର୍ଯ୍ୟ ଦ୍ୱାରା, ବୈଶ୍ୟ ଓ ଶୂଦ୍ର ପ୍ରଭୂତ ଧନ ଦ୍ୱାରା ଏବଂ ବ୍ରାହ୍ମଣ ମନ୍ତ୍ର ଓ ହୋମ ଦ୍ୱାରା ଆପଦରୁ ଉତ୍ତୀର୍ଣ୍ଣ ହୁଅନ୍ତି । କନ୍ୟା, ଯୁବତୀ, ମନ୍ତ୍ରାନଭିଜ୍ଞ, ମୂର୍ଖ ଓ ସଂସ୍କାରହୀନ ବ୍ୟକ୍ତି ଅଗ୍ନିହୋତ୍ରର ଅଗ୍ନିରେ ନିକ୍ଷେପ କରିବେ ନାହିଁ । ୨୧ । ଏମାନେ ଯଦ୍ୱାରା ହୋମାଗ୍ନିରେ ଆହୁତି ନିକ୍ଷେପ କରନ୍ତି, ତାହା ସହିତ ନିଜେ ନରକରେ ପତିତ ହୁଅନ୍ତି । ଅତଏବ ବେଦପାରଗ ଯାଜ୍ଞିକ ବ୍ୟକ୍ତିଙ୍କର ହୋତା ହେବା ଉଚିତ । ୨୨ । ଯେ ଯଜ୍ଞୀୟ ବହ୍ନି ସ୍ଥାପନ ପୂର୍ବକ ପ୍ରାଜାପତ୍ୟ ଦକ୍ଷିଣା ଦାନ ନ

କରନ୍ତି ଧର୍ମଦର୍ଶୀ ଲୋକେ ଅହିତାଗ୍ନି ବୋଲି କହନ୍ତି ନାହିଁ । ଶ୍ରଦ୍ଧାବାନ ଓ ଜିତେନ୍ଦ୍ରିୟ ହୋଇ ସମସ୍ତ ପୁଣ୍ୟ କର୍ମ କରିବ, କଦାପି ଦକ୍ଷିଣାବିହୀନ ଯଜ୍ଞ କରିବ ନାହିଁ । ୨୪ । ଯେଉଁ ରାଜା ଯଜ୍ଞ କରି ଦକ୍ଷିଣା ଦାନ ନ କରନ୍ତି, ତାହାଙ୍କର ପ୍ରଜା, ପଶୁ, ସ୍ୱର୍ଗ, ଯଶ, କୀର୍ତ୍ତି, ଆୟୁ ଓ ଇନ୍ଦ୍ରିୟ ସବୁ ବିନଷ୍ଟ ହୁଅନ୍ତି । ୨୫ ।

ଯେଉଁସବୁ ବ୍ରାହ୍ମଣମାନେ ରଜସ୍ୱଳା ରମଣୀ ସହିତ ସଙ୍ଗତ ହୁଅନ୍ତି ଯେଉଁମାନେ ଅହିତାଗ୍ନି ନୁହନ୍ତି ଏବଂ ଯେଉଁମାନଙ୍କର ଅଶ୍ରୋତ୍ରିୟ ଦ୍ୱାରା ହୋମ ହୁଏ, ସେମାନେ ସମସ୍ତେ ପାପକର୍ମୀ ଅଟନ୍ତି । ବ୍ରାହ୍ମଣ ଶୂଦ୍ର କନ୍ୟା ପରିଣୟ କରି ଯେଉଁ ଦେଶରେ କେବଳ କୂପୋଦକ ଉପଜୀବ୍ୟ ଅଟେ, ସେଠାରେ ଦ୍ୱାଦଶ ବତ୍ସର କାଳ ବାସ କଲେ ଶୂଦ୍ରତ୍ୱ ପ୍ରାପ୍ତ ହୁଅନ୍ତି । ୨୭ । ହେ ରାଜନ୍ ! ବ୍ରାହ୍ମଣ ଯଦି ଅପରିଣୀତା ନାରୀକୁ ମାନ୍ୟ ଜ୍ଞାନ କରି ଶୂଦ୍ରକୁ ନିଜର ଶଯ୍ୟାରେ ଶୟନ କରିବାକୁ ଦିଅନ୍ତି, ତେବେ ସେ ନିଜକୁ ଅବ୍ରାହ୍ମଣ ଜ୍ଞାନ କରି ସେମାନଙ୍କର ପଶ୍ଚାଦ ଭାଗରେ ତୃଣ ଶୟନରେ ଶୟନ କରିବେ । ଏହା କଲେ ସେ ଶୁଦ୍ଧ ହେବେ । ଏ ବିଷୟରେ ଆମ୍ଭେ ଯାହା କହୁଅଛୁଁ ଶ୍ରବଣ କର । ୮ । ବ୍ରାହ୍ମଣ ନିକୃଷ୍ଟ ବର୍ଣ୍ଣର ସେବା କରି ଏକସ୍ଥାନରେ ଓ ଏକାସନରେ ଏକରାତ୍ରିମଧ୍ୟରେ ଯଦି ତାହା ସହିତ ବିହାର ପୂର୍ବକ ପାପଗ୍ରସ୍ତ ହୁଅନ୍ତି, ତାହାହେଲେ ସେ ବ୍ରତନିଷ୍ଠ ହୋଇ ତିନିବର୍ଷପରେ ଉକ୍ତ ପାପୋପଶମନ କରିବାକୁ ସମର୍ଥ ହୁଅନ୍ତି । ୨୯ ।

ହେ ଧର୍ମରାଜ ! ପରିହାସ ସମୟରେ ସ୍ତ୍ରୀ ନିକଟରେ, ବିବାହ କାଳରେ, ଗୁରୁ ନିମିତ୍ତ ଏବଂ ଆତ୍ମ ଜୀବନ ରକ୍ଷା ନିମିତ୍ତ ମିଥ୍ୟା କଥା ଦୂଷଣୀୟ ନୁହେ । ପଣ୍ଡିତମାନେ ଏହି ପାଞ୍ଚପ୍ରକାର ମିଥ୍ୟା ବ୍ୟବହାରକୁ ପାତକ ବୋଲି କହନ୍ତି ନାହିଁ । ୩୦ ।

ଶ୍ରଦ୍ଧାଶୀଳ ପୁରୁଷ ନୀଚଜାତିଠାରୁ ସୁଦ୍ଧା ଉତ୍କୃଷ୍ଟ ବିଦ୍ୟା ଗ୍ରହଣ କରିବେ । ଅପବିତ୍ର ସ୍ଥାନରୁ ଅବସ୍ଥିତ ଚିତାରେ ସୁବର୍ଣ୍ଣ ଗ୍ରହଣ କରିବେ । ୩୧ । ଦୁଷ୍କୁଳଠାରୁ କନ୍ୟା ସ୍ତ୍ରୀ ଗ୍ରହଣ କରିବେ ଏବଂ ବିଷରୁ ଅମୃତ ନେଇ ପାନ କରିବେ । କାରଣ ସ୍ତ୍ରୀ, ରତ୍ନ ଓ ଜଳ ଧର୍ମତଃ ଦୂଷ୍ୟ ହୁଅନ୍ତି ନାହିଁ । ୩୨ । ବୈଶ୍ୟଜାତି ବର୍ଣ୍ଣ ସଙ୍କର

ନିବାରଣ ବିଷୟରେ, ଗୋ ବ୍ରାହ୍ମଣ ହିତ ନିମିତ୍ତ ଏବଂ ନିଜ ପରିତ୍ରାଣାର୍ଥ ଶସ୍ତ୍ର ଗ୍ରହଣ କରିବେ । ଜ୍ଞାନ ପୂର୍ବକ ବ୍ରହ୍ମହତ୍ୟା, ସୁରାପାନ, ଗୁରୁତଳ୍ପ ଗମନ, ସୁବର୍ଣ୍ଣ ହରଣ ଓ ବ୍ରାହ୍ମଣସ୍ୱ ହରଣ ଏହି ପାଞ୍ଚୋଟି ମହା ପାତକ ଅଟେ । ପ୍ରାଣାନ୍ତ କେବଳ ଏହାର ପ୍ରାୟଶ୍ଚିତ୍ତ ରୂପରେ ନିର୍ଣ୍ଣିତ ହୋଇଅଛି । ସୁରାପାନ ଓ ଅଗମ୍ୟାଗମନ ହେତୁ ଯେଉଁ ବ୍ୟକ୍ତି ପତିତ ହୁଏ, ତାହା ସହିତ ସହବାସ କଲେ ଏବଂ ଅବ୍ରାହ୍ମଣ ହୋଇ ବ୍ରାହ୍ମଣୀ ଗମନ କଲେ, ଅଚିରକାଳମଧ୍ୟରେ ପତିତ ହୁଅନ୍ତି । ୩୬ । ମନୁଷ୍ୟ, ଯାଜନ, ଅଧ୍ୟାପନ ଓ ଯୌନ ସମ୍ବନ୍ଧ ହେତୁରୁ ପତିତ ବ୍ୟକ୍ତି ସହିତ ବ୍ୟବହାର କଲେ, ସମ୍ବତ୍ସର ମଧ୍ୟରେ ପତିତ ହୁଅନ୍ତି । ଏକତ୍ର ଗମନ, ଯୋଗାସନରେ ଉପବେଶନ ଓ ଏକତ୍ର ଭୋଜନ କଲେ ପତିତ ହୁଅନ୍ତି ନାହିଁ । ୩୭ ।

ହେ ଭରତ ! ବ୍ରହ୍ମହତ୍ୟାଦି ପଞ୍ଚ ମହାପାତକର ପ୍ରାୟଶ୍ଚିତ୍ତ ନିର୍ଦ୍ଦେଶ ନାହିଁ । କେବଳ ପ୍ରାଣାନ୍ତ ତାହାର ପ୍ରାୟଶ୍ଚିତ୍ତ ଅଟେ । ଏତଦ୍‌ଭିନ୍ନ ଅନ୍ୟାନ୍ୟ ପାତକର ଯେଉଁ ପ୍ରାୟଶ୍ଚିତ୍ତ ଅଛି, ତଦ୍ୱାରା ପାପକ୍ଷୟ କରି ପରଶେଷରେ ତହିଁରେ ଆଉ ପ୍ରବୃତ୍ତ ହେବେ ନାହିଁ । ସୁରାପାୟୀ, ବ୍ରାହ୍ମଣ ଘାତକ ଓ ବିମାତୃଗାମୀ ବ୍ୟକ୍ତି ମୃତ ହେଲେ ସେମାନଙ୍କର ଦାହାଦି ପ୍ରେତ କାର୍ଯ୍ୟ କରିବାର ଆବଶ୍ୟକ ନାହିଁ । ସପିଣ୍ଡ-ଗଣ ସେମାନଙ୍କର ଅଶୌଚ ଗ୍ରହଣ ନ କରି ଅନ୍ନ ଓ ଦ୍ରବ୍ୟ ଗ୍ରହଣ କରିବେ । ଏ ବିଷୟରେ କୌଣସି ବିଚାର କରିବ ନାହିଁ । ୩୯ । ଅମାତ୍ୟ ଓ ଗୁରୁତର ବ୍ୟକ୍ତି ପତିତ ହେଲେ, ଯେ ପର୍ଯ୍ୟନ୍ତ ସେମାନେ ପ୍ରାୟଶ୍ଚିତ୍ତ ନ କରନ୍ତି, ସେ ପର୍ଯ୍ୟନ୍ତ ଧାର୍ମ୍ମିକ ବ୍ୟକ୍ତି ଧର୍ମ୍ମାନୁସାରେ ସେମାନଙ୍କୁ ପରିତ୍ୟାଗ କରିବେ ଏବଂ ସେମାନଙ୍କ ସହିତ ଆଳାପ କରିବେ ନାହିଁ । ୪୦ । ପାପକାରୀ ବ୍ୟକ୍ତି ତପସ୍ୟା ଓ ଧର୍ମ୍ମାଚରଣ ଦ୍ୱାରା ପାପ କ୍ଷୟ କରେ । ତସ୍କରକୁ ତସ୍କର ବୋଲି କହିଲେ ତତ୍‌ସଦୃଶ ପାପ ପ୍ରାପ୍ତ ହେବାକୁ ହୁଏ । ଆଉ ଯେଉଁ ବ୍ୟକ୍ତି ପ୍ରକୃତ ତସ୍କର ନୁହେଁ, ତାହାକୁ ତସ୍କର ବୋଲି କହିଲେ, ତସ୍କର ଅପେକ୍ଷା ଦ୍ୱିଗୁଣ ପାପରେ ଲିପ୍ତ ହେବାକୁ ହୁଏ ।

କୁମାରୀ-ବ୍ୟଭିଚାରୀ ଦୂଷିତା ହେଲେ ବ୍ରାହ୍ମହତ୍ୟାପାପର ତିନିଭାଗରୁ ଏକଭାଗ ଭୋଗ କରେ । ୪୨ । ଆଉ ଯେଉଁ ପୁରୁଷ ତାହାକୁ ଦୂଷିତା କରେ ସେ ଅବଶିଷ୍ଟ ଦୁଇ ଭାଗକୁ ପ୍ରାପ୍ତ ହୁଏ । ବ୍ରାହ୍ମଣମାନଙ୍କ

ହନନାର୍ଥ ଉଦ୍ୟମ କଲେ କିମ୍ବା ପ୍ରହାରାର୍ଥ ସ୍ପର୍ଶ କଲେ ଶତବର୍ଷ ପର୍ଯ୍ୟନ୍ତ ପ୍ରତିଷ୍ଠା ଲାଭ ହୁଏ ନାହିଁ ଏବଂ ହତ୍ୟା କଲେ ସହସ୍ର ବର୍ଷ ପର୍ଯ୍ୟନ୍ତ ନରକରେ ବାସ କରିବାକୁ ହୁଏ । ଅତଏବ ବ୍ରାହ୍ମଣଙ୍କୁ କଦାପି ଆଘାତ କିମ୍ବା ହତ୍ୟା କରିବାକୁ ଉଦ୍ୟତ ହେବ ନାହିଁ । ବ୍ରାହ୍ମଣକୁ ଆଘାତ କଲେ ତାହାଙ୍କର ଗାତ୍ରରୁ ନିର୍ଗତ ହୋଇଥିବା ଶୋଣିତ ଯେତେଗୁଡ଼ିଏ ଧୂଳିକୁ ସଂସିକ୍ତ କରେ, ହତ୍ୟାକାରୀ ସେତେବର୍ଷ ପର୍ଯ୍ୟନ୍ତ ନରକରେ ବାସ କରିଥାଏ । ଭ୍ରୂଣ ହତ୍ୟାକାରୀ ପୁରୁଷ ଗୋ ବ୍ରାହ୍ମଣ ରକ୍ଷାର୍ଥ ସଂଗ୍ରାମରେ ଶସ୍ତ୍ରପାତ ହେତୁ ହତ ହେଲେ ଶୁଦ୍ଧ ହୁଏ । ୪୭ । ଅଥବା ପ୍ରଜ୍ୱଳିତ ହୁତାଶନ ମଧ୍ୟରେ ନିଜକୁ ଆହୁତି ପ୍ରଦାନ କଲେ ଶୁଦ୍ଧ ହୋଇପାରେ । ସୁରାପାୟୀ ଉଷ୍ଣ ମଦ୍ୟପାନ କରି ପାପରୁ ବିମୁକ୍ତ ହୁଏ । ଅର୍ଥାତ୍ ଉଷ୍ଣ ସୁରାପାନ ଦ୍ୱାରା ତାହାର ଦେହ ଦଗ୍ଧ ହେଲେ ସେ ମୃତହେତୁ ପରଲୋକକୁ ଗମନପୂର୍ବକ ପବିତ୍ର ହୁଏ ।

ବ୍ରାହ୍ମଣ ସୁରାପାନ କରି ଏହାପରି ଆଚରଣ କଲେ ଶୁଭ ଲୋକକୁ ଗମନ କରନ୍ତି । ଅନ୍ୟଥା କଲେ ଅସଦ୍‌ଗତି ପ୍ରାପ୍ତ ହୁଅନ୍ତି । ୪୮ । ପାପ-ଚେତନ ଦୁରାତ୍ମା ବ୍ୟକ୍ତି ବିମାତୃ ଗମନ କଲେ, ପ୍ରଜ୍ୱଳିତ ଲୌହମୟୀ ନାରୀ ମୂର୍ତ୍ତିକୁ ଆଲିଙ୍ଗନ କରି ପ୍ରାଣତ୍ୟାଗ ପୂର୍ବକ ଶୁଦ୍ଧ ହୁଏ । କିମ୍ବା ସ୍ୱୟଂ ଶିଶ୍ନ ଓ କୋଷ ଛେଦନ ପୂର୍ବକ ଅଞ୍ଜଳି ଦ୍ୱାରା ଗ୍ରହଣ କରି ଋଜୁ ଗତି ହୋଇ ନୈଋତ ଦିଗକୁ ଗମନ ପୂର୍ବକ ନିପତିତ ହେବା ଦ୍ୱାରା ଶୁଦ୍ଧି ହୁଏ । କିମ୍ବା ବ୍ରାହ୍ମଣ ପାଇଁ ପ୍ରାଣ ପରିତ୍ୟାଗ କଲେ ଶୁଦ୍ଧ ହୁଏ, ନତୁବା ଅଶ୍ୱମେଧ, ଗୋମେଧ, କିମ୍ବା ଅଗ୍ନିଷ୍ଟୋମ ଯଜ୍ଞ କରି ଇହ ଓ ପର ଲୋକରେ ପୂଜିତ ହୁଏ । ୫୨ । ବ୍ରହ୍ମହତ୍ୟା କାରୀ ବ୍ୟକ୍ତି ନିହତ ବ୍ରାହ୍ମଣର କପାଳ ଧାରଣ ପୂର୍ବକ ଦ୍ୱାଦଶ ବର୍ଷର ନିରନ୍ତର ନିଜ କାର୍ଯ୍ୟ ପ୍ରକାଶ କରି ବ୍ରହ୍ମଚାରୀ ଓ ମୁନି ହେବ । ୫୩ । ବ୍ରହ୍ମହତ୍ୟାକାରୀ ମାନବର ଏହାପରି ତପୋନିଷ୍ଠ ଓ ମନନଶୀଳ ହେବା ବିଧେୟ । ଯେଉଁବ୍ୟକ୍ତି ପ୍ରାପ୍ତଗର୍ଭା ନାରୀକୁ ପ୍ରାପ୍ତଗର୍ଭା ଜାଣି ନିହତ କରେ, ତାହାର ବ୍ରହ୍ମହତ୍ୟାର ଦୁଇଗୁଣ ପାପ ହୁଏ । ସୁରାପାୟୀ ବ୍ରାହ୍ମଣ ନିରାହାର ବ୍ରହ୍ମଚାରୀ ଓ ଭୂତଳଶାୟୀ ହୋଇ ତିନି ବର୍ଷରରୁ ଅଧିକ କାଳ ପର୍ଯ୍ୟନ୍ତ ଅଗ୍ନିଷ୍ଟୋମ ଯଜ୍ଞ କରିବ । ପରଶେଷରେ ଗୋଟିଏ ବୃଷଭ ସହିତ ଏକ ସହସ୍ର ଗୋଦାନ କରି ଶୁଦ୍ଧ ହେବ । ୫୭ । ବୈଶ୍ୟକୁ ନିହତ କଲେ ଦୁଇ ବର୍ଷର କାଳ ଅଗ୍ନିଷ୍ଟୋମ ଯଜ୍ଞ କରି ଗୋଟିଏ ବୃଷଭ ସହିତ

ଏକଶତ ଗୋଦାନ କରିବ । ୫୭ । କୁକ୍‌କୁର, ବରାହ ଓ ଗର୍ଦ୍ଦଭମାନଙ୍କୁ ନିହତ କଲେ ଶୌଦ୍ର ବ୍ରତକୁ ଆଚରଣ କରିବ ।

ହେ ରାଜନ୍ ! ମାର୍ଜ୍ଜାର, ମୂଷିକ, ସ୍ୱର୍ଣ୍ଣ ମୂଷିକ, ମଣ୍ଡୂକ, କାକ, ସରୀସୃପ ପ୍ରଭୃତି ପ୍ରାଣିମାନଙ୍କର ହିଂସା କଲେ ପଶୁହତ୍ୟାର ପାପ ହୋଇଥାଏ । ବର୍ତ୍ତମାନ ଅନ୍ୟାନ୍ୟ ପ୍ରାୟଶ୍ଚିତ୍ତ ମାନଙ୍କ ଯଥାକ୍ରମରେ କହୁଅଛୁଁ । ୫୯ । ଅଜ୍ଞାନବଶତଃ କୀଟାଦି ବଧକଲେ ଅନୁତାପରୂପ ପ୍ରାୟଶ୍ଚିତ୍ତ ଦ୍ୱାରା ଶୁଦ୍ଧହେବ । ଗୋ ବ୍ୟତୀତ ଅନ୍ୟାନ୍ୟ ପୃଥକ ପୃଥକ ଉପପାତକର ପ୍ରାୟଶ୍ଚିତ୍ତ ସମ୍ବତ୍ସର ମଧ୍ୟରେ ନିର୍ବାହ କରିବ । ବେଦବିତ୍ ବ୍ରାହ୍ମଣର ଭାର୍ଯ୍ୟା ସହିତ ସଙ୍ଗମ କଲେ ତିନି ବର୍ଷର କାଳ ଉପବାସର ଚତୁର୍ଥ ଭାଗରେ ଭୋଜନ କରି ବ୍ରହ୍ମଚର୍ଯ୍ୟ ଓ ବ୍ରତନିଷ୍ଠ ହେବ ଏବଂ ପରନାରୀ ଗମନ କଲେ ଉକ୍ତ ପ୍ରାୟଶ୍ଚିତ୍ତକୁ ଦୁଇ ବର୍ଷର କାଳ ଅନୁଷ୍ଠାନ କରିବ । ପରନାରୀ ସହିତ ଏକାସନରେ ଓ ଏକସ୍ଥାନରେ ଉପବେଶନ କଲେ ତିନିଦିନ ଜଳମାତ୍ର ପାନକରି କିମ୍ବା ହୁତାଶନରେ ଆହୁତି ପ୍ରଦାନ କରି କାଳଯାପନ କରିବ । ହେ କୁରୁନନ୍ଦନ ! ଯେଉଁ ବ୍ୟକ୍ତି ଅକାରଣରେ ପିତା, ମାତା ଓ ଗୁରୁଙ୍କୁ ପରିତ୍ୟାଗ କରେ ସେ ଯେପରି ଧର୍ମ୍ମ ଶାସ୍ତ୍ରାନୁସାରେ ପତିତ ହୁଏ, ସେହିପରି ଯେଉଁ ବ୍ୟକ୍ତି ଅଗ୍ନିହୋତ୍ରକୁ ବିନଷ୍ଟ କରେ ସେ ମଧ୍ୟ ପତିତ ହୋଇଥାଏ । ୬୨ ।

ଭାର୍ଯ୍ୟା ବ୍ୟଭିଚାରିଣୀ ହେଲେ, ତାହାକୁ ବିଶେଷ ଭାବରେ ଅବରୁଦ୍ଧ କରି କେବଳ ଗ୍ରାସାଚ୍ଛାଦନ ପ୍ରଦାନ କରିବ । ପୁରୁଷର ପରଦାରଗମନରେ ଯେଉଁ ପ୍ରାୟଶ୍ଚିତ୍ତ କରାଯାଏ, ଏହି ବ୍ୟଭିଚାରିଣୀ ସ୍ତ୍ରୀକୁ ମଧ୍ୟ ସେହି ବ୍ରତ ଆଚରଣ କରାଇବ । ୬୩ । ଯେଉଁ ନାରୀ ନିଜ ପତିକୁ ପରିତ୍ୟାଗପୂର୍ବକ ଅନ୍ୟ ପୁରୁଷକୁ ଆଶ୍ରୟ କରି ପାପାଚାର କରେ, ନୃପତି ସେହି ନାରୀକୁ ବହୁଲୋକାକୀର୍ଣ୍ଣ ସ୍ଥାନରେ କୁକ୍‌କୁରମାନଙ୍କ ଦ୍ୱାରା ଭକ୍ଷଣ କରାଇବେ । ୬୪ । ଏହିପରି ପୁରୁଷ ବ୍ୟଭିଚାରୀ ହେଲେ ତାହାକୁ ଉତ୍ତପ୍ତ ଲୌହମୟ ଶୟନରେ ଶୟନ କରାଇବେ । ଏବଂ ତାହା ଉପରେ କାଷ୍ଠ ପ୍ରଦାନ କରି ପାପକାରୀ ମନୁଷ୍ୟକୁ ଦଗ୍ଧ କରିବେ । ୬୫ ।

ହେ ମହାରାଜ ! ସ୍ତ୍ରୀ ଲୋକମାନେ ପତି ପ୍ରତି ବ୍ୟତିକ୍ରମ କଲେ ସେମାନଙ୍କର ଏହିପରି ଦଣ୍ଡ ବିହିତ ହୁଏ । ଯେଉଁ ଦୁରାତ୍ମା ପାପାଚାର

କରି ସଂବତ୍ସର ମଧ୍ୟରେ ପ୍ରାୟଶ୍ଚିତ୍ତ ନ କରେ ତାହାକୁ ଦ୍ୱିଗୁଣ ପ୍ରାୟଶ୍ଚିତ୍ତ କରିବାକୁ ହୁଏ । ୬୬ । ଅକୃତ ପ୍ରାୟଶ୍ଚିତ୍ତ ବ୍ୟକ୍ତି ସହିତ ଯେଉଁ ବ୍ୟକ୍ତି ଦୁଇ, ତିନି, ଚାରି, କିମ୍ବା ପାଞ୍ଚବତ୍ସର ପର୍ଯ୍ୟନ୍ତ ସହବାସ କରେ ତାହାର ମୁନିବ୍ରତ ଅବଲମ୍ବନ ପୂର୍ବକ ସମସ୍ତ ପୃଥିବୀକୁ ପର୍ଯ୍ୟଟନ କରି ଭିକ୍ଷାଦ୍ୱାରା ଜୀବନଯାପନ କରିବା କର୍ତ୍ତବ୍ୟ । ୬୭ । ଜ୍ୟେଷ୍ଠ ଭ୍ରାତା ଅନୂଢ଼ ଥାଉଁ ଥାଉଁ କନିଷ୍ଠ ଭ୍ରାତା ଯଦି ବିବାହ କରେ, ତେବେ ତାହାକୁ ପରିବେତ୍ତା ବୋଲାଯାଏ । ସେ ତାହାର ଜ୍ୟେଷ୍ଠଭ୍ରାତା ବିବାହିତା ସ୍ତ୍ରୀ ଏବଂ ଯେଉଁ ବ୍ୟକ୍ତିର ଉଦ୍ୟୋଗ ଦ୍ୱାରା ଉକ୍ତ ବିବାହ ସମ୍ପନ୍ନ ହୋଇଥାଏ, ସେ, ଏମାନେ ସମସ୍ତେ ଅଧର୍ମବଶତଃ ପତିତ ହୁଅନ୍ତି । ୬୮ । ବୀତଦୋଷ ବ୍ୟକ୍ତି ଯେଉଁ ବ୍ରତକୁ ଆଚରଣ କରେ, ଏମାନେ ମଧ୍ୟ ପାପଶୁଦ୍ଧି ନିମିତ୍ତ ଏକମାସ କାଳ ସେହି କୃଚ୍ଛ୍ର କିମ୍ବା ଚାନ୍ଦ୍ରାୟଣ ବ୍ରତକୁ ଆଚରଣ କରିବେ । ପରିଶେଷରେ ପରିବେତ୍ତା ଅଗ୍ରଜଙ୍କୁ ନିଜର ପରିଣୀତା ପତ୍ନୀକୁ ପ୍ରଦାନ କରିବ । ଅନନ୍ତର କନିଷ୍ଠ ଜ୍ୟେଷ୍ଠଭ୍ରାତା କର୍ତ୍ତୃକ ଅନୁଜ୍ଞାତ ହୋଇ ପୁନର୍ବାର ତାହାକୁ ପତ୍ନୀ ଗ୍ରହଣ କରିବ । ଏହିପରି କଲେ ସେହି ଭ୍ରାତୃଦ୍ୱୟ ପରିଣୀତା ସ୍ତ୍ରୀ ଶୁଦ୍ଧି ଲାଭ କରେ । ୭୦ ।

ଗୋ ଭିନ୍ନ ପଶୁ ଜାତିର ହିଂସା କଲେ ଦୂଷଣୀୟ ହେବାକୁ ହୁଏ ନାହିଁ । ପଣ୍ଡିତମାନେ ଅବଗତ ଅଛନ୍ତି ଯେ, ପଶୁମାନଙ୍କର ପ୍ରତିପାଳନ ପୁରୁଷର ସେମାନଙ୍କ ଉପରେ ସର୍ବଙ୍କଷ ପ୍ରଭୁତ୍ୱ ଅଛି । ୭୧ । ପାତକୀ ଲୋକ ଚମରୀ ପୁଚ୍ଛ ଧାରଣ ପୂର୍ବକ ସ୍ୱକୀୟ କାର୍ଯ୍ୟ କୀର୍ତ୍ତନ କରିବ ଓ ମୃଣ୍ମୟ ପାତ୍ର ଗ୍ରହଣ କରି ପ୍ରତ୍ୟହ ସପ୍ତଗୃହରେ ଭିକ୍ଷାର୍ଥ ବିଚରଣ କରିବ ଏବଂ ତଦ୍ୱାରା ଯାହା ଲବ୍ଧ ହେବ, ତାହା ଭୋଜନ କରିବ । ଦ୍ୱାଦଶ ଦିବସ ଏହିପରି ବ୍ରତାଚରଣ କଲେ ସେ ଶୁଦ୍ଧ ହେବ । ପାପ ଶାନ୍ତି ନ ହେଲେ ସମ୍ବତ୍ସର କାଳ ଏହିପରି ବ୍ରତାଚରଣ କରିବ, ତାହାହେଲେ ପାପ ଖଣ୍ଡନ ହେବ । ୭୩ । ମାନବଗଣଙ୍କ ମଧ୍ୟରେ ଏହିପରି ପ୍ରାୟଶ୍ଚିତ୍ତ ଉତ୍କୃଷ୍ଟ ଅଟେ । ଦାନ କରିବାକୁ ସମର୍ଥ ବ୍ୟକ୍ତିମାନଙ୍କ ପକ୍ଷରେ ନିମ୍ନୋକ୍ତ ଦାନ ସବୁ ବିଧାନ କରିବ । ୭୪ ।

ଯେଉଁମାନେ ନାସ୍ତିକ ନୁହନ୍ତି, ସେମାନଙ୍କ ନିକଟରେ ଗୋଟିଏ ମାତ୍ର ଗୋଦାନ ପଣ୍ଡିତମାନଙ୍କ କର୍ତ୍ତୃକ ବିହିତ ହୋଇଅଛି । ବ୍ରାହ୍ମଣ ଯଦି କୁକ୍କୁର, ବରାହ, କୁକ୍କୁଟ ଓ ଗର୍ଦ୍ଦଭ ମାଂସ ମୂତ୍ର କିମ୍ବା ପୁରୀଷ ଭୋଜନ

କରନ୍ତି, ତେବେ ପୁନର୍ବାର ତାହାଙ୍କୁ ସଂସ୍କାର କରିବାକୁ ହେବ । ସୋମଯାଜୀ ବ୍ରାହ୍ମଣ ଯଦି ସୁରାଯାଜୀର ଗନ୍ଧକୁ ଅଘ୍ରାଣ କରନ୍ତି, ତେବେ ପ୍ରଥମତଃ ତିନିଦିନ ଉଷ୍ଣଜଳ ପାନ କରିବେ ଏବଂ ତତ୍ପରେ ତିନିଦିନ ଉଷ୍ଣ ଦୁଗ୍ଧ ପାନ କରିବେ । ତଦନନ୍ତର ତିନିଦିନ ଉଷ୍ଣ ବାରି ପାନକରି ତିନିଦିନ ପର୍ଯ୍ୟନ୍ତ ବାୟୁ ଭକ୍ଷଣ କରି ରହିବେ । ୭୭ । ସର୍ବ ବର୍ଣ୍ଣର ବିଶେଷତଃ ବ୍ରାହ୍ମଣଙ୍କର ଅଜ୍ଞାନ କୃତ ପାତକ ନିଚୟର ଈଦୃଶ ସନାତନ ପ୍ରାୟଶ୍ଚିତ୍ତ କଥିତ ହେଲା । ୭୮ ।

## ଅଧ୍ୟାୟ—୧୬୬

ବୈଶମ୍ପାୟନ କହିଲେ—ଖଡ୍‌ଗଯୁଦ୍ଧ ବିଶାରଦ ନକୁଳ କଥାର ଅବସାନ ଦେଖି ଶରଶଯ୍ୟା ଗତ ପିତାମହ ଭୀଷ୍ମଦେବଙ୍କୁ ଏହି କଥା କହିଲେ । ୧ ।

ନକୁଳ କହିଲେ— ହେ ଧର୍ମଜ୍ଞ ପିତାମହ । ସମସ୍ତ ପ୍ରହରଣ ମଧ୍ୟରେ ଶରାସନ ଅତି ଉତ୍କୃଷ୍ଟ ଅଟେ । କିନ୍ତୁ ଆମ୍ଭ ମତରେ ଖଡ୍‌ଗ ପ୍ରଶଂସିତ, କାରଣ ଶରାସନ ଶୀର୍ଣ୍ଣ ଓ ବାଜିଗଣ ବିନଷ୍ଟ ହେଲେ ଏକମାତ୍ର ଖଡ୍‌ଗ ଦ୍ୱାରା ଆତ୍ମାକୁ ଉତ୍ତମ ରୂପେ ରକ୍ଷା କରିବାକୁ ସମର୍ଥ ହେବେ । ୩ । ଏକମାତ୍ର ଖଡ୍‌ଗଧର ବୀର ପୁରୁଷ ଧନୁର୍ଦ୍ଧାରୀ ଓ ଗଦାଶକ୍ତି ପ୍ରହାରୀ ବୈରିବୃନ୍ଦଙ୍କୁ ବାଧିତ କରିବାକୁ ସମର୍ଥ ହୁଅନ୍ତି । ୪ । ଅତଏବ ହେ ପିତାମହ । ଆମ୍ଭର ଏ ବିଷୟରେ ଅତ୍ୟନ୍ତ ସଂଶୟ ଓ କୌତୂହଳ ହୋଇଅଛି । ସର୍ବ ପ୍ରକାର ଯୁଦ୍ଧରେ କେଉଁ ପ୍ରହରଣ ଉତ୍କୃଷ୍ଟ ? । ୫ । କି ନିମିତ୍ତ ଏବଂ କେଉଁ ବ୍ୟକ୍ତି କର୍ତ୍ତୃକ କି ପ୍ରକାରରେ ଖଡ୍‌ଗ ଉତ୍ପାଦିତ ହୋଇଥିଲା ? ପ୍ରଥମେ କିଏ ଖଡ୍‌ଗ ବିଦ୍ୟାର ଅଗ୍ରଣୀ ଥିଲେ ? ଆପଣ ତତ୍ ସମସ୍ତ କୀର୍ତ୍ତନ କରନ୍ତୁ । ୬ ।

ବୈଶମ୍ପାୟନ କହିଲେ—ହେ ଭରତ । ଧନୁର୍ବେଦ ପାରଦର୍ଶୀ ଶରଶଯ୍ୟା ଗତ ଧର୍ମଜ୍ଞ ଭୀଷ୍ମଦେବ ବୁଦ୍ଧିମାନ ମାଦ୍ରୀ ନନ୍ଦନ ନକୁଳଙ୍କର ସେହି କଥା ଶ୍ରବଣ କରି ସୁଶିକ୍ଷିତ ଦ୍ରୋଣଶିଷ୍ୟ ମହାନୁଭବ ନକୁଳଙ୍କୁ କୌଶଳ ଯୁକ୍ତ ସୂକ୍ଷ୍ମ ଓ ବିଚିତ୍ର ଅର୍ଥଯୁକ୍ତ ସ୍ୱରବର୍ଣ୍ଣ ସମ୍ପନ୍ନ ଉତ୍ତର ବାକ୍ୟ କହିବାକୁ ଆରମ୍ଭ କଲେ । ୧୯ ।

ଭୀଷ୍ମ କହିଲେ—ହେ ମାଦ୍ରୀପୁତ୍ର ! ତୁମ୍ଭେ ଧାତୁମାନ୍ ପର୍ବତ ପ୍ରାୟ, ଅମ୍ଭଙ୍କୁ ପ୍ରବୋଧିତ କଲ । ଅତଏବ ଯାହା ପ୍ରଶ୍ନ କରୁଅଛ ତଦ୍ ବିଷୟରେ ପ୍ରକୃତ ବୃତ୍ତାନ୍ତ କହୁଅଛୁଁ, ଶ୍ରବଣ କର । ୧୦ । ହେ ତାତ ! ପୂର୍ବ କାଳରେ ଏହି ଦୃଶ୍ୟମାନ ସମସ୍ତ ବ୍ରହ୍ମାଣ୍ଡ ସଲିଳ ରାଶି ଦ୍ୱାରା ଏକାର୍ଣ୍ଣବ, ନିଷ୍ପ୍ରପଙ୍କ, ଅନାକାଶ, ଅନ୍ଧକାରାବୃତ, ସ୍ପର୍ଶ ରହିତ, ନିଃଶବ୍ଦ, ଅପ୍ରମେୟ ଓ ଅତି ଗମ୍ଭୀର ଦର୍ଶନ ଥିଲା । ତତ୍‌କାଳରେ ମହୀତଳର ନିର୍ଦ୍ଦେଶ ଥିଲା ନାହିଁ । ପିତାମହ ବ୍ରହ୍ମା ସେହି ସମୟରେ ଜନ୍ମ ପରିଗ୍ରହ କରିଥିଲେ । ୧୨ । ସେହି ସର୍ବଶକ୍ତିମାନ୍ ବ୍ରହ୍ମା, ବାୟୁ, ବହ୍ନି, ଆକାଶ, ଦିବାକର, ଊର୍ଦ୍ଧ୍ୱ, ଅଧଃ, ଭୂମି, ନୈଋତି, ଚନ୍ଦ୍ର, ତାରା, ଗ୍ରହ, ନକ୍ଷତ୍ର, ସମ୍ବତ୍ସର ଋତୁ, ମାସ, ପକ୍ଷ, ଲବ ଓ କ୍ଷଣ ଏମାନଙ୍କୁ ସୃଷ୍ଟି କଲେ । ୧୪ ।

ଅନନ୍ତର ଭଗବାନ୍ ପିତାମହ ଲୌକିକ ଶରୀର ଧାରଣ କରି ମରୀଚି, ଅତ୍ରି, ପୁଲସ୍ତ୍ୟ, ପୁଲହ, କ୍ରତୁ, ବଶିଷ୍ଠ, ଅଙ୍ଗିରା, ସର୍ବକାର୍ଯ୍ୟ ସମର୍ଥ ରୁଦ୍ର ଓ ପ୍ରଚେତା ନାମକ ଅତି ତେଜସ୍ୱୀ ଋଷି ସନ୍ତାନମାନଙ୍କୁ ଉତ୍ପାଦନ କଲେ । ଦକ୍ଷ ପ୍ରଜାପତିଙ୍କ ଠାରୁ ଷଷ୍ଟି ସଂଖ୍ୟକ କନ୍ୟା ଜନ୍ମ ହୋଇଥିଲେ । ବ୍ରହ୍ମର୍ଷିଗଣ ପୁତ୍ର ଉତ୍ପତ୍ତି ନିମିତ୍ତ ସେହିସବୁ କନ୍ୟାମାନଙ୍କୁ ଗ୍ରହଣ କରିଥିଲେ । ୧୭ । ସେହି କନ୍ୟାମାନଙ୍କ ଠାରୁ ବିଶ୍ୱଗଣ, ଦେବଗଣ, ପିତୃଗଣ, ଭୂତଗଣ, ଗନ୍ଧର୍ବ, ଅପ୍‌ସରା, ବିବିଧ ରାକ୍ଷସ, ପତତ୍ରୀ, ମୃଗ, ମୀନ, ପ୍ଳବଗ, ମହୋରଗ, ଭୂଚର, ଖେଚର, ଜଳଚର, ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍ଭିଜ୍ଜ ପ୍ରଭୃତି ପ୍ରାଣୀଗଣ ଏବଂ ସ୍ଥାବର ଜଙ୍ଗମାତ୍ମକ ସମସ୍ତ ଜଗତ ଉତ୍ପନ୍ନ ହେଲା । ୨୦ ।

ସର୍ବଲୋକ ପିତାମହ ବ୍ରହ୍ମା ଏହିମତରୁ ଜୀବଗଣଙ୍କୁ ସୃଷ୍ଟି କରି ଶାଶ୍ୱତ ବେଦୋକ୍ତ ଧର୍ମକୁ ପ୍ରୟୋଗ କଲେ । ୨୧ । ଆଚାର୍ଯ୍ୟ ଓ ପୁରୋହିତ ସହିତ ଦେବଗଣ ସେହି ଧର୍ମର ଅନୁଷ୍ଠାନ କଲେ । ଆଦିତ୍ୟ-ଗଣ ବସୁଗଣ, ରୁଦ୍ରଗଣ, ସାଧ୍ୟଗଣ, ଅଶ୍ୱିନୀକୁମାର ଦ୍ୱୟ, ଭୃଗୁ, ଅତ୍ରି, ଅଙ୍ଗିରା, ସିଦ୍ଧଗଣ, ତପୋଧନ, କଶ୍ୟପ, ବଶିଷ୍ଠ, ଗୌତମ, ଅଗସ୍ତ୍ୟ, ନାରଦ, ପର୍ବତ, ବାଲଖିଲ୍ୟ ଋଷିଗଣ, ପ୍ରଭାସ, ସିକତ, ଘୃତପ, ସୋମବାୟବ୍ୟ, ବୈଶ୍ୱାନର, ମରୀଚପାୟୀ, ଆକୃଷ୍ଟ, ହଂସ, ଅଗ୍ନିଯୋନି ଋଷିବୃନ୍ଦ, ବାନପ୍ରସ୍ଥ ଏବଂ ପୃଶ୍ନି ପ୍ରଭୃତି ଋଷିଗଣ ବ୍ରହ୍ମାଙ୍କ ଅନୁଶାସନରେ ଅବସ୍ଥାନ କଲେ । ୨୫ । ଦାନବେନ୍ଦ୍ରଗଣ, କ୍ରୋଧ ଓ ଲୋଭ ସମନ୍ୱିତ

ହୋଇ ପିତାମହଙ୍କର ଶାସନକୁ ଅତିକ୍ରମ ପୂର୍ବକ ଧର୍ମର ଅପଚୟ କରିବାକୁ ଆରମ୍ଭ କଲେ । ୨୭ । ହିରଣ୍ୟାକ୍ଷ, ହିରଣ୍ୟକଶିପୁ, ବିପ୍ରଚିତ୍ତି, ବିରୋଚନ, ଶମ୍ବର, ପ୍ରହ୍ଲାଦ, ନମୁଚି ଓ ବଳୀମାନେ ଏବଂ ଅନ୍ୟାନ୍ୟ ଅନେକାନେକ ସଗଣ ଦୈତ୍ୟ ଓ ଦାନବମାନେ ଧର୍ମ ବନ୍ଧନକୁ ଉଲ୍ଲଙ୍ଘନ ପୂର୍ବକ ଅଧର୍ମ ନିରତ ହୋଇଥିଲେ । ୨୮ । ସମସ୍ତେ ସମାନ ବଂଶରେ ସମୁତ୍ପନ୍ନ, ଅତଏବ "ଦେବତାମାନେ ଯେପରି, ଆମ୍ଭେମାନେ ମଧ୍ୟ ସେହିପରି" ଏହିପରି ଧର୍ମକୁ ଅବଲମ୍ବନ ପୂର୍ବକ ଦୈତ୍ୟଗଣ ଦେବର୍ଷି-ଗଣଙ୍କ ସହିତ ସ୍ପର୍ଦ୍ଧା କଲେ । ୨୯ ।

ହେ ଭାରତ ! ସେମାନେ ଜୀବଗଣଙ୍କ ପ୍ରତି କରୁଣା ଓ ସେମାନଙ୍କର ପ୍ରିୟକାର୍ଯ୍ୟ କରୁ ନ ଥିଲେ । ଭେଦ, ଦଣ୍ଡ ଓ ଦାନରୂପ ଉପାୟ ନୟକୁ ଅବଲମ୍ବନ କରି ଦଣ୍ଡଦ୍ୱାରା ପ୍ରଜାଗଣଙ୍କୁ ପିଡ଼ୀତ କରୁଥିଲେ । ୩୦ । ସେହିସବୁ ପ୍ରଧାନ ପ୍ରଧାନ ଅସୁରଗଣ ବିଜ୍ଞାନ ମାର୍ଗରେ ବିଚରଣ କରୁ ନ ଥିଲେ । ତଦନନ୍ତର ଭଗବାନ ବ୍ରହ୍ମା ବ୍ରହ୍ମର୍ଷି-ଗଣଙ୍କ ସହିତ ହିମାଳୟ ପର୍ବତର ସୁରମ୍ୟ ଶୃଙ୍ଗରେ ଉପସ୍ଥିତ ହେଲେ । ସେହି ଶୃଙ୍ଗ ଶତ ଯୋଜନ ବିସ୍ତୀର୍ଣ୍ଣ ମଣି ଓ ରତ୍ନ ନିକର ସମାଚିତ ଏବଂ ପଦ୍ମ ଓ ତାରକା ସମୂହ ଶୁଶୋଭିତ ଥିଲା । ୩୨ । ବିବୁଧ ଶ୍ରେଷ୍ଠ ବିଧାତା ପ୍ରଜାଗଣଙ୍କର ପ୍ରୟୋଜନ ସିଦ୍ଧି ନିମିତ୍ତ ପୁଷ୍ପିତ-ତରୁ ନିକର ପରିପୂର୍ଣ୍ଣ ସେହି ଶୈଳବରରେ ଅବସ୍ଥାନ କଲେ । ୩୩ ।

ଅନନ୍ତର ସହସ୍ର ବର୍ଷ ପରେ ବିଧାତା ବିଧାନାନୁସାରେ ଯଜ୍ଞ ଆରମ୍ଭ କଲେ । ଯଥାବିଧି କର୍ମକାଣ୍ଡ ଯଜ୍ଞଦକ୍ଷ ଋଷିମାନଙ୍କ ଦ୍ୱାରା ସେହି ଯଜ୍ଞ ଯଥା ବିଧାନରେ ସମ୍ପାଦିତ ହେଲା । ଯଜ୍ଞସ୍ଥଳ ଦୀପ୍ୟମାନ ପାବକ ଓ ସମିଧ ସମୂହ ଦ୍ୱାରା ପରିବ୍ୟାପ୍ତ, ଭ୍ରାଜମାନ କାଞ୍ଚନ ଯଜ୍ଞଭାଣ୍ଡ ଦ୍ୱାରା ଅଳଙ୍କୃତ, ପ୍ରଧାନ ପ୍ରଧାନ ଦେବଗଣଙ୍କ ଦ୍ୱାରା ପରିବୃତ୍ତ, ବିଧିଦର୍ଶୀ ବ୍ରହ୍ମର୍ଷିଗଣଙ୍କ ଦ୍ୱାରା ସୁଶୋଭିତ ହୋଇଥିଲା । ଆମ୍ଭେ ଶୁଣିଅଛୁଁ, ସେହି ଯଜ୍ଞରେ ଋଷିଗଣଙ୍କ ମଧ୍ୟରେ ଅତି ଆଶ୍ଚର୍ଯ୍ୟ କାଣ୍ଡ ଘଟିଥିଲା । ୩୭ । ସମୁଦିତ ତାରକା ସମୂହ ସୁଶୋଭିତ ନିର୍ମଳ ଗଗନ ମଣ୍ଡଳରେ ଯେପରି ଚନ୍ଦ୍ରମାନଙ୍କର ଉଦୟ ହୁଏ, ସେହିପରି ତତ୍କାଳରେ କୌଣସି ଭୂତ, ହୁତାଶନକୁ ବିକ୍ଷିପ୍ତ କରି ଯଜ୍ଞ ସ୍ଥଳରୁ ଉତ୍‌ଥିତ ହେଲା । ୩୮ । ସେହି ଭୂତ ନୀଳୋତ୍ପଳ-ଦଳ ସଦୃଶ ଶ୍ୟାମବର୍ଣ୍ଣ; ତାହାର ଦଂଷ୍ଟ୍ରାମାନ ତୀକ୍ଷ୍ଣ

ଉଦର ଅତ୍ୟନ୍ତ କ୍ଷୀଣ, ଆକାର ଅତି ଉନ୍ନତ, ତେଜ ସମ୍ପନ୍ନ ଓ ଅନଭିଭବନୀୟ ଥିଲା । ୩୯ । ସେ ଉତ୍‌ଥିତ ହେଲା ମାତ୍ରକେ ବସୁନ୍ଧରା ବିଚଳିତ ହେଲା ଏବଂ ତରଙ୍ଗମାଳା ସମାକୁଳ ଆବର୍ତ୍ତ ସମନ୍ୱିତ ମହୋଦଧି କ୍ଷୁଭିତ ହେଲା । ୪୦ । ଉତ୍ପାତଜନକ ଉଲ୍‌କାମାନ ପତିତ ହେଲା, ବୃକ୍ଷମାନଙ୍କର ଶାଖାମାନ ଭଗ୍ନ ହୋଇଗଲା । ଦିକ୍ ସମୁଦାୟ କଳୁଷିତ ହେଲା ଏବଂ ଅଶିବ ସମୀରଣ ପ୍ରବାହିତ ହେଲା । ୪୧ । ତତ୍କାଳରେ ଜୀବଗଣ ଭୟବଶତଃ ବାରମ୍ବାର ବ୍ୟଥିତ ହେଲେ । ତଦନନ୍ତର ପିତାମହ ସେହି ଭୀମ୍ବଲକାଣ୍ଡ, ଅଦ୍ଭୁତ ଭୂତର ଉପସ୍ଥିତ ଦେଖି ଦେବ, ଗନ୍ଧର୍ବ ଓ ମହର୍ଷିଗଣଙ୍କୁ କହିଲେ, ଜଗତର ରକ୍ଷା ଏବଂ ଅସୁରଗଣଙ୍କର ବଧ ନିମିତ୍ତ ଆମ୍ଭେ ଏହି ବୀର୍ଯ୍ୟବାନ ଅସିନାମକ ଭୂତକୁ ଏହି ପ୍ରକାରେ ଚିନ୍ତା କରିଥିଲୁଁ । କ୍ଷଣକାଳ ପରେ ସେହି ଭୂତ ଅଦ୍ଭୁତ ରୂପକୁ ପରିତ୍ୟାଗ ପୂର୍ବକ ଉଦ୍ୟତ କାଳାନ୍ତକ ପ୍ରାୟ ତୀକ୍ଷ୍ଣଧାର ନିର୍ମଳ ନିସ୍ତ୍ରିଂଶ ରୂପରେ ପ୍ରକାଶିତ ହେଲା ।

ଅନନ୍ତର ବ୍ରହ୍ମା ବୃଷଧ୍ୱଜ ନୀଳକଣ୍ଠ ରୁଦ୍ରଦେବଙ୍କୁ ସେହି ଅଧର୍ମ ବାରଣ ତୀକ୍ଷ୍ଣ ପ୍ରହରଣକୁ ପ୍ରଦାନ କଲେ । ମହର୍ଷି-ସଂସ୍ତୁତ ଅପ୍ରମେୟମହିମ ଭଗବାନ ରୁଦ୍ରଦେବ ସେହି ଅସି ଗ୍ରହଣ ପୂର୍ବକ ରୂପାନ୍ତର ଧାରଣ କଲେ । ତତ୍‌କାଳରେ ସେ ଚତୁର୍ବାହୁ ହୋଇ ଭୂତଳରେ ଅବସ୍ଥାନ ପୂର୍ବକ ଦିବାକରଙ୍କୁ ସ୍ପର୍ଶ କଲେ । ଏବଂ ମହାଲିଙ୍ଗ ମୂର୍ତ୍ତି ଧାରଣପୂର୍ବକ ଊର୍ଦ୍ଧ୍ୱଦୃଷ୍ଟି ହୋଇ ମୁଖରୁ ଜ୍ୱାଳାଜାଲ ବହିର୍ଗତ କଲେ । ସେ ନୀଳ ପାଣ୍ଡୁର ଓ ଲୋହିତ ପ୍ରଭୃତି ବହୁବିଧ ବର୍ଣ୍ଣ ପରିବର୍ତ୍ତନ ପୂର୍ବକ ପ୍ରବଳ ହେମ ତାରକୋ ଅଳଙ୍କୃତ କୃଷ୍ଣାଜିନ ବସନକୁ ଧାରଣ କଲେ । ସେ ଲଲାଟ ଦେଶରେ ଭାସ୍କର-ପ୍ରତିମା ଗୋଟିଏ ନୟନ ଧାରଣ କଲେ । ୪୯ । ତାହାଙ୍କର କୃଷ୍ଣ ଓ ପିଙ୍ଗଳ ବର୍ଣ୍ଣ ବିମଳ-ଲୋଚନଦ୍ୱୟ ସୁଶୋଭିତ ହେଲା । ତଦନନ୍ତର ଭଗବାନ ହର ମହାବଳ ପରାକ୍ରାନ୍ତ ଶୂଳଧାରୀ ମହାଦେବ, ପ୍ରଳୟାନଳ ସଦୃଶ, ପ୍ରଭାଯୁକ୍ତ ନିସ୍ତ୍ରିଂଶକୁ ଧାରଣ କରି, ବିଦ୍ୟୁତ ବିଶିଷ୍ଟ ବାରିବାହ ପ୍ରାୟ ପାର୍ଶ୍ୱଦ୍ୱୟରେ ଓ ଅଗ୍ରଭାଗରେ ଧାରଣକ୍ଷମ ନିକୃଷ୍ଟ ସମନ୍ୱିତ ଚର୍ମ୍ମ ଗ୍ରହଣ ପୂର୍ବକ ଯୁଦ୍ଧୋଚ୍ଛାରେ ଆକାଶରେ ଅସି କମ୍ପନ କରି ବିବିଧ ମାର୍ଗରେ ବିଚରଣ କଲେ ।

ହେ ଭାରତ ! ତତ୍କାଳରେ ରୁଦ୍ରଦେବ ମହାହାସ୍ୟ ଓ ନିନାଦ କରନ୍ତେ, ତାହାଙ୍କର ଭୟଙ୍କର ରୂପ ପ୍ରକାଶିତ ହେଲା । ରୌଦ୍ରକର୍ମ୍ମ-ଚିକୀର୍ଷା ହେତୁ ରୁଦ୍ରଦେବ ସେହିପରି ରୂପଧାରଣ କରି ଅଛନ୍ତି । ଶ୍ରବଣ କରି ସମସ୍ତ ଦାନବଗଣ ହୃଷ୍ଟାନ୍ତଃକରଣରେ ତାହାଙ୍କ ଅଭିମୁଖକୁ ଧାବିତ ହେଲେ । ସେମାନେ ପ୍ରଦୀପ୍ତ ଅଙ୍ଗାର, ଅୟୋମୟ କ୍ଷୁରଧାର ଶସ୍ତ୍ରମାନ ଓ ଅନ୍ୟାନ୍ୟ ଘୋରତର ପ୍ରହରଣ ଏବଂ ପାଷାଣ ବର୍ଷଣ କରିବାକୁ ଆରମ୍ଭ କଲେ ତଦନନ୍ତର ଦାନବ ସୈନ୍ୟ ବଳ-ସମ୍ପନ୍ନ ବିଧ୍ୱଂସକାରୀ ଅଚ୍ୟୁତ ରୁଦ୍ରଦେବଙ୍କୁ ଦର୍ଶନ କରି ମୋହିତ ଓ ବିଚଳିତ ହେଲେ । ସେ ଏକାକୀ ଅସି ହସ୍ତ ହୋଇ ଦ୍ରୁତପଦରେ ବିଚିତ୍ରଭାବରେ ବିଚରଣ କରନ୍ତେ ଅସୁରମାନେ ତାହାଙ୍କୁ ସହସ୍ର ବୋଲି ଜ୍ଞାନ କଲେ । ସେ ତୃଣରାଶି ମଧ୍ୟ ଗତ ଦାବାନଳ ପ୍ରାୟ ବୈରିବୃନ୍ଦ ମଧ୍ୟରେ ଛେଦନ, ଭେଦନ, ପୀଡ଼ନ, କୃନ୍ତନ, ବିଦାରଣ ଓ ଦାହନ କରି ବିଚରଣ କଲେ । ମହାବଳ ଦାନବ ଗଣ ଅସି ବେଗରେ ପ୍ରଭଗ୍ନ ହୋଇ କେହି କେହି ଛିନ୍ନବାହୁ, କେହି କେହି ଛିନ୍ନୋରୁ, କେହି କେହି ଛିନ୍ନବକ୍ଷା ଏବଂ କେହି କେହି ଛିନ୍ନ ମସ୍ତକ ହୋଇ ଧରାତଳରେ ପତିତ ହେଲେ ।

ତଥପରେ ଖଡ୍ଗପାତଦ୍ୱାରା ପ୍ରପୀଡ଼ିତ ଯୁଦ୍ଧରୁ ଭଗ୍ନ ହୋଇ ପରସ୍ପର ପରସ୍ପର ପ୍ରତି ଆକ୍ରୋଶପୂର୍ବକ ଦଶଦିଗନ୍ତକୁ ପଳାୟନ କଲେ । କେହି କେହି ଭୂଗର୍ଭରେ ଓ କେହି କେହି ପର୍ବତ ମଧ୍ୟରେ ପ୍ରବିଷ୍ଟ ହେଲେ । ସେହି ନିତାନ୍ତ ମହାଯୁଦ୍ଧ ସମ୍ପନ୍ନ ହୁଅନ୍ତେ, ମାଂସ ଶୋଣିତ କର୍ଦ୍ଦମ-ଶାଳିନୀ ବସୁନ୍ଧରା ଅତି ଭୟଙ୍କର ମୂର୍ତ୍ତି ଧାରଣ କଲା । କୁସୁମିତ କିଂଶୁକ ତରୁଯୁକ୍ତ ଶୈଳ ସମୂହସଦୃଶ, ଦାନବମାନଙ୍କର ଶୋଣିତୋକ୍ଷିତ ପତିତ ଶରୀର ସମୁଦାୟ ଦ୍ୱାରା ଧରାତଳ ସମାକୀର୍ଣ୍ଣ ହେଲା । ତତ୍କାଳରେ ବସୁନ୍ଧରା ରୁଧିର ଧାରା ଦ୍ୱାରା ପରିକ୍ଳିନ୍ନା ହୋଇ ମଦବିହ୍ୱଳା ରକ୍ତାର୍ଦ୍ରବସନା ଶ୍ୟାମା କାମିନୀପ୍ରାୟ ଶୋଭିତା ହେଲା । ୬୩ । ରୁଦ୍ରଦେବ ଗଣଙ୍କୁ ନିହତ କରି ଜଗତରେ ଧର୍ମ୍ମସଂସ୍ଥାପନ ପୂର୍ବକ ରୌଦ୍ର ରୂପକୁ ପରିତ୍ୟାଗ କଲେ ଓ କଲ୍ୟାଣକର ଶିବରୂପକୁ ଧାରଣ କଲେ । ୬୪ ।

ଅନନ୍ତର ସମସ୍ତ ଦେବତା ଓ ମହର୍ଷିଗଣ ଅତ୍ୟାଶ୍ଚର୍ଯ୍ୟ ସଦୃଶ ଜୟ ଶବ୍ଦ କରି ଦେବ ଦେବଙ୍କୁ ଅର୍ଚ୍ଚନା କଲେ । ୬୫ । ତଦନନ୍ତର ଭଗବାନ

ରୁଦ୍ରଦେବ ଧର୍ମରକ୍ଷକ ବିଷ୍ଣୁଙ୍କୁ ସତ୍କାର କରି ଦାନବଗଣଙ୍କର ଶୋଣିତ-ସିକ୍ତ ଅସିକୁ ପ୍ରଦାନ କଲେ । ୭୧ ।

ହେ ବତ୍ସ ! ବିଷ୍ଣୁ ମରୀଚଙ୍କୁ, ଭଗବାନ୍ ମରୀଚ ମହର୍ଷିଗଣଙ୍କୁ, ମହର୍ଷିଗଣ ମହେନ୍ଦ୍ରଙ୍କୁ ଦେବରାଜ ଲୋକପାଳମାନଙ୍କୁ ଓ ଲୋକପାଳମାନେ ସୂର୍ଯ୍ୟପୁତ୍ର ମନୁଙ୍କୁ ସେହି ସୁଦୀର୍ଘ ଖଡ଼୍ଗ ପ୍ରଦାନ କରିଥିଲେ ଏବଂ ସେମାନେ ମନୁଙ୍କୁ କହିଥିଲେ ଯେ ତୁମ୍ଭେ ମନୁଷ୍ୟ ଗଣଙ୍କର ଈଶ୍ୱର, ଅତଏବ ଏହି ଧର୍ମ ଗର୍ଭ ଅସିଦ୍ୱାରା ପ୍ରଜାବର୍ଗଙ୍କୁ ପାଳନ କର । ଯେଉଁମାନେ ଶରୀର ଓ ମନର ପ୍ରୀତି ନିମିତ୍ତ ଧର୍ମ ବନ୍ଧନକୁ ଅତିକ୍ରମ କରିଅଛନ୍ତି, ସେମାନଙ୍କ ପ୍ରତି ଧର୍ମତଃ ଦଣ୍ଡ ବିଧାନ କରି ସେମାନଙ୍କୁ ରକ୍ଷା କରିବା ଉଚିତ । ଯଦୃଚ୍ଛା ବଶତଃ ଦଣ୍ଡ ପ୍ରୟୋଗ କରିବା ବିଧେୟ ନୁହେ । ଦଣ୍ଡ ଚତୁର୍ବିଧ । ଦୁଷ୍ଟବାକ୍ୟ ଦ୍ୱାରା ନିଗ୍ରହ ବାଗ୍ ଦଣ୍ଡ ଅଟେ । ହିରଣ୍ୟ ଆଦାନ କରିବା ଅର୍ଥଦଣ୍ଡ ଅଟେ । ଶରୀରର ଅଙ୍ଗହାନି କରିବା ଦୈହିକ ଦଣ୍ଡ ଏବଂ ଅପରାଧର କାରଣ ଅନଳ୍ପ ହେତୁ ବଧରୂପ ପ୍ରାଣଦଣ୍ଡ ବିହିତ ହୁଏ । ଅସିର ଏହି ସମସ୍ତ ରୂପକୁ ଦୁର୍ବାର ବୋଲି ନିର୍ଦ୍ଦେଶ କରିବ । ୭୨ । ପ୍ରତିପାଳ୍ୟ ବ୍ୟକ୍ତିର ବ୍ୟତିକ୍ରମ ହେତୁ ଉଦ୍ଧୃତ ରୂପ ସବୁ ପ୍ରମାଣୀକୃତ ହୋଇଥାଏ ।

ଅନନ୍ତର ମନୁ ଲୋକାଧିପତି ନିଜପୁତ୍ର କ୍ଷୁପଙ୍କୁ ଅଭିଷିକ୍ତ କରି ପ୍ରଜାଗଣଙ୍କର ରକ୍ଷାନିମିତ୍ତ ସେହି ଅସିକୁ ପ୍ରଦାନ କଲେ । କ୍ଷୁପଙ୍କଠାରୁ ଇକ୍ଷ୍ୱାକୁ ତାହା ପ୍ରାପ୍ତ ହେଲେ । ଇକ୍ଷ୍ୱାକୁଙ୍କଠାରୁ ପୁରୂରବା, ପୁରୂରବାଙ୍କଠାରୁ ଆୟୁ ସେହି ଖଡ଼୍ଗକୁ ପ୍ରାପ୍ତ ହେଲେ । ଆୟୁଙ୍କଠାରୁ ନହୁଷ, ନହୁଷଙ୍କଠାରୁ ଯଯାତି, ଯଯାତିଙ୍କଠାରୁ ପୁରୁ ତାହା ପ୍ରାପ୍ତ ହେଲେ । ପୁରୁଙ୍କଠାରୁ ଅମୂର୍ତ୍ତି-ରୟସ, ଅମୂର୍ତ୍ତି ରୟସଙ୍କଠାରୁ ନରପତି ଭୂମିଶୟ, ଭୂମିଶୟଙ୍କଠାରୁ ଦୁଷ୍ମନ୍ତ ପୁତ୍ର ଭରତ ସେହି ଅସିକୁ ଲାଭ କରିଥିଲେ । ତାହାଙ୍କଠାରୁ ଧର୍ମଜ୍ଞ ନୃପତି ଐଲବିଲ ତାହା ପ୍ରାପ୍ତ ହୋଇଥିଲେ । ଐଲବିଲଙ୍କଠାରୁ ନରେଶ୍ୱର ଧୁନ୍ଧୁମାର ତାହା ପ୍ରାପ୍ତ ହେଲେ । ୭୩ । ଧୁନ୍ଧୁମାରଙ୍କଠାରୁ କାମ୍ବୋଦ ଓ ତାହାଙ୍କଠାରୁ ମୁଚୁକୁନ୍ଦ ତାହା ପ୍ରାପ୍ତ ହେଲେ । ମୁଚୁକୁନ୍ଦଙ୍କଠାରୁ ମରୁତ୍ତ, ମରୁତ୍ତଙ୍କଠାରୁ ରୈବତ, ରୈବତଙ୍କଠାରୁ ଯୁବନାଶ୍ୱ, ଯୁବନାଶ୍ୱଙ୍କଠାରୁ ଇକ୍ଷ୍ୱାକୁ ବଂଶଜ ରଘୁ ଓ ତାହାଙ୍କଠାରୁ ପ୍ରତାବାନ୍ ହରିଣାଶ୍ୱ ସେହି

ଅସିକୁ ପ୍ରାପ୍ତ ହେଲେ । ୭୮ । ହରିଣାଶ୍ୱଙ୍କଠାରୁ ଶୁନକ, ଶୁନକଙ୍କଠାରୁ ଧର୍ମାତ୍ମା ଉଶୀନର, ଉଶୀନରଙ୍କଠାରୁ ଯଦୁବଂଶୀୟ ଭୋଜ, ଭୋଜଙ୍କଠାରୁ ଶିବି ଓ ଶିବିଙ୍କଠାରୁ ପ୍ରତର୍ଦ୍ଦନ, ତାହା ଲାଭ କରିଥିଲେ । ପ୍ରତର୍ଦ୍ଦନଙ୍କଠାରୁ ଅଷ୍ଟକ ଓ ଅଷ୍ଟକଙ୍କଠାରୁ ପୃଷଦଶ୍ୱ ସେହି ଖଡ଼୍‌ଗକୁ ପ୍ରାପ୍ତ ହୋଇଥିଲେ । । ୮୧ । ପୃଷଦଶ୍ୱଙ୍କଠାରୁ ଭରଦ୍ୱାଜ, ଭରଦ୍ୱାଜଙ୍କଠାରୁ ଦ୍ରୋଣ, ଦ୍ରୋଣଙ୍କଠାରୁ କୃପ ଓ କୃପଙ୍କଠାରୁ ତୁମ୍ଭେ ଭ୍ରାତୃଗଣଙ୍କ ସହିତ ଏହି ପରମ ଅସିକୁ ପ୍ରାପ୍ତ ହୋଇଅଛ । ୮୨ । ଏହି ଅସିର କୃତ୍ତିକା ନକ୍ଷତ୍ର ଅଟେ । ଅଗ୍ନି ଦେବତା ଅଟନ୍ତି । ରୋହିଣୀ ଗୋତ୍ର ଓ ରୁଦ୍ର ଦେବ ଏହାର ପରମ ଗୁରୁ ଅଟନ୍ତି । ୮୩ ।

ହେ ପାଣ୍ଡୁନନ୍ଦନ । ଲୋକମାନେ ଯାହା ସତତ କୀର୍ତ୍ତନ କରି ଜୟ ଲାଭ କରନ୍ତି, ଅସିର ସେହି ଗୋପନୀୟ ଆଠଗୋଟି ନାମ ଆମ୍ଭଠାରୁ ଶ୍ରବଣ କର । ଅସି, ବିଶସନ, ଖଡ଼୍‌ଗ, ତୀକ୍ଷ୍ଣଧାର, ଦୁରାସଦ, ଶ୍ରୀଗର୍ଭ, ବିଜୟ ଓ ଧର୍ମପାଳ । ୮୪। ପ୍ରହରଣମାନଙ୍କ ମଧ୍ୟରେ ଖଡ଼୍‌ଗ ପ୍ରଧାନ ଅଟେ । ଏହା ମହେଶ୍ୱର ପ୍ରଣୀତ ବୋଲି ପୁରାଣରେ ନିଶ୍ଚିତ ହୋଇଅଛି । ୮୬ ।

ହେ ଶତ୍ରୁଦମନ । ପୃଥୁରାଜ ପ୍ରଥମତଃ ଶରାସନ ଉତ୍ପାଦନ କରିଥିଲେ । ଏବଂ ତଦ୍ୱାରା ଯଥାକାଳରେ ଧର୍ମତଃ ପୃଥିବୀ ପାଳନ କରି ତହିଁରୁ ବହୁଶସ୍ୟ ଦୋହନ କରିଥିଲେ । ଏତଏବ ହେ ମାଦ୍ରୀପୁତ୍ର । ଧନୁ ମଧ୍ୟ ଋଷି ପ୍ରଣୀତ ବୋଲି ପ୍ରମାଣ କରିପାର । ଯୁଦ୍ଧବିଶାରଦ ବ୍ୟକ୍ତିମାନଙ୍କର ସତତ ଅସିପୂଜା କରିବା କର୍ତ୍ତବ୍ୟ । ୮୮ । ହେ ଭରତ-ଶ୍ରେଷ୍ଠ । ଅସିର ଉତ୍ପତ୍ତି ଓ ସଂସର୍ଗ ବିଷୟ ଏହି ପ୍ରଥମ କଳ୍ପ ଯଥାକ୍ରମରେ ବିସ୍ତୃତଭାବରେ ବ୍ୟାଖ୍ୟାତ ହେଲା । ୮୯ । ମନୁଷ୍ୟ ସର୍ବଥା ଏହି ଉତ୍କୃଷ୍ଟ ଖଡ଼୍‌ଗର ଉତ୍ପତ୍ତି ବିଷୟ ଶ୍ରବଣ କରି ଇହଲୋକରେ କୀର୍ତ୍ତିଲାଭ ଓ ପରଲୋକରେ ଅନନ୍ତ ସୁଖ ଭୋଗ କରନ୍ତି । ୯୦ ।

---

## ଅଧ୍ୟାୟ—୧୬୭

ବୈଶମ୍ପାୟନ ବୋଇଲେ—ଭୀଷ୍ମଦେବ ଏହିକଥା କହି ମୌନାବଲମ୍ବନ କରନ୍ତେ ଯୁଧିଷ୍ଠିର ଗୃହକୁ ଗମନ ପୂର୍ବକ ବିଦୁରଙ୍କ ସହିତ ଏକତ୍ରସ୍ଥିତ ଭ୍ରାତୃଚତୁଷ୍ଟୟଙ୍କୁ ପ୍ରଶ୍ନ କଲେ ଯେ ଧର୍ମ ଅର୍ଥ ଓ କାମ ଏହି ତିନି ବିଷୟରେ ଲୋକ ବ୍ୟବହାର ବିହିତ ଅଛି । ତନ୍ମଧ୍ୟରେ କିଏ ଗରିଷ୍ଠ କିଏ ମଧ୍ୟମ ଓ କିଏ ଲଘୁ ଏବଂ କାମ, କ୍ରୋଧ, ଲୋଭ ଜୟ ନିମିତ୍ତ କେଉଁ ବିଷୟରେ ମନ ସମାଧାନ କରିବା କର୍ତ୍ତବ୍ୟ । ଆପଣମାନେ ସଂହୃଷ୍ଟ ହୋଇ ତାହାର ନୈଷ୍ଠିକ ବାକ୍ୟକୁ ଯଥାବତ୍ ବର୍ଣ୍ଣନ କରନ୍ତୁ । ।୩। ତଦନନ୍ତର ଅର୍ଥ ତତ୍ତ୍ୱଜ୍ଞ ପ୍ରଜ୍ଞାବାନ୍ ବିଦୁର ପ୍ରଥମତଃ ଧର୍ମଶାସ୍ତ୍ର ସ୍ମରଣ କରି କହିଲେ ।୪।

ବିଦୁର କହିଲେ—ବହୁଶାସ୍ତ୍ର ଅଧ୍ୟୟନ, ସ୍ୱଧର୍ମାଚରଣ, ଦାନ, ଶ୍ରଦ୍ଧା, ଯଜ୍ଞକ୍ରିୟା, କ୍ଷମା, ନିଷ୍କପଟତ୍ୱ, ଦୀନଗଣଙ୍କ ପ୍ରତି ଅନୁକମ୍ପା, ଯଥାର୍ଥ ବାକ୍ୟ ଓ ଇନ୍ଦ୍ରିୟ ନିଗ୍ରହ ଏହି କେତୋଟି ଧର୍ମର ସମ୍ପତ୍ତି ଅଟନ୍ତି । ଆପଣ ଏହି ଧର୍ମର ଗତିକୁ ଅବଗତ ହୁଅନ୍ତୁ । ଆପଣଙ୍କ ଚିତ୍ତ ଯେପରି ବିଚଳିତ ନ ହୁଏ; ଧର୍ମ ଓ ଅର୍ଥର ଏମାନେ ମୂଳ, ଅତଏବ ଏମାନଙ୍କୁ ଅଭିନ୍ନ ବୋଲି ବିବେଚନା କରନ୍ତି ।୬। ଋଷିଗଣ ଧର୍ମ ଦ୍ୱାରା ସଂସାରରୁ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଲୋକମାନେ ଧର୍ମରେ ପ୍ରତିଷ୍ଠିତ ରହିଅଛନ୍ତି । ଦେବଗଣ ଧର୍ମଦ୍ୱାରା ବୃଦ୍ଧିଲାଭ କରିଅଛନ୍ତି ଏବଂ ଧର୍ମରେ ଅର୍ଥ ସମାହିତ ଅଛି ।୭। ହେ ରାଜନ୍ ! ପଣ୍ଡିତମାନେ ଧର୍ମକୁ ସର୍ବଗୁଣ ମଧ୍ୟରେ ଶ୍ରେଷ୍ଠ, ଅର୍ଥକୁ ମଧ୍ୟମ ଓ କାମକୁ କନିଷ୍ଠ ବୋଲି କହନ୍ତି ।୮। ଅତଏବ ସଂଯତ ଚିତ୍ତ ଲୋକଙ୍କ ମଧ୍ୟରେ ଧର୍ମକୁ ପ୍ରଧାନ ଜ୍ଞାନ କରିବା ଉଚିତ । ଆପଣଙ୍କ ପ୍ରତି ଯେପରି ବ୍ୟବହାର କରାଯାଏ, ସର୍ବଭୂତଙ୍କ ପ୍ରତି ତାଦୃଶ ବ୍ୟବହାର କରିବା କର୍ତ୍ତବ୍ୟ ।୯।

ବୈଶମ୍ପାୟନ ବୋଇଲେ, ବିଦୁରଙ୍କ ବାକ୍ୟ ସମାପ୍ତ ହୁଅନ୍ତେ ଧର୍ମାର୍ଥ ତତ୍ତ୍ୱଜ୍ଞ ଅର୍ଥଶାସ୍ତ୍ର ବିଶାରଦ ପୃଥାପୁତ୍ର ଧନଞ୍ଜୟ ଯୁଧିଷ୍ଠିରଙ୍କ ପ୍ରଶ୍ନାନୁସାରେ ବକ୍ଷ୍ୟମାଣ ବାକ୍ୟ କହିବାକୁ ଆରମ୍ଭ କଲେ ।୧୦।

ଅର୍ଜ୍ଜୁନ କହିଲେ—ହେ ମହାରାଜ ! ଏହି ପୃଥିବୀ କର୍ମଭୂମି, ଅତଏବ ଏଥିରେ ପ୍ରବୃତ୍ତି-ବିଧାୟକ କର୍ମ ପ୍ରଧାନ ଅଟେ । କୃଷି,

ବାଣିଜ୍ୟ, ପଶୁପାଳନ ଓ ବିବିଧ ଶିଳ୍ପ କର୍ମମାନଙ୍କର ବ୍ୟତିକ୍ରମ ନ କଲେ ଅର୍ଥ ହୁଏ । ଆମ୍ଭେ ଶୁଣିଅଛୁଁ ଯେ ଅର୍ଥ ବ୍ୟତିରେକେ ଧର୍ମ୍ମ ଓ କାମ ଅବସ୍ଥାନ କରି ପାରନ୍ତି ନାହିଁ । ୧୨ । ଅର୍ଥ ସିଦ୍ଧି ନ ହେଲେ ଧର୍ମ୍ମ ଓ କାମ ନିବୃତ୍ତ ହେବ । ଅତଏବ ପ୍ରତ୍ୟେକ ଜୀବ ଯେପରି ପ୍ରଜାପତିଙ୍କର ଉପାସନା କରନ୍ତି ସେହିପରି ସତ୍‌କୁଳ-ସମ୍ଭୂତ ଲୋକମାନେ ଅର୍ଥବାନ୍ ପୁରୁଷଙ୍କୁ ସତତ ସେବା କରନ୍ତି । ୧୫ । ଜଟା ଜୀନ୍‌ଧାରୀ ଦାନ୍ତ ଭସ୍ମାବ-ଗୁଣ୍ଠିତ ଜିତେନ୍ଦ୍ରିୟ ମଣ୍ଡିତ ମସ୍ତକ ନୈଷ୍ଠିକ ବ୍ରହ୍ମଚାରୀମାନେ ମଧ୍ୟ ଅର୍ଥା-ଭିଳାଷୀ ହୋଇ ପୃଥକ ପୃଥକ ଧର୍ମ୍ମାନୁସାରେ ଅବସ୍ଥାନ କରନ୍ତି । ୧୬ । ଅପରେ କଷାୟ ବସ୍ତ୍ର ପରିଧାନ କରି ଓ ଶ୍ମଶ୍ରୁଳ, ଲଜ୍ଜାଶୀଳ, ଶାନ୍ତ, ସର୍ବସଙ୍ଗ ବିମୁକ୍ତ ଏବଂ ବିଦ୍ୱାନ ହୋଇ ସ୍ୱର୍ଗ ଅର୍ଥାର୍ଥୀ ହୁଅନ୍ତି । ଅପରା-ପର କୌଣସି କୌଣସି ବ୍ୟକ୍ତି କୁଳକ୍ରମକୁ ଅବଲମ୍ବନ ପୂର୍ବକ ନିଜନିଜ ଧର୍ମ୍ମାନୁଷ୍ଠାନ କରି ସ୍ୱର୍ଗ କାମନା କରନ୍ତି । ଆସ୍ତିକ ଓ ନାସ୍ତିକଗଣ ପରମ ସଂଯମରେ ନିରତ ହୋଇ ଅଜ୍ଞାତ ଅର୍ଥର ପ୍ରାଧାନ୍ୟ ବିଷୟକୁ ପ୍ରକାଶ କରନ୍ତି । ୧୯ । ଯେ ଭୃତ୍ୟଗଣଙ୍କୁ ଭୋଗ ଦ୍ୱାରା ଏବଂ ଶତ୍ରୁଗଣଙ୍କୁ ଦଣ୍ଡ ଦ୍ୱାରା ଶାସନ କରନ୍ତି, ସେ ଅର୍ଥବାନ ଅଟନ୍ତି । ହେ ମତି ମତାଂବର । ଏହାହିଁ ଆମ୍ଭର ସ୍ୱକୀୟ ମତ ଅଟେ । ବର୍ତ୍ତମାନ ନକୁଳ ଓ ସହଦେବ କିଛି କହିବା ପାଇଁ ଉନ୍ମୁଖ ହୋଇଅଛନ୍ତି, ଅତଏବ ଏମାନଙ୍କର ବାକ୍ୟ ଶ୍ରବଣ କରନ୍ତୁ । ୨୦ ।

ବୈଶମ୍ପାୟନ କହିଲେ—ଅନନ୍ତର ଧର୍ମ୍ମାର୍ଥ କୁଶଳ ମାଦ୍ରୀସୁତ ନକୁଳ ଓ ସହଦେବ ଉତ୍କୃଷ୍ଟ ବାକ୍ୟ କହିବାକୁ ଆରମ୍ଭ କଲେ ।୨୧।

ନକୁଳ ସହଦେବ କହିଲେ—ମନୁଷ୍ୟ ଶୟନ, ଉପବେଶନ ଏବଂ ବିଚରଣ କାଳରେ ମଧ୍ୟ ବିବିଧ ଉପାୟ ଦ୍ୱାରା ଅର୍ଥାଗମର ଚେଷ୍ଟା କରିବେ । ୨୨ । ପରମ ପ୍ରିୟ ଦୁର୍ଲଭ ଅର୍ଥ ପ୍ରାପ୍ତ ହେଲେ ପୁରୁଷ ଇହ-ଲୋକରେ କାମନାର ଫଳ ଭୋଗ କରେ, ଏହା ପ୍ରତ୍ୟକ୍ଷ ଦେଖାଅଛୁ । ଏଥିରେ ସନ୍ଦେହ ନାହିଁ । ୨୩ । ଧର୍ମ୍ମ ସହିତ ସଂଯୁକ୍ତ ଓ ଅର୍ଥ ସହିତ ଧର୍ମ୍ମ ଆପଣଙ୍କ ପକ୍ଷରେ ନିଶ୍ଚୟ ଅମୃତ ତୁଲ୍ୟ ଅଟେ । ସେଥିପାଇଁ ଏମାନେ ଆମ୍ଭମାନଙ୍କର ଅଭିମତ । ୨୪ । ଅର୍ଥହୀନ ମାନବର କାମ୍ୟ ବସ୍ତୁ ଭୋଗ ହୁଏ ନାହିଁ । ଏବଂ ଧର୍ମ୍ମହୀନ ବ୍ୟକ୍ତିର ଅର୍ଥ ନାହିଁ ଅତଏବ ଯେଉଁ ବ୍ୟକ୍ତି

ଅର୍ଥରୁ ବହିଷ୍କୃତ ହୋଇଅଛି, ଲୋକମାନେ ତାହାଠାରୁ ଉଦ୍ବିଗ୍ନ ହୁଅନ୍ତି । ।୨୫। ଅତଏବ ସଂଯତ ଚିତ୍ତ ବ୍ୟକ୍ତିଙ୍କର ଧର୍ମ୍ମକୁ ପ୍ରଧାନ କରି ଅର୍ଥ ସାଧନ କରିବା ଉଚିତ, ତାହାହେଲେ ବିଶ୍ବସ୍ତ ଜୀବଗଣଙ୍କ ମଧ୍ୟରେ ସମସ୍ତ ବିଶ୍ବସ୍ତ ରୂପରେ କଳ୍ପିତ ହୁଏ । ୧୬ । ପ୍ରଥମତଃ ଧର୍ମ୍ମ ଆଚରଣ କରିବ । ତଦନନ୍ତର ଧର୍ମ୍ମଯୁକ୍ତ ଅର୍ଥ ଉପାର୍ଜ୍ଜନ କରିବ । ପଶ୍ଚାତ୍ କାମର ସେବା କରିବ, କାରଣ ଯାହାର ପ୍ରୟୋଜନ ସିଦ୍ଧ ହୋଇଅଛି, ତାହା ପକ୍ଷରେ କାମ ଶ୍ରେଷ୍ଠ ଅଟେ । ୨୭ ।

ବୈଶମ୍ପାୟନ ବୋଇଲେ, ନକୁଳ ଓ ସହଦେବ ସେହିକଥା କହି ବିରତ ହୁଅନ୍ତେ ଭୀମସେନ ବକ୍ଷ୍ୟମାଣ ବାକ୍ୟ କହିବାକୁ ଆରମ୍ଭ କଲେ । ୨୮ ।

ଭୀମ କହିଲେ—ନିଷ୍କାମ ପୁରୁଷ ଅର୍ଥ କାମନା କରନ୍ତି ନାହିଁ । କାମହୀନ ବ୍ୟକ୍ତି ଧର୍ମ୍ମାଭିଳାଷୀ ହୁଅନ୍ତି ନାହିଁ ଏବଂ ଯାହାଙ୍କର କାମ ନାହିଁ, ସେ କୌଣସି ବିଷୟ କାମନା କରନ୍ତି ନାହିଁ । ଅତଏବ କାମ ଉତ୍କୃଷ୍ଟ ଅଟେ । ୨୯ । ଋଷିମାନେ କାମନାବଶତଃ ଫଳ ମୂଳ ପଳାଶ ପ୍ରଭୃତି ଓ ବାୟୁ ଭକ୍ଷଣ କରି ନିତାନ୍ତ ସଂଯତ ଚିତ୍ତରେ ତପସ୍ୟା ନିମିତ୍ତ ସମାହିତ ହୋଇଥାନ୍ତି । ୩୦ । ଅପରେ ସ୍ବାଧ୍ୟାୟ ପାରଗ ହୋଇ ସୁଦ୍ଧା କାମନାବଶତଃ ବେଦ ବେଦାନ୍ତ ପ୍ରଭୃତି ଶାସ୍ତ୍ରାନୁଶୀଳନରୁ ବିରତ ହୁଅନ୍ତି । କେହି କେହି ଶ୍ରଦ୍ଧା ସମ୍ପାଦିତ ଯଜ୍ଞ କ୍ରିୟାରେ କାମନା ବଶତଃ ଦାନ ଓ ପ୍ରତିଗ୍ରହ କରନ୍ତି । ୩୧ । ବଣିକ, କୃଷକ, ପଶୁପାଳକ, କାରୁକର, ଶିଳ୍ପକର ଏବଂ ଯେଉଁମାନେ ଦେବକର୍ମ କରିଥାନ୍ତି, ସେମାନେ ସମସ୍ତେ କାମନାନୁସାରେ କର୍ମ୍ମରେ ନିଯୁକ୍ତ ହୁଅନ୍ତି । ୩୨ । କୌଣସି କୌଣସି ମାନବ କାମନାଯୁକ୍ତ ହୋଇ ସାଗର ଗର୍ଭରେ ପ୍ରବେଶ କରନ୍ତି । କାମର ଆକାର ବହୁବିଧ, ସମସ୍ତ ପଦାର୍ଥ କାମଦ୍ୱାରା ବ୍ୟାପ୍ତ ରହିଅଛି । ୩୩ । ହେ ମହାରାଜ ! କାମରୁ ଶ୍ରେଷ୍ଠ ଅନ୍ୟ କିଛି ନାହିଁ ନ ଥିଲା କି ହେବନାହିଁ । କାମହିଁ ସାର ପଦାର୍ଥ ଅଟେ । ଧର୍ମ୍ମ ଓ ଅର୍ଥ କାମରେ ଅବସ୍ଥିତ ରହିଅଛି । । ୩୪ । ଦଧିରୁ ଯେପରି ନବନୀତ, ପିନ୍ୟାକ ଫଳରୁ ଯେପରି ତୈଳ ତକ୍ରରୁ ଯେପରି ଘୃତ, କାଷ୍ଠରୁ ପୁଷ୍ପ ଓ ଫଳ ଏବଂ ପୁଷ୍ପରୁ ଯେପରି ମଧୁ ଶ୍ରେଷ୍ଠ ଅଟେ, ଧର୍ମ୍ମ ଓ ଅର୍ଥ ମଧ୍ୟରେ ସେହିପରି କାମ ଉତ୍କୃଷ୍ଟ ଅଟନ୍ତି । କାମ ଧର୍ମ୍ମ ଓ ଅର୍ଥର କାରଣ ଅଟେ । ଏବଂ କାମ ଧର୍ମ୍ମ ଓ ଅର୍ଥ ସ୍ୱରୂପ । ୩୬

କାମନା ନ ଥିଲେ ବ୍ରାହ୍ମଣମାନେ ବ୍ରାହ୍ମଣମାନଙ୍କୁ ସୁବର୍ଣ୍ଣ ଓ ଅର୍ଥ ପ୍ରଦାନ କରନ୍ତି ନାହିଁ ଏବଂ ଲୋକମାନଙ୍କର ବିବିଧ ଚେଷ୍ଟା ସମ୍ପନ୍ନ ହୁଏ ନାହିଁ । ଅତଏବ ଧର୍ମ୍ମ ଅର୍ଥ ଓ କାମ ଏହି ତ୍ରିବର୍ଗ ମଧ୍ୟରେ କାମ ପ୍ରଧାନ ରୂପରେ ଦୃଷ୍ଟ ହୁଏ । ୩୭ । ହେ ରାଜନ୍ । ଆପଣ ସୁଗନ୍ଧ ବେଶଭୂଷା ଦ୍ୱାରା ବିଭୂଷିତ ମଦମତ୍ତ ରମଣୀୟ ଦର୍ଶନ ରମଣୀମାନଙ୍କ ସହିତ କାମନାନୁସାରେ କ୍ରୀଡ଼ା କରନ୍ତୁ । ଆମ୍ଭମାନଙ୍କ ପକ୍ଷରେ କାମ ଉତ୍କୃଷ୍ଟ ଅଟେ । ୩୮ । ହେ ମହାରାଜ । ଅମ୍ଭେ ଅମୂଳ ବିବେଚନା କରି ବୁଦ୍ଧିଦ୍ୱାରା ସ୍ଥିର କରିଅଛୁଁ, ଅତଏବ ଆପଣଙ୍କର ଏ ବିଷୟରେ ବିଚାର କରିବାର ଆବଶ୍ୟକ ନାହିଁ । ଅମ୍ଭର ଏହି ଅନୃଶଂସ୍ୟ ବାକ୍ୟ ଶୂନ୍ୟଗର୍ଭ ନୁହେ । ଏଥିପାଇଁ ସାଧୁମାନଙ୍କ କର୍ତ୍ତୃକ ଏହା ସଂଗୃହୀତ ହୋଇଥାଏ । ୩୯ । ଧର୍ମ୍ମ, ଅର୍ଥ ଓ କାମକୁ ସମଭାବରେ ସେବା କରିବା ଉଚିତ । ଯେଉଁ ବ୍ୟକ୍ତି ଏକର ସେବା କରନ୍ତି, ସେ ଜଘନ୍ୟ ଅଟନ୍ତି, ଆଉ ଯେଉଁ ବ୍ୟକ୍ତି ପ୍ରଜ୍ଞାବାନ୍ ସହୃଦୟ ଚନ୍ଦନଗନ୍ଧିତ ମାଲ୍ୟ ଓ ଆଭରଣ ବିଭୂଷିତ ହୋଇ ଧର୍ମ୍ମ, ଅର୍ଥ, ଓ କାମ ଏହି ତ୍ରିବର୍ଗ ସେବାରେ ରତ ହୁଅନ୍ତି, ସେ ଉତ୍ତମ ମନୁଷ୍ୟ ଅଟନ୍ତି । ୪୦ ।

ବୈଶମ୍ପାୟନ ବୋଇଲେ, ଅନନ୍ତର ଭୀମସେନ ବୀରଗଣଙ୍କ ନିକଟରେ ସଂକ୍ଷିପ୍ତ ଅଥଚ ବିସ୍ତାରିତ ବଚନରେ ନିଜର ଅଭିପ୍ରାୟକୁ ବ୍ୟକ୍ତ କରି ବିରତ ହେଲେ । ୪୧ । ପରିଶେଷରେ ଶାସ୍ତ୍ରଜ୍ଞ ଓ ଧାର୍ମ୍ମିକ ଗଣଙ୍କର ବରିଷ୍ଠ ଯୁଧିଷ୍ଠିର ବିଦୁର ପ୍ରଭୃତିଙ୍କର ବାକ୍ୟମାନ ମୁହୂର୍ତ୍ତକାଳ ମଧ୍ୟରେ ସମ୍ୟକ ଅନୁଶୀଳନ କରି ସତ୍ୟ ସ୍ମରଣ ପୂର୍ବ୍ବକ କହିଲେ । ୪୨ ।

ଯୁଧିଷ୍ଠିର କହିଲେ—ଆପଣମାନେ ସମସ୍ତେ ଧର୍ମ୍ମଶାସ୍ତ୍ରମାନଙ୍କୁ ଶ୍ରବଣ କରି ଅଛନ୍ତି ଏବଂ ସମସ୍ତ ପ୍ରମାଣକୁ ବିଦିତ ହୋଇ ଅଛନ୍ତି, ଏଥିରେ ସଂଶୟ ନାହିଁ । ଅମ୍ଭେ ଯାହା ଜାଣିବାକୁ ଇଚ୍ଛା କରି କହିଥିଲୁ, ତାହାର ସିଦ୍ଧାନ୍ତ ବାକ୍ୟ ଶ୍ରବଣ କଲୁଁ । ଆପଣମାନେ ଯାହା କହିଲେ ତାହା ଅବଶ୍ୟ ନିଶ୍ଚିତ ବାକ୍ୟ ଅଟେ । କିନ୍ତୁ ଅମ୍ଭେ ଯାହା କହୁଅଛୁଁ, ତାହା ଅନନ୍ୟ ଚିତ୍ତ ହୋଇ ଶ୍ରବଣ କରନ୍ତୁ । ୪୩ । ଯେଉଁ ମନୁଷ୍ୟ ପାପ ପୁଣ୍ୟ, ଧର୍ମ ଅର୍ଥ ଏବଂ କାମରେ ଅନୁରତ ହୁଅନ୍ତି, ସେ ଦୋଷହୀନ ଅଟନ୍ତି ଏବଂ ଯେ କାଞ୍ଚନ ଓ ଲୋଷ୍ଟ୍ରରେ ସମଦର୍ଶୀ ଅଟନ୍ତି ସେ ସୁଖ, ଦୁଃଖ

ଓ ଅର୍ଥ ସିଦ୍ଧିରୁ ବିମୁକ୍ତ ହୁଅନ୍ତି । ୪୪ । ଜାତିସ୍ମର ଓ ଜରାବିକାର ଯୁକ୍ତ ମାନବଗଣ ପୁନଃ ପୁନଃ ସୁଖଦୁଃଖାଦି ଦ୍ୱାରା ପ୍ରତିବୋଧିତ ହୋଇ ମୋକ୍ଷର ପ୍ରଶଂସା କରନ୍ତି, କିନ୍ତୁ ଅମ୍ଭେମାନେ ମୋକ୍ଷ ବିଷୟ କିଛି ଜାଣୁ ନାହୁଁ । ୪୫ । ଭଗବାନ ସ୍ୱୟମ୍ଭୂ କହି ଅଛନ୍ତି, ଯେ ରାଗ ଦ୍ୱେଷାଦି ବିଶିଷ୍ଟ ସ୍ନେହଯୁକ୍ତ ବ୍ୟକ୍ତିର ମୁକ୍ତି ହୁଏ ନାହିଁ । ନିର୍ମମ ପଣ୍ଡିତଗଣ ନିର୍ବାଣ ପରାୟଣ ହୁଅନ୍ତି । ଅତଏବ ପ୍ରିୟ ଓ ଅପ୍ରିୟ ବସ୍ତୁରେ ଆସକ୍ତ କରିବ ନାହିଁ । ୪୬ । ମୋକ୍ଷ ସାଧନର ଏହି ଉତ୍କୃଷ୍ଟ ଉପାୟ ଯେ, ଅମ୍ଭେ ଯଦୃଚ୍ଛା ପ୍ରବୃତ୍ତ ହୋଇ ସୁଦ୍ଧା ବିଧାତା ଅମ୍ଭଙ୍କୁ ଯେଉଁ ବିଷୟରେ ଯେପରି ଭାବରେ ନିଯୁକ୍ତ କରନ୍ତି, ଅମ୍ଭେ ସେହିପରି କରୁଅଛୁଁ । ବିଧାତା ସମସ୍ତ ପ୍ରାଣୀ-ମାନଙ୍କୁ ସମସ୍ତ ବିଷୟରେ ନିଯୁକ୍ତ କରୁ ଅଛନ୍ତି । ଅତଏବ ବିଧି ବଳବାନ ଅଟନ୍ତି । ଏହା ସମସ୍ତଙ୍କର ଅବଗତ ହେବା ଉଚିତ । ୪୭ । କର୍ମ ଦ୍ୱାରା ଅପ୍ରାପ୍ତ ଅର୍ଥ ପ୍ରାପ୍ତ ହୁଏ ନାହିଁ । ଯାହା ଅବଶ୍ୟମ୍ଭାବୀ ତାହା ପ୍ରାପ୍ତ ହୁଏ, ଏହା ଜାଣିବା କର୍ତ୍ତବ୍ୟ ଅଟେ । ଧର୍ମ, ଅର୍ଥ ଓ କାମ ଏହି ତ୍ରିବର୍ଗ ବିହୀନ ମନୁଷ୍ୟ ମଧ୍ୟ ଅର୍ଥ ଲାଭ କରେ, ଅତଏବ ଲୋକମାନଙ୍କର ହିତ ନିମିତ୍ତ ବିଧାତା ଏହି ବିଷୟକୁ ଅତି ଗୋପନୀୟ କରି ରଖି ଅଛନ୍ତି । ୪୮ ।

ବୈଶମ୍ପାୟନ ବୋଇଲେ—ଅନନ୍ତର ଭୀମସେନ ପ୍ରଭୃତି ଯୁଧିଷ୍ଠିରଙ୍କ ଠାରୁ ସେହିସବୁ ଯୁକ୍ତିଯୁକ୍ତ ଉତ୍କୃଷ୍ଟ ବାକ୍ୟ ଶ୍ରବଣ କରି ହର୍ଷାନ୍ୱିତ ହେଲେ ଏବଂ କୃତାଞ୍ଜଳିପୂର୍ବରେ ସେହି କୁରୁପ୍ରବୀର ଯୁଧିଷ୍ଠିରଙ୍କୁ ପ୍ରଣାମ କଲେ । ୪୯ । ହେ ରାଜନ୍ ! ସେହିସବୁ ନରେନ୍ଦ୍ର-ଗଣ ସ୍ୱମୁଖରୁ ବର୍ଣ୍ଣାକ୍ଷର ବିଭୂଷିତ ମନୋନୁଗତ ବାକ୍ୟ କଣ୍ଟକ ବିବର୍ଜିତ ଯୁଧିଷ୍ଠିରଙ୍କୁ ପୂର୍ବକଥିତ କଥାମାନ ଶ୍ରବଣ କରି ଅତଶୟ ପ୍ରଶଂସା କଲେ । ୫୦ । ଖ୍ୟାତି-ସମ୍ପନ୍ନ ମହାମନା ଧର୍ମପୁତ୍ର ଯୁଧିଷ୍ଠିର ମଧ୍ୟ ସେମାନଙ୍କର ଉକ୍ତ ବାକ୍ୟରେ ବିଶ୍ୱାସ ହେବାର ଦେଖି ପ୍ରଶଂସା କଲେ । ତଦନନ୍ତର ସେ ଅହୀନଚେତା ଭୀଷ୍ମଦେବଙ୍କ ନିକଟକୁ ଆସି ପୁନର୍ବାର ପରମ ଧର୍ମ ବିଷୟ ପ୍ରଶ୍ନ କଲେ । ୫୧ ।

---

## ଅଧ୍ୟାୟ—୧୬୮

ଯୁଧିଷ୍ଠିର କହିଲେ—ହେ ମହାପ୍ରାଜ୍ଞ ପିତାମହ ! ଆପଣ କୌରବମାନଙ୍କର ପ୍ରୀତିବର୍ଦ୍ଧନ କରନ୍ତି । ଅତଏବ ଆମ୍ଭେ ଆଜ କିଛି ପ୍ରଶ୍ନ କରୁଅଛୁଁ, କୀର୍ତ୍ତନ କରନ୍ତୁ । କୀଦୃଶ ମନୁଷ୍ୟମାନେ ପ୍ରିୟଦର୍ଶନ ଅଟନ୍ତି, କେଉଁମାନଙ୍କ ସହିତ ପରମ ପ୍ରୀତି ହୁଏ । ପରିଣାମ ଓ ବର୍ତ୍ତମାନ କାଳରେ କେଉଁମାନେ ହିତକାରୀ ହୁଅନ୍ତି, ଆପଣ ଆମ୍ଭଠାରେ ସେହି ସବୁ ବ୍ୟକ୍ତିଙ୍କ କଥା ବର୍ଣ୍ଣନ କରନ୍ତୁ । ୨ । ଆମ୍ଭର ଏହିପରି ବିବେଚନା ହୁଏ ଯେ ଯେଉଁ ସ୍ଥାନରେ ସୁହୃତ୍ କାର୍ଯ୍ୟରେ ଲଗିପାରନ୍ତି, ସେଠାରେ ପ୍ରଚୁର ଧନ, ସମ୍ବନ୍ଧୀ ଓ ବନ୍ଧୁବାନ୍ଧବମାନେ ମଧ୍ୟ କାର୍ଯ୍ୟରେ ଲଗନ୍ତି ନାହିଁ । ୩ । ହିତ ବଚନ ଶ୍ରବଣ କରେ ଏବଂ ହିତକାର୍ଯ୍ୟ କରେ ଏପରି ସୁହୃତ୍ ଅତି ଦୁର୍ଲ୍ଲଭ । ହେ ଧାର୍ମିକଶ୍ରେଷ୍ଠ ପିତାମହ ! ଆପଣ ଏହି ସମୁଦାୟ ପ୍ରଶ୍ନର ବିଶଦ ବ୍ୟାଖ୍ୟା କରନ୍ତୁ । ୦ ।

ଭୀଷ୍ମ କହିଲେ—ହେ ଧର୍ମରାଜ ! କେଉଁ କେଉଁ ପୁରୁଷ ସହିତ ମିତ୍ରତା କରିବା କର୍ତ୍ତବ୍ୟ ଏବଂ କେଉଁ କେଉଁ ପୁରୁଷ ସହିତ ମୈତ୍ରୀ ବନ୍ଧନ ଅକର୍ତ୍ତବ୍ୟ, ତାହା ପ୍ରକୃତ ରୂପରେ କହୁଅଛୁଁ ଧ୍ୟାନ ଦେଇ ଶ୍ରବଣ କର ! ୫ ।

ହେ ନରନାଥ ! ଯେଉଁମାନେ ଲୁବ୍ଧ, କ୍ରୂର, ଧର୍ମତ୍ୟାଗୀ, ଧୂର୍ତ୍ତ, ଶଠ, କ୍ଷୁଦ୍ରାଶୟ, ପାପାଚାରୀ, ସର୍ବଶଙ୍କୀ, ଅଳସ, ଦୀର୍ଘସୂତ୍ରୀ, ଅନୃଜୁ, ଲୋକନିନ୍ଦିତ, ଗୁରୁଦାର ହାରକ, ବିପଦଗ୍ରସ୍ତ ବନ୍ଧୁଜନ ପରିତ୍ୟାଗୀ, ଦୁରାତ୍ମା, ନିର୍ଲ୍ଲଜ୍ଜ, ସର୍ବ ପ୍ରକାର ପାପଦର୍ଶୀ, ନାସ୍ତିକ, ବେଦନିନ୍ଦୁକ, ଜନ ସମାଜରେ ଅଜିତେନ୍ଦ୍ରିୟ ହେବା, ସ୍ୱେଚ୍ଛାଚାରୀ, ଅସତ୍ୟଭାଷୀ, ସମସ୍ତଙ୍କର ଦୋଷ ପାତ୍ର, ନିଜ ପ୍ରତିଜ୍ଞାରେ ଅଟଳ ରହିବା ବ୍ୟକ୍ତି, ପିଶୁନ, ଅସଂସ୍କୃତ ବୁଦ୍ଧି, ମତ୍ସରୀ, ପାପ ନିଶ୍ଚୟ, ଦୁଃଶୀଳ, ଅଶୁଦ୍ଧଚିତ୍ତ, ନୃଶଂସ ଓ କିତବ ଚିତ୍ତ ଅଟନ୍ତି, ଯେଉଁ ବ୍ୟକ୍ତି ନିତ୍ୟ ମିତ୍ରଗଣଙ୍କର ଅପକାର କରେ ଓ ଅନ୍ୟର ଅର୍ଥ ଇଚ୍ଛା କରେ, ଯେଉଁ ମନ୍ଦବୁଦ୍ଧି ବ୍ୟକ୍ତିକୁ ଯଥାଶକ୍ତି ଦାନ କଲେ ମଧ୍ୟ ସେ ତୁଷ୍ଟ ହୁଏ ନାହିଁ, ଯେଉଁ ବ୍ୟକ୍ତି ସତତ ମିତ୍ରପ୍ରତି ଅସନ୍ତୋଷ ପ୍ରକାଶ କରେ, ଯେଉଁ ଚଞ୍ଚଳ ଚିତ୍ତ ମାନବ ଅକାରଣ କ୍ରୋଧ କରେ ଏବଂ ଅକସ୍ମାତ ବିରୋଧ

କରେ, ଯେଉଁ ପାପାତ୍ମା ମାନବ ହିତୈଷୀ ସୁହୃଦଗଣଙ୍କୁ ଶୀଘ୍ର ପରିତ୍ୟାଗ କରେ, ଯେଉଁ ମିତ୍ର ଦ୍ୱେଷୀ ମୂଢ଼ ମନୁଷ୍ୟ ଅଳ୍ପମାତ୍ର ଅପକାର କିମ୍ବା ଅଜ୍ଞାନ ବଶତଃ କୌଣସି କାର୍ଯ୍ୟକରି ତତ୍କାଳରେ ମିତ୍ରର ଉପାସନା କରେ, ଯେଉଁ ବ୍ୟକ୍ତି ମିତ୍ର ମୁଖେ ଶତ୍ରୁ, ଯେ ବିପଥଗତ ଦୃଷ୍ଟି ଓ କୁଟିଳ ଦର୍ଶୀ ଅଟେ, ଯେ ହିତକାର୍ଯ୍ୟାନୁଷ୍ଠାନରେ ବିରକ୍ତ ନ ହେବା ମାନବଙ୍କୁ ପରିତ୍ୟାଗ କରେ, ଯେଉଁ ବ୍ୟକ୍ତି ସୁରାପାୟୀ, ଦ୍ୱେଷକାରୀ, କ୍ରୋଧୀ, ନିର୍ଦ୍ଦୟୀ, କ୍ରୂର, ପରୋପତାପୀ, ମିତ୍ରଦ୍ରୋହୀ, ପ୍ରାଣି ହିଂସାରତ, କୃତଘ୍ନ, ଛିଦ୍ରାନ୍ୱେଷୀ ଅଟେ ଏବଂ ଯେଉଁ ବ୍ୟକ୍ତି ଜନସମାଜରେ ଅଧମ ରୂପରେ ବିଖ୍ୟାତ ଅଛି, ସେମାନଙ୍କ ସହିତ କଦାପି ମିତ୍ରତା କରିବା ଉଚିତ ନୁହେଁ । ଯେ ଅନ୍ୟର ଛିଦ୍ର ଅନ୍ୱେଷଣ କରେ, ସେପରି ମନୁଷ୍ୟ ସଙ୍ଗରେ ସନ୍ଧି କରିବା ମଧ୍ୟ ଅନୁଚିତ । ସମ୍ପ୍ରତି ଯେଉଁମାନଙ୍କ ସହିତ ମିତ୍ରତା କରିବା କର୍ତ୍ତବ୍ୟ, ତାହା ଆମ୍ଭଠାରୁ ଶ୍ରବଣ କର ।

ଯେଉଁମାନେ ସତ୍‌କୁଳସମ୍ଭୂତ, ବାକ୍ୟ ସମ୍ପନ୍ନ, ଜ୍ଞାନ ବିଜ୍ଞାନ ଯୁକ୍ତ, ରୂପ ଓ ଗୁଣବନ୍ତ, ଅଲୁବ୍‌ଧ, ଜିତଶ୍ରମ, ସୁମିତ୍ର, କୃତଜ୍ଞ, ସର୍ବଜ୍ଞ, ଲୋଭ ବିବର୍ଜିତ, ମଧୁର ସ୍ୱଭାବ ସମ୍ପନ୍ନ, ଗୁଣ ସମ୍ପନ୍ନ, ସତ୍ୟସନ୍ଧ, ଜିତେନ୍ଦ୍ରିୟ, ସର୍ବଦା ବ୍ୟାୟାମଶୀଳ, କୁଳୀନ ସନ୍ତାନ, ଧୁରନ୍ଧର, ନିଜ କୁଳର ସମ୍ମାନ ରକ୍ଷାରେ ସମର୍ଥ, ଦୋଷ ବିଯୁକ୍ତ ଓ ଜନ-ସମାଜରେ ବିଖ୍ୟାତ ଅଟନ୍ତି, ସେହି ମାନବଗଣ ନୃପତିଙ୍କର ଗ୍ରାହ୍ୟ ହୋଇଥାନ୍ତି । ୧୯ ।

ପ୍ରଭୋ ! ଯେ ନିଜର ଶକ୍ତି ଅନୁସାରେ ଠିକ୍ ଠିକ୍ କର୍ତ୍ତବ୍ୟ ପାଳନ କରନ୍ତି ଓ ସନ୍ତୁଷ୍ଟ ରହନ୍ତି, ଅକାରଣ କ୍ରୋଧ ଓ ଅକାତ ବିରାଗ ବିଶିଷ୍ଟ ହୁଅନ୍ତି ନାହିଁ, ସେହି ଅର୍ଥ କୋ:ବିଦ ମାନବଗଣ ମତନ ମତନ ବିରକ୍ତ ହୋ[illegible] ମଧ ଦୂଷିତ ନୁହନ୍ତି । ସେମାନେ ଆପଣାକୁ ପୀଡ଼ା ପ୍ରଦାନ କରି ସୁଦ୍ଧା ସ୍ନ[illegible]ଦ କାର୍ଯ୍ୟ ସମ୍ପାଦନ କରନ୍ତି । ଯେପରି ରଞ୍ଜିତ ହୋଇଥିବା ପରମ [illegible]ଗା ନିଜର ବର୍ଣ୍ଣ ତ୍ୟାଗ କରେ ନାହିଁ, ସେମାନେ ସେହିପରି ମିତ୍ରଗଣଙ୍କ ଠାରୁ ବିରକ୍ତ ହୁଅନ୍ତି ନାହିଁ । ୨୧ । ଯେ କ୍ରୋଧବଶତଃ ମିତ୍ରର ଅନର୍ଥ କରିବାକୁ ପ୍ରବୃତ୍ତ ହୁଅନ୍ତି ନାହିଁ ଏବଂ ଲୋଭ ଓ ମୋହର ବଶୀଭୂତ ହୋଇ ମିତ୍ରର ଯୁବତୀମାନଙ୍କ ଠାରେ ଆସକ୍ତି ପ୍ରଦର୍ଶନ କରନ୍ତି ନାହିଁ, ଏବଂ ସୁହୃଦଗଣଙ୍କ ପ୍ରତି ଦୃଢ଼ ଭକ୍ତି ହୋଇଥାନ୍ତି ଯେ ମିତ୍ରର

ବିଶ୍ୱାସପାତ୍ର ଓ ଧର୍ମପ୍ରତି ଅନୁରକ୍ତ ଅଟନ୍ତି, ଯାହାଙ୍କ ଦୃଷ୍ଟିରେ ମାଟିର ଢେଲା ଓ ସୁନା ସମାନ ଅଟେ, ଯେଉଁସବୁ ମାନବଗଣ ଜ୍ଞାନଶାସ୍ତ୍ର ନିମିତ୍ତ ଅଭିମାନ ଓ ନିଜ ବିଭୂଷଣ ପରିତ୍ୟାଗ ପୂର୍ବକ ପରିଜନ ସମଭିବ୍ୟାହାରରେ ସତତ ପ୍ରଭୁର କାର୍ଯ୍ୟରେ ତତ୍ପର ହୁଅନ୍ତି, ତାଦୃଶ ଶ୍ରେଷ୍ଠ ପୁରୁଷମାନଙ୍କ ସହିତ ଯେଉଁ ରାଜା ମିତ୍ରତା କରନ୍ତି, ଚନ୍ଦ୍ରଙ୍କର କୌମୁଦୀ ପ୍ରାୟ ତାହାଙ୍କର ରାଜ୍ୟ ସେହିପରି ବିସ୍ତୀର୍ଣ୍ଣ ହୁଏ ।

ଯେ ପ୍ରତିଦିନ ଶାସ୍ତ୍ରଚର୍ଚ୍ଚା କରନ୍ତି, କ୍ରୋଧକୁ ନିଜ ଆୟତ୍ତରେ ରଖନ୍ତି ଏବଂ ଯୁଦ୍ଧରେ ଅଟଳ ରହନ୍ତି ଓ ଯେ ଉଚ୍ଚକୁଳସମ୍ଭୂତ ଶୀଳସମ୍ପନ୍ନ ଓ ଶ୍ରେଷ୍ଠଗୁଣ ସମ୍ପନ୍ନ, ଏହିପରି ପ୍ରଧାନ ପୁରୁଷଗଣଙ୍କ ସହିତ ମିତ୍ରତା କରିବା ବିଧେୟ ।

ହେ ଅନଘ ନରପାଳ ! ପୂର୍ବେ ଆମ୍ଭେ ଯେଉଁମାନଙ୍କୁ ଦୋଷଯୁକ୍ତ ବୋଲି କହିଅଛୁଁ, କୃତଘ୍ନ ସେମାନଙ୍କ ମଧ୍ୟରେ ଅଧମ ଅଟେ, ସେମାନେ ମିତ୍ରଙ୍କୁ ହତ୍ୟା କରିବାକୁ ମଧ୍ୟ ପଶ୍ଚାତ୍ପଦ ହୁଅନ୍ତି ନାହିଁ । ସେହି ସବୁ ଦୁରାଚାର ବ୍ୟକ୍ତିଙ୍କୁ ଦୂରରୁ ସମସ୍ତଙ୍କର ପରିତ୍ୟାଗ କରିବା ଉଚିତ, ଏହା ନିଶ୍ଚୟ ଜାଣିବ । ୨୭ ।

ଯୁଧିଷ୍ଠିର କହିଲେ—ପିତାମହ ! ଆପଣ ମିତ୍ରଦ୍ରୋହୀ ଓ କୃତଘ୍ନଙ୍କ ବିଷୟ ଯାହା କହିଲେ, ତାହାର ପ୍ରକୃତ ଇତିହାସ ବିସ୍ତୃତ ଭାବେ ଶୁଣିବାକୁ ଅଭିଳାଷ କରୁଅଛୁ, ଅତଏବ ଆପଣ କୃପାକରି ଆମ୍ଭଠାରେ ତାହା କୀର୍ତ୍ତନ କରନ୍ତୁ । ୨୮ ।

ଭୀଷ୍ମ କହିଲେ—ହେ ମନୁଜାଧିପ ! ଉତ୍ତର ଦିଗରେ ମ୍ଳେଚ୍ଛ ଦେଶରେ ଯେଉଁ ଘଟଣା ଘଟିଥିଲା, ଆମ୍ଭେ ହୃଷ୍ଟ ହୋଇ ତୁମ୍ଭଠାରେ ସେହି ପୁରାତନ ଇତିହାସକୁ ବର୍ଣ୍ଣନ କରୁଅଛୁଁ, ଶ୍ରବଣ କର । ୨୯ । ମଧ୍ୟ-ଦେଶୀୟ ଗୌତମ ନାମା କୌଣସି ବ୍ରାହ୍ମଣ ବେଦୋକ୍ତ କର୍ମ ବିବର୍ଜିତ ଗୋଟିଏ ଉନ୍ନତଶୀଳ ଗ୍ରାମକୁ ନିରୀକ୍ଷଣ କରି ଭିକ୍ଷା ଆକାଙ୍‌କ୍ଷାରେ ତହିଁରେ ପ୍ରବେଶ କରିଥିଲେ । ୩୦ । ସେଠାରେ ସର୍ବବର୍ଣ୍ଣ ବିଶେଷଜ୍ଞ ବ୍ରାହ୍ମଣନିଷ୍ଠ, ସତ୍ୟସନ୍ଧ ଦାନ ନିରତ ଗୋଟିଏ ଧନବାନ ଦସ୍ୟୁ ବାସ କରେ । ୩୧ । ବ୍ରାହ୍ମଣ ତାହା ଗୃହରେ ଉପନୀତ ହୋଇ ଭିକ୍ଷା ପ୍ରାର୍ଥନା

କଲେ । ୩୨ । ଦସ୍ୟୁ ସେହି ବିପ୍ରଙ୍କୁ ରହିବା ନିମନ୍ତେ ଗୋଟିଏ ଘର ଦେଇ, ବର୍ଷକ ନିମନ୍ତେ ଖାଦ୍ୟ ଦ୍ରବ୍ୟ ବନ୍ଦୋବସ୍ତ କରିଦେଲେ ଓ ଉପଯୁକ୍ତ ନୂତନ ବସ୍ତ୍ର ଏବଂ ତାଙ୍କ ସେବା ନିମନ୍ତେ ପତିବିହୀନା ଯୁବତୀ ନାରୀ ପ୍ରଦାନ କଲେ । ୩୩ ।

ହେ ରାଜନ ! ଦ୍ୱିଜ ଚେତେଲବେଳେ ଦସ୍ୟୁଠାରୁ ଏହିସବୁ ପ୍ରାପ୍ତ ହୋଇ ହୃଷ୍ଟ ଚିତ୍ତରେ ସେଠାରେ ରମଣୀ ସହିତ ପରମ ସୁଖରେ କାଳ ଯାପନ କଲେ । ୩୪ । ସେ ସେଠାରେ ରହି ଦାସୀର କୁଟୁମ୍ବମାନଙ୍କୁ ସାହାଯ୍ୟ କଲେ ଓ ସେହି ସମୃଦ୍ଧିସମ୍ପନ୍ନ ଶବର ଗୃହରେ ବହୁ ବର୍ଷର ବାସ କଲେ । ୩୫ । କ୍ରମଶଃ ବାଣବେଧରେ ତାହାଙ୍କର ଅତିଶୟ ଯତ୍ନ ହେଲା । ହେ ରାଜନ୍ ! ସେ ଦସ୍ୟୁମାନଙ୍କ ପରି ନିତ୍ୟ ବନଚର ହଂସମାନଙ୍କୁ ନିହତ କଲେ । ଗୌତମ କ୍ରମେ କ୍ରମେ ହିଂସାପଟୁ, ଦୟାହୀନ ଓ ସତତ ପ୍ରାଣୀବଧରେ ରତଥାଇ ଦସ୍ୟୁଗଣଙ୍କର ସହବାସବଶତଃ ସେମାନଙ୍କ ସଦୃଶ ହୋଇ ପଡ଼ିଲେ । ତତ୍କାଳରେ ତାଦୃଶ ଭାବରେ ବହୁ ବିହଙ୍ଗମ ବଧ କରି ସେ ଅନାୟସରେ ଦସ୍ୟୁ ଗୃହରେ ବାସ କରୁଁ କରୁଁ ଅନେକ ମାସ ଅତୀତ ହେଲା । ତଦନନ୍ତର ଏକଦା ଜଟାଧାରୀ-ଅଜୀନଧାରୀ, ସ୍ୱାଧ୍ୟାୟ ପରାୟଣ, ଶୁଚି, ବିନୀତ, ନିୟତାହାର, ବ୍ରହ୍ମନିଷ୍ଠ ଓ ବେଦପାରଗ ଅନ୍ୟ ଗୋଟିଏ ବ୍ରାହ୍ମଣ ସେହି ଦେଶକୁ ଆଗମନ କଲେ । ସେହି ବ୍ରହ୍ମଚାରୀ ଗୌତମ ବିପ୍ରଙ୍କର ଦେଶୀୟ ଏବଂ ତାହାଙ୍କର ଏକାନ୍ତ ପ୍ରିୟ ଓ ସଖା ଥିଲେ । ଗୌତମ ଯେଉଁ ଦସ୍ୟୁ ଗ୍ରାମରେ ବାସ କରୁଥିଲେ, ସେ ମଧ୍ୟ ସେଠାରେ ଉପସ୍ଥିତ ହେଲେ । ୪୧ । ସେ ଶୂଦ୍ର ଅନ୍ନ ଗ୍ରହଣ କରନ୍ତି ନାହିଁ ବୋଲି ସେହି ଦସ୍ୟୁ ସମାକୀର୍ଣ୍ଣ ଗ୍ରାମରେ ବିପ୍ରଗୃହ ଅନ୍ୱେଷଣ ପୂର୍ବକ ସର୍ବତ୍ର ବିଚରଣ କଲେ । ୪୨ । ବୁଲି ବୁଲି ସେହି ଶ୍ରେଷ୍ଠ ବ୍ରାହ୍ମଣ ଗୌତମର ଗୃହରେ ଉପସ୍ଥିତ ହେଲେ, ଇତ୍ୟବସରରେ ଗୌତମ ମଧ୍ୟ ଶିକାରରୁ ପ୍ରତ୍ୟାବର୍ତ୍ତନ କରୁଥିଲେ, ତଦନନ୍ତର ସେହି ସେ ଦୁହିଁଙ୍କର ପରସ୍ପର ସାକ୍ଷାତ ହେଲା । ୪୩ ।

ନବାଗତ ଦ୍ୱିଜବର ଗୌତମଙ୍କ ସ୍କନ୍ଧ ଦେଶରେ ହଂସଭାର ଏବଂ ଧନୁ ଓ ଅସ୍ତ୍ର ଧାରଣ ପୂର୍ବକ ରୁଧିରାକ୍ତ ଦେହରେ ବ୍ରାହ୍ମଣତ୍ୱ ଭ୍ରଷ୍ଟ ରାକ୍ଷସ ସଦୃଶ ଗୃହ ଦ୍ୱାରରେ ଉପସ୍ଥିତ ହେବାର ଦେଖି ପୂର୍ବ ପରିଚୟ ବଶତଃ ତାହାଙ୍କୁ ଚିହ୍ନିପାରି ଲଜ୍ଜିତ ହୋଇ କହିଲେ ଯେ, "ତୁମ୍ଭେ ବଂଶର ଧୁରନ୍ଧର

ବିପ୍ର ହୋଇ ମୋହବଶତଃ କି କାର୍ଯ୍ୟ କରୁଅଛ ? ମଧ୍ୟ ଦେଶରେ ବିଖ୍ୟାତ ବ୍ରାହ୍ମଣ ହୋଇ କି ନିମିତ୍ତ ଦସ୍ୟୁଭାବକୁ ପ୍ରାପ୍ତ ହୋଇଅଛ ? ତୁମ୍ଭର ପ୍ରସିଦ୍ଧ ବେଦ ପାରଗ ପୂର୍ବ ଜ୍ଞାତିବର୍ଗଙ୍କୁ ସ୍ମରଣ କର । ତୁମ୍ଭେ ସେମାନଙ୍କ ବଂଶରେ ଜନ୍ମ ଗ୍ରହଣ କରି ଈଦୃଶ କୁଳାଙ୍ଗାର ହୋଇଅଛ ? । ୪୭ । ବର୍ତ୍ତମାନ ବି ସମୟ ଅଛି, ନିଜେ ନିଜକୁ ଚିହ୍ନିବାକୁ ଚେଷ୍ଟାକର, ତୁ ଦ୍ୱିଜଅଟୁ ଅତଏବ ଦ୍ୱିଜୋଚିତ ସତ୍ତ୍ୱ, ଶୀଳ, ଅଧ୍ୟୟନ, ଦମ ଓ ଦୟା ସ୍ମରଣ ପୂର୍ବକ ଏହି ବାସ ସ୍ଥାନକୁ ପରିତ୍ୟାଗ କର । ୪୮ ।

ହେ ରାଜନ୍ ! ଅନନ୍ତର ଗୌତମ ସେହି ହିତୈଷୀ ମିତ୍ରଙ୍କ କର୍ତ୍ତୃକ ଏହିପରି ଉକ୍ତ ହୋଇ ଏବଂ ତାହାଙ୍କ ବାକ୍ୟକୁ ବିଶେଷ ରୂପରେ ନିଶ୍ଚୟ କରି ତେତେବେଳେ ଆର୍ତ୍ତି ବ୍ୟକ୍ତ ପ୍ରାୟ ପ୍ରତ୍ୟୁତ୍ତର କଲେ । ୫୦ ।

ହେ ଦ୍ୱିଜସତ୍ତମ ! ଅମ୍ଭେ ଧନହୀନ ଓ ବେଦଜ୍ଞାନ ବିହୀନ ଅଟୁଁ । ଏହି ହେତୁରୁ ଅର୍ଥ ସଂଗ୍ରହାର୍ଥ ଏଠାକୁ ଆଗମନ କରିଅଛୁଁ । ଏହା ବିବେଚନା କରନ୍ତୁ । ୫୦ । ହେ ବିପ୍ରବର ! ଅଦ୍ୟ ଅମ୍ଭେ ଆପଣଙ୍କୁ ଦର୍ଶନ କରି କୃତାର୍ଥ ହେଲୁ । ଆଜି ରାତିରେ ଆପଣ ଏହିଠାରେ ଅବସ୍ଥାନ କରନ୍ତୁ । କାଲି ଅମ୍ଭେ ଦୁହେଁ ଏକତ୍ର ଗମନ କରିବୁଁ । ୫୧ ।

ସେହି ବ୍ରାହ୍ମଣ ଦୟାର୍ଦ୍ର ଥିଲେ, ତେଣୁ ଗୌତମଙ୍କ ଅନୁରୋଧରେ ସେଠାରେ ରହିଗଲେ, କିନ୍ତୁ ସେଠାକାର କୌଣସି ବସ୍ତୁକୁ ସ୍ପର୍ଶ ମଧ୍ୟ କଲେ ନାହିଁ । ସେ ଅତ୍ୟନ୍ତ କ୍ଷୁଧିତ ଥିଲେ ଓ ଗୌତମ ମଧ୍ୟ ତାଙ୍କୁ ଖାଇବା ନିମନ୍ତେ ବହୁ ଅନୁନୟ ବିନୟ କରିଥିଲେ, ତେବେ ବି ସେ ସେଠାକାର ଅନ୍ନ ପାଣୀୟ ଗ୍ରହଣ କରି ନ ଥିଲେ । ୫୨ ।

———

## ଅଧ୍ୟାୟ—୧୭୧

ଭୀଷ୍ମ କହିଲେ—ହେ ଭାରତ ! ରଜନୀ ପ୍ରଭାତ ହୁଅନ୍ତେ, ସେହି ଦ୍ୱିଜବର ଗମନ କଲେ ଏବଂ ତତ୍ପରେ ଗୌତମ ଗୃହରୁ ବହିର୍ଗତ ହୋଇ ସାଗରାଭିମୁଖରେ ଯାତ୍ରା କଲେ । ୧ । ସେ ଗମନ କରୁଁ କରୁଁ ପଥ ମଧ୍ୟରେ ସମୁଦ୍ର ଗମନୋନ୍ମୁଖ ବଣିକମାନଙ୍କୁ ଦେଖିଲେ । ପରିଶେଷରେ ସେ ସେମାନଙ୍କ ସହିତ ସାଗରାଭିମୁଖକୁ ଗମନ କଲେ । ୨ । ହେ ରାଜନ୍ ! ବୈଶ୍ୟମାନଙ୍କ ସେହି ଦଳଟି ଗୋଟିଏ ପର୍ବତ ଗୁହାରେ ଆଶ୍ରୟ ନେଇଥିଲେ, ଇତ୍ୟବସରେ ଗୋଟିଏ ମତ୍ତ ମାତଙ୍ଗ କର୍ତ୍ତୃକ ସେହି ସବୁ ବଣିକ ବୃନ୍ଦଙ୍କର ଅଧିକାଂଶ ନିହତ ହେଲେ ।

ବ୍ରାହ୍ମଣ ସେତେବେଳେ କୌଣସି ପ୍ରକାରରେ ବିପଦରୁ ବିମୁକ୍ତ, ଭୟ, ଦ୍ରୁତ ଓ ଜୀବିତାର୍ଥ ହୋଇ ଉତ୍ତର ଦିଗକୁ ଧାବିତ ହେଲେ । ୪ । ସେ ସ୍ୱାର୍ଥ ପରିଭ୍ରଷ୍ଟ ଏବଂ ଉକ୍ତ ସ୍ଥାନରୁ ବିଚ୍ୟୁତ ହୋଇ ଏକାକୀ କାପୁରୁଷ ପ୍ରାୟ ବନରେ ବିଚରଣ କଲେ । ୫ । ଅନନ୍ତର ସେ ସମୁଦ୍ର ଗମନର ଉତ୍ତମ ପଥ ପ୍ରାପ୍ତ ହୋଇ ସେହି ପଥରେ ପୁଷ୍ପିତ ପାଦପ ଶୋଭିତ ଗୋଟିଏ ରମଣୀୟ କାନନରେ ଉପନୀତ ହେଲେ । ୬ । ନନ୍ଦନ ବନ ସଦୃଶ ଯକ୍ଷ କିନ୍ନର ସେବିତ ସେହି କାନନ ସମସ୍ତ ଋତୁରେ ଫଳଶାଳୀ, ଆମ୍ରବନ ପରିଶୋଭିତ ଏବଂ ଶାଳ, ତାଳ, ତମାଳ, କାଳାଅଗୁରୁ ଓ ଉତ୍କୃଷ୍ଟ ଚନ୍ଦନ ବୃକ୍ଷ ନିକର ଦ୍ୱାରା ଅଳଙ୍କୃତ ଥିଲା । ତତ୍‌କାଳରେ ସେଠାକାର ରମଣୀୟ ଓ ସୁଗନ୍ଧିତ ପର୍ବତର ସମତଳ ପ୍ରଦେଶର ଚତୁର୍ଦ୍ଦିଗରେ ପକ୍ଷୀମାନେ କଳରବ କରୁଥିଲେ । ୯ । କେଉଁଠାରେ ଭାରୁଣ୍ଡ ନାମକ ବିଖ୍ୟାତ ମନୁଷ୍ୟବଦନ ବିହଙ୍ଗମମାନେ ଏବଂ ପର୍ବତୋଦ୍ଭବ ସମୁଦ୍ର ଗମନୋନ୍ମୁଖ ଭୁଲିଙ୍ଗ ଶକୁନ ସମୂହ କୂଜନ କରୁଥିଲେ । ୧୦ । ବିହଙ୍ଗମମାନଙ୍କର ସେହି ମନୋହର କଳରବ ଶ୍ରବଣ କରି ଗମନ କରୁ କରୁ ଗୌତମ ଅଗ୍ରସର ହେଲେ । ୧୧ ।

ହେ ନୃପ ! ତଦନନ୍ତର ସେ ସୁରମ୍ୟ ସୁବର୍ଣ୍ଣମୟୀ ସିକତାଶତ ସ୍ୱର୍ଗସମ ସୁଖକର କୌଣସି ବିଶଦ ସମତଳ ପ୍ରଦେଶରେ ଶ୍ରୀସମ୍ପନ୍ନ ମଣ୍ଡଳାକାର କୌଣସି ଗୋଟିଏ ବୃହତ୍ ବଟବୃକ୍ଷକୁ ଗୌତମ ଦର୍ଶନ କଲେ । ୧୨ । ସେହି ବୃକ୍ଷ ଅନୁରୂପ ଶାଖାସମୂହ ଦ୍ୱାରା ଆଚ୍ଛାଦିତ

ହୋଇ ଛବି ସଦୃଶ ହୋଇଥିଲା ଓ ମୂଳସ୍ଥଳ ଚନ୍ଦନ ବାରି ଦ୍ୱାରା ସଂସିକ୍ତ ଥିଲା । ୧୩ ।

ଗୌତମ ସେହି ପିତା-ମହ-ସଭା-ସଦୃଶ ଦିବ୍ୟ ପୁଷ୍ପାନ୍ୱିତ, ଶ୍ରୀଯୁକ୍ତ ଅତ୍ୟୁତ୍କୃଷ୍ଟ, ମନୋହର ତରୁତଳକୁ ଦର୍ଶନ କରି ପରମ ପ୍ରୀତି ଲାଭ କଲେ । ସେ ସେହି ସୁରପୁର ସଦୃଶ ପୁଷ୍ପିତ ପାଦପ ସମୂହ ପରିବୃତ ପବିତ୍ର ସ୍ଥଳକୁ ପ୍ରାପ୍ତ ହୋଇ ହର୍ଷାନ୍ୱିତ ଚିତ୍ତରେ ସେଠାରେ ଉପବିଷ୍ଟ ହେଲେ । ୧୫ ।

ହେ କୁନ୍ତୀପୁତ୍ର ମହାରାଜ ! ଗୌତମ ସେଠାରେ ଉପବେଶନ କରନ୍ତେ କୁସୁମ ସମୂହକୁ ସ୍ପର୍ଶ କରି ସମୀରଣ ପ୍ରବାହିତ ହେଲା, ଯାହାକି ଖୁବ୍ ସୁଖକର ଓ କଲ୍ୟାଣକର ଜଣା ପଡ଼ୁଥିଲା ଏବଂ ତାହା ଗୌତମଙ୍କର ଅଙ୍ଗକୁ ଅହ୍ଲାଦ ପ୍ରଦାନ କରୁଥିଲା । ୧୬ । ବ୍ରାହ୍ମଣ ପବିତ୍ର ବାୟୁ ସ୍ପର୍ଶରେ ପ୍ରଶାନ୍ତ ହୋଇ ପରମ ସୁଖରେ ନିଦ୍ରିତ ହେଲେ । ଦିବାକର ମଧ୍ୟ ଅସ୍ତାଚଳକୁ ଗମନ କଲେ । ୧୭ ।

ତଦନନ୍ତର ପ୍ରଭାକର ଅସ୍ତଗତ ଓ ସନ୍ଧ୍ୟାକାଳ ଉପସ୍ଥିତ ହୁଅନ୍ତେ ନାଡ଼ୀଜଙ୍ଘ ନାମରେ ବିଖ୍ୟାତ ପିତାମହଙ୍କର ପ୍ରିୟ ସୁହୃତ କଶ୍ୟପାତ୍ମଜ ମହାପ୍ରାଜ୍ଞ ପକ୍ଷିପ୍ରବର ବକରାଜ ବ୍ରହ୍ମଲୋକରୁ ସ୍ୱକୀୟ ସଦନକୁ ଆଗମନ କଲେ । ୧୯ । ସେହି ଅନୁପମବକରାଜ ଧରାତଳରେ ରାଜଧର୍ମା ନାମରେ ବିଖ୍ୟାତ ଥିଲେ, ଦେବକନ୍ୟାଙ୍କଠାରୁ ଉତ୍ପନ୍ନ ହୋଇଥିବାରୁ ତାଙ୍କର ଶରୀରର କାନ୍ତି ଦେବତାଙ୍କ ସଦୃଶ ଥିଲା । ସେ ବଡ଼ ବିଦ୍ୱାନ୍ ଥିଲେ ଓ ଦିବ୍ୟ ତେଜରେ ଦେଦୀପ୍ୟମାନ ଥିଲେ । ୨୦ । ତାହାଙ୍କର ସର୍ବାଙ୍ଗ ସୂର୍ଯ୍ୟସମ ସମୁଜ୍ଜ୍ୱଳ ବିଭୂଷଣ ବିଭୂଷିତ ଥିଲା । ସେହି ଦେବଗର୍ଭୀ ସମ୍ଭୂତ ବିହଗରାଜ ତନ୍ତ୍ରାଳରେ ସୌନ୍ଦର୍ଯ୍ୟ ଦ୍ୱାରା ସମୁଜ୍ଜ୍ୱଳ ଥିଲେ ।୨୧। ଗୌତମ ସେହି ଖଗବରଙ୍କୁ ଆଗତ ଦେଖି ବିସ୍ମୟାପନ୍ନ ହେଲେ । ସେ କ୍ଷୁଧା ଓ ପିପାସା ହେତୁ ନିତାନ୍ତ ପରିଶ୍ରାନ୍ତ ଥିଲେ । ଏଥିପାଇଁ ହିଂସା ଅଭିଳାଷ କରି ତାହାଙ୍କୁ ନିରୀକ୍ଷଣ କଲେ । ୨୨ ।

ରାଜଧର୍ମା ପାଖକୁ ଆସି କହିଲେ—ହେ ବିପ୍ର ! ଆପଣଙ୍କର ମଙ୍ଗଳ ତ ? ଭାଗ୍ୟକ୍ରମରେ ଆପଣ ଆମ୍ଭ ଗୃହରେ ଉପନୀତ ହୋଇ ଅଛନ୍ତି । ଦିନକର ଅସ୍ତମିତ ଏବଂ ସାୟଂକାଳ ଉପସ୍ଥିତ ହେଲା । ୨୩ । ଆପଣ ଅନିନ୍ଦିତ ପ୍ରସ୍ତ ଅତିଥି ସ୍ୱରୂପରେ ଅନୁଗ୍ରହ ପୂର୍ବକ ଆମ୍ଭ ଗୃହରେ ଉପସ୍ଥିତ ହୋଇଅଛନ୍ତି । ଅତଏବ ଅଦ୍ୟ ଏହି ସ୍ଥାନରେ ଯଥାବିଧି ସତ୍କୃତ ହୋଇ ଅବସ୍ଥାନ କରନ୍ତୁ । କାଲି ପ୍ରଭାତରେ ଯଥାସ୍ଥାନକୁ ଗମନ କରିବେ ।

## ଅଧ୍ୟାୟ—୧୭୦

ଭୀଷ୍ମ କହିଲେ—ହେ ଧର୍ମରାଜ ! ତତ୍କାଳରେ ଗୌତମ ସେହି ମଧୁରବାଣୀ ଶ୍ରବଣରେ ବିସ୍ମିତ ଓ କୌତୁହଳାକ୍ରାନ୍ତ ହୋଇ ରାଜଧର୍ମାଙ୍କୁ ନିରୀକ୍ଷଣ କଲେ । ୧ ।

ରାଜଧର୍ମା କହିଲେ—ହେ ଦ୍ୱିଜବର ! ଆମ୍ଭେ କଶ୍ୟପଙ୍କ ପୁତ୍ର, ଦାକ୍ଷାୟଣୀ ଆମ୍ଭର ଜନନୀ, ଆପଣ ଗୁଣବାନ୍ ଅତିଥି ଅଟନ୍ତି, ମୁଁ ଆପଣଙ୍କର ସ୍ୱାଗତ କରୁଛି । ୨ ।

ଭୀଷ୍ମ କହିଲେ—ଅନନ୍ତର କଶ୍ୟପାତ୍ମଜ ରାଜଧର୍ମା ସେହି ବ୍ରାହ୍ମଣଙ୍କୁ ବିଧାନାନୁସାରେ ସତ୍କାର କରି ଶାଲ ପୁଷ୍ପମୟ ଦିବ୍ୟ ଆସନ ପ୍ରଦାନ କଲେ ଏବଂ ଭାଗୀରଥି ଗଙ୍ଗାରେ ଯେଉଁ ସବୁ ମତ୍ସ୍ୟମାନ ବିଚରଣ କରନ୍ତି ତାହା ଏବଂ ଅନ୍ୟାନ୍ୟ ପୀବର ମତ୍ସ୍ୟମାନେ ଓ ନିତାନ୍ତ ପ୍ରଦୀପ୍ତ ହୁତାଶନ ଗୌତମଙ୍କ ଉଦ୍ଦେଶ୍ୟରେ ଆନୟନ କଲେ । ୫ । ବ୍ରାହ୍ମଣ ଭୋଜନ କରି ପ୍ରୀତଚିତ୍ତ ହୁଅନ୍ତେ, ମହା ତପସ୍ୱୀ ବକରାଜ ଶ୍ରମାପନୟନାର୍ଥ ପକ୍ଷ ଦ୍ୱୟ ଦ୍ୱାରା ତାହାଙ୍କୁ ବ୍ୟଜନ କଲେ । ୬ । ତଦନନ୍ତର ସେ ଶ୍ରାନ୍ତି ଦୂରକରି ଉପବିଷ୍ଟ ହୁଅନ୍ତେ, ରାଜଧର୍ମା ତାହାଙ୍କର ନାମ ଓ ଗୋତ୍ର ପ୍ରଶ୍ନ କଲେ । ସେ "ଆମ୍ଭେ ଗୌତମ" ଏହି କଥା କହି ଆଉ କିଛି କହିଲେ ନାହିଁ । ୭ । ପରିଶେଷରେ ପକ୍ଷିରାଜ ତାହାଙ୍କୁ ଦିବ୍ୟପୁଷ୍ପ ସୁବାସିତ ପୁଷ୍ପମୟ ସୁଗନ୍ଧ ସମନ୍ୱିତ ଦିବ୍ୟ ଶଯ୍ୟା ପ୍ରଦାନ କଲେ । ସେ ତହିଁରେ ପରମ ସୁଖରେ ଶୟନ କଲେ । ୮ ।

ଅନନ୍ତର ଗୌତମ ଶଯ୍ୟୋପରି ଉପବିଷ୍ଟ ହୁଅନ୍ତେ ବାଗ୍ମୀ କଶ୍ୟପ ତନୟ ରାଜଧର୍ମ୍ମା ତାହାଙ୍କ ଆଗମନ ପ୍ରୟୋଜନ ଜିଜ୍ଞାସା କଲେ । ୯ । ହେ ଭାରତ ! ଗୌତମ ତାହାଙ୍କୁ କହିଲେ—ହେ ମହାମତେ ! ଅମ୍ଭେ ଅତିଶୟ ଦରିଦ୍ର, ଏହି ହେତୁରୁ ଧନ ସଞ୍ଚୟ କରିବା କାରଣ ସାଗର ଗମନରେ ଇଚ୍ଛା କରିଅଛୁଁ । ୧୦ ।

ରାଜଧର୍ମ୍ମା ପ୍ରୀତ ହୋଇ ତାହାଙ୍କୁ କହିଲେ, ହେ ଦ୍ୱିଜବର ! ବର୍ତ୍ତମାନ ଆପଣ ସେଠାକୁ ଯିବାନିମନ୍ତେ ଉତ୍କଣ୍ଠିତ ହେଉନ୍ତୁ ନାହିଁ, ଆପଣ ଏହିଠାରେ କୃତକାର୍ଯ୍ୟ ହୋଇ ଧନ ସଞ୍ଚୟ ପୂର୍ବକ ନିଜଗୃହକୁ ଗମନ କରିବେ । ୧୧ ।

ପ୍ରଭୋ ବୃହସ୍ପତିଙ୍କ ମତାନୁସାରେ ଅର୍ଥସିଦ୍ଧି ଚତୁର୍ବିଧ ଅଟେ । ବଂଶ ପରମ୍ପରାରେ, ପ୍ରାରବ୍ଧରେ ଅନୁକୂଳତାରେ, ଧନନିମନ୍ତେ କରାଯିବା ସକାମ କର୍ମ ଓ ମିତ୍ରର ସହଯୋଗରେ । ୧୨ । ବର୍ତ୍ତମାନ ଅମ୍ଭେ ଆପଣଙ୍କ ମିତ୍ର ହୋଇଅଛୁଁ ଏବଂ ଆପଣଙ୍କ ପ୍ରତି ଅମ୍ଭର ସୌହୃଦ୍ୟ ଜନ୍ମିଅଛି । ଅତଏବ ଆପଣ ଯେପରି ଅର୍ଥବାନ୍ ହେବେ, ଅମ୍ଭେ ତଦ୍‌ବିଷୟରେ ଯତ୍ନବାନ୍ ହେବୁଁ । ୧୩ ।

ତଦନନ୍ତର ପକ୍ଷିରାଜ ପ୍ରଭାତ ସମୟରେ ଗୌତମଙ୍କୁ ସୁଖାସୀନ ବିଲୋକନ କରି ଏହିକଥା କହିଲେ—ହେ ପ୍ରିୟଦର୍ଶନ ! ଆପଣ ଏହି ପଥରେ ଗମନ କରନ୍ତୁ, ଅବଶ୍ୟ କୃତକାର୍ଯ୍ୟ ହେବେ । ଏ ସ୍ଥାନରୁ ତିନି ଯୋଜନ ଗମନ କଲେ, ବିରୂପାକ୍ଷ ନାମରେ ବିଖ୍ୟାତ ମହାବଳ ପରାକ୍ରାନ୍ତ ଅମ୍ଭର ସଖା ଗୋଟିଏ ରାକ୍ଷସାଧିପତିଙ୍କୁ ଦେଖି ପାରିବେ । ୧୫ । ହେ ଦ୍ୱିଜବର ! ଆପଣ ଅମ୍ଭର ବାକ୍ୟାନୁସାରେ ତାହାଙ୍କ ନିକଟକୁ ଗମନ କରନ୍ତୁ, ସେ ଆପଣଙ୍କର ଅଭିଳଷିତ କାମ୍ୟ ବସ୍ତୁମାନ ପ୍ରଦାନ କରିବେ । ଏଥିରେ ସଂଶୟ ନାହିଁ । ୧୬ ।

ହେ ଧର୍ମ୍ମରାଜ ! ଗୌତମ ପକ୍ଷିରାଜଙ୍କ କର୍ତ୍ତୃକ ଏହିପରି ଉକ୍ତହୋଇ ଇଚ୍ଛାନୁସାରେ ଅମୃତ କଳ୍ପ ଫଳମାନ ଭକ୍ଷଣ ପୂର୍ବକ ଆନନ୍ଦିତ ହୋଇ ଗମନ କଲେ । ୧୭ । ହେ ମହାରାଜ ! ସେ ସେହି ପଥ ମଧ୍ୟରେ ଉଲ୍ଲଙ୍ଘ

ଅଗୁରୁ, ଚନ୍ଦନ, ଏବଂ ଭୂର୍ଜପତ୍ରର ବନରେ ବିଚରଣ କରି ଦ୍ରୁତବେଗରେ ଗମନ କଲେ । ୧୮ । ତଦନନ୍ତର ସେ ଶୁଭ୍ର ଶୁଭ୍ର ଶୈଳ ତୋରଣ-ସମନ୍ୱିତ ଶୈଳପ୍ରାଚୀର ପରିବେଷ୍ଟିତ ଓ ସଦରଫାଟକ ମଧ୍ୟ ଏକ ପର୍ବତ-ବିଶିଷ୍ଟ ଶୈଳଯନ୍ତ୍ରସମାକୁଳ ମେରୁବ୍ରଜ ନାମକ ନଗରରେ ଉପନୀତ ହେଲେ । ୧୯ ।

ହେ ରାଜନ୍ ! ସେ ସେଠାରେ ଉପନୀତ ହୋଇ ଧୀମାନ୍ ରାକ୍ଷସ-ରାଜଙ୍କର ପ୍ରିୟ ସହୃତ କର୍ତ୍ତୃକ ପ୍ରେରିତ ପ୍ରିୟମାଣ ପ୍ରିୟ ଅତିଥି ରୂପରେ ତାହାଙ୍କଠାରେ ବିଦିତ ହେଲେ । ୨୦ । ହେ ଯୁଧିଷ୍ଠିର ! ତଦନନ୍ତର ରାକ୍ଷସରାଜ ନିଜ ଦୂତଗଣଙ୍କୁ ଏହି କଥା କହିଲେ ଯେ, "ନଗର ଦ୍ୱାରରୁ ଗୌତମଙ୍କୁ ଅବିଳମ୍ବରେ ଆନୟନ କର ।" କ୍ଷିପ୍ରକାରୀ ରାଜଦୂତମାନେ ପ୍ରଭୁଙ୍କର ଆଦେଶ ପ୍ରାପ୍ତିମାତ୍ରକେ ନଗରରୁ ଗୌତମ ବୋଲି ଆହ୍ୱାନ କରି ପୁରଦ୍ୱାରରେ ଉପସ୍ଥିତ ହେଲେ । ୨୨ ।

ହେ ମହାରାଜ ! ସେହି ଦୂତମାନେ ତେତେବେଳେ ବ୍ରାହ୍ମଣଙ୍କୁ କହିଲେ, ତୁମ୍ଭେ ସତ୍ୱର ହୁଅ । ଶୀଘ୍ର ଆଗମନ କର । ରାଜା ତୁମ୍ଭଙ୍କୁ ଦର୍ଶନ କରିବାକୁ ଇଚ୍ଛା କରୁଅଛନ୍ତି; ବିରୂପାକ୍ଷ ନାମରେ ବିଖ୍ୟାତ ବୀରବର ରାକ୍ଷସରାଜ ଆପଣଙ୍କୁ ଦର୍ଶନ କରିବା ନିମିତ୍ତ ବ୍ୟଗ୍ର ହେଉ ଅଛନ୍ତି, ତେଣୁ ତଞ୍ଚଳ ଆଗମନ କରନ୍ତୁ । ୨୪ ।

ତଦନନ୍ତର ବିପ୍ରବର ଗୌତମ ତତ୍କାଳରେ ବିସ୍ମୟ ବଶତଃ କ୍ଲାନ୍ତ ରହିତ ଏବଂ ସେହି ପରମ ସମୃଦ୍ଧି ଦର୍ଶନରେ ନିତାନ୍ତ ବିସ୍ମୟାନ୍ୱିତ ହୋଇ ରାକ୍ଷସରାଜଙ୍କ ଦର୍ଶନାଭିଳାଷରେ ଦୂତଗଣଙ୍କ ସହିତ ସତ୍ୱର ରାଜ-ଭବନରେ ଉପନୀତ ହେଲେ । ୨୬ ।

———

## ଅଧ୍ୟାୟ—୧୭୧

ଭୀଷ୍ମ କହିଲେ—ଗୌତମ ରାକ୍ଷସ ରାଜଙ୍କର ନିମନ୍ତ୍ରିତ ହୋଇ ଓ ତାଙ୍କର ରମଣୀୟ ଭବନରେ ପ୍ରବେଶ ମାତ୍ରକେ ଉତ୍କୃଷ୍ଟ ସତ୍କାର ଲାଭ କରି ଉତ୍କୃଷ୍ଟ ଆସନରେ ଉପବେଶନ କଲେ । ୧ । ରାଜା ତାହାଙ୍କୁ ଗୋତ୍ର, ଅଗ୍ରିର ବେଦାଧ୍ୟୟନ ଓ ବ୍ରହ୍ମଚର୍ଯ୍ୟ ବିଷୟ ପ୍ରଶ୍ନ କରିବାରୁ ସେ କେବଳ ଗୋତ୍ରକୁ ଉଲ୍ଲେଖ କଲେ । ଆଉ କିଛି କହିଲେ ନାହିଁ । ୨ । ରାକ୍ଷସ ରାଜ ସେହି ବ୍ରହ୍ମତେଜୋହୀନ ସ୍ୱାଧ୍ୟାୟ ବିହୀନ ଗୋତ୍ର ମାତ୍ରାଭିଜ୍ଞ ବ୍ରାହ୍ମଣଙ୍କର ନିବାସ ସ୍ଥାନ ଜାଣିବାକୁ ପ୍ରଶ୍ନ କଲେ । ୩ ।

ରାକ୍ଷସ କହିଲେ—ହେ ବିପ୍ର ! ତୁମ୍ଭର ନିବାସ କେଉଁଠାରେ ? ତୁମ୍ଭେ କେଉଁ ଗୋତ୍ରରେ ବିବାହ କରିଅଛ ? ଯଥାର୍ଥ କଥା କହ, ଭୟ କର ନାହିଁ । ଅକ୍ଷୁବ୍ଧ ଚିତ୍ତରେ ବିଶ୍ୱାସ କର । ୪ ।

ଗୌତମ କହିଲେ—ଆମ୍ଭେ ମଧ୍ୟ ଦେଶରେ ଜନ୍ମ ଗ୍ରହଣ କରିଥିଲୁଁ । ବର୍ତ୍ତମାନ ଶବରାଳୟରେ ବାସ କରୁଁ । ଗୋଟିଏ ବିଧବା ଶୂଦ୍ରାକୁ ବିବାହ କରିଅଛୁଁ । ଏହା ତୁମ୍ଭଠାରେ ଯଥାର୍ଥ କହିଲୁଁ । ୫ ।

ଭୀଷ୍ମ କହିଲେ—ଅନନ୍ତର ରାକ୍ଷସରାଜ ବିମର୍ଷାନ୍ୱିତ ହୋଇ ମନେ ମନେ ଚିନ୍ତା କଲେ ଯେ କି ପ୍ରକାରେ ଏହି କାର୍ଯ୍ୟ ସମ୍ପନ୍ନ ହେବ ଏବଂ କି ପ୍ରକାରେ ଅବା ଆମ୍ଭର ସୁକୃତ ସଞ୍ଚୟ ହୋଇ ପାରିବ ? ଏହି କଥା ସେ ବାରମ୍ବାର ଚିନ୍ତା କରିବାକୁ ଲାଗିଲେ । ୬ । ସେ ମନେ ମନେ କହିବାକୁ ଲାଗିଲେ, ଏହି ଜାତି ମାତ୍ରକେ ବ୍ରାହ୍ମଣ ଅଟନ୍ତି, ମହାତ୍ମା ବକରାଜଙ୍କର ସୁହୃତ ବୋଲି ସେ ଆମ୍ଭଠାକୁ ପ୍ରେରଣ କରିଅଛନ୍ତି । ତେଣୁ ତାଙ୍କର ପ୍ରିୟକାର୍ଯ୍ୟ ଅବଶ୍ୟ କରିବି ସେ ନିଶ୍ଚିତ ଆମ୍ଭର ଆଶ୍ରିତ, ଭ୍ରାତା, ବାନ୍ଧବ ଓ ହୃଦୟଙ୍ଗମ ସଖା ଅଟନ୍ତି । ଅତଏବ ଆମ୍ଭେ ତାଙ୍କର ପ୍ରିୟ କାର୍ଯ୍ୟ ସାଧନ କରିବୁଁ । ୮ । ଅଦ୍ୟ କାର୍ତ୍ତିକ ପୂର୍ଣ୍ଣିମାରେ ଆମ୍ଭେ ସହସ୍ର ବ୍ରାହ୍ମଣ ଭୋଜନ କରାଇବୁଁ । ଏହି ମଧ୍ୟ ସେମାନଙ୍କ ମଧ୍ୟରେ ଭୋଜନ କରିବେ । ସେମାନଙ୍କ ସହିତ ଏହାକୁ ମଧ୍ୟ ଧନ ଦାନ କରିବୁଁ । ୯ । ଅଦ୍ୟ

ପୁଣ୍ୟତିଥି; ଯେ ମଧ୍ୟ ଅତିଥି ହୋଇ ଆଗମନ କରିଅଛନ୍ତି । ଦାନାର୍ଥ ସଙ୍କଳ୍ପିତ ଅର୍ଥ ମଧ୍ୟ ପ୍ରସ୍ତୁତ ଅଛି । ଅତଃପର ଅଜ୍ଞ ବିଗ୍ରହ କରିବାର ଆବଶ୍ୟକ ନାହିଁ ।

ତଦନନ୍ତର ରାକ୍ଷସରାଜ ଏହିପରି ଚିନ୍ତାକଲା ପରେ ପଞ୍ଚବସ୍ତ୍ର ପରିଧାୟୀ, ସ୍ନାତ ଓ ଚନ୍ଦନାଦି ଦ୍ୱାରା ଅଳଙ୍କୃତ ସହସ୍ର ବିଦ୍ୱାନ ବିପ୍ର ତାହାଙ୍କ ଗୃହରେ ଉପନୀତ ହେଲେ । ୧୧ । ହେ ବିଶାମ୍ପତେ ! ବିରୂପାକ୍ଷ ସେହି ସମାଗତ ବ୍ରାହ୍ମଣମାନଙ୍କୁ ବିଧାନାନୁସାରେ ଯଥୋପଯୁକ୍ତ ସତ୍କାର କଲେ । ୧୨ । ତାହାଙ୍କର ଆଦେଶାନୁସାରେ ଭୃତ୍ୟଗଣ ଭୂମି ତଳରେ ଉତ୍କୃଷ୍ଟ କୁଶାସନ ଆସ୍ତରଣ କରିଦେଲେ । ୧୩ । ଦ୍ୱିଜଗଣ ରାକ୍ଷସରାଜ କର୍ତ୍ତୃକ ସତ୍କୃତ ହୋଇ ଆସନରେ ଉପବେଶନ କରନ୍ତେ, ରାଜା ସେମାନଙ୍କୁ ତିଳ, କୁଶ ଓ ସଲିଳ ଦ୍ୱାରା ଅର୍ଚ୍ଚନା କଲେ । ୧୪ ।

ହେ ମହାରାଜ ! ବିଶ୍ୱଦେବ, ପିତୃଗଣ ଓ ହୁତାଶନ ନିରପତି ମୂର୍ତ୍ତି ସ୍ୱରୂପ ସଦାଗ୍ରହ ବ୍ରାହ୍ମଣଗଣ ଚନ୍ଦନ ଚର୍ଚ୍ଚିତ, ପୁଷ୍ପ ମାଲ୍ୟବନ୍ତ ଓ ସୁପୂଜିତ ହୋଇ ସୁଧାକର ସମୂହପ୍ରାୟ ସୁଶୋଭିତ ହେଲେ । ତଦନନ୍ତର ରାକ୍ଷସରାଜ ବିପ୍ରଗଣଙ୍କୁ ଘୃତମଧୁ ସମନ୍ୱିତ ଉତ୍କୃଷ୍ଟ ଅନ୍ନପୂର୍ଣ୍ଣ ହୀରକାଙ୍କିତ ସୁନିର୍ମଳ ସୁନ୍ଦର ସୁବର୍ଣ୍ଣ ପାତ୍ରମାନ ପ୍ରଦାନ କଲେ । ପ୍ରତିବର୍ଷ ଆଷାଢ଼ୀ ଓ ମାଘୀ ପୂର୍ଣ୍ଣିମାରେ ଅନେକାନେକ ବ୍ରାହ୍ମଣମାନେ ତାହାଙ୍କ ଗୃହରେ ଅଭିଳଷିତ ଉତ୍କୃଷ୍ଟ ଭୋଜନ ଲାଭ କରନ୍ତି । ବିଶେଷତଃ ଶରତ୍ କାଳର ଅବସାନରେ କାର୍ତ୍ତିକୀ ପୂର୍ଣ୍ଣିମାରେ ରାକ୍ଷସ ରାଜ ଦ୍ୱିଜଗଣଙ୍କୁ ଏହିପରି ଭୋଜନ କରାଇ ବହୁରତ୍ନ ପ୍ରଦାନ କରନ୍ତି । ଏହା ଶ୍ରବଣ କରିଅଛୁଁ ।

ଭାରତ ! ବ୍ରାହ୍ମଣମାନଙ୍କର ଭୋଜନାବସାନରେ ସେମାନଙ୍କୁ ଦକ୍ଷିଣା ଦେବାପାଇଁ ମହାବଳ ବିରୂପାକ୍ଷ ସୁବର୍ଣ୍ଣ, ରଜତ, ମଣି, ମୁକ୍ତା, ମହାମୂଲ୍ୟ ହୀରକ, ପ୍ରବାଳ ଓ ବୈଦୂର୍ଯ୍ୟ ପ୍ରଭୃତି ରତ୍ନରାଶି ଆନୟନ କରି କହିଲେ, ହେ ଦ୍ୱିଜ ସତ୍ତମଗଣ ! ଆପଣମାନେ ଇଚ୍ଛା ଏବଂ ଉତ୍ସାହ ଅନୁସାରେ ଏହିସବୁ ରତ୍ନ ରାଜକୁ ଉଠାଇ ନିଅନ୍ତୁ ଏବଂ ଯେ ଯହିଁରେ ଭୋଜନ କଲେ ସେ ସେହି ସେହି ପାତ୍ରକୁ ଘେନି ନିଜ ଗୃହକୁ ଗମନ କରନ୍ତୁ । ୨୨ । ମହାତ୍ମା ରାକ୍ଷସରାଜ ଏହିକଥା

କହିଁନ୍ତେ, ବିଶ୍ବଦ୍ଧ ବସନ ମହାମାନ୍ୟ ବ୍ରାହ୍ମଣଗଣ ଇଚ୍ଛାନୁସାରେ ସେ ସବୁ ରତ୍ନକୁ ଗ୍ରହଣ କଲେ ଏବଂ ପବିତ୍ର ରତ୍ନ ନିଚୟ ଦ୍ୱାରା ଅଭ୍ୟର୍ଚ୍ଚିତ ହୋଇ ଅତିଶୟ ପ୍ରୀତ ହେଲେ । ୨୪ ।

ହେ ରାଜନ୍ ! ତଦନନ୍ତର ରାକ୍ଷସରାଜ ନାନାଦେଶରୁ ସମାଗତ ନିଶାଚରଗଣଙ୍କୁ ହିଂସା କରିବାକୁ ନିଷେଧ ପୂର୍ବକ ସେହିସବୁ ଦ୍ୱିଜଗଣଙ୍କୁ ପୁନର୍ବାର କହିଲେ, ହେ ବିପ୍ରଗଣ ! ଅଦ୍ୟ ଏକଦିବସ ନିମିତ୍ତ ଏହି ସ୍ଥାନରେ ଆପଣମାନଙ୍କର ରାକ୍ଷସଗଣଙ୍କଠାରୁ କୌଣସି ଭୟ ନାହିଁ । ଅତଏବ ଆପଣମାନେ ପ୍ରମୋଦିତ ହୋଇ ଅବିଳମ୍ବରେ ଅଭିଳଷିତ ଦେଶକୁ ଗମନ କରନ୍ତୁ । ୨୬ ।

ଏହାଶୁଣି ସମସ୍ତ ବ୍ରାହ୍ମଣଗଣ ଏକ ଏକ ଦିଗକୁ ଧାବିତ ହେଲେ । ଗୌତମ ମଧ୍ୟ ଭାରି ସ୍ୱର୍ଣ୍ଣଭାର ଗ୍ରହଣ ପୂର୍ବକ ଅତି କଷ୍ଟରେ ବହନ ପୂର୍ବକ ଶୀଘ୍ର ପୂର୍ବୋକ୍ତ ବଟବୃକ୍ଷ ନିକଟରେ ଉପସ୍ଥିତ ହେଲେ ଏବଂ ନିତାନ୍ତ ପରିଶ୍ରାନ୍ତ, କ୍ଳାନ୍ତ, ଓ କ୍ଷୁଧାରେ ପୀଡ଼ିତ ହୋଇ ସେଠାରେ ଉପବେଶନ କଲେ । ୨୮ ।

ହେ ଧର୍ମରାଜ ! ଅନନ୍ତର ମିତ୍ରବତ୍ସଳ ଖଗଶ୍ରେଷ୍ଠ ରାଜଧର୍ମ ଗୌତମଙ୍କୁ ସ୍ୱାଗତ ପ୍ରଶ୍ନ ଦ୍ୱାରା ଅଭିନନ୍ଦନ କରି ତାହାଙ୍କ ନିକଟକୁ ଆଗମନ କଲେ ଏବଂ ପକ୍ଷଦ୍ୱୟ ବିକ୍ଷେପ ଦ୍ୱାରା ତାହାଙ୍କର ଶ୍ରାନ୍ତି ଦୂର କଲେ । ପରିଶେଷରେ ବୁଦ୍ଧିମାନ ବିହଙ୍ଗ ତାହାଙ୍କର ସମୁଚିତ ସତ୍କାର କରି ଭୋଜନ ସାମଗ୍ରୀର ଆୟୋଜନ କଲେ । ୩୦ । ଗୌତମ ସେତେବେଳେ ବିଶ୍ରାନ୍ତ ହୋଇ ଆହାର କଲେ ଏବଂ ଚିନ୍ତା କଲେ ଯେ, ଅମ୍ଭେ ଲୋଭ ଓ ମୋହ ବଶତଃ ସୁମହତ ସୁବର୍ଣ୍ଣ ଭାରକୁ ଗ୍ରହଣ କରିଅଛୁଁ । ଅମ୍ଭଙ୍କୁ ବହୁଦୂରକୁ ଯିବାକୁ ହେବ । ପଥ ମଧ୍ୟରେ ପ୍ରାଣ ଧାରଣାର୍ଥ ଭୋଜନ ସାମଗ୍ରୀ କିଛି ନାହିଁ । ଅତଏବ କି ପ୍ରକାରେ ପ୍ରାଣଧାରଣ କରିବୁଁ ।

ହେ ପୁରୁଷବ୍ୟାଘ୍ର ! ଅନନ୍ତର କୃତଘ୍ନ ବ୍ରାହ୍ମଣ ପଥରେ ଗମନ କରିବା ସମୟରେ କିଛି ଭୋକ୍ତବ୍ୟ ବସ୍ତୁ ସଙ୍ଗରେ ନ ଥିବାର ଦେଖି

ମନେ ମନେ ଚିନ୍ତା କଲା ଯେ ଏହି ମାଂସ ରାଶି ବକରାଜ ଆମ୍ଭ ପାର୍ଶ୍ୱରେ ଅବସ୍ଥିତ ରହିଅଛି । ଅତଏବ ଏହାକୁ ନିହତକରି ଗ୍ରହଣ ପୂର୍ବକ ଦ୍ରୁତ ବେଗରେ ଗମନ କରିବୁଁ । ୩୫ ।

## ଅଧ୍ୟାୟ—୧୭୨

ଭୀଷ୍ମ ବୋଇଲେ—ଖଗରାଜ ବଟବୃକ୍ଷ ନିକଟରେ ବ୍ରାହ୍ମଣ ରକ୍ଷା ନିମିତ୍ତ ସମୀରଣ ସହାୟସମ୍ପନ୍ନ ମହା ଅର୍ଚ୍ଚିଷ୍ମାନ ଅନଳକୁ ସ୍ଥାପନ କରି ରଖିଥିଲେ । ସେ ବଞ୍ଚ୍ୟାନ୍ତ ହୋଇ ତାହାର ପାର୍ଶ୍ୱଭାଗରେ ଶୟନ କଲେ । ଦୁଷ୍ଟାତ୍ମା କୃତଘ୍ନ ବ୍ରାହ୍ମଣ ତାହାଙ୍କୁ ନିଧନ କରିବାର ଅଭିଳାଷ ହୋଇ ଅଗ୍ରଭାଗରେ ଶୟନ କଲେ । ୨ । ତଦନନ୍ତର ଦୁରାତ୍ମା ସେହି ବିଶ୍ୱସ୍ତ ବକରାଜଙ୍କୁ ଉଦ୍ଦୀପ୍ତ ଅଙ୍ଗାର ଦ୍ୱାରା ନିହତ କଲା । ନିହତ କରି ହର୍ଷାନ୍ୱିତ ଚିତ୍ତରେ ପାପ କିମ୍ବା ଦୋଷ ଦର୍ଶନ କଲାନାହିଁ । ପରିଶେଷରେ ସେ ମୃତ ପକ୍ଷୀକୁ ପକ୍ଷହୀନ ଲୋମବିହୀନ କରି ଅଗ୍ନି ମଧ୍ୟରେ ପାକ କଲା । ପାକ କଲାପରେ ସେହି ପକ୍ଷି ମାଂସ ଓ ସୁବର୍ଣ୍ଣ ଭାରକୁ ଗ୍ରହଣ କରି ଦ୍ରୁତ ବେଗରେ ସେଠାରୁ ଗମନ କଲା । ୪ ।

ପର ଦିବସ ରାକ୍ଷସରାଜ ବିରୂପାକ୍ଷ ପୁତ୍ରକୁ ସମ୍ବୋଧନ ପୂର୍ବକ କହିଲେ—ହେ ବତ୍ସ । ଅମ୍ଭେ ଖଗଶ୍ରେଷ୍ଠ ରାଜଧର୍ମ୍ମାଙ୍କୁ ଅବଲୋକନ କରିନାହୁଁ । ସେ ପ୍ରତିଦିନ ପ୍ରାତଃକାଳରେ ବ୍ରହ୍ମାଙ୍କୁ ବନ୍ଦନା କରିବାକୁ ଯାଆନ୍ତି । କିନ୍ତୁ ଆମ୍ଭଙ୍କୁ ନ ଦେଖି କଦାପି ଗୃହକୁ ଗମନ କରନ୍ତି ନାହିଁ । ୬ । ଦୁଇ ସନ୍ଧ୍ୟା ଓ ଦୁଇରାତି ଗତହେଲା, କିନ୍ତୁ ସେ ଆମ୍ଭ ଗୃହକୁ ଆସି ନାହାନ୍ତି । ଅତଏବ ଆମ୍ଭର ମନ ପ୍ରସନ୍ନ ହେଉନାହିଁ । ସେ ସୁହୃତ କେଉଁଠାରେ ଅଛନ୍ତି ଶୀଘ୍ର ଅନ୍ୱେଷଣ କର । ୭ । ବେଦଜ୍ଞାନ ବିହୀନ ବ୍ରହ୍ମବର୍ଚ୍ଚସ ବିବର୍ଜିତ ହିଂସାରତ ସେହି ଦ୍ୱିଜାଧମ ସେଠାକୁ ଗମନ କରିଅଛି । ସେ ତାହାକୁ ନିହତ କରିପାରେ । ଆମ୍ଭର ଏହି ଶଙ୍କା ହେଉଅଛି । ୮ । ଅମ୍ଭେ ଇଙ୍ଗିତ ଦ୍ୱାରା ଅବଲୋକନ କରିଅଛୁଁ ଯେ, ଗୌତମ ବ୍ରାହ୍ମଣ ଅତି ଦୁରାଚାର, ଦୁର୍ବୁଦ୍ଧି, ନିର୍ଦ୍ଦୟ, ଦାରୁଣାକୃତି,

କୃଷ୍ଣ ଓ ଦସ୍ୟୁପ୍ରାୟ ଅଧମ ପ୍ରକୃତି ଅଟେ । ୯ । ସେ ସେଠାକୁ ଯାଇଅଛନ୍ତି, ଏହି ହେତୁରୁ ଆମ୍ଭର ମନ ଉଦ୍‌ବିଗ୍ନ ହେଉଅଛି । ଅତଏବ ହେ ବତ୍ସ ! ତୁମ୍ଭେ ଅବିଳମ୍ବରେ ଏଠାରୁ ରାଜଧର୍ମାଙ୍କ ଗୃହକୁ ଗମନ କର, ସେହି ବିଶୁଦ୍ଧ ସ୍ୱଭାବ ସୁହୃତବର ଜୀବିତ ଅଛନ୍ତି କି ନା ଜାଣିଆସ ।

ଧୀଶକ୍ତି ସମ୍ପନ୍ନ ରାକ୍ଷସ ରାଜଙ୍କର ପୁତ୍ର ପିତାଙ୍କର୍ତ୍ତୃକ ଏହିପରି କଥିତ ହୋଇ ଶୀଘ୍ର ରାକ୍ଷସ ଗଣଙ୍କ ସହିତ ବଟବୃକ୍ଷ ନିକଟକୁ ଗମନ କଲା । ତଦନନ୍ତର ସେଠାରୁ ଯାଇ ରାଜଧର୍ମାଙ୍କର ଅସ୍ଥି ଦେଖିଲା । ତଦ୍ଦର୍ଶନରେ ସେ ନିତାନ୍ତ ଦୁଃଖିତ ହୋଇ ରୋଦନ କରୁ କରୁ ଶକ୍ତ୍ୟନୁସାରେ ଶୀଘ୍ର ଗୌତମଙ୍କୁ ଗ୍ରହଣ କରିବା ନିମିତ୍ତ ଗମନ କଲା । ତଦନନ୍ତର ରାକ୍ଷସମାନେ ଅତି ଦୂରକୁ ଗମନ କରି ପକ୍ଷ, ଅସ୍ଥି ଓ ଚରଣ ବର୍ଜିତ ରାଜଧର୍ମାଙ୍କ ଶରୀର ସହିତ ଗୌତମଙ୍କୁ ଗ୍ରହଣ କଲେ । ସେମାନେ ତାହାଙ୍କୁ ଗ୍ରହଣ କରି ଦ୍ରୁତ ବେଗରେ ମେରୁବ୍ରଜ ନଗରକୁ ଆସି ରାଜାଙ୍କଠାରେ ରାଜ-ଧର୍ମାଙ୍କର ମୃତ ଶରୀର ଓ ପାପକାରୀ କୃତଘ୍ନ ଗୌତମଙ୍କୁ ଉପସ୍ଥିତ କଲେ । ୧୫ । ନୃପତି ପୁରୋହିତ ଓ ଅମାତ୍ୟ ଗଣଙ୍କ ସହିତ ନିଜ ମିତ୍ରଙ୍କୁ ଏପରି ଅବସ୍ଥାରେ ଦେଖି ରୋଦନ କଲେ । ରାଜଭବନରେ ସୁମହାନ ଆର୍ତ୍ତନାଦ ପ୍ରାଦୁର୍ଭୂତ ହେଲା । ଆବାଳବୃଦ୍ଧବନିତା ସାରା ନଗରରେ ଶୋକ ଛାଇଗଲା, କାହାର ମନରେ ଶାନ୍ତି ରହିଲା ନାହିଁ । ୧୬ ।

ଅନନ୍ତର ରାକ୍ଷସ ରାଜ "ଏହି ପାପାତ୍ମାକୁ ଅବିଳମ୍ବରେ ବଧ କର" ବୋଲି ପୁତ୍ରକୁ ଆଦେଶ କଲେ ଏବଂ କହିଲେ—ଏହି ସବୁ ରାକ୍ଷସମାନେ ଇଚ୍ଛାନୁସାରେ ଏହାର ମାଂସକୁ ଆହାର କରି ସନ୍ତୋଷ ଲାଭ କରନ୍ତୁ ।୧୭। ହେ ରାକ୍ଷସଗଣ ! ଆମ୍ଭର ବିବେଚନା ଏହି ଯେ, ତୁମ୍ଭେମାନେ ଏହି ମୁହୂର୍ତ୍ତରେ, ଏହି ପାପାଚାର, ପାପକର୍ମା, ପାପରତ ପାପାତ୍ମାକୁ ନିହତ କର । ୧୮ । ଘୋର ବିକ୍ରମ ରାକ୍ଷସଗଣ ରାକ୍ଷସେନ୍ଦ୍ରଙ୍କ କର୍ତ୍ତୃକ ଏହିପରି ଉକ୍ତ ହୋଇ ସେହି ପାପାତ୍ମାଙ୍କୁ ଭକ୍ଷଣ କରିବାର ଅଭିଳାଷ କଲେ ନାହିଁ, କାହିଁକି ନା ସେ ଘୋର ପାପାଚାରୀ ଥିଲା । ୧୯ ।

ହେ ମହାରାଜ ! ସେହି ସବୁ ନିଶାଚରମାନେ ରାକ୍ଷସ ରାଜାଙ୍କୁ କହିଲେ, ଏହି ନରାଧମକୁ ଭକ୍ଷଣ କରିବା ନିମିତ୍ତ ବର୍ତ୍ତମାନ ଦସ୍ୟୁମାନଙ୍କ ହସ୍ତରେ ପ୍ରଦାନ କରନ୍ତୁ । ଏହାର ପାପ ଦେହକୁ ଭକ୍ଷଣ

କରିବା ପାଇଁ ଆମ୍ଭମାନଙ୍କ ପ୍ରତି ଅନୁମତି ପ୍ରଦାନ କରିବା ଆପଣଙ୍କର ଉଚିତ ନୁହେଁ, ଏହା କହି ରାକ୍ଷସମାନେ ରାକ୍ଷସରାଜଙ୍କ ଚରଣରେ ନିବେଦନ କଲେ ।

ରାକ୍ଷସରାଜ ନିଶାଚରମାନଙ୍କ ବାକ୍ୟରେ ସମ୍ମତ ହୋଇ ସେମାନଙ୍କୁ କହିଲେ—ହେ ରାକ୍ଷସଗଣ ! କୃତଘ୍ନକୁ ବର୍ତ୍ତମାନ ଦସ୍ୟୁମାନଙ୍କ ହସ୍ତରେ ସମର୍ପଣ କର । ଶୂଳ ପଟ୍ଟିଶଧାରୀ ରାକ୍ଷସମାନେ ପ୍ରଭୁଙ୍କ ଆଜ୍ଞା ପ୍ରାପ୍ତି ମାତ୍ରକେ ସେହି ପାପାତ୍ମାକୁ ଖଣ୍ଡ ଖଣ୍ଡ କରି ଦସ୍ୟୁମାନଙ୍କୁ ପ୍ରଦାନ କଲେ । କିନ୍ତୁ ଦସ୍ୟୁମାନେ ସୁଦ୍ଧା ସେହି ପାପାତ୍ମାକୁ ଭକ୍ଷଣ କରିବାକୁ ଇଚ୍ଛା କଲେ ନାହିଁ ।

ହେ ରାଜେନ୍ଦ୍ର ! ମାଂସାଶୀ ଜୀବଜନ୍ତୁମାନେ ମଧ୍ୟ କୃତଘ୍ନ ଲୋକକୁ ଭକ୍ଷଣ କରନ୍ତିନାହିଁ । ୨୪ । ହେ ରାଜନ୍ ! ବ୍ରାହ୍ମଣଘାତୀ, ସୁରାପାୟୀ ଚୌର ଏବଂ ଭଗ୍ନବ୍ରତ ବ୍ୟକ୍ତିମାନଙ୍କର ବରଂ ନିଷ୍କୃତି ଅଛି; କିନ୍ତୁ କୃତଘ୍ନ ଲୋକର କୌଣସି ପ୍ରକାରେ ନିଷ୍କୃତି ନାହିଁ । ୨୫ । ମିତ୍ରଦ୍ରୋହୀ, ନୃଶଂସ, ନରାଧମ ତଥା କୃତଘ୍ନ—ଏପରି ମନୁଷ୍ୟର ମାଂସ ମାଂସାଶୀ ଜୀବଜନ୍ତୁ ଏବଂ କୀଟପତଙ୍ଗମାନେ ମଧ୍ୟ ଭକ୍ଷଣ କରନ୍ତି ନାହିଁ । ୨୬ ।

---

ଭୀଷ୍ମ କହିଲେ—ରାଜନ୍ । ଏହାପରେ ବିରୂପାକ୍ଷ ବକରାଜଙ୍କ ନିମନ୍ତେ ଗୋଟିଏ ଚିତା ତିଆରି କଲେ । ସେଥିରେ ବହୁତ ରତ୍ନ, ସୁଗନ୍ଧିତ ଚନ୍ଦନ ଓ ବସ୍ତ୍ରରେ ଖୁବ୍ ସଜାଇ ଥିଲେ । ୧ । ତାହାପରେ ବକରାଜଙ୍କ ଶବକୁ ସେହି ଚିତା ଉପରେ ରଖି ପ୍ରତାପୀ ରାକ୍ଷସରାଜ ସେଥିରେ ଅଗ୍ନି-ସଂଯୋଗ କଲେ ଓ ବିଧିପୂର୍ବକ ମିତ୍ରଙ୍କ ଦାହକାର୍ଯ୍ୟ ସମ୍ପନ୍ନ କଲେ । ୨ । ସେହି ସମୟରେ ଦିବ୍ୟଧେନୁ ଦକ୍ଷୟକନ୍ୟା ସୁରଭିଦେବୀ ସେଠାକୁ ଅସି ଆକାଶରେ ଟିକ୍ ଚିତାଉପରେ ଠିଆ ହୋଇଗଲେ । ୩ ।

ଅନଘ । ତାହାଙ୍କର ମୁଖରୁ ଯେଉଁ କ୍ଷୀର ମିଶ୍ରିତ ଫେନ ନିଃସୃତ ହେଲା । ତାହା ରାଜଧର୍ମାଙ୍କ ସେହି ଚିତା ଉପରେ ପତିତ ହେଲା । ୪ । ତହିଁରେ ବକରାଜ ତଦ୍ୱାରା ପୁନର୍ଜୀବନ ପ୍ରାପ୍ତହୋଇ ଉଡ଼ିତନ ପୂର୍ବକ ବିରୂପାକ୍ଷଙ୍କ ନିକଟରେ ଉପସ୍ଥିତ ହେଲେ । ୫ ।

ସେହି ସମୟରେ ଦେବରାଜ ଇନ୍ଦ୍ର ବିରୂପାକ୍ଷଙ୍କ ନଗରକୁ ଅସି ତାହାଙ୍କୁ କହିଲେ—"ହେ ରାକ୍ଷସରାଜ । ବଡ଼ ସୌଭାଗ୍ୟର କଥା ଯେ ତୁମ୍ଭ ନିମନ୍ତେ ବକରାଜ ପୁନର୍ଜୀବନ ଲାଭକଲେ" । ୬ । ପୂର୍ବକାଳରେ ପ୍ରଜାପତି ରାଜଧର୍ମାଙ୍କୁ ଯେଉଁ ଅଭିଶାପ ଦେଇଥିଲେ, ଦେବେନ୍ଦ୍ର ସେହି ପୁରାତନ ବୃତ୍ତାନ୍ତକୁ ବିରୂପାକ୍ଷଙ୍କୁ ଶ୍ରବଣ କରାଇଲେ । ୭ ।

ହେ ରାଜନ୍ । ଏକସମୟରେ ଯେତେବେଳେ ବକରାଜ ବ୍ରହ୍ମାଙ୍କ ସଭାରେ ଉପସ୍ଥିତ ହୋଇ ପାରିଲେ ନାହିଁ, ସେତେବେଳେ ପିତାମହ ରୋଷବଶତଃ ପକ୍ଷିରାଜଙ୍କୁ ଶାପ ଦେଇ ଏହିପରି କହିଲେ । ୮ । ଦୁଷ୍ଟ ସ୍ୱଭାବ ମୂଢ଼ ବକାଧମ ଯେ ହେତୁ ମୋ ସଭାକୁ ଅାଗମନ କରିନାହିଁ, ସେ ହେତୁ ଅବିଳମ୍ବେ ସେହି ଦୁଷ୍ଟାତ୍ମାକୁ ବଧ ଜନିତ କଷ୍ଟ ଭୋଗ କରିବାକୁ ପଡ଼ିବ । ୯ । ବ୍ରହ୍ମାଜୀଙ୍କ ସେହି ଅଭିଶାପରେ ଗୌତମ ବକରାଜଙ୍କୁ ବଧକଲା ଏବଂ ବ୍ରହ୍ମାଜୀ ମଧ୍ୟ ପୁନରାୟ ଅମୃତ ସିଞ୍ଚନ କରି ରାଜଧର୍ମାଙ୍କୁ ଜୀବନଦାନ ଦେଲେ । ୧୦ ।

ଅନନ୍ତର ରାଜଧର୍ମା ବକରାଜ ଇନ୍ଦ୍ରଙ୍କୁ ପ୍ରଣାମ ପୂର୍ବକ କହିଲେ—"ହେ ସୁରେଶ୍ୱର । ଯଦି ଆପଣଙ୍କର ମୋ ପ୍ରତି କୃପା ଅଛି ତେବେ ମୋର ପ୍ରିୟ ମିତ୍ର ଗୌତମକୁ ମଧ୍ୟ ଜୀବିତ କରି ଦିଅନ୍ତୁ" ।୧୧। ହେ ପୁରୁଷପ୍ରବର । ତାଙ୍କର ଅନୁରୋଧ ରକ୍ଷାକରି ଇନ୍ଦ୍ରଦେବ ଗୌତମ ବ୍ରାହ୍ମଣକୁ ଅମୃତ ସିଞ୍ଚନ ପୂର୍ବକ ଜୀବଦାନ କରାଇଲେ । ୧୨ ।

ହେ ଧର୍ମ୍ମରାଜ ! ବକରାଜ ସ୍ୱର୍ଣ୍ଣ ପ୍ରାସାଦ ସମନ୍ୱିତ ସେହି ପ୍ରିୟ ସୁହୃଦ ଗୌତମଙ୍କୁ ପାଇ ଖୁବ୍ ଆନନ୍ଦରେ ଆଲିଙ୍ଗନ କଲେ । ୧୩ । ପୁନଶ୍ଚ ବକରାଜ ରାଜଧର୍ମ୍ମା ସେହି ପାପାଚାରୀଙ୍କୁ ଧନ, ରତ୍ନ ଦାନ ପୂର୍ବକ ବିଦାୟ କରି ନିଜ ଗୃହରେ ପ୍ରବେଶ କଲେ । ୧୪ । ତଦନନ୍ତର ବକରାଜ ପୂର୍ବପରି ପ୍ରଜାପତିଙ୍କ ସଭାକୁ ଗମନ କଲେ । ପ୍ରଜାପତି ମଧ୍ୟ ତାଙ୍କର ଯଥାରୀତି ଅତିଥି ସତ୍କାର କଲେ । ୧୫ ।

ଗୌତମ ମଧ୍ୟ ପୁନର୍ବାର ବେଶ୍ୟାଳୟରେ ଉପନୀତ ହେଲା ଏବଂ ସେଠାରେ ସେ ତାର ଶୂଦ୍ରା ଭାର୍ଯ୍ୟାଠାରେ ଦୁଷ୍କୃତକ ସ୍ତ୍ରୀ ବହୁପୁତ୍ର ଉତ୍ପାଦନ କଲା । ୧୬ । ତତ୍‌କାଳରେ ଦେବତାମାନେ ତାହାପ୍ରତି ମହାଶାପ ପ୍ରଦାନ କରିଥିଲେ ଯେ, ଏହି ପାପାଚାରୀ କୃତଘ୍ନ ବ୍ରାହ୍ମଣ ପୁନର୍ଭୂ ପତ୍ନୀ ଗର୍ଭରେ ବହୁକାଳରେ ବହୁପୁତ୍ର ଉତ୍ପାଦନ କରି ମହା ନରକଗାମୀ ହେବେ । ୧୭ ।

ହେ ଭାରତ ! ଏହିସବୁ ବୃତ୍ତାନ୍ତ ମୋତେ ପୂର୍ବକାଳରେ ମହର୍ଷି ନାରଦ କହିଥିଲେ । ଭାରତଶ୍ରେଷ୍ଠ ! ଏହି ସୁମହତ ଉପାଖ୍ୟାନାକୁ ସ୍ମରଣ କରି ମୁଁ ତୁମ୍ଭ ସମ୍ମୁଖରେ ସମସ୍ତ ଯଥାର୍ଥରୂପରେ ବର୍ଣ୍ଣନା କଲି । ୧୯ । କୃତଘ୍ନଙ୍କୁ କିପରି ଯଶ ପ୍ରାପ୍ତି ହେବ ? ତାକୁ କିପରି ଆଶ୍ରୟ ଓ ସୁଖଲାଭ ହେବ ? କୃତଘ୍ନ ବିଶ୍ୱାସର ଯୋଗ୍ୟ ହୁଏନା । କୃତଘ୍ନର ଉଦ୍ଧାର ନିମନ୍ତେ ଶାସ୍ତ୍ରରେ କୌଣସି ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ନାହିଁ । ୨୦ ।

ପ୍ରତ୍ୟେକ ମନୁଷ୍ୟର ମିତ୍ରଦ୍ରୋହ ପାପରୁ କ୍ଷାନ୍ତ ରହିବା ଉଚିତ୍ । ମିତ୍ରଦ୍ରୋହୀ ମାନବ ଅନନ୍ତକାଳ ପାଇଁ ଘୋର ନରକରେ ପତିତହୁଏ ।୨୧। ମିତ୍ରଙ୍କ ନିମନ୍ତେ ପ୍ରତ୍ୟେକ ମନୁଷ୍ୟର କୃତଜ୍ଞ ରହିବା ଉଚିତ ଓ ମିତ୍ରଙ୍କୁ ସନ୍ତୁଷ୍ଟ ରଖିବା ଉଚିତ; କାରଣ ମିତ୍ରଙ୍କଠାରୁ ସବୁରକମର ସାହାଯ୍ୟ ମିଳେ ଓ ମିତ୍ରଙ୍କ ସହଯୋଗରେ ସମ୍ମାନ ପ୍ରାପ୍ତି ମଧ୍ୟ ହୋଇଥାଏ । ମିତ୍ରଙ୍କ ଠାରୁ ଭୋଗ୍ୟବସ୍ତୁ ଭୋଗ କରିବାକୁ ମିଳେ ଏବଂ ମିତ୍ରଙ୍କ ସହାୟତାରେ ବିପଦରୁ ମୁକ୍ତିଲାଭ କରିହୁଏ । ଅତଏବ ବିଚକ୍ଷଣ ବ୍ୟକ୍ତି ଉତ୍କୃଷ୍ଟ ସତ୍କାର ଦ୍ୱାରା ମିତ୍ରଙ୍କୁ ପୂଜା କରିବେ । ୨୩ ।

ଯେଉଁମାନେ ପାପୀ, କୃତଘ୍ନ, ନିର୍ଲଜ୍ଜ, ମିତ୍ରଦ୍ରୋହୀ, କୁଳାଙ୍ଗାର ଏବଂ ପାପାଗ୍ରସ୍ତ ଅଟନ୍ତି, ଏହିପରି ଅଧମ ମନୁଷ୍ୟଙ୍କୁ ଜ୍ଞାନୀ ପୁରୁଷମାନେ ସର୍ବଦା ତ୍ୟାଗକରିବା ଉଚିତ । ୨୪ ।

ହେ ଧାର୍ମିକଶ୍ରେଷ୍ଠ ଯୁଧିଷ୍ଠିର ! ଏହିପରି ମୁଁ ତୁମକୁ ପାପୀ ମିତ୍ରଦ୍ରୋହୀ ଏବଂ କୃତଘ୍ନ ପୁରୁଷର ପରିଚୟ ଦେଲି, ବର୍ତ୍ତମାନ ଆଉ କଣ ଶୁଣିବାକୁ ଇଚ୍ଛା କରୁଅଛ କୁହ । ୨୫ ।

ବୈଶମ୍ପାୟନ କହିଲେ—ହେ ଜନମେଜୟ ! ମହାତ୍ମା ଭୀଷ୍ମଙ୍କ ଏହି କଥା ଶ୍ରବଣକରି ରାଜା ଯୁଧିଷ୍ଠିର ମନେ ମନେ ଖୁବ୍ ପ୍ରସନ୍ନ ହେଲେ । ୨୬ ।

---